ଶୂଦ୍ରମୁନି ଶାରଳା ଦାସଙ୍କ କୃତ

# ମହାଭାରତ

सभापर्व

## ସଭା ପର୍ବ





ନୂତନ ମୁଦ୍ରଣ



ମୂଲ୍ୟ
ଟ ୧୯-୫୦





ପ୍ରକାଶକ-

ଶ୍ରୀରାଧାରମଣ ପୁସ୍ତକାଳୟ, ଝାଞ୍ଜିରୀମଙ୍ଗଳା(?), କଟକ-୨

## ମହାଭାରତ ସଭାପର୍ବର

# ସୂଚିପତ୍ର



| ବିଷୟ | ପୃଷ୍ଠା |
|---|---|

**ବିଷୟ** **ପୃଷ୍ଠା**

❋ ମହାଭାରତ ସଭାପର୍ବର ସୂଚିପତ୍ର ସମାପ୍ତ ❋



# ମହାଭାରତ

## ସଭା ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ଶ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ଚରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଲା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣଧାରୋ ହରିଃ ॥

ହେମନ୍ତେ 'ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ॥
ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ।

## ଗଣେଶଙ୍କ ବନ୍ଦନା

ଜୟ ଜୟ ଲମ୍ବୋଦର ଜୟ ଗଣପତି
ପ୍ରଳୟରୁ ଉଦ୍ଧରିଲ ଧରି ଦଶମୂର୍ତ୍ତି ।
ପାଶ ଅଙ୍କୁଶ ତୋ କରେ ସୁଧାଲଡ଼ୁ ଭୋଗୀ
ବିଘ୍ନରାଜ ନାମ ବହୁ ବିଘ୍ନ ଦର୍ପ ଭାଙ୍ଗି ।
ଚରଣେ ନୂପୁର ତୋର ଦଶେ ସୁଶୋଭନ
ଭ୍ରମଣ କରୁ ତୁ ଚଢ଼ି ଇନ୍ଦୁର ବାହନ ।
ସକଳ ଦେବଙ୍କ ଆଗେ ପୂଜା ପାଉ ତୁହି
ତୋ କୃପାରେ ପ୍ରାଣୀ ଭୋଗ ଐଶ୍ୱର୍ଯ୍ୟ କରଇ ।
ସ୍ୱାମି ଏ ସଂସାରେ ଅଛୁ ବହୁ ବିନାଶନ
ତାହା ଖଣ୍ଡିବାକୁ ନାହିଁ ତୋ ବିନା କେ ଆନ
ଅନ୍ତେ ପ୍ରାଣୀଙ୍କୁ ଶମନ ଦିଏ ଯେତେ ଶାସ୍ତି
ସେଥିରୁ ଉଦ୍ଧାର କରୁ ତୁହି ଗଣପତି ।
ମରଣ ସମାନ ଅଟେ ଯେଉଁ ରୋଗମାନ
ହେ ଦେବ ସେହି ରୋଗକୁ କରୁ ବିନାଶନ ।
ତୋ କୃପାରୁ ରୋଗ ଅଙ୍ଗେ ନ ପାରଇ ପଶି
ତାହାର ଅକୃପା ହେଲେ ଦିଏ ରୋଗ ଗ୍ରାସି ।
ଭକତଜନ-ବତ୍ସଳ ତୁହି ଗଜାନନ
ମୂର୍ଖକୁ ପଣ୍ଡିତ କରୁ ଦେଇ ବିଦ୍ୟାଜ୍ଞାନ ।
ମହା ମହିମାକୁ କେହି ବର୍ଣ୍ଣିପାରେ ତୋର
କି ଅବା ବର୍ଣ୍ଣିବ ମୂର୍ଖ ମନୁଷ୍ୟ ମାତର ।
ମନ୍ଦର ସମାନ ଅଟେ ଜରାର ଶରୀର
ସଂସାରକୁ ନାଶକଲା ସେ ଦୁଷ୍ଟ ଅସୁର ।
ସେ ଜରା ବିଘ୍ନମାନଙ୍କ ଅଟଇ ଯେ ମୂଳ
ଦୁଷ୍ଟ ହେତୁ ଚାପିଲୁ ତୁ ତାକୁ ପାଦତଳ ।
ଜରାକୁ ରୂପନ୍ତେ ଯମ କରିଲା ଗୁହାରି
ହୋଇଲା ଏ ଜରା ସଖା ଅଟଇ ମୋହରି ।
ପ୍ରାଣ ନାଶ କରିବାକୁ ମୂଳ ଅଟେ ଏହି
ସକଳ ରୋଗ ଉପରେ ଦୁର୍ଦ୍ଧର୍ଷ ଅଟଇ ।
ଏହାଙ୍କୁ ଯେଉଁଣ ପ୍ରାଣୀ ଜୀବନ ହରଇ
ବଡ଼ ସେନାପତି ମୋର ଅଟଇ ଯେ ଏହି ।
ଯମର ବଚନେ କେତେ ନ ଛାଡ଼ିଲୁ ତାକୁ
ପାଦ କଟାଉଟିରେ ଚାପି ରଖିଲୁ ଦୁଷ୍ଟକୁ ।
ଏ କଳିଯୁଗରେ ବହୁ ହେବାରୁ ଅମାନ୍ତ
ତେଣୁ ତାହାକୁ ଛାଡ଼ିଲୁ ସତ୍ୟ ଗଣପତି ।

ଜୟ ତୁ ଜୟ ତୁ ଦେବ ଶଙ୍କର ସୋଦର
ଜୟ ତୁ ଜୟ ତୁ ଦେବ ଦୁଃଖୀ ଦୁଃଖ ହର ।
ଜୟ ତୁ ଜୟ ତୁ ଦେବ ମୂର୍ଖେ ଜ୍ଞାନଦାତା
ଜୟ ତୁ ଜୟ ତୁ ଦେବ ସର୍ବଶାସ୍ତ୍ରଜ୍ଞାତା ।
ଜୟ ତୁ ଜୟ ତୁ ଦେବ ପ୍ରସନ୍ନ ମୂରତି
ଜୟ ତୁ ଜୟ ତୁ ଦେବ ଅଯୋନି ଉତ୍ପତ୍ତି ।
ଜୟ ତୁ ଜୟ ତୁ ଦେବ ଅମୃତ ଆହାରୀ
ଜୟ ତୁ ଜୟ ତୁ ଦେବ ବହୁରୂପ ଧାରୀ ।
ଜୟ ତୁ ଜୟ ତୁ ଦେବ ପଦ୍ମାସନେ ସ୍ଥିତ
ଜୟ ତୁ ଜୟ ତୁ ଦେବ ସୁଜ୍ଞାନୀ ପଣ୍ଡିତ ।
ଜୟ ତୁ ଜୟ ତୁ ଦେବ ମନ୍ତ୍ର ବ୍ରହ୍ମବେତ୍ତା
ଜୟ ତୁ ଜୟ ତୁ ଦେବ ଜ୍ଞାନ ବରଦାତା ।
ଜୟ ତୁ ଜୟ ତୁ ଦେବ ବୋଲାଉ କପିଳ
ଜୟ ତୁ ଜୟ ତୁ ଦେବ ଈଶ୍ୱରଙ୍କ ବାଳ ।
ଜୟ ତୁ ଜୟ ତୁ ଦେବ ସିନ୍ଦୂର ବଦନ
ଜୟ ତୁ ଜୟ ତୁ ଦେବ ବିକଟ ତୋ ନାମ ।
ଜୟ ତୁ ଜୟ ତୁ ଦେବ ଏକଦନ୍ତ ଧର
ଜୟ ତୁ ଜୟ ତୁ ଦେବ ସ୍ଥୂଳ ଶରୀର ।
ଜୟ ତୁ ଜୟ ତୁ ଦେବ ସମାନ ଅଗସ୍ତ
ଜୟ ତୁ ଜୟ ତୁ ଦେବ ଧୂମକେତୁ ମୂର୍ତ୍ତି ।
ଜୟ ତୁ ଜୟ ତୁ ଦେବ ହେ ଗଜକର୍ଣ୍ଣିକ
ଜୟ ତୁ ଜୟ ତୁ ଦେବ ଦେବ ଗଣାଧ୍ୟକ୍ଷ ।
ଜୟ ତୁ ଜୟ ତୁ ଦେବ ଭାଲଚନ୍ଦ୍ରଧାରୀ
ଜୟ ତୁ ଜୟ ତୁ ଦେବ ପାପ ନାଶକାରୀ ।
ଜୟ ତୁ ଜୟ ତୁ ଦେବ ସ୍ୱରୂପ ଶୋଭନ
ଜୟ ତୁ ଜୟ ତୁ ଦେବ ଶ୍ୱେତ ଗଜାନନ ।
ଜୟ ତୁ ଜୟ ତୁ ଦେବ ବିଘ୍ନ ବିଦାରକ
ଜୟ ତୁ ଜୟ ତୁ ଦେବ ମହାବିନାୟକ ।
ଜୟ ତୁ ଜୟ ତୁ ଦେବ ପର ଦୁଃଖେ ଦୁଃଖୀ
ଜୟ ତୁ ଜୟ ତୁ ଦେବ ସିଦ୍ଧଙ୍କର ସାକ୍ଷୀ ।
ଜୟ ତୁ ଜୟ ତୁ ଦେବ ଭୁଜଙ୍ଗ ଉତ୍ତରୀ
ଜୟ ତୁ ଜୟ ତୁ ଦେବ ବିଦ୍ୟା ଅଧିକାରୀ ।
ମନ ବଚନ କର୍ମରେ କରୁଛି ସଂକଳ୍ପ
ପୂରାଅ କାମନା ରଚେ ହରିହର କଳ୍ପ ।
କଳିକାଳ ପାପ ନାଶେ କରୁଛି ଏ ବୁଦ୍ଧି
ଶୁଣିଲେ ତରିବେ ପାପୀ ଏ ଭବଜଳଧି ।

ଅଧମ ତାରଣ ନାଥ ଚତୁର୍ଭୁଜ ହେଲୁ
ଉଦ୍ଧାରକ ଅଭକ୍ତାରେ ଦଣ୍ଡ ନ ଦେଲ୍ ।
ତସ୍କର ସାଧକ ଭକ୍ତ ତାରଣକୁ ସାଧି
ମମ ଦୁର୍ବଳମାନଙ୍କ ନାଶକର ବନ୍ଧ ।
ତମ୍ଭେ ଜ୍ଞାନ ଦିଅ ମୋତେ ହୋଇ ସୁପ୍ରସନ୍ନ
ଅନୁଗ୍ରହରେ ସ୍ୱର୍ଗପର୍ବ କରେ ମୁଁ ଲେଖନ ।
ତମ୍ଭ ଚରଣେ ମୋହର ସହସ୍ର ପ୍ରଣାମ
ଶାରଳା ଦାସର ପୂର୍ଣ୍ଣ କର ମନସ୍କାମ ।
ଝଙ୍କଡପୁର ବାସିନୀ ଶ୍ରୀଚଣ୍ଡୀ ଶାରଳେ
ଶରଣ ମୁଁ ସଦା ତମ୍ଭ ଶ୍ରୀପଦ କମଳେ ।
ତୁମ୍ଭେ କୃପାମୟୀ ମୋର ଜ୍ଞାନଦାତ୍ରୀ ମାତ
ତବ ପ୍ରସାଦେ ଲେଖିବି ଭାରତ ଚରିତ ।
ତୃତୀୟ ଖଣ୍ଡ ଏହି ଯେ ସ୍ୱର୍ଗପର୍ବ ବାଣୀ
ଲେଖିବି ତୋ ପରସାଦେ ଆଗୋ ଠାକୁରାଣୀ
ହୁଅସି ସଦୟ ମାତ ମୋଠାରେ ଅଭୟା
ପ୍ରସନ୍ନେ ଯା କହିଦେବା ଲେଖିବି ଗୋ ତାହା
ମହାବଳ ଅଗସ୍ତିଙ୍କ ଶ୍ରୀପଦ କମଳେ
ଲୋଟୁ ମୋର ଶିରଗୋଟି ସଦା ସର୍ବକାଳେ ।
ଯେବଣ ମୁନି ଉଦୋଦରରେ ଅବହେଳେ
ସମୁଦ୍ର ଗଣ୍ଡୁଷ କଲେ ଖେଳ କୁତୁହଳେ ।
ସେ ମୁନିଙ୍କ ଶ୍ରୀଚରଣେ ସର୍ବଦା ମୋ ଆଶ
ବଦନ୍ତି ଶାରଳା ଦାସ ତାଙ୍କ ଦାସ ଦାସ ।

---

## ବଳରାମଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଯମପୁର ଦର୍ଶନ ବର୍ଣ୍ଣନ ଓ ନାରଦଙ୍କ ଠାରୁ ଯୁଧିଷ୍ଠିର ପଣ୍ଡୁ ରାଜାଙ୍କର ଦୁର୍ଦ୍ଦଶା ଶ୍ରବଣ

ଏଥୁ ଅନନ୍ତରେ କଥା ଶୁଣ ସୁଜନର
ଭାରତ ଚରିତ ଅଟେ ଶ୍ରୁତି ସୁଖକର ।
ଅଗସ୍ତି ମୁନିଙ୍କ ଯୁଗ୍ମ ଚରଣେ ବିନୟୀ
ଷଡ଼ଅର୍ଘ୍ୟ ପୂଜା କରି ମନୁ ନରସାଇଁ ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ଦେଇ ଆନନ୍ଦେ ପୂଜିଲେ ମୁନିଙ୍କର ପାଦ ।
ବହୁ ବିନୟରେ ରାଜା କରନ୍ତି ଯୋଡ଼ି
ମୁନିଙ୍କର ଶ୍ରୀଚରଣେ ପୁନଃ ପୁନଃ ପଡ଼ି ।
ବୋଇଲେ ହେ ମୁନି ମୋର ଘେନ ଦାସସେବା
ସ୍ୱର୍ଗପର୍ବ କଥା ମୋତେ ବିସ୍ତାରି କହିବା ।
ପୂର୍ବେ ଯେ କହିଲେ ପଣ୍ଡୁ ବ୍ରହ୍ମହତ୍ୟା କଲେ
ସେ ପୁଣି ମରଣ ଅନ୍ତେ କି ଗତି ଲଭିଲେ ।
ତାଙ୍କ ପାଇଁ କି କରିଲେ କୁନ୍ତୀ ପାଣ୍ଡୁପୁତ୍ର
ଏ କଥା ଶୁଣିବା ପାଇଁ ଉତ୍ସୁକ ମୋ ଚିତ୍ତ ।
ଏ କଥା ଫିଟାଇ ମୋତେ କହ ମହାଶୟ
ବ୍ରହ୍ମହତ୍ୟା ଦୋଷକୁ ଯେ କେଉଁଣ ଉପାୟ ।
ବଦନ୍ତି ଅଗସ୍ତି ମୁନି ବିଜ୍ଞ ମହାତମା
ପ୍ରତ୍ୟକ୍ଷ ସେ ନାରାୟଣ ରୂପୀ ସିଦ୍ଧ ବ୍ରହ୍ମା ।
ଶୁଦ୍ଧ ଆସନରେ ବସି କଲେ ସେ ଉତ୍ତର
ଶୁଣ ଆହେ ମନୁରାଜା ଚିତ୍ତ କରି ସ୍ଥିର ।
କୁମ୍ଭମାସ ଶୁକ୍ଳପକ୍ଷ ଦଶମୀ ଦିନର
ପୁଷ୍ୟା ନକ୍ଷତ୍ର କର୍କଟରାଶି ଗୁରୁବାର ।
ତୈତିଳ ନାମେ କରଣ ଅତିଗଣ୍ଡ ଯୋଗ
କୁମ୍ଭ ସଙ୍କ୍ରାନ୍ତିର ତିରିଶ ଦିନ ଭୋଗ ।
ସେ ଦିନ ଶ୍ରୀକୃଷ୍ଣ ଆସି ନୀଳାମ୍ବର ପାଶେ
ତାହାଙ୍କ ପାଦେ ନମିଲେ ଭକତ ମାନସେ ।
ଶ୍ରୀଦେବ ହଳୀ ତୋଳିଲେ କରି ଆଶୀର୍ବାଦ
କୁଶେ ଆସିଛୁ ତ ହରି ନାହିଁତ ପ୍ରମାଦ ।
ଯମ ପୁରକୁ ରେ ବାବୁ ବିଜେ କରି ଗଲୁ
ଗୁରୁ ପାଣ୍ଡୁପୁତ୍ରଙ୍କୁ କି ସେଠାରେ ଦେଖିଲୁ ।
କିବା ଖୋଜି ପାରିଲୁ କି ନ ପାରିଲୁ କହ
ଶୁଣିଲେ ତୋ ମୁଖୁଁ ହେବ ମୋର ମନ ଥୟ
ଭ୍ରାତାଙ୍କ ବଚନ ଶୁଣି ଶ୍ରୀକୃଷ୍ଣ କହିଲେ
ଯମ ଭୁବନକୁ ମୁହିଁ ଗଲି ଯେତେବେଳେ ।
ଗୁରୁ ପାଣ୍ଡୁପୁତ୍ରଙ୍କୁ ମୁଁ ଯାନ୍ତେ ଖୋଜି ଲୋଡ଼ି
ଅନେକ ପାପୀ ବାଟରେ ନର୍କେ ଥିଲେ ପଡ଼ି
ଯମଦୂତେ ଦଣ୍ଡ ଥିଲେ ବହୁ ଶାସ୍ତି ଦେଇ
ମୋତେ ଦେଖି ଦୂତମାନେ ଗଲେକି ପଳାଇ
ମୋ ଦର୍ଶନେ ପାପୀଙ୍କର ମୁକତି ହୋଇଲା
ମୋତେ ଦେଖି କୃତାନ୍ତକ ମହାଭୟ କଲା ।
ସୁବର୍ଣ୍ଣ ଥାଳରେ ଧରି ଧୂପ ଅର୍ଘ୍ୟ ଘେନି
ମୋ'ର ପାଦେ ପୂଜାକଲା କାଳଦଣ୍ଡ ପାଣି ।
ଅନେକ ମତେ ମୋ ପାଦେ ହୋଇଣ ବିନୟୀ
ହସ୍ତଧରି ନିଜାସନେ ବସାଇଲା ନେଇ ।

ବୋଇଲେ ପୂର୍ବୁ ଆସିବା ଶୁଣିଥିଲୁ ତୋର
ଏବେ ପାଦରଜ ଦେବ ପଡ଼ିଲା ମୋପୁର ।
ଅନେକ ପାପୀଙ୍କୁ ଶାସ୍ତି କଲୁ ନାରାୟଣ
ଏରୂପେ ବହୁ ବିନୟେ କହନ୍ତେ ଶମନ ।
ଶୁଣି ତାଙ୍କୁ କହିଲେ ସେ ଶୁଣ ଜଗୁପତି
ବହୁତ କାର୍ଯ୍ୟେ ଆସିଛୁ ଜାଣ ତୋର କତ ।
ଶାନ୍ତିପନ ଋଷି ଗୁରୁ ଅଟନ୍ତି ଆମ୍ଭର
ତାଙ୍କ ପାଞ୍ଚପୁତ୍ର ହରି ଆଣିଲେ ତୋ ଦୂତ ।
ଆମ୍ଭେ ତାଙ୍କଠାରେ ପଢ଼ି ଜ୍ଞାନବାନ ହେଲୁ
ଗୁରୁ ଦକ୍ଷିଣା ଦେବାକୁ ଯହୁଁ ଇଚ୍ଛା କଲୁଁ ।
ମୃତପୁତ୍ର ଗୁରୁପତ୍ନୀ ମାଗିଲେ ଆମ୍ଭଙ୍କୁ
ସେ ହେତୁ ଅଇଲୁ ମୁହିଁ ତୋର ଭୁବନକୁ ।
ଗୁରୁଙ୍କ ପୁତ୍ର ହୋଇଲେ ଆମ୍ଭ ଧର୍ମ ଭ୍ରାତ
ତାଙ୍କୁ ନେଇ ଦେଲେ ହେବ ଦକ୍ଷିଣା ପ୍ରାପତ
ବହୁ ଭସ୍ମ କରିଥିଲୁ ମୋତେ ଜଳୁରସ୍ତ
ଏ କଥା ଶୁଣି ଅଜପ ହୋଇଲା ନିର୍ଭସ୍ତ ।
ତହୁଁ ଯମ ଚିତ୍ରଗୁପ୍ତେ ପୃଚ୍ଛିଲେକ ରାଇ
କହ କେଉଁଠାରେ ଦ୍ୱିଜପୁତ୍ରେ ଛନ୍ତି ରହି ।
ଆଜ୍ଞାମାତ୍ରେ ଚିତ୍ରଗୁପ୍ତ ହୋଇଲା ପ୍ରଣମି
ପଶ୍ଚିମ କୋଣରେ କାଶୀଦେଶ ଅଛି ସ୍ୱାମୀ ।
ସିଦ୍ଧପାଦ ନଦୀ ଗଙ୍ଗାର ଉତ୍ତର କୂଳେ
ଯଜାତେଶ୍ୱରେକ ଲିଙ୍ଗ ଛନ୍ତି ବଟମୂଳେ ।
ସେହି ନଗ୍ରେ ଦ୍ୱିଜପୁତ୍ର ହୋଇଛନ୍ତି ଜନ୍ମ
ଚତୁର୍ଦ୍ଦଶଜଣେ ସେଠାରେ କାଟୁଛନ୍ତି ଦିନ ।
ଅନେକ ଦ୍ରବ୍ୟ ଆଣନ୍ତି ବାଟୋଇଙ୍କୁ ମାରି
ସେ ଦ୍ରବ୍ୟ ବାଣ୍ଟି କରନ୍ତି ବେନି ଭାଗ କରି ।
ଛଦ୍ମ ଦେବତାଙ୍କୁ ଦ୍ୟନ୍ତି ତହୁଁ ଅଧେ ଧନ
ଅର୍ଦ୍ଧେକ ନେଇ ବଞ୍ଚନ୍ତି ସେହି ପାଞ୍ଚଜଣ ।
ଏହା ଶୁଣି ଆଜ୍ଞାଦେଲେ ଜଳୁ ଅଧିକାରୀ
କାଳ ବିକାଳ ଦୁହିଁଙ୍କି ଆଣ ଡାକକରି ।
ଶୁଣି ଚିତ୍ରଗୁପ୍ତ ତହୁଁ ଡାକିଲା ତକ୍ଷଣେ
ଯମ ପାଶକୁ ଅଇଲେ ସେ କାଳ ବିକାଳ ।
ଯମ ଆଜ୍ଞା ଦେଲା ଦୁହିଁ କାଳ ବିକାଳଙ୍କୁ
ବେଗେ ଆଣ କାଶୀପୁରୁ ସେ ପାଞ୍ଚଚୋରଙ୍କୁ ।
ଆଜ୍ଞା ପ୍ରମାଣେ ଚଳିଲେ ସେହି ବେନି ଦୂତ
ପ୍ରବେଶ ହୋଇଲେ ସେହି ଚୋରଙ୍କ ନିକଟ ।

ପ୍ରାତଃ ସ୍ନାନ କରନ୍ତି ସେ ରୁଦ୍ର ଗଙ୍ଗାଜଳେ
ଧାଡିକାରେ ବୁଡ଼ାଇଲେ ସେ କାଳ ବିକାଳେ
ନାଶକର ପାଶେ ଆଣି ଦିଅନ୍ତେ ତାହାଙ୍କୁ
ଯମ ଆସନ ଉପରୁ ଉଠିଲାଇ ତଳକୁ ।
ବହୁଦିନୁ ମଣିଥିଲେ ଏହୁ ଦେବରାଜ
ଗୁରୁଙ୍କ ଦେଇଣ ତୁମ୍ଭେ ସିଦ୍ଧକର କାର୍ଯ୍ୟ ।
ଗୁରୁଙ୍କ ପୁତ୍ରକୁ ପାଇ ସନ୍ତୁଷ୍ଟ ହୋଇଲ
ପଣ୍ଡୁ ରାଜାଙ୍କୁ ଦେଖି ମୁଁ ବଡ଼ ଦୁଃଖୀ ହେଲ ।
ଯମରାଜା ସଭାକର ପଣ୍ଡୁ ବସିଛନ୍ତି
ସେ ସଭାତଳରେ ସଦା ଠିଆ ହୋଇଛନ୍ତି ।
ଜଗୁପତିଙ୍କର ଯହିଁ ପଡ଼େ ପଦରଜ
ଭବପାଦଜର ତଳେ ଉଭା ପଣ୍ଡୁରାଜ ।
ଯେଉଁଦିନୁ ପ୍ରାଣ ତେଜ ଛାଡ଼ିଲେ ଏ ମହୀ
ସେ ଦିନୁ ସେହି ପାବକେ ଛନ୍ତି ଛିଡ଼ାହୋଇ
ଯମଦେବ ବସିଥାଏ ଆସ୍ଥାନ ଉପରେ
ବସ ବୋଲି ନ ବୋଲିଲେ ତାଙ୍କୁ ସେ ଦିନରେ
ପୁଣ୍ୟବନ୍ତ ବସିଛନ୍ତି ସିଂହାସନ ପରେ
ତାଙ୍କ ପାଦରଜ ପଡ଼େ ପଣ୍ଡୁର ଉପରେ ।
କୃଷ୍ଣର ମୁଖରୁ ଶୁଣି ଏସନକ ବାଣୀ
ସ୍ତମ୍ଭୀଭୂତେ ବସିଲେକ ଦେବ ହଳପାଣି ।
ବଳରାମ ପୁଚ୍ଛାକଲେ ଜଗ ଶିରୀପତି
କି ପାପେ ପଣ୍ଡୁଙ୍କୁ ଯମ ଦେଇଛି ଏ ଶାସ୍ତି ।
ଶ୍ରୀକୃଷ୍ଣ ବୋଇଲେ ପଣ୍ଡୁ ବ୍ରହ୍ମହତ୍ୟା କଲେ
ଅଗ୍ନିକା ଋଷିଙ୍କି ମୃଗଙ୍କ ଶରରେ ମାଇଲେ ।
ସେହି ହେତୁ ଏହି ଶାସ୍ତି ଦିଏ ନାଶକର
ବ୍ରହ୍ମହତ୍ୟା ଦୋଷ କାହୁଁ ହୋଇବ ସେ ପାର
ଶ୍ରୀକୃଷ୍ଣ ବଚନେ ହଳୀ ହସିଣ ବୋଇଲେ
କି ବୋଇଲୁ ମେତେ ଦେଖି ପାପୀଏ ତରିଲେ
ନାନା ପାପରୁ ତରନ୍ତି ତୋ ରୂପକୁ ଦେଖି
ପଣ୍ଡୁର କଥାକୁ କପାଁ ନ ହୋଇଲୁ ସାକ୍ଷୀ ।
ଗୋବିନ୍ଦ ବୋଇଲେ ଭାର ପାତକ ଅପାର
ବ୍ରହ୍ମହତ୍ୟା ପାତକ ଯେ ସବୁଠୁଁ ଦୁସ୍ତର ।
ହଳୀ ଭଣି ଯୁଧିଷ୍ଠିର କରୁ ଏତେ ଦୟା
ଜଣାଇଲା ମୁଖେ କହୁ ମନେ ନୋହେ ତାହା ।
ପଣ୍ଡୁଙ୍କଠାରେ ଯଦ୍ୟପି ତୋର ଦୟାଥାନ୍ତା
ଯମପୁରେ ସେ କପାଇଁ ଏତେ ଶାସ୍ତି ପାନ୍ତା ।

ହଳୀଙ୍କ ବଚନ ଶୁଣି ଶ୍ରୀକୃଷ୍ଣ କହନ୍ତେ
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା କଲେ ।
କଉଣସି ରୂପେ ପାପୁଁ ନ ପାରିଲେ ତରି
ପାଛାନେ ଲଭିଲେ ସେହି ପାପେ ଉଦ୍ଧରି
ହଳୀ ବୋଇଲେ ଯା ସେବେ ଦେଖିଅଛ ହରି
ଯୁଧିଷ୍ଠିରଙ୍କ ଅଗ୍ରତେ କହ ଯାଇକରି ।
ଭଗୀରଥ ବୋଲି ସୂର୍ଯ୍ୟବଂଶେ ଜାତହେଲା
ସଗରବଂଶକୁ ଗଙ୍ଗା ଆଣି ଉଦ୍ଧାରିଲା ।
ପଣ୍ଡୁ ବ୍ରହ୍ମହତ୍ୟା ଦୋଷୁଁ ମୁକ୍ତ ପାଇବାକୁ
ମୁହିଁ ସମରଥ ନୁହେଁ ଏ ମହା ପାପକୁ ।
ଜଗପାଳ ସମ ଛନ୍ତି ପଣ୍ଡୁ ପାଣ୍ଡୁପୁତ୍ର
ପିତା ପାତକ ଖଣ୍ଡନ୍ତୁ କରି ଯଜ୍ଞ ବ୍ରତ ।
କରଯୋଡ଼ି କହିଲେକ ଧୀରେ ଦେବରାୟ
ଯୁଧିଷ୍ଠିଙ୍କ କହିବାକୁ କରେ ମୁହିଁ ଭୟ ।
ହଳୀ ବୋଇଲେ ସେବେ ତୁ ନ କହିବୁ ତାଙ୍କୁ
କଏ ଆଉ ବାର୍ତ୍ତା ଦେବ କହ ତା ଆମ୍ଭଙ୍କୁ ।
ଶୁଣ ହରି ପଣ୍ଡୁ ରାଜା ନାଶ ହୋଇଗଲା
ପୁତ୍ର ଥାଉ ଏତେ ଶାସ୍ତି ତା କପାଳେ ଥିଲା ।
କୃଷ୍ଣଙ୍କୁ କହନ୍ତେ ହଳୀ କଥା ଏହିପରି
ନାରଦଙ୍କୁ ସୁମରଣା କଲେକ ଶ୍ରୀହରି ।
ବ୍ରହ୍ମାଙ୍କର ସୁତ ମନଯାନକୁ ଆରୋହି
ତତକ୍ଷଣେ ଦ୍ୱାରକାରେ ପ୍ରବେଶିଲେ ଯାଇ ।
ନାରଦଙ୍କୁ ଦେଖି ପୂଜା କଲେ ଦେବ ଭ୍ରାତ
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ବିଧିସୁତ ।
ହସ୍ତିନାପୁରକୁ ତୁମ୍ଭେ ଏତକ୍ଷଣି ଯିବ
କଥାଛଳେ ଯମପୁର ଯିବାର କହିବ ।
ଯୁଧିଷ୍ଠିର ପଚାରିଲେ ପିତାଙ୍କ ବାରତା
ଆମ୍ଭ ପାଇଁ କହିବ ଯେ ତୁମ୍ଭେ ମିଥ୍ୟାକଥା ।
ଏପରି କହିବ ତୁମ୍ଭେ ଯୁଧିଷ୍ଠି ଦେବଙ୍କୁ
ତିନି ପାଦଛର ତଳେ ଦେଖିଲୁ ପଣ୍ଡୁଙ୍କୁ ।
ସେ ପୁଚ୍ଛିଲେ ପିତା ମୋର କଲେ କେଉଁ ପାପ
ବ୍ରହ୍ମହତ୍ୟା କଲା ବୋଲି କହିବ ସ୍ୱରୂପ ।
ଅନ୍ୟ କିଛି ପାପ ନାହିଁ କହିବ ତାହାଙ୍କୁ
ଏପରି କହନ୍ତେ ହରି ନାରଦ ଋଷିଙ୍କୁ ।
ଆଜ୍ଞା ପ୍ରମାଣେ ମହର୍ଷି ନାରଦ ଚଳିଲେ
ସେହିକ୍ଷଣି ହସ୍ତିନାରେ ପ୍ରବେଶ ହୋଇଲେ ।

ଦୁର୍ଯ୍ୟୋଧନ ଶତଭ୍ରାତ ସେନ ସଙ୍ଗତରେ
ବସିଥିଲେ ଯୁଧିଷ୍ଠିଙ୍କ ସିଂହାସନ ପରେ ।
ଯୁଧିଷ୍ଠିର ସଙ୍ଗତରେ ସେନ ସାନଭାଇ
ଉଚ୍ଚ ଉଚ୍ଚ ଆସନରେ ବସିଥିଲେ ତହିଁ ।
ନାରଦଙ୍କୁ ଦେଖି ସର୍ବେ ଉଠି ଧାଣ୍ଡକାରେ
ଭକ୍ତିଭରେ ପ୍ରଣମିଲେ ମୁନିଙ୍କ ପଦରେ ।
ଅର୍ଘ୍ୟ ଘେନିଣ ଶ୍ରୀକରେ ଯୁଧିଷ୍ଠିର ରାଜା
ମୁନିଙ୍କ ଦେଇ ପାଦରେ କଲେ ଉଦ୍ୟପୂଜା ।
କମଳ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ଅର୍ଘ୍ୟ ଦେଇ ପ୍ରଣମିଲା ସେ ମାଡଯୋଡନ ।
ଆବର ଭାଇମାନେ ଯେ ପ୍ରଣାମ ଭଣିଲେ
ସ୍ୱକଣ୍ଠି ଆସନେ ମୁନିବରେ ବସାଇଲେ ।
କ୍ଷଣହସ୍ତେ ଆଶୀର୍ବାଦ କଲେ ତପୋଧନ
ସମସ୍ତ ସମ୍ପଦ ଖଣ୍ଡି ସୁଖେ କଣ୍ଠ ଧନ ।
ଋଷି ବୋଇଲେ ସର୍ବେ ତ ଅଛ କୁଶଳରେ
ଶତ୍ରୁଙ୍କର ଉପଦ୍ରବ ନାହିଁ ତ ରାଜ୍ୟରେ ।
ପ୍ରଜା ଆଉ ସହୋଦର ତୁମ୍ଭର ଭରସା
ଏ ସମସ୍ତ କୁଶଳରେ ଅଛନ୍ତି ନା ରାଜା ।
ତପସ୍ୱୀମାନେ ଅରିଷ୍ଟ ତ ନ କରନ୍ତି ଦୈତ୍ୟେ
ଆଜ୍ଞାବର୍ତ୍ତୀ ଅଛନ୍ତି ନା ପରଜା ସମସ୍ତେ ।
ଦୈତ୍ୟଙ୍କର ଉପଦ୍ରବ ନ ହୁଏ ତ ବନେ
ଅଛନ୍ତି ଆହ୍ଲାଦ ଦ୍ୟନ୍ତଟିକ ତପୋଧନେ ।
ଯଥାକାଳେ ମେଘମାନେ ବୃଷ୍ଟି ତ କରନ୍ତି
ବସୁମତୀ ହେଉଛି ତ ବହୁ ଫଳବତୀ ।
ତୁମ୍ଭ ସୋଦର ସୋଦରେ ନ ହୁଅନ୍ତି ଦ୍ୱନ୍ଦ୍ୱ
ରାଜ୍ୟଲୋକେ ବଞ୍ଚନ୍ତି ତ ହୋଇଣ ଆନନ୍ଦ ।
ସର୍ବ ସୁବିଧାରେ ତୁମ୍ଭେ ରହିଛ ତ ରାଜା
କୁଶଳରେ ଅଛନ୍ତି ତ ତୁମ୍ଭ ଜନ ପ୍ରଜା ।
ଯାହା ବାଞ୍ଛାକର ତାହା ହୁଅଇ ତ ସିଦ୍ଧି
କୃଷିକାର୍ଯ୍ୟମାନଙ୍କର ନୁହେଁ ତ ଅବଧି ।
ଦେଶାନ୍ତରେ ବାରତା ତ ଜଣାଅନ୍ତି ଭଲେ
ବଦେକ ପେଷି ବୃଥି ତ ଋସ୍ୱ କେ ଆସିଲେ ।
ମୁନିଙ୍କ ବଚନେ ବୋଲେ ଧୃତମଷ୍ଟ ବାଳ
ତୁମ୍ଭର କଲ୍ୟାଣେ ମୁନି ସମସ୍ତ କୁଶଳ ।
ଯୁଧିଷ୍ଠି ବୋଇଲେ ମୁନି କାହିଁ ଯାଇଥିଲ
କେଉଁଠାରେ କି କି କଥା ଦେଖିଣ ଅଇଲ ।

ନାରଦ ବୋଇଲେ ତୁମ୍ଭେ ଶୁଣ ଯୁଧିଷ୍ଠିର
ଏମନ୍ତି ଯାଇଥିଲି ସଂଯମନୀପୁର ।
ଯଧିଷ୍ଠି ବୋଇଲେ ଗଲ ସଂଯମନୀ ଆହେ
ଆମ୍ଭର ପିତା ସେଠାରେ ନନ୍ତ ତା କୁଶଳେ
ଯୁଧିଷ୍ଠ ଙ୍କ ବାକ୍ୟ ଶୁଣି ନାରଦ ଭଣନ୍ତେ
ଏବେଶକଣ ବର୍ଣ୍ଣ ଦେଖ ତବ ପିତା ମନେ ।
ଯହିଁ ଯମ ତେଜରାଜ ଗହଣେ ଯାତନାଭ
ଛନ୍ତି ତହିଁ ଭୋଗନ୍ତି ଘୋର ମହାରାଜ ।
ଯୁଧିଷ୍ଠି ପଚାରିଲେ କହ ଆହେ ମହାମୁନି
ଯମ ଏତେ ଶାସ୍ତି ଦିଏ କେଉଁ ଦୋଷ ଦେଖି ।
ଋଷି ବୋଇଲେ ତୋ ପିତା ବ୍ରହ୍ମହତ୍ୟା କଲା
ଅଗ୍ନିତା ମହାଋଷିଙ୍କ ଶରେ ମାରିଥିଲା ।
ସେହି ଦୋଷ ଧରି ଶାସ୍ତି ଦିଏ ଜନ୍ମଇଶ
ମହା ଉଷମ ଅଟଇ ବ୍ରହ୍ମହତ୍ୟା ଦୋଷ ।
ଏହା ଶୁଣିଣ ତପିଲ ବର୍ଣ୍ଣି ନାରଦର
ଦୁର୍ଯ୍ୟୋଧନ ତମି ବୋଲେ ଦ୍ୱିଜକଥା ଶାର ।
ଗୋଲକଗୁଣ୍ଡା ଅଟନ୍ତି ସେ ଏ ଜାରଜାତକ
ପୁଣି କରନ୍ତି ବ୍ରହ୍ମହତ୍ୟାର ପାତକ ।
ଏମନ୍ତ ପାତକୀ ମୁଖ ଚାହିଁବା ଭେଦନେ
ଏହା କହି ଆସ୍ଥାନରୁ ଉଠିଲେ ସମସ୍ତେ ।
ଯୁଧିଷ୍ଠି ବିମନ ହେଲେ ମନଭାବ୍ୟ ଶୁଣି
ଅର୍ଜ୍ଜୁନଙ୍କ ଚାହିଁ ଆଜ୍ଞାଦେଲେ ଧର୍ମମଣି ।
ବୋଇଲେ ଏକ୍ଷଣି ଯାଅ ଦ୍ୱାରକାପୁରକୁ
ବହନ ଭେଟଣ ଆଣ ଶ୍ରୀଜଗନ୍ନାଥଙ୍କୁ ।
ସେହି କୃପାସିନ୍ଧୁ ମୋତେ ହବୁଦେଲେ ଯାହା
ଉଚିତ କରିବା କାର୍ଯ୍ୟ ଆଜ୍ଞାଦେବେ ଯାହା ।
ସର୍ବ ଭରସା ଆମ୍ଭର ସେହି ଦୟାମୟ
ତାଙ୍କୁ ଦର୍ଶନ କରିବା ଏଥିକି ଉପାୟ ।
ଯୁଧିଷ୍ଠି ଦେବଙ୍କ ମୁଖୁ ଏହି ବାକ୍ୟ ଶୁଣି
ଯେ ଆଜ୍ଞା ବୋଲି କହିଲେ ବୀର ପାର୍ଥମଣି ।
ହେ ପାଣ୍ଡବ ଭବ ହରି କମଳଲୋଚନ
ଦୁଷ୍ଟ ଗର୍ବ ଖର୍ବକାରୀ କପଟ ଭଞ୍ଜନ ।
ଯାକୁ ଯେ ବୁଦ୍ଧି ଦେଇଛ କାର୍ଯ୍ୟ ସେହିପରି
କରଇ ଯେ ବୁଦ୍ଧିଦାତା ତୁମ୍ଭେ ସବୁଙ୍କର ।
କେହି ଗର୍ବହିଂସା ଆଦି କୁକର୍ମରେ ରତ
କେହି ତୁମ୍ଭ ପାଦେ ମନ ମଜ୍ଜାଏ ସତତ ।
ଭକତ କାହାକୁ ରାଜା କାକୁ ତା ପରଜା
କେ ପାଦେ ସେବଇ କେହି ପାଏ ବର୍ଯ୍ୟପୂଜା
ଏ ସର୍ବ ଘଟଣା କରି ତୁମ୍ଭେ ଦୟାମୟ
ନାହିଁ ମୋର ତୁମ୍ଭ ବିନା ଆନ କେ ସହାୟ
ଅକ୍ଷମୀ ହୁଅଇ କ୍ଷମ ତୁମ୍ଭ କରୁଣାରେ
ତାରେ ଦୟାକର ପ୍ରଭୁ ଶାରଳା ଦାସରେ ।

---

## ଅର୍ଜ୍ଜୁନ ଦ୍ୱାରକାରୁ ଶ୍ରୀକୃଷ୍ଣଙ୍କ ଆନୟନ ଓ ରାଜସୂୟ ଯଜ୍ଞର ପରାମର୍ଶ

ଏଥିଅନନ୍ତରେ କଥା ଶୁଣ ଦଣ୍ଡଧର
ଯୁଧିଷ୍ଠି ଆଜ୍ଞାରେ ପାର୍ଥ ହୋଇଲେ ବାହାର
ରଥେ ବସି ଚଳିଲେ ପବନ ଗତିରେ
ହରିନାମ ଘୋଷୁଥାନ୍ତି ସର୍ବଦା ଅନ୍ତରେ ।
ତେରଶ ଯୋଜନ ପଥ ଚଳି ବଡ଼ାବେଗ
ଦ୍ୱାରକାରେ ପ୍ରବେଶିଲେ ବୀରବର ପାର୍ଥ ।
ଦ୍ୱାରପାଳମାନ ଦେଖି ଦ୍ୱାର ଛାଡ଼ିଦେଲେ
ଧନଞ୍ଜୟ ହରି ଚନ୍ତ୍ର ଭିତରକୁ ଗଲେ ।
ଚଉଦଂଡ ଦ୍ୱାର ଜାଣି ଗଲେ ଧନଞ୍ଜୟ
ସତ୍ୟଭାମା ପୁରେ ଭଜେ ପ୍ରଭୁ ଦେବରାୟ ।
ସତ୍ୟଭାମାକୁ ଘେନିଣ ପ୍ରଭୁ ବନମାଳୀ
ବିନୋଦରେ ବସିଛନ୍ତି ତହିଁ ପଶା ଖେଳ ।
ବାସୁଦେବ ସତ୍ୟଭାମା ଖେଳିବା ସମୟେ
ସେ ଦ୍ୱାରେ ପ୍ରବେଶ ହେଲେ ବୀର ଧନଞ୍ଜୟେ
ସତ୍ୟଭାମାଙ୍କୁ ଦେଖିଣ ଧନ୍ୱୀ ସବ୍ୟସାଚୀ
ନ ପଶିଣ ଭିତରକୁ ସଙ୍କୋଚେ ରହିଛି ।
ତାନ ଛଡ଼ି ସତ୍ୟଭାମା ଦେଖିଲେ ଅର୍ଜ୍ଜୁନ
ପ୍ରତ୍ୟକ୍ଷରେ ନାରାୟଣ ରୂପ ବର୍ଣ୍ଣି ଚହ୍ନି ।
ପାର୍ଥଙ୍କୁ ନ ଚହ୍ନି ସତ୍ୟ ବୋଇଲେ ଏମନ୍ତ
ମୋହଠାରେ ମାୟା ତୁମ୍ଭେ କଲ ଯଦୁନାଥ ।
ଏକମୂର୍ତ୍ତି ପଶାଖେଳ ମୋହର ସଙ୍ଗରେ
ପୁଣ ସେହି ମୂର୍ତ୍ତି ଧରି ଉଭେ ଅଛ ଦ୍ୱାରେ ।
ଜାଣିଛୁ ଶୁଣିଛୁ ମୁହିଁ ତୁମ୍ଭେ ମାୟାଧର
ଏତେ ମାୟା ମୋହଠାରେ କାହିଁପାଇଁ କର

ଏହା ଶୁଣି ଅନାଇଲେ ମୁଖ ଟେକି ହରି
ଦେଖିଲେ ଦ୍ୱାରେ ଅର୍ଜୁନ ଉଭା ଧନୁ ଧରି ।
ପାର୍ଥଙ୍କୁ ଦେଖି ଡାକିଲେ ପ୍ରଭୁ ଯଦୁନାଥ
ଶୁଣି ପାର୍ଥ ତାଙ୍କ ପାଦେ ଦେଲେ ପ୍ରଣିପାତ ।
ଉଠଇଲୁ ଆସ ତାତ ତୁ ମୋ ପ୍ରାଣସଖା
ସତ୍ୟଭାମାକୁ ଦେଖିଣ କପାଁ କରୁ ଶଙ୍କା ।
ତୁହି ଯେ ଅଟୁ ମୋହର ପ୍ରାଣ ପଞ୍ଚଭୂତ
ବକ୍ଷସ୍ଥଳର ପଦକ ଆସରେ ତୁରିତ ।
ନିଜେ ହରି ଆସି ନେଲେ ଆଲିଙ୍ଗନ କରି
ଆଦରେ ମୁଖେ ଚୁମ୍ବନ ଦେଇ ହସ୍ତ ଧରି ।
ସିଂହାସନେ ବସାଇଲେ ତାଙ୍କୁ ଯଦୁପତି
ଶ୍ରଦ୍ଧାରେ ତାଙ୍କର ପିଠି ଆଉଁଷି ଢଅନ୍ତି ।
ପୁଣି ପ୍ରଭୁ ସତ୍ୟଭାମା ମୁଖ ଚାହିଁ ଭାଷି
ରୁକ୍ମିଣୀ ଅଗ୍ରତେ ବେଗେ କହ ଗୋ ପ୍ରେୟସି
ପାକକୁ ଯୋଗାଡ଼ କରି ରାନ୍ଧନ୍ତୁ ସେ ଅନ୍ନ
ଆମ୍ଭପୁରେ ଅଭ୍ୟାଗତ କୁନ୍ତୀଙ୍କ ନନ୍ଦନ ।
ପ୍ରଭୁ ବାକ୍ୟେ ସତ୍ୟଭାମା ସେ ସ୍ଥାନରୁ ଗଲେ
ରୁକ୍ମିଣୀ ଅଗ୍ରତେ ପ୍ରଭୁ କହିବା କହିଲେ ।
ରୁକ୍ମିଣୀ ପାର୍ଥ ଆସିବା ବାରତାକୁ ଶୁଣି
ଅତି ହରଷରେ ପାକ କଲେ ସେହିକ୍ଷଣି ।
ଆସ୍ଥାନୁ ଉଠି ଆସିଣ ନିଜେ ଚକ୍ରଧାରି
ତୈଳଅର୍ଦ୍ଦନା ଲେପିଲେ ପାର୍ଥ ସ୍ନାନ ସାରି ।
ତାଙ୍କୁ ନେଇ ପୁଣି ନାନା ଆଭରଣ ଦେଲେ
ସୁବର୍ଣ୍ଣର ସିଂହାସନ ପରେ ବସାଇଲେ ।
ସତ୍ୟା ରତ୍ନଝରି ଭରି ସୁବାସିତ ପାଣି
ତାହାଙ୍କର ସାକ୍ଷାତରେ ଥୋଇଦେଲେ ଆଣି
କାଳିନ୍ଦୀ ଆଲଟ ଧରି ସର୍ଧିରେ ଢଅନ୍ତି
ସୁବର୍ଣ୍ଣପାତ୍ରେ ରୁକ୍ମିଣୀ ଅନ୍ନ ପରଷନ୍ତି ।
ଷଡ଼ରସର ଯୋଗାଡ଼ ସୁଧାସମ ଜାଣି
ଭୋଜନ କରନ୍ତି ତହିଁ ପାର୍ଥ ଯଦୁମଣି ।
ଭୋଜନ ସାରିଣ ଦୁହେଁ ଆଚମନ କଲେ
ସ୍ୱର୍ଣ୍ଣପଲଙ୍କେ ଶ୍ରୀକୃଷ୍ଣ ଅର୍ଜୁନ ଶୋଇଲେ ।
କାଳିନ୍ଦୀ ଯେ ସତ୍ୟଭାମା ଚରଣ ଚାପନ୍ତି
ଜାମ୍ବବତୀ ସୁକେଶୀ ଯେ ତାମ୍ବୁଳ ଯୋଗାନ୍ତି ।
ବାରାଙ୍ଗନାଏ କରିଲେ ଆଗେ ନୃତ୍ୟ ଗୀତ
କିଛିକ୍ଷଣେ ନୃତ୍ୟଗୀତ ହେଲା ସମାପତ ।

ତହୁଁ ଗୋବିନ୍ଦ ପୁଚ୍ଛିଲେ କହ ଫାଲଗୁନ
ଠାକୁରଙ୍କ କେଉଁ ଆଜ୍ଞା ଅଇଲୁ ତୁ ସେନ ।
କିବା ମୋର ସ୍ୱଜ ପୌକ୍ଷୀ ଦେଖିବା ନିମନ୍ତେ
ଦ୍ୱାରାରଥେ ପଦବ୍ରଜେ ଆସିଲୁ ତୁ ଏଥେ ।
କିବା ଅବା ଠାକୁରଙ୍କ ଅଛି କେଉଁ କାର୍ଯ୍ୟ
ପୁଣି ପୁଣି ପଚାରନ୍ତି ପ୍ରଭୁ ଦେବରାଜ ।
ପାର୍ଥ ବୋଇଲେ ପଲଙ୍କ ଉପରୁ ଓହ୍ଲାଇ
ଯେ କାରଣେ ଅଇଲି ମୁଁ ଶୁଣନ୍ତୁ ଗୋସାଇଁ ।
ନାରଦ ମହର୍ଷି ଦିନେ ଗଲେ ଆମ୍ଭ ପୁରି
କାହୁଁ ଆସିଲ ପୁଚ୍ଛିଲେ ଜ୍ୟେଷ୍ଠ ସହୋଦର
ନାରଦ କହିଲେ ଯମଭୁବନର କଥା
ଆମ୍ଭର ପିତାଙ୍କୁ ଯମ ଦିଏ ବହୁ ବ୍ୟଥା ।
ତାହା ଶୁଣି ଯୁଧିଷ୍ଠିର ହୋଇଲେ ଦୁଃଖିତ
ଉପହାସ କଲେ ତହୁଁ ଧୃତରାଷ୍ଟ୍ର ସୁତ ।
ଏହା ଶୁଣି ଯୁଧିଷ୍ଠିର ପେଷିଲେ ଏଥକୁ
ବେଗ ହୋଇ ଚାଲ ପ୍ରଭୁ ଇନ୍ଦ୍ରପ୍ରସ୍ଥକୁ ।
ଶୁଣି ବାସୁଦେବ ବହୁ ସାନନ୍ଦ ହୋଇଲେ
ଯିବାକୁ ସଜ ହୋଇଣ ତହୁଁ ବାହାରିଲେ ।
ଗରୁଡ଼କୁ ସୁମରଣା କରିଲେ ତୁରିତ
ରମ୍ୟକଦ୍ୱୀପୁ ଅଇଲା ବିନତାର ସୁତ ।
ବିଜେ କଲେ ନାରାୟଣ ବୈନତେୟ ପିଠି
ପାଶରେ ଯେ ବସାଇଲେ ପାଣ୍ଡବ କିରୀଟି ।
ଉଡ଼ିଲା ଗରୁଡ଼ ପ୍ରଭୁ ବସିଲେ ପୃଷ୍ଠରେ
ଘଡ଼ିକେ ପ୍ରବେଶ ହେଲା ହସ୍ତିନା ନଗରେ ।
ଯେତେଦୂରୁ ଦେଖିଲେ ସେ ଯୁଧିଷ୍ଠି ଆସ୍ଥାନ
ତେତେଦୂରୁ ପ୍ରଣମିଲେ କୃଷ୍ଣ ଅରଜୁନ ।
ଶୁଭ ଆଶୀର୍ବାଦ କଲେ ଧର୍ମଙ୍କ ନନ୍ଦନ
ଆସ ଆସ ପାଶେ ଆସ ପଙ୍କଜଲୋଚନ ।
ସ୍ନେହରେ ଡାକନ୍ତେ ପାଶେ ଗଲେ ଯଦୁସାଇଁ
ବିନୟରେ କର ଯୋଡ଼ି ଶ୍ରୀମୁଖରେ ଚାହିଁ ।
ପୁଣ ପୁଣ ଦଣ୍ଡାମଣ୍ଡ ଭକ୍ତି ମାନସରେ
ଅଷ୍ଟାଙ୍ଗେ ନମିଲେ ତାଙ୍କ ଚରଣ ତଳରେ ।
ଯୁଧିଷ୍ଠିର ଆଜ୍ଞା ଦେଲେ ସାଅରେ ନକୁଳ
ଚକ୍ଷୁ ଢୋଳ ଶ୍ରୀକୃଷ୍ଣଙ୍କୁ ଆଣ କରି କୋଳ ।
ମାଦ୍ରୀର ନନ୍ଦନ ଗଲା ଆଜ୍ଞା ପରମାଣେ
ଶ୍ରୀକୃଷ୍ଣଙ୍କୁ କୋଳ କରି ଆଣିଲା ତକ୍ଷଣେ ।

ଉଠିଲେକ ନାରାୟଣ ଧର୍ମ ଆଜ୍ଞା ପାଇ
ଉଭା ହେଲେ ନମ୍ରଭାବେ ପଞ୍ଚଧୁଆଁ ଦେଇ ।
ତଦପରେ ପୁଚ୍ଛାକଲେ ଦେବ କରଯୋଡ଼ି
କେଉଁକାର୍ଯ୍ୟେ ଡକାଇଲେ କହନ୍ତୁ ତା ଫେଡ଼ି
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଦାମୋଦର ।
ନାରଦଙ୍କ ବାକ୍ୟେ ଥୟ ନୁହେ ମୋ ଶରୀର
ଏବେ ହରି ନାରଦଙ୍କୁ କର ସୁମରଣ ।
ସେ କହିବେ ତୁମ୍ଭ ଆଗେ ସକଳ ଘଟଣା ।
ଯୁଧିଷ୍ଠିର ବାକ୍ୟେ ହରି ନାରଦେ ଚିନ୍ତନ୍ତେ
ସେକ୍ଷଣି ନାରଦ ସ୍ଥିତ ହରିଙ୍କ ଅଗ୍ରତେ ।
ଲକ୍ଷ୍ମୀପତି ପଚାରିଲେ ନାରଦଙ୍କୁ ସ୍ତୁତି
କହ ଆହେ ଋଷି କେଉଁ ବିଷୟ ଅଛଇ ।
ନାରଦ ବୋଇଲେ ବଡ଼ ଦୁଃଖର ବିଷୟ
କ କହିବି ତୁମ୍ଭ ଆଗେ ପ୍ରଭୁ ଦୟାମୟ ।
ଦିନେ ମୁହିଁ ସଂଯମନୀପୁରେ ଯାଇଥିଲି
ଏହାଙ୍କ ପିତା ପଣ୍ଡୁଙ୍କୁ ସେଠାରେ ଦେଖିଲି ।
ବ୍ରହ୍ମହତ୍ୟା ଦୋଷ ଯୋଗୁଁ ଦୁଷ୍ଟ ଯମଦୂତ
ପଣ୍ଡୁଙ୍କୁ ଛୁଡ଼ା କରଇ ଦିଏ ଏହି ଶାସ୍ତି ।
ପୁନରପି ଏହା ଶୁଣି ଦେବ ଯୁଧିଷ୍ଠିର
ହାୟ କହି ଲୋଟିଲେ ସେ ଧରଣୀ ଉପର ।
କୋଳକରି ଉଠାଇଲେ ତାଙ୍କୁ ଜଗନ୍ନାଥ
ଏଥିପାଇଁ ଆହେ ଦେବ ନ ହୁଅ ଚିନ୍ତିତ ।
ଯୁଧିଷ୍ଠି ବୋଇଲେ ଆହେ ଜଗତ ଅଧିପତି
ମୋର ସମ ପୁତ୍ର ଥାଇ ପିତାଙ୍କୁ ଏ ଶାସ୍ତି ।
ଏହା ଶୁଣି ସହ୍ୟ ହେବ କାହାର ଶରୀର
ହେବ ତୀର୍ଥବାସୀ ମୁହିଁ ହୋଇ ଦେଶାନ୍ତର ।
ଗଙ୍ଗା ଗୟା ଗୋଦାବରୀ ଆଉ ବୈତରଣୀ
ନର୍ମଦା ସିନ୍ଧୁ କାବେରୀ କେଦାର ତ୍ରିବେଣୀ ।
ଫଲ୍‌ଗୁ ସ୍ୱର୍ଣ୍ଣରେଖା ଭଦ୍ରା ମଣିକର୍ଣ୍ଣୀ ତୀର୍ଥେ
ଭ୍ରମିବି ଏ ସର୍ବତୀର୍ଥେ ପିତା ମୁକ୍ତି ଅର୍ଥେ ।
ଜଗତମୋହନ କୃଷ୍ଣ ପତିତୋଦ୍ଧାରଣ
ଭାଇ,ସପୁତ୍ରଙ୍କୁ ତୋତେ କଲି ସମର୍ପଣ ।
ଦୟାକରି ରକ୍ଷିଥିବୁ ତାଙ୍କୁ ନାରାୟଣ
ଯାଉଛି ମୁଁ ପିତାଙ୍କର ଗତିର କାରଣ ।
ଧର୍ମଙ୍କୁ ବୋଧି ନାରଦେ ପୁଛିଲେ ଶ୍ରୀହରି
ବ୍ରହ୍ମହତ୍ୟାରୁ ତରିବେ କେଉଁ କାର୍ଯ୍ୟ କରି ।

ନାରଦ ବୋଇଲେ ହରି ଅଛି ପ୍ରତିକାର
ତହିଁର କାରଣ ତୁମ୍ଭେ ଶୁଣ ଚକ୍ରଧର ।
ଅନ୍ନଦାନ ଯେବେ କେହି ଦିଏ ଅନୁକ୍ଷଣ
ତେବେ ବ୍ରହ୍ମହତ୍ୟା ଦୋଷୁଁ ହେବ ପରିତ୍ରାଣ ।
ନତୁବା ଯେ ଦୋଷୀ ସେହି ଯେବେ ବ୍ରହ୍ମଜ୍ଞାନ
ସାଧିପାରେ ସେ ହୋଇବ ପାପରୁ ମୋଚନ ।
ନୋହିଲେ ଯେବେ ପାରଇ ବହୁତୀର୍ଥ କରି
କିବା ରଣେ ଯେଙ୍କେ ମରେ ଅସ୍ତ୍ର ଶସ୍ତ୍ର ଧରି ।
କି ଅବା ପ୍ରୟାଗଜଳେ ଦେବେ ଯେବେ ଝାସ
ତାହାର ଖଣ୍ଡନ ହେବ ବ୍ରହ୍ମହତ୍ୟା ଦୋଷ ।
ନାରଦ ବୋଇଲେ ତୁମ୍ଭେ ଶୁଣ ଦେବରାୟ
ବ୍ରହ୍ମହତ୍ୟା ଦୋଷକୁ ଯେ ଏ ପାଞ୍ଚ ଉପାୟ ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ଭବତ୍ରାହି
ପିତା ଯେ ଦୁଃଖ ଭୋଗନ୍ତି ଯମପୁରେ ରହି ।
ମୁଁ ହିଁ ସ୍ୱା କଡ଼ପାରିବ ଉଦ୍ଧାରିବେ ସେହୁ
ଜଣାଯାଏ ତାଙ୍କ ଗତି ନୋହିବ ଯେ ଆଉ ।
କାହାକୁଲେ ଯୁଦ୍ଧ ମୁହିଁ କରିବି ହେ ହରି
ମୋହର ସେପରି କେହି ନାହିଁ ତ ବଇରି ।
ବ୍ରହ୍ମଜ୍ଞାନ ସାଧିବାକୁ ଶକ୍ତି ନାହିଁ ମୋର
କିପରି ତ୍ରାଣ ପାଇବେ ମୋହର ପିଅର ।
ସବୁବେଳେ ଦେଉଥିବି ଅବା ଅନ୍ନଦାନ
ତାହା କରିବାକୁ ନାହିଁ ମୋର ତେତେ ଧନ
ଧୃତରାଷ୍ଟ୍ର ପୋଷୁଛନ୍ତି ଅନ୍ନବସ୍ତ୍ର ଦେଇ
ଅନ୍ନଦାନ ଦେବାପାଇଁ ଶକ୍ତି ହେବ କାହିଁ ।
ପ୍ରୟାଗେ ଝାସିବି ଯେବେ ପିତାଙ୍କ ନିମନ୍ତେ
ଆତ୍ମଘାତୀର ପାତକ ଲଗିବ ଯେ ମୋତେ
ଜାଣୁ ଜାଣୁ ଏହା ମୁହିଁ କରିବି କେମନ୍ତ
ମୋହାର ଏ ଗୁରୁକାର୍ଯ୍ୟ ନୋହିବ ସାଧିତ ।
ପାଞ୍ଚଟିଅ କରି ଆମ୍ଭେ ଯିବୁ ପାଞ୍ଚଭାଇ
ଆସିବୁ ପିତାଙ୍କ ଦୋଷ ଯେତେଦିନେ ଯାଇ ।
ଧୃତରାଷ୍ଟ୍ର ପୁତ୍ରଙ୍କୁ ମୁଁ ଦେବି ରାଜ୍ୟଭାର
ତାଙ୍କୁ ଦୟା କରିଥିବ ତୁମ୍ଭେ ଚକ୍ରଧର ।
ଯୁଧିଷ୍ଠିର ବାକ୍ୟ ଶୁଣି ବୋଇଲେ ଶ୍ରୀବତ୍ସ
ଅନ୍ନଦାନ ଦିଅ ତୁମ୍ଭେ ନ ଭାଳ ଯେ କଛୁ ।
ନାରଦ ବୋଇଲେ ଯେବେ ଅନ୍ନଦାନ ଦେବ
ତେବେ ରାଜସୂୟ ଯଜ୍ଞ କର ଧର୍ମ ଦେବ ।

ନାରଦଙ୍କ ବାକ୍ୟ ଶୁଣି ବୋଇଲେ ଅଚ୍ୟୁତ
କହ ରାଜସୂୟ ଯଜ୍ଞ ବିଧାନ କେମନ୍ତ ।
ନାରଦ ବୋଇଲେ ଶୁଣ ଆହେ ନରପତି
ଲକ୍ଷେକ ନରପତିଙ୍କୁ ଆଣିବ ନିମନ୍ତ୍ରି ।
ସବୁ ରାଜାଏ ଆସିବେ ସେଥି ସୈନ୍ୟ ଘେନି
ବାଲଖିଲ୍ୟ ସହିତରେ ଆସିବେ ସେ ମୁନି ।
ଷୋଳବିଧ ପରଯନ୍ତେ ହୋଇବ ଆହୁତି
ଶୌରି ଗୌରି ନବନିଧି ବ୍ରହ୍ମଣା ଏ ହୁତ ।
ଯେ ଯାହା ମାଗିବ ତାହା ଦେଉଥିବ ଦାନ
ଶତ୍ରୁମିତ୍ର ସମସ୍ତଙ୍କୁ କରିବ ସମାନ ।
ଯୁଧିଷ୍ଠି ବୋଇଲେ ଶୁଣ ଦେବ ମଧୁହାରି
ଏହି ବିଧାନକୁ ଶକ୍ତି ନାହିଁ ତ ମୋହର ।
ଧନାଢ୍ୟଗଣଙ୍କୁ ମୁହିଁ ନୁହଇ ରାଜନ
ଅନୁକ୍ଷଣେ ଦାନ ମୁହିଁ କରିବି କେସନ ।
ମୋ ଦ୍ୱାର ହୋଇ ନ ପାରେ ରାଜସୂୟ ଯଜ୍ଞ
ତୀର୍ଥବାସୀ ହେବି ମୁହିଁ ଆଜ୍ଞା ମୋତେ ଦେବା
ଗୋବିନ୍ଦ ବୋଇଲେ କିପାଁ କହୁଛ ଏମନ୍ତ
ଏଥେ ଥାଇ ତାଙ୍କ ପାପ ଯେବେ ହେବ ହତ
ତେବେ କାହିଁପାଇଁ ଯିବ ବହୁତ ଦୂରକୁ
ନାରଦ ବୋଇଲେ ଚିନ୍ତା ନ କର ଧନକୁ ।
ଯାହାକୁ ସପକ୍ଷ ଛନ୍ତି ପ୍ରଭୁ ଦେବରାଜା
ଲକ୍ଷ୍ମୀଦେବୀ ଯାହାଙ୍କର ଅଟନ୍ତି ଭାରିଯା ।
ସେହି ପ୍ରଭୁ ଯାଙ୍କୁ ଭୃତ୍ୟଗଣରେ ଖଟନ୍ତି
ଅନ୍ନ ଭୋଜନ ଦେବାକୁ କିସ ତାର ଖେଦ ।
ନାରଦେ ବୁଝିଣ ଧର୍ମ ନୃପତି ପୁଚ୍ଛନ୍ତି
ଲକ୍ଷେକ ରାଜା କି ଏହି ପୃଥ୍ୱୀରେ ଅଛନ୍ତି ।
ବଦନ୍ତି ଯେ ବ୍ରହ୍ମଋଷି ଶୁଣ ବାସୁଦେବ
ବୀରଗୁଣା ଲକ୍ଷେ ରାଜା ପୃଥ୍ୱୀରେ ପାଇବ ।
ପଚାଶ ସହସ୍ର ରାଜା ଛନ୍ତି ପଶ୍ଚିମରେ
ଏକୋନ ପଚାଶସହସ୍ର ଛନ୍ତି ଉତ୍ତରରେ ।
ପୂର୍ବଦିଗେ ବୀରଗୁଣା ପଚାଶ ହଜାର
ଏକୋନ ପଚାଶସହସ୍ର ଦକ୍ଷିଣ ଦିଗର ।
ଏହିରୂପେ ବୀରଗୁଣା ଲକ୍ଷେ ରାଜା ଛନ୍ତି
ଏଥିମଧ୍ୟେ ଶାନ୍ତ ଆଉ ଦୁଷ୍ଟ ଯେ ଅଛନ୍ତି ।
ବୀରଗୁଣା ଲକ୍ଷେ ରାଜା ଥିବାର କହିଲେ
ଏଥିରେ କି ଯାଗ ହେବ ଯୁଧିଷ୍ଠି ପୁଚ୍ଛିଲେ ।

ନାରଦ ବୋଇଲେ ଲକ୍ଷେ ଯେବେ ଊଣା ହୋଇ
ରାଜସୂୟ ଯାଗ ନ ହୋଇ ଧର୍ମପ୍ରାପ୍ତ ନୋହି ।
ଗୋବିନ୍ଦ ବୋଇଲେ ଦେବ କଥାଏ କରିବା
ସୁବର୍ଣ୍ଣର ବୀରଗୋଟି ରାଜା ଗଢ଼ାଇବା ।
ଯୁଧିଷ୍ଠି ବୋଇଲେ ଯାହା କହିଲ ଶ୍ରୀରଙ୍ଗ
ମୋହଦ୍ୱାର ନୁହେ କର ଏ ରାଜସୂୟ ଯାଗ ।
ଦ୍ୱାପରଯୁଗ ମନୁଷ୍ୟ ଉଚ୍ଚ ସାତ ହାତ
ବୀର ପିତୁଳାକୁ ସ୍ୱର୍ଣ୍ଣ ଲାଗିବ ବହୁତ ।
ଗୋବିନ୍ଦ ବୋଇଲେ ଦେବ ଶୁଣିମା ଗୋସାଇଁ
କେବଳ ମୂର୍ତ୍ତି ଗଢ଼ିଲେ ରାଜା ନ ବୋଲାଇ ।
ସୁବର୍ଣ୍ଣର ସହସ୍ରେ ରଥ ବେନିସହସ୍ର ହସ୍ତୀ
ବୀରସହସ୍ର ଅଶ୍ୱ ଯେ ସାଗରେ ପଦାତି ।
ଛତ୍ର ବାଦ୍ୟ ଆଦିକରି ସୁବର୍ଣ୍ଣ ନିଶାଣ
ଏପରି ହୋଇଲେ ବୋଲି ରାଜା ଏକ ଜାଣ ।
ଯୁଧିଷ୍ଠି ବୋଲେ ମୋ ଦ୍ୱାର ନୁହଇ ଏ ଯାଗ
ଏହି କଥା ଶୁଣି ମୋର ହେବ ପ୍ରାଣତ୍ୟାଗ ।
ନାରଦ ବୋଲେ ଯୁଧିଷ୍ଠି ଚିନ୍ତା ତୁ ନ କର
ସ୍ୱର୍ଣ୍ଣ ଲକ୍ଷେ ରାଜା କର ପାରନ୍ତି ଶ୍ରୀଧର ।
ଯୁଧିଷ୍ଠି ତୃପ୍ତ ହୋଇଲେ ଋଷିବାକ୍ୟ ଶୁଣି
ଲକ୍ଷେ ରାଜାଙ୍କୁ ସାଧିବ କେହ୍ନେ ଚକ୍ରପାଣି ।
ନାରଦ ବୋଇଲେ ଶୁଣ ତୁ ହେ ଧର୍ମରାୟ
ସବୁ ସୁବିଧା କରିବେ ଏହି ଦୟାମୟ ।
ବୀରଗୁଣା ହୋଇବାକୁ ଭାଳୁଛି ଗୋବିନ୍ଦ
ଛୟାଣୋଇ ସହସ୍ର ରଖିଅଛି ଜରାସନ୍ଧ ।
ପରିବନ ହୋଇବ ଯେ ତାହାର ଆହୁତି
ରାଜା ମାରି ଯଜ୍ଞକୁଣ୍ଡେ ଦେବ ସେ ସବୁନ୍ତି ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ଏହି କଥା ଶୁଣି
ତାଙ୍କୁ କି ଉପାୟ ଅଛି କହ ଚକ୍ରପାଣି ।
ହରି ବୋଇଲେ ତହିଁକି ନ ଭାଳ ଯୁଧିଷ୍ଠି
ତୁମ୍ଭପାଇଁ ରାଜାଗଣେ କରିଛି ଯେ ଗୋଷ୍ଠୀ ।
ଜରାସନ୍ଧିକୁ ମାରିଣ ରାଜା ନିମନ୍ତ୍ରିବା
ନ ଯାଇ ଏତେକ ଏକ ଠାବରେ ପାଇବା ।
ଯୁଧିଷ୍ଠି ବୋଇଲେ ହରି ତୁମ୍ଭ ବାକ୍ୟ ଶୁଣି
ଆଶ୍ଚର୍ଯ୍ୟ ହେଉଛି ମୁହିଁ କି କରିବି ପୁଣି ।
ଜରାସନ୍ଧର ଜୁଆଇଁ ନାଶ କଲ କଂସ
ସେ ରାଗେ ଘେନିଲା ତୁମ୍ଭ ମଥୁରା ପ୍ରଦେଶ ।

ଗୋପପୁର ଛାଡ଼ି ତୁମ୍ଭେ ପଳାଇଲ ଡରେ
ଦୁଇଘଇ ଲୁଚିଲ ଯେ ଗୋମନ୍ତର ଗିରେ ।
ଖଣା ଖୋଳାଇଣ ଜରା ପର୍ବତ ବେଢ଼ିଲା
ତୁମ୍ଭଯୋଗୁଁ ତହିଁ ବହୁଲୋକ ନାଶ କଲା ।
ଧର୍ମ ଉଦ୍ଧରଣ ଗଲ ତୁମ୍ଭେ ବେନଘଇ
ମଧୁବନ କଟକରେ ରହିଲ ଯେ ଯାଇ ।
କାଳଦମନ ରାଜାକୁ ବଧ କରାଇଲ
ମଧୁବନ ଭାଙ୍ଗି ବହୁଲୋକ ନାଶ କଲ ।
ଭୟରେ ପଶିଲ ଯାଇ କାଳେବର ବନେ
ତହିଁ ଧାଡ଼ିଦେଲା ଜରା ଅତିକୋପ ମନେ ।
କାଳେବର ବନ ଭାଙ୍ଗି କରନ୍ତେଣ ଧ୍ୱସ୍ତ
ପଳାଇ ପଶିଲ ଯାଇ ହିରଣ୍ୟ ପର୍ବତ ।
ଅଷ୍ଟାଦଶ ବାର ତହିଁ ସେହି ଦେଲା ଧାଡ଼ି
ଭାଙ୍ଗିଣ ଚୂରକଲା ସେ କଣସ୍ୱର ଗିରି ।
ତହୁଁ ପଳାଇଲ ଜରାସନ୍ଧର ଭୟରେ
କୁଟୁମ୍ବ ଘେନି ପଶିଲ କ୍ଷୀରୋଦ ଭିତରେ ।
କୁଶସ୍ଥଳୀ ଦ୍ୱାରବତୀ ନାମ ତାର ହେଲା
ଜଳରାଜ ତୁମ୍ଭଙ୍କୁ ଯେ ତହିଁ ଠାବ ଦେଲା ।
ବଳରାମଙ୍କ ଲଙ୍ଗଳେ ନ ମରିଲା ଜରା
ଦୁର୍ଭାର ବଳବନ୍ତ ସେ ଅଟେ ମହାବୀର ।
କେମନ୍ତ ଜରା ପୁରକୁ ଯିବା ଇଚ୍ଛା କରୁ
ଗତକଥାମାନ ହରି ମନୁ କ ପାସୋରୁ ।
ଗୋବିନ୍ଦ ବୋଇଲେ ଦେବ ତୁମ୍ଭ କାର୍ଯ୍ୟପାଇଁ
ଜରାସନ୍ଧକୁ ନ ମାରି ଗଲ ଛାଡ଼ିଦେଇ ।
ଭୀମ ଅର୍ଜୁନ ଦୁହିଁଙ୍କୁ ମୋର ସଙ୍ଗେ ଦେବ
ମାରିବା ଜରାକୁ ମନେ ଭୟ ନ କରିବ ।
ଯୁଧିଷ୍ଠି ପୁଚ୍ଛିଲେ ସହଦେବଙ୍କ ବଦନ
ଜରା ବଧ ପାରିବେ କି କହ ଜନାର୍ଦ୍ଦନ ।
ସହଦେବ ବୋଇଲେ ତା ଜାଣନ୍ତି ଅଚ୍ୟୁତ
ଜରା ମୃତ୍ୟୁଭେଦ ଅଛି ଭୀମସେନ ହସ୍ତ ।
ସହଦେବ ବାକ୍ୟ ଶୁଣି ଛାଡ଼ିଲେ ସେ ଭ୍ରାନ୍ତ
ଜରାପୁରେ ଯିବାପାଇଁ ସଜ ଶିରିପତି ।
ଭୀମ ଅର୍ଜୁନଙ୍କୁ ଘେନି ଦେବ ଲକ୍ଷ୍ମୀପତି
ଯୁଧିଷ୍ଠିଙ୍କ ପାଦପଦ୍ମେ ପ୍ରଣିପାତ କଲେ ।
କଲ୍ୟାଣ ବାଞ୍ଛିଲେ ତାଙ୍କୁ ଦେବ ଧର୍ମସୁତ
ବାଞ୍ଛା ସିଦ୍ଧହେଉ ତରଆସ୍ତୁ ଘେନ ବର୍ତ୍ତି ।
ତୁହି କରୁଣା ସାଗର ପ୍ରଭୁ ପୀତବାସ
ରିପୁମର୍ଦ୍ଦନ ନାଥ ତୁ ତୋତେ ମୋର ଆଶ ।
ତୁହି ଦେବ ପ୍ରତ୍ୟକ୍ଷରେ ଅଟୁ ଯଜ୍ଞକର୍ତ୍ତା
ଅଭୟ ବରଦାୟକ ସର୍ବ ପିତାମାତା ।
ଯେତେ ତୋତେ ଚନ୍ଦ୍ର ମନବଚନ କର୍ତ୍ତବ୍ୟ
ତାହାର ମଙ୍ଗଳ କରୁ ତୁହି ବାସୁଦେବେ ।
କ୍ଷତ୍ରିୟ ବୃତ୍ତି ଅଟଇ ଦେବ ବଡ଼ କଷ୍ଟ
ତୋ ପ୍ରସନ୍ନେ ମୋର କଷ୍ଟ ଏବେ ହେବ ନଷ୍ଟ ।
ମୁହିଁ ଅନାଥ ଯେ ତୁହି ଅନାଥଙ୍କ ବନ୍ଧୁ
ଭକତ ବତ୍ସଳ ନାଥ ଅଟୁ କୃପାସିନ୍ଧୁ ।
ଅପାର ମହିମା ତୋର ନ ସରେ କହନ୍ତେ
ମୁହିଁ ତୋହର ଶରଣ ଉଦ୍ଧର ଯେ ମୋତେ ।
ବଧିବା ମନ ସୁମର କରନ୍ତୁ ଗମନ
ଶୁଭେ ଜୟଲଭି କରି କର ଆଗମନ ।
ଏହା କହି ଯୁଧିଷ୍ଠିର ହୋଇଲେ ମଉନ
ତତ୍‌କ୍ଷଣ ଯିବାପାଇଁ ସଜ ସେହିକ୍ଷଣ ।
ଜୟ ଜଗନ୍ନାଥ ନବ ଜଳଧର କାନ୍ତି
ଯେମାନେ ତୁମ୍ଭଙ୍କୁ ସଦା ହୃଦରେ ଚିନ୍ତନ୍ତି ।
ତାହାଙ୍କ ସର୍ବ ବିପଦ କର ତୁମ୍ଭେ ନାଶ
ଆବର ତାଙ୍କୁ ଅଭୟ ଦିଅ ପୀତବାସ ।
ଯାହାରେ ତୁମ୍ଭେ କରୁଣା କର ଆହେ ହରି
ମନକର୍ମରେ ନ ଯାଏ ମାନସ ତାହାରି ।
କରୁଣାସାଗର ପ୍ରଭୁ ଆହେ ଭଗବାନ
କରୁଣା କରନ୍ତୁ ବାରେ ମୋଠାରେ ଆପଣ ।
ଯାଉ ମୋ ମୂଢ଼ତା ହେଉ ଜ୍ଞାନର ସଞ୍ଚାର
ଏତିକି ପ୍ରାର୍ଥନା ପ୍ରଭୁ ଶାରଳା ଦାସର ।

---

## ଶ୍ରୀକୃଷ୍ଣ ସହିତ ଭୀମାର୍ଜ୍ଜୁନଙ୍କର ମଗଧଦେଶେ ଗମନ

ଏଥୁଅନନ୍ତରେ ପୁଣି ମନୁ ଦଣ୍ଡଧର
ଅଗସ୍ତିଙ୍କ ପ୍ରଚ୍ଛାକଲେ ଯୋଡ଼ି ବେନିକର ।
କହ ମୁନି କେଉଁରୂପେ କୃଷ୍ଣ ଭୀମ ପାର୍ଥ
ମଗଧକୁ ଯାଇ କଲେ ଜରାସନ୍ଧ ହତ ।
ଏ କଥା ଶୁଣିବାପାଇଁ ହୁଏ ଇଚ୍ଛା ମୋର
ବିସ୍ତାରି କହିଣ ମୋତେ ଶ୍ରୀ ଭ୍ରାନ୍ତି ହର ।

ଅଗସ୍ତି କହିଲେ ରାଜା କର ଅବଧାନ
ଯାହା ପଚାରିଲ ତାହା ମନଦେଇ ଶୁଣ ।
ମକର ଶୁକ୍ଳପଞ୍ଚମୀ ଅଟେ ଗୁରୁବାର
ରେବତୀ ନକ୍ଷତ୍ର ଭୋଗ ହେଲା ସେ ଦିନର ।
ଭବ ନାମରେ କରଣ ସାଧ୍ୟ ନାମେ ଯୋଗ
ପଶ୍ଚିମ ଦିଗେ ବିଜୟ କରିଲେ ଶ୍ରୀରଙ୍ଗ ।
ଅଢ଼ାଇ ପ୍ରହର ରାତ୍ରି ହୋଇଥିଲା ବେଳ
ଚନ୍ଦ୍ର ବର୍ଗୋତ୍ତମ ତାଳେ କଲେ ଅନୁକୂଳ ।
ଅମୃତାକ୍ଷ ନାମେ କାଳ ଉତ୍ତରରେ ସ୍ଥିତ
ଦକ୍ଷିଣ ଯୁଟଗ ଯୋଗିନୀ ମହାମାୟା ମୂର୍ତ୍ତି ।
ତାର ବାର ନକ୍ଷତ୍ର ଯେ ଶୁଭଯୋଗ ଦେଖ
ଗମିଲେ ପଶ୍ଚିମେ କୃଷ୍ଣ ଭୀମ ଫାଲଗୁନ ।
ପଶ୍ଚିମ ଦିଗେ ଚଳିଲେ ଦେବ ଜଗନ୍ନାଥ
ଦୁଇଦିନେ ପ୍ରବେଶିଲେ ଯାଇ ସୋମନାଥ ।
କାଶୀକୁଣ୍ଡରେ ସମସ୍ତେ ସ୍ନାନଅବଧି ସାରି
ସୋମେଶ୍ୱରଙ୍କୁ ଦର୍ଶନ କଲେ ଦେବହରି ।
ଜୟ ଜୟ ବିଶ୍ୱନାଥ ତୁ ଚନ୍ଦ୍ରମଉଳି
ଅଭୟ ବରଦାତା ତୁ ଜୟ ଦେବ ଶୂଳୀ ।
ଅନ୍ଧକଙ୍କୁ ବଧାରିଲୁ ତ୍ରୈଲୋକ୍ୟର ହିତେ
କାଳକୂଟ ଭକ୍ଷିଲୁ ତୁ ସଂସାର ରକ୍ଷାର୍ଥେ ।
ତ୍ରିପୁରାସୁର ନାଶନ୍ତେ ନାମ ତ୍ରିପୁରାରି
ଦକ୍ଷମଖ ନାଶକଲୁ ମଦନ କ୍ରୋଧକରି ।
ଆପଣେ ଦୁଃଖରେ ପଡ଼ି ଦେବଙ୍କୁ ଉଦ୍ଧରୁ
ଭକ୍ତଜନ ବରଦାତା ପୃଥ୍ୱୀ ରକ୍ଷାକରୁ ।
ଏହିରୂପେ ବହୁସ୍ତୁତି କରିଣ ରୁଦ୍ରଙ୍କୁ
ଶତସହସ୍ର ଦଣ୍ଡବତ କଲେ ଯେ ତାହାଙ୍କୁ ।
ନାରାୟଣଙ୍କ ବିନୟ ଦେଖି କାଶୀବାସୀ
ବୃଷଭ ଆରୋହି ବେଗେ ତାଙ୍କପାଶେ ଆସି ।
ଧବଳ ଶଙ୍କର ଆଉ ପାଞ୍ଚଟି ଆନନ
ପଞ୍ଚଦଶ ନେତ୍ର ତହିଁ ପ୍ରବେଶି ତକ୍ଷଣ ।
ଭୀମ ଅର୍ଜ୍ଜୁନଙ୍କୁ ଦେଖି ହସିଲେ କପାଳୀ
ବୋଇଲେ କା ପୁରେ ବିଜେ କର ବନମାଳୀ
କରଯୋଡ଼ି ବୋଇଲେ ଯେ ଦେବ ନାରାୟଣ
ରାଜସୂୟଙ୍କ କରିବେ ଯୁଧିଷ୍ଠିର ରାଜନ ।
ନାରଦ କହିଣ ଗଲେ ଯୁଧିଷ୍ଠିର ଦେବଙ୍କୁ
ଜରା ବନ୍ଦୀ କରଅଛି ବହୁତ ରାଜାଙ୍କୁ ।

ଭୀମ ଅର୍ଜ୍ଜୁନ ସହିତେ ଆଜ୍ଞାଦେଲେ ମୋତେ
ମଗଧ ଦେଶେ ଯାଉଛୁ ଜରାର ନିମନ୍ତେ ।
ହର ବୋଲେ ଜାଣିଛ ନା ତାର ମୃତ୍ୟୁଭେଦ
ଭୀମ ଦ୍ୱାରା ନାଶିବ ସେହି ଜରାସନ୍ଧ ।
ତୁମ୍ଭେ ଆଉ ଅର୍ଜ୍ଜୁନ ନ ପଶିବ ଯୁଦ୍ଧେ
ଭୀମସେନଙ୍କୁ ପେଷିବ ଜରାର ସନ୍ନିଧେ ।
ଯା କହି ବିଭୂତି କାଢ଼ି ଲେପି ଭୀମକାୟେ
ବୋଇଲେକ ତାଙ୍କୁ ଆଉ ତୋର ନାହିଁ ଭୟେ ।
ଜରା ମୃତ୍ୟୁଭେଦ ଶୁଣ ହେ ପବନ ବାଳ
ଜନମ କାଳରେ ଜରା ଅଟେ ଦୁଇଫାଳ ।
ଖଣ୍ଡଗ ନ କାଟିବଟି ଶକ୍ତି ହେବ ଚୂର
ଜଳ ଅନଳରେ ଜରା ନୁହେଁ ମରିବାର ।
ଏହି କଥା ଭଲରୂପେ ଭୀମ ଜାଣିଥିବୁ
ଦୁଇଫାଳ କରି ତାକୁ ଚିରି ପକାଇବୁ ।
ତେବେ ସେ ନାଶଯିବଟି ଦୁଷ୍ଟ ଜରାସନ୍ଧ
ଭୀମଙ୍କୁ କହିଲେ ଏହା ଦେବ ସଦାନନ୍ଦ ।
ଭଲ ଯାଗ ଗୋଟିଏ ଯେ କରିବେ ଯୁଧିଷ୍ଠିର
ଯାଗେ ମୋତେ ନିମନ୍ତ୍ରଣ କରବୁ କସାଟି ।
ସଦାଶିବଙ୍କ ମୁଖରୁ ଅମୃତ କଥା ଶୁଣି
ଜୟ ଶଙ୍ଖ ବଜାଇଲେ ଦେବ ଚକ୍ରପାଣି ।
ଏହା କହି ସଦାନନ୍ଦ ହେଲେ ଅନ୍ତର୍ଦ୍ଧାନ
ତହିଁ ତିନିଜଣ ଗଲେ ନଗକୂଳ ବନ ।
ସେ ବନ କଟିଣ ଗଲେ ଯୋଜନ ଦ୍ୱାଦଶ
ଚନ୍ଦ୍ରବନ ଦେଶେ ଯାଇ ହୋଇଲେ ପ୍ରବେଶ
ଚନ୍ଦ୍ରକେଶରୀ ବୋଲିଣ ସେ ଦେଶ ରାଜନ
ତାହାଙ୍କୁ ନେଇଣ ଜରା କରିଛି ବନ୍ଧନ ।
ସେ ରାଜ୍ୟଲୋକ ସକଳ ଆକୁଳ ହୋଇଣ
ରାଜାର ଗୁଣ ସୁମରି କରନ୍ତି କ୍ରନ୍ଦନ ।
ଜଗନ୍ନାଥ ପୁଚ୍ଛାକଲେ ସେମାନଙ୍କୁ ରହି
ଏତେବଡ଼ ରାଜ୍ୟ ଏତେ ଶୋକ କାହିଁପାଇଁ ।
ସେ ବୋଇଲେ ଆମ୍ଭ ରାଜା ଚନ୍ଦ୍ର ଯେ କେଶରୀ
ଜରାସନ୍ଧ ତାହାଙ୍କୁ ଯେ ନେଇଅଛି ଧରି ।
ଜଗନ୍ନାଥ ଚାହିଁଲେ ଯେ ଭୀମର ବଦନ
ତୋହଯୋଗୁ ଶାନ୍ତ ହେବ ପୃଥ୍ୱୀ ଶୋକମାନ ।
ଏତେ କହି ଦେବ ସେହି ରାଜ୍ୟ ଛାଡ଼ିଗଲେ
ମାନଭଙ୍ଗ ଦେଶେ ଯାଇ ପ୍ରବେଶ ହୋଇଲେ

ମାନାର୍ଜ୍ଜୁନ ବୋଲଇଣ ତହିଁର ରାଜନ
ତାକୁ ନେଇ ଜରାସନ୍ଧ କରିଛି ବନ୍ଧନ ।
ବହୁ ରୋଦନ କରନ୍ତି ସେଠାକାର ଜନ
ଲକ୍ଷଣ ପୃଚ୍ଛା କଲେ ତହୁଁ ଅରଜୁନ ।
ଏତେବଡ ରାଜ୍ୟ ଲୋକେ ରୋଦନ କପାଇଁ
ବୋଇଲେ ରାଜାକୁ ନେଲା ମଗଧର ସାଇଁ ।
ଏହା ଶୁଣି ସେହି ରାଜ୍ୟ ତେଜିକରି ଗଲେ
ଭରସ୍ତ ଦେଶରେ ଯାଇ ପ୍ରବେଶ ହୋଇଲେ
ମାଧବସେନ ବୋଲିଣ ତହିଁର ନୃପତି
ତାହାକୁ ଧରି ନେଇଛି ମଗଧାଧିପତି ।
ରୋଦନ ଦେଖିଣ ତହିଁ ପୃଚ୍ଛି ମଧୁରିପୁ
ବୈକୁଣ୍ଠେ କହିଲେ ଲୋକେ ହୋଇ ହୀନବପୁ
ସେହି ଦେଶ ଛାଡି ଦେବ ଚଳିଲେ ବହନ
ପ୍ରବେଶ ହୋଇଲେ ଯାଇ ହରର ଉଦ୍ୟାନ ।
ତହିଁ ରାଜା ନାମ ଅଟେ ଶ୍ରୀମ ଚକ୍ରବର୍ତ୍ତୀ
ତାହାକୁ ଧରିନେଇଛି ମଗଧାଧିପତି ।
ବହୁ ରୋଦନ ହୁଅନ୍ତି ସେଠାକାର ଲୋକେ
ପୃଚ୍ଛି କହି ନ ପାରନ୍ତି ପଡି ମହାଶୋକେ ।
ଆମ୍ଭର ରାଜାକୁ ଜରାସନ୍ଧ ନେଲା ଧରି
କାଲି ଆହୁତିରେ ଦେବ ତାଙ୍କୁ ମାରିକରି ।
ଗୋବନ୍ଦ ବୁଝିଲେ ଭୀମସେନଙ୍କର ମୁଖ
ତୋହରଯୋଗୁଁ ପାରିଯିବ ଏହାଙ୍କର ଦୁଃଖ ।
ସାଧୁ ସାଧୁ ମାରୁତି ତୋ ଜୀବନହିଁ ଧନ୍ୟ
ଶୁଭକ୍ଷଣେ ମାତା ତୋତେ କରିଲା ଜନମ ।
ଭୀମସେନ ବୋଲେ ସ୍ୱାମି ନାହିଁ ଆଉ ଦିନ
ପୂର୍ଣ୍ଣାହୁତି ଯେବେ କାଲି ରାତି ବିଦ୍ୟମାନ ।
ଏଠାକୁ ମଗଧ ରାଜ୍ୟ ଅଛି କେତେ ଦୂର
କୃଷ୍ଣ ବୋଇଲେ ଏଠାକୁ ଯୋଜନ ପନ୍ଦର ।
ଭୀମସେନ ବୋଲେ ଦେବ ନୋହିବ ସେ କାର୍ଯ୍ୟ
ହସ୍ତିନାକୁ ଫେରିଯିବା ବୋଲ ଦେବରାଜ
ଶୁଣି ମନେ ବିଚାରିଲେ ଦେବ ଦାମୋଦର
ଭକତାସ୍ୱତ ହରଣ କରନ୍ତେ ମନର ।
ଖଗେଶ୍ୱର ରହିଥିଲା ରମ୍ୟକର ଦ୍ୱୀପେ
କ୍ଷଣକେ ପ୍ରବେଶ ହେଲା କୃଷ୍ଣଙ୍କ ସମୀପେ ।
କୃଷ୍ଣ ବୋଇଲେ ପିଠିରେ ନେଇ ତୁ ଆମ୍ଭଙ୍କୁ
ଏହିକ୍ଷଣି ନେଇଯାଅ ମଗଧ ରାଜ୍ୟକୁ ।

ତିନିଙ୍କୁ ଘେନିଣ ପକ୍ଷୀ ଉଡିଲା ଗଗନେ
ଗ୍ରାସଅର୍ଦ୍ଧେ ମିଳିଲା ଯେ ମଗଧ ଭୁବନେ ।
ମୋକ୍ଷ ଗଙ୍ଗତଳ ତଳେ କାବେଶ୍ୱର ନଦୀ
ବାଉସ୍ପର୍ଶ ଈଶାନରୁ ଆସୁଅଛି ବେଦ
ସେ ନଦୀ ତୀରରେ ଜାଣ ମଗଧ ପର୍ବତ
ରାଜେନ୍ଦ୍ର ପ୍ରଦେଶିଲା ତହିଁ ଉପଚାର ସୁତ ।
ଗରୁଡ ବୋଇଲା ସ୍ୱାମୀ ଏ ମଗଧ ଦେଶ
ଯଜ୍ଞଶାଳ ଏଠାକୁ ଯୋଜନ ଯେ ଦଶ ।
କୃଷ୍ଣ ବୋଇଲେ ତୁ ଥାଅ ହୋଇଣ ଗୋପନ
ଯାଗ ଶେଷରେ ବୁଝିବା ଆହୁତି ବିଧାନ ।
ଭୀମ ଅର୍ଜ୍ଜୁନ ଓହ୍ଲିଲେ ଖଗେଶ୍ୱର ପିଠି
ଶ୍ରୀକୃଷ୍ଣ ଧଇଲେ ତହିଁ ମାୟାରୂପ ଗୋଟି ।
ରଜନୀ ଶେଷ ହୋଇଲା ରହି ସେହିଠାବେ
ଗରୁଡ ପିଠି ଉପରୁ ଓହ୍ଲାଇଲେ ସର୍ବେ ।
କାବେଶ୍ୱ ଗଙ୍ଗାଜଳେ ସ୍ନାନ କଲେ ହରି
ପଥେ ବ୍ରାହ୍ମଣେକ ଦେଖି ତାହାକୁ ପଚାରି ।
ମଗଧ ଦେଶର ରାଜା ଯଜ୍ଞ ଆଜ କାହିଁ
ବିପ୍ର ବୋଲେ ଯାଗସ୍ଥାନେ ଯଜ୍ଞ ନରସାଇଁ
ଆଜର ରାତ୍ରେ ହୋଇବ ସମ୍ପୂର୍ଣ୍ଣ ଆହୁତି ।
ରାଜାଗଣେ ବଳିଦେବ ମଗଧାଧିପତି ।
ଗରୁଡରୁ ଓହ୍ଲାଇଲେ ଭୀମ ଅରଜୁନ
କାବେଶ୍ୱ ନଦୀରେ ସାରି ନିତ୍ୟକର୍ମମାନ ।
ତର୍ପଣ କରିଣ ସୂର୍ଯ୍ୟଦେବେ ଅର୍ଘ୍ୟ ଦେଲେ
ସ୍ତବ ପାଠକରି ଦୁହେଁ କୂଳରେ ବସିଲେ ।
ତାନ ଯେବଣ ବ୍ରାହ୍ମଣେ ଆସନ୍ତି ଗହଳେ
ଦେବ ଜନାର୍ଦ୍ଦନ ଯାଇ ତାହାଙ୍କୁ ପୃଚ୍ଛିଲେ ।
ଯେଉଁଠାରେ ହେଉଅଛି ରାଜାଙ୍କ ଆହୁତି
ସେ ଯଜ୍ଞଠାରୁ ଯିବାକୁ ଅଛି କଣା ରୀତି ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ଦ୍ୱିଜବର
ପ୍ରଥମ ଦ୍ୱାରେ ଅଛି ଯେ ଜରାଜ କୁମର ।
ବଳିଷ୍ଠ ଅଟଇ ସେହି ରାଜାର ବିଶ୍ୱାସ
ଅସ୍ତ୍ର ଥିଲେ ବିପ୍ର ହେଲେ କରେ ପ୍ରାଣ ନାଶ
ଦ୍ୱିତୀୟ ଦ୍ୱାରରେ ଜାଣ ଭେରୀ ଏକ ଥାଇ
ଶତ୍ରୁ ଉପଗତ ହେଲେ ଶବଦ କରଇ ।
ଶବଦ ଶୁଣିଲେ ଅସ୍ତ୍ର ଧରେ ଜରାସନ୍ଧ
ଢକ୍କଣ କୁ ବାହାରିଣ କରଇ ସେ ଭଦ୍ର ।

ତୃତୀୟ ଦ୍ୱାରେ ଶିମ୍ବଳବୃକ୍ଷ ଏକ ଅଛି
ସେ ବୃକ୍ଷରେ ଫୁଲ ଫଳ ନ ଥାଏ ସେ ଜାତି ।
ଶତ୍ରୁ ଆସି ଉପଗତ ହୁଏ ଯେତେବେଳେ
ଅଦଭୁତେ ଫୁଲ ଫୁଟେ ବୃକ୍ଷେ ସର୍ବଡାଳେ ।
ଜାଣଇ ଯେ ଜରାସନ୍ଧ ଶତ୍ରୁ ଉପଗତ
ଶସ୍ତ୍ର ଧଇଲେ ଜଣନ୍ତା ନାହିଁ କି ଜଗତ ।
ଚତୁର୍ଥ ଦ୍ୱାରରେ ଜାଣ ଗର୍ଦ୍ଧଭେକ ଥାଇ
ଶତ୍ରୁ ଉପଗତ ହେଲେ ଉଚ୍ଚରେ ବୋବାଇ ।
ଜାଣିଣ ଶସ୍ତ୍ର ଧଇଲେ ମଗଧ ରାଜନ
ତେଣୁ ଶତ୍ରୁ ନ ପାରଇ ପଶି ତା ଭୁବନ ।
ଯଦି ବ୍ରହ୍ମା ରୁଦ୍ର ଇନ୍ଦ୍ର ହେଲେ ଚକ୍ରଧାରୀ
ଅସ୍ତ୍ର ଧରନ୍ତେ ରାଜାଙ୍କୁ ଜେହ୍ନ ନୁହେଁ ସରି ।
ପକ୍ଷୀଙ୍କ ମୁଖୁ ହରି ଏହିପରି ଶୁଣି
ଗରୁଡ଼କୁ ଡକାଇଲେ ଦେବ ଚକ୍ରପାଣି ।
ସମସ୍ତ ଅସ୍ତ୍ର ଥୋଇଲେ ତାହାର ଉପରେ
ଆମ୍ଭ ସଳଖେ ଉପରେ ତୁ ଥିବୁ କହିଲେ ।
ଯେତେବେଳେ ଯେଉଁଅସ୍ତ୍ରେ ହୋଇବଟି କାର୍ଯ୍ୟ
ତତକ୍ଷଣେ ସେହି ଅସ୍ତ୍ର ଦେବୁ ଖଗରାଜ ।
ଋଷୀରୂପ ଗୁଡ଼ି କୃଷ୍ଣ ଭୀମ ଫାଲଗୁନ
ବ୍ରାହ୍ମଣର ସ୍ୱରୂପକୁ ଧଇଲେ ସେ ତିନ ।
ସର୍ବାଙ୍ଗରେ ଘେନଲେ ସେ ଦ୍ୱାଦଶ ତିଳକ
ଯଜ୍ଞୋପବୀତ ଶୋଭନ ଦିଶଇ ଯେ ବକ୍ଷ ।
ଲମ୍ବିତ ଜୁଡ଼ା ତାଙ୍କର ଦିଶେ ସୁଶୋଭନ
ବେଦମନ୍ତ୍ର ପୋଥିକୁ ସେ କାଖରେ ଯାକିଣ ।
ହସ୍ତେ କୁଶବଟୁ ଶୋଭେ ଗଡ଼ୁ ତମ୍ବାପାଦି
ରାଜାଙ୍କ ପୁରେ ଚଳଲେ ସେହି ତିନମୂର୍ତ୍ତି ।
ପ୍ରଥମ ଦ୍ୱାରରେ ଯାଇ ହୋଇଲେ ପ୍ରବେଶ
ଜରାପୁତ୍ର ସହଦେବେ କରିଲେ ଆଶିଷ ।
ତିନି ବିପ୍ରେ ବସିଲେ ଯେ ପିଢ଼ାର ଆସନ
ସହଦେବକୁ କରିଲେ ବହୁତ କଲ୍ୟାଣ ।
ବେଦ ଅଧ୍ୟୟନ ଦକ୍ଷ ପ୍ରଭୁ ବାସୁଦେବ
ତାହାଙ୍କୁ ବାଛିବା ଭଳ କେ ଅଛି ମାନବ ।
ଜରାର ନନ୍ଦନ ବେଦ ଅଧ୍ୟୟନ ଶୁଣି
ଆମ୍ବା ବିସର୍ଜିଲ ସ୍ୱର ସୁମଧୁର ଜାଣି ।
ସାଧୁ ସାଧୁ ବ୍ରାହ୍ମଣ ହେ ତୁମ୍ଭର ଜୀବନ
ମାନବ ପ୍ରାପ୍ତ ନ ଦିଶ ତୁମ୍ଭେ ତିନିଜଣ ।

ମୋର ପିତା ଇତନ୍ତକ ଉତ୍ତକର୍ମ ଯାଗ
ତୃପତି ଭଜ ଧାତା ବା ଜନ୍ମ ଅନୁରାଗ ।
ପନ୍ଦର ଦିନ ହେଲା ମୁଁ ଅଛି ଏହିଦ୍ୱାରେ
ପରୀକ୍ଷା ଘେନଲେ ତିନଲକ୍ଷ ଦ୍ୱିଜବରେ ।
ତୁମ୍ଭ ସମ ବିଜ୍ଞ ବିପ୍ର ଦେଖିଲି ତ ନାହିଁ
କହି ତୁମର ଉଠିଲା ଅନ୍ତବେଗ ହୋଇ ।
ଉହଁସି ଘେନିଣ ଯେ ରାଜାର ନନ୍ଦନ
ବିପ୍ରଙ୍କ ପାଦ ପଖାଳି କଲାକ ପୂଜନ ।
ଧନ୍ୟ ବ୍ରାହ୍ମଣ ତୁମ୍ଭେ ହେ ବେଦେ ମହାବିଜ୍ଞ
ସର୍ବ ବିଦ୍ୟାରେ ନିପୁଣ ଅଟ ମହାଭାଗ ।
ଦାନର ବେଳ ସରିଲା ଆହେ ଦ୍ୱିଜବର
ଆଜକ ବିଶ୍ରାମିଥିବା ମୋହର ପାଶର ।
ଭୋଜନ ଯୋଗାଡ଼ ଦେଇ କରିବି ମୁଁ ତୁଷ୍ଟ
କାଲିର ପ୍ରଭାତେ ତୁମ୍ଭେ ନୃପତିଙ୍କୁ ଭେଟ ।
ଦାନବେଳ ସରିଲାଣି ଆହ୍ନିକର ବେଳ
ଏହିକ୍ଷଣି ଗଲେ କାର୍ଯ୍ୟ ହୋଇବ ନିଷ୍ଫଳ ।
ଶ୍ରୀକୃଷ୍ଣଙ୍କୁ ଏହିପରି କହି ଶାନ୍ତକଲା
ଚରଣେ ତୁମର ଗଡ଼ଘାଲିଣ ନମିଲା ।
ଆଶିଷ କରି ବୋଇଲେ ତାକୁ ନାରାୟଣ
ଏ ମଗଧ ଦେଶେ ତୁହି ହୁଅ ନରରାଣ ।
ବହୁଦୂର ଚାଲି ଚାଲି ଆସିଅଛୁ ଆମ୍ଭେ
ରାଜାଙ୍କୁ ଭେଟିବା ଯାଇ ଛାଡ଼ ଦ୍ୱାର ତୁମ୍ଭେ ।
ଧାର୍ମିକ ବିବେକ ତୁହି ବହୁ ପୁଣ୍ୟବାନ
ଜରାସନ୍ଧେ ନ ଭେଟିଲେ ନାହିଁଟି ଭୋଜନ ।
ଯଦ୍ୟପି ଆମ୍ଭଙ୍କୁ ଦ୍ୱାର ନ ଛାଡ଼ିବୁ ବାବୁ
ରାଜାଙ୍କୁ ଭେଟିବାପାଏ ଉପବାସେ ଥିବୁ ।
ଆମ୍ଭେ ବୁଭୁକ୍ଷିତ ଅଟୁ ଏ କଥା ଯଥାର୍ଥ
ଧର୍ମ ନାଶଯିବ ଯେବେ ଆମ୍ଭଙ୍କୁ ନବରି ।
ଏତେକ ସଙ୍କଳ୍ପ କରି ଆସିଅଛୁ ଆମ୍ଭେ
ରାଜାର ମୁଖ ଦେଖିଲେ ତୁଷ୍ଟ ହେବୁ ସର୍ବେ ।
ସହଦେବ ବୋଲେ ରାଜାଙ୍କର ଆଜ୍ଞା ଯାହା
ତୁମ୍ଭ ଆଗେ କହିବାକୁ ଭୟ ଲାଗେ ତାହା ।
ଶ୍ରୀକୃଷ୍ଣ ବୋଇଲେ ଯେହ୍ନେ ତୋତେ ଅଛି ଆଜ୍ଞା
କହୁନାହୁଁ ସେ ଆଜ୍ଞାକୁ କରୁ ତୁ ଅବଜ୍ଞା ।
କେବଳ କହୁନୁଁ ତୁହି ନେଇ ଉତରକୁ
ନରପତିଙ୍କି ସାକ୍ଷାତ କରାଅ ଆମ୍ଭଙ୍କୁ ।

ଭୁ ତ ବ୍ରାହ୍ମଣଙ୍କୁ ନେଇ କରାଇ ତର୍ପଣ
ଆସ୍ଥ ପାର୍ଥଙ୍କ କପାଇଁ ହେଉନ୍ତୁ ଉମନ ।
ହସ୍ତେ ଅସ୍ତ୍ର ଥିଲେ ସିନା କରନ୍ତୁ ବିରୋଧ
ଦେଖ ଆମ୍ଭଠାରେ ନାହିଁ କୌଣସି ଆୟୁଧ ।
କସ୍ତ୍ର ଫେଡ ଦେଖାଇଲେ ହଁଡ଼ାଣ୍ଟ କରି
ଦେଖିକରି ମନୁ ଭ୍ରାନ୍ତ ଛାଡ଼ିଲା ତାହାରି ।
କଥିବାମତ ସ୍ମରଣ ଯାଅ ହେ ପଣ୍ଡାଏ
ଅମୃତ ଦୃଷ୍ଟିରେ ଚାହିଁ ଭୂପଙ୍କୁ ସେ ସ୍ୱୟେ ।
ପ୍ରଥମ ଦ୍ୱାରକୁ ଜିଣି ସୋଡଜ ଅନ୍ତରେ
ଶୋଭନ କହିଲେ ଭୀମ ଅର୍ଜ୍ଜୁନ ଆଗରେ ।
ଦ୍ୱିତୀୟ ଦ୍ୱାରରେ ଭେଷ ତୃତୀୟେ ତ୍ରିମୂର୍ତ୍ତୀ
ଚତୁର୍ଥ ଦ୍ୱାରେ ଗର୍ଦ୍ଦଭ ରହନ୍ତି ତାହାରି ।
କହ କିଏ କେଉଁଦ୍ୱାରେ ଛିଦ୍ର କଢ଼ାଇବ
ଆମ୍ଭ ଆସିବାର ଯେତେ ଜଣା ନ ପଡ଼ିବ ।
ଭୀମସେନ ବୋଇଲେକ ହରିଙ୍କର ଆଗେ
ଦ୍ୱିତୀୟ ଦ୍ୱାରର ଭେଷ ରହିଲା ମୋ ଭାଗେ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ବନମାଳୀ
ତୃତୀୟ ଦ୍ୱାର ମୋ ଭାଗେ ରହିଲା ତ୍ରିମୂର୍ତ୍ତୀ ।
ତୁମ୍ଭେ ଦୁହେଁ ଦୁଇଗୋଟି ଦ୍ୱାର ନେଇ ବାଣ୍ଟି
ମୋ ଭାଗେ ତଥି ରହିଲା ବୋଇଲେ ଶ୍ରୀବତ୍ସ
ଚଳଯାନ୍ତି ତିନିଜଣ ବାୟୁଗତି ହୋଇ
ଦ୍ୱିତୀୟ ଦ୍ୱାରେ ଭେଷକୁ ଭେଟିଲେକ ଯାଇ ।
ଭୀମ ମୁଖକୁ ଅନାଇ ବୋଇଲେ ଅଚ୍ୟୁତ
ଭେଷ ନାଦ କରୁଅଛି ଏହାକୁ ନିବର୍ତ୍ତ ।
କ୍ଷଣ ଉପଗତ ଦେଖି ସେହି ମହାଭେଷ
ଅତି ଉଚ୍ଚେ ଉଠୁଅଛି ଶବ୍ଦ ସେତୁ ଜଣ ।
ପବନୁ ବେଗ ହୋଇଣ ଭୀମସେନ କ୍ଷେପି
ମୁଷ୍ଟେ ପ୍ରହାରିଲେ ଯାଇ ହୋଇ ଉଗ୍ରରୂପୀ ।
ସଙ୍କିକରି ଭେଷ ଗୋଟି ହୋଇଗଲା ଚୂର୍ଣ୍ଣି
ମୁକତି ପାଇଣ ଗଲା ସେହୁ ନିଜ ସ୍ଥାନ ।

---

## ଭେରୀର ପୂର୍ବ୍ବ ବିବରଣ

ଅଗସ୍ତିଙ୍କୁ ପୂଛାଇଲେ ମନୁ ମହାରଥୀ
ଅମୃତ ସମାନ ଅଟେ ଏ ଭାରତ କଥା ।
ସେହି ଭେଷ ଚରିତ ତ ବଡ଼ଇ ଦୁର୍ଲ୍ଲଭ
ସକାଳ ହୋଇ କପଟ ଦେଉଥିଲା ରବ ।
ଏହିପରି ଭେରୀମାନ ବାଜେ ପରିହସ୍ତେ
କହ ଏ ନଜେ କପାଇଁ ଗର୍ଜ୍ଜେ ଅହରହେ ।
ଏ ମହାଭାରତ ଅଟେ ବିଷ୍ଣୁଙ୍କ ଚରିତ
ଏ ଯାହା କହିଲ ତାହା ମଣେ ଆଚମ୍ବିତ ।
ଅଗସ୍ତି ବୋଇଲେ ଶୁଣ ମନୁ ବଣ୍ଡଧରି
ତହିଁର ଚରିତ ଶୁଣି ପାପ କ୍ଷୟକରି ।
ତୁମ୍ଭେ ଏହା ଶୁଣିବାକୁ ଅଟ ଏକା ଶ୍ରୋତା
ତୋ ଆଗରେ କହୁଅଛୁ ଭେଷ ଆଦ୍ୟକଥା ।
ହିରଣ୍ୟଗର୍ଭ ପୁରାଣେ କହିଛନ୍ତି ଯୁଗରେ
ମୋହିନୀ ନାମେ ଅପ୍‌ସରା ଥିଲା ସେହି ପୁରେ ।
ଅତ୍ୟନ୍ତ ସୁନ୍ଦରୀ ତାକୁ ରମ୍ଭା ନୁହେଁ ସରି
ସୁବାକାନ୍ତରୁ ଭଜିଲେ ତାହାକୁ ବୁଝାରି ।
ତାହା ସଙ୍ଗେ ବାସବଙ୍କ ବଡ଼ନ୍ତେ ପୀରତି
ଉଦୟ ବିଦ୍ୟାଧରମାନେ ନ ଯାନ୍ତି ତା କତି ।
ବଇଶାଖ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ଅକବାସରେ ରୋହିଣୀ ଋକ୍ଷ ବିଦ୍ୟମାନ ।
ଦିବ୍ୟ ଅଳଙ୍କାର ପିନ୍ଧି ମୋହିନୀ ନାୟିକା
ଆକାଶଗଙ୍ଗାସ୍ନାନକୁ ଯାଉଥିଲା ଏକା ।
ସେ ନଳକୁବେର ସ୍ନାନକରି ଆସୁଥିଲେ
କଇଳାସ ପର୍ବତ ପାଶେ ବାଟରେ ଭେଟିଲେ ।
ଦେଖିଲେ ଯେ ତଡ଼ିକତି କେହି ନାହିଁ ପାଶେ
ସୁନ୍ଦରୀକୁ ଡକାଇଲେ ରତିର ଲାଳସେ ।
ନଳକୁବେରର ପରିହାସ ବାଣୀ ଶୁଣି
ଆଡ଼ହୋଇ ସ୍ନାନେଯାଏ ସେ ସୁନ୍ଦରୀମଣି ।
ଅର୍ଜ୍ଜୁନ ଦେଖିଣ ତହିଁ ସେ ନଳକୁବେର
କୋଳରେ ଧଇଲା ତାକୁ ମଦନେ ଆତୁର ।
ଏପରି ଦେଖି ସୁନ୍ଦରୀ ହୋଇ ମହାରାଗ
କୋବାଳ ଛାଡ଼ିଲା ତହିଁ କମ୍ପିଗଲା ସ୍ୱର୍ଗ ।
ଭୟକରି ଛାଡ଼ିଦେଇ କୁବେରର ସୁତ
ସେହିଠାରେ ଶାପଦେଲା ହୋଇ କୋପାନ୍ୱିତ
ତୁମ୍ଭେ ଯେ ବେଶ୍ୟାରମଣୀ ଅଟ ମନ୍ଦଜାତି
ଚଞ୍ଚଳ ପ୍ରବୃତ୍ତେ ସିନା ତୁମ୍ଭଙ୍କୁ ରସନ୍ତି ।
ନ କରୁରି ତୁ ଯେ ରାବଦେଲୁ ଅପ୍ରମିତେ
ଭେଷର ଶବ୍ଦ ପ୍ରାପ୍ତେକ ଶୁଭିଲା ଯୁକତେ ।
ମର୍ତ୍ତେ ଜାତହୁଅ ତୁହି ଭେଷରୂପ ହୋଇ
ମଗଧ ଦେଶରେ କରି ଦ୍ୱାରେ ଥିବୁ ରହି ।

ଶବ୍ଦପ୍ରାପ୍ତ ମଣି କଲୁ ଏ ଅଦ୍ଭୁତ ରବ
ଶବ୍ଦ ଦୃଶ୍ୟହେଉ ତୋତେ ରହୁ ଏ ସ୍ୱଭାବ ।
ଶୁଣିକରି ବିଷାଦିତା ହେଲା ଅପସରୀ
ନଳ କୁବେର ପୁଚ୍ଛିଲା ବିନୟକୁ କରି ।
ଅଦୋଷରେ ଶାପ ମୋତେ ଦେଲୁ ଅନିମିତ୍ତେ
ମୋକ୍ଷ ହୋଇବା କାରଣ କହିବାକ ମୋତେ
ବିକଳ ଦେଖିଣ ଦୟା କଲେ ସେ କୁବେର
ଦ୍ୱାପରଯୁଗେ ତୁ ଥିବୁ ଜରାସନ୍ଧ ଦ୍ୱାର ।
ପାଣ୍ଡବଙ୍କୁ ଘେନି ଭଜେ ହେବେ ଚକ୍ରଧାରୀ
ଗୁପ୍ତେ ଯାଉଥିବେ ସେହି ଜରାସନ୍ଧ ମାରି ।
ସେ ତୋତେଦୃଶ୍ୟ ହୋଇବେ ବଇରୀସମାନେ
ତାଙ୍କୁ ଦେଖି ରବ ଦେବୁ ତୁହି ଅକାରଣେ
ବୃକୋଦର ପ୍ରହାରିବେ ତୋତେ ବଜ୍ରମୁଠେ
ହୋଇବୁ ତୁ ଶତଚୂର ତାର ମୁଠାଘାତେ ।
ଶାପକୁ ଅନୁଗ୍ରହ ଯେ କରିବେ ଶ୍ରୀପତି
ପ୍ରତ୍ୟକ୍ଷ ଦୃଶ୍ୟ ହୋଇବେ ତୋତେ କୃଷ୍ଣମୂର୍ତ୍ତି
ଶାପରୁ ମୁକତ ତହିଁ ହେବୁ ତେତେବେଳେ
ଏ ରୂପ ଧରି ଆସିବୁ ଅମର ମଣ୍ଡଳେ ।
ନଳ କୁବେରର ପାଶେ ରାଜଦ୍ୱାରେ ଥିଲା
ନାରାୟଣ ଦରଶନେ ମୁକତ ପାଇଲା ।
ଅମରପୁରେ ପ୍ରବେଶ ହେଲା ଅପସରୀ
ପୂର୍ଣ୍ଣିତ୍ୱ ହୋଇଲା ସେହି ଇନ୍ଦ୍ର ମନୋହାରୀ ।

---

## ଶିମୂଳୀ ବୃକ୍ଷର ବୃତ୍ତାନ୍ତ

ଏଥୁ ଅନନ୍ତରେ କଥା ଶୁଣ ନରମଣି
ହସ୍ତିପୁର ଦ୍ୱାରୁ ବିଜୟ ତିନି ଦ୍ୱିଜମଣି ।
ଯୋଜନେକ ଅନ୍ତେ ଅଛି ଯେ ହସ୍ତିପୁର ଦ୍ୱାର
ଶିମୂଳୀବୃକ୍ଷ ଦେଖିଲେ ଯୋଜନେ ବିସ୍ତାର ।
ମୃତପ୍ରାପ୍ତ ତାର ଶାଖା ଶୁଷ୍କ ଦିଶୁଥିଲା
ଏମାନଙ୍କୁ ଦେଖି ବୃକ୍ଷ ପୁଷ୍ପେ ବିକାଶିଲା ।
ଗୋବିନ୍ଦ ବୋଇଲେ ଦେଖ ଦେଖ ହେ ଅର୍ଜୁନ
ଏ ଶୁଷ୍କ ଶିମୂଳୀ ବୃକ୍ଷ ପୁଷ୍ପେ ପରିପୂର୍ଣ୍ଣ ।
ଧାନେ ଆକାଶେ ରହିଲେ ବୀର ଫାଲ୍‌ଗୁନି
ଗରୁଡ଼ ପ୍ରବେଶ ହେଲା ଅସ୍ତ୍ରମାନ ଘେନି ।
ଗାଣ୍ଡୀବ ଧନୁକୁ କରେ ଧରିଣ ଅର୍ଜୁନ
ଦାବଲ ଶରେଳ ଘେନି ବନ୍ଧିଲେ ବହନ ।

ନାରାଚ ପଡ଼ିଲା ଯାଇ ଶିମୂଳୀର ମୂଳେ
ଉପାଡ଼ିଲା ସେହି ଶର ବୃକ୍ଷକୁ ସମୂଳେ ।
ପବନାଶର ବନ୍ଧନେ ନେଲାକ ଉଡ଼ାଇ
ସମୁଦ୍ର ଉଦରେ ତାକୁ ପକାଇଲା ନେଇ ।
ଏହା ଶୁଣି ପୁଚ୍ଛାକଲେ ମନୁ ମହାରାଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟପୂଜା ।
ବୋଇଲେ ଶିମୂଳୀ କଥା ବିସ୍ତାରଣ କହ
ଯା ଶୁଣି ଲାଗିଲା ମୋତେ ବଡ଼ାଇ ସନ୍ଦେହ ।
ମଲପର ସେ ଶିମୂଳୀ ବୃକ୍ଷ ରହିଥିଲା
ଶବ୍ଦ ଦେଖି କାହିଁପାଇଁ ଜୀବିତ ହୋଇଲା ।
ହେ ମୁନି ଏହା ଅଟଇ ଆଶ୍ଚର୍ଯ୍ୟର କଥା
ବିସ୍ତାରି କହନ୍ତୁ ମୋତେ ଏଥିର ବ୍ୟବସ୍ଥା ।
ଅଗସ୍ତ୍ୟ କହିଲେ ଶୁଣ ମନୁ ନୃପବର
ଯେସନେକ ଘାତ ହେଲା ଶିମୁଳୀ ବୃକ୍ଷର ।
ସତ୍ୟଯୁଗେ ବଇଦୃତ ନାମରେ ଗନ୍ଧର୍ବ
ତାହାର ପୁତ୍ରର ନାମ ଅଟଇ ସଦାଶିବ ।
ଅଣସ୍ଥଳ ବୋଲିଣ ଯେ ଥିଲେକ ଋଷିଏ
ତାଙ୍କ ପାଶେ ଥିଲା କାମଧେନୁ ଯେ ଗୋଟିଏ
ସଦାଶିବ ଗନ୍ଧର୍ବ ଯେ ଦେଖିଲା ସେ ଗାଈ
ବନସ୍ତରୁ ଧରିନେଲା ମୁନିଙ୍କୁ ନ କହି ।
ଗାଈ ନେଇଣ ଗନ୍ଧର୍ବ ଲୁଚାଇଲା ପୁରେ
ଲେଉଡ଼ି ନ ପାରିଲେ ମୁନି ସାତ ବରଷରେ ।
ଗାଈ ନ ପାଇଣ ମୁନି କୋପେ ଶାପଦେଲା
ଯେହୁ ମୋର ଗାଈଗୋଟି ଚୋରିକରି ନେଲା
ତାହାକୁ ମୋହର ଶାପ ପ୍ରତ୍ୟକ୍ଷରେ ହେଉ
ଯମ ଦେବତା ତାହାକୁ ବହୁଶାସ୍ତି ଦେଉ ।
ଋଷିର ଶାପରେ ସେହି ହେଲା ହତପ୍ରାଣ
ଯମ ଦେଖି ତାହାକୁ ଯେ ହେଲା କୋପମାନ
କାଳ ବିକାଳ ରାଇଣ ବୋଲେ ଯମରାଜ
ମୋ ସମ୍ମୁଖୁ ବେଗେ ନିଅ ଏ ଚୋରୁ ଚଉର୍ଯ୍ୟ
ଗାଈକୁ ବାନ୍ଧି ଆଣିଲା ଯେବେଳେ ମାରି ମାରି
ଶିମୂଳୀ କୋଳ କରାଇ ମାରି ସେହିପରି ।
ନାଶକରି ଆଜ୍ଞା ପାଇ ସେ ଚଣ୍ଡ ପ୍ରଚଣ୍ଡ
ଶିମୂଳୀ ବୃକ୍ଷକୁ କୋଳ କରାଇ ତା ପିଣ୍ଡ ।
ଘୁଷ୍ଟି ମାରନ୍ତେଣ ଫାଟିଗଲା ତାର ପିଠି
ରୁଧିର ବାହାରି ହେଲା କଣ୍ଟାମାନ ଫୁଟି ।

ବଚନେ ନିବେଦନ କରି ସେହି ବିଦ୍ୟାଧର
ଶିମୂଳୀକୁ ଶାପଦେଲା ହୋଇ କୋପଭର ।
ଆହେ ଆକାଶର ବୃକ୍ଷ ତୋ ଏଡ଼େ ଅହଙ୍କା
ମୋହର ଶାପରେ ତୁହି ଆକାଶରେ ନଥା
ଦେବପୁର କଥା ଆରେ ନୁହଇ ଏମନ୍ତ
ଅସୁରପୁରେ ଥାଅ ତୁ ହୋଇ ମୃତବତ ।
ଯେତେଦୂର ପରଯନ୍ତେ ଦଶିବ ତୋ ଶିଖା
ଏ ଦୋଷେ ତୋ ଡାଳସ୍ଥଙ୍କୁ କାଟନ୍ତୁ ସର୍ବଥା
ଯେ ଅବା ଦୟା କରଣ ନ କାଟିବେ ଜନେ
ମୋର ଶାସ୍ତି ତାକୁ ହେବ ଆମ୍ଭ ସଂଯମନେ ।
ଗନ୍ଧର୍ବ ଶାପେ ଅସୁରପୁରେ ରହିଥିଲା
ମୁକତିର କାମନ୍ତେ ସେ ପୃଷ୍ଠ ବଢ଼ାଇଲା ।
ଅର୍ଜୁନଙ୍କ ଶରଘାତେ ହୋଇଲା ମୁକତି
ବୈବସ୍ୱତ ମନୁଙ୍କୁ ସ୍ୱା କହିଲେ ଅଗସ୍ତି ।
ଶୁଣିକରି ସନ୍ତୁଷ୍ଟ ଯେ ହେଲେ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଦିବ୍ୟପୂଜା ।

---

## ଗଧର ଚରିତ, ଜରାସନ୍ଧ ସହିତ କୃଷ୍ଣଙ୍କର କଥୋପକଥନ ଓ ଜରାସନ୍ଧର ମୃତ୍ୟୁ

ଭୃଗୁସ୍ଥ, ଦ୍ୱାରକୁ ଜଣଗଲେ ଚକ୍ରପାଣି
ଶୁଣି କେଉଁ କୃତ୍ୟ କଲେ କହ ମହାମୁନି ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ଚଳିଯାନ୍ତେ ଜଗନ୍ନାଥ ହୋଇ ଗୋପ୍ୟମୂର୍ତ୍ତି ।
ଯୋଜନେକ ପଥ ଯାଉଁ ଦଶିଲା ଗର୍ଦ୍ଦଭ
ଶତ୍ରୁ ଉପଗତ ଜାଣି ଉଚ୍ଚେ କଲା ରବ ।
ପାର୍ଥ ବୋଇଲେ ସମ୍ଭାଳ ଏବେ ଚକ୍ରପାଣି
ଦକ୍ଷିଣ ଭୁଜ ବଢାଇ ଦ୍ୟନ୍ତେ କମ୍ବୁପାଣି ।
ଯୋଜନେକ ପରଯନ୍ତେ ଭୁଜ ଗଲା ବଢ଼ି
ଦେବବର ଶଙ୍ଖ ଗଧ ମୁଖେ ଦେଲେ ମାଡ଼ି ।
ଉର୍ଦ୍ଧ୍ୱ ଉଚ୍ଚସ୍ୱରେ ସେହି ଗଧ ରବଦେଲା
ଶଙ୍ଖଧ୍ୱନି ପ୍ରାପ୍ତ ତାର ଶବଦ ଶୁଭିଲା ।
ପୁଣି ବିସ୍ତାରିଲେ ପ୍ରଭୁ ବାମଭୁଜ ଗୋଟି
ଆକର୍ଷି ଧଇଲେ ସେହି ଗର୍ଦ୍ଦଭର ତୋଟି ।
ଉଦ୍ଧବ ମନେ ବିସ୍ମୟେ ଲମ୍ବଭୁଜ ଦେଖି
ନସ୍ତସ୍ଥ ବସ୍ତୁ ଅଟନ୍ତି ତାହାଙ୍କୁ ନିରେଖି ।
ବନସ୍ଥ ସ୍ଥବରେ ତାଙ୍କୁ ବୋଇଲା ଗର୍ଦ୍ଦଭ
ପ୍ରତ୍ୟକ୍ଷରେ ବିଜେକଲୁ ଏଥେ ବାସୁଦେବ ।
ଜଗ ଧାଡ଼ିଦେଲା ତୋତେ ଅଷ୍ଟାଦଶ ବାର
କାର୍ଯ୍ୟହେତୁ ନ ନେଲୁ ତୁ ପରାଣ ତାହାର ।
ଗୋବିନ୍ଦ ବୋଇଲେ ବଧ କରିବି ଅସୁର
ରବ ସଂହରଣ କରି ଆରେ ଜୀବ ଖର ।
ନାରାୟଣଙ୍କ ବଚନେ ବୋଲଇ ଗର୍ଦ୍ଦଭ
ତୋହର ବଚନ ମାନି ନ କରିବି ରବ ।
ଇଚ୍ଛାସୁଖେ ବଧ କର ତୁହି ଜଗବନ୍ଦ
ତୋହର ଶ୍ରୀହସ୍ତେ ହରି ଛୁଅଁ ମୋର ପଦ ।
ଗୋବିନ୍ଦ ସନ୍ତୁଷ୍ଟ ହେଲେ ଗଧବାକ୍ୟ ଶୁଣି
କରପଦ ଯେ ତୃଣ ଯେ ବୋଲଇ ପାବନ ।
ତୁ ଦେବ ଜଗମୋହନ ଜଗତର ନାଥ
ଏ ଖୁରପାଦ ଛୁଇଁବୁ ଏ ନୁହେ ଉଚିତ ।
ଗୋବିନ୍ଦ ବୋଇଲେ ବାବୁ ଏହିପରି ଅଛୁ
ଅସମର୍ଥ କାଳ ଏଥେ ଦୋଷ ନାହିଁ କିଛୁ ।
ଏପରି କହି ଧାମକୁ ଦେବ ଦାମୋଦର
ଗଧର ପାଦେ ଲଗାଇ ଦେଲେ ବାମକର ।
ଶ୍ରୀକର ବଢ଼ାଇ କରି ଲଗାନ୍ତେ ଅଙ୍ଗୁଷ୍ଠି
ସେହିକ୍ଷଣି ସେ ଗଧର ମୂର୍ଦ୍ଧା ଗଲା ଫାଟି ।
ଅନ୍ତରୀକ୍ଷରୁ ଆସିଲା ପୁଷ୍ପକ ବିମାନ
ଚଳିଗଲା ସେ ଗନ୍ଧର୍ବ ଅମର ଭୁବନ ।
ଏହା ଶୁଣି ପୁଚ୍ଛା କଲେ ବୈବସ୍ୱତ ମନୁ
ସେ ଗଧ ବିଷୟ କହ କୁମ୍ଭଋଷି ସୂନୁ ।
ଗଧର ପାଦ ଛୁଇଁଲେ ପ୍ରଭୁ ନାରାୟଣ
କେବଣ ମହାତ୍ମା ସେହି ପୂର୍ବେ କେଉଁ ଜଣ
କାହାର ଶାପରେ ହୋଇଥିଲା ସେ ଏମନ୍ତ
ଏହା ବିସ୍ତାରି କହନ୍ତୁ ମୋତେ ତପୋବନ୍ତ ।
ଶୁଣି ଅଗସ୍ତି ବୋଇଲେ ସତ୍ୟଯୁଗ କଥା
ଅପାର କାଳର ଅଟେ ଗଧର ବାରତା ।
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଶନିଶ୍ଚ ବାସର
ବିଶାଖା ନାମେ ନକ୍ଷତ୍ର ଅଟେ ସେ ଦିନର ।
ବବ ନାମେ କରଣ ଯେ ସିଦ୍ଧ ନାମେ ଯୋଗ
ତ୍ରିଦଶ ଦେବେ ବସିଲେ ସ୍ୱର୍ଗ ମଧ୍ୟଭାଗ ।
ବୃଦ୍ଧଶ୍ରଦ୍ଧା ବୋଲିକରି ଏକାଇ ଗନ୍ଧର୍ବ
ମନ ହରିଲା କରି ସେ ନର୍ତ୍ତନ ତାଣ୍ଡବ ।

ଦେଖିଣ ସାନନ୍ଦ ହେଲେ ଦେବ ସୁରପତି
ବସ୍ତ୍ର ଅଳଙ୍କାର ଦେଇ କରିଲେ ଭୂପତି ।
କାମସେଣା ବୋଲିକରି ଏକ ଅପସରୀ
ବୃଦ୍ଧଶ୍ରବା ସଙ୍ଗେ ସେହୁ ନୃତ୍ୟ ଗୀତ କରି ।
ତା ନୃତ୍ୟ ଦେଖି ହରଷ ହୋଇ ଆଖଣ୍ଡଳ
ସ୍ନେହେ ଅପସରୀ ଗଳେ ଦେଲେ ଜମ୍ବୁମାଳ ।
ବିଶ୍ୱାବସୁ ଆଜ୍ଞାଦେଲା ବୃଦ୍ଧଶ୍ରବା ରହି
କାମସେଣା ଅପସରା ନେବୁ ମୋର ତହିଁ ।
ତା ପାଶେ ରଖାଇକରି ଗଲା ବିଶ୍ୱାବସୁ
ବୃଦ୍ଧଶ୍ରବା ହସ୍ତେ ଦେଲା ଏକ ଖକ୍ଷ୍ଣ ପର୍ଶୁ ।
ଚଳିଗଲା ବୃଦ୍ଧଶ୍ରବା ନିଜର ଆବାସ
ଅପସରୀଙ୍କ କରଣ ଉତ୍ତମ ସୁବେଶ ।
ରଥ ପ୍ରହରିକରେ ସେ ବିମାନ ଆରୋହି
କାମସେଣା ଗନ୍ଧର୍ବୀଙ୍କ ଘେନିଣ ଚଳଇ ।
କାମେ ଅସାଷ୍ଟମ ହେଲା ସେହୁ ବୃଦ୍ଧଶ୍ରବା
କାମସେଣାକୁ ବୋଇଲା ମୋତେ ରତିଦେବା
ରକ୍ଷମାନଙ୍କ ନାୟକ ଅଟେ ସେ ଗନ୍ଧର୍ବ
ସ୍ଥିର ଅପ୍ସରୀ ତା ବାକ୍ୟ ମେଣ୍ଟି ନ ପାରିବ
ଏଣୁ ଦୁଇଜଣଙ୍କର ବଢ଼ିଲା ପିରତି
ପରିହାସ ହାସ୍ୟରସ କଉତୁକେ ମାତି ।
ଶୃଙ୍ଗାର ସାରି ଚଳିଲେ ତହୁଁ ବେନିଜନ
ପରବେଶ ହେଲେ ବିଶ୍ୱାବସୁର ସଦନ ।
ସେ ବେଳକୁ ପାଞ୍ଚଘଡ଼ି ହୋଇଛି ରଜନୀ
ବୃଦ୍ଧଶ୍ରବା ସମର୍ପିଲେ ନେଇ କାମସେଣୀ ।
ବିଶ୍ୱାବସୁ ଭୁଲେ ସଙ୍ଗ କାମସେଣା ନାରୀ
ଜାଣିପାରି ବିଶ୍ୱାବସୁ ମନେ ତାପ କରି ।
ଶୃଙ୍ଗାର ବେଳରେ ତାର ହେଲା ଏହିଭାବ
ଚନ୍ଦ୍ର ନ ଚଳିଲା ସ୍ଥିର ହେଲା କାମଦେବ ।
ବିଶ୍ୱାବସୁ ପୁଚ୍ଛି କାମସେଣାକୁ ଅନାଇ
କାହା ଭୁଲେ ବଢ଼ାଇଲୁ ପ୍ରୀତି ଆରେ ସହି ।
ଶରୀର ଅବଶ ତୋର ହୋଇଛି ରେ ସଖି
କାହାସଙ୍ଗେ ମାତିଥିଲୁ କହ ଶଶୀମୁଖି ।
ଏହି କଥା ସଙ୍ଗାଭୁଣୀ କହ ତଥ୍ୟକରି
ତାହା ଶୁଣି ମଥାପୋତି କହିଲା ସୁନ୍ଦରୀ ।
ତୁମ୍ଭ ଯେବେ ଏହି କଥା ନ କହିବୁ ମୋତେ
ଏହିକ୍ଷଣି ସୁନ୍ଦରି ରେ ଶାପ ଦେବି ତୋତେ ।

ବୋଇଲା ସେ ବିଦ୍ୟାଧରୀ ଶୁଣ ବିଶ୍ୱାବସୁ
ବୃଦ୍ଧଶ୍ରବା ଇତିକଲା ପଥମଧ୍ୟେ ଆସୁ ।
ବିଶ୍ୱାବସୁ ଶାପଦେଲା ହୋଇ କୋପମୂର୍ତ୍ତି
ମୋର ରମଣୀର ବ୍ରତ ତୁ କଲୁ ଅମାତି ।
ଝିଷ୍ୟପୃଷ୍ଠ ହୋଇ ତୁରେ କଲୁ ଏତେ କର୍ମ
ଆରେ ବୃଦ୍ଧଶ୍ରବା ଏବେ ଲଭ ଗଧ ଜନ୍ମ ।
ରାଗେ ଏହିପରି ଶାପ ଦ୍ୟନ୍ତେ ଯକ୍ଷେଶ୍ୱର
ବୃଦ୍ଧଶ୍ରବା ଭୟହୋଇ ବୋଲେ ଯୋଡ଼ିକର ।
ସ୍ୱାମି ଦୋଷ ନ ବିଚାରି କପାଁ କଲୁ କୋପ
ଗୁରୁ ହୋଇ ଦେଲୁ ମୋତେ ଗୁରୁତର ଶାପ
ଶାପର କାରଣ ମୋତେ କହ ଯକ୍ଷରାୟ
ତରିବି କେମନ୍ତେ ମୁହିଁ କହ ସେ ଉପାୟ ।
ବିଶ୍ୱାବସୁ ବୋଲେ ତୁ ତ ନଷ୍ଟେ ଗଧ ହେବୁ
ମୋହର ଶାପେ ଅନେକ କଷ୍ଟ ତୁ ପାଇବୁ ।
ତ୍ରେତାରେ ଥିବୁ ରାବଣ ଦକ୍ଷିଣ ଦୁଆରେ
ଜରସନ୍ଧ ଦ୍ୱାରପାଳ ହେବୁ ଦ୍ୱାପରରେ ।
ପ୍ରତ୍ୟକ୍ଷେ ଦେଖିବୁ ତୁମ୍ଭେ ଦେବ ଚକ୍ରଧାରୀ
ହରି ତୋ ପାଦ ଧରିବେ କାର୍ଯ୍ୟବେଳ କରି
ଅଠାଇଶସସ୍ର ଅଧିକ ଯେ ସପ୍ତଦଶ
ଲକ୍ଷ ଭୋଗ ହୋଇ ସତ୍ୟଯୁଗ ହେବ ଶେଷ ।
ତଦନ୍ତରେ ତ୍ରେତାଯୁଗ ହୋଇବ ପ୍ରବେଶ
ବାରଲକ୍ଷ ଛୟାନବେ ସହସ୍ର ଶେଷ ।
ଦ୍ୱାପରର ଆଠଲକ୍ଷ ବରଷ ଉଣାରେ
ମୁକତି ପାଇବୁ ଜରସନ୍ଧର ଦୁଆରେ ।
ବିଶ୍ୱାବସୁ ଶାପରେ ସେ ଗଧ ହୋଇଥିଲା
ଜଗନ୍ନାଥ ଦରଶନେ ମୁକତି ଲଭିଲା ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ନରେଶ୍ୱର
ବୃଦ୍ଧଶ୍ରବା ଗନ୍ଧର୍ବ ଯେ ଅଟଇ ପୂର୍ବର ।
ବୈବସ୍ୱତ ମନୁ କଲେ ଅଗସ୍ତିଙ୍କି ପୂଜା
ଏବେ ଜରସନ୍ଧ କଥା କହ ବ୍ରହ୍ମହଂଜା ।
ଚତୁର୍ଥ ଦ୍ୱାରକୁ ଜଣି ଗଲେ ଦେବ ହରି
ଯଜ୍ଞଶାଳେ ବଜେଇକଲେ ବିଶ୍ୱରୂପ ଧରି ।
ସେ ସମୟେ ଯଜ୍ଞଶାଳେ ଥିଲେ ବାମଦେବ
ବିଶ୍ୱାମିତ୍ର ଉଦ୍ଦାଳକ ଆଦିର ସୁଦେବ ।
ଭରଦ୍ୱାଜ ସଦାଶିବ ସୁମନ୍ତ କଶ୍ୟପ
ବାଲ୍ମୀକ ଆଦି ଦେଖି କୃଷ୍ଣଙ୍କର ରୂପ ।

ଅନଳ ସମାନେ ଦଶେ ତିନଙ୍କର ତେଜ
ଗୁପ୍ତବେଶେ ଆସିଛନ୍ତି ପ୍ରଭୁ ଦେବରାଜ ।
କର ପ୍ରସାରି କଲ୍ୟାଣ କଲେ ତିନଜଣ
ବେଦ ପଢ଼ନ୍ତେ କମ୍ପିଲା ଏ ତିନି ଭୁବନ ।
ଦେଖିଣ ମନେ ବିସ୍ମୟ କଲେ ଋଷିଗଣ
ଅପୂର୍ବ ବିପ୍ର କେବଣ ଦେଶୁ ଆଗମନ ।
ଏକମୁଖେ କରୁଛନ୍ତି ସର୍ବେ ବେଦଧ୍ୱନି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ତହିଁ ସର୍ବ ମୁନି ।
ସ୍ୱାଙ୍କୁ ଦେଖି ଜରାସନ୍ଧ ଆଶ୍ଚର୍ଯ୍ୟ ହୋଇଲା
ଏ ବିପ୍ରଙ୍କ ଚରିତ୍ର ତ ଗୋଚର ନୋହିଲା ।
ପଦରି ବିନ ହୋଇଲା କାଲି ମୁଁ ଆହୁତି
କେବେ ନ ଦେଖିଲି ସ୍ୱାଙ୍କ ପରସ୍ପ ମୂରତି ।
ଏ କି ପିତାମହ କିବା ଇନ୍ଦ୍ର ଦିଗପାଳ
କି ଅବା ରୁଦ୍ର ଦେବତା କିବା ଆଖଣ୍ଡଳ ।
ବେଦଧ୍ୱନି ଶବଦରେ କମ୍ପେ ତିନିପୁର
ଆସ୍ଥାନ ତେଜିଣ ବିଜେ ମଗଧ ଈଶ୍ୱର ।
ଶ୍ରୀହସ୍ତରେ ରତ୍ନଟରି ଘେନିଣ ନୃପତି
ବିପ୍ରଙ୍କ ପାଦ ଧଉତ କଲା ସେ ଝଟତି ।
ଲକ୍ଷେକ ରତ୍ନ ଚରଣେ ଦେଇ କଲା ପୂଜା
ପାଦୋଦକ ସିଞ୍ଚି ବୃହଦ୍ରଥର ଆତ୍ମଜା ।
କରଯୋଡ଼ି ଜରାସନ୍ଧ ତାହାଙ୍କୁ ପଚାରି
କେଉଁଦେଶୁ ଆଗମନ କରିଲ ଏ ପୁରୀ ।
କେବଣ ଦେଶେ ଜନମ କିସ ତୁମ୍ଭ ନାମ
ସ୍ୱରୂପ କହିଣ ଛେଦ ମୋର ମନଭ୍ରମ ।
ଗୋବିନ୍ଦ ବୋଇଲେ ଶୁଣ ମଗଧାଧିପତି
ପଶ୍ଚିମ ଦିଗ ହସ୍ତିନାପୁରେ ଆମ୍ଭ ସ୍ଥିତି ।
ବିଷ୍ଣୁଦାସ ଆମ୍ଭ ନାମ ସ୍ୱାଙ୍କ ନାମ ଶୁଣ
ଯଦୁଦାସ ଏହି ଜଣ୍ଠ ବେଦଙ୍କ ନନ୍ଦନ ।
ଧାମେ ଦେଖାଇ କହିଲେ ସ୍ୱାଙ୍କ ନାମ ଗୋତ୍ର
ଆମ୍ଭମାନଙ୍କର ଅଟେ ପୈଠିନସୀ ଗୋତ୍ର ।
ଋକ ଯଜୁ ଅଥର୍ବ ଯେ ସାମବେଦ ସ୍ୱର
ପଢ଼ିଲୁ ଆମ୍ଭେ ସୁରଥ ବିପ୍ର ସେବାକର ।
ଜରାସନ୍ଧ ବୋଇଲକ ତୁମ୍ଭେ ତିନିଜଣ
ସୁବିଜ୍ଞ ବେଦ ପଠନେ ଅଟ ଯେ ନିପୁଣ ।
ବିନର ବେଲ ତ ଏଡ଼େ ନୁହେଁ ବିପ୍ରବର
ଭେଟିଲି ତ କାର୍ଯ୍ୟସିଦ୍ଧି ନୋହିଲା ତୁମ୍ଭର ।
ଆଜକ ଅନ୍ନ ଭୁଞ୍ଜିଣ ମୋର ପୁରେ ଥିବ
କାଲି ପ୍ରଭାତେ ମୋଠାରୁ ଦାନ ଘେନିଯିବ ।
ଆଜ ତବଶ ଭଣ୍ଡାର ମୋର ସର୍ବ ଶୂନ୍ୟ
ସବୁଦାନ ଦେଇ କାଲି ପୂରାଇବ ବାଞ୍ଛା ।
ମୋ ହର ପରାସ୍ତେ ରାଜା ଦାନ ଦେବ ତୋତେ
ତୋହର ପରାସ୍ତ ବିପ୍ର ନେବୁ ତଳହସ୍ତେ ।
ଆଉକେବେ ନ ମାଗିବୁ ଦାନ ଯେ କାହାକୁ
ଦାରିଦ୍ର୍ୟରୁ ମୁକ୍ତ ମୁହିଁ କରିବି ତୁମ୍ଭଙ୍କୁ ।
ବହୁ ଆଶାରେ ଅଇଲ ତୁମ୍ଭେ ଦ୍ୱିଜବର
ବଂଶେ ଦରିଦ୍ର ଆଉ କି ଥୋଇବି ତୁମ୍ଭର ।
ଗୋବିନ୍ଦ ବୋଇଲେ ରାଜା ଧନ୍ୟ ତୋ ଜୀବନ
ମର୍ତ୍ତ୍ୟମଣ୍ଡଳେ କେ ନାହିଁ ତୋହର ସମାନ ।
ଯେଉଁ ଯାଗ ଆରମ୍ଭିଛୁ ଅଛୁ ମହୀତଳେ
କର୍ଣ୍ଣେ ଯା ଶୁଣି ନ ଥିଲୁ ତା ଦେଖିଲୁ ଡୋଳେ
ଏ ତିନି ଭୁବନେ ସାଧୁ ତୋହର ମହିମା
ମଗଧେଶ କଳାକର ପ୍ରତ୍ୟକ୍ଷେ ମହାତ୍ମା ।
କଷ୍ଟ ସହିକରି ବହୁ ଦୂରୁ ଅଛୁ ଆସି
କଞ୍ଚିତ ଦାନେ ଆମ୍ଭଙ୍କୁ ପାରିବୁ କି ତୋଷି ।
ତୁ ଯେ ଧନଦେବା ଇଚ୍ଛା କରିଅଛୁ ରାୟ
ବହୁତ ଦାନେ ଆୟୁଷ ହୁଅଇ ଯେ କ୍ଷୟ ।
ତୀର୍ଥ ଭ୍ରମଣ ଅଟଇ ଆମ୍ଭ ବ୍ରତ ହେତୁ
କିଛି ପ୍ରୟୋଜନ ନାହିଁ ଧନ ଧାନ୍ୟ ହେତୁ ।
ଜରାସନ୍ଧ ବୋଲେ ଧନେ ନାହିଁ ତୁମ୍ଭ କାର୍ଯ୍ୟ
କିଷଣ ପ୍ରାପ୍ତେ କି ମୋତେ ଦିଶୁଅଛ ଦ୍ୱିଜ ।
ଶ୍ରୀହରି ବୋଇଲେ ଆମ୍ଭେ କଞ୍ଚିତ ବ୍ରାହ୍ମଣ
ତୁମ୍ଭ ମହାରାଜା ଆମ୍ଭେ କି ଦେବୁ କିଷଣ ।
ଏତେକ କହିଣ ବେଦ କଲେ ବେଦଧ୍ୱନି
ଲୋକପାଳ କମ୍ପିଲେ ଯେ ମହାମନ୍ତ୍ର ଶୁଣି ।
ଜରାସନ୍ଧ ବୋଲେ ରହ ରହ ହେ ପଣ୍ଡାଏ
ତୁମ୍ଭର ବେଦ ଶୁଣିଣ ନ ରହେ ମୋ କାୟେ
କେବଣ କାର୍ଯ୍ୟ ତୋହର ମାଗ ଦ୍ୱିଜବର
ତୋତେ ଦେବାଉଛି ଧନ ନାହିଁ କି ମୋ ପୁର
ଭଣ୍ଡାର ଶୂନ୍ୟ ଶୁଣିଣ ଦେଉ କି କିଷଣ
ଯେତେ ଧନ ମାଗ ତେତେ ଦେବି ଏହିକ୍ଷଣ
ଏକକଥା ଛାଡ଼ି ଯାହା ଇଚ୍ଛା ତାହା ମାଗ
କମାଣ ମୋ ଆହୁତି ନ କରୁଅଛ ତ୍ୟାଗ ।

ଧନଧାନ୍ୟ ବସନ ଯେ ପୃଥ୍ୱୀଆଦି କରି
ଦେବ ମୋହର ସତ୍ୟ ଯେ ମାଗ ବ୍ରହ୍ମଋଷି ।
ଗୋବିନ୍ଦ ବୋଇଲେ ତୋର ଅର୍ଜିଲର ତପ
ଆହୁତି କପାଁ ମାଗିବୁ ଏ ନୁହେ ସ୍ୱରୂପ ।
ଡାହାଣାବର୍ତ୍ତି ଶଙ୍ଖରେ ଜଳଡାଳ ଭରି
ଜରାସନ୍ଧ କରେ ଦେଲେ ନେଇଣ ଶ୍ରୀହରି ।
ମହାମନ୍ତ୍ର ବାକ୍ୟକୁ ଯେ କରାଇ ଅତ୍ୟନ୍ତ
ଆପଣେ ଦଶ ପାଳିଲେ ତଳକୁ ଯେ ହସ୍ତ ।
ଉପରି ହସ୍ତରେ ଜରା ଦେଉଅଛନ୍ତି ଦାନ
ସତ୍ୟ ସତ୍ୟ ମୁଖେ ବୋଲେ ମଗଧ ରାଜନ ।
ହସ୍ତେ ପାଣି ଦ୍ୟନ୍ତେ ବୋଇଲେ ଯେ ଜଗନ୍ନାଥ
ସାକ୍ଷୀ ହୋଇଥାଅ ତୁମ୍ଭେ ସର୍ବ ଦଇବତ ।
ବିଶ୍ୱେଦେବା ସନକ ଯେ ଆଉ ଋଷିମେଘେ
ହେ ଦ୍ୱାପର ସାକ୍ଷୀ ହୁଅ ଆଜ ଋଷିବରେ ।
ଯାଜ୍ଞିକ ଋତ୍ୱିମାନେ ହେ ସାକ୍ଷୀ ହୋଇଥିବା
ଆହେ ରାଜାଗଣ ତୁମ୍ଭେ ସକଳ ଶୁଣିବା ।
ମୁହିଁ ଚକ୍ରହସ୍ତ କରି ନେଉଅଛୁ ଦାନ
ସତ୍ୟକରି ଦାନ ଦିଏ ମଗଧ ରାଜନ ।
ଜଳଧର ବୋଇଲେକ ପୁରୁଷ ଉତ୍ତମ
ଆନେ ପ୍ରୟୋଜନ ନାହିଁ ଦିଅ ହେ ସଂଗ୍ରାମ ।
ଏହା ଶୁଣି ଜରାସନ୍ଧ ଆଶ୍ଚର୍ଯ୍ୟ ହୋଇଲା
ବିରସ ହୋଇ ଶଙ୍ଖରୁ ଜଳ ଯେ ଛାଡ଼ିଲା ।
କିସ ବୋଇଲୁ ଅଜ୍ଞାନ ତୁହି ଦ୍ୱିଜବର
କପାଁ ଏଡେ ମତିଭ୍ରମ ହୋଇଲା ତୁମ୍ଭର ।
ତୁମ୍ଭେ ଦ୍ୱିଜ ହୋଇକରି ଏଭଳି କି ଆଶା
ଭାଗ୍ୟବନ୍ତ ହୋଇ ଯୁଦ୍ଧେ କପାଇଁ ଭରସା ।
ଗୋବିନ୍ଦ ବୋଇଲେ ଯାର ଯେମନ୍ତ ପ୍ରକୃତି
ତୋହର ବୋଲେ ତାହା କି ରହଇ ନିବର୍ତ୍ତି ।
ପାରୁ ଯେବେ ରାଜା ତୁହି ଯୁଦ୍ଧ ହାଦେ ଦେବୁ
ନୋହିଲେ ଏକ୍ଷଣି ତୋର ଆହୁତି ଧ୍ୱଂସିବୁ ।
ଜୀବନଯାକେ ଆମ୍ଭର ଏସନ ପ୍ରକୃତି
ରଣ ନ ପାଇଲେ ଆମ୍ଭେ ନୋହୁ ଯେ ତୃପତି ।
ଯେବଣ ଦିନରେ ଆମ୍ଭେ ସଂଗ୍ରାମ ନ ପାଉ
ଅତ୍ୟନ୍ତ କଷ୍ଟରେ ସେହି ଦିନଟି କଟାଉଁ ।
ଶୁଣି କୋପାନଳ ହେଲା ମଗଧାଧିପତି
ତୁମ୍ଭେ ନାଶଯିବ ମୋତେ ହୋଇବ ଅଖ୍ୟାତି

ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା କଲା
ତାହାର ପାତକ କେବେ ଖଣ୍ଡନ ନୋହିଲା ।
ମୋର ମହିମା ତୁହି କି ଶୁଣି ନାହୁଁ ଦ୍ୱିଜ ।
ଆୟୁଷ ଥାଉଁ କଲ୍ପନ୍ତ ନୁହ ମରଣ ଐଶ୍ୱର୍ଯ୍ୟ ।
ମୋହର ଦୁହିତା ନାମ ହେତି ପରହେତି
ତାହାଙ୍କର ବଲ୍ଲଭ ଯେ କଂସ ନରପତି ।
ତାହା ସଂକର୍ଷଣ ନନ୍ଦ ଗଉଡ଼ର ପୁତ୍ର
କଂସକୁ ନାଶ କରନ୍ତେ ସେହି ଦୁଇଭ୍ରାତ ।
ଦୁହିତାଏ କାନ୍ଦକରି କହିଲେ ମୋ ଆଗେ
ମଥୁରାକୁ ଧାଡ଼ିଦେଲି ଜୁଆଇଁର ରାଗେ ।
ଘର ଛାଡ଼ି ପଳାଇଲେ ସେହି ଯାଇ ବେନି
ଉତ୍ତର ଦେଶେ ଲୁଚିଲେ ବନ୍ଧୁଗଣ ଘେନି ।
ଧନ ଭଣ୍ଡାର ଆଦି ଯେ ସବୁ କଲି ଜୁର
ଅନେକ ଗୋଧନ ପଲ ନେଇ ତାହାଙ୍କର ।
ଉତ୍ତର ଦେଶକୁ ପୁଣି ମୁହିଁ ଦେଲି ଧାଡ଼ି
ତହୁଁ ଦୁହେଁ ପଳାଇଲେ ସେହି ଦେଶ ଛାଡ଼ି ।
ବନକେ ପଶିଲେ ଯାଇ ଗୋମନ୍ତନ ଗିରି
ଶତ ଯୋଜନ ବିସ୍ତାର ଅଟଇ ତାହାରି ।
ସାତତାଳ ଗଭୀରର ଖଣା ଖୋଳାଇଲେ
ଷଟପୁର କରି ତହିଁ ସୈନ୍ୟ ବେଢ଼ାଇଲେ ।
ରାଗେ ସେହି ପର୍ବତକୁ ଦେଲି ମୁହିଁ ପୋଡ଼ି
ପୁଣି ଦୁହେଁ ପଳାଇଲେ ସେ ଗିରିକୁ ଛାଡ଼ି ।
ତହୁଁ ପଳାଇଣ ଗଲେ ସେହି ବେନି ଯାଇ
ମଥୁରାରେ ଲୁଚିଲେ ସେ କୁଟୁମ୍ବଙ୍କୁ ନେଇ ।
କାଳ ଯବନକୁ ରାଇ ମୁହିଁ ଆଜ୍ଞା ଦେଲି
ଘେରିଣ ମଥୁରାକୁ ଧ୍ୱଂସ କରାଇଲି ।
ତହୁଁ ପଳାଇଣ ଗଲେ ସେ ଅନେକ ଦୂର
ତାହାଙ୍କୁ ମୁଁ ଧାଡ଼ିଦେଲି ଅଷ୍ଟାଦଶ ବାର ।
ରହି ନ ପାରିଲେ ମୋର ଭୟେ ଜମ୍ବୁଦ୍ୱୀପେ
ସମୁଦ୍ର ଭିତରେ ଯାଇ ରହିଲେ ସେ ଗୋପ୍ୟେ
ମୋହ ତହୁଁ ବଳବନ୍ତ ହୋଇବ କେ ଜନ
ନିଶ୍ଚୟ ପାଞ୍ଜି ତୁମ୍ଭର ଚୋଟିଲାଣି ଯମ ।
ପ୍ରତ୍ୟକ୍ଷରେ ଦେଖ ହାଦେ ମୋହର ମହିମା
ଏ ନୃପ ଲଙ୍ଘି ନାହାନ୍ତି କେହି ମୋର ସୀମା ।
ଏମାନେ ଏକାକେ ମହାବଳିଷ୍ଠ ଅଟନ୍ତି
କାଣ୍ଡ ଟଣ୍ଡା ମାଲବଧି ସକଳ ଜାଣନ୍ତି ।

ଛତ୍ରୀଶୋଇ ସସ୍ତ୍ର ରଜା କାହେ ନ ଡରନ୍ତି
ଏତା ଧାଡ଼କେ ବାହ୍ମଣ ଆଚିଲ ସବୁନ୍ତି ।
ଯତ୍ନକର ରଖିଅଛୁ ଯଜ୍ଞବଳ ପାଇଁ
ମୋହର ପୂର୍ଣ୍ଣ ଆହୁତ ଦେଖ ଆଜ ଭଡ଼ି ।
ମାଜଣା କରାଇ ଅଚ୍ଛୁ ସଙ୍ଗ ନରପତ
ସମସ୍ତଙ୍କୁ ପକାଇବ ସମ୍ପୂର୍ଣ୍ଣ ଆହୁତ ।
ତୋଷେ ପ୍ରସନ୍ନ ହୋଇବେମୋତେ ବୈଶ୍ୱାନର
ଇନ୍ଦ୍ରପଦ ଘେନ ମୁଁ ଯେ ବସିବ ସ୍ୱର୍ଗର ।
ବ୍ରାହ୍ମଣ ହୋଇ ଭୁମ୍ଭର-ସକ୍ତ ଯେ ଲଘୁ
ପ୍ରିୟପ୍ରାଣ ବୁଡ଼ାଇବା ସମର ଭୁ ମାଗୁ
ନୁହ ଭୁମ୍ଭେ ମହାବେପା ନୁହ ଯେ ବ୍ରାହ୍ମଣ
କପଟ ରୂପ ଧରଣ ମାଗୁଅଛ ରଣ ।
ଦେବ କ ଦାନବ ଭୁମ୍ଭେ ଛଦ୍ମବେଶଧାରୀ
ନଶ୍ଚୟ ଆସିଛ ଭୁମ୍ଭେ ମୃତ୍ୟୁ ଇଚ୍ଛାକରି ।
ଧର୍ମକୁ କଷଣ ଭୁମ୍ଭେ ଦେଉଅଛ ଦ୍ୱିଜ
ଋଷିଙ୍କୁ ସାକ୍ଷ୍ୟ କରଣ ବୋଲେ ମହାରାଜ ।
ମୋର ଦୋଷ ନାହିଁ ଭୁମ୍ଭେ ଇଚ୍ଛାରେମରିବ
ଏହି ବ୍ରହ୍ମହତ୍ୟା ଦୋଷ କାହାକୁ ଲଗିବ ।
ଭୀମସେନ ବୋଇଲା ଯେ ଶୁଣ ଜରାସନ୍ଧ
ସଂଗ୍ରାମେ ହୁଅଇ ଗୁରୁ ବପ୍ର ଶିରଚ୍ଛେଦ ।
ଅହୋବଳ ସଂଗ୍ରାମରେ ହତ୍ୟାଦୋଷ ନାହିଁ
ଏହା ନ ବୁଝିଣ କପାଁ କହୁ ନାହିଁ ନାହିଁ ।
ଗୋବନ୍ଦ ବୋଇଲେ କହୁ ଭୁ ପ୍ରତିଜ୍ଞା କରି
ଆମ୍ଭ ବଡ଼ିମା କରିଲେ ଆମ୍ଭସାକ୍ଷୀ ସରି ।
ପାରୁ ଯେବେ ରଜା ଭୁହି ଯୁଦ୍ଧ ବେଗେ ଦିଅ
ଆହେ ଯାଜ୍ଞିକ ବ୍ରାହ୍ମଣେ ଆହୁତ ନ ଦିଅ ।
ଗୋବନ୍ଦ ଏହା କହନ୍ତେ କୁପିତ ନୟନେ
ହାସେ ଆହୁତ ନ ଦେଲେ ଯେ ଯାଜ୍ଞିକମାନେ
ଜରାସନ୍ଧ ବୋଲେ କପାଁ ଛାଡ଼ି ହବର୍ଭାଗ
ଅଗ୍ନିରେ ଆହୁତ ଦେଉଥାଅ ବେଗ ବେଗ ।
ପ୍ରୋହିତ ବୋଇଲେ ଭୁଷ୍ଟ ନୋହିଲେ ଅତିଥି
ଧର୍ମ ପ୍ରାପତ ନୁହଇ ନ କଲେ ଭୃପତି ।
ଜରାସନ୍ଧ ପ୍ରୋହିତଙ୍କ ଏହି ବାଣୀ ଶୁଣି
ରାଗଭରେ ଉଠିଲା ସେ ତର୍ଜି ଶିର ଝୁଣି ।
ନିକଟୁଁ ବସ୍ତ୍ର ପିନ୍ଧିଲା ମାଲଙ୍କ ସମାନ
ଲମ୍ବିତ କେଶ ବାନ୍ଧିଲା ଯେ ଦୃଢ଼ ବଧାନ ।

କାନ୍ଧରୁ ପଇତା କାଢ଼ି ବାନ୍ଧି ବାମକରେ
ଠିଆ ହୋଇକରି ରଜା ଗର୍ଜ୍ଜେ କୋପଭରେ ।
ଯେସନ ପ୍ରଳୟ ମେଘ ଗର୍ଜ୍ଜେ ଘନ ଘନ
ସେହିପରି ଗରଜିଲା ମଗଧ ରାଜନ ।
ସାଧୁ ସାଧୁ ଜରାସନ୍ଧ ବୋଇଲେ ଆକାଶେ
ପୂର୍ଣ୍ଣବଳ ରଜା ପଞ୍ଚଦଶ ଉପବାସେ ।
ବାହାନାଦ କରି ପୁଣି ଉଡ଼ିଏକ ଦେଲା
ଶୂନ୍ୟ ମଞ୍ଚ ପାତାଳ ଯେ କମ୍ପିଣ ଉଠିଲା ।
କୋପ ନୟନରେ ଦ୍ୟନ୍ତେ ଅଧରକୁ ଚାପି
ଘୋର ନାଦକରି ତହୁଁ ଦୈତ୍ୟ ଭୀମରୂପୀ ।
ମନେ ବିଷ୍ମୟରେ ଡରାଇ ଦେଖିଲେ ଏହାଙ୍କୁ
ଭୟେ ଦ୍ୱିଜେ ନ ଆସିବେ ମୋ ସଙ୍ଗେଯୁଦ୍ଧକୁ
ଦନ୍ତେ ଅଧର ଚାପିଣ କୋପେ ଡାକ ଦେଲା
ତିନହେଁ ସଜ ହୋଇଣ ଆସରେ ବୋଇଲା ।
ଜଗନ୍ନାଥ ବୋଇଲେ ଯେ ହୋଇବ ଅଧର୍ମ
ଏକ ଜଣଙ୍କୁ କପରି ତିନଙ୍କ ସଗ୍ରାମ ।
ଜରା ବୋଲେ ଯୁଦ୍ଧେ କସ ଧର୍ମ ଯେ ଅଧର୍ମ
ମୋତେ ଦିଶୁଅଛ ଭୁମ୍ଭେ ପତଙ୍ଗ ସମାନ ।
ତେବେ ଭୁମ୍ଭ ମଧ୍ୟୁ ଜଣେ ଆସ ସଜ ହୋଇ
ହରି ବୋଇଲେ ଆମ୍ଭର ଇଚ୍ଛାରେ ନୁହଇ ।
ଭୁହି ଯାହା ସଙ୍ଗେ ଯୁଦ୍ଧକରି ଇଚ୍ଛା କରୁ
ଜଣେ ବାଛୁ ନଅ ଆମ୍ଭ ତିନଙ୍କ ମଧ୍ୟରୁ ।
ଜରାସନ୍ଧ ବୋଇଲା ଯେ କୃଷ୍ଣ ମୁଖ ଚାହିଁ
ଖର୍ବରୂପୀ ବ୍ରାହ୍ମଣ ଭୁ ତୋର କାର୍ଯ୍ୟ ନାହିଁ ।
ଅର୍ଜ୍ଜୁନକୁ ଚାହିଁ ବୋଲେ ହୀନବପୁ ତୋର
ତୋତେ ଚପିଦେଲା ମାତେ ଯିବୁ ଯମପୁର ।
ମଧ୍ୟରେ ଅଛଇ ଯେଉଁ ଧୂମୁଷା ବ୍ରାହ୍ମଣ
କୋଳକରି ଧଇଲେ ସେ ଲଗିବ କାଖେଣ ।
ପାରୁ ନ ପାରୁ ଏହାର ଶରୀର ଧୂମୁଷା
ଯ୍ୟା ସଙ୍ଗେ ଯୁଦ୍ଧ କରିବ ଆସୁ ଏ ସହସା ।
ବେଗ ହୋଇ ଆସ ଆସ ବୋଲନ୍ତି ବିପ୍ରବର
ଭୁମ୍ଭର ଆମ୍ଭର ଏବେ କରିବା ସମର ।
ଶୁଣି ଗୋବନ୍ଦ ଚାହିଁଲେ ଭୀମର ବଦନ
ଯାଅ ଯା ଚଣ୍ଡା ଭୁମ୍ଭଙ୍କୁ ବଜା କଲା ମନ ।
ନାରାୟଣ ଶ୍ରୀମୁଖରୁ ସୁଧାବାଣୀ ଶୁଣି
ବାହୁ ଭୁ ହେଲେ ପାଣ୍ଡବ ଆନନ୍ଦେ ସେକ୍ଷଣି ।

ହିକଲ୍କ କରି ବସନ ମାଲ୍ଲବନ୍ଧେ ଛନ୍ଦ
ଲମ୍ବିତ ଜୁଡ଼ା ଗୋଟିକୁ ଭଲରୂପେ ବାନ୍ଧ ।
ପବନ୍ତ ଉତ୍ତରୀକୁ ସେ କାନ୍ଧ ବାମକରେ
ପ୍ରତିଜ୍ଞା କରି କାହାର ହେଲେ ବୃକୋଦରେ ।
ଭୂମିରୁ ଘେନ ମୁଠାଏ ଧୂଳି ଦେହେ ବୋଳି
ବାହାସ୍ଫୋଟ ଦେଇଣ ସେ ଉଠେ ମହାବଳୀ ।
ଆକର୍ଷଣ କରି ତହୁଁ ଉଠିଲେ ସେ ପୁଣ
ଜରାସନ୍ଧ ବୋଲେ ତୁ ତ ନୋହୁ ହୋ ବ୍ରାହ୍ମଣ
ତେବଙ୍କ ବୋଲେ କପଟରୂପ ତୁମ୍ଭେ ଧରି
ଆସିଅଛ ଜଣାଯାଏ ମୃତ୍ୟୁ ଇଚ୍ଛାକରି ।
ଧର୍ମେ ବାଧା ଦେଉଅଛ ଏପାଇଁ ହେ ଦ୍ୱିଜ
ଋଷିଙ୍କ ସାକ୍ଷୀ କରଇ ମଗଧର ରାଜ ।
ମୋର ଦୋଷ ନାହିଁ ଶୁଣ ହେ ଋଷିପୁଙ୍ଗବ
ବ୍ରହ୍ମହତ୍ୟା ପାତକ ଯେ କାହାକୁ ଲାଗିବ ।
ଏହା କହି ନେଟେଳାର କରି ଡାକଦେଲା
ଭଇରବ ମୂର୍ତ୍ତି ଧରି ଭୀମେ ଆକର୍ଷିଲା ।
ବୋଇଲା ଖଡ଼ଗଫଳା ଧନୁଙ୍କ ବନ୍ଧାଣ
ପଚିଶ ଆଉ ଶକତ କେସ ଯୁଦ୍ଧ ଜାଣ ।
ଭୀମସେନ ବୋଇଲେ ଯେ ଆମ୍ଭେ ଦ୍ୱିଜଜାତି
ନ ଜାଣିବୁ ଆମ୍ଭେ ଖଡ଼୍ଗ ଧନୁଫଳା ଗତି ।
ପୁଣି ବୋଇଲେକ ଶୁଣ ଯାହା ମୁଁ ଜାଣଇ
ଗଡ଼ଗଡ଼ ପଡ଼ପଡ଼ ମୋରଠାଇଁ ନାହିଁ ।
ଜରାସନ୍ଧ ବୋଲେ ମାଲ ବନ୍ଧାଣର କଥା
ଶୁଣ ଦ୍ୱିଜ ମୋରଠାରୁ ବନ୍ଧାଣ ବ୍ୟବସ୍ଥା ।
ଭୁଜେ ଭୁଜେ ପରିଚାଳ ପାଦେ ପାଦ ଛନ୍ଦ
ଶିରେ ଶିର ପରିଚାଳ ହୃଦେ ହୃଦ ବାନ୍ଧ ।
ତାଡ଼ଣ ଉଆଣ ସେହୁ ହାକଇ ବିକଟ
ଧରଣ ଧାରଣ ମହାଘୋର ଯେ ସଙ୍କଟ ।
ଦେଖୁ ଦେଖୁ ଆକ୍ରମଣ ବିକଟାଳ ରୂପ
ଧରାଧରି ମରାମରି ଏସନ ସ୍ୱରୂପ ।
ମରଣ ମାରଣ ଆଉ ହାକ୍ତ ଉଦ୍ଧାରଣ
ଏହିପରି ମାଲବନ୍ଧା ଚୌରାଶୀ ବନ୍ଧାଣ ।
କୌତୁକ ଛତିଶ ହାର ଆଉ ପାତ ଛନ୍ଦ
ଏସନ ରୀତିରେ ଜାଣ ହୁଏ ମାଲବନ୍ଧ ।
ଆକର୍ଷି ଯୁଦ୍ଧ କରନ୍ତେ ପୁଣ ପୁଣ ଚଢ଼ି
କପଟି ବୋଇଲେ ଆହେ ଶୀଘ୍ର ଦେବ ଗୁଡ଼ି ।

ରଜାର ବଚନ ଶୁଣି ବୋଲେ ବାୟୁସୁତ
ତୁ ଯାହା ବୋଇଲୁ ରାଜା ମୋର ସନମତ ।
ଭୀମସେନକୁ ଆକର୍ଷି ଧରିଲାକ ଜରା
ଅଧରେ ଦନ୍ତ ଚିପିଣ ସେହୁ ମହାବୀରା ।
ଭୁଜେ ଭୁଜ ଧରା ଧରି ମୁଣ୍ଡେ ମୁଣ୍ଡ ମାରି
ହୁଂକାର ଶବଦେ ସେହୁ ଘୋର ରଡ଼ ଛାଡ଼ି ।
ପାଦେ ଛନ୍ଦାଛନ୍ଦି ହୋଇ ଧରାଧରି ହେଲେ
ଭୁଜରେ ଧରି ମୁଣ୍ଡରେ ମୁଣ୍ଡକୁ ପିଟିଲେ
କେହି କାହାକୁ ଯୁଦ୍ଧରେ ନ ଯାଆନ୍ତି ହାରି
ରାଗେଣ ଭୀମକୁ ଜରା କୋଳାଗ୍ରତ କରି
ପାଦେ ଛନ୍ଦିଲା ଭୀମକୁ ଜରାସନ୍ଧ ରାଗେ
ତଳେ ପକାଇ ଛାତିରେ ବସିଲା ସେ ବେଗେ
ମାଡ଼ିକରି ଜରାସନ୍ଧ ବସିଲା ଉପରେ
ପ୍ରତିଜ୍ଞା କରଣ ବୋଲେ ଅତି କୋପଭରେ ।
ଗାଉଁ ଗାଉଁ ନାଶକର ପୋଛିଲା ତୋ ପାଞ୍ଜି
ବ୍ରାହ୍ମଣ ହୋଇଣ କୁହି ବୃଥା ହେଲୁ ଗଞ୍ଜି ।
ସୁମର ବ୍ରାହ୍ମଣ ତୁରେ ତୋର ପିତାମାତା
ଆବର ସୁମର ତୋର ଯେ ଇଷ୍ଟଦେବତା ।
ହୁଂକାର ଶବଦ ତହୁଁ କରଣ ମାରୁତି
ଜରାସନ୍ଧେ ଲେଉଟାଇ କରି ତାକୁ ଚିତ ।
ମାଡ଼ଣ ବସିଲା ଭୀମ ଜରା ବକ୍ଷସ୍ଥଳେ
ପ୍ରତିଜ୍ଞା କରଇ ଭୀମ ଅତି ମତ୍ତହେଲେ ।
ପୁଣ ଜରାସନ୍ଧ ଭୀମେ ଲେଉଟାଇ ଦେଲା
ବେଗେ ତାଙ୍କ ବକ୍ଷସ୍ଥଳେ ମାଡ଼ଣ ବସିଲା ।
ପୁନରପି ଲେଉଟାଇ ପଡ଼ିଲା ମାରୁତି
ଜରା ବକ୍ଷସ୍ଥଳେ ମାଡ଼ି ବସିଲା ଝଟତି ।
ଧରାଧରି ପଡାପଡ଼ି ଆଉ ମରାମରି
ପାଦଘାତେ କମ୍ପମାନ ହେଲା ବସୁନ୍ଧରୀ ।
ମୁଥେ ମୁଥେ ପଡ଼ ତାଳ ବୃଷଭେଣ ବେନ
ଗଗନେ ଥାଇ କମ୍ପିଲେ ନାଥ ସଂଯମନୀ ।
ତର୍ଜନ୍ତି ଗର୍ଜନ୍ତି ବେନି ଉଠନ୍ତି ପଡ଼ନ୍ତି
ମୁଖରଡ଼ ଶବଦରେ ଜଗତୁ କମ୍ପାନ୍ତି ।
ଯାଗଲୋକେ ମହାଯୁଦ୍ଧ ଦେଖି କଲେ ଭୀତ
ପାଉଁଶ ପକାଇ ବେଗେ ପୋତିଲେ ଆହୁତ ।
ଭରଦ୍ୱାଜ ପୁଚ୍ଛାକଲେ ସୁଦେବଙ୍କୁ ବହି
କେବଣଜନ ଏହି ଯେ ସଂଗ୍ରାମ କରଇ ।

ସ୍ୱତେଜ ବୋଇଲେ ଦେଖି ଜଗ ମଦକର୍ମି
ଶ୍ରୀମାର୍କଣ୍ଡେ ଯେନ ଶୁଦ୍ଧେ ଭଜେ ନାରାୟଣ ।
ତଣ ପାଇଲେ ସନ୍ତୁଷ୍ଟ ଶ୍ରୀମ ମହାବୀର
ଏଣୁ ଶ୍ରୀମ ବଧିବ ଯେ ଏକ୍ଷଣି ଜୟ ।
ଶ୍ରୀମ ଜଗସନ୍ଧର ଯେ ଯୁଦ୍ଧ ଅଗୋଚର
ଝଲ୍ଲଶାଳ ଆଦିକରି ସର୍ବ ହେଲା ଚୂର ।
ମେଢ଼ ମଣ୍ଡପ ଦେଉଳ ଜଗତୀ ଆଗାର
ଏ ସମସ୍ତ ଭଙ୍ଗିକରି ହେଲା ଛାରଖାର ।
ଦୁଃସହ ସଂଗ୍ରାମ ହେଲା କହି ତ ନୁହଇ
ଶରୀରମାନ ଛୁଟିଣ ରୁଧିର ବହଇ ।
ଦେଖି କ୍ଷଣେ ଲଡ଼ାଲଡ଼ି ହୋନ୍ତି ଯେ ପ୍ରକାର
ସତ୍ୟଯୁଗେ ଯୁଦ୍ଧ ଯେହ୍ନେ କେଳୁ ମଙ୍ଗଳର ।
ତେତେହ୍ନେ ଯୁଦ୍ଧେ ଅନ୍ଧକାର ବୃହଦ୍ଧ୍ୱଜ ବଳା
ବେଳୁବେଳ ତାର ତେଜ ବଢ଼େ ଅନର୍ଗଳା ।
ଶ୍ରୀମକୁ ମାଡ଼ି ବସିଣ ପକାଇଣ ତଳେ
ବଜ୍ରମୁଷ୍ଟି ପ୍ରହାରିଲା ତାର ବକ୍ଷସ୍ଥଳେ ।
ରାଜାମାନେ ବସିଛନ୍ତି ଶିବୁଳ ପିନ୍ଧଣ
ଅଭାବ ଦେବୀଙ୍କୁ ମନେ କରନ୍ତି ଧିଆନ ।
ନମସ୍ତେ ନମସ୍ତେ ମାଗୋ ଦେବୀ ମାହେଶ୍ୱରୀ
ଆଦ୍ୟେ ସମ୍ଭୂତ ହୋଇଲୁ ଅନଳ ବଦାର ।
ଅନନ୍ତ ଅଧିକତର ବସିଲେ ତୋ ତେଜ
ଏକ ଶରୀରରେ ଶୋଭେ ସହସ୍ରେକ ଭୁଜ ।
ସକଳ ଦେବତା ତୋତେ ଦେଖି କଲେ ସ୍ତୁତି
ତୋ ଭୁଜେ ଦେଲେ ସନ୍ତୋଷେ ଧନୁର୍ବାଣ ଶକ୍ତି
ପରଶ କୁନ୍ତ ନାରାଚ ପଟ୍ଟିଶ କୁଠାର
ଶୂଳଜ କମାଣ ଆଦି ଯେ କର୍ଣ୍ଣିକଟାର ।
କାଳପାଶୀ ଜଳପାଶୀ ନାଗପାଶୀ ଶର
ବ୍ରହ୍ମାସ୍ତ୍ର ଶବ୍ଦଶକ୍ତି ଆଉ ମୁଦ୍‌ଗର ।
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ବିଦ୍ୟା
ଗୁଟିକା ଅଞ୍ଜନ ଧରି ଧାରଣ ପ୍ରସିଦ୍ଧା ।
ତାରଣୀ ତାରଣ ସାଧ ଯେ ବିଦ୍ୟା ଉଲ୍ଲୁକ
ସର୍ବାସ୍ତ୍ର ଦେଲେ ତୋତେ ସେହି ବିଶ୍ୱସୃଜ ।
ସାଧନ ବୋଧନ ମନ୍ତ୍ରେ ଅଟୁ ଜଗକ୍ଷିଣା
କାମ ଉଚ୍ଚାଟ ଲଗାଇ ଦୈତ୍ୟ କଲୁ ବଶା ।
ଚଣ୍ଡ ମୁଣ୍ଡ ବଧିଲୁ ତୋ ଶୁମ୍ଭ ଯେ ନିଶୁମ୍ଭ
ମାୟାମୋହିନୀ ରୂପରେ ବଶ କଲୁ ସର୍ବ ।

ଚଣ୍ଡମୁଣ୍ଡ ଦୁଷ୍ଟମୁଣ୍ଡ ହର୍ଷ ନାଚ ରସେ
ଦରଜାଇ କାନ୍ତିମାଳା ମୋହିଲୁ ଗୋ ହାସେ
ରକ୍ତବୀର୍ଯ୍ୟ ବଧ କଲୁ ଡାକିନୀଙ୍କି ଘେନି
ଭଇରବୀ ଚାରଣୀ ଗୋ ଖେଚରୀ ରୂପିଣୀ ।
କୁଷ୍ମାଣ୍ଡା କୋଳଇ ମାଗୋ ଅଭୟା ବାସେଲୀ
କାମାକ୍ଷୀ ତ୍ରିପୁରା ମାଗୋ କଙ୍କାଳୀ ବେତାଳୀ
ଅନ୍ନପୂର୍ଣ୍ଣା ମୋହିନୀ ଗୋ ଅଟୁ କାମସେଣା
ବ୍ରହ୍ମାୟଣୀ ରୁଦ୍ରାୟଣୀ ମାଇ ସର୍ବଜଣା ।
ଚଣ୍ଡିକା ଯେ ଚନ୍ଦ୍ରଚୂଡ଼ା ବେତାଳୀ କେଶରୀ
ମହା ବିଶ୍ୱରୂପ ହୋଇ ଘୋଟି ସର୍ବପୁରୀ ।
ଧାଆଁ ରେ ମାରରେ ବୋଲୁ ହେଲୁ ହୁହୁ ରବ
ରକ୍ତପାୟୀ ପିଶାଚୁଣୀ ଡାକିନୀ ଭୈରବୀ ।
କାଳିକା ସେ କାଳରାତ୍ରି ଅନନ୍ତା ବିଜୟା
ଏକେଶ୍ୱରୀ ଉତପତ୍ତି ବହୁ ତୋର ମାୟା ।
ଦୁଷ୍ଟ ଅସୁରଙ୍କୁ ମାରି ରକ୍ତ ମାଂସେ ଖେଡ଼
ଆବର ଶୂନ୍ୟେ ବୁଲାଇ ପର୍ବତେ କଷ୍ଟଡ଼ ।
ସ୍ତମ୍ଭର ବିମାନ ଦୈତ୍ୟ ମାଇଲୁ କୁ ହସ୍ତେ
ବୀରଘଣ୍ଟା ନାଶ କଲୁ ଦେବତାଙ୍କ ହିତେ ।
ବେତାଳ ରୂପେ ନାଶିଲୁ ଦୁଷ୍ଟ କାଳଘଣ୍ଟ
ମାୟାରେ ମୋହି ବଧିଲୁ ମାଗୋ ସର୍ବ ଦୁଷ୍ଟ ।
ମହିଷ ବଧିଲୁ ହୋଇ ଉଲଗନ ମାଈ
ମୋହିତ କାମବଶେ ସେ ମୂର୍ଚ୍ଛା ଗଲା ସ୍ୱହିଁ ।
ଶୂଳରେ ମାଡ଼ିବସିଲୁ ତାର ବକ୍ଷସ୍ଥଳେ
ମହିଷ ମର୍ଦ୍ଦିନୀ ନାମ ବହିଲୁ ଭୂତଳେ ।
ଜୟ ମାଗୋ ନାରାୟଣୀ ଜୟ ଆଦିଶକ୍ତି
ସଂସାର ଜନମାନଙ୍କ ଖଣ୍ଡୁ ତୁ ଦୁର୍ଗତି ।
ଲୋଭ ମୋହ କାମ କ୍ରୋଧ ହିଂସା ଅପବାଦେ
ମତ୍ତ ହୋଇ ସେବ ନାହୁଁ ତୋର ପଦ୍ମପାଦେ
ଯୋଗେ ଯୋଗେଶ୍ୱରୀ ମା ଗୋ ଏ ଆପଦ ଖଣ୍ଡ
ଅନ୍ତର ପଶିଣ ନେବ ଏ ଜଗ ପାଷାଣ୍ଡ ।
ଆନନ୍ଦଦାୟିନୀ ମାଗୋ ସର୍ବ ଦୁଃଖହର
ଏ ବିପଦୁଁ ଉଦ୍ଧର ମା ଆମ୍ଭେ ଯେ କାତର ।
ମୁକ୍ତି ଗତି ପାଇବୁଁ ଗୋ ହୁଅ ପରସନ୍ନ
ବାରେକ ମାତେ ଅଭୟା ଦିଅ ଦରଶନ ।
କନ୍ୟାମାସ ଶୁକ୍ଳପକ୍ଷ ଅଷ୍ଟମୀର ତିଥି
ଶରଦ ଉତ୍ସବେ ତୋତେ କରିବୁ ଗୋ ଭକ୍ତି ।

ବନ୍ଧୁ ସମ୍ଭାରେ କରିବୁ ନଶାକାଳେ ପୂଜା
ଷୋଳଦନ ବେଢ଼ିଥିବୁ ତୋତେ ବଳିଭୋଜା
ମହିଷ ମେଷ ଛାଗଳ ରକ୍ତମାଂସେ ପୂଜା
ନିଶ୍ଚୟ ଦେବୁ ମା ତୋତେ ଆମ୍ଭେ ସର୍ବରାଜା
ଜରାସନ୍ଧ ବଧ ହେଉ ଏ ବ୍ରାହ୍ମଣ ହସ୍ତେ
ଯଦି ଭକତବତ୍ସଳା ଅଟ ମା ଜଗତେ ।
ସ୍ତବ ଶୁଣି ଗୋସାମଣୀ ଅଭୟ ମଙ୍ଗଳା
ରାଜାଗଣେ ଦୃଶ୍ୟଦେଇ ବୋଇଲେ ରେ ବଳା
ଛାଡ଼ ମନୋଭ୍ରାନ୍ତ ତୁମ୍ଭେ ସକଳ ରାଜନ
ଏହିକ୍ଷଣି ଜରାସନ୍ଧ ହୋଇବ ନିଧନ ।
ରାଜାଙ୍କୁ ବର ଦେଇଣ ଭୀମେ କଲେ ଦୟା
ଭୀମ ହୃଦେ ବିଜେକଲେ ସେହି ମହାମାୟା ।
ସଂଗ୍ରାମରେ ପରାଜିତ ହୋଇଥିଲା ଭୀମ
ଦେବୀ ବଳ ପାଇବାରୁ ହୋଇଲା ସାଷ୍ଟାମ ।
ଜରାସନ୍ଧେ ପକାଇଲା ପଛୁଁ ଲେଉଟାଇ
ମାଡ଼ିଣ ହୃଦେ ବସିଲା ଭୀମସେନ ତହିଁ ।
ମନ୍ଦର ମାଡ଼ିବସିଲା ପରାୟେ ମେରୁକୁ
ତେହ୍ନେ ଭୀମ ମହାଭାର ହେଲା ସେ ଜରାକୁ ।
ଲେଉଟାଇ ବକ୍ଷସ୍ଥଳେ ମାଡ଼ି ବସିଥିଲା
ହସ୍ତହାର ଦେଇ ତାର ତୋଟିକି ଚପିଲା ।
ବେନି ପାଦେ ମାଡ଼ିଲା ଯେ କରି ଉରୁ ଜାନୁ
ଅପାର ପ୍ରତିଜ୍ଞା କରେ ପବନର ସୂନୁ ।
ଆରେ ରେ ଜରା ସୁମର ତୋ ଇଷ୍ଟଦେବତା
ଆବର ସୁମର ତୋର ଯେଉଁ ପିତାମାତା ।
ରେ ରେ ଜରା ସରିଲା ରେ ବିଭୂତି ତୋହର
ମୋ ହସ୍ତେ ନିଶ୍ଚୟ ଯିବୁ ଶମନ ନଗର ।
ଆରେ ଜରାସନ୍ଧ ତୁହି ପ୍ରତିଜ୍ଞା ଦେଖାଇ
ବହୁ ଅନ୍ୟାୟ କରିଛୁ ଯମ ସେଥିପାଇଁ ।
ହିଂସାୟୁ ଯମ କରଣ ମୋତେ ପେଷିଅଛୁ
ଆଜ ତୋ ପରାଣ ନେବି ସତ୍ୟ ମୁଁ କହୁଛି ।
ରେ ରେ ଜରା ଆଉ ତୋର ନାହିଁଟି ଆୟୁଷ
ତୋତେ କେ ରଖିବ ଆଜ ଆସୁ ମୋର ପାଶ
ଯଦ୍ୟପି କୁବେର ବ୍ରହ୍ମା ରୁଦ୍ର ବଜ୍ରଧାରୀ
ଆସିଲେ ସେ ନ ପାରିବେ ତୋତେ ଉଦ୍ଧାରି
ଏପରି ପ୍ରତିଜ୍ଞା କରି ପବନର ସୁତ
ଗର୍ଜ୍ଜନ କରି ମାଇଲା ଏକ ବଜ୍ରମୁଥ ।
ସାଧୁ ମହିମା ଅଟଇ ମଗଧାଧିପତି
ଭୀମ ମୁଥଘାତେ ସେ ନ ହେଲା ବିନଶ୍ୟତି ।
ପୁଣି ପ୍ରହାର କରିଲା ଭୀମ ଦୁଇ ମୁଥ
ସେ ମୁଥେ ଫାଟି ନ ଗଲା ଜରାସନ୍ଧ ମାଥ ।
କିବା ଅଚେତ ନୋହିଲା ଜରାସନ୍ଧ ଶିର
କେବଳ ସେ ଘାତେ ରକ୍ତ ହୋଇଲା ବାହାର
ବହେ ଶରୀରୁ ଝିପଣ୍ଡ ରକ୍ତ ସମ ଘର୍ମ
ଜରା ବକ୍ଷସ୍ଥଳେ ବସି ବିଚାରଇ ଭୀମ ।
ରେ ରେକାର କରି ଦନ୍ତେ ଅଧରକୁ ଚାପି
ପୂର୍ଣ୍ଣଚନ୍ଦ୍ରକୁ ଯେସନେ ରାହୁ ଥାଏ ବ୍ୟାପି ।
କାଳାନ୍ତକ ରୂପକୁ ଯେ ପ୍ରକାଶିଲା ଭୀମ
ଉଡ଼ୁଘାତେ କମ୍ପୁଅଛି ପୃଥ୍ୱୀ ଦମ ଦମ ।
ଆବର ଯେ କମ୍ପି ଗଲା ସପ୍ତଦ୍ୱୀପ ମହୀ
ଜରାସନ୍ଧ ମୁଥଘାତେ ବିନାଶ ନୁହଇ ।
ଭୀମ ପ୍ରଶଂସଇ ଧନ୍ୟ ମଗଧର ନାଥ
ମୋର ଯୁଦ୍ଧ ସହିବାକୁ ହେଲୁ ତୁ ସମର୍ଥ ।
ମହାଶ୍ରମ ପାଇଣ ସେ ପବନର ବଳା
ଶତସିଂହ ପର୍ବତକୁ ସୁମରଣା କଲା ।
ହେଲା ଏକୋତ୍ତର ଶତସିଂହର ବିକ୍ରମ
ବୃକୋଦର ମୂର୍ତ୍ତି ତହିଁ ବିକାଶିଲା ଭୀମ ।
ଦେଖି ହାସକଲେ ତାକୁ ପୁରଜନମାନେ
ନବତାଳ ଉଚ୍ଚ ଭୀମ ବଢ଼ିଲା ତକ୍ଷଣେ ।
ଭୀମ ବିଶ୍ୱରୂପ ଦେଖି ବୁଜିଲେ ଯେ ଆଖି
ଜରାସନ୍ଧ ପ୍ରାଣହତ ନୋହିଲା ତା ଦେଖି ।
ସଂଗ୍ରାମରେ ବିମୁଖ ଯେ ହୋଇ ବୃକୋଦର
ଭାବିଲେ ଛାଡ଼ିବ ଥାଉ ହୋଇ ଏ ଅମର ।
ଏହା ଦେଖି ଅର୍ଜୁନ ବୋଇଲେ ଶୁଣ ନାରାୟଣ
ଆମ୍ଭେ ପାଞ୍ଚଭାଇ ସଦା ତୁମ୍ଭରେ ଶରଣ ।
ଏହିପରି କଥା ଲୋକେ କହନ୍ତି ନିରତେ
ପାଣ୍ଡବେ ବଞ୍ଚିଅଛନ୍ତି ଗୋବିନ୍ଦ ଆଶ୍ରିତେ ।
ସଂଗ୍ରାମେ ଭୀମ ପାଇଲେ ବହୁତର ଦୁଃଖ
ବଧ ଉପାୟ ନ କର କିପାଁ ପଦ୍ମମୁଖ ।
ନ ପୁଣ ଛାଡ଼ନ୍ତି ଭୀମ ଏ ଜରାସନ୍ଧକୁ
ବହୁତ କଷ୍ଟରେ ପାଡ଼ିଅଛନ୍ତି ତାହାକୁ ।
ହରି ବୋଇଲେ କହିଲେ ଯାହା ବିଶ୍ୱନାଥ
ଜଣାଯାଏ ପାସୋରି ତା ଦେଲେ ବାତସୁତ ।

ପାର୍ଥେ ବୋଇଲେ ଯୁଦ୍ଧରେ ହୋଇ ସେହ୍ନଭେଳ
ମୂର୍ଖ ବୁଦ୍ଧି ହେବୁ ତାହା ଭୁଲିଲେ ସକଳ ।
ମଣ୍ଡଳରେ ପାସୋରିଲେ ଶିବଙ୍କ ବଚନ
ଏବେ ତାଙ୍କୁ ଚେତାଇଣ ଦିଅ ଜନାର୍ଦ୍ଦନ ।
ଅର୍ଜ୍ଜୁନର ବୋଲ ଶୁଣି ଦେବ ଶିରୀପତି
କରତାଳ ମାରକର ବସିଲେ ଝଟତି ।
କରତାଳ ଶୁଣି ବୁଝିଦେଲେ ଭୀମସେନ
ପୁନଃ ପୁନଃ ବୃହାନ୍ତେଣ ହରଙ୍କ ବଚନ ।
ଧୋତି ଗୋଟିଏକ ହର ଶ୍ରୀଭୁଜରେ ଧରି
ଭୀମ ବୁଝିବା ମାତ୍ରକେ ଦେଲେ ତାକୁ ଚିରି ।
ଶିବଙ୍କ ବଚନ ଭୀମ ପାସୋରିଣ ଥିଲା
ନାରାୟଣ ଠାରିଦ୍ୟନ୍ତେ ଜ୍ଞାନ ଉପୁଜିଲା ।
କରି ବାହାନାଦ ଧରି ଜରା ବେନପାଦ
ଟେକିବା ବେଳେ ବିଶ୍ବର କରେ ଜରାସନ୍ଧ ।
ଗୃପ୍ତରୂପେ ବିଜୟ କ କଲୁ ଜଗନ୍ନାଥ
ତୋ ବିନା ବ୍ରହ୍ମାଣ୍ଡେ କେହି ନାହିଁ ସମରଥ ।
ଅଷ୍ଟାଦଶବେଳ ଧାଡ଼ି ସହିଲ ମୋହର
ତଥାପି ଚକ୍ରରେ ଛେଦ ନ କଲୁ ମୋ ଶିର
ତୋ ଚକ୍ରଭାରକୁ ଆଶା କରିଥିଲି ହରି
କୋପ କରନ୍ତୁ ମୋଠାରେ ପୂର୍ବ ଦୋଷ ଧରି
ନଜେ ନ ବଧି ମରାଇ ଅନ୍ତୁ ପରହସ୍ତେ
ଶ୍ରୀହସ୍ତେ ଚକ୍ର ମାରିଣ ବଧ କର ମୋତେ ।
ଦିଅ ମୋତେ ମୋକ୍ଷଗତି ଆହେ ଶିରୀପତି
ନାଶକରି ହସ୍ତେ ମୋତେ ନ ଦିଅ ଯେ ଶାସ୍ତି
ବଚନରେ ଜରାସନ୍ଧ ବସ୍ତୁତ ବିନୟୀ
କହିଲେକ ନମ୍ରଭାବେ କାନ୍ଦ କାନ୍ଦ ହୋଇ
ଗୋବିନ୍ଦ ବୋଇଲେ ଭୀମ କସ ବୁଝି ଦେଖୁ
ବେନଫାଳ କରି ତରି ନ ରଖ ଦୁଷ୍ଟକୁ ।
ହରି ଆଜ୍ଞା ପ୍ରମାଣରେ ଏକ ପାଦ ଧରି
ତାର ଆର ପାଦ ପରେ ଛିଡ଼ା ହୋଇକରି ।
ସ୍ବରେଣ ଗର୍ଜ୍ଜଇ ଭୀମ ନରସିଂହ ପ୍ରାୟେ
ବ୍ରହ୍ମାଣ୍ଡ ଯେ କମ୍ପି ଗଲା ଘୋର ରଡ଼ିରାଏ ।
ଆକର୍ଷି ଧଇଲା ଭିଡ଼ି ପବନର ବାଳ
ବସ୍ତ୍ରରୂପେ ଉଚ୍ଛୁଡ଼ିଣ କଲା ବେନଫାଳ ।
ପବନ ସାହାଯ୍ୟେ ସେହୁ ଖଣ୍ଡେକ ବୁଲାଇ
ଉତ୍ତରପନ୍ତେ ପକାଇଲା ସମୁଦ୍ରେ ସେ ଯାଇଁ ।

ଅଗାଧଜଳେ ପଡ଼ିଲା ଜରା ଅର୍ଦ୍ଧଖଣ୍ଡ
ପଡ଼ନ୍ତେ ଜଳ ଉଚ୍ଛୁଳି କମ୍ପିଲା ପ୍ରଚଣ୍ଡ ।
ଆରଖଣ୍ଡ ବୁଲାଇଣ ଛାଡ଼ିଲା ସେ କୋପେ
ଆକାଶମଣ୍ଡଳଯାଏ ଗଲା ସେ ପ୍ରତାପେ ।
ଶୂନ୍ୟରେ ଅଦୃଶ୍ୟ ହେଲା ଭୀମସେନ ଡରେ
ଖେଚର ହୋଇଣ ସେହୁ ରହିଲା ଶୂନ୍ୟରେ ।
ଜୟ ଜୟ ଶାରଳା ଗୋ ମହିଷମର୍ଦ୍ଦିନୀ
ଶାରଳା ଦାସକୁ ଦୟା କର ଗୋ ଜନନୀ ।

---

## ଜରାସନ୍ଧ ବଧ ଶୁଣି ସହଦେବଙ୍କର କୋପ ଓ କୃଷ୍ଣଙ୍କୁ ସ୍ତବ କରିବା ଏବଂ ମଗଧ ରାଜ୍ୟରେ ରାଜାହେବା

ଜଣାଇଲେ ସହଦେବ ଆଗେ ଚରଗଣ
ତୁମ୍ଭ ପିତାଙ୍କୁ ବଧିଲେ ସେ ତିନବ୍ରାହ୍ମଣ ।
ଶୁଣିକରି କୋପକଲା ସହଦେବ ବୀର
ଦଣ୍ଡ ହାକ ପଶିଲା ସେ ନଗର ଭିତର ।
ପାତ୍ରମନ୍ତ୍ରୀ ଅମାତ୍ୟ କୁଟୁମ୍ବଙ୍କୁ ଘେନ
ହସ୍ତ ମାର ହସ୍ତ ମାର କରି ଉଚେ ଧ୍ୱନ ।
ଧାଇଁଲେ ଯେ ଯୋଦ୍ଧାମାନେ କରେ ଶସ୍ତ୍ର ଧରି
ବୀର ତୂର ଶବ୍ଦେ ଶୂନ୍ୟମଣ୍ଡଳ ଯେ ପୂରି ।
ତେଇଶ କ୍ଷଉଣୀ ଥିଲେ ଜରାସନ୍ଧ ବଳ
ତାଙ୍କ କୋଳାହଳ କଲା ସିନ୍ଧୁର ଚହଳ ।
ଦଣ୍ଡ ଦେଖି କୋପମନା ହୋଇଲେ ପାବନ
ଧାଇଁଲେ ପବନ୍ନ ଖରେ ଶିଳାମାନ ଘେନ ।
ଗର୍ଜ୍ଜନ ନାଦେ କମ୍ପଇ ରାଜାର ନଗର
ଶୂନ୍ୟଯାଏ ଲାଗିଅଛି ଭୀମସେନ ଶିର ।
କୋପରେ ପାଣ୍ଡବବୀର ଧାଏଁ ଚଳେଗାଜ
ଦେଖିଣ ମଗଧ ସୈନ୍ୟ ପଳାଇଲେ ଭଜ ।
ରଥ ଉପରେ ରଥକୁ କଚାଡ଼ଇ ଭୀମ
ଗଜେ ଗଜ କଚାଡ଼ଇ ପାଣ୍ଡବ ମଧ୍ୟମ ।
ଦୁଇ ଦୁଇ ତିନି ତିନ ଧରିଣ ସେ ପିଟି
ଭୟରେ ମଗଧବଳ ଯାଆନ୍ତି ମରିଲେଟି ।
ରକତରେ କରଦମ ହେଲା ମହୀଆଳି
ଶୋଣିତରେ ବୃକୋଦର କରେ ରଙ୍ଗକେଳି
ସକଳ ସଇନ୍ୟ ଭୀମ ପକାଇଲେ ବଳି
ଅଠର [illegible] ।

ସୈନ୍ୟ ମରନ୍ତେ ଧାଇଁଣ ଭୀମ କୋପଭରେ
ମୁଥେକ ମାଇଲା ସହଦେବ ରଥପରେ ।
ଭଙ୍ଗିଣ ରଥ ତାହାର ଚୂର୍ଣ୍ଣ ହୋଇଗଲା
ସହଦେବର କେଶକୁ ଆକର୍ଷି ଧଇଲା ।
ଆଉ ହସ୍ତ ଉଠାଅନ୍ତେ ମାଧବ କୁ ମୁଥ
ଦେଖି କୋଳକର ବେଗେ ଧଇଲେ ଅଚ୍ୟୁତ
ରହ ରହ ଭୀମସେନ ଆମ୍ଭର ଶପଥ
ସହଦେବଙ୍କୁ ନାଶିଲେ କାର୍ଯ୍ୟ ହେବ ହତ ।
ଜରାସନ୍ଧ ବଧ ହେଲା ତାର ଦୁଷ୍ଟପଣେ
ବୃଦ୍ଧ ଓସା ଲକ୍ଷେ ରାଜା ପାଇବା ଏକ୍ଷଣେ ।
ଜରାସନ୍ଧ ରାଜ୍ୟ ହେବ ଏହି ଚକ୍ରବର୍ତ୍ତୀ
କାର୍ଯ୍ୟ ଯୋଗୁଁ ରକ୍ଷା କର ଏହାକୁ ମାରୁତି ।
ଯେବେ ଏହାକୁ ଏଠାରେ ରାଜା ନ କରିବା
ସୁବର୍ଣ୍ଣର ରାଜା ଏକ କାହୁଁ ଜିଆଇବା ।
ହରିଙ୍କ ବଚନେ କୋପ ମାରୁତି ଛାଡିଲେ
ସହଦେବଙ୍କୁ ଶ୍ରୀକୃଷ୍ଣ କୋଳେ ବସାଇଲେ ।
ଦିବ୍ୟ ଚକ୍ଷୁ ଦିଅନ୍ତେ ତାକୁ ପ୍ରଭୁ ଦେବରାଜ
ଦେଖିଲା ସେ ଶଙ୍ଖ ଚକ୍ର ଆଦି ଚତୁର୍ଭୁଜ ।
କୋଳରୁ ଉଠି ସହଦେବ ଭୂମିଷ୍ଠେ ନମିଲା
ପୁଣି ଉଠି କରଯୋଡ଼ି ବହୁ ସ୍ତୁତି କଲା ।
ଶରଣ ପଞ୍ଜର ନାଥ ରକ୍ଷାକର ସ୍ୱାମି
ଏହା କହି ପୁଣି ଶତସହସ୍ର ପ୍ରଣାମି ।
ଉଦ୍ଧାର କରତା ନାଥ ତୁମ୍ଭ ଜଗଜ୍ଜେଠି
ପୁଣ ପୁଣ ସହଦେବ ଶ୍ରୀଚରଣେ ଲୋଟି ।
ତୁ ଦେବ ଜଗତ ନାଥ ଜଗଜ୍ଜନ ବନ୍ଧୁ
ଦୈତ୍ୟ ନିବାରଣେ ନାଥ ଜାତ ପୂର୍ଣ୍ଣଇନ୍ଦୁ ।
ତୋର ବହୁଦୋଷ କଲା ଏହି ଜରାସନ୍ଧ
ଜାଣେ ନାଶ କଲୁ ତାକୁ ପାତ କୁଠ ଛନ୍ଦ ।
ଜୟ ତୁ ପରମେଶ୍ୱର କରୁଣା ସାଗର
ଜୟ ତୁ ପରମେଶ୍ୱର ଜଗତଈଶ୍ୱର ।
ଜୟ ତୁ ପରମେଶ୍ୱର ଦୁଷ୍ଟ ଦର୍ପ ଗଞ୍ଜା
ହେ ପରମ ଈଶ୍ୱର ଯାମଳାର୍ଜ୍ଜୁନ ଭଞ୍ଜା ।
ଜୟ ତୁ ପରମେଶ୍ୱର ଧ୍ୱଂସି କାଳଦର୍ପ
ଜୟ ହରି ନାଶକଲୁ କଂସ କଉଶପ ।
ଜୟ ତୁ ପରମେଶ୍ୱର ଦୁଃଖ ନିବାରଣ
ଜୟ ତୁ ପରମେଶ୍ୱର ଶଙ୍କା ନିବାରଣ ।

ଜୟ ତୁ ପରମେଶ୍ୱର କୂର୍ମରୂପ ଗୋଟି
ଜୟ ତୁ ପରମେଶ୍ୱର ସପ୍ତପୃଥ୍ୱୀ ପିଠି ।
ଜୟ ତୁ ପରମେଶ୍ୱର ମାୟାରୂପ ଧାରି
ଜୟ ତୁ ପରମେଶ୍ୱର ଦନ୍ତେ ପୃଥ୍ୱୀ ଧରି ।
ଜୟ ତୁ ପରମେଶ୍ୱର ମୂରତି ବାମନ
ଜୟ ତୁ ପରମେଶ୍ୱର କଳି ନିବାରଣ ।
ଜୟ ତୁ ପରମେଶ୍ୱର ନରସିଂହ ରୂପ
ନଖେ ବିଦାରିଲୁ ପ୍ରଭୁ ହିରଣ୍ୟ କୌଶପ ।
ଜୟ ଶ୍ରୀହରି ମାଳଞ୍ଚ ରୂପେ କଲୁ ଜୟ
ଜୟ ହରି ବିଧ୍ୱଂସିଲୁ ବୈଲୋଚନ ରାୟ ।
ଜୟ ତୁ ପରମେଶ୍ୱର ଯମଦଗ୍ନି ବଳା
ଜୟ ପରମେଶ ପର୍ଶୁଧର ମହାଖଳା ।
ଜୟ ତୁ ପରମେଶ୍ୱର ରାଜାନ୍ତ ନିରୋଧି
ଜୟ ପର୍ଶୁ ଏକୋଇଶ ବାର ପୃଥ୍ୱୀ ସାଧି ।
ଜୟ ତୁ ପରମେଶ୍ୱର ଜାତ ସୂର୍ଯ୍ୟବଂଶୀ
ଜୟ ତୁ ପରମେଶ୍ୱର ଜାନକୀଙ୍କି ତୋଷି ।
ଜୟ ତୁ ପରମେଶ୍ୱର ରାମ ଅବତାର
ଜୟ ତୁ ପରମେଶ୍ୱର କୃଷ୍ଣ କଳେବର ।
ଜୟ ତୁ ପରମେଶ୍ୱର ନୀଳପଦ୍ମ ରୁଚି
ଜୟ ତୁ ପରମେଶ୍ୱର ସଖା ସବ୍ୟସାଚୀ ।
ଜୟ ତୁ ପରମେଶ୍ୱର ତୋର ସହସ୍ରନାମ
ଜୟ ତୁ ପରମେଶ୍ୱର ଅର୍ଥମୋକ୍ଷ କାମ ।
ଜୟ ତୁ ପରମେଶ୍ୱର ପୁରୁଷ ଉତ୍ତମ
ତୋ ପାଦେ ଶାରଳା ଦାସ ସହସ୍ର ପ୍ରଣାମ ।
ଶୁଣ ଆହେ ନୃପବର କହନ୍ତି ଅଗସ୍ତି
ସହଦେବ ଏହିରୂପେ କଲା ବହୁସ୍ତୁତି ।
ପୁନଶ୍ଚ ବୋଇଲା ସ୍ୱାମି ଜୟ ତୁ କେଶବ
ଜଗତ ବିନାଶ କଲୁ ତୁମ୍ଭ ବାସୁଦେବ ।
ସହଦେବର ମୁଖରୁ ଏହିପରି ଶୁଣି
ଭୁଜ ଧରି ବସାଇଲେ କୋଳେ ଚକ୍ରପାଣି ।
ତୁମ୍ଭ ମହାଗୁଣବନ୍ତ ଅଟ ସହଦେବ
ମହାଜନ୍ମ ପଣେ ଜରା ପାଇଲା ପ୍ରାଭବ ।
ଭୋଗାନନ୍ତ ଯୁଦ୍ଧରେ ହାନି ଜରା ନାଶୁଥିଲେ
ହର ବ୍ରହ୍ମା ଡେଡେଡେନେ ତା ପ୍ରାଣ ରଖିଲେ
ବ୍ରହ୍ମା ବୋଇଲେ ଏହାକୁ ଛାଡ଼ି ହଳଧାରି
ଏହାଦ୍ୱାରା ଯୁଧିଷ୍ଠିଙ୍କ କାର୍ଯ୍ୟ ହେବ ପୂରି ।

ରାଜସୂୟ ଯାଗ ସମୟେ ସେ ରାଜାମାନ ତ
ବନ୍ଦୀକରି ରଖିଥିବ ସେ ହେବ ପ୍ରାପତ ।
ଧାତାଙ୍କ ବାକ୍ୟ ଶୁଣିଲେ ତାଙ୍କୁ ବଳରାମ
ଯୁଧିଷ୍ଠି କାର୍ଯ୍ୟେ ମାଗିଲେ ତାହାଙ୍କୁ ଯେ ଭୀମ
ଏସନକ କହିଲେ ଯେ ଦେବ ବାସୁଦେବ
ଏଥିକ ଦୁଃଖ ନ କର ଆହେ ସହଦେବ ।
ତୋହର ପିତାଙ୍କୁ ଆମ୍ଭେ ନାଶକଲୁ ବାବୁ
ତାଙ୍କୁ ମାତ୍ର ଏବେ ତୋତେ ଦେଇ ନ ପାରବୁ
କରପତ୍ର ଯୋଡ଼ିଣ ଯେ କହେ ସହଦେବ
ମୋ ପିତାଙ୍କୁ ନାଶକଲ ତୁମ୍ଭେ ବାସୁଦେବ ।
ଜରାସନ୍ଧ ରାଜା ଅଟେ ତୋହର ବଇରି
କୃଷ୍ଣଙ୍କ ଦୋରେହା ହୋଇ ରହିବ କପରି ।
ତୋହର ବଚାଣି ସେହି ହେଲା ଯେତେବେଳୁ
ଯମ ପୋଛୁଲାଣି ତାର ପାଞ୍ଜି ସେତେବେଳୁ ।
ପ୍ରୋହିତ ହକାରି କୁଶ ପ୍ରତିମା ତିଆରି
ଶ୍ମଶାନ ଭୂମିରେ ନେଇ ଦହନ କରାଇ ।
କରେ କୁଶଗଣ୍ଠି ଆଉ ଯବ ତିଳ ଘେନ
ସହଦେବ ଦେଲା କୁଶମୂର୍ତ୍ତିକି ମୁଖାଗ୍ନି ।
ଏକାଦଶ ଦିବସରେ ପ୍ରେତକର୍ମ ସାରି
ପ୍ରୋହିତ ତେସନ କଲେ ଶାନ୍ତ୍ୟଦକ କରି ।
ଅନେକ ଧନ ବସନ ଦେଲାକ ଯେ ଦାନ
ଏହାପରି ଶୁଦ୍ଧ ହୋନ୍ତେ ଜରାର ନନ୍ଦନ ।
ଅଭିଷେକ ବିଧାନ ଯେ କରନ୍ତି ଶ୍ରୀହରି
ମଗଧରେ ସହଦେବ ହେଲା ଅଧିକାରୀ ।
ରାଜ୍ୟରେ ବହୁ ଉତ୍ସବ କଲେ ସହଦେବ
ସ୍ୱର୍ଣ୍ଣକୁମ୍ଭ ବସାଇଲ ନେଇ ସର୍ବଠାବ ।
ନେତର ପତାକା ଉଡ଼େ ହୋଇ ଘରହରି
ରମ୍ଭାବୃକ୍ଷ ଆମ୍ବପତ୍ର ଲମ୍ବେ ସର୍ବ ଦ୍ୱାରି ।
ସହଦେବ ଅଭିଷେକ ହେବାର ଶୁଣିଣ
ବହୁତ ଦେଶୁ ଅଇଲେ ବହୁ ତପୋଧନ ।
ପ୍ରବେଶ ହୋଇଲେ ଯାଇ ମଗଧ ରାଜ୍ୟରେ
ପୂଜା ପାଇ ବସିଲେ ସେ ଋଷି ସମାଜରେ ।
ଜଗନ୍ନାଥ ଆଜ୍ଞାଦେଲେ ସହଦେବ ରାଇ
ଉତ୍ସବକାଳେ ରାଜାଙ୍କୁ ଦିଅ ମୁକୁଳାଇ ।
ଶୁଣିବେ କି ଅମଙ୍ଗଳ କଥା ନ ରହିବ
ନକ୍ଷୋଣୀ ବନ୍ଦଙ୍କି ମୁକ୍ତ ଦିଅ ସହଦେବ ।

କୃଷ୍ଣ ବାକ୍ୟେ ସହଦେବ ସେଠାରୁ ଚଳିଲେ
ବନ୍ଦୀ ନୃପତିଙ୍କି ବନ୍ଦୀ ଗୃହରୁ କାଢ଼ିଲେ ।
ହସ୍ତ ପାଦେ ପଡ଼ିଥିଲା ଯେବଣ ଶିକୁଳ
ତା ଫେଡ଼ନ୍ତେ ହରି ବୋଲି ଦେଲେ କରତାଳ
କାବେରୀ ଗଙ୍ଗାଜଳରେ ପଶି କଲେ ସ୍ନାନ
ଶ୍ରୀହରିଙ୍କ ପାଦତଳେ କରଲେ ବନ୍ଦନ ।
କୃଷ୍ଣ ବୋଇଲେ ଆମ୍ଭଙ୍କୁ କିପାଁ ପୂଜା କର
ଭୀମସେନ ଅଛନ୍ତି ଯେ ତୁମ୍ଭର ଠାକୁର ।
ଶୁଣିଛ ତ ଜରାସନ୍ଧ ଯେ ପ୍ରତିଜ୍ଞା କଲା
ଅଷ୍ଟ ଦଶବାର ଯାଏ ମୋତେ ଧାଡ଼ିଦେଲା ।
ତାର ଭୟେ ଜମ୍ବୁଦ୍ୱୀପ ଆମ୍ଭେ ତ୍ୟାଗକଲୁ
ସମୁଦ୍ର ଭିତରେ ଯାଇ ଲୁଚଣ ରହିଲୁ ।
ଜରା ମାରି ଭୀମ କଲେ ତୁମ୍ଭଙ୍କୁ ନିର୍ଭୟେ
ତାଙ୍କୁ ପୂଜା କର ଯାଇଁ ତୁମ୍ଭେ ସର୍ବରାୟେ ।
ଉପକାର ଯେହୁ କଲା ତା ପାଶକୁ ଯାଅ
ପ୍ରାର୍ଥନା କରି ତାହାଙ୍କୁ ସନ୍ତୋଷ କରାଅ ।
ଜଗନ୍ନାଥଙ୍କ ବଚନେ ସକଳ ନୃପତି
ଭୀମସେନ ପାଦତଳେ ପ୍ରଣାମ କରନ୍ତି ।
ଶତସସ୍ର ଦଣ୍ଡବତ କରି ଉଭାହେଲେ
ଏକ ମୁଖେ ଭୀମସେନ ସ୍ତୁତି ଆରମ୍ଭିଲେ ।
ଜୟ ବୃକୋଦର ସୋମବଂଶ ଅଧିକାରୀ
ଜୟ ବୃକୋଦର ପୃଥ୍ୱୀଭାରକୁ ନିବାରି ।
ଜୟ ତୁମ୍ଭି ବୃକୋଦର ଶତସିଂହ ଭଞ୍ଜା
ଜୟ ତୁମ୍ଭି ବୃକୋଦର ନାଗସର୍ପ ଗଞ୍ଜା ।
ଜୟ ତୁମ୍ଭ ବୃକୋଦର ଯମଦର୍ପହାରୀ
ଜୟ ବୃକୋଦର ବିଷଲଡ଼ୁ ପାରକାରୀ ।
ଜୟ ତୁମ୍ଭ ବୃକୋଦର ଦୈତ୍ୟ ନିବାରନ୍ତା
ଜୟ ବୃକୋଦର ଜତୁଘରୁ ଉଦ୍ଧାରନ୍ତା ।
ଜୟ ବୃକୋଦର ଗ୍ରାହ ମାରି କଲୁ ଠାବ
ଜୟ ତୁମ୍ଭ ବୃକୋଦର ହିଡ଼ିମ୍ବାବଲ୍ଲଭ ।
ଜୟ ବୃକୋଦର ହିଡ଼ିମ୍ବକ ବିଦାରନ୍ତା
ଜୟ ବୃକୋଦର ଶିବପୁର ଉଦ୍ଧାରନ୍ତା ।
ଜୟ ବୃକୋଦର ତୁମ୍ଭ ଦୈତ୍ୟବଳ ଧ୍ୱଂସି
ପଞ୍ଚାଳଦେଶ ମଣ୍ଡନ ଅଭୟ ବିଧସି ।
ଜୟ ତୁମ୍ଭ ବୃକୋଦର ଅଟୁ ରଣରଙ୍ଗା
ଜୟ ତୁମ୍ଭ ବୃକୋଦର କୌ[illegible] ଗଞ୍ଜା ।

ଜୟ ଜୟ ବୃକୋଦର ବାୟୁସୁତ ଭୀମ
ଜୟ ବୃକୋଦର ଯମ ପରେ ହିଡ଼ିମ୍ବଯମ ।
ଜୟ ବୃକୋଦର ଲୁମ୍ବସୈନ୍ୟ ଦର୍ପଧ୍ୱଂସା
ଜୟ ବୃକୋଦର ଶତ୍ରୁ ନାଶ ଯେ ସହସା ।
ଜୟ ଜୟ ବୃକୋଦର ଜଗ ନିଶୋଧନ
ଜୟ ଜୟ ବୃକୋଦର ବଳୀ ଅଗ୍ରଗଣ୍ୟ ।
ଜୟ ଜୟ ବୃକୋଦର ବନ୍ଧନେ କାରଣ
ଜୟ ଜୟ ବୃକୋଦର ଶରଣ ରକ୍ଷଣ ।
ଜୟ ବୃକୋଦର ସହଦେବ ରାଜା କରୁ
ଜୟ ତୁମ୍ଭ ବୃକୋଦର ଆପଦୁଁ ଉଦ୍ଧରୁ ।
ଜୟ ବୃକୋଦର ଦୈତ୍ୟ ପାଣ୍ଡବ ବିନାଶି
ଜୟ ତୁମ୍ଭ ବୃକୋଦର ଅସୀମ ସାହସୀ ।
ଏହିପରି ଭଣ୍ଟି ନୃପେ କରି ବହୁସ୍ତୁତି
ଭୀମଙ୍କ ଚରଣ ତଳେ କରିଣ ପ୍ରଣତି ।
ବୋଇଲେ ଆମ୍ଭେ ଶରଣ ନେଲୁ ଯେ ତୁମ୍ଭର
କ୍ଷମା କର ସର୍ବଦୋଷ ତୁମ୍ଭେ ହେ ଆମ୍ଭର ।
ରାଜାଙ୍କ ସ୍ତୁତି ଶୁଣିଣ ଭୀମ ଶାନ୍ତ ଭଜ
ମଧୁର ବଚନ କହି ରାଜାଙ୍କୁ ସମ୍ଭାର୍ଜି ।
ତୁମ୍ଭ ଅପମାନେ ଏହି ଜଗ ନାଶଗଲା
ଧର୍ମଦେବ ତୁମ୍ଭଙ୍କୁ ଯେ ସପକ୍ଷ ହୋଇଲା ।
ରାଜାଏ ବୋଇଲେ ସ୍ୱାମି ଜଗ ନାଶକର୍ତ୍ତା
ତୁମ୍ଭେ ସେ ଅଟ ଆମ୍ଭର ଧରମ ଦେବତା ।
ବହୁ ପରିତୁଷ କଲେ ଭୀମେ ରାଜାମାନେ
ପ୍ରଶଂସା କଲେକ ସହଦେବ ବଦ୍ୟମାନେ ।
ଅନେକ ସମାରୋହରେ ଦେବ ଦଇତ୍ୟାରି
ଜୟଧ୍ୱନି ସହଦେବ ଶୁଭ ଅବଧାରି ।
ପୁଷ୍କରକୁ ଚଳାକଲେ ଦେବ ଜଗନ୍ନାଥ
ବିଜୟ ପୁଷ୍କର ଦେବ ଘେନ କୋଟିତୀର୍ଥ ।
ସର୍ବ ତୀର୍ଥଜଳ ପୂର୍ଣ୍ଣକଳସେ ପୂରାଇ
ସହଦେବେ ଅଭିଷେକ କରନ୍ତେ ସେ ନେଇ ।
ଶିରରେ ପାଟ ବାନ୍ଧିଲେ ଦେବ ଦଇତ୍ୟାରି
ଶୁଭ ଧ୍ୱନିରେ ପୂରିତ ମଗଧ ନଗରୀ ।
ଧନ ଧାନ୍ୟ ବସ୍ତ୍ରଆଦି ଦେଲେକ ବଧାଇ
ଦେବତାମାନଙ୍କୁ ବହୁ ଶୀତଳ କରାଇ ।
ଶିରରେ ଫଣି ମୁକୁଟ ହୃଦେ ବନମାଳା
ତାଡ଼ ତୋଡ଼ର ବାହୁଟି ଆଉ ଜଗଦ୍‌ବଳା ।

ବିଜେ କଲେ ସହଦେବ ମହାନାଗ ପିଠି
କରରେ ଦମାଣ ଖଡ୍‌ଗ କୁନ୍ତ ଆଉ ଚାଠି
ଧରିଣ ଭ୍ରମଣ କଲେ ଆପଣା ନଗର
ପାତ୍ର ଅମାତ୍ୟଙ୍କୁ ଦେଲେ ଯଥା ଅଧିକାର ।
ସାତେଣି ସାମନ୍ତ ମୁନେ ଅନେକ ନିଯୋଗୀ
ପସରା ଘେନି ଆସନ୍ତି ସର୍ବେ ବେଗି ବେଗି ।
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଘେନି ନାରୀଗଣ
ସହଦେବ ବନ୍ଦାଇଲେ ଯାଇ ଜଣ ଜଣ ।
ମୁନିମାନେ ବେଦମନ୍ତ୍ର ଏକଧେ ଉଚ୍ଚାରି
ସହଦେବ କଣ୍ଠେ ଦେଲେ ସୁବର୍ଣ୍ଣ ଉତ୍ତରୀ ।
ଖତରାଇ କୁମର ଯେ ଅନେକ ଭଣ୍ଡାର
ଯାଗରେ ହବ ଆହୁତି ଦ୍ୟନ୍ତି ମୁନିବର ।
ବୃକୋଦର ଆଜ୍ଞା ଦେଲେ ରାଜାଙ୍କୁ ଡକାଇ
ସହଦେବ ଆସ୍ଥାନର ତଳେ ଖଟ ଯାଇ ।
କରୁଥିଲ ଜରାସନ୍ଧେ ସେବା ଯେଉଁପରି
ସହଦେବେ ଖଟ ତୁମ୍ଭେ ତତୋଽଧିକ କରି ।
ଯେ ଅବା ବାହୁଡ଼ି ବୋଲି କରନ୍ତି ଅମାନ୍ୟ
ମୋହର ସତ୍ୟ କଟିବ ତା ଶିର ଛେଦନ ।
ଏପରି ପ୍ରତିଜ୍ଞା କରି ବୋଲନ୍ତେଣ ଭୀମ
ରାଜାଏ ଖଟିଲେ ସହଦେବର ଆସ୍ଥାନ ।
ଶ୍ରୀହସ୍ତେ ଅକ୍ଷତ ଗୁଆ ଘେନି ଫାଲଗୁନି
ରାଜାଙ୍କୁ ଯେ ନିମନ୍ତ୍ରଣ କଲେ ସେହିକ୍ଷଣି ।
ବୋଇଲେ ରାଜସୂୟ ଯଜ୍ଞ କରିବେ ଯୁଧିଷ୍ଠି
ରାଜାଏ ତୁମ୍ଭେ ସମସ୍ତେ ତହିଁକି ଯିବଟି ।
ରାଜାଏ ବୋଇଲେ ହୋଇକରି ପ୍ରଣିପାତ
ଏକମାତ୍ର ସାକ୍ଷୀ ଜଣେ ପଠାଇବ ଦୂତ ।
ତୁମ୍ଭ ହେତୁ ରକ୍ଷା ହେଲା ଆମ୍ଭ ଏ ଜୀବନ
ଗୋବିନ୍ଦ ବୋଇଲେ ରକ୍ଷା କଲେ ଭୀମସେନ
ରାଜାମାନେ ବୋଇଲେ ଯେ ଭୀମ ଆମ୍ଭ ଗୁରୁ
ତାହାଙ୍କର ବଚନକୁ ମେଣ୍ଟିଣ ନ ପାରୁ ।
ଜୟ ଜୟ ଜଗନ୍ନାଥ ନୀଳାଚଳ ପତି
ଭୁବନ ମୋହନ ତବ ସୁନ୍ଦର ମୂରତି ।
ସେ ନବଲାବଣ୍ୟ ରୂପ ଦେଖିବାର ପାଇଁ
ବହୁଦୂରୁ ଆସୁଛନ୍ତି ନାନାକଷ୍ଟ ସହି ।
ପାଶେ ରହି ଯେତେବେଳେ ଦେଖନ୍ତି ଶ୍ରୀମୁଖ
ହରଣ ହୁଅଇ ପ୍ରଭୁ ତାଙ୍କ ସର୍ବଦୁଃଖ ।

ଯାଉ ଯେଉଁ ଅଭିପ୍ରାୟ ତା ଜାଣି ଆପଣ
ସ୍ୱେଚ୍ଛାବଶେ କୃପାକରି କରଅ ପୂରଣ ।
ଧନ୍ୟ ତୁମ୍ଭର ମହିମା ହେ କମଳା ଈଶ
ଶାରଳା ଦାସକୁ ରଖ ସଦା କରି ଦାସ ।

## ଦୁର୍ଯ୍ୟୋଧନର କପଟ ମନ୍ତ୍ରଣା ଓ ଯୁଧିଷ୍ଠିରଙ୍କର ଶୋକ କୃଷ୍ଣଙ୍କ ସହିତ ଭୀମାର୍ଜ୍ଜୁନଙ୍କ ହସ୍ତିନାରେ ପ୍ରବେଶ

ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
ଯେଉଁ ଦିନୁ କୃଷ୍ଣ ହେଲେ ପଶ୍ଚିମ ମୁରତି ।
ଦୁର୍ଯ୍ୟୋଧନ ଘରେ ପାଶେ ବସାଇ ଶକୁନି
ଜରାପୁରେ ଯାଇଛନ୍ତି ଭୀମାର୍ଜ୍ଜୁନ ଘେନି ।
କେବଣ କୃତ୍ୟ କରିଲେ ତହିଁ ଦେବ ହରି
କହ ମାମୁଁ ଏହି କଥା ବୁଝିବା କପରି ।
ଜରାସନ୍ଧେ ଭୟଙ୍କର ଯେ ପଳାଇଥିଲା
ସେ ହରି ଯାଇ ସେଠାରେ ପୁଣି କିସ କଲା ।
ଶକୁନି ବୋଇଲା ଆମ୍ଭେ ବୁଝିବା କରିବା
ଗୁପତ କରିଣ ତହିଁ ଦୂତ ବରଗିବା ।
ଶକୁନିଠାରୁ ଶୁଣିଣ ଏହା କୁରୁପତି
ଗୁପତରେ ଚାରିଜଣ ଦୂତ ବରଗନ୍ତି ।
ବୋଇଲେ ଚାରିହେଁ ତୁମ୍ଭେ ମଗଧ ଯିବ
ଜରାସନ୍ଧ ପୁରେ କିସ କଲେ ବାସୁଦେବ ।
ସେହି କଥାମାନ ଜାଣି ଆସି ଧାଡକାରେ
ସନ୍ଦେଶ କହିବ ଆସି ଆମ୍ଭର ଛାମୁରେ ।
ରଜାଙ୍କର ଆଜ୍ଞା ପାଇ ଗଲେ ଚାରିଦୂତେ
ମଗଧ ଦେଶରେ ଯାଇ ପ୍ରବେଶ ତୁରିତେ ।
ଶୁଣିଲେ ଭୀମ ଜରାର ହେଉଛି ସମର
ଭୀମ ବକ୍ଷେ ମାଡ଼ିବସେ ଜରାସନ୍ଧ ବୀର ।
ବ୍ରାହ୍ମଣ ମଲ୍ଲ ବୋଲିଣ ଶୁଭିଲା କଥନ
ଚଳିଲେ ଚରମାନେ ବାରତାକୁ ଘେନି ।
ହସ୍ତିନାରେ ବିଜେ କରିଛନ୍ତି କୁରୁସାଇଁ
ଯୁଧିଷ୍ଠି ନକୁଳ ସହଦେବ ତିନି ଭାଇ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ବାହ୍ଲିକ
ଭୂରିଶ୍ରବା ଅଶ୍ୱତ୍ଥାମା ସଇନ ଅନେକ ।
ରଜା ବହୁ ପାରିଷଣ୍ଡ ଛନ୍ତି ପଟୁଆଣୀ
ନାନା କଥା ହେଉଛନ୍ତି ତହିଁ ବସିକରି ।
ଏ ସମୟେ ଏକଦୂତ ଆସି ପାଶେ ବୋଲେ
ହେ ଦେବ ପଶ୍ଚିମ ଦୂତ ଏକ୍ଷଣି ଆଇଲେ ।
ସେମାନଙ୍କ ମୁଖ କର୍ପା ଉରସ ଦିଶଇ
ଏକାବେ ମଉଳାଇଲେ ସର୍ବ କୁରୁସାଇଁ ।
ସଭା ମଉଳାନ୍ତେ ସର୍ବ ଯୋଦ୍ଧା ବାସେ ଗଲେ
ଦୁର୍ଯ୍ୟୋଧନ ସେ ଦୂତଙ୍କୁ ପାଶକୁ ଡାକିଲେ ।
ଏକାନ୍ତ ପୁରରେ ରଜା ତାହାଙ୍କୁ ବସାଇ
ପୃଚ୍ଛେ କି ବାର୍ତ୍ତା ଆଣିଛ ଯାଇଥିଲ ଯହିଁ ।
ଦୂତେ ବୋଇଲେ ସେଠାରେ ଲଗିଛି ସମର
ଦ୍ୱିଜେ ମାଡ଼ି ବସିଥିଲେ ଜରାସନ୍ଧ ବୀର ।
ମରିଛି କି ନ ମରିଛି ମୁଖଧ୍ୱନି ହେଲା
ଜରାସନ୍ଧ ଏକ ଦ୍ୱିଜବରକୁ ମାଇଲା ।
ଏହା ଶୁଣି ସେମାନଙ୍କୁ ବୋଲେ କୁରୁନାଥ
ଆରେ କାଲି ସଭା ମଧ୍ୟେ କହିବ ଏମନ୍ତ ।
ପ୍ରଥମେ ନିହତ ହେଲେ ଯୁଦ୍ଧେ ବାସୁଦେବ
ତତ୍ପରେ ଯୁଦ୍ଧେ ବଧିଲା ସେ ଦୁଇ ପାଣ୍ଡବ ।
କାଲି ନିଶ୍ଚେ ସଭା ମଧ୍ୟେ କହିଲେ ଏମନ୍ତ
ତାଙ୍କ ନାଶ ଶୁଣି ହେବ ଯୁଧିଷ୍ଠିର ହତ ।
ଯେ ଆଜ୍ଞା କହିଣ ଦୂତେ ତହୁଁ ଚଳିଗଲେ
ପରଦିନ ସର୍ବେ ଯାଇ ସଭାରେ ବସିଲେ ।
ବିଜୟ କରିଅଛନ୍ତି ସକଳେ ଆସ୍ଥାନେ
ପାଣ୍ଡବ ଆଦି କରିଣ ଛନ୍ତି ସୈନ୍ୟମାନେ ।
ଏ ସମୟେ ଦୂତେ ଆସି ଦ୍ୱାରେ ପହଞ୍ଚିଲେ
ପଶ୍ଚିମ ନଗର ବାର୍ତ୍ତା ଆଣିଛୁ ବୋଇଲେ ।
ହେ ଦେବ ଆମ୍ଭେ ଯେ ଗଲୁ ପଶ୍ଚିମ ପ୍ରଦେଶ
ତହିଁର ବାରତା ଏବେ ଶୁଣ କୁରୁଈଶ ।
ଶକୁନି ବୋଇଲା କହ କେବଣ ବାରତା
ଜରାସନ୍ଧ ପୁରେ ହରି କଲେ କେଉଁ କଥା ।
ଦୂତେ ବୋଇଲେ ପ୍ରଥମ ଦିବସରେ ଗଲେ
ବ୍ରାହ୍ମଣ ରୂପ ଧରିଣ ଦର୍ଶନ ପାଇଲେ ।
ବେଦ ଅଧ୍ୟୟନ କଲେ ଜରାର ଆଗର
ଦାନଛଳେ ମାଗିଲେ ସେ ଜରାକୁ ସମର ।
ଭୀମ ଜରାସନ୍ଧର ଯେ ହେଲା ଯୁଦ୍ଧ ଘୋର
ପ୍ରଥମ ଯୁଦ୍ଧରେ ହତ ହେଲେ ବୃକୋଦର ।

ଦ୍ୱିତୀୟ ଯୁଦ୍ଧରେ ଦେବ ଅର୍ଜ୍ଜୁନ ପଡ଼ିଲେ
ତୃତୀୟ ଯୁଦ୍ଧରେ ବାସୁଦେବ ନାଶଗଲେ ।
ଏସନକ ବାରତାକୁ ଶୁଣି କୁରୁପତି
ଆସ୍ଥାନୁ ତଳପଡ଼ିଲା ଶୋକ କରି ଅତି ।
ମୂର୍ଚ୍ଛାଗତେ ପଡ଼ିଲେ ଯେ ଶୁଣି ଯୁଧିଷ୍ଠିର
ମୂର୍ଚ୍ଛାରେ ପଡ଼ିଲେ ଯେତେ ଥିଲେକ ଆବର
ଧଳୂକ ଅଚେତ୍ର ଉଠି କରଇ ରୋଦନ
ହା ଭ୍ରାତା ବୋଲି ପଡ଼ିଲେ କର୍ଣ୍ଣ ଦୁଃଶାସନ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ଶଲ୍ୟ ଯେ ବାହ୍ଲିକ
ଏମାନେ କାନ୍ଦିଲେ ତହିଁ ଥିଲେ ଯେତେଲୋକ
କପଟେ ଶୋକ କରଇ ତହିଁ କୃଷ୍ଣଭକ୍ତ
କପଟେ ଶୋକ କରନ୍ତ ଯେ ଶକୁନିମନ୍ତ୍ରୀ ।
ସେସ୍ଥାନେଗଲେଯେତେଥିଲେ ସର୍ବେମୂର୍ଚ୍ଛାହେଲେ
ଯୁଧିଷ୍ଠିରଙ୍କି ସହଦେବ କୋଳେରେ ଧରିଲେ ।
କର୍ଣ୍ଣ ଆଉ ଦୁଃଶାସନ ଧରାଧରି ହୋଇ
ଆସ୍ଥାନ ପରେ ପଡ଼ିଲେ ଗଡ଼ାଗଡ଼ି ଦେଇ ।
ଆହା ବୃକୋଦର କହି କାନ୍ଦେ ଦୁର୍ଯ୍ୟୋଧନ
ଷାଣ୍ଡବାସୁରକୁ ମାରି ଦେଲେ ଜୀବଦାନ ।
ତୋହପରି ଉପକାରୀ କାଳକ ମରଇ
କେଉଁଣ ପ୍ରକାରେ ପ୍ରାଣ ରକ୍ଷିବଇଁ ମୁହିଁ ।
ଯୁଧିଷ୍ଠିରେ ଦେଉଙ୍କ ଶୋକ କହି ତ ନ ପାରି
ଶୋକ କଲେ ଧୃତରାଷ୍ଟ୍ର ଅର୍ଜ୍ଜୁନ ସୁମରି ।
ଆହା ମୋର ଗୁଣବନ୍ତ ପୁତ୍ର ଫାଲଗୁନ
ଏକା ହୋଇ ସାଧି ଥିଲୁ ସକଳ ମେଦିନୀ ।
ତୋ ନାମ ଘୋଷି ତ୍ରୈଲୋକ୍ୟସୁନ୍ଦର ଅଟଇ
ରହିଛି ଆମ୍ଭ ତୋ ପରି ପୁତ୍ରକୁ ହରାଇ ।
ଜଗତସୁନ୍ଦର ପାର୍ଥ କେଉଁଆଡ଼େ ଗଲୁ
ଅଗାଧ ଶୋକସାଗରେ ମୋତେ ବୁଡ଼ାଇଲୁ ।
ଅଳପ ଯୁଦ୍ଧରେ କେବେ ହୋଇଲୁ ବିନାଶ
ଏହା ସେ କରିଲା ନଷ୍ଟେଁ ଦେବ ହୃଷୀକେଶ ।
ଦୁର୍ଯ୍ୟୋଧନ ବୋଇଲା ହେ ଶୁଣ ଯୁଧିଷ୍ଠିର
ଏତେ ଅରିଷ୍ଟି ହୋଇଲା ବୁଦ୍ଧିରେ ତୋହର ।
ତଗା ଗଉଡ଼ର ବୋଲେ ତନ୍ତୁ ଅନୁବ୍ରତେ
କାଳେ ନାଶଗଲୁ ଆଉ ବଞ୍ଚିବୁ କେମନ୍ତେ ।
କୂଟବୁଦ୍ଧିଏ ପାଞ୍ଚିଲ ସେହି ନାରାୟଣ
ବୁଝି ନ ପାରିଲୁ ଭିନ୍ନ ତା ଚତୁରପଣ ।

ଅର୍ଜ୍ଜୁନ ଯେବଣ ବେଳେ ଗଲା ଦ୍ୱାରକାକୁ
କନ୍ଦାକାରେ କହିଲା ସେ ରଣ୍ଡି ସୁଭଦ୍ରାକୁ ।
ସେହି ରାଗକୁ ଶ୍ରୀହରି ହୃଦେ ଧରିଥିଲା
ଆପଣେ ନ ମାରି ପରହସ୍ତେ ମରାଇଲା ।
ଜାଣି ତ ପାରିଲୁ ଭିନ୍ନ ସେ କୃଷ୍ଣର କଥା
ସମାନ ହରାଇ ନାଶଗଲୁ ଭିନ୍ନ ବୃଥା ।
ଜଗତ କାଳକୁ ହେଲା ବିପରୀତ ବୁଦ୍ଧି
ଅବଶ୍ୟେ ହରାଇଲୁ ହସ୍ତେ ଥିବା ନିଧି ।
ଭୀମ ପ୍ରତ୍ୟେକ ଯୋଧର ତୋର ନାଶପଣ
ଅର୍ଜ୍ଜୁନ ପ୍ରାପ୍ତେ ଗଲା ଅତୋଷରେ ମନ ।
ଏତାଙ୍କୁ ମରାଇଣ ସେ ପଳାଏ ଆପଣ
ଅନେକେ ନାଶଗଲା ଏତେ ବଡ଼ପଣ ।
ଏବେ ବସିଲୁ ହୋଇଣ ବୃଦ୍ଧକାଳ ପ୍ରାପ୍ତ
ଜୀବହୀନ ହେଲୁ ଆଉ ଅଛି କି ଉପାୟ ।
ତ୍ରୈଲୋକ୍ୟଜିତା ଅଟଇ ସେହି ଜରାସନ୍ଧ
ଇନ୍ଦ୍ରଲୋକେ ତାର ସଙ୍ଗେ କେ କରିବ ଦ୍ୱନ୍ଦ୍ୱ ।
ଅଷ୍ଟାଦଶକୋଟି ସେହି କ୍ଷତ୍ରେ ଧାଉଁଥିଲା
ସମୁଦ୍ର ମଧ୍ୟେ ତା ଭୟେ ପାଇଣ ଲୁଚିଲା ।
କୋଟିଏ ସିଂହର ବଳ ଯେଉଁ ବଳରାମ
ସେ ପୁଣି ଜିଣିଲୁ ସଖି ନୋହିଲେ ସଂଗ୍ରାମ ।
ଶକୁନି ନିଜ କର୍ମକୁ ନିନ୍ଦଣ କରଇ
ଶ୍ରୀମାର୍ଜ୍ଜୁନ ପ୍ରାପ୍ତେ ଖ୍ରାଉ ଉତ୍ପଳେଇ କାର୍ଣ୍ଣି ।
ଏପରି ପ୍ରହାସ କରି ରାଜା କୁରୁପତି
ସଭାକୁ ଉଠିଣ ଗଲା ହୋଇ ଶୋକମତି ।
ଆସ୍ଥାନ ମଣ୍ଡଳନ୍ତେ ଯେ ଗଲେ ସଙ୍ଗସାରେ
ମହାଶୋକେ ନରପତି ଗଲେ ଅନ୍ତଃପୁରେ ।
ଦୁଃଶା ବୋଲେ ଏବେ ପ୍ରେତକାର୍ଯ୍ୟହୋଇକରିବା ।
ଭୀଷ୍ମ ବୋଲେ ଆନନ୍ଦରେ ବାରତା ବୁଝିବା ।
ଦୁର୍ଯ୍ୟୋଧନ ବୋଇଲା ଯେ ହୋଇଲକ ବାଇ
ଯେତ୍ସ ନାଶଗଲେ ତାକୁ ଜୀବନ୍ତେ କି ପାଇ ।
ଆସ୍ଥାନରେ ବସିକରି ରାଜା ଯୁଧିଷ୍ଠିର
ବୋଲନ୍ତି ଯେ ଦଶଦିଗ ଦିଶଇ ଅନ୍ଧାର ।
ଆରେ ସହଦେବ ତୁମ୍ଭ ଏହି କୃତ୍ୟ କଲୁ
ଭୀମ ହସ୍ତେ ଜରାସନ୍ଧ ମରିବ ବୋଇଲୁ ।
ତୋହର ବାକ୍ୟକୁ ମୁହିଁ କରିଣ ବିଶ୍ୱାସ
ଭାଇଙ୍କି ପେଷିଲି ସେହୁଁ ଏବେ ଗଲେ ନାଶ ।

ଯେବେ ହୋଇଥାନ୍ତୁ ଜରା ନୋହିବ ନିଧନ
ମୁଁ କିପାଁ ଘଟାଇଥାନ୍ତି ଭୀମ ଅରଜୁନ ।
ଅଭିଲ ଆମ୍ଭ ତୋହର ବୋଲି ଜାଣିଥିଲି
ଏସନକ ଦୁତ ତୋର ଏବେ ମୁଁ ଜାଣିଲି ।
ଶ୍ରାବକ ମାତାର ପୁତ୍ର ଅଟୁ ସହଦେବ
ବୁଦ୍ଧି ସିନା ଦେଲୁ ମୋତେ ଏତେ ପରାଭବ ।
ଧର୍ମ ଆଚରଣ କରି ଧରମ ଯୁଧିଷ୍ଠି
ଅସାଷ୍ଟମେ ପଡ଼ିଗଲେ ମହୀପରେ ଲେଟି ।
ଯୁଧିଷ୍ଠିଙ୍କ ବାକ୍ୟ ଶୁଣି ମାଦ୍ରୀର ନନ୍ଦନ
ହରିଷ ଉଠିଲା ହୋଇ ଆନନ୍ଦରେ ମଗ୍ନ ।
ନକୁଳ ବୋଇଲା ଆହେ ହରିଲ କି ଅର୍ଥେ
ଆମ୍ଭେ କି ବଞ୍ଚିବା ଭୀମ ପାର୍ଥ ନ ଦେଖନ୍ତେ ।
ସହଦେବ ବୋଲେ ସର୍ବେ ଶୁଣ ସାବଧାନେ
ଶତ୍ରୁର କପଟେ ଦେବ ନ ବୁଝିଲ ମନେ ।
ଜରାସନ୍ଧପୁରକୁ ଯେ ଗଲେ ଦେବ ହରି
ତାର ରାଜ୍ୟରେ ପଶିଲେ ବିପ୍ରରୂପ ଧରି ।
ଜରାସୁତ ସହଦେବେ ସେ ଦୀକ୍ଷା ଦେଲେ
ଦ୍ୱିତୀୟ ଦ୍ୱାରରେ ଭୀମ ଭେରୀକ ଭାଙ୍ଗିଲେ ।
ତୃତୀୟ ଦ୍ୱାରେ ଅର୍ଜୁନ ଛେଦିଲେ ଶିମ୍ବଳୀ
ଚତୁର୍ଥେ ଗଧ କରୁଡ଼ ଦେଲେ ବନମାଳୀ ।
ତପୁରେ ପ୍ରବେଶ ହେଲେ ଜରା ଯଜ୍ଞଶାଳେ
ବାଜ ମାଗିଲେ ଯେ ପ୍ରଭୁ ଯୁଦ୍ଧ କୁତୂହଳେ ।
ମହାଯୁଦ୍ଧ ବଡ଼ିଲା ସେ ଭୀମସେନ ଭୁଜେ
ଭୀମସେନ ଜରାକୁ ଯେ ନାଶକଲେ ହେଳେ ।
ହରିଙ୍କ ବଚନେ ଭୀମ ହୋଇ କୋପାନଳ
ଜରାସନ୍ଧକୁ ଚିରିଲେ କରି ବେନି ଫାଳ ।
ଜରାସନ୍ଧ ପୁତ୍ର ସହଦେବ ଯେ କୁମର
ମଗଧେ ତାହାକୁ ହରି କଲେକ ଠାକୁର ।
ନୃପାଣେ ଇ ସହ୍ର ରାଜା ବନ୍ଧ ହୋଇଥିଲେ
ସବୁଙ୍କୁ ଏକାବେଳକେ ମୁକତ କରିଲେ ।
ସମସ୍ତ ରାଜାଙ୍କୁ ତହିଁ କରି ନିମନ୍ତ୍ରଣ
ତହୁଁ ଫେରି ଆସୁଛନ୍ତି ଦେବ ନାରାୟଣ ।
ଜରାପୁତ୍ର ତାଙ୍କ ସଙ୍ଗେ ପାଛୋଟି ଅଇଲା
ପଞ୍ଚଦଶ ଯୋଜନରୁ ରାଜ୍ୟେ ବାହୁଡ଼ିଲା ।
କହନ୍ତେ ମନ୍ତ୍ରୀଏ କରି ଅଛନ୍ତି ଏମନ୍ତ
ତାହାଙ୍କ ବଚନେ ଦେବ ଜାଣ କି ନିମିତ୍ତ ।

ଶୁଣିଣ ସହଦେବକୁ କୁଣ୍ଢାଇ ଯୁଧିଷ୍ଠି
ବାବୁ କି ସତ ହୋଇବ ତୋ ବଚନଗୋଟି
ସହଦେବ ବୋଲେ ଶୁଣ ଦିବସ ମଧ୍ୟରେ
ପରବେଶ ହେବେ ସର୍ବେ ଏହି ହସ୍ତିନାରେ
ସହଦେବର ବଚନେ ଘୁଞ୍ଚିଲେକ ଭ୍ରାନ୍ତି
ମୌଳିକ ଜର୍ମରେ ପୁଣ ବଜାଇଲେ ମତ୍ତ ।
ପ୍ରବେଶ ହୋଇଲେ ଯାଇଁ ଆପଣା ଭୁବନେ
ଥୟ ନୁହେଁ ମନ କେତେ ନ ଦେଖି ନୟନେ
ଗୁପତେ ଶୋକ କରନ୍ତି ଦ୍ରୌପଦୀ ଯେ କୁନ୍ତୀ
ଆଉ ସ୍ତ୍ରୀଗଣ ବେଢ଼ି ରୋଦନ କରନ୍ତି ।
ସନ୍ନିଧେ ପ୍ରବେଶ ହେଲେ ଯାଇଁ ଧର୍ମସୁତ
ଯୁଧିଷ୍ଠି ବୋଇଲେ ଶୋକ ଛାଡ଼ ଆଗୋ ମାତ
ସହଦେବ ବୋଇଲେ ଗୋ ଅସମ୍ଭବ କଥା
ଜରାକୁ ବଧ କରିଲେ ଭୀମ ବଳବନ୍ତା ।
ଯୁଧିଷ୍ଠିଙ୍କର ବଚନେ ସର୍ବେ ହେଲେ ଶାନ୍ତ
ଛାଡ଼ିଣ ମନୁ ବିକଳ ହୋଇଲେ ନୃପତି ।
କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଥୀର ଦିନ
ଶୁକ୍ରବାର ନକ୍ଷତ୍ର ଯେ ଅଟେ ହସ୍ତା କନ୍ୟା ।
ବିଷ୍ଟି ନାମେ କରଣ ଯେ ଶୁକ୍ଳ ନାମେ ଯୋଗ
ଚନ୍ଦ୍ର ବୃଷ ନବାଂଶରେ ରାଶି କରେ ଭୋଗ
ତିଥିବାର ନକ୍ଷତ୍ର ଯେ ଯୋଗକୁ ଉତ୍ତର
ମଗଧରୁ ବାହାରିଲେ ପ୍ରଭୁ ଦେବହରି ।
ରାଜାମାନେ ପଶ୍ଚାତରେ ଗୋଡ଼ାଇ ଅଛନ୍ତି
ଲେଉଟି ଚାହିଁ ଦେଖିଲେ ଜଗତର ପତି ।
ବୋଇଲେ ହେ ନୃପେ ଯାଅ ଯେ ଯାହା ସଦନ
ଆମ୍ଭ ସଙ୍ଗେ ଆସିବାର କିସ ପ୍ରୟୋଜନ ।
ଶୁଣିକରି ରାଜାମାନେ ବହୁ ବିନୟରେ
ବୋଇଲେ ପ୍ରାଣ ରଖିଲ ନ ହେବୁ ଘୁମ୍ଭରେ
ଏହା କହି ପିନ୍ଧିଥିଲେ ଯେଉଁ ଆଭୂମାନ
ତାହା କାଢ଼ି ମାରୁତିଙ୍କୁ କରିଲେ ପ୍ରଦାନ ।
ଏହାପରି ଦରଶଣୀ ଦେଇ ରାଜାମାନେ
ନିଜ ରାଜ୍ୟକୁ ଚଳିଲେ ଆନନ୍ଦିତ ମନେ ।
ଜରାପୁତ୍ର ସହଦେବ ସଙ୍ଗେ ଆସିଥିଲା
ତିନିଲକ୍ଷ ସ୍ୱର୍ଣ୍ଣ ରଥ ପୂର୍ଣ୍ଣ କରିଦେଲା ।
ସେହିଠାରୁ ବିଦାହୋଇ ତାଙ୍କ ପ୍ରଣମି
ନିଜ ରାଜ୍ୟକୁ ଚଳିଲେ ସୈନ୍ୟଗଣ ଘେନି ।

ଅନେକ ସମାରୋହରେ ଅଇଲେ ଶ୍ରୀହରି
ପଶ୍ଚିମ ସୋମନାଥଙ୍କ ପାଶେ ବିଜେକରି ।
ନିତ୍ୟକର୍ମ ଶେଷକରି ବିଜେ ଶିବଆଗେ
କରନ୍ତି ଶ୍ରୀହରି ସ୍ତୁତି ପ୍ରଣିପାତ ଭାଗେ ।
ବୃଷଭ ପିଠିରେ ଚଢ଼ି ବିଜେ ସଦାନନ୍ଦ
ତାଙ୍କୁ ଦେଖି ପାଦତଳେ ପଡ଼ିଲେ ଗୋବିନ୍ଦ ।
ଭୀମ ଅର୍ଜୁନ ବିନୟେ କହିଲେ ଭକତି
ଦେଖିଣ ସାନନ୍ଦ ହେଲେ ପ୍ରଭୁ ପଶୁପତି ।
ଭୀମଙ୍କୁ ଯେ ସଦାନନ୍ଦ ବହୁତ ଆଶ୍ୱାସି
ବହୁରତ୍ନ ଆଭରଣ ଦେଲେ ହୋଇ ଖୁସି ।
ଭୀମସେନଙ୍କୁ ପ୍ରଶଂସା କଲେକ ଅନେକ
ସାଧୁ ସାଧୁ ମାରୁତି ତୋ ମହିମା ଅସଂଖ୍ୟ ।
ବହୁ ଭୁବନ ଧ୍ୱଂସିଲା ନାଗି ବହୁଶାର୍ଥ
ଋଷିମାନଙ୍କୁ ସେ ନାଶ କରନ୍ତା ବହୁତ ।
ତୁମ୍ଭେମାନେ ଉଶ୍ୱାସିଲ ମେଦିନୀର ଭାର
ଧନ୍ୟ ଧନ୍ୟ ମାରୁତି ତୁ ବନାଶିଲୁ ଜଗ ।
ରାଜସୂୟ ଯାଗ ଏବେ କରାଅ ଶ୍ରୀହରି
ଆମ୍ଭୁ ନିମନ୍ତ୍ରଣ କରି ଯାଇ ସ୍ୱର୍ଗପୁରୀ ।
ଆମ୍ଭେ ଯିବୁଟି ନିଶ୍ଚୟ ରାଜସୂୟ ଯାଗକୁ
ବ୍ରହ୍ମା ଇନ୍ଦ୍ର ଆସିବେଟି ଯଜ୍ଞ ଦେଖିବାକୁ ।
ଯେତେ ଧନ ଲାଗିବଟି ରାଜସୂୟ ଯଜ୍ଞକୁ
କୁବେର ତା ତୁଲାଇବ କହିଲୁ ତୁମ୍ଭଙ୍କୁ ।
ଶୁଣିକରି ଆନନ୍ଦିତ ହୋଇଲେ ଅଚ୍ୟୁତ
ତହୁଁ ଅନ୍ତର୍ହିତ ହେଲେ ଦେବ ବିଶ୍ୱନାଥ ।
ସେଠାରୁ ହରଷେ ଅଇଲେ ଦେବ ବନମାଳୀ
ଭୀମାର୍ଜୁନ ସଙ୍ଗେ ଘେନି ଅସନ୍ତ ଯେ ଚଳି ।
ଆନନ୍ଦିତ ଦୁର୍ଯ୍ୟୋଧନ ବିଜୟେ ଆସ୍ଥାନେ
ବାର୍ତ୍ତା ଦେଲେ ଯାଇ ପରଦେଶୀ ରାଜମାନେ
ଶୁଣସି ଦେବ ମଗଧ ଦେଶର ବାରତା
ଜରାକୁ ବଧ କରିଲେ ଭୀମ ବଳବନ୍ତା ।
ବନ୍ଦୀରୁ ମୁକତି କଲେ ସକଳ ରାଜାଙ୍କୁ
ରାଜ୍ୟ ଅଭିଷେକ କଲେ ଜରାର ପୁଅକୁ ।
ପଶ୍ଚିମ ସୋମନାଥଙ୍କ ପାଶରେ ଅଛନ୍ତି
ତାଙ୍କୁ ଦେଖିଣ ଅଇଲୁ ଆମ୍ଭେ ଯେ ସଂପ୍ରତି ।
ଶୁଣିଣ ମହାଆନନ୍ଦ ହେଲେ ଭୀଷ୍ମ ଦ୍ରୋଣ
ବୋଇଲେ ପୁରେ ଉତ୍ସବ କର ଏହିକ୍ଷଣ ।
ଶୁଣି ଦୁର୍ଯ୍ୟୋଧନ ହେଲା ଲୋକଙ୍କେ ସାନନ୍ଦ
ହୃଦ ମଧ୍ୟେ ବିଶ୍ୱରୁ ନାନା କଷ୍ଟଛନ୍ଦ ।
ଯୁଧିଷ୍ଠିରଙ୍କ ଶ୍ରୀମୁଖରେ କହେ ସହଦେବ
ପଶ୍ଚିମେଶ୍ୱର ନିକଟେ ହୋଇଲେଣି ଦେବ ।
ମହାସମ୍ଭ୍ରମେ ଆସନ୍ତେ ସେହି ତିନିଜଣ
ରାଜସୂୟ ଯାଗ ଭଜନ ଆଣୁଛନ୍ତି ଧନ ।
ଶୁଣିଣ ଆନନ୍ଦ ହେଲେ ଧରମ ଯୁଧିଷ୍ଠି
ନକୁଳ ଯେ ସହଦେବ ଯାଅ ରେ ପାଛୋଟି ।
ସମଦଣ୍ଡ ଘେନିଣ ଯେ ବିଜେ କୁରୁପତି
ପୁରେ ଉତ୍ସବ କରାଇ ଚଳନ୍ତି ସଂପ୍ରତି ।
ଭୀମ ଅର୍ଜୁନଙ୍କୁ ଘେନି ବିଜୟେ ଅଚ୍ୟୁତ
ହସ୍ତିନା ପାଶେ ପ୍ରବେଶ ଯେ କାରୁଣାବନ୍ତ ।
ଅନେକ ସମ୍ଭ୍ରମରେ ଯେ ରାଜା ଧାର୍ତ୍ତରାଷ୍ଟ୍ର
ସମଦଣ୍ଡ ଘେନିଣ ସେ ଆସିଲା ପାଛୋଟି ।
ବୈବସ୍ୱତ ମନୁ ପୃଚ୍ଛା କଲେ ଅଗସ୍ତିଙ୍କି
କହ ମହାମୁନି ମୋତେ ଅମୃତ ବାଣୀକି ।
ସମଦଣ୍ଡ ଘେନିକରି ପାଛୋଟିଣ ଗଲେ
ଭୀଷ୍ମ ଦ୍ରୋଣ ଆଦି ସର୍ବ କଉରବ ବଳେ ।
ଏହାଙ୍କୁ ଭେଟିଣ କୃଷ୍ଣ ପାର୍ଥ ଭୀମସେନ
କହ ମୋ ଆଗରେ ହେଲେ କି କି ସମ୍ଭାଷଣ ।
ଅଗସ୍ତି ବୋଇଲେ ଶୁଣ ବଳଙ୍କାଧିପତି
ତୋ ଆଗେ କହିବା ତାହା ହେଲା ଯେଉଁ ରୀତ
ଥାଟ ନେଇ ଯାଉଁ ଯାଉଁ ପଥେ ହେଲେ ଭେଟ
ଭୀଷ୍ମ ଦ୍ରୋଣ ପ୍ରବେଶିଲେ କୃଷ୍ଣଙ୍କ ନିକଟ ।
ରଥୁ ଓହ୍ଲାଇଣ କୃପ ଦ୍ରୋଣ ଯେ ଗାଙ୍ଗେୟ
କୃଷ୍ଣପାଦେ ଭକ୍ତିଭରେ କରିଲେ ବିନୟ ।
ଭୀମ ପାର୍ଥ ଭୀଷ୍ମ ଦ୍ରୋଣେ କରି ନମସ୍କାର
ଶୁଭବାର୍ତ୍ତା କହି କଲେ ଆନନ୍ଦ ଅପାର ।
ସଞ୍ଜୟ କହିଲେ ଶୁଣ ରାଜା ଧୃତରାଷ୍ଟ୍ର
ଭୀମାର୍ଜୁନ ଘେନି ହରି ବିଜୟେ ନିକଟେ ।
ମଞ୍ଚପୁରେ ଅଗୋଚର ଭୀମର ମହିମା
ପ୍ରତ୍ୟକ୍ଷ ବିଜେ କଲେ କି ରୁଦ୍ର ଇନ୍ଦ୍ର ବ୍ରହ୍ମା ।
ରାମ ଦଗ୍ଧ କଲାବେଳେ ଯେସନେ ହରଷେ ବହ୍ନି
ତେସନେ ଦେଖାଯାନ୍ତି କୃଷ୍ଣ ଭୀମ ଫାଲଗୁନ ।
ଜରା ବଧି ଆଣୁଛନ୍ତି ବହୁତର ଧନ
ସେଥିରେ ରାଜସୂୟ ଯାଗ ହୋଇବ ସମ୍ପନ୍ନ ।

ଭୀମ ଅର୍ଜ୍ଜୁନ ଯେ ଧୃତରାଷ୍ଟ୍ରର ଅଗ୍ରତେ
ହୃଷୀକେଶିଣ ପ୍ରଣିପାତ ହେଲେ ବେନ ଭ୍ରାତେ ।
ଧୃତରାଷ୍ଟ୍ର କୋଳ କଲେ ସେ ବେନ ଭାଇଙ୍କୁ
ଜାନୁପରେ ବସାଇଲେ ନେଇଣ ଭୀମକୁ ।
ପୁଣି ଧୃତରାଷ୍ଟ୍ର ବୋଲେ ଅସମ୍ଭବ କଥା
ଜରାସନ୍ଧ ରାଜା ଥିଲା ବଡ ବଳବନ୍ତା ।
ବାବୁ ଐରାବତସିଂହର ତାର ପରାକ୍ରମ
ତାହାକୁ କେମନ୍ତେ ବଧ କଲୁ ଆରେ ଭୀମ ।
ବୃକୋଦର ବୋଲେ ସେହି କରୁଥିଲା ଯାଗ
ପନ୍ଦର ଦିବସ ଅନ୍ନ କରି ପରିତ୍ୟାଗ ।
ଶରୀର କ୍ଷୀଣରେ ସେହୁ କଲ ଯୁଦ୍ଧକରି
ବେନପାଳ କରି ତାକୁ ପକାଇଲି ଚିରି ।
ବ୍ୟାସଙ୍କୁ ତହିଁ ପୁଚ୍ଛିଲେ ନୃପ ଧୃତରାଷ୍ଟ୍ର
ଜରାର ଭଣେ ଘୁଞ୍ଚିଲେ ଯେଉଁ ରାମକୃଷ୍ଣ ।
ଭୀମ ତାହାକୁ ଚିରିଲା ବେନପାଳ କରି
ଏଥିର ଚରିତ ମୋତେ କହ ତଥ୍ୟକରି ।
ଜୟ ଜୟ ମହାଲକ୍ଷ୍ମୀ ବୈକୁଣ୍ଠ ବାସିନୀ
ଶାରଳା ଦାସ ତୋ ପାଦେ କରଇ ଦଇମା ।

---

## ଜରାସନ୍ଧର ଜନ୍ମ ଚରିତ

ବ୍ୟାସ ବୋଇଲେ ଶୁଣିମା ବାବୁ କୁରୁପତି
ଏହିଯୁଗେ ବୃହଦ୍ରଥ ନାମେଣ ନୃପତି ।
ପୁତ୍ର ଅଭାବରେ ସେହୁ ବହୁ କଷ୍ଟ ପାଇ
ରାଜକାର୍ଯ୍ୟ ଆଦିରେ ତା ମନ ନ ବଳଇ ।
ନାନା ଯଜ୍ଞ କରି କଲା ବହୁତର ଧର୍ମ
ତଥାପି ରାଜାର କୁଳେ ନୋହିଲା ସନ୍ତାନ ।
ଅଷ୍ଟୋତ୍ତରଶତ କନ୍ୟା କଲା ସେ ଗ୍ରହଣ
ତେବେ ସୁଦ୍ଧା ନ ହୋଇଲା ଏକଇ ସନ୍ତାନ ।
ପୁତ୍ରସ୍ଥାନେ ନବସସ୍ର ବରଷ ବଞ୍ଚିଲା
କହଣସି ମତେ ତ ର ସନ୍ତାନ ନୋହିଲା ।
ମନ୍ତ୍ରୀକି ଡକାଇଣ ସେ ବୋଇଲା ଏସନ
ପରଲୋକେ ନର୍କଗତି ନ ଥିଲେ ସନ୍ତାନ ।
କହୁଅଛି ତୁମ୍ଭେ ଏବେ ମୋ ରାଜ୍ୟ ସମ୍ଭାଳି
ମୁଁ ତପ କରିବି ପୁତ୍ର ହେବେ ଯେତେକାଳ ।
ମନ୍ତ୍ରୀକି ରାଜ୍ୟ ସମର୍ପି ଚଳିଲା ନୃପତି
ଜ୍ୟୋତିଷ ପୁରେ ରହିଲା ଯାଇ ଏକ ରାତି ।
ରଜନୀ ପ୍ରଭାତେ ରାଜା କରିଲା ଗମନ
ପ୍ରବେଶ ହୋଇଲା ଯାଇ ପ୍ରୟାଗ ତୀର୍ଥେଣ ।
ନନ୍ଦରାଜା ବସିଥିଲେ ଜପକରି ତହିଁ
ସେ ପୁଣି ଗ୍ରାମକୁ ଗଲା ସ୍ଥାନ ଛାଡ଼ିଦେଇ ।
ଯେବଣ ସ୍ଥାନରେ ନନ୍ଦ ତପେ ବସିଥିଲେ
ଲୋକେ ଚଣ୍ଡାଳଙ୍କ ହସ୍ତେ ସେ ମାଟି ଖୋଳିଲେ
ଦେଖି ବୃହଦ୍ରଥ ନଗରଲୋକଙ୍କୁ ପୁଚ୍ଛଇ
ଏହି ସ୍ଥାନରେ ମାଟିକି ଖୋଳାଅ କପାଇଁ ।
ନଗରଲୋକେ ବୋଇଲେ ନ ଜାଣୁ ତୁ କି ଏହା
ଏହିସ୍ଥାନେ ବସିଥିଲା ନନ୍ଦ ଗୋପ ନାହା ।
ଅପୁତ୍ରିକ ରାଜା ସେହି ପୁତ୍ର ତାର ନାହିଁ
ଅପୁତ୍ରକ ରାଜା ହେଲେ ତା ମୁଖ ନ ଚାହିଁ ।
ରାଜା ହୋଇଣ ଯେବେକେହି ହୁଏ ଅପୁତ୍ରିକ
ଇନ୍ଦ୍ର ଦେବତା ରାଜ୍ୟରେ ନ ବର୍ଷେ ଉଦକ ।
ବହୁତ ଫଳଦାୟିନୀ ନୁହଇ ସେ ପୃଥ୍ୱୀ
ତାର ପ୍ରଜାମାନେ ସଦା ସୁଖେ ନ ରହନ୍ତି ।
ରାଜା ହୋଇ ଅପୁତ୍ରକ ଯେବେ କ ହୁଅଇ
ଅଗ୍ନି ତାର ହବ୍ୟ ଶ୍ରଦ୍ଧା କରି ନ ଘେନଇ ।
ଅପୁତ୍ର କ ହୁଅଇ ହେ ଯେଉଁ ଦେଶ ରାଜା
ତପୀ ତହିଁ ନ ରହନ୍ତି ଦୁଃଖୀ ହୋନ୍ତି ପ୍ରଜା ।
ସେ ରାଜା ଯହିଁ ବସଇ ଲସଇ ସେ ସ୍ଥାନ
ପୁଣି ଅପ୍ରତିଷ୍ଠା ହୁଏ ସେ ମୃତ୍ତିକା ଜାଣ ।
ତାଲେକ ଗଭୀର କରି ଖୋଳବ ଚଣ୍ଡାଳ
ଆନ ମାଟି ପକାଇଣ କରି ଯଜ୍ଞଶାଳ ।
ଶତଦିନ ଯାଏ ତହିଁ କଲେକ ଆହୁତି
ତେବେ ସେ ପ୍ରତିଷ୍ଠା ହେବ ସେହି ବସୁମତୀ ।
ଶୁଣି ବୃହଦ୍ରଥ ରାଜା ବିସ୍ମୟ ହୋଇଲେ
ନନ୍ଦଭୂପାଳ ସେବକଗଣ ତହିଁ ଥିଲେ ।
ପଚାରିଲେ ଆମ୍ଭେ ସେବା କଲୁ ଯେତେଜନ
ଏହି ପାପରୁ ମୁକତି ପାଇବୁ କେସନ ।
ଏତେକ ପଚାରି ଗଲେ ତହୁଁ ବେଗକରି
ତାହାର ରାଜ୍ୟେ ଭେଟିଲେ ନନ୍ଦ ଦଣ୍ଡଧାରୀ ।
ଅମ୍ଭ ଖାଇଲୁ ପରସ୍ପେ କରଣ ବଚନ
ରାଜାମୁଖ ନ ଚାହିଁ ହେଲେ ଦଣ୍ଡାୟମାନ ।
ରାଜା ବୋଲେ କରେ ତୁମ୍ଭେ କାହିଁକି ଆସିଛ
ନ କହୁ ମୁଖକୁ ଯୋଡି କପାଇଁ ରହିଛ ।

ହରିପିଆ ବୋଇଲେ ଦେବ ଜହ୍ନବାକୁ ଉପୁ
କହୁ ଉପୁ ନାହିଁ କେଲି ବୋଲେ ନନ୍ଦରାୟ ।
ତୁମ୍ଭେ ବସିଥିଲ ତପେ ଯେଉଁ ତୀର୍ଥସ୍ଥାନ
ତାହାର ଗଭୀର ମାଟି ଖୋଳାନ୍ତୁ ଯୋଜନ ।
ବୋଇଲେ ଅପୁତ୍ର ରାଜା ଏଥେ ବସିଥିଲା
ତେଣୁକରି ଏହୁ ଭୂମି ପାତକୀ ହୋଇଲା ।
ଆନ ମାଟି ଭରି କରି କରିବେ ଆବୃତ
ତେବେ ସେ ପ୍ରତିଷ୍ଠା ହେବ ଏହୁ ବସୁମତୀ ।
ଶୁଣି ହରଷ ହୋଇଲେ ସେହୁ ନନ୍ଦରାୟ
ଧିକ ମୋ ଜୀବନ ଯେବେ ନାହିଁଟି ତନୟ ।
ପୁତ୍ର ଅଭାବେ ବଞ୍ଚନ୍ତି ଯେତେକ ପରାଣୀ
ବୃଥା ଜୀବନ ତାଙ୍କର ପୁରୁଷ ନ ଗଣି ।
ଏପରି ହରିର ରାଜା ମଣ୍ଡନେ ଉହିଲା
ଶୁଣ ମନୁ ଏ ଉତ୍ତରୁ ଯେଉଁ କଥା ହେଲା ।
ଦୁଃଖେ ତହୁଁ ଚଳିଲେ ମଗଧର ପତି
ବଦରିକାଶ୍ରମେ ଯାଇ ଉଚଲ ଆହୁତ ।
ହେଷ୍ଟାପୁ ଈଶ୍ୱର ସମ ସେ ଦୁର୍ବାସା ଋଷି
ତାଙ୍କୁ ଧ୍ୟାନ କରି ରାଜା ଯୋଗଲଗ୍ନେ ବସି ।
ଛାଡ଼ି ସର୍ବ ମାୟାମୋହ କୁଟୁମ୍ବଙ୍କ ଆଶା
ସନ୍ତାନ ନିମନ୍ତେ ରାଜା ଭଜିଲ ଦୁର୍ବାସା ।
କାମ କ୍ରୋଧ ନିଦ୍ରା ଆଦି ସମସ୍ତ ବରଜି
ଶୀଭବ ମନ୍ତ୍ରେ ଅଜପା ଲଗ୍ନେ ରାଜା ମଜ୍ଜି ।
ମହାମନ୍ତ୍ର ପାଠେ ରାଜା ହୋଇ ଉନ୍ମତ୍ତ
ଥୟ କରି ବସିଣ ସେ ଆତ୍ମା ପଞ୍ଚଭୂତ ।
ଏପରି ତପ କରନ୍ତି ଦ୍ୱାଦଶ ବରଷ
ଦୁର୍ବାସା ମିଳିଲେ ଯାଇ ବୃହଦ୍ରଥ ପାଶ ।
ଦେଖିଲେ ଅଜ୍ଞାନେ ପଡ଼ିଅଛି ନରମଣି
ଉପରେ ସିଞ୍ଚିଲେ ଋଷି ଜୀବନ୍ୟାସ ପାଣି ।
ସାଷ୍ଟାଙ୍ଗ ହୋଇଣ ରାଜା ଉଠି ଉଭାହେଲା
ବିନୟ ହୋଇଣ ତାଙ୍କୁ ବଚନ କହିଲା ।
କେବଣ ଦେଶରୁ ତୁମ୍ଭେ ଅଟ ମହାଋଷି
ଦୁଃଖେ ଅର୍ଜିଥିଲି ତପ ଦେଲ ତାକୁ ନାଶି ।
ଆହେ ମହାରାଜା ତୋର ଯହିଁକି ମନୀଷା
ମୁହିଁ ସେହୁ ମହାତମା ଅଟଇ ଦୁର୍ବାସା ।
ନିସ୍ତରିଲି ନିସ୍ତରିଲି ବୃହଦ୍ରଥ ବୋଲି
ଦୁର୍ଗତ ଦୁଃଖରୁ ଏବେ କାରଣ ପାଇଲି ।
ମୋତେ ଅନୁଗ୍ରହ କର ଆହେ ମୁନିଦେବେ
ଅଚେତ ହୋଇଛୁ ମୁହିଁ ସନ୍ତାନ ଅଭାବେ ।
ସଂସାର ମଧ୍ୟରେ ମୁହିଁ ହେଲି ମହାକଷ୍ଟି
ପୁତ୍ର ଗୋଟିଏକ ମୋତେ ଦେବା ତପୋନିଷ୍ଠେ
ପଶ୍ଚିମ କୋଶଳର ମୁଁ ଅଟେ ଅଧିକାରୀ
ମହା ସମ୍ପଦ ମୋ ରାଜ୍ୟ ମଗଧ ନଗରୀ ।
ପୁତ୍ରର ଅଭାବେ ରାଜ୍ୟ ଏବେ ହେଲା ନଷ୍ଟ
ବୁଡ଼ିଲା ବଂଶ ମୋହର ହେଲା ବଡ଼ କଷ୍ଟ ।
ଦୁର୍ବାସା ବୋଇଲେ ଶୁଣ ବୃହଦ୍ରଥ ଗଂଧୁ
ଏ ହରିଉଦ୍ୟାନେ ଲେଉଡ଼ ଫଳରୁ ଗୋଟିଏ ।
ଯେଉଁ ଫଳ ପାଇ ହେବ ଆସ ହେ ନୃପତି
ମନଦୁଃଖ ଯିବ ତୋର ପାଇବୁ ସନ୍ତତି ।
ଗମଇ ଯେ ବୃହଦ୍ରଥ ଋଷିଙ୍କ ବଚନେ
ପ୍ରବେଶ ହୋଇଲା ଯାଇ ହରିଙ୍କ ଉଦ୍ୟାନେ ।
ବୁଲି ବୁଲି ମହାରାଜା ବହୁଦୂର ଗଲା
ଚୂତଫଳ ଗୋଟିଏକ ନୃପତି ପାଇଲା ।
ସେହୁ ଦୁର୍ବାସାଙ୍କ କରେ ଦେଲା ତାହା ଆଣି
ତାହାକୁ ଧରି ଦୁର୍ବାସା ବୋଇଲେ ଏ ବାଣୀ
ଏହୁ ଫଳ ଗୋଟିକ ତୁ ଯତନରେ ନିଅ
ତୋର ପ୍ରିୟରାଣୀ ଯେହୁ ତାହାକୁ ଖୁଆଅ ।
ଦୁର୍ବାସାଙ୍କ ବାକ୍ୟ ତହୁଁ ମଗଧନୃମଣି
ସୁମତୀ ଯେ ବ୍ରହ୍ମମତୀ ତାର ଦୁଇରାଣୀ ।
ସୁମତୀ ରାଣୀକି ରାଜା ଏକାନ୍ତେ ଡାକିଣ
ଚୂତ ଫଳ ଗୋଟି ଦେଲା ତାହାର କରେଣ ।
ଖଣ୍ଡିତ ହୋଇ ସୁନ୍ଦରୀ ଏହାକୁ ତୁ ଭକ୍ଷ
ଦୁର୍ବାସା ବାକ୍ୟରେ ପୁତ୍ର ହୋଇବ ପ୍ରତ୍ୟକ୍ଷ ।
ବ୍ରହ୍ମମତୀ ସୁମତୀର ପାଶରେ ମିଳିଲା
ଫଳ ଦେଇ ରାଜା ନିଜ ଆସ୍ଥାନେ ଚଳିଲା ।
ଦେଖିଣ ବିଚାର କଲେ ସୁମତୀ ସୁନ୍ଦରୀ
ନ ଦେଇ ଖାଇଲେ ଯାର ଦୁଃଖ ହେବ ଘର
ଚୂତଫଳ ଗୋଟି ବେନିଫାଳ କରି କାଟି
ଦୁଇ ସପତ୍ନୀ ତାହା ଭୁଞ୍ଜିଲେ ଯେ ବାଣ୍ଟି ।
ଋଷିଙ୍କର ବାକ୍ୟ କେବେ ନୋହିଲାକ ଆନ
ଏକାବେଳେ ଗର୍ଭବାସ ହେଲେ ଦୁଇଜଣ ।
ଏକସଙ୍ଗେ ହୋଇବାରୁ ଦୁହେଁ ଗର୍ଭବତୀ
ଦେଖିଣ ପରମାନନ୍ଦ ହୋଇଲେ ନୃପତି ।

ନଗରେ ବହୁତ ଉପ୍ରଦ୍ରବ କଲା ନରସାଇଁ
ନବମାସ ଶେଷେ ଦଶମାସ ପ୍ରବେଶଇ ।
ଭୁଇମାସ କୃଷ୍ଣପକ୍ଷ ଚୌଠି ସୌରିବାର
ଅଦ୍ର୍ୟାନକ୍ଷତ୍ର କରଇ ଭୋଗ ସେ ଦିନର ।
ବବ ନାମରେ କରଣ ଶିବନାମେ ଯୋଗ
ଭୁଜସଂକରାନ୍ତ ଯାଇ ପାଞ୍ଚଦିନ ଭୋଗ ।
ରାତ୍ର ପାଞ୍ଚ ଘଡ଼ିଠାରେ ସେ ଯୁବତୀ ବେନ
ଏକାବେଳେ ପ୍ରସବଲେ ଦୁଇ ପାଟରାଣୀ ।
ପ୍ରସବ କରନ୍ତେ ତହିଁ ସେ ବେନ ଯୁବତୀ
ଅର୍ଦ୍ଧ ଅର୍ଦ୍ଧଅଙ୍ଗ ହୋଇ ପୁତ୍ର ଉତପତି ।
ଶିର ଅଧେ ଚକ୍ଷୁ ଅଧେ ନାକପୁଡ଼ା ଏକ
ଭୁଜ ବକ୍ଷସ୍ଥଳ ଅର୍ଦ୍ଧପାଦ ଏକ ଏକ ।
ଏକଶିର ମଧ୍ୟ ହୋଇଥିଲା ବେନଖଣ୍ଡ
ଜନ୍ମିଲା ସେ ପୁତ୍ର ହୋଇ ଅର୍ଦ୍ଧ ଅର୍ଦ୍ଧ ଖଣ୍ଡ ।
ରାଜା ଆଗେ ପଡ଼ିହାରୀ ଯାଇ ଜଣାଇଲା
ହେ ଦେବ ଶୁଣିର ବେନପୁତ୍ର ଜନମିଲା ।
ଶୁଣି ବହୁ ଧନ ଦାନ ଦେଲା ମହାରାଜ
ହାଟ ବାଟ ଜୁରହେଲା ମଗଧର ରାଜ୍ୟ ।
ଦୁର୍ବାସାଋଷି ଅଟନ୍ତି ସିଦ୍ଧ ତପୋନିଷ୍ଠ
ତାହାଙ୍କ ଦର୍ଶନେ ଗଲା ମୋର ପୁତ୍ର କଷ୍ଟ ।
ଏମନ୍ତ ସମୟେ ଗଲା ମୁହୁର୍ତ୍ତୁଲା ତହିଁ
ରାଜା ଆଗରେ ସମ୍ବାଦ କହିଲା ସେ ଯାଇଁ ।
ଦେବ ସୁନ୍ଦର କୁମର ଅଟଇ ସୁସଞ୍ଚ
ଅର୍ଦ୍ଧ ଅର୍ଦ୍ଧକାୟ ହୋଇ ଜନ୍ମିଲା ପ୍ରପଞ୍ଚ ।
ମୁହୁର୍ତ୍ତୁଲାର ବଚନ ଶୁଣି ନୃପମଣି
ବଧାବତ ବୃହଦ୍ରଥ ଅମଙ୍ଗଳ ବାଣୀ ।
କଟୁଆଳ ରାଇ ଆଜ୍ଞା ଦେଲାକ ନୃପତି
ଶ୍ମଶାନଭୂମିକି ନେଇ ପକାଅ ଦୁହିଁଙ୍କି ।
ଡାଆଣୀ ରାକ୍ଷସୀ ତାକୁ ଭକ୍ଷନ୍ତୁ ନେଇଣ
ଦୁର୍ବାସାଙ୍କ ଆଜ୍ଞା ଏବେ ହେଲା ଅକାରଣ ।
ରାଜା ବାକ୍ୟ ଶୁଣି କଟୁଆଳ ଚଳଗଲା
ଅନ୍ତଃପୁରୁ ବେନ ଅର୍ଦ୍ଧପୁତ୍ରଙ୍କୁ ଆଣିଲା ।
ବେନଖଣ୍ଡ ଶ୍ମଶାନରେ ପକାଇଣ ଦେଲା
ପୁନଶ୍ଚ ଆସି ରାଜାଙ୍କୁ ବାରତା କହିଲା ।
ଅର୍ଦ୍ଧରାତ୍ରେ ଶ୍ମଶାନେ ସେ ଜରାରାକ୍ଷସୀ
[illegible] ପାଇଁ [illegible]

ମହା ବିଶ୍ୱରୂପ ଯେହ୍ନେ ଶ୍ମଶାନବାସିନୀ
ଦୁହିଁଙ୍କି ଗିଳିଲା ଯେହ୍ନେ ପିଇଦ୍ୟନ୍ତି ପାଣି ।
ପୁଚ୍ଛାକଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
କେଉଁଠାରେ ଉତପତି ହୋଇଲା କାହିଁକି ।
ଅଗସ୍ତି ବୋଇଲେ ଶୁଣ ଆମ୍ଭ ଏକଗୋଟି
ନ ଜାଣି ସୁମଣି ତାକୁ ବେନଖଣ୍ଡେ କାଟି ।
ଦୁଇରାଣୀ ଦୁଇଭାଗ କଲେ ଜଳ
ଚେଣୁକର ଅର୍ଦ୍ଧଖଣ୍ଡ ଉପୁଜିଲା ଦାନ ।
ଆମ୍ଭଠା ଯାକ ସୁମଣି ଯେବେ ଖାଇଥାନ୍ତା
ମହାବଳବନ୍ତ ହୋଇ ପୁତ୍ର ଜନ୍ମିଥାନ୍ତା ।
ପୁଣି ବୈବସ୍ୱତମନୁ ମୁନିଙ୍କି ପୁଚ୍ଛିଲେ
ଅସୁରୀ ଗର୍ଭେ ଉଭୟ ପିଲା କ କରିଲେ ।
ଏହା ବିସ୍ତାର କରଣ କହ ମହାଶୟ
ମୋହ ମନରୁ ଛେଦନ କରନ୍ତୁ ସଂଶୟ ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ସେ ବେନ ଖଣ୍ଡ ପଶିଲେ ଅସୁରୀ ଗର୍ଭର ।
ଗର୍ଭର ଭିତରେ ଦୁହେଁ ହୋଇଗଲେ ଯୋଡ଼
ଏକକାୟା ହୋଇ ତହିଁ ମଧ୍ୟେ ପଥ ଲୋଡ଼ ।
ରାକ୍ଷସୀ ଗର୍ଭେ ପଶିଣ ବଳବନ୍ତ ହେଲା
ତାହାର ଜଠରାନଳେ ବିନାଶ ନୋହିଲା ।
ଗର୍ଭର ଭିତରେ ଥାଇ ମୁଥେକ ସେ ମାର
ବାହାର ହୋଇଲା ତାର ପଞ୍ଜରା ବିଦାରି ।
ପୁତ୍ର ବାହାର ହୋଇଲା ଅସୁରୀ ମରିଲା
ରୋଦନ କରନ୍ତେ ପୁତ୍ର ପୃଥିବୀ କମ୍ପିଲା ।
ଅନ୍ଧକାର ଯାଇଁ ଯହୁଁ ହୋଇଲା ପାହାନ୍ତି
ବିଜୟ ସେ ବୃହଦ୍ରଥ ବାହାର ଜଗତି ।
ଶୁଭିଲା ସେ କୁମାରର ମହାନାଦ ବାଣୀ
କଟୁଆଳ ରାଇ ଆଜ୍ଞା ଦେଲେ ନୃପମଣି ।
ଆରେ କଟୁଆଳ ଭୃତ୍ୟ ଶ୍ମଶାନ ଭୂମିକି
ଯାଇ କେ ଶିଶୁ କାନ୍ଦୁଛି ଶୀଘ୍ର ଆସ ଦେଖି ।
କଟୁଆଳ ପରବେଶ ଶମଶାନ ଭୂମି
ଦେଖି ରାଜାଙ୍କୁ ଆନନ୍ଦେ କହିଲ ହେ ସ୍ୱାମୀ ।
ଯେଉଁ ଶିଶୁ ଜନ୍ମିଥିଲା ବେନଭାଗ ହୋଇ
ସେ କାନ୍ଦେ ପାଶେ ରାକ୍ଷସୀ ଅଛଇ ସେ ଶୋଇ
ଶୁଣି ବୃହଦ୍ରଥ ରାଜା ବିଜୟ ଆପଣ
[illegible] ଜନ୍ମ ଲ ଆପଣେ ।

କୋପେ ଧଇଲା ତାହାକୁ ମଟଧର ସାଇଁ
ଜଗତ୍କୁ ମାଟେଣ ପୃଷ୍ଠ ଶୋଧନ କରଇ ।
ଅନେକ ସାଧନ ହେଲା ମଗଧଭୂପାଳ
ଜରାସନ୍ଧ ନାମ ହେଲା ସେହି କୃପଗର ।
ଶୋଧଣ ନଜ ପ୍ରଭୁକୁ ନୃପତି ଚଳଇ
ଅଷ୍ଟ ଦଶନ କଷଣ ତାହାକୁ ପାଳିଲା ।
ତେଣୁ ମହାବଳବନ୍ତ ସେହି ବୀରମଣି
ଏସନକ ଭେଦ ତାର କେହି ସେ ନ ଜାଣି ।
ଈଶ୍ୱର ଜାଣନ୍ତି ତାର ଜନ୍ମକାଳ କଥା
ଶ୍ମଶାନବାସୀ ଅଟନ୍ତି ଯେଣୁ ସେ ଦେବତା ।
ଶ୍ମଶାନ ବାଲତା ଯାହା ସବୁ ସେ ଜାଣନ୍ତି
ତେଣୁ ଶ୍ୟାମକୁ କହିଲେ ଦେବ ପଶୁପତି ।
ଆନମତରେ ବଧ ଯେ ନୋହିଥାନ୍ତା ଜରା
ଚରଣ ତାହାକୁ ନାଶକଲା ଶ୍ୟାମବୀର ।
ଅଗସ୍ତି ବୋଇଲେ ଶୁଣ ମନୁ ନରଗଣ
ଜରାର ପୂର୍ବ ବିଷୟ ଏହିପରି ଜାଣ ।
ଜରାର ବିଷୟ ରାଜା କହିଲୁ ତୁମ୍ଭଙ୍କୁ
ଆଉ କ ସଂଶୟ ଥିଲେ ପଚାର ଆମ୍ଭଙ୍କୁ ।
ଏସନକ ଭେଦ ତାର ଜାଣିଥିଲେ ହରି
ତେଣୁ କୂଟେ ମରାଇଲେ ତାକୁ ମଧୁହାରୀ ।
ବଦନ୍ତି ମହାତ୍ମା ଘଟଋଷିଙ୍କର ସୂନୁ
ତୁମ୍ଭ ଯାହା ପୃଚ୍ଛାକଲ ବୈବସ୍ୱତ ମନୁ ।
ପାଣ୍ଡବ ସୁନ୍ଦର ଅଟେ ଭୀମ ପରଚଣ୍ଡ
ଜରାକୁ ଚିରି ପକାଇ କଲା ବେନିଖଣ୍ଡ ।
ଏହିପରି ଯେତେ ଯେତେ ଜରାସନ୍ଧ କଥା
ବିସ୍ତାରି କହିଲେ ସବୁ ମୁନି ବ୍ରହ୍ମବେତ୍ତା ।
ସକଳ ବିଷୟ ତହିଁ କହିଲେ ଶ୍ରୀହରି
ବଡ଼ ଦୁଷ୍ଟ ଜରାସନ୍ଧ ଅଇଲୁ ଯେ ମାରି ।
ଶୁଣିଣ ସାନନ୍ଦ ହେଲା ରାଜା ଧୃତରାଷ୍ଟ୍ର
ଧନ୍ୟ ହରି ବିନାଶିଲୁ ରାଜାଗଣ କଷ୍ଟ ।
ଆହୁରି କଥାଏ ଶୁଣି ହୋଇଲି ସ୍ତବ୍ଧ
ତୁମ୍ଭମାନଙ୍କୁ ନାଶିଲା ବୋଲି ଜରାସନ୍ଧ ।
ବିଷାଦ ହୋଇଲି ଶୁଣି ଦୁର୍ଭାର ବଚନ
ବହୁତ ଅଖ୍ୟାତି ତୋତେ ଦେଲେ ମୂର୍ଖଜନ
ସର୍ବଭୂତେ ହରି ତୁମ୍ଭ ହେଉ ପରକାଶ
କୃପାସାଗର ତୋ ବିନା ନାହିଁ ପୀତବାସ ।

ଶ୍ରୀହରି ବୋଇଲେ ତାତ ଜାଣେ ମୁଁ ସମସ୍ତ
ଶକୁନିର ଏ ଭିଆଣେ କରେ ସର୍ବ କୃତ୍ୟ ।
ତୁ ଗାନ୍ଧାରୀ ଜାଣୁ ନା ଏ କୁଳକ୍ଷୟ ମନ୍ତ୍ରୀ
ତାହା ଯୋଗ୍ୟ ନାଶଗଲା ତୋହର ସମ୍ପତ୍ତି ।
ଛୋଟୋଏ ବାଳ ବୁଦ୍ଧିରେ ହେଲେ ଅବା ଦୁଷ୍ଟ
ତାହାଙ୍କ ଶାସନ ତୁମ୍ଭ କର ଧୃତରାଷ୍ଟ୍ର ।
ଅନେକ କଥା କହିଣ ପ୍ରଜାଙ୍କ ଭିଆଣ
ଦେଖ ପାଣ୍ଡବ ରାଜସ୍ୱୀ ହେଲେଣି କି ପୁଣି ।
ଧୃତରାଷ୍ଟ୍ର ବୋଲେ ତୁମ୍ଭ ପୁରୁଷ ଉତ୍ତମ
ଦୁଷ୍ଟଙ୍କର ଦୋଷ ନାଥ ତୁମ୍ଭ କର କ୍ଷମା ।
ଅନେକ ଦୋଷ ବତାଠାରେ କଲା ସେହି ଜଗ
ଉପାସ୍ତେ ନାଶିଲୁ ଦେବ ଦୁଷ୍ଟ ମହାବୀର ।
ବହୁ ବିନୟେ କହନ୍ତେ ତାଙ୍କୁ କୁରୁସାଇଁ
ସାନନ୍ଦେ ଚଳିଲେ ତହୁଁ ଜଗତ ଗୋସାଇଁ ।
ପ୍ରବେଶ ହୋଇଲେ ଯାଇ ଧର୍ମରାଜ ପାଶ
ବିନୟ ଭାବେ ବୋଇଲେ ପ୍ରଭୁ ପୀତବାସ ।
ମୁହିଁ ଯାଉଅଛୁ ସ୍ୱାମି ଦ୍ୱାରକା ପୁରକୁ
ଶୁଭବାର୍ତ୍ତା ଜଣାଇବ ଶ୍ରୀବଳଦେବଙ୍କୁ ।
ଯେଉଁରୂପେ ମଲା ଜରା କହିବ ସେ କଥା
ତାହା ଯୋଗୁ ପାଇଅଛୁ ଅନେକ ବ୍ୟବସ୍ଥା ।
ଧନୁ ଉତ୍ସବ ବୋଲିଣ ଯାହା କଲା କଂସ
ନନ୍ଦକୁ ଶ୍ରୀମୁଖ ଦେଇ ନେଲା ଗୋରସ ।
ଗୋପାଙ୍କ ଭୁଲେଇ ଗଲୁ ଆମ୍ଭେ ବେନିଭ୍ରାତ
ଧନୁ ଉତ୍ସବ ଯାହାକୁ ଦେଖିବା ନିମିତ୍ତ ।
ଅନେକ ରଙ୍ଗ ଉତ୍ସବେ ଯାହାର ବିଧାନ
ରଙ୍ଗେ ବିହରିଲେ ତହିଁ ଗୋପପୁରଗଣ ।
ଆମ୍ଭଙ୍କୁ ଦେଖିଣ ଦେବ କଂସ ନାଶଗଲା
କଞ୍ଚତ ମାସକେ ତାର ଅଷ୍ଟମଲ୍ଲ ମଲା ।
ତହିଁ ଗୋପାଳମାନେ ଯେ ନିରଭୟ ହୋଇ
ବହୁ ଧନ ରତ୍ନମାନ ଆଣିଲେ ସେ ବହି ।
କଂସର ଭାର୍ଯ୍ୟା ନାମେ ହେଷ୍ଟି ପରହେଷ୍ଟି
ତାହାଙ୍କର ପିତା ସେ ମଗଧ ନୃପତି ।
ବିଧବା ହୋଇଣ କଲେ ପିତାଙ୍କୁ ଗୁହାରି
ଶୁଣି ଗୋପପୁର ଜରା ଦେଲା ନାଶକରି ।
ପାଠପଢ଼ି ଯାଇଥିଲୁ ଅବନ୍ତୀ ନଗରେ
ଗୋପପୁର ଲୋକମାନେ ପଳାଇଲେ ଡରେ ।

ଜରାସନ୍ଧ ଭୟେ ତହୁଁ ଗଲ୍ ଅପସରି
ଉତ୍ତର ଗୋମନ୍ତ ସେ ନେଲ୍ ନିଜପୁରୀ ।
ପଞ୍ଚମ ଧାଡ଼ରେ ଦେବ ଛାଡ଼ିଲ୍ ଗୋପକୁ
ଶମ୍ଭୁଜାଙ୍କ ମାର୍ଗରେ ଗଲ୍ ମଥୁରାକୁ ।
ପ୍ରଭରି ମଥୁରାକୁ ସେହି ଦେଶ ଧାଡ଼
ଛଡ଼ାଇଲ୍ ଦ୍ୱଭଙ୍ଗିକ କୃଷ୍ଣମୂଳ ଗ୍ରାଡ଼ ।
ମଥୁରାକୁ ବେଢ଼ିଣ ସେ ଦେଶ ବଡ଼ବଳ
ରାଜ୍ୟ ଗ୍ରାଡ଼ ପଳାଇଲେ ସକଳ ଗୋପାଳ ।
ମଥୁରା ବେଶକୁ ଭାଙ୍ଗି ବଳ ଗ୍ରାଉଖାଉ
ଧିବାଗାଉ ଜ୍ଞାତିକର ଘୋଡ଼ଣ ନଗର ।
ପଳାଇ ପଶିଲ ଦେବ ଅନୁସରବନ୍ଦ
ସମସ୍ତେକ ବଶିଲ୍ ସେ ତହିଁ ସର୍ବଜନେ ।
ପୁଣି ସେହିଠାରୁ ଗଲ୍ ମଗଧର ଗଣ
ଅନ୍ତକ୍ଷଣେ କେତେ ଥାଏ ଆମ୍ଭ ଦୁଇଜଣ ।
ବନ୍ଧୁବର୍ଗ ଘେନି ତହୁଁ ପଳାଇଲ୍ ଗ୍ରାଡ଼
ଅନୁକ୍ଷଣେ ବଳକୁ ସେ ଲଗାଇଲା ଘୋଡ଼ ।
ଗୋପକନ୍ୟା ପଟରେ ବସିଲ୍ ସମସ୍ତେ
ତହିଁକ ଧାଡ଼ ଦେଖି ସେ ଗୌଡ ବର୍ଷଯାଏ ।
ତହୁଁ ଅପସରି ଗଲ୍ ଆମ୍ଭେ ସର୍ବ ଜନ
ସମସ୍ତେକ ବଶ୍ରାମିଲୁ ଯାଇ ମଧୁବନ ।
ଯଦୁବଂଶୀଙ୍କର ସେହି ଅଟଇ ଭୂମି
ତହିଁ ସମସ୍ତେ ବସିଲ୍ ଆହେ ଦେବସ୍ୱାମି ।
ସୈନ୍ୟସାଙ୍ଗ ଆସେ ଜାଳସବନକୁ ଘେନ
ତହୁଁ ପୁଣତଲ୍ ଆମ୍ଭେ ବନ୍ଧୁବର୍ଗ ସେନ ।
ସମୁଦ୍ରେ ଗଢ଼ିଲୁ ପୁର ତା ନାମ ଦ୍ୱାରକା
ସେଠାରେ ରହିଲ୍ ସର୍ବେ ହୋଇଣ ନିଃଶଙ୍କା ।
ଜରାସନ୍ଧ ଭୟେ ଦେବ ଯଦୁ ବୀରମାନେ
କେହି ବାହାର ନୋହିଲେ ସେ ମଧୁ ଭୁବନେ ।
ତୋହର ପ୍ରସଙ୍ଗେ ନାଶଗଲ୍ ଏତେ ରିପୁ
ଏବେ ସେ ଯଦୁ କୁଳଙ୍କ ପ୍ରକାଶିତ ବପୁ ।
ଅନେକ ସାନନ୍ଦ ହେଲେ ଶୁଣି ବଳଦେବ
ଦ୍ୱାରକାପୁରରେ ହୋଇବ ଅଦ୍ଭୁତ ଉତ୍ସବ ।
ଏହା ଶୁଣି ଯୁଧିଷ୍ଠିର ତାଙ୍କୁ ଆଜ୍ଞା ଦେଲେ
ଏବେ ହରି ଦ୍ୱାରକାକୁ ଯାଅ ହେ ବୋଇଲେ
କୃଷ୍ଣ ଶୁକ୍ଳ ପ୍ରତିପଦେ ଜରା ନାଶଗଲ୍
ଶୁକ୍ଳପକ୍ଷ ଦ୍ୱାଦଶୀରେ ଉତ୍ସବ ହୋଇଲ୍ ।

ଫାଲ୍‌ଗୁନ ଶୁକ୍ଳ ଅଷ୍ଟମୀ ଆଉ ଗୁରୁବାର
ମୃଗଶିରା ଋକ୍ଷ ବେଳ ଅଢ଼ାଇ ପ୍ରହର ।
ଏ ସମସ୍ତେ ସୁମଙ୍ଗଳେ ହରି ଗରୁଡ଼କୁ
ସେହିକ୍ଷଣି ଅଇଲ ସେ ତାହାଙ୍କ ପାଖକୁ ।
ଭୀମ ଅର୍ଜୁନଙ୍କୁ ସମ୍ଭାଷି ଦେବ ଚକ୍ରପାଣି
ଗରୁଡ଼ ପୃଷ୍ଠରେ ବସି ତହୁଁ ଗଲେ ଚଳି ।
ଜୟ ଜୟ ଜଗଦମ୍ବେ ବିପଦନାଶିନୀ
ଶାରଳା ଦାସକୁ ଟେକ ଦିଅ ଗୋ ଭବାନୀ ।

---

## ଶ୍ରୀକୃଷ୍ଣଙ୍କ ଦ୍ୱାରକାଗମନ, ପଥମଧ୍ୟେ ଯଜ୍ଞୋପକରଣମାନ ସଂଗ୍ରହ, ବଳଦେବଙ୍କ ସହିତ ସାକ୍ଷାତ ଓ ଦ୍ୱାରକାରେ ମହୋତ୍ସବ

ମୁନି କହିଲେ ରାଜନ କର ଅବଧାନ
ଗରୁଡ଼ ଆରୋହି ବେଗେ ଗଲେ ଭଗବାନ ।
ଦ୍ୱାରକାର ଅଭିମୁଖେ ଗମନ କରନ୍ତେ
କଳିଙ୍ଗର ରାଜ୍ୟ ପଥେ ଦେଖିଲେକ ନେତେ
ଜଗତ ରାଜାକୁ ବେଗେ ହକାରି ଶ୍ରୀପତି
ଆପଣେ ଶ୍ରୀହସ୍ତେ ତାକୁ ଶାଢ଼ୀ ଯେ ଦିଅନ୍ତି ।
ଆହେ ତୁମ୍ଭେ ଏଥେ ଅଛ ଯେତେ ବୀରମାନେ
ସମସ୍ତେ ହେ ଶୁଣ ଆମ୍ଭ ବାକ୍ୟ ସାବଧାନେ ।
ବହୁକାଳ ପୁରାତନ ଶୁଷ୍କ ବୃକ୍ଷମାନ
ଏ ବନରେ ଯେତେ ଅଛି କର ଆହରଣ ।
ଗୀଇଥିବା ବୃକ୍ଷମାନ କେବେ ନ କାଟିବ
ଶୀଘ୍ରନାଶ ତରୁ ଗୁଣ୍ଡ କରି ଏକଠାବ ।
ଯୁଧିଷ୍ଠିର ଦେବ କରିବେ ରାଜସୂୟ ସଜ୍ଞ
ଗଜ ଅଶ୍ୱ ଉଷ୍ଟ୍ର ଶାଳମାନ ଟୋଳାଇବା ।
ତେର ଲକ୍ଷ ଯେ ତେଷଠି ସହସ୍ର ଥିଲେ ବୀର
ସବୁଙ୍କୁ ଜଣେ ହରି ଦେଲେ ଉପହାର ।
ଦେବାଙ୍ଗ ବସ୍ତ୍ର ଆଣି ଦେଲେକ ବର୍ଦ୍ଧିତ
ପାଇକର ସର୍ବ ବୀର ହୋଇଲେ ଉଲ୍ଲସିତ ।
ହିମଶାଳ ମହାରଣା ଯେତେ ଯହିଁ ଥିଲେ
ସେମାନଙ୍କୁ ଡାକ କରି ନିଜେ ଶାଢ଼ୀ ଦେଲେ
ବୋଇଲେ କୋଦାଳ ତାଙ୍କ ଶାବଳ କୁଠାର

ଫାଲ୍ଗୁଣି ଶୁଣ କହିଲେ ଜଗତ ନାଥ
ତୁମ୍ଭେମାନେ ବାରୁଣାକୁ ଯାଇ ସଭା ଖଟ ।
ତୁମ୍ଭେମାନେ ଅଶୀଲକ୍ଷ ନାବ ଦେବ ଗଢ଼ି
ଉତ୍କଳା ନାବ ହୋଇବ ପବନହୁଁ ବଢ଼ି ।
ସ୍ବର୍ଣ୍ଣ ଗହମ ମୃଗ ପକ୍ଷବାହମାନ
ସବୁହେବେ ଆସୁଥିବ ନାବ ପୃଷ୍ଠେ ପୃଷ୍ଠେ ।
ମେଘ ମଣ୍ଡପ ଜଗତୀ ଅଟ୍ଟାଳୀ ଯେ ପୁଣି
ଏହା ସର୍ଜନା କରିବ ସ୍ୱର୍ଗକୁ ବଳିଣ ।
ବିଶ୍ୱକର୍ମା ବୁଲେ ଯେତେ କରନ୍ତି ଫାଲ୍ଗୁଣି
ଦଶଲକ୍ଷ କରତଆ ଭେଟାଇବ ଆଣି ।
ଏମନ୍ତ ଆଜ୍ଞାଦେଇ ତାଙ୍କୁ ଦେବ ଜଗନ୍ନାଥ
କନ୍ଦରାଜାଙ୍କୁ ଭେଟିଲେ ଯାଇଁ ସମସ୍ତ ।
ସୁବଳ ନାମ ଅଟଇ ସେମନ୍ତ ନୃପତିର
ତାହାଙ୍କୁ ଯେ ଶାଢ଼ୀଦେଲେ ଆପଣେ ଶ୍ରୀଧର
ତାଡ଼ ସହିତ ବାହୁଟି ଝୁମ୍ପା ଜଗଦ୍ବଳା
ହୃଦେ ହାର ସୀମନ୍ତମଣି ଆଉ ବନମାଳା ।
ଯୁଧିଷ୍ଠିର ଦେବ କରିବେ ରାଜସୂୟ ଯଜ୍ଞ
ଋଷିଗଣ ଆସିବେ ଯେ ଆଉ ସର୍ବ ଦେବା ।
ବେଦଲକ୍ଷ ଦେବ ତୁମ୍ଭେ କୃଷ୍ଣମୃଗ ଛୌଷ
ହରିଣ ଗଣ୍ଡାମାନଙ୍କୁ ରଖିଥିବ ଧରି ।
ହରିଣ ମାଂସ ଭୋଜନ କରିବେକ ଋଷି
ବନ ବରାହ ତାହାଙ୍କୁ ଦେବ ମନ ତୋଷି ।
ଏହା ଯେତେ ମାଗେ ଷୋଳଶହ ପରିସନ୍ତେ
ଊନକ୍ଷୌଣୀ ବଳ ଶେଷ ଯେ ବାରୁଣାବନ୍ତେ
କନ୍ଦ ନରପତି ଶୁଣି ପରମ ହରଷେ
ସନମତ କଲା ସେମନ୍ତ ଶ୍ରୀକୃଷ୍ଣଙ୍କ ପାଶେ ।
ଏମନ୍ତର ଆଜ୍ଞାଦେଇ ପ୍ରଭୁ ଦେବରାଜେ
ଗରୁଡ଼ ପିଠିରେ ଯାଇ କରିଲେକ ବିଜେ ।
ମହ୍ଲାର ଦେଶର ରାଜା ନାମ ଋତୁପତି
ମହ୍ଲାର ଦେଶର ସେହୁ ଅଟେ ଚକ୍ରବର୍ତ୍ତୀ ।
ଜାହ୍ନବୀ ନଦୀର ତୀରେ ଅଟେ ତାର ବାସ
ତାହାର ପଲ୍ଲୀରେ ଯାଇ ହୋଇଲେ ପ୍ରବେଶ ।
ହରିଙ୍କୁ ଦେଖିଣ ସେମନ୍ତ ମହ୍ଲାରର ରାଜା
ତାହାଙ୍କର ପଦ୍ମପାଦେ କଲା ଦିବ୍ୟପୂଜା ।
ବଟର ତଳକୁ ନେଇ ବସାଇଲା ତାଙ୍କୁ
ଶ୍ରୀହସ୍ତରେ ଶାଢ଼ୀଦେଲେ ମହ୍ଲାର ରାଜାକୁ ।
ବାହୁଟି କଙ୍କଣ ଦେଲେ ଶିରେ ସୀମନ୍ତମଣି
ତାହାର ଗଳାରେ ହାର ଲମ୍ବାଇଲେ ଆଣି ।
ଆହେ ଯୁଧିଷ୍ଠିର କରିବେ ରାଜସୂୟ ଯାଗ
ଲକ୍ଷେ ନୃପତି ସେଠାରେ ହେବେ ଏକଯୋଗ
ଏ ମଧୁବନ ରାଜ୍ୟରେ ପୂର୍ବେ ଆମ୍ଭେ ଥିଲୁ
ଭାଗବତ ଲଗ୍ନରେ ଗୃହ ଗଢ଼ାଇଲୁ ।
ମଧୁବନ ପୁରୁ ତାହା ହୋଇଥିଲା ସଖି
କେତେଯୁଗ ଯୁଗରୁ ଏଥେ ଉଣ୍ଡ୍ରୁକ ଯେ ଅଛି ।
ସୁବର୍ଣ୍ଣର ନିର୍ମିତରେ ଶତ ଶତ କୋଠି
ଉଣ୍ଡ୍ରୁକରେ ପୂରିଅଛି ଘର ଶତକୋଟି ।
ଏମନ୍ତ ଉଣ୍ଡ୍ରୁକମାନ ତୁ ନାବରେ ପୂରାଇ
ହେଳା ନ କରି ଏହାକୁ ଦେବୁ ପଠାଇ ।
ନାଚ କେରୁଆନ ଆଉ ନାବମାନ ସବୁ
ଯତ୍ନକରି ଏହା ତୁମ୍ଭ ନିର୍ବନ୍ଧ କରିବୁ ।
ଚୌରାଶୀ ଯୋଜନ ଅଟେ ଏମନ୍ତ ମଧୁବନ
ଏ ବୃକ୍ଷମାନଙ୍କ ଫଳ ଅମୃତ ସମାନ ।
ପଇଡ଼ କଦଳୀ ଆମ୍ବ ଆମ୍ଳ ନଟିକାଳ
ଆବର ପଣସ ଟଭା ନାନା ସ୍ୱାଦୁ ଫଳ ।
ଏହା ସବୁ ଠୁଳକରି ପୂରାଇଣ ନାବେ
ବାରୁଣାବନ୍ତକୁ ନେବୁ ତୁ ମହାସମ୍ଭ୍ରମେ ।
ମଧୁବନେ ତୋଟାଳଆ ରହନ୍ତି ପାଞ୍ଚଖର୍ବ
ଡୋହର ଘୋଡ଼ରେ ନାବେ ଖଟିଥିବେ ସର୍ବ
ଏସନକ ଆଜ୍ଞା ତାକୁ ଦେଇଣ ଶ୍ରୀହରି
ତହୁଁ ଖଗପୃଷ୍ଠେ ବସିଲେକ ବେଗକରି ।
ମନୋହର ବନ ରାଜା ଭୁବନ ଈଶ୍ୱର
ତାର ବନେ ଅଛି ବୃକ୍ଷ ଚନ୍ଦନ ଅଗୁରୁ ।
ବସ୍ତ୍ର ରତ୍ନ ଅଳଙ୍କାରମାନ ତାଙ୍କୁ ଦେଇ
କହିଲେ ତାକୁ ବୁଝାଇ ପାଶରେ ବସାଇ ।
ଯୁଧିଷ୍ଠିର ଦେବ କରିବେ ରାଜସୂୟ ଯଜ୍ଞ
ଲକ୍ଷେରାଜା ଯିବେ ଆଉ ଯିବେ ସର୍ବଦେବା ।
ଅଗୁରୁ ଚନ୍ଦନ ବୃକ୍ଷ ସକଳ ତୁ କାଟି
ଗଙ୍ଗାକୂଳକୁ ନେଇଣ କରିବୁ ପଇଠ ।
ଲକ୍ଷେ ରାଜାଙ୍କ ପାଇଁକି ଲକ୍ଷେକ ନବର
ଖମ୍ବ ରୁଅ ଶେଣି ସବୁ ହେବ ଚନ୍ଦନର ।
ପାକ୍ଷମଣ୍ଡୀ ଗୃହ ସୈନ୍ୟାଗାର ଆଦିକରି
ଅଗୁରୁ ଚନ୍ଦନେ ଏହା ହୋଇବ ତିଆରି ।

ଷୋଳ ଦିବସକୁ ଯେତେ ଇନ୍ଧନ ଲାଗିବ
ନାବ ପୂର୍ଣ୍ଣକରି ଗଙ୍ଗାବାଟେ ପଠାଇବ ।
କାଶୀ ନଗରରେ ଅଛି କୁଣ୍ଡଳୀର ବାସ
ତହିଁ ଯାଇଁ ପ୍ରବେଶିଲେ ଦେବ ପୀତବାସ ।
ସେ ନଗରରେ ଅଛଇ ଏକଇ ବିପିନ
ନାନାବୃକ୍ଷରେ ବେଷ୍ଟଇ ସେ ଅତି ଶୋଭନ ।
ସେ ବନମଧ୍ୟେ ତପସ୍ୱୀ ଦଶସହସ୍ର ବର୍ଷ
ରୁଦ୍ରେ ସେବା କରୁଥିଲେ ହୋଇଣ ହରଷ ।
ନାନା ସୁବାସ ଦ୍ରବ୍ୟକୁ ଏକତ୍ର ସେ କରି
ବାଲୁକା ଲିଙ୍ଗରେ ଢାଳନ୍ତି ଶାକମ୍ଭରୀ ।
ସେହି ଜଳକୁ ପିଇଲେ ଯେତେ ଜୀବଗଣ
ସେହି ଜୀବ ହୋଇଲେକ ତପସ୍ୱୀ ସେ ଜାଣ ।
ତାହାଙ୍କର ଉଚ୍ଛିଷ୍ଟକୁ ଖାଇଲେ ଯେମାନେ
ଜଳଙ୍ଗ ମତ୍ସ୍ୟ ହୋଇଲେ ଜାଣ ସେହିମାନେ ।
ତାହାଙ୍କର ଉଚ୍ଛିଷ୍ଟକୁ ଯେ ଜୀବ ଖାଇଲେ
ସେ ଜୀବ ଶାନେହାପକ୍ଷୀ ହୋଇ ଜନମିଲେ ।
ଆହେ କୁଣ୍ଡଳ ତୁମ୍ଭେ ଏ ଜୀବଗଣ ଘେନ
ରାଜସୂୟ ଯାଗେ ଏ ସବୁ ଦେଉଥିବ ଆଣି ।
ଆଉ ଯେ ପଦାର୍ଥ ତୁମ୍ଭେ ପାଅ ଅପୂରୁବ
ଯାଗଶେଷ ହେବାଯାଏ ଆଣି ଯୋଗାଇବ ।
ଯେବେ ଅବଜ୍ଞା କରିବ ଆମ୍ଭର ଏ ବାଣୀ
ଅବଶ୍ୟ ତାହାକୁ ତତ୍ତେ ପକାଇବୁ ହାଣି ।
ଶୁଣି ହର୍ଷ ହେଲା ସେହି କୁଣ୍ଡଳୀ ନୃପତି
ଶ୍ରୀକୃଷ୍ଣଙ୍କ ଚରଣରେ ତୋଷ କଲା ମତି ।
ଏସନତ ଆଜ୍ଞା ଦେଇ ତାକୁ ଜଗନ୍ନାଥେ
ଗରୁଡ଼ ପିଠିରେ ବିଜେ କରିଲେ ତୁରିତେ ।
ଲକ୍ଷ୍ମୀପତି ଆଜ୍ଞାଦେଲେ ତହିଁ ଗରୁଡ଼କୁ
ବହନ ଚଳ ହୋ ଯିବା କୁବେର ପୁରକୁ ।
ନାରାୟଣଙ୍କ ଆଜ୍ଞାକୁ ଘେନ ଶିରପରେ
ଗରୁଡ଼ ମିଳିଲା ଯାଇ ଅଳକାପୁରରେ ।
ଜାଣିଲା କୁବେର ଏଥେ କୃଷ୍ଣ ବିଜେକଲେ
ପାଦାର୍ଘ୍ୟ ଦେଇଣ ତାଙ୍କ ପାଦରେ ପୂଜିଲେ ।
ଅଳକାନାଥର ଆଗେ କହନ୍ତି କେଶବ
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବ ।
ସପ୍ତନିଧି ଘେନ ଖଟିଥିବୁ ଅନୁବ୍ରତେ
ଯେତେ ରତ୍ନ ଲାଗେ ଷୋଳଦିନ ଘରଯତ୍ନେ ।
ମୋ ଆଜ୍ଞା ଶୁଣ କୁବେର ଜଗତ୍ର ବଚନ
ଭଣ୍ଡାରେ ସଞ୍ଚିତ ହୋଇଥିଲା ଯେତେ ଧନ ।
ଦଶସେବକ ଥିଲେ ଯେ କୁବେର ସଇନ
ଭଣ୍ଡାରୁ ଧନ ସକଳ ଆଣିଲେ ସେକ୍ଷଣି ।
ଏସନତ କହି ତାକୁ ଦେବ ହୃଷୀକେଶ
ବିଶ୍ୱକର୍ମାକୁ ଡାକିଲେ ଆପଣାର ପାଶ ।
କୋଇଲେତ ସୁରପୁରେ ଯେସନେ ସୁଧର୍ମା
ତେସନ ସଦୃଶ ସେହି ଦିଶିବ ସୁଷମା ।
ତା ତହୁଁ ସୁନ୍ଦର ହେଲେ ତୋର କାରିଗରି
ବହୁ ଗୌରବ ପାଇବୁ ଜାଣ ହେତୁକରି ।
ଦ୍ୱାଦଶ ଯୋଜନ ହେବ ସଭା ଆୟତନ
ଲକ୍ଷେକ ଖମ୍ବେ ହୋଇବ ସଭା ବିଦ୍ୟମାନ ।
ଆହୋ ଅଷ୍ଟାଦଶ ଦଣ୍ଡ ହେବ ଜଳକାଠି
ସ୍ଫଟିଆଡ଼କୁ ମାଡ଼ିବ ସେହି ଖମ୍ବଗୋଟି
ମଣିରତ୍ନ ଫୁଲ ହେବ ତହିଁରେ ଜଡ଼ିତା
ସମନ୍ତ ଥିବ ତେଜବନ୍ତର ମୁକୁତା ।
ପ୍ରବାଳଦ୍ୱାର ପତନେ ତହିଁ ଖଞ୍ଜା ହେବ
ଦୂରକୁ ଯେସନେ ଜକଜକ ତା ଦିଶିବ ।
ସେ ରାଜା ଯେବଣ ଖମ୍ବ ମୂଳରେ ବସିବ
ସେ ଖମ୍ବ ଶୋଭା ବର୍ଣ୍ଣନେ ବେଳ ନ ଅଣ୍ଟିବ
ଯେ ରାଜ ଭଣ୍ଡାର ତାକୁ ନୋହିବ ଯେ ସରି
ଦେଖି ବସିଥିବ କ୍ଷୁଧା ପିପାସା ପାସୋରି ।
ଆଗେ ଜଗନ୍ନାଥ ଏକ ଚିତ୍ରପଟ ଲେଖି
ଏ ସ୍ୱରୂପ ହେବ କହିଦେଲେ ଚକ୍ରାଣିକ ।
ପ୍ରତି ସ୍ତମ୍ଭରେ ହେବ ଆସ୍ଥାନ ନିର୍ମିତ
କେନ୍ଦ୍ରକାଠି ଉଚ ହେମ ସ୍ୱର୍ଣ୍ଣ ସପ୍ତହସ୍ତ ।
ସୁବର୍ଣ୍ଣର ବାଇଗୋଟି ହୋଇବ ପାବଚ୍ଛ
ଲକ୍ଷେସ୍ତମ୍ଭ ପାଶେ ହେବ ଆସ୍ଥାନ ମେବଚ୍ଛ ।
ଶ୍ୱେତ ଚନ୍ଦ୍ରାତପ ତାର ଉପରେ ଟାଣିବ
ଅଷ୍ଟରତ୍ନେ କାରୁକାମ ତାହା ହୋଇଥିବ ।
ବହୁ ସୁସଜ୍ଜ ହୋଇବ ଯେତେକେ ଅପୂରୁବ
ଲକ୍ଷେସ୍ତ୍ରୀ ବସିବାକୁ ତହିଁ ହେବ ଠାବ ।
ମୁକ୍ତାର ମାଳାମାନ ଲମ୍ବୁଥିବ ତହିଁ
ଦେଖିଲା ବେଳକୁ ମନ ମୋହିବ ସେ ଅତି ।
ଏମନ୍ତ ସୁନ୍ଦର ହେବ ସେ ସଭା ମଣ୍ଡପ
କୌତୁକେ ଭଲ ଦେଖିବେ ଯେତେକ ସର୍ବଭୂପ

ସର୍ବ ସମ୍ପଦ ଗୁପ୍ତ ମଣ୍ଡପର ସ୍ଥଳୀ
ଯେସନେ ରାଜାଏ ଦେଖି ନ ପାରିବେ କଳି ।
ଏସନକ ଆଜ୍ଞା ଦେଇ ଦେବ ଜଗନ୍ନାଥେ
କୁବେର ବୋଇଲେ ଦେବୁ ଧନ ଲୋଡ଼େ ଯେତେ
ହରିଙ୍କ ଆଜ୍ଞା ପାଇଣ କୁବେର ବହନ
ଚନ୍ଦ୍ର ପର୍ବତ ଗୁହାରେ ଦେଲା ଉପସ୍ଥାନ ।
ଦଶ ମେଦଙ୍କ ଅଛନ୍ତି କୁବେର ସଦନ
ଭଣ୍ଡାରୁ ଧନମାନ ସେ ଆଣିଲେକ ଘେନି ।
ବୈନତେୟ ଆରୋହଣ ତହୁଁ ଚତୁର୍ହସ୍ତ
ପ୍ରସ୍ଥାନ ଭଲେ ସେଠାରୁ ହୋଇ ଉଲ୍ଲସିତ ।
ବାରିନିଧିପୁର ଅଭିମୁଖେ ଜଗଦ୍‌ବନ୍ଧୁ
ପ୍ରବେଶ ହୋଇ ଉଭୁର ଗରୁଡ଼ୁ ଇନ୍ଦୁ ।
ଯାଆନ୍ତେ ବରୁଣ ସ୍ୱର୍ଣ୍ଣ ଆସନେ ବସାଇ
ବସ୍ତ୍ର ପୂଜାବଳି ପାଦେ ଧୂପ ଦୀପ ଦେଇ ।
ଅନେକ ହରଷ ହୋଇ ବୋଲେ ଜଳପତି
ତବ ପାଦ ଦେଖି ମୋର ଫିଟିଲା ଦୁର୍ଗତି ।
ହେ ଦେବ କେଉଁ କାରଣେ ବିଜେ ମୋର ପୁର
ସେ କଥା ଶୁଣିଲେ ଚିତ୍ତ ଥୟ ହେବ ମୋର
ରତ୍ନାକର ସନ୍ନିଧାନେ ବଦନ୍ତି କେଶବ
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବ ।
ତୁହି ରତ୍ନଥିବୁ ଯାଗ ଶେଷ ପରିଯନ୍ତେ
ଯୋଗାଉଥିବୁ ପଲମ ଲାଗୁଥିବ ଯେତେ ।
ଆହେ ବଗବଜେ କାଳେ ସଜନ ଅମର
ଲୁଟୁଇଛନ୍ତି ରତ୍ନର ପଲମ ତୋ ପୁର ।
ହେତପ୍ରାପ୍ତେ ତାରକା ଅସୁର ଯେ ଥିଲା
କାର୍ତ୍ତିକ କୁମର ହସ୍ତେ ସେହି ନାଶ ହେଲା ।
ପୁଣି ସତ୍ୟ ଉତପତ୍ତି ହୋଇଣ ରାବଣ
ସେ ଧାଡ଼ଦ୍ୟନ୍ତେ ପଳାଇଗଲେ ଦେବଗଣ ।
ସେ ରତ୍ନ ଯୋଗାଣମାନ ଅଛି ତୋର ପୁରେ
ସେହି ପଲମକୁ ଦେବୁ ଯାଗ ସମ୍ମୁଖରେ ।
ରତ୍ନାକର ବୋଇଲେକ ଯୋଡ଼ି ବେନିକର
ମୁଁ ଜଗିଲା ଲୋକ ସିନା ଭଣ୍ଡାର ତୋହର ।
ଜଳଚର ପଙ୍କଚର ନାଶିଣ ଅସୁରେ
ଜଳଭୁବନ ମନ୍ଥନ କଲେକ ବଳରେ ।
ଏ ବାରିନିଧି ଭଣ୍ଡାର ହେଲେ ଚୂର କଲେ
ଦେବଙ୍କ କାର୍ଯ୍ୟେ ନାଶିଲୁ ତାଙ୍କୁ ଅବହେଳେ

ଆଣି ଭଣ୍ଡାରକୁ ପୁଣି ଥୋଇଲୁ ମୋ ତହିଁ
ନିଜ ପଦାର୍ଥ ଯାହାକୁ ମାଗୁଛ ଗୋସାଇଁ ।
ଯେତେକ ପଦାର୍ଥ ତୋର ଲାଗଇଟି କାର୍ଯ୍ୟ
ତେତେକ ଯୋଗାଡ଼ ମୁହିଁ ଦେବି ଦେବରାଜ ।
ରାଜାମାନଙ୍କୁ ଲାଗେ ଯେତେ ପଲମ ଝର
ଜଳଚରେ ଦେଉଥିବେ ତାହା ବୋହିକରି ।
ବରୁଣକୁ ଏହି ଆଜ୍ଞା ଦେଇଣ ଅନନ୍ତ
ଦ୍ୱାରକା ପୁରେ ବିଜୟ କରିଲେ ତୁରିତ ।
ଦାସୀ ମୁଖୁ ଶୁଣି କରି ଆସି ଉଗ୍ରସେନ
ଆସ୍ଥାନେ ବସାଏ ନେଇ ଦେବ ଭଗବାନ ।
କୃଷ୍ଣଙ୍କ ଆଗତ ଶୁଣି ଦେବ କାମପାଳେ
ବିଜେ କଲେ ହରଷରେ ଯାଇ ସଭାତଳେ ।
ଆସ୍ଥାନ ତ୍ୟାଗ କରିଣ ଉଠିଲେ ସମସ୍ତେ
ଶ୍ରୀରାମଙ୍କ ପଦ୍ମପାଦେ ନମି ଜଗନ୍ନାଥେ ।
ଅନେକ ବିନୟ ବାକ୍ୟ କହି ଦେବସ୍ୱାମୀ
ବଳଦେବଙ୍କ ଚରଣେ ହୋଇ ପରଣାମି ।
କୃଷ୍ଣଙ୍କୁ ଦେଖିଣ ରାମ ଅତି ସ୍ନେହଭରେ
କୁଶଳବାର୍ତ୍ତା ପୁଛିଲେ ବସାଇ କୋଳରେ ।
ବାବୁ ଦ୍ୱାରକା ଛାଡ଼ି ତୁ ଗଲୁ ବହୁଦିନ
ଆସିବା ପଥ ଚାହିଁଣ ନ ସରିଲା ଦିନ ।
ଜରାସନ୍ଧ ଦୁଷ୍ଟରାଜା ଥିବା ପରିଯନ୍ତେ
ମନ ସ୍ଥିର ନୁହେଁ ତୋତେ ଦେଖିବା ପର୍ଯ୍ୟନ୍ତେ
ଗୋମନ୍ତର ଯୁଦ୍ଧେ ବାବୁ ପିଟିଲୁ ଲଙ୍ଗଳ
ସଂଗ୍ରାମରେ ପାଡିଲା ସେ ଜରା ବକ୍ଷସ୍ଥଳ ।
ଏତେ ଆଘାତରେ ନାଶ ନ ଯାନ୍ତେ ସେ ଜରା
ବଢ଼ିରଲ ହେବ ପରା ଅସୁର ଏ ଗାଢ଼ା ।
ପ୍ରଥମ ଧାଡ଼ିରେ ଗୋପପୁରକୁ ବେଢ଼ିଲା
ତାହାର ଭୟେ ଆମ୍ଭର ପାଏଡ଼ା ପଡ଼ିଲା ।
ଗୋପପୁର ଛାଡ଼ିଣ ଯେ ରହିଲୁ ମଥୁରା
ତହିଁ ଯାଇ ଧାଡ଼ିଦେଲା ଜରା ମହାବୀର ।
ତହିଁ ସଂଗ୍ରାମରେ ଆମ୍ଭେ ଜିଣି ତ ନ ପାରି
ଅବନ୍ତୀ ପୁରକୁ ଗଲୁ ତାକୁ ଭୟ କରି ।
ତହିଁ ଯାଇ ଧାଡ଼ିଦେଲା ମଗଧ ଈଶ୍ୱର
ତହିଁ ଅପସରି ଆମ୍ଭେ ଗଲୁ ବାରମ୍ବାର ।
ଗୋପନ ହୋଇ ରହିଲୁ ଯାଇଣ ଗୋମନ୍ତେ
ସେହି ଠାବରେ ସଂଗ୍ରାମ ହେଲା ଅପ୍ରମିତେ ।

ତହିଁ ରହି ନ ପାରିଲୁ ଆମ୍ଭେ ତାର ଡରେ
ଯାଇଣ ରହିଲୁ ବାବୁ ସେ ମଧୁବନରେ ।
ଅଷ୍ଟାଦଶବାର ଯାଏ ସେନା ଧାଡ଼ିଦେଲା
ବଳଭଦ୍ର ମୁଷଳରେ ସଂହାର ନୋହିଲା ।
ବିଧାତା ବୋଇଲେ ରାମ ଯୁଦ୍ଧ ନ କରନ୍ତୁ
ତୁମ୍ଭର ହସ୍ତେ ଜରାର ନ ହୋଇବ ମୃତ୍ୟୁ ।
ଧାତାର ବଚନେ ମୁହିଁ ଗଲି ଅପସରି
ତେଣୁ ଜରାସନ୍ଧକୁ ମୁଁ ଥାଏ ସଦା ଡରି ।
ହରି ସମୁଦ୍ର ମଧ୍ୟେ କୁ ରଚିଲୁ ଦ୍ୱାରକା
ତେବେ ସୁଦ୍ଧା ଜରାସନ୍ଧ ସବୁବେଳେ ଶଙ୍କା ।
ଦ୍ୱାରକାରୁ ବାହାର ମୁଁ ନୁହେଁ ତାର ଡରେ
ଜରା ନାଶଯାଏ କୁ ନ ଯିବୁ ନିର୍ଭୟରେ ।
ଜରା ବିନାଶନେ ହରି ନ କଲୁ ଉପାୟ
ସେ ମଲେ ଆମ୍ଭେମାନେ ଯେ ହୁଅନ୍ତୁ ନିର୍ଭୟ ।
ହସିକରି ବୋଇଲେ ଯେ ତାଙ୍କୁ ନାରାୟଣ
ଦ୍ୱାରକା ପୁରେ ଉତ୍ସବ କର ଆଜିଦିନ ।
ବଳରାମ ବୋଇଲେ ହେ ଉତ୍ସବ କାହିଁକି
ଜରାସନ୍ଧ ବଧ ହରି ଅଇଲୁ କି ଦେଖି ।
କରଯୁଗ ଯୋଡ଼ିଣ ଯେ ବୋଲନ୍ତି ଅଚ୍ୟୁତ
ଶୁଣ ଦେବ ଭୀମପାଣେ ଜରା ହେଲା ହତ ।
ଆଶ୍ଚର୍ଯ୍ୟ ହୋଇ ବୋଲନ୍ତି ରେବତୀରମଣ
କରାଇଲୁ କେଉଁପରି ଜରାକୁ ନିଧନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଦେବରାଜେ
ମଗଧ ଦେଶକୁ ଗଲୁ ଯୁଧିଷ୍ଠିଙ୍କ କାର୍ଯ୍ୟେ ।
ଭୀମ ଅରଜୁନଙ୍କୁ ମୁଁ ନେଲି ଯେ ସଙ୍ଗରେ
ଜରାକୁ ଭେଟିଲୁ ଯଜ୍ଞ ଆହୁତି କାଳରେ ।
ବେଦ ଅଧ୍ୟୟନ କରି ମାଗିଲୁ ଯେ ଦାନ
ସଂଗ୍ରାମ ମାଗନ୍ତେ ଦେଲା ସନ୍ତୁଷ୍ଟ ନୋହିଣ ।
ଜରା ତୁଲେ ସଂଗ୍ରାମ ଯେ କଲା ବୀର ଭୀମ
ଜରା ଭୀମର ବଢ଼ନ୍ତେ ତୁମୁଳ ସଂଗ୍ରାମ ।
ଜନ୍ମକାଳୁ ଜରାସନ୍ଧ ଅଟେ ବେନିଫାଳ
ଧରି ଚିରିଲା ତାହାକୁ ପବନର ବାଳ ।
ବଡ଼ବାନଳେ ପକାଇଦେଲା ଯେ ଫାଳକ
ଖେଚର ହୋଇ ରହିଲା ଆବର ଖଣ୍ଡକ ।
ଛଡ଼ାଇଣ ସର୍ବ ରାଜା ଧରି ବାହୁବଳେ
ଶାଙ୍କୁଳି ଦେଇ ରଖିଲା ତାଙ୍କୁ ବନ୍ଦିଶାଳେ ।

ଆହୁତି ପାତିଲା ଋଷିମାନଙ୍କୁ ଡକାଇ
ମାଗଣା କରିଥିଲା ସେମାନଙ୍କୁ ନେଇ ।
ଆମ୍ଭେ ପ୍ରବେଶିଲୁ ତହିଁ ସେହି ଦିବସରେ
ନ ହେଲେ ମରିଥାଆନ୍ତେ ସେ ଯାଗ କୁଣ୍ଡରେ
ଜରା ମାରି ରାଜାଗଣ ଉଦ୍ଧାର କରିଲୁ
ଜରା ପୁତ୍ରକୁ ମଗଧେ ଅଧିକାରୀ କଲୁ ।
ରାଜାମାନଙ୍କୁ ସେଠାରେ କଲୁ ନିମନ୍ତ୍ରଣ
ଶୁଣିଣ ସାନନ୍ଦ ହେଲେ ଦେବ ସଙ୍କର୍ଷଣ ।
ବହୁ ହର୍ଷ ହେଲା ବାବୁ ଜରା ନାଶ ଶୁଣି
ଭୀମେ ନ ଆଣିଲୁ ସଙ୍ଗେ କିପାଁ ଚକ୍ରପାଣି ।
ବାବୁ ଉତ୍ସବ କରନ୍ତୁ ଭୁବନ ଦ୍ୱାରକା
ଆପଦ ଖଣ୍ଡି ଆମ୍ଭଙ୍କୁ କଲା ସେ ନିଃଶଙ୍କା ।
ଭୀମ ନାମରେ ଉତ୍ସବ କରନ୍ତୁ ଏ ପୁରୀ
ସେ ଉତ୍ସବ ଦେଖିଥାନ୍ତେ ସର୍ବ ନରନାରୀ ।
ପୁଣ ପୁଣ ଭୀମକୁ ଯେ ପରଶଂସା କରି
ତୁନି ହୋଇଣ ରହିଲେ ଚକ୍ଷୁ ହଳଧାରୀ ।
ଶ୍ରୀକୃଷ୍ଣ ବୋଇଲେ ବଡ଼ ସମାରୋହ ହେବ
ଯୁଧିଷ୍ଠି ଦେବ କରିବେ ରାଜସୂୟ ଉତ୍ସବ ।
ଲକ୍ଷେ ନୃପତିଙ୍କୁ ଦେବ ଆଣିବ ସେ ସାଧି
ପାଣ୍ଡବମାନେ ଅଟନ୍ତି ଏକେ ଏକେ ଯୋଧି ।
ରାଜସୂୟ ଯାଗରେ ହେବ ତହିଁ ବଡ଼ ସଭା
ସଜ ହୋଇଥାଅ ପ୍ରଭୁ ସମସ୍ତେ ଯେ ଯିବା ।
ଶୁଣି ବଳରାମ ହେଲେ ପରମ ସାନନ୍ଦ
ଦେଖିବା ଯୁଧିଷ୍ଠିଙ୍କର ଉତ୍ସବ ସମ୍ପଦ ।
ଲକ୍ଷେ ରାଜା ଆସିବେ ତ ଏହାଙ୍କ ବୋଲରେ
ମହାବଳିଷ୍ଠ ଅଟନ୍ତି ଏହି ପୃଥିବୀରେ ।
ଗୋବିନ୍ଦ ବୋଇଲେ ରାଜା କି ଛାର ଏହାଙ୍କୁ
ବିଭୀଷଣ ତ ଆସିବ ଏ ମହାଯାଗକୁ ।
ପାତାଳପୁରୁ ଆସିବ ବାସୁକୀ ରାଜନ
ନାଗଙ୍କୁ ଘେନି କରିବ ସେ ପାଦ ପୂଜନ ।
ଆକାଶୁଁ ଆସିବ ଇନ୍ଦ୍ର ଘେନି ଦେବଗଣ
ଦେବର୍ଷି ରାଜର୍ଷି ଦେବ ଚତୁର ଆନନ ।
ମେଘ ବାୟୁ ଆଦିକରି ଯଜ୍ଞେ ଥିବେ ଖଟି
ଏମନ୍ତ ସମ୍ପଦ ଦେବ ଅର୍ଜିବେ ଯୁଧିଷ୍ଠି ।
ହଳୀ ବୋଇଲେ ହେ ହରି କେବେଁ ସର୍ବେ ଯିବା
ଯଦି ହେବ ଏତେ କଥା ସ୍ୱରୂପେ ଦେଖିବା ।

ମାନଧାତା ଯାଗକଲେ ଶୁଣିଥିଲୁ ପୂର୍ବେ
ଯୁଧିଷ୍ଠିର ରାଜସୂୟଯାଗ ଦେଖିବା ଏବେ ।
ଗୋବିନ୍ଦ ବୋଇଲେ ଦେବ ଚତୁର୍ମାସ୍ୟାପରେ
ସାତବଂଶ ଯେବେ ଯଜେ କରିବା ସେଠାରେ ।
ଏରୂପେ ଅନେକ କଥା ବଳଦେବେ କହି
ଦ୍ୱାରକାର ମହାରଣାମାନଙ୍କୁ ଡକାଇ ।
ଦଶଲକ୍ଷ ସୁବର୍ଣ୍ଣର ଦେବ ଭୃଙ୍ଗ କୌତ
ଏହାର ନିର୍ମାଣ ହଳକର ଯା ଝଟତ ।
ଆଉ ଦେବ ଦଶଲକ୍ଷ ସ୍ୱର୍ଣ୍ଣର କୁଣ୍ଡାଇ
ସୁବର୍ଣ୍ଣର ଦଶଲକ୍ଷ ଦେବ ପଲମଇ ।
ଦଶଲକ୍ଷ ଦେବ ଭୃଙ୍ଗ ସ୍ୱର୍ଣ୍ଣ ରେଜ୍ୟଉର୍ତ୍ତି
ଭଣ୍ଡାରୁ ପ୍ରସନ୍ନାକଚ ଧନ ଦେବ ଆଣି ।
ଦଶଲକ୍ଷ ତାଳ ଦଶଲକ୍ଷ ଯେ ଗରଆ
ରାଜାଙ୍କର ସ୍ନାନପାଇଁ ହୋଇବ ଯେ ଏହା ।
ଦଶଲକ୍ଷ ନାଳୁଆ ଯେ ଦଶଲକ୍ଷ ଝର
ଚତୁର୍ମାସ୍ୟା ମଧ୍ୟେ ଏହା ଦେବ ଗଢ଼ିକର ।
ସୁବର୍ଣ୍ଣ ବହୁଢ଼ ଦେବ ଶତେକ ଅୟୁତେ
ସୁବର୍ଣ୍ଣର ଧୂପ ଦେବ ଦଶ ଅଇସୁତେ ।
ଅଶୀଲକ୍ଷ ଦେବ ଭୃଙ୍ଗ ସ୍ୱର୍ଣ୍ଣର ଖପର
ସ୍ୱର୍ଣ୍ଣ ଘାପରୁଖା ଲକ୍ଷେ ଲାଗିଥିବ ଖୁର ।
ହେ ଅକ୍ରୂର ଅନାଧୃଷ୍ଟ ଉଦ୍ଧବ ସାତ୍ୟକ
ଏ ରତ୍ନ ଗଠନ ନେଇ ପାଶେ ଥିବ ରକ୍ଷି ।
ଏ ପଦାର୍ଥ ଏକ ଯେବେ ନଊନ ହୋଇବ
ଯୁଧିଷ୍ଠିର କୋପକଲେ ପ୍ରାଣେ ନାଶଯିବ ।
ଦ୍ୱାରକାରେ ଏହିପର ଆଜ୍ଞା ଦେଇ ହରି
ଖଗେଶ୍ୱର ପିଠିପରେ ଯାଇ ବଜେ କରି ।
ଘୃତ ସମୁଦ୍ରର ପାଶେ ହୋଇଲେ ପ୍ରବେଶ
ଘୃତଅଧିକାରୀକ ଯେ ଡକାଇଲେ ପାଶ ।
ବୋଇଲେକ ଲକ୍ଷସେ ବା ଘେନ ମେଘଦ୍ରୋଣ
ତୋଠୁଁ ଘୃତ ନେଇ ଦେବ ରାଜସୂ ଯାଗେଣ
ଶୁଣିଣ ପରମାନନ୍ଦ ହେଲା ବାରନିଧି
ଏ ଯାଗେ ଖଟିଲେ ମୋର ହେବ କାର୍ଯ୍ୟସିଦ୍ଧି
ଘୃତ ସମୁଦ୍ରକୁ ଆଜ୍ଞା ଦେଇ ଦେବରାଜେ
ବୈନତେୟ ପିଠପରେ ବସେ ଯାଇ ବଜେ ।
ରତ୍ନାକର କୂଳେ ଯାଇ ହୋଇଲେ ପ୍ରବେଶ
ପ୍ରଣି ଯାଉଛନ୍ତି ଜଳମଧ୍ୟେ ହୃଷୀକେଶ ।
ଦେଖିକରି ରତ୍ନାକର ଗରୁଡ଼ ଗମନ
କ୍ଷୀରହସ୍ତେ ଅର୍ଘ୍ୟ ଘେନିଣ କରିଲା ଦର୍ଶନ ।
ଅନେକ ବିନତୀ ହୋଇ ଜଳନିଧିର ରାଜା
ଜଗନ୍ନାଥଙ୍କ ଚରଣେ କଲା ବହୁ ପୂଜା ।
ଗୋବିନ୍ଦ ବୋଇଲେ ଆହେ ଶୁଣ ରତ୍ନାକର
ସୁବର୍ଣ୍ଣ ଯୋଗାଡ଼ମାନ କରସି ସମ୍ଭାର ।
ଏହା ଶୁଣିକରି ବେଗେ ଯାଇ ଜଳନିଧି
ତକ୍ଷଣେ ଫେଡ଼ିଲେ ସେହି ଭଣ୍ଡାର ବାରିଧି ।
ସତ୍ୟଯୁଗେ ଦେବତାଏ ତାଡ଼କାର ଭୟେ
ଥୋଇଥିଲେ ଯେ ଯୋଗାଡ଼ ସୁବର୍ଣ୍ଣର ଆସ୍ତେ
ବରୁଣକୁ ଆଜ୍ଞା ଦେଲେ ଦେବ ବନମାଳୀ
ଏ ରତ୍ନ ଯୋଗାଡ଼ମାନ କର ବେଗେ ଝଳୀ ।
ଅନେକ ସାନନ୍ଦ ହେଲା ଶୁଣି ଜଳପତି
ଜଳଚରଙ୍କ ହସ୍ତରେ ନିର୍ମାଣ କରନ୍ତି ।
ଚତୁର୍ମାସ୍ୟା ଅନ୍ତେ ଯେ ସେ ଯଜ୍ଞ ହୋଇବ
ଏହି ରତ୍ନର ଯୋଗାଡ଼ମାନ ନେଇ ଦେବ ।
ବାରନିଧି ବୋଲେ ଦେବ ବହୁ ଭାଗ୍ୟ ମୋର
ରାଜସୂୟଯାଗେ ଦେବଇଁ ରତ୍ନର ସମ୍ଭାର ।
ତହୁଁ ବୈନତେୟ ପିଠି ପରେ ବଜେ କରି
ଚଳିଗଲେ ହୃଷୀକେଶ ପାତାଳର ପୁରୀ ।
ହାଟକେଶ୍ୱର ଭୁବନେ ଥାଏ ମୟଦୈତ୍ୟ
ତାହାର ପୁରେ ପ୍ରବେଶ ହେଲେ ନନ୍ଦସୁତ ।
ବାରତା ପାଇଣ ବଦ୍ୟାକେଭୁର ଯେ ନାଥ
ସାକ୍ଷାତରେ ମିଳିଲା ସେ ସଙ୍ଗେ ବହୁରଥୀ ।
ଲକ୍ଷେ ସ୍ୱର୍ଣ୍ଣ ପାଣିଦ୍ରବ୍ୟ ଘେନିଣ ସେ ହସ୍ତେ
ସହସ୍ର ପ୍ରଣାମ କଲା ଜଗନ୍ନାଥ ପାଦେ ।
କରିବେକ ରାଜସୂୟ ଯଜ୍ଞ ଯେ ଯୁଧିଷ୍ଠି
ସେ ଯାଗକୁ ଦେବୁ ଭୂଷି ମାୟା ସଭା ଗୋଟି ।
ଅକାଢ଼ରେ ଚହମାନ ହୋଇବ ଲଖନ
ଜଳଫଟିକ ଯେସନ ନୋହିବ ବାରଣ ।
ଜଳେ ସ୍ଥଳ ହୋଇବ ଯେ ସ୍ଥଳେ ହେବ ଜଳ
ଶୂନ୍ୟେ ସ୍ତମ୍ଭ ଲାଗିଥିବ ସୁବର୍ଣ୍ଣର ସ୍ଥଳ ।
ଶଙ୍ଖ ଖଞ୍ଜନ ଜନ୍ଧିକ ଯେ ହେବ ସଭାନାମ
ଶୂନ୍ୟରେ ତାର ପାବଚ୍ଛ ରଖିଥିବ ଜାଣ ।
ଯୁଧିଷ୍ଠିର ଦେବଙ୍କୁ ଯେ ଉଚିତ ହୋଇବ
ତାହାକୁ ସେହି ସଭାର ସକଳ ବଖିବୁ ।

ଯୁଧିଷ୍ଠିର ଦେବଙ୍କୁ ଯେ ହେବ ଉପ୍ରସମ
ତାହାକୁ ଅଦୃଶ୍ୟ ହେବ ଯେ ସଭାଗଠନ ।
ଏମନ ଉପାୟ ଚର୍ଚ୍ଚା କରିଲେ କେଶବ
ଶୁଣି ସନ୍ତୋଷ ହୋଇ ସେ ମୟ ଦାନବ ।
ଭୁମୁର ବଚନ ପ୍ରଭୁ ଅଟେ ଅଲଙ୍ଘିତ
ଶଙ୍ଖଚକ୍ର ଖିଳ କଣ୍ଟକ ମୁଁ ଦେବଇଁ ନିଶ୍ଚିତ ।
ପୁଣି ମୟଙ୍କୁ କହିଲେ ଚର୍ଚ୍ଚି ନାରାୟଣ
ଲକ୍ଷେ ରାଜାଙ୍କୁ ଦେବୁ ତୁ ରତ୍ନ ଆଭରଣ ।
ଝୁମ୍ପା ସରଳ ବାହୁଟି ତାଡ଼ ଜଗଦ୍ବଳା
ଶିରକୁ ସୀମନ୍ତମା ସେ ହୃଦେ ରତ୍ନମାଳା ।
ରତ୍ନ ଆଭରଣ ଦେବୁ ସକଳ ରାଜାଙ୍କୁ
ଯେତେକ ଲୋଡ଼ଇ ରତ୍ନ ଦେବୁ ତୁ ସଭାକୁ ।
ଏମନକ ଆଜ୍ଞା ତାକୁ ଦ୍ୟନ୍ତେ ଜଗନ୍ନାଥ
ଶୁଣିଣ ମୟଦାନବ କଲାକ ସମ୍ମତ ।
ପାତାଳେ ଅନନ୍ତ ତୋର ଯେତେକ ସରନ
ସବୁସ୍ଥଳକୁ ତାହାକୁ ଆଣିବୁ ତୁ ବେନ ।
ଅକ୍ଷତ ଗୁଆ ତାହାକୁ ଦେଇ ଦାମୋଦର
ବିଜୟ କରିଲେ ଯାଇଁ ଗରୁଡ଼ ପିଠିର ।
ପାତାଳ ପୁରୁ ବାହାର ହୋଇଣ ଅନନ୍ତ
ଆକାଶପଥେ ଚଳନ୍ତେ ବନଚାରୀ ସୂତ ।
ଆସିଣ ଦର୍ଶନ କଲା ତାଙ୍କୁ ବିଶ୍ବକର୍ମା
ସଭା ଦେଖାଇଲା ନେଇ ଯେସନେ ସୁଧର୍ମା ।
ଦ୍ଵାଦଶଯୋଜନ ସଭା ଆୟତନ ସ୍ଥଳୀ
ସୁବର୍ଣ୍ଣପରେ ବସିଛି ଅଷ୍ଟରତ୍ନ ଝଳ ।
ତିମିର ନାଶନ୍ତି ଯେସନେ ଦେବ ଦିନମଣି
ସେପରି ଗୃହ ଉଜ୍ଜ୍ୱଳ କରେ ରତ୍ନମଣି
ଦ୍ବିର ସୁରଙ୍କୁ ସେ ଧର୍ମ ହୋଇଛି ଆଶ୍ଚର୍ଯ୍ୟ
ଦେଖିଣ ସାନନ୍ଦ ହେଲେ ପ୍ରଭୁ ଦେବରାଜ ।
ସୁବର୍ଣ୍ଣର ଖମ୍ବ ଆଉ ସୁବର୍ଣ୍ଣର ଶେଣି
ସୁବର୍ଣ୍ଣ ଉପର ଅଷ୍ଟରତ୍ନରେ ଖଞ୍ଜାଣି ।
ଲକ୍ଷେକ କୋଟି ଅଛଇ ଚର୍ଚ୍ଚି ମନ୍ଦାକିନୀ
ବ୍ରହ୍ମାଣ୍ଡ ଝଳକେ ତେଜ ଯେସନେ ଆଦିତ୍ୟ ।
ଯେବଣ ଆଜ୍ଞା ଦେଇଣ ଅଛନ୍ତି ଶ୍ରୀହରି
ଦେବତାଙ୍କୁ ଅସମ୍ଭବ ତା ନିର୍ମାଣ କରି ।
ଶତେକ ପଦ୍ମ ବନାଣି ଚର୍ଚ୍ଚିରେ ଲଗିଣ
ପିଚ୍ଛୁଳା ଗଠନ ପୀଢ଼ କରନ୍ତି ନିର୍ମାଣ ।

ଚନ୍ଦନକାଠି ଉପ୍ସର୍ଗ ଯେ ସ୍ଫଟିକ ବାଲିପୂର୍ଣ
ଶୁଦ୍ଧ ସ୍ଫଟିକ ପାଦଛନ୍ତି ମର୍କତ ରସାଣ ।
ଚନ୍ଦ୍ରକାନ୍ତଷପାଦଛନ୍ତି ଯେ ମାଳାରେ ନିର୍ମିତ
ସଭା ଦେଖିଣ ହରଷ ହେଲେ ଜଗନ୍ନାଥ ।
ଆପଣେ ଯେ ବିଶ୍ବକର୍ମା ରୂପ ଦେବ ଧରି
ପଟ୍ଟା ଧରିଣ ନିର୍ମିତ କଲେ ତାହା ହେରି ।
ଯେବଣ ସ୍ଥାନରେ ଯାହା ଗୁଡ଼ ଯାଇଥିଲେ
ଆପଣେ ଶ୍ରୀହରି ତାହା ଲେଖନ କରିଲେ ।
ଏହି ପରସ୍ପେ ନିର୍ମାଣ କଲା ବିଶ୍ବକର୍ମା
ଏ ସଭା ଦେଖି ପ୍ରଶଂସା କରିବେ ଯେ ବ୍ରହ୍ମା ।
କୁବେର ହକାରି ଆଜ୍ଞା ଦେଲେ ଦାମୋଦର
ଧନକୁ ବଇଶ୍ରବଣ ଚିନ୍ତା ଯେ ନ କର ।
ଯେତେକ ଧନ ଲାଗଇ ରାଜସୂୟ ସଭାକୁ
ସଂଯୋଗ କରି ତୁ ଦେବୁ ଏ ବିଶ୍ବକର୍ମାକୁ ।
ତୋହର ଏହି ଭଣ୍ଡାର ସଞ୍ଚିତ ଶ୍ରୀପତି
ତୋ ଆଜ୍ଞା ଆନ କରିବ କାହାର ଶକତି ।
ଅମର ଭୁବନକୁ ବିଜେ ଦେବ ଲକ୍ଷ୍ମୀପତି
ଗରୁଡ଼ ପିଠି ଉପରେ ବିଜେ ଶ୍ରୀହରି ତ ।
ଅମର ଭୁବନେ ଯାଇ ବିଜୟ କରିଲେ
ଦେଖି ଇନ୍ଦ୍ର ଆସ୍ଥାନରୁ ଉଠି ଉଭା ହେଲେ ।
ଗୋବିନ୍ଦଙ୍କ ପଦ୍ମପାଦେ କଲେ ବିବିଧ ପୂଜା
ଆସ୍ଥାନେ ବସାଇ ପୁଚ୍ଛାକଲେ ଦେବରାଜା ।
ନାରାୟଣ ବୋଇଲେ ହୋ ଶୁଣ ମଘବାନ
ରାଜସୂୟ ଯାଗ କରିବେ ଧର୍ମଙ୍କ ନନ୍ଦନ ।
ତାହାଙ୍କ ପାଇଁ ତୋହର ଅମର ଭୁବନକୁ
ବ୍ୟଞ୍ଜନ ଯୋଗାଡ଼ ଦେବୁ ନନ୍ଦନ କାନନକୁ ।
ଆମ୍ବ ପଣସ କଦଳୀ ଆଉ ନଡ଼ିକାଳ
ଜମ୍ବିର ନାରଙ୍ଗ ଆଦି ଫଳ କନ୍ଦମୂଳ ।
ତୋଟାଳିଆଙ୍କୁ କହିବୁ ଗୁହି ଯେ ତିଆର
ଅଜୁଁ ଏ ପଦାର୍ଥ କେହି ନ କରିବେ ଜାରି ।
ଆକାଶ ଗଙ୍ଗା ପଥରେ ଲାଗିଥିବ ନାବ
ନାବରେ ପୁରାଇ ଦେଉଥିବୁ ତୁ ବାସବ ।
ସେ ଗଙ୍ଗାଧାର ଅଛଇ ଇନ୍ଦ୍ରପ୍ରସ୍ଥେ ଲାଗି
ମେଲିଦେଲେ ସେହି ନାବ ଲାଗିବ ଯେ ବେଗି
ତୋ ବନର ଫୁଲ ଫଳ ଦେଲେ ମଘବାନ
ତେବେ ସେ ଅଷ୍ଟ ବ ବସୁ ଆସିବେ ଯେ ସେନ୍ୟ

ତୋହର ସମ୍ବନ୍ଧ ଜାଣ ଅଟନ୍ତି ପାଣ୍ଡବେ
ଏଥିରେ ତୋ ବହୁ ଧର୍ମ ହୋଇଲାକ ଏବେ ।
ଇନ୍ଦ୍ର ବୋଇଲେ ହେ ହରି ତୋହର ଯେ ଆଜ୍ଞା
କେହୁ କଟିପାରେ କି ସେ ଆଜ୍ଞାକୁ ଅବଜ୍ଞା ।
ବିଦ୍ୟାଧର କିନ୍ନର ମୋର ଚଉବନ କୋଟି
ସମସ୍ତ ସେନ ରାଜସୂୟ ଯଜ୍ଞେ ଥିବ ଖଟି ।
ଇନ୍ଦ୍ରକୁ ଆଜ୍ଞା ଦେଇଣ ଚଳେ ବାସୁଦେବ
ପୁଷ୍ପକେ ଚଢ଼ି ପଶ୍ଚାତେ ଗୋଡ଼ାନ୍ତି ବାସବ ।
ଇନ୍ଦ୍ର ଗୋବିନ୍ଦ ଚଳନ୍ତି ଅତି ହୃଷ୍ଟମନେ
ପ୍ରବେଶ ହୋଇଲେ ଯାଇ ନନ୍ଦନ କାନନେ ।
ଦେଖିଲେ ତୋଷା ମେରୁର ନିକଟରେ ଅଛି
ଅତି ଉଚ୍ଚ ସୁବର୍ଣ୍ଣର ପାଚେରି ବେଢିଛି ।
ତିନିଚାଳ ଓସାର ଯେ ବନଟି ସୁସଞ୍ଚ
ବୃକ୍ଷଙ୍କରେ ହୋଇଅଛି ଅତି ସଞ୍ଚସଞ୍ଚ ।
ଲାଗିଅଛି ବୃକ୍ଷଙ୍କର ଶାଖା ଗଗନକୁ
ଫଳଭରେ ବୃକ୍ଷ ମଥା ନୋଇଁଛି ତଳକୁ ।
ପାଚିକରି ଦିବ୍ୟଫଳ ପଡୁଅଛି ଭୂମି
ଦେଖିଣ ସାନନ୍ଦ ଇନ୍ଦ୍ର ଗୋବିନ୍ଦ ଏ ଦେନି ।
ଇନ୍ଦ୍ର ସ୍ତବନ୍ତି ନନ୍ଦନ କାନନକୁ ଦେଖି
ଯୁଧିଷ୍ଠି ଯାଗକୁ ଏହା ସଞ୍ଚିଥିଲୁ ରଖି ।
ଜୟ ଜୟ ଭଗବାନ ତୋହର ଭିଆଣ
ତ୍ରିକାଳଜ୍ଞାତା ତୋପରି ନାହିଁ ଅନ୍ୟଜଣ ।
ତୁହି ସଚରାଚରକୁ ପାଳୁ ବାସୁଦେବ
ଏହା ସବୁ ସଞ୍ଚିଥିଲୁ ଯାଗକୁ କେଶବ ।
ଏମନ୍ତ ପରି ମନମଧ୍ୟେ ପାଞ୍ଚ ଶଚୀପତି
ଜାଣିପାରି ବଇହାସେ ହସିଲେ ଶ୍ରୀପତି ।
ଆପଣେ ଶ୍ରୀହରି ହସ୍ତେ ରତ୍ନମାଳା ଧରି
ଲମ୍ବାଇଲେ ତୋଷାଳିଙ୍କ ଗଳେ ଯତ୍ନକରି ।
ଏ ବନର ସର୍ବଫଳ ତୁମ୍ଭେ କର ରକ୍ଷା
ରାଜସୂୟ ଯଜ୍ଞ ସରିଲେ ପୁରାଇବା ବାଞ୍ଛା ।
ନାରାୟଣ ବଚନରେ ସକଳ ଗନ୍ଧର୍ବେ
ଯେ ଆଜ୍ଞା କହି ବନ୍ଦିଲେ ତହିଁ ବାସୁଦେବେ ।
ଇନ୍ଦ୍ର ଗୋବିନ୍ଦ ତୁମ୍ଭେ ଯେ ତ୍ରିଲୋକାଧିପତି
ଆମ୍ଭେମାନେ ସଦା ଅଟୁ ତୁମ୍ଭ ଆଜ୍ଞାବର୍ତ୍ତୀ ।
ଯେତେକ ଫଳ ଲାଗଇ ରାଜସୂ ଯାଗକୁ
ନାବମାନ ପଠାଇବ ନନ୍ଦନବନକୁ ।
ନାରାୟଣ ବୋଇଲେ ଯେ ମାତପତ୍ ଭାବେ
ଫଳନେବ ଦ୍ୱାରାବତୀ କୈବର୍ତ୍ତ ବାହନେ ।
ନଗାଧାର ଆଜ୍ଞା ତାକୁ ଦେଇ ଜନାର୍ଦ୍ଦନ
ବଜେକବେ ବୈନତେୟ ପିଠିରେ ବହନ ।
ଇନ୍ଦ୍ରକୁ ରହିଁ କହନ୍ତି ପ୍ରଭୁ ଦେବରାଜ
କେବାଙ୍ଗ ବସ୍ତ ତ ତେବେ ଯେତେ ଲଗେକାର୍ଯ୍ୟ
ସ୍ୱଲଭ ଯୋଗାଉମାନ ଅଛି ଯେତେ ସ୍ୱର୍ଗେ
ସେ ସକଳ ଦେବୁ ନେଇ ରାଜସୂୟ ଯାଗେ ।
ଇନ୍ଦ୍ରେ ନିମନ୍ତ୍ରଣ ଦେଇ ବିଜୟ ଅଚ୍ୟୁତ
ନିଷାଦ ରାଜ୍ୟରେ ଯାଇ ହେଲେ ଉପସ୍ଥିତ ।
କୈବର୍ତ୍ତ ନୃପତି ଦେଖି କଲା ବହୁ ପୂଜା
କି ଅର୍ଥେ ବିଜୟ କଲ ପ୍ରଭୁ ଦେବ ରାଜା ।
ବୋଲନ୍ତି ଅଚ୍ୟୁତ ଶୁଣ ହେ ରାଜନ ଶ୍ରେଷ୍ଠ
ରାଜସୂ ଯଜ୍ଞ ଆସିଣ ହୋଇଲା ନିକଟ
ନାବମାନ କି ସଞ୍ଚିତ କଲ୍ କଇବର୍ତ୍ତ
ନନ୍ଦନବନ ଆମ୍ଭଙ୍କ ଦେଲେ ପୁରୁହୂତ ।
ନିଷାଦ ବୋଲଇ ତୁମ୍ଭେ ଶୁଣ ବନମାଳି
ପଞ୍ଚତରିଶ ମର୍ତ୍ତ୍ୟ ନାବ ଅଛି ଖୋଲି ।
ଆହୁରି ଯେତେକ ନାବ କରାଛି ନିର୍ମାଣ
ରାଜସି ଯଜ୍ଞ ସରିବୁ ଯେତେ ଅଣେ ଜାଣ ।
ଦ୍ୱାରକେ ବାହୁଥିବ ନନ୍ଦନବନକୁ
ଧାତକାରେ ଲାଗୁଥିବ ଇନ୍ଦ୍ରପ୍ରସ୍ଥକୁ ।
ଏହା ଶୁଣିଣ ନିଷାଦ ବନ ନୃପମଣି
ଅନେକ ପୂଜାବିଧି ସେ ଦେବ ଚକ୍ରପାଣି ।
ତା'ପ ତୋଡର ବାହୁଟି ଆଉ ରତ୍ନମାଳା
ଶ୍ରୀହସ୍ତରେ ଶାଢ଼ୀ ଦେଲେ ଦେବକୀର ବଳା ।
ନିଷାଦକୁ ଆଜ୍ଞାଦେଇ ଦେବ ହୃଷିକେଶ
ସେକ୍ଷଣି ବାରୁଣାବନ୍ତେ ହୋଇଲେ ପ୍ରବେଶ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ପ୍ରାଣୀଙ୍କର ତୁମ୍ଭେ ଅଟ ମୁକ୍ତିପଦ ଦାତା ।
ତୁମ୍ଭ ନାମ ଯେହୁ ବ ରେ କରଇ ଧ୍ୟାନ
ଲକ୍ଷ ଲକ୍ଷ ପାପ ତାର ହୁଅଇ ଦହନ ।
ତୁଳାରାଶିରେ ଅନଳ କଣିକା ପଶନ୍ତେ
ତୁମ୍ଭନାମ ଅନଳରେ ସବୁ ଦାହ ହୁଏ ।
ଏହାଜାଣି ଜଞ୍ଜାଳରେ ହେଉଅଛି ଧନ୍ଦ
ଧରି ନ ପାରଇ ନାମ ଆହେ ଦୟାନିଧି ।

ଏ ତଞ୍ଜାକୁ କେଉଁମତେ ପାଇବି ମୁଁ ତ୍ରାଣ
ଏଥିରୁ ଉଦ୍ଧର ତୁମ୍ଭେ ହରି ନାରାୟଣ ।
ତୁମ୍ଭ ରୂପ ଦେଖି ସଦା ପାଦ ପୂଜୁଥିବି
ନାମାବଳୀ ଗାଇ ସଦା ପ୍ରେମ ଦେଉଥିବି ।
ସତତ ଅଟଇ ମୋର ଏହି ଅଭିଳାଷ
ପୂର୍ଣ୍ଣକର ଜଣାଉଛି ଏ ଶାରଳା ଦାସ ।

---

## ରାଜାମାନଙ୍କ ନିମନ୍ତ୍ରଣାର୍ଥେ ଭୀମ ଅର୍ଜ୍ଜୁନ, ନକୁଳ, ସହଦେବ ଚାରିଭାଇଙ୍କୁ ଚାରିଦିଗେ ଯିବାକୁ ଶ୍ରୀକୃଷ୍ଣଙ୍କର ଆଦେଶ

ଅଟଗ୍ରିଙ୍କି ପୂଚ୍ଛାକଲେ ମନୁ ନୃପବର
ଏ ଯଜ୍ଞରୁ ଶେଷ ହେଲା କରନ୍ତୁ ବଖାଣ ।
ମୁନି କହନ୍ତେ ରାଜନ କର ହେ ଶ୍ରବଣ
ଦାରୁଣାବନେ ପ୍ରବେଶ ହୋଇ ଭଗବାନ ।
ତହୁଁ ବିଜୟ କଲେ ଦେବ ଶ୍ରୀପତି
ହସ୍ତିନାପୁରେ ପ୍ରବେଶ ହେଲେ ତକ୍ଷଣାନ୍ତ ।
ବସିଅଛନ୍ତି ଆସ୍ଥାନେ ତେଜେ କୁରୁପତି
ଭୀଷ୍ମ ଦ୍ରୋଣ ଶଲ୍ୟ ଆଉ କୃପ ମହାରଥୀ ।
ଯୁଧିଷ୍ଠିର ଭୀମାର୍ଜ୍ଜୁନ ମାଦ୍ରୀ ଦୁଇସୁତ
ଆବର ଆସ୍ଥାନେ ଛନ୍ତି ତପସ୍ୱୀ ବହୁତ ।
ଧର୍ମଙ୍କୁ ଦେଖି ବାହୁଡ଼ି ତେଜି ଦେବରାଜା
ଯାଇ ତାହାଙ୍କ ଚରଣେ କଲେ ଦିବ୍ୟପୂଜା ।
ଆସ୍ଥାନେ ବିଜୟ କରି ଦେବ ଦଇତ୍ୟାରି
କୁଶଳବାର୍ତ୍ତା ପୁଚ୍ଛିଲେ ସମସ୍ତ ଙ୍କର ।
ଯୁଧିଷ୍ଠିରେ ଦେବ ବୋଇଲେ ଶୁଣ ହେ ଶ୍ରୀବତ୍ସ
ପିତା ବ୍ରହ୍ମହତ୍ୟା କରି ଗଲେ ବ୍ରହ୍ମାସୁତ ।
ତହିଁକ ରାଜସୂୟ ଯାଗ କରିବା ନିମନ୍ତେ
ଜରାସନ୍ଧ ବଧ କଲ ତୁମ୍ଭେ କେଉଁ ଅର୍ଥେ ।
ଆଜଯାଏ ତାର କିଛି ନ କଲି ଭିଆଣ
ଏବେ ମୁଁ ଯାହା କହଇ ମନଦେଇ ଶୁଣ ।
ସ୍ୱର୍ଗଲୋକେ ଥାଇବେ ପିତାଙ୍କର ଅର୍ଥେ
ନୋହିଲେ ଭଇଙ୍କି ହେବ ସିଦ୍ଧ ସର୍ବାର୍ଥ ।
କୃଷ୍ଣ ବୋଇଲେ ରାଜସୂୟ ଯଜ୍ଞ ତୁମ୍ଭେ କର
କିପାଇଁ ବ୍ୟର୍ଥ କରିବ ଆହେ ଯୁଧିଷ୍ଠିର ।

ଯୁଧିଷ୍ଠି ବୋଇଲେ ଘରେ ବସନ୍ତି ଶ୍ରୀବତ୍ସ
ମହାଯାଗକୁ ଲାଗୁଛି ଦ୍ରବ୍ୟ ନାହିଁ ସଞ୍ଚ ।
କୃଷ୍ଣ ବୋଇଲେ ତହିଁର ଚିନ୍ତା ଯେ ନ କର
ମୁହିଁ ସକଳ ଆଣିବି ତହିଁର ସମ୍ଭାର ।
ଯାହାର ଆଜ୍ଞାରେ ଦେବ ଚରାଚର ବର୍ତ୍ତି
ତାଙ୍କ କୃପାରୁ ଏ ଯଜ୍ଞ ହେବ ସମାପତି ।
ଚାରିଦିଗକୁ ହେ ଦେବ ଦୂତ ପଠାଇ
ରାଜାମାନଙ୍କୁ ନିମନ୍ତ୍ରି ଆଣନ୍ତୁ ଗୋସାଇଁ ।
ଚାରିଦିଗକୁ ଯେ ଦେବ ବରଗିଲା ଦୂତ
ଧର୍ମିକ ସ୍ୱଜନଙ୍କ କର ମନୋମତ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଚକ୍ରଧାରୀ
ବହୁର କରଣ ତୁମ୍ଭେ ଯେଷ ଜଣ ସ୍ୱର ।
ଶ୍ରୀକୃଷ୍ଣ ବୋଇଲେ ଦେବ ତୁମ୍ଭର ସୋଦରେ
ଗଲେ ସାଧିହେବେ ଜାଣ ବଳିଷ୍ଠ ନୃପରେ ।
ପଶ୍ଚିମ ଦିଗକୁ ଦେବ ଭୀମସେନ ଯାନ୍ତୁ
ଅରଜୁନ ଉତ୍ତରକୁ ଗମନ କରନ୍ତୁ ।
ଦକ୍ଷିଣେ ନକୁଳ ପୂର୍ବଦିଗେ ସହଦେବ
ଏ ଚାରିହେଁ ଗଲେ ଚାରିଦିଗ ସାଧିହେବ ।
ଯୁଧିଷ୍ଠି ବୋଇଲେ ବାପୁ ବଚନ ଅଚ୍ୟୁତ
ମୋହର ଚିତ୍ତକୁ ଏହା ନ ଆସେ ଏମନ୍ତ ।
ଭୀମାର୍ଜ୍ଜୁନ ଯାନ୍ତୁ କରି ହଉ ନିମନ୍ତ୍ରଣ
ନକୁଳ ଯେ ସହଦେବ ଅଟନ୍ତି ଏ ସାନ ।
ତାଙ୍କଦ୍ୱାରା ରାଜାମାନେ ସାଧ୍ୟ ନ ହୋଇବେ
ଦୁଷ୍ଟ ରାଜାଙ୍କୁ ସଂଗ୍ରାମେ ଜିଣି ନ ପାରିବେ ।
ହେ ହରି ଯେ କାଳେ ମାଦ୍ରୀ ପ୍ରାଣ ବିସର୍ଜିଲେ
ବାଳକ ପୁତ୍ର ଦୁହିଁଙ୍କି ମୋତେ ସମର୍ପିଲେ ।
ତାହାଙ୍କୁ ଦୂରପଣେ ମୁଁ ପେଷିବି କେମନ୍ତେ
ସୁକୁମାର ଅଟନ୍ତି ଯେ ପିଲ ବେନିଭ୍ରାତେ ।
ଯେ ରାଜସୂୟଯାଗ ସିଦ୍ଧ ନୋହୁ ପଛେ ମୋର
ତାଙ୍କୁ ପଠାଇ ନ ପାରେ ଆହେ ଚକ୍ରଧର ।
ଜଗନ୍ନାଥ ବୋଇଲେ ଯେ ସାଧୁ ତୋର ଧର୍ମ
କେଉଁ ଯୋଗେ ଗର୍ଭଧାରୀ ଜନ୍ମିଲ ଜନମ ।
ଏପରି ବହୁ ପ୍ରଶଂସା କରି ଦେବ ହରି
ବୋଇଲେ ନିଜ ଭାଇଙ୍କ ଅପେକ୍ଷା ନ କରି ।
ସାବତ ଭାଇଠାରେ ତୋ ସୋଦରମା ଗୁଣ
ଅନାଥବନ୍ଧୁ ତୁ ସଦା ଧର୍ମେ ଥାଏ ମନ ।

ପୁନରପି ହରି ତାକୁ କହିଲେ ବଚନ
ସାବଧାନେ ଶୁଣ ତୁମ୍ଭେ ଯୁଧିଷ୍ଠିର ରାଜନ ।
ପଶ୍ଚିମ ଦିଗେ ଅଛନ୍ତି ଦୁଷ୍ଟ ରାଜାମାନେ
ତାହାଙ୍କୁ ସାଧ କରିବେ ବୀର ଭୀମସେନେ ।
ଉତ୍ତରେ ବସନ୍ତି ମହା ପ୍ରତାପୀ ରାଜନ
ଅର୍ଜ୍ଜୁନକୁ ବୋଲ ସେହୁ କରୁ ନିମନ୍ତ୍ରଣ ।
ପୂର୍ବ ଦିଗରେ ଅଛନ୍ତି ଯେତେକ ନୃପତି
ଧାର୍ମିକ ସବେବ ରାଜା ଦୁର୍ବାର ନୁହନ୍ତି ।
ସହଦେବର ବଚନେ ସର୍ବେ ହେବେ ସାଧ୍ୟ
ଦୁଷ୍ଟ ଯେ ହେବ ତାହାର ଶିର ଦେବ ଛେଦି
ଦକ୍ଷିଣେ ବସନ୍ତି ଦେଖ ଯେତେକ ନୃପତି
ଦେବତା ବ୍ରାହ୍ମଣେ ଭକ୍ତ ଦୁଷ୍ଟ ସେ ନୁହନ୍ତି ।
ଯେ ଅବା ସାଧ ନୋହିବେ ନକୁଳ ବୀରକୁ
ଅବଶ୍ୟ ପ୍ରାଣେ ବିନାଶ କରିବ ତାହାକୁ ।
ଆଗଣେ ଶ୍ରୀହରି ଶାଢ଼ୀ ଦେଲେ ଯେ ଭୀମକୁ
ତୁମ୍ଭେ ରାଜା ନିମନ୍ତ୍ରଣେ ଯାଅ ପଶ୍ଚିମକୁ ।
ପଞ୍ଚଶ ସହସ୍ର ରାଜା ପଶ୍ଚିମର ଦିଗେ
ଜିନା ଯୁଦ୍ଧେ ନୁହନ୍ତି ସେ ସାଧ କେଉଁବାଗେ
ଯେବଣ ରାଜା ଭୂମିରେ ହୋଇବେ ଅସାଧ୍ୟ
ତାର ସୈନ୍ୟ ନାଶି ତାକୁ ଆଣିବ ଯେ ବାନ୍ଧି
ବହୁତ ଦୋଷେ ନାଶ ନ କରିବ ନୃପତି
ଏହିପର ବୁଦ୍ଧି ଊଣା ଲକ୍ଷେକ ଯୁକତି ।
ଯେତେ ରାଜାଙ୍କୁ ମାରିବ ଜିଣି ସମର
ଥାଟ ସୈନ୍ୟ ଆଦି ହେବ ତେତିକ ସ୍ୱର୍ଣ୍ଣର ।
ଦୁଭାର ଦୁଷ୍ଟ ପ୍ରକୃତି ତୋର ଅଟେ ଭୀମ
ତେଣୁ ରାଜାଙ୍କର ଦୋଷ କରିବୁ ମୋଚନ ।
ଆଶ୍ୱିନ ଶୁକ୍ଳପକ୍ଷ ଦଶମୀର ଦିନ
ଶ୍ରବଣା ନକ୍ଷତ୍ର ଚନ୍ଦ୍ରବାର ବର୍ତ୍ତମାନ ।
ଧୃତି ନାମରେ ଯୋଗ ଯେ ତୈତିଳ କରଣ
ତାର ଚନ୍ଦ୍ର ସର୍ବ ଶୁଭ ଅମୃତ ଘଟନ ।
ଏକାଦଶେ ଶନି ଦ୍ୱିତୀୟରେ ବୃହସ୍ପତି
ରୋହିଣୀ ବୃଷ ରାଶିକ ଶୁଭଯୋଗ ପ୍ରୀତି ।
ଦିଗ ଅନୁକୂଳ ଅଟେ ମାହେନ୍ଦ୍ରର ଲଗ୍ନେ
ଉତ୍ତରରେ ମାହେଶ୍ୱରୀ ମକର ବାହନେ ।
ମାହେନ୍ଦ୍ର ବେଳକୁ ଜାଣି କଲେ ଅନୁକୂଳ
ପଶ୍ଚିମଦିଗେ ମାରୁତି ସର୍ବ ଯେ ମଙ୍ଗଳ ।

ଭଲ ବେଳ ଜାଣି ଯାତ୍ରାକଲେ ଦେବ ଭୀମେ
ଇନ୍ଦ୍ରପ୍ରସ୍ଥ ଅନୁକୂଳ କରିଲେ ପଶ୍ଚିମେ ।
ଜୟ ଶଙ୍ଖଧ୍ୱନି ଆଉ ବିପ୍ରେ ବେଦଧ୍ୱନି
ଗୃହସ୍ଥେ ଯେ ମଙ୍ଗଳଅକ୍ଷତ ବଖାଣି ।
ସହସ୍ରେକ ରଥ ଆଉ ରଣସସ୍ତ ରଥୀ
ଅଯୁତ ଅଶ୍ୱ ଦଶସହସ୍ରୀ ପଦାତି ।
ଐରାବତ ବୀର ବାହାରୀ ଐରାବତେ ଡାକିଣି
ଅଷ୍ଟଲକ୍ଷେ ନିର୍ମିତ ଯେ ଗଜଦନ୍ତ ମଣ୍ଡି ।
ଗାଣ୍ଟଛନ୍ଦରେ ଆଲମ୍ବ ତେଜା ଝାଲି ଲତା
ଈଶାନକୋଣେ ଯାଇ ଚଳେ ସୈନ୍ୟ ଅଗଣନ୍ତା
ଯମୁନାନଦୀକି ପାରି ହେଲେ ମୂଢ଼ଧାନେ
ଘୋଡ଼ାଇ ବୃଷାନ୍ତ ହରି ଗରୁଡ଼ ବାହନେ ।
ହେ ଭୀମ ରାଜ୍ୟେ ନ ପଶ ପେଷିବୁ ଯେ ଚର
ଦୂତ ବରଗି ସହିତ ଦେବୁ ତୁ ଖବର ।
ଜରାସନ୍ଧ ବଧ କଲୁ ତୁ ପଶ୍ଚିମ ଦିଗେ
ତୋତେ ସର୍ବରାଜା ସାଧ ହେବେ ଅତିବେଗେ
ଆହ୍ଲାଦରେ ପକାନ୍ତା ସେ କଲୁ ତୁ ରକ୍ଷଣ
ପଞ୍ଚଶ ସହସ୍ର ରାଜା ସାଧ କରିଆଣ ।
ମକର ଶୁକ୍ଳ ପକ୍ଷ ଅର୍କବାର ତିଥି
ସେ ଦିନ ରାଜସୂୟର ପ୍ରଥମ ଆହୁତି ।
ରାଜାନ୍ତ ଯେନି ଆସିବୁ ତୁ ନଉ ଦିବସେ
ନୋହିଲେ ତହେ ଛେଦିବ ଯୁଧିଷ୍ଠି ଆଦେଶେ
ରାଜାମାନଙ୍କର ଥିବ ଯେତେକ ସଇନ୍ୟ
ସମ୍ମୁଖେ ଆସିବେ ଦେଖା ଦରଶନ ସେନ ।
ଯଦ୍ୟପି ରାଜା ଏ ହେବେ ଦୋଷକାରୀ ତୋତେ
ତାଙ୍କ ଦୋଷ ନ ଧରିବୁ କାର୍ଯ୍ୟର ନିମନ୍ତେ ।
ଅନେକ ଦୋଷ ଯଦ୍ୟପି କରିବେ ନୃପତି
ତାହା ସହିକରି ବାବୁ ଆଣିବୁ ନିମନ୍ତି ।
ଏହା କହି ଭୀମେ ମେଲାଣି କରିଲେ ଶ୍ରୀହରି
ଧାତିକାରେ ଅର୍ଜ୍ଜୁନକୁ ପାଶକୁ ହକାରି ।
ଉତ୍ତର ଦିଗକୁ ତୁମ୍ଭେ ଯାଅ ସଜ ହୋଇ
ରାଜାମାନଙ୍କୁ ନିମନ୍ତ୍ରି ଆଣ ବେଗେ ଯାଇ ।
ଅଇରାବତ ରଥୀ ଦୁଇ ଅଇରାବତ ହସ୍ତୀ
ପାଞ୍ଚ ଅଇରାବତ ଅଶ୍ୱ ଦ୍ୱିକୋଟି ପଦାତି ।
ଲକ୍ଷେକ ଯେ ପାଟଛତ୍ର ଆଲମ୍ବ ଦ୍ୱିଲକ୍ଷ
ଉଦଣ୍ଡ ବହେ ମୟୂରଝାଲି ବେନିଲକ୍ଷ ।

ସାତକୁଡ଼ି ବେଣଲକ୍ଷ ସୈନ୍ୟ ତାହାନ୍ତି
ଅଷ୍ଟରତ୍ନ ଆଭରଣେ ଅଶ୍ୱ ଗଜ ମଣ୍ଡି ।
ବର୍ଦ୍ଧିବାମନ ସୁମନ୍ତ ବୋଲେ ଧନଞ୍ଜୟ
ସର୍ବମଙ୍ଗଳା ମାତଙ୍ଗୀ ତାଙ୍କୁ କର ଲୟେ ।
ନଉଦ୍ଧବସକୁ କଣ୍ଠ ଅଟେ ସକ୍ରୁଙ୍କର
ସଙ୍ଗ ହେବ ମାଘ ଶୁକ୍ଳ ଆଦ୍ୟରୀ ବାସର ।
ସେ ଦିନ ତାହାଙ୍କୁ ଅଣି କରାଅ ଦର୍ଶନ
କ୍ଷତ୍ରିୟ ଜଣନ୍ତା କୃଷ୍ଣ ପାଣ୍ଡବ ଅର୍ଜ୍ଜୁନ ।
ଉତ୍ତର କୋଶଳେ ଅଛି ଏକ ବଡ଼ ଦୁଷ୍ଟ
ସେ ରାଜାର ନାମ ଶୁଣ ଅଟେ ଜମାଗୁଷ୍ଟ ।
ସେ ରଜା ପ୍ରାଗଦେଶରେ ଅଟେ ଅଧିବାସୀ
ତର୍ପଣେ ତୋଷିଲ୍ଲ ସେହି ଗଗନଉବାସୀ ।
ଲେଖିଣ ଯୋଜନ ସେହି ଯାତ ନାମ ଧର
ତେଜ ଖଣ୍ଡ ହୋଇ ଚୁଟେ କହିଲର ଘର ।
ସମାଧାନ ଭଣବାକୁ ବୋଲନ୍ତୁ ବଚନ
ତାହାକୁ ଜିଣିଲେ ସାଧ ହେବେ ରାଜାଗଣ ।
କ୍ଷତ୍ରିୟ ପଣରେ କୃଷ୍ଣ ଅଟ୍ଟ ଜଟଜ୍ଜି ତା
ସ୍ନିଗ୍ଧ ବୋଲେ ଅର୍ଜ୍ଜୁନରେ କେତେ ଉଆରନ୍ତା
କାର୍ତ୍ତିକ କୃଷ୍ଣପକ୍ଷ ବୁଧବାର ଚଉଠି
ରୋହଣୀ ନକ୍ଷତ୍ରେ ଅନୁକୂଳ ଯେ କଷାଟୀ ।
ଧନୁର୍ଦ୍ଧର ସ୍ମରି ହୋ ଭଇ ଅନୁକୂଳ
ଚଳ ଅର୍ଜ୍ଜୁନ ତୁ ଏବେ ମାହେନ୍ଦ୍ରର ବେଳ ।
ନାରାୟଣଙ୍କ ଆଜ୍ଞାରେ ସୁଭଲଗ୍ନ ଘେନ
ସୈନ୍ୟସହ ବାହାରିଲେ ଗାଣ୍ଡୀ ଫାଲଗୁନ ।
ସହସ୍ରେକ ଗାଉଁଚୂର ଟମକ ଯେ ବାଜେ
ଉତ୍ତରଦିଗକୁ ପାର୍ଥ ଚଳେ ଦଗ ଦଳେ ।
ନନ୍ଦଘୋଷ ରଥକୁ ଯେ ଜଗନ୍ନାଥ ସାଜ
ବାଛି ବାଛି ଯୋଚିଲେ ସେ ଆଣି ଶ୍ୱେତ ବାଜୀ
ଅଶ୍ୱଙ୍କର ଟାପୁ ଶବ୍ଦେ କମ୍ପେ ସୁରଇନ୍ଦ୍ର
ଆକାଶେ ଥାଇ ଦେଖିଲେ ବୃନ୍ଦାରକ ବୃନ୍ଦ ।
ମାତଳିକ ଖାଇ ଆଜ୍ଞା ଦେଲେ ସହସ୍ରାକ୍ଷ
ବସନ୍ତ ସାରଥି ଅଟେ ତୋହର ସେ ବସ୍ତ ।
ତାହାକୁ ସରଣ ବୋଲି ଯାଉ ବେଗେ ସେହି
ଅର୍ଜ୍ଜୁନର ରଥ ବାହୁ ସେ ସାରଥି ହୋଇ ।
ପିତୃଠାରୁ ଆଜ୍ଞା ପାଇ ମାତଳି ସନ୍ତତି
ବେଗେ ମର୍ତ୍ତ୍ୟକୁ ଆଇଲ୍ଲା ବସନ୍ତ ସାରଥି ।

ମଣ୍ଡଭୁବନେ ପ୍ରୟାଗ ବେଣୀ ବଟତଳ
ଅର୍ଜ୍ଜୁନଙ୍କୁ ଭେଟିଲା ମାତଳିର ବାଳ ।
ଦେଖି[?]ଣ ଧନଞ୍ଜୟ ବସନ୍ତ ସାରଥି
ଅଶ୍ୱ ବାଗ ତାର ହାତେ ଦେଲେକ ଝଟତ ।
ବାସୁ ତଳା ତୁରଙ୍ଗମ ପବନ ସମାନ
ନଉଦ୍ଧନେ ନମସ୍କରି ସକଳ ରାଜନ ।
ଯୁଧିଷ୍ଠି ପାଶେ ମିଳିଲେ ନନ୍ଦବାଳ ଯାଇ
ନକୁଳକୁ ଆଜ୍ଞାଦେଲେ ପାଶେ ହକାରଇ ।
ତୁ ନକୁଳ ଯାଅ ଏବେ ଦକ୍ଷିଣର ଦେଶେ
ଏକଉଣା ସାତସତ୍ର ରାଜା ଆଣ ବେଗେ ।
ରାଜାମାନଙ୍କୁ ଆଣିବୁ ନଉଦ୍ଧନ ମଧ୍ୟେ
ରାଜାଙ୍କ ଗୁଡ ମାରିବୁ ସୈନ୍ୟଙ୍କୁ ଯେ ଯୁଦ୍ଧେ ।
ଦୁର୍ଭାର ହୋଇବ ଯେବେ କେହି ଦଣ୍ଡଧାରୀ
ସୈନ୍ୟ ବଧ ଆଣିବୁ ଯେ ତାଙ୍କୁ ବାନ୍ଧକରି ।
ଯଦ୍ୟପି ବଧ କରିବୁ ତୁ ଯେଉଁ ରାଜାକୁ
ରାଜସିଂହ ହୋଇବ କହିଲ କୃଷ୍ଣଙ୍କୁ ।
ଦକ୍ଷିଣ କୋଶଳେ ଅଛି ଭୂମନ୍ୟୁ ନୃପତି
ଦୁର୍ଯ୍ୟୋଧନ ଶ୍ୱଶୁର ତା ଝିଅ ଭାନୁମତୀ ।
ପ୍ରଥମେ ପ୍ରବେଶ ହେବୁ ତାହାର ଭୁବନେ
ତାକୁ ନମସ୍କରିଲେ ସର୍ବେ ଆସିବେ ଶରଣେ ।
ଅଇରୁତେ ରଥ ପାଞ୍ଚ ଅଇରୁତ ହସ୍ତୀ
ଦଶ ଅଇରୁତ ଅଶ୍ୱ ତେରଲକ୍ଷ ରଥୀ ।
ଲକ୍ଷେକ ପାଟକ୍ଷତ ଯେ ଲକ୍ଷେ ବାଦ୍ୟକାର
ମାହେନ୍ଦ୍ର ବେଳ ନକୁଳ ଦେନିଣ ବାହାର ।
ମାଦ୍ରୀର ନନ୍ଦନ ଏବେ ଚଳ ତୁ ହରଷେ
ପଉଷ ଶୁକ୍ଳ ତ୍ରୟୋଦଶୀର ଦିବସେ ।
ସେ ଦିନ ଆସି ପ୍ରବେଶ ହୋଇବୁ ବହନ
ସଭାସ୍ଥାନେ ଆସିବେଟି ଯେତେକ ରାଜାଗଣ ।
ମୋହର ପ୍ରାକର୍ମ ତୁହି ଜାଣିଛୁ ତ ଭଲେ
ଚହଟାତେ ନାଶିଯିବୁ ସେଦିନ ନଇଲେ ।
ଆପଣେ ଶ୍ରୀଜଗନ୍ନାଥ ରଥ ଦେଲେ ସାଜ
ବାଛି ଯୋଚଦେଲେ ଭଲ ଭଲ ଶ୍ୱେତ ବାଜୀ ।
କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ଯେ କୁଜବାର
ଜ୍ୟେଷ୍ଠା ନକ୍ଷତ୍ରକୁ ବେଳ ଦେଢ଼ ଯେ ପ୍ରହର ।
ବାଳବ ନାମେ କରଣ ଶୋଭନ ଯେ ଯୋଗ
ଶୁଭ ଅନୁକୂଳ ଚଳେ ଦକ୍ଷିଣର ଦିଗ ।

ଅନେକ ବ୍ରାହ୍ମଣ ତହିଁ କଲେ ବେଦଧ୍ୱନି
ହୁଳହୁଳି ଦିଅନ୍ତି ଯେ ସକଳ କାମିନୀ ।
ମାଦ୍ରୀନନ୍ଦନ ଦକ୍ଷିଣେ ଦିଗେ କଲେ ବିଜେ
ବାରୁଣାବନ୍ତ ପର୍ଯ୍ୟନ୍ତ ଗଲେ ଦେବରାଜେ ।
ସୁବଧାନେ ନକୁଳକୁ ସକଳ ଉଆର
ଖଗେଶ୍ୱର ବାହନରେ ବାହୁଡ଼ିଲେ ହରି ।
ସହଦେବକୁ ପାଶରେ ବସାଇ ଅଚ୍ୟୁତ
ପୂର୍ବଦିଗେ ଯାଅ ଶାଢ଼ୀ ଦେଲେ ଜଗନ୍ନାଥ ।
ମନ୍ତ୍ରୀ ଚୂଡ଼ାମଣି ସର୍ବଗୁଣେ ତୁ କୁଶଳ
ମାହେନ୍ଦ୍ର ଯୋଗ ଘେନଣ ସୈନ୍ୟ ସାଜ ଚଳ
ସହସ୍ରେକ ରଥ ଦୁଇସହସ୍ର ମତ୍ତନାଗ
ବାଛି ବାଛି ସଙ୍ଗେ ନିଅ ଲକ୍ଷେକ ତୁରଗ ।
ଡମ୍ଫ ନଗାଣ ଆଦି କହୁଡର ବାଜେ
ଶୁଭଯୋଗେ ସହଦେବ ପୂର୍ବ ଦିଗେ ବିଜେ ।
ଶ୍ରୀହରି ବୋଇଲେ ଶୁଣ ସହଦେବ ମନ୍ତ୍ରି
ଏକଉଣା ତିନିଶତ ପୂର୍ବରେ ନୃପତି ।
ଧାର୍ମିକ ଜ୍ଞାନୀ ପଣ୍ଡିତ ଯେତେ ସର୍ବ ରାଜା
ତୋତେ ଦେଖିଣ କରିବେ ନିଶ୍ଚେ ପାଦପୂଜା
ସକଳ ରାଜା ଆସିବେ ଯେଉଁ ପରକାରେ
ସେମାନଙ୍କୁ ତୁ ଆଣିବୁ ବୁଦ୍ଧି କୌଶଳରେ ।
ଚଳଇ ସେ ସହଦେବ କୃଷ୍ଣଙ୍କ ବଚନେ
ପୂର୍ବଦିଗର ରାଜାଙ୍କୁ କରି ନିମନ୍ତ୍ରଣେ ।
ଚାରିଦିଗକୁ ଯେ ଚାରି ଭାଇଙ୍କୁ ପଠାଇ
ଅନେକ ଆନନ୍ଦ ହେଲେ ଦେବ ଯଦୁସାଇଁ ।
ଯୁଧିଷ୍ଠିର ପାଶେ ମିଳିଲେ ଯାଇ ଜନାର୍ଦ୍ଦନ
ନଅ ଦିବସେ ଆସିବେ ଏଥେ ରାଜାଗଣ ।
ଯୁଧିଷ୍ଠିର ଦେବ ବୋଇଲେ ଶୁଣ ହୋ ଅନନ୍ତ
ରାଜାଙ୍କ ବିଶ୍ରାମ ଘର ହୋଇବ କେମନ୍ତ ।
ଖର ଜାକର କୁହୁଡ଼ି ବରଷା ପାଇଲେ
ପିଡ଼ା ପାଇବ ଯିବ କି ଅପଖ୍ୟାତି ହେଲେ ।
ଯୁଧିଷ୍ଠିର ଦେବଙ୍କୁ ସଙ୍ଗେ ଘେନି ଦେବରାଜେ
ଦୁଇଜଣ ଇନ୍ଦ୍ରପ୍ରସ୍ଥେ କଲେ ଯାଇ ବିଜେ ।
ପରଦେଶ ନାରାୟଣ ଯମୁନାର କୂଳେ
ଗଠନ ଭୁବନମାନ ସର୍ବ ଦେଖାଇଲେ ।
ଗଠନ ବିଜ୍ଞାଣି ଲକ୍ଷ ଲକ୍ଷ ଛନ୍ତି ଲାଗି
ବିକାରହି ଅଟ୍ଟାଳିକା ନିର୍ମାଣନ୍ତି ବେଗି ।

ଢକଳିକ ରଜା ଦାରୁ ଜାବରେ ପୂରାଇ
ପାଷାଣ ସନ୍ଧିରେ ଆଣି ଦିଅନ୍ତି ଯୋଗାଇ ।
ଅଶୀଲକ୍ଷ୍ୟ ଯୋଦ୍ଧା ଘେନି କର୍ମାଧିପତି
ବାରୁଣାବନ୍ତରେ ନେଇ ବନ୍ଧଣ ପକାନ୍ତି ।
ଯାତଲକ୍ଷ ଯେ ପଦର ମେବଛ ବିଜ୍ଞାଣି
ନବରମାନ ଘଟଣ ସମସ୍ତ ନିର୍ମାଣି ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସେ ମାନଗୋବିନ୍ଦ
ଯୁଧିଷ୍ଠିର ଦେବ ଦେଖିଣ ମନରେ ସାନନ୍ଦ ।
କଷ୍ଟ ଶକୁନ ଦେଖିଣ ନ ସ୍ତୁଭଇ କଛି
ଦେବଙ୍କୁ ଦୁର୍ଲ୍ଲଭ ଯାହା ଭିଆଣ ହୋଇଛି ।
ତିରଣ ମେବଛ ସୁପକାଇ ବିଦ୍ୟମାନ
କାରିଗର ମାନଙ୍କୁ ଯେ ଦିଅନ୍ତି ଘେନନ ।
ଗ୍ରୀଷ୍ମ ବଳୁର କରନ୍ତି ଏହାସବୁ ସ୍ମୃତି
ବ୍ୟଞ୍ଜନ ଛନ୍ଦ୍ରୁ ଲି ହରି ସଖ୍ୟାକୁ ଜାଣି ।
ଜୟ ତୁ ପରମେଶ୍ୱର ଅନାଥର ବନ୍ଧୁ
ଜୟ ତୁ ପରମେଶ୍ୱର କରୁଣାର ସିନ୍ଧୁ ।
ଜୟ ତୁ ପରମେଶ୍ୱର ପୃଥ୍ୱୀଜନ କର୍ତ୍ତା
ଜୟ ତୁ ପରମେଶ୍ୱର ସଂସାର ପାଳନ୍ତା ।
ଜୟ ତୁ ପରମେଶ୍ୱର ଭୂତ ସିଦ୍ଧଯୋଗୀ
ଜୟ ତୁ ପରମେଶ୍ୱର ତ୍ରୈଲୋକ୍ୟର ଭୋଗୀ ।
ଜୟ ତୁ ପରମେଶ୍ୱର ଭକ୍ତଙ୍କ ବଶ
ଜୟ ତୁ ପରମେଶ୍ୱର ହେଉ ତାର ଦାସ ।
ଜୟ ତୁ ପରମେଶ୍ୱର ଭୂଷ୍ଣ ନିର୍ମଳ
ଜୟ ତୁ ପରମେଶ୍ୱର ବସୁଦେବ ବାଳ ।
ଜୟ ତୁ ପରମେଶ୍ୱର ଗରବ ବିଧ୍ୱଂସ
ଜୟ ତୁ ପରମେଶ୍ୱର ନାଶୁ କେଶୀ କଂସ ।
ଜୟ ତୁ ପରମେଶ୍ୱର ପରଦୁଃଖେ ଦୁଃଖୀ
ଜୟ ତୁ ପରମେଶ୍ୱର ଆଦିଅନ୍ତ ସାକ୍ଷୀ ।
ଜୟ ତୁ ପରମେଶ୍ୱର ଯୋଗୀଜନ ହୃଦେ
ଜୟ ତୁ ପରମେଶ୍ୱର ବନ୍ଧୁ ତୁ ସାନନ୍ଦେ ।
ଜୟ ତୁ ପରମେଶ୍ୱର ଜଗତର ମୂରତି
ସର୍ବ ଚିନ୍ତାମଣି ନାଥ ସେଉ ଯୋ ଦୁର୍ଗତି ।
ଯାହାକୁ ପ୍ରସନ୍ନ ସ୍ୱାମୀ ନାହିଁ ତାର ଚିନ୍ତା
ପ୍ରଣାକାର ପୁରୁଷ ତୁ ଶକ୍ତି ଗତିଦାତା ।
ଜଣ୍ଟିକେ ପ୍ରସନ୍ନ ସ୍ୱାମୀ ହେଉ ତୁ ଯାହାରେ
ମହାଜନ ହୋଇବ ସେ ସଂସାର ମଧ୍ୟରେ ।

ତୁମ୍ଭ ଦେବ ତ୍ରୈଲୋକ୍ୟପୁର ଚିନ୍ତାମଣି
ଶମନ ଗର୍ବ ଗଞ୍ଜନ ଦେବ ଚକ୍ରପାଣି ।
କେଶୀ କଂସ ନିସୂଦନ ଆହେ ହୃଷୀକେଶ
ରଖିଥାଅ ଭୃତ୍ୟପଣେ ଏ ଶାରଳା ଦାସ ।

---

## ଯଜ୍ଞଶାଳା ଓ ସଭାଗୃହ, ରାଜାସହ ସୈନ୍ୟଗଜ, ଅଶ୍ୱଙ୍କର ଗୃହନିର୍ମାଣ ଓ ରାଜସୂୟ ଯଜ୍ଞର ଆୟୋଜନ

ବଦନ୍ତି ଯେ ମହାମୁନି ଶୁଣ ହେ ରାଜନ
ହରିଙ୍କ ଆଜ୍ଞାରେ ହୁଏ ସର୍ବ କାର୍ଯ୍ୟମାନ ।
ଗଙ୍ଗା ଯମୁନା ଉଭୟ ନଦୀ ମଧ୍ୟସ୍ଥାନ
ମହାକ୍ଷେତ୍ର ବୋଲି ଖ୍ୟାତ ଦ୍ୱାଦଶ ଯୋଜନ ।
ସ୍ୱରକ୍ଷେତ୍ର ବେଢ଼ିଛନ୍ତି ତାର ଚତୁର୍ଦ୍ଦିଗେ
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଜୟନ୍ତାର ଭାଗେ ।
ଇନ୍ଦ୍ରପ୍ରସ୍ଥ ଦ୍ରୁମଲତା ଗିରିପରେ ବସି
ଯୁଧିଷ୍ଠି ଦେବ ସ୍ମରିଲେ ବ୍ୟାସ ମହାଋଷି ।
ଧ୍ୟାନବଳରେ ମହର୍ଷି ଏକଥା ଜାଣିଲେ
ଷାଠିସହସ୍ର ଶିଷ୍ୟ ଘେନି ତହୁଁ ବାହାରିଲେ ।
ଇନ୍ଦ୍ରପ୍ରସ୍ଥରେ ବିଜୟ ପାଣ୍ଡବ କୌରବେ
ଆସ୍ଥାନରେ ଦ୍ରୋଣ କର୍ଣ୍ଣ ଶକୁନି ଗାଙ୍ଗେବେ ।
ପ୍ରବେଶିଲେ ବ୍ରହ୍ମଋଷି ଏହାପରେ ବେଳେ
ଆସ୍ଥାନକୁ ତ୍ୟାଗକରି ଉଠିଲେ ସକଳେ ।
ଶୀଘ୍ରରେ ଋଷିଙ୍କ ସେନ ଧର୍ମ ରାଜା
ବେଦବ୍ୟାସଙ୍କ ଚରଣେ କଲେ ଅର୍ଘ୍ୟ ପୂଜା ।
ସର୍ବକୁଶଳ ପୁଚ୍ଛିଲେ ତାଙ୍କୁ ତପୋନିଷ୍ଠି
ସମସ୍ତ କୁଶଳ ବୋଲି ବୋଇଲେ ଯୁଧିଷ୍ଠି ।
କହିଲେକ ଯୁଧିଷ୍ଠିର ଶୁଣ ବ୍ରହ୍ମଋଷି
ପିତା ହୋଇଛନ୍ତି ମୋର ବ୍ରହ୍ମହତ୍ୟା ଦୋଷୀ
ମୁଁ ବୋଇଲି ଭାଇ ଘେନି ଯିବି ତୀର୍ଥଙ୍କରି
ରାଜସୂୟଯଜ୍ଞକୁ ଆଜ୍ଞା ଦେଲେକ ଶ୍ରୀହରି ।
ରାଜସୂୟ ଯଜ୍ଞଗୋଟି ହୋଇବ କେମନ୍ତ
ଅଦେଖା ଅଶୁଣା ଅଟେ ଶୁଣ ତପୋବନ୍ତ ।
ବ୍ୟାସ ବୋଇଲେ ତୋତେତ ସାହା ଚକ୍ରଧର
ରାଜସୂୟ ଯଜ୍ଞସବୁ କଣ୍ଟିତ ମାତର ।
ବାବୁ ଯେତେବେଳେ ତୁମ୍ଭେ ବଧିଲ ଜରା
ଲକ୍ଷେ ରାଜା ହୋଇଲେଣି ତୁମ୍ଭ ଭୃତ୍ୟପରା ।

ସୁମରିବୁ ଯେତେବେଳେ ଦେବତାମାନଙ୍କୁ
ସେହିକ୍ଷଣି ଆସିବେ ସେ ତୋହର ପାଶକୁ ।
ଖାଣ୍ଡବ ବନକୁ ଦହି ଦେଇଣ ଔଷଧି
ପାର୍ଥ ଖଣ୍ଡିଲା ଅଗ୍ନିର ଲୁଦୁବୁଦୁ ବ୍ୟାଧି ।
ଅଗ୍ନି ଦେବତା ତୋତେ ଯେ ପ୍ରସନ୍ନ ହୋଇଛି
ପୁଷ୍କର ଦେବତା ତୋତେ ସାହାପକ୍ଷ ଅଛି ।
ଆବର ସହା ଅନନ୍ତ ଦେବ ନାରାୟଣ
ରାଜସୂୟଯଜ୍ଞକୁ ବେଗେ କର ଆରୋପଣ ।
ବ୍ୟାସେ ନେଇ ଦେଖାଇଲେ ଯଜ୍ଞଶାଳା ଘର
ତଳ ବୁଣାଇଲେ ତହିଁ ଶୂନ୍ୟେ ଭୂମି ଚର ।
ଯଜ୍ଞକୁ ସଞ୍ଚିତ କଲେ ତାହା ବ୍ରହ୍ମବେଦି
ଯାଗଶାଳ ଆୟତନ କଲେ ନିଷ୍ଠସୂତ ।
ରାଜାଙ୍କ ନଗର ଅଶ୍ୱଶାଳ ଗଜଶାଳ
ଭାଗମାପ କରିଲେ ସେ ନେଇକରି ନଳ ।
ବାଂଶଦଣ୍ଡେ ମାପିଲେ ଯେ ସେହି ନଳକାଠି
ପଞ୍ଚନଳ ଆୟତନ ସେ ବଖରା ଗୋଟି ।
ଦଶାଶଏ ବଖରାକେ ଗୃହେକ ନିର୍ମାଣ
ଜାନୁ ପିଠି ସର୍ବ ହେଲା ପାଷାଣ ଚଟାଣ ।
ଯମୁନା ନଦୀ ଦକ୍ଷିଣ ଭାଗରେ ଯେ କୂଳ
ଏତେ ଆୟତନ ତହିଁ ହେଲା ଯଜ୍ଞଶାଳ ।
ସାତପଦ୍ମ ଦଶାଶଏ ଯୋଜନ ମଣ୍ଡିତ
ଯାଗଶାଳାମାନ ଏତେ ହୋଇଲା ନିର୍ମିତ ।
ଖଞ୍ଜନ ନାମେଣ ମଧୁବନ ବିଶ୍ୱକର୍ମା
ଏହାର ଉପରି ବଂଶେ ଗଢ଼ିଲେ ସୁଧର୍ମା ।
ତାକୁ ରାଇ ଆଜ୍ଞା ଦେଲେ ବ୍ୟାସ ମହାଯତି
କୁରୁଯୁଗେ ତୁମ୍ଭ ବଂଶେ ସଭା ନିର୍ମାଣନ୍ତି ।
ଏ ସ୍ଥାନେ ବଜେ କରିବେ ଜାଣ ଲକ୍ଷେରାଯ୍ୟେ
ସୁଧର୍ମା ସ୍ୱରୂପ ସଭା ନିର୍ମାଣ ଗୋଟିଏ ।
ଖଞ୍ଜନ ବୋଇଲା ଆଜ୍ଞା ଦେଲେ ଚକ୍ରପାଣି
ଅଳକା ପ୍ରାୟେକ ସ୍ଥପ୍ତା ମଣ୍ଡପ ନିର୍ମାଣି ।
ଘରମାନ ଗଠନ ମୁଁ କରିବି ଏ ସ୍ଥାନେ
ହସ୍ତିଅମର ସମାନେ ଦେଖିବେ ତା ଜନେ ।
ଆଜ୍ଞା ପ୍ରମାଣରେ ଯତ୍ନେ ଚଳିଲେ ଖଞ୍ଜନ
କାଷ୍ଠ ପାଷାଣ ଆଦିରେ କରିଲେ ସୃଜନ ।
ଚଉଷଠି କାଠରେ ଯେ ବଖରାଏ ବୋଲି
ବଖରାକେ ବସାଇଲେ ଏକ ଏକ ତଲ୍ଲୀ ।

ଚୂଲ୍ଲୀକରେ ଅଛି ଅଷ୍ଟୋତ୍ତରଶତ ପଖା
ଲକ୍ଷେ ରାଜାଙ୍କର ସୈନ୍ୟ କେ କରିବ ଲେଖା
ଏକବିଂଶ କାଠରେ ଯେ ଅଟଇ କାଠିଏ
ଏକବିଂଶ ଦଣ୍ଡରେ ଯେ ବଖରାଏ ହୋଏ ।
ଏକଘର ଗୋଟିକରେ ବଖରା ଯେ ଶଏ
ଏ ବିଧି ପ୍ରକାରେ ତହିଁ ଘର ତୋଳା ହୋଏ ।
ନପଦ୍ମ ଅଶୀ ସାଗର ହେଲା ଛନ୍ଦଘର
ପୁଣି ଛତିଶ ନିଯୋଗେ ରଚିବେ ତହିଁର ।
ବତିଶଲକ୍ଷ ହୋଇଲା କୁମ୍ଭକର ଶାଳ
ମୃତ୍ତିକା ହାଣ୍ଡି ଗଢ଼ିଣ କରିବେ ଏ ଠୁଳ ।
କଣସ୍ବ ଗିରି ନିକଟୁ ନଦୀ ଏକଗୋଟି
ମେଖଳ ଗଙ୍ଗାରୁ ସେହି ଆସୁଅଛି ଘୋଟି ।
ସେ ନଦୀର କୂଳେ ବିଶାଶତେ ପାନ୍ଥଶାଳ
ବ୍ରାହ୍ମଣମାନଙ୍କୁ ସେହି ବଢ଼ଇ ବୃଷାଳ ।
ସହସ୍ର ଘର ବାରୁଣାବନ୍ତରେ ନିର୍ମାଣି
ଏଥି ଶାଳ କରିବେ ଯେ ତାମ୍ବୁଲ ବିନ୍ଧାଣି ।
ତମ୍ବାର ଯୋଗ ଉମାନ କରିବେ ନିର୍ମିତ
ଏମାନେ ଯେ ଲାଗିଛନ୍ତି ପଞ୍ଚାଶ ମୂର୍ତ୍ତି ।
ପାଞ୍ଚଲକ୍ଷ ଘର ହେଲା ତହିଁ ହିମଶାଳ
ଲୌହକାମ ଗଠନ ଯେ କରିବେ ସକଳ ।
ଅସିପତ୍ର ଧରିବ୍ଭୁ ଯେ ତେରଲକ୍ଷ ଘର
ବୁଲଇ ଶାଣ ଦିଅନ୍ତି ଆସି ତୀକ୍ଷ୍ଣଧାର ।
ଚୌରାଶୀ ସହସ୍ର ଘର ହେଲା ଯେ ତହିଁକି
ସ୍ୱର୍ଣ୍ଣ କାମ ହୁଏ ତହିଁ ଅଷ୍ଟରତ୍ନ ଯୋଖି ।
ତାଡ଼ ଝୁମ୍ପା ସରଳ ଯେ ବାହୁଟି କଙ୍କଣ
ନୂପୁର ମୁକୁଟ ଆଉ ହୃଦର ଭୂଷଣ ।
ବାରବଲ୍ଲି କୁଣ୍ଡଳ ଯେ ତାଡ଼ ବଦ ମୁଦ
ଅଷ୍ଟରତ୍ନ ଖଞ୍ଜା ହୁଏ ଯେଉଁପରି ବିଧି ।
ଥାଳ ତାଟିଆ ଗିଲାସ ଝରି ଆଦିକରି
ପିଢ଼ା ସିଂହାସନ ଖଟ ଆଉ ଆଲମାରି ।
ସୁବର୍ଣ୍ଣ ନଉତିମାନ କରନ୍ତି ନିର୍ମାଣ
ଏହା ଗଢ଼ନ୍ତି କରନ୍ତି ନାନା କୋଟିକାମ ।
ସ୍ୱଳଶ ସାଗର ସୂଚି କର୍ମର ବିନ୍ଧାଣି
ସ୍ୱାଙ୍କପାଇଁ ଘରମାନ ନିର୍ମାଣିଲେ ସ୍ୱାମୀ ।
ଶେଯ ମୁଚୁଳା ହଂସୁଲି ଭୁଜକା ସୁପାତି
ଏହି ଯୋଗାଡ଼ କରିଲେ ସେଠାରେ ଶ୍ରୀପତି ।

ରତ୍ନମାନଙ୍କରେ ସବୁ ଜଡ଼ଉ ବଗଇ ।
ପରଧାନ ପିଢ଼ାମାନ ରଖିଲେ ଖଞ୍ଜାଇ ।
ବ୍ୟାସଙ୍କୁ ଘେନିଣ ତହିଁ ଦେବ ଚକ୍ରପାଣି
ସକଳ ଦେଖାନ୍ତି ନେଇ କରିଣ ଭ୍ରମଣି ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣାକୁ ଘୁଡ଼ି
ବସିଲେ ଯେ ଶାଳମାନ ନଦୀକୂଳେ ମାଡ଼ି ।
ଘଟଣାମାନ କଳନା ନ ଯାଇ ଅଲେଖା
ରାଜାମାନେ ଆସିକରି ଦିଅନ୍ତି ଯେ ଦେଖା ।
କାର୍ତ୍ତିକେ ବୁଣିଲେ ତିଳ ମାଘମାସେ ଫଳେ
ଆପଣେ ବ୍ୟାସେ ତୋଳିଲେ ଥାଇ ଯଜ୍ଞଶାଳେ
ଏ ପାଞ୍ଚ ରାଜ୍ୟରେ ଥିଲା ଯେତେ ଧାନ ସଞ୍ଜା
ତାହା ତଣ୍ଡୁଳ କରିଣ ଯୋଗାଉନ୍ତି ପ୍ରଜା ।
ଦ୍ୱାପରରେ ନରମାଣ ଭୂମି ଏକବାଟୀ
ବାଟିକେ ଦେବ ତଣ୍ଡୁଳ ଏକ ଯେ ପଉଟି
ଏହିପରି ଭିଆଇଲା ସୁମନ୍ତ୍ରୀ ଶକୁନି
ସାଧୁ ମନ୍ତ୍ରୀ କୋଲଜର ଉଟଳିକ ଧ୍ୱନ ।
ଅଶୀସହସ୍ର ମାପୁଣିଆମାନଙ୍କୁ ସେ ଘେନ
ଇନ୍ଦ୍ରପ୍ରସ୍ଥରୁ ତଣ୍ଡୁଳ ଅଣାଇ ଶକୁନ ।
ମାଟିକାମ କରିଣ ଯେ ଦଶସହସ୍ର ଘର
ତଣ୍ଡୁଳମାନ ପୂରାଇ ତହିଁ ନିରନ୍ତର ।
ଯେତେ ଲୋକ ଲାଗିଛନ୍ତି ସେ ବିନ୍ଧାଣକାରୀ
ରନ୍ଧଣା କରିଣ ତାଙ୍କୁ ଦିଅନ୍ତି ତୃପ୍ତି କରି ।
ବାହାର ରୋଷଘରରେ ରନ୍ଧଣା ନିର୍ମାଣି
ପଦ୍ମସ ଗରୁ ମୂର୍ତ୍ତି ଭୁଞ୍ଜନ୍ତି ବିନ୍ଧାଣି ।
ସବୁ ଘରମାନଙ୍କରେ ରତ୍ନର ଖଞ୍ଜଣି
ଦେଖିଣ ସାନନ୍ଦ ହେଲେ ଦେବ ଚକ୍ରପାଣି ।
ଅନେକ ବିନ୍ଧାଣି ମୂଳେ ଖଞ୍ଜନ ମହାତ୍ମା
ଦିବା ରାତେ ଲାଗିଛନ୍ତି ତହିଁ ବିଶ୍ୱକର୍ମା ।
ବନ୍ଧୁ ମହାରଣା ତାର ଭୁଟିଲେ ଛନ୍ତି ଲାଗି
ଆହାର ନିଦ୍ରାରୁ ବର୍ଜ୍ଜି କରୁଛନ୍ତି ବେଗି ।
ଆପେ ବୈବସ୍ୱତମନୁ ଦେଖି କୃଷ୍ଣମାୟା
ଆହାର ନ ରୁଚେ କାର୍ଯ୍ୟେ ପ୍ରଫୁଲ୍ଲିତ କାୟା ।
କାର୍ଯ୍ୟରେ ତତ୍ପର ଛନ୍ତି ସର୍ବ ମହାରଣା
ଏବୁଦ୍ଧି ସୁବର୍ଣ୍ଣ ପାଣିଦ୍ରବ୍ୟର ଘଟଣା ।
ଗଜଅଶ୍ୱଶାଳା ରୋଷଶାଳ ଆଦିକରି
ଅଷ୍ଟରତ୍ନେ ସବୁ କଲେ ସ୍ୱର୍ଣ୍ଣପତ୍ରେ ଭରି ।

ହସ୍ତୀ ଦନ୍ତର ସିଂହଦ୍ୱା ତହିଁ ଝୁଲାଇଲେ
ସ୍ଥୂଳକର୍ମ ନିର୍ମାଣକୁ କୁନ୍ଦୁରାଏ ଥିଲେ ।
ଚୂପାପଥ ତା ଉପରେ କରିଲେ ସ୍ଥାପିଣି
ଭିତ୍ତି ଘରେ ସୁବର୍ଣ୍ଣର କଳଶ ନିର୍ମାଣି ।
ଆଡ଼ମ୍ବରେ ପଞ୍ଚାଶତ ପୁଣ ପର୍ଯ୍ୟନ୍ତ
ଅମରଭୁବନ ସେହେ ପୁର କରସ୍ଥି ।
କନକର ଚୁଅ ଶ୍ରେଣୀ ବତା ଆଦିକରି
ମଧୂଦାନବ ସ୍ଫଟିକେ ସଭା ଅଛି କରି ।
ଆପଣେ ବସି ନିର୍ମାଣ କରାଅନ୍ତି ସ୍ୱାମୀ
ଯଜ୍ଞଶାଳ ହୋଇଲାକ ମଧ୍ୟସ୍ଥାନ ଭୂମି ।
ପୂର୍ବରେ ବଟ ପଶ୍ଚିମଦିଗେ ଅଛି ଯୋମି
ଉତ୍ତରେଣ ଜଡ଼ପଦ ଦକ୍ଷିଣେ ସ୍ଥାପ୍ୟାମି ।
ବିଶାଷଟେ ତାଳ ଉଚ କଲେ ବଦ୍ୟପୁରେ
କୋଣେ ଆସ୍ତରନ ହେଲା ସେ ଯଜ୍ଞଶାଳରେ ।
ହଟି ଜଟି ବଟି ଘଟି ବୃକ୍ଷବୃକ୍ଷ ଶୋଭା
ଯଜ୍ଞପାଇଁ ହୋଇଅଛି ଗୃହକୋଣେ ଉଭା ।
ପଶ୍ଚିମ ସୌରାଷ୍ଟ୍ରେ ଅଛି ନଡ଼ୀର ଶାଳ
ସଭୂରପଦ୍ମ ଘଣ୍ଟା ଯେ ବୁଲେ ସବୁବେଳ ।
କାଞ୍ଚନ ଦେଶର ରାଜା ନାମ ହୃଷୀକେଶୀ
ନାବରେ ପୂରାଇ ଆଣି ଦିଅଇ ଯେ ରାଶି ।
ଛଷଠି ପଦ୍ମ ବୃନ୍ଦଶ ସହସ୍ର ବହୁତ
ଖଚବୃନ୍ଦ ହୁଳା ଜନେ ରାହେ ଧାଡ଼ ଧାଡ଼ ।
ପଞ୍ଚାଶ ଯୋଜନ ଯାଏ ବିଶେ ଆଲୋମୟେ
ମହାରଣ୍ୟ ନିର୍ମାଣନ୍ତି ଦିବସ ପରାଏ ।
ଦିବ ରାହେ ଲାଗିଛନ୍ତି ନାହିଁ ଅବକାଶ
ଖଟନ୍ତି ନିଯୋଗୀ ପରି ନ ଯାନ୍ତି ସେ ବାସ ।
ଅନୁବ୍ରତେ ବିଂଜ କରି ତହିଁ ଯଦୁପତି
ନିଯୋଗୀଙ୍କୁ ଶ୍ରୀହସ୍ତରେ ଶାଢ଼ୀ ଦେଉଛନ୍ତି ।
ବହୁମୂଲ୍ୟ ଆଭରଣ ନାନା ରତ୍ନମାଳା
ଲମ୍ବାଇଲେ ପ୍ରଭୁ ନେଇ ବିଜ୍ଞାଣୀଙ୍କ ଗଳା ।
ନନ୍ଦନ ମଧ୍ୟେ ସର୍ବ ଦେବଟି ନିର୍ମାଣି
ଯେତେ ରତ୍ନ ଲୋଡ଼ା ଆମ୍ଭେ ଦେଉଥିବୁ ଆଣି
ଆଜ୍ଞାଭ୍ରଷ୍ଟ କରିବେକ ଯେଉଁ ଲୋକମାନେ
ତହେଁ ଶିର ଛେଦିବୁଟି ସୁଧିଷ୍ଠି ବଚନେ ।
ଜୀବନକୁ କାରଣ ଏ ରାଜସୂୟ ସଭା
ସକଳ ରାଜନେ ଏଥେ ବହନ କରିବା ।

ଜନ୍ମାନ୍ତରେ ଯେତେ ମହାପୁଣ୍ୟ କରିଥିବ
ସେହି ଏହି ମହାଯଜ୍ଞ କାର୍ଯ୍ୟକୁ କରିବ ।
ଜଣ ଜଣକୁ ସେ ଆଜ୍ଞା ଦିଅନ୍ତି ଶ୍ରୀପତି
ଆପଣେ ଚର୍ଚ୍ଚା କରନ୍ତି ଥାଇ ଦିବାରାତି ।
ଗ୍ରୀଷ୍ମାମଣ୍ଡପରେ ବସି ଭାବନ୍ତି ଅନାଇଁ
ଯଜ୍ଞକୁ ସମ ହେବାକୁ ତିନ ଲୋକେ ନାହିଁ ।
ବୈନତେୟ ଆରୋହଣ ଦେବ ମଧୁହାରୀ
କ୍ଷଣକରେ ପ୍ରବେଶିଲେ ଅମର ନଗରୀ ।
କୃଷ୍ଣଙ୍କୁ ଦେଖି ଦେବେଶ ସାନନ୍ଦ ହୋଇଲେ
ଐରାବତ ଆରୋହଣ ତହିଁ ବିଜେ କଲେ ।
ସୁଧର୍ମା ସଭାରୁ ସେହି ଅତ୍ୟନ୍ତ ସୁସଜ୍ଜ
ନର ହୋଇ କେ ଦେଖିବ ରତ୍ନ କରି ମଞ୍ଜ ।
କ୍ଷୁଧା ତୃଷା ନ ବାଧଇ ଦେଖୁଥିଲେ ବସି
ରାତ୍ର ଦିବସ ଦୁଇରେ ଉଜ୍ଜଳ ସେ ଦିଶି ।
ସଭା ଦେଖି ଦେବରାଜ ସାନନ୍ଦ ହୋଇଲେ
ଜଗନ୍ନାଥଙ୍କୁ ବହୁତ ପରଶଂସା କଲେ ।
ବତ୍ତିଶ ସସ୍ର ବିଜ୍ଞାଣି ବିଶ୍ୱକର୍ମା ମୂଳେ
ଗୃହ ନିର୍ମାଣନ୍ତି ଦୁଇ ନଦୀ ମଧ୍ୟ ସ୍ଥଳେ ।
କରପଦ ଯୋଡ଼ିକରି କହେ ବିଶ୍ୱକର୍ମା
ଏ ସଭାକୁ ପରଶଂସା କରୁଛନ୍ତି ବ୍ରହ୍ମା ।
ନାରାୟଣ ବୋଇଲେ ତୁ ଅପୂର୍ବ ବିଜ୍ଞାଣି
ତୋହ ସମାନ ନ ଥିବ ନୋହିବ ଧରଣୀ ।
ତୋର ଏହି ସଭାଗୃହ ରାଜାମାନେ ଦେଖି
ତୋତେ ପରଶଂସା କରି ହୋଇବେକ ସୁଖୀ
ଏସନକ ତାକୁ କହି ପ୍ରଭୁ ଦେବରାଜେ
ଇନ୍ଦ୍ର ସହିତେ ନନ୍ଦନବନେ କଲେ ବିଜେ ।
ତୋଟାମାନ ବୁଲି ବୁଲି ସମସ୍ତ ଦେଖନ୍ତି
ଫଳଭରେ ଶାଖାମାନ ଭୂମିରେ ଲୋଟନ୍ତି ।
ତୋଟାଳିଆଙ୍କୁ ଯେ ଆଜ୍ଞା ଦେଲେ ଏହିପରି
ସାବଧାନେ ତୋଟାମାନ ଥାଅ ରକ୍ଷା କରି ।
ରାଜସୂୟଯାଗ ହୋଇଲା ଆସି ସନ୍ନିଧାନ
ସର୍ବେ ଅଛି ଆଉ ପଞ୍ଚତିରିଶ ଯେ ଦିନ ।
ତୋଟାଳେବୋଇଲେ ହରି ଯାହା ତୋରଆଜ୍ଞା
ଦେବ ଗନ୍ଧର୍ବ ହେଲେ କେ କରିବ ଅବଜ୍ଞା ।
ନାରାୟଣଙ୍କୁ ବିଜୟୀ ହେଲେ ମରଦାନ
ଦେବ ତୋ ପ୍ରସାଦେ ହେଲା ଅମର ଭୁବନ ।

ଯେବଣ ବିଧାନ ତୁମ୍ଭ କରୁଅଛୁ ହରି
ନଷ୍ଟେଁ ତା ହେଉବ କେହ୍ନ ଆନ କରିପାରି
ଦୁଷ୍ଟଙ୍କର ବହୁ ଭାର ନ ସହେ ଧରଣୀ
ଏହି ଯଜ୍ଞନ୍ତେ ଶେଷ କରିବ ତୁ ସ୍ୱାମି ।
ଏହା କହି ଶଚୀପତି ସୁରସେନେ ଗଲେ
ଗରୁଡରେ ବସି ହରି ହସ୍ତିନା ଅଇଲେ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ପୃଥିବୀରେ ତୁମ୍ଭେ ଏକା ସୁଖଦୁଃଖ ଦାତା ।
ସେହୁ ଅଜ୍ଞାନ ଅଟେ ଯେ ତୋତେ ନ ଚିନ୍ତଇ
ମତିଭ୍ରମେ ଅନ୍ୟ ଦେବଦେବୀ ଯେ ସେବଇ ।
ଜାହାକୁ କରିଛ ତୁମ୍ଭେ ରାଜରାଜେଶ୍ୱର
ଜାରେ ଦୁଃଖ ଦେଇ କର କଙ୍କରୁ କଙ୍କର ।
ଜାହାକୁ ଖାଲି ଚଣ୍ଡ୍ରୂକେ ଅନ୍ନ ଯୋଗାଉଛ
ଜାହାକୁ ଦଗଡ଼ାଗ୍ରତେ ଦିନ କଟାଉଛ ।
ଜାହାକୁ ସର ଲବଣୀ ଦେଉଛ ପ୍ରତ୍ୟକ୍ଷ
କେହ୍ନୁ ଦୁଇଦିନେ ଅଇ ପାଇବା ସନ୍ଦେହ ।
ତୁମ୍ଭ କୃପାରେ ସଂସାର ଆତଯାତ ହୋଇ
ତୁମ୍ଭେ ଅଟ ବୁଦ୍ଧିଦାତା ସର୍ବ ଦିଅ କହି ।
ତୁମ୍ଭ କୃପାରେ ପ୍ରାଣୀଏ ସକଳ ଜୀଉନ୍ତି
ତୁମ୍ଭ ଛଡା କେ କ କରେ ନାହିଁ ତାର ଶକ୍ତି
ତୁମ୍ଭେ ମହା ବିପଦରୁ କର ପରିତ୍ରାଣ
ଧନ୍ୟ ତୁମ୍ଭେ ଦୟାମୟ କମଳଲୋଚନ ।
ମୂରୁଖ ଅଟଇ ମୁହିଁ ଜ୍ଞାନ ନାହିଁ ମୋର
ଏ ଭାରତ ଲେଖିବାକୁ କରିଛୁ ବିସ୍ତର ।
ତୁମ୍ଭେ ସାହାହୁଅ ମୋତେ ଆହେ ପୀତବାସ
ଶାରଳା ଦାସର ଏହି ମାତ୍ର ଅଭିଳାଷ ।

---

## ପଶ୍ଚିମ ଦିଗରାଜାନିମନ୍ତ୍ରଣ କାରଣ ଭୀମଙ୍କର ଗମନ

ଏଥୁ ଅନନ୍ତରେ ରାଜା ବୈବସ୍ୱତ ମନୁ
ଷଡ଼ର୍ଦ୍ଧ୍ୟେ ପୂଜିଲ ତୁମ୍ଭ ଋଷିଙ୍କର ସୂନୁ
ତୁମ୍ଭେ ଅଟ ବ୍ରହ୍ମବେତ୍ତା ଆବର ପଣ୍ଡିତ
ସୁଧା ବୃଷ୍ଟି କରୁଅଛ କହି ଏ ଭାରତ ।
କଳିକାଳୁ ତରିବାକୁ କଲାଇଲ ଇଚ୍ଛା
ତୋର ପ୍ରସାଦେ ପୂରିବ ମୋର ମନୋବାଞ୍ଛା ।
ଯେସନେକ ଆଜ୍ଞା ଦେଲେ ପ୍ରଭୁ ଦେବରାଜ
ଭୀମସେନ ପଶ୍ଚିମକୁ କରିଲେକ ବିଜେ ।
ରାଜାଗଣ ନିମନ୍ତ୍ରଣ କଲେ ସେ କେମନ୍ତେ
ଏହା ସବୁ ତନ୍ତ୍ର ଭଣ କହ ମୁନି ମୋତେ ।
ବଦନ୍ତି ଯେ ଯୋଗେଶ୍ୱର ମହା ବ୍ରହ୍ମବେତ୍ତା
ଶୁଣ ଆହେ ମହାରାଜା ଭୀମସେନ କଥା ।
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଚନ୍ଦ୍ରବାର ନକ୍ଷତ୍ର ଶ୍ରବଣା ବିଦ୍ୟମାନ ।
ଚୈତ୍ରଜ ନାମେ କରଣ ଧୃତି ନାମେ ଯୋଗ
କନ୍ୟା ସଂକ୍ରାନ୍ତି ଏକୋଇଶ ଦିନ ଭୋଗ ।
ସେଦିନ ସୈନ୍ୟ ଘେନିଣ ପବନ ତନୟ
ଶୁଭେ ପଶ୍ଚିମ ରାଷ୍ଟ୍ରକୁ ଚଳିଲେ ବିଜୟ ।
ଆପଣାର ରଥ ଆଗେ ଯାଆନ୍ତି ଯେ ବାହି
ବାୟୁ ଦେଖିଲେ ରଥରେ ସାରଥି କେ ନାହିଁ
ମରୁତ ନାମେ ସାରଥି ହକାରି ସେକ୍ଷଣ
ଶ୍ୱେତ ଅଶ୍ୱ ଦେଲେ ତାକୁ ଆପଣା ସମାନ ।
ଏ ଶ୍ୱେତ ଅଶ୍ୱ ଯୋଚିବୁ ଭୀମସେନ ରଥେ
ସାରଥି ହୋଇ ବାହିବୁ ଆସିବା ପର୍ଯ୍ୟନ୍ତେ ।
ପବନର ବଚନରେ ମରୁତ ସାରଥି
ଶ୍ୱେତ ଅଶ୍ୱ ଘେନ ଆସି ପ୍ରବେଶ ଜଡ଼ତ ।
ପଶ୍ଚିମ ସୋମରାଷ୍ଟ୍ରକୁ ବିଜୟ ପାବନ
ମରୁତ ପ୍ରବେଶ ହେଲା ଶ୍ୱେତ ଅଶ୍ୱ ଘେନ ।
ଶ୍ରୀକରେ ଘେନିଣ ସେହି ଜୟ ରତ୍ନମାଳା
ଭୀମସେନ କଣ୍ଠଦେଶେ ଲମ୍ବାଇଣ ଦେଲା ।
ରତ୍ନମାଳା ମୁକୁଟ ଯେ ଦିବ୍ୟ ଅଳଙ୍କାର
ଆଭରଣ ପିନ୍ଧାଇଣ ଭୀମଙ୍କ ଶରୀର ।
ଭୀମ ପଚାରେ ଅଇଲୁ ତୁହି କାହା କତି
ମଣ୍ଡେ ଜାତ ନୋହୁ ନୋହୁ ତୁ ମାନବ ଜାତି
ଅତ୍ୟନ୍ତ ସୁସଞ୍ଚ ତୋର ସୁକୁମାର କାୟେ
ପ୍ରତ୍ୟକ୍ଷରେ ଦିଶୁଅଛୁ ଅମରାଧି ପ୍ରାୟେ ।
ବୋଲଇ ମରୁତ ତୁମ୍ଭେ ଶୁଣ ଭୀମସେନ
ମୋତେ ପେଷିଦେଲେ ତୁମ୍ଭ ପିତର ପବନ ।
ତୁମ୍ଭର ରଥରେ ମୁହିଁ ହୋଇବି ସାରଥି
ବାହିବି ଯେ ତୁରଙ୍ଗମ ପଶ୍ଚିମ ମୂରତି ।
ନହିଁର ରାଜାଙ୍କୁ ତୁମ୍ଭେ ପାରିବ ହେ ସାଧି
ସାରଥିପଣେ ପଣ୍ଡିତ କହିଦେବି ବୁଦ୍ଧି ।

କେମନ୍ତ ଯୁଦ୍ଧ କରିବ ସାରଥି ବିହୀନେ
ତହିଁ ଅନେକ ଦୁର୍ଦ୍ଦାନ୍ତ ଛନ୍ତି ରାଜାଗଣେ ।
ପବନ ଦେବତାର ମୁଁ ଅଟଇ ସାରଥି
ତୁମ୍ଭେ ମୋତେ ପ୍ରତେ କପାଁ ନ କର ମାରୁତି
ଭୀମସେନ ବଚନରେ ଏ ବଡ଼ ଅଗୋଚର
କହଣ ଦେବାକୁ ଅବା କେବଣ ଅସୁର ।
ରୂପ ବଦଳାଇ ଆସି ଭଣ୍ଡେ ଏ ପ୍ରକାର
କପଟରେ ନାଶିବ ବା କାର୍ଯ୍ୟକୁ ଆମ୍ଭର ।
ଏହା ବଚନ ମାରୁତି କହଇ ଅଦ୍ଭୁତେ
ଅଜ୍ଞାନ ଲୋକେ ବିଶ୍ୱାସ କରିବ କେମନ୍ତେ ।
ସାରଥି ବୋଇଲ ତୁମ୍ଭେ ନ ଜାଣ ହୋ ମୋତେ
ମୁଁ ଜାଣେ ତୁମ୍ଭ ପିଅର ଜନମ ସତ୍ୱତେ ।
ତବ ଜ୍ୟେଷ୍ଠଭ୍ରାତ ଅଟେ ବୀର ହନୁମନ୍ତ
ତାହାର ଜନମକ ମୁଁ ଜାଣଇ ଯଥାର୍ଥ ।
ପବନର ମାତା ଜାଣ ଅଟଇ ଅଦିତି
କଶ୍ୟପଙ୍କୁ ସେବି ସେହୁ କଲ୍ପେ କଲ୍ପେ ବର୍ତ୍ତି
ଅନେକ ପ୍ରକାରର ମୁଁ ଜାଣଇ ବାରତା
କାଳେ ବୋଇଲା ତାହାର ପୁତ୍ର କି ଦୁହିତା
ଆକାଶ ଗଙ୍ଗାଜଳରେ ବସି ଅନାହାରେ
ନସ୍କାରଙ୍କୁ ସେବିଲ ଶତସମ୍ବତ୍ସରେ ।
ପ୍ରସନ୍ନ ହୋଇ ତାହାକୁ ଏହି ବର ଦେଲେ
ବଳିଷ୍ଠ ପୁତ୍ର ତୋହର ହୋଇବ ବୋଇଲେ
ତୋଷେ ତାକୁ ଏହି ବର ଦିଅନ୍ତେ ନିରାକାର
ଅଦିତି ଦେବୀଙ୍କ ହେଲା ଗର୍ଭର ସଞ୍ଚାର ।
ଗର୍ଭେ ବଢ଼ନ୍ତେ ପବନ ହୋଇଲା ବଳିଷ୍ଠ
ଅଣଚାଶ ଖଣ୍ଡ କଲେ ତାକୁ ସୁରଜ୍ୟେଷ୍ଠ ।
ବାସବ ଛେଦିଲ ଯନ୍ତ୍ରେ ଗର୍ଭର ଭିତର
ତେଣୁ ଅଣଚାଶ ବାୟୁ ଅଣମୂର୍ତ୍ତି ଧର ।
ବହୁତ କାଳର ଏହି କଥା ପୁରାତନ
ଅବିଶ୍ୱାସ କରିବାକୁ କହିଲ ଏମାନ ।
ଆହୁରି କଥାଏ ଏବେ ଶୁଣ ବୃକୋଦର
କୁନ୍ତୀଙ୍କୁ ପ୍ରସନ୍ନ ହେଲେ ସେ ପବନ ବୀର ।
ସାଧୁ ସାଧୁ ଅଟନ୍ତି ସେ କୁନ୍ତୀ ମାହେଶ୍ୱରୀ
ପବନ ବୀର୍ଯ୍ୟରେ ସେହୁ ହୋଇଲେକ ଧାର ।
ପ୍ରତ୍ୟକ୍ଷରେ ଅଣାକାର ବୀର୍ଯ୍ୟ ସେ ଧଇଲା
ସେ ବ୍ରହ୍ମବୀର୍ଯ୍ୟ ତାହାର ଗର୍ଭେ ସଞ୍ଚରିଲା ।

ତହିଁରୁ ତୁମ୍ଭେ ଜନମ ହୋଇଲ ହେ ବୀର
ମୋତେ ପେଷିଛନ୍ତି ନିଶ୍ଚେ ତୁମ୍ଭର ପିଅର ।
ଭୀମ ଆଶ୍ଚର୍ଯ୍ୟ ମରୁତ ବଚନକୁ ଶୁଣି
ଏମନ୍ତ ବେଳେ ଶୁଭିଲା ଆକାଶରେ ବାଣୀ ।
ହେ ବୀର ଏଥିକୁ ଚିନ୍ତା ମନରେ ନ କର
ଏ ମରୁତ ସାରଥି ସେ ଅଟଇ ଆମ୍ଭର ।
ଅଦ୍ଭୁତ ବାଣୀ ଶୁଣି ଭୀମ ହୋଇ ତୋଷ
ସାରଥିକୁ ପୂଜା କଲା ହୋଇଣ ହରଷ ।
ପିତା ଆଜ୍ଞାରେ ଆଇଲ୍ ସେବେ ଦୟାକର
ସାରଥି ହୋଇଣ ରଥ ବାହା ତୁ ମୋହର ।
ବହୁ ରତନେ ସାଜିଲା ମରୁତ ସେ ରଥ
ପୁଷ୍ପକ ବିମାନୁ ଜିଣି ଦିଶିଲା ଶୋଭିତ ।
ଶିବସାଗରେ ସ୍ନାହାନ ଭୀମସେନ କରି
ସୋମନାଥ ଦେବଙ୍କୁ ସେ ବହୁସ୍ତୁତି କରି ।
ଜୟ ଦୁଃଖବାରଣ ଶ୍ରେଷ୍ଠତର ଯୋଗୀ
ଜୟ ଶରଣ ରକ୍ଷକ ଆନନ୍ଦେ ବିଭୋଗୀ ।
ଜୟ ଜୟ ଦିଗମ୍ବର ଜୟ ତ୍ରିପୁରାରି
ଜୟ ଅନଙ୍ଗନାଶନ ଭବଭୟହାରୀ ।
ଭକତ ଜନ ଆଶ୍ରୟ ଜୟ ସୁରଗୁରୁ
ଜୟ ସଦାନନ୍ଦ ଜୟ ବାଞ୍ଛା କଳ୍ପତରୁ ।
ଜୟ ଶୂଳଧର ଜୟ ସିଦ୍ଧ ଯୋଗୀବର
ଗଙ୍ଗାଦେବୀଙ୍କୁ ଧରିଣ ନିଜ ମସ୍ତକର ।
ବୃଷଭ ବାହନେ ଚଢ଼ି ଭ୍ରମ ତ୍ରିଭୁବନ
ଦକ୍ଷର ଯଜ୍ଞକୁ ରଙ୍ଗେ ଭଙ୍ଗିଲ ଆପଣ ।
ଭକତବତ୍ସଳ ପ୍ରଭୁ ତୁମ୍ଭେ ଦୟାମୟ
ଅଖିଳ ଷ ମୂର୍ତ୍ତି କର କରେ ଦିଗ୍ବିଜୟ ।
ଭୀମସେନଙ୍କ ମୁଖରୁ ଏହି ସ୍ତୁତି ଶୁଣି
ହରଷ ହୋଇଲେ ଅତି ଦେବ ଶୂଳପାଣି ।
ବୃଷଭରେ ଆରୋହଣ ବିଜେ କଲେ ଆସି
ପଞ୍ଚ ବଦନ ଚନ୍ଦର ନୟନ ପ୍ରକାଶି ।
ଶିରପରେ ଶଶଧର ବିଶନ୍ତି ଶୋଭନ
ବିଜୟା ଦୁଦୁରା ପାନେ ନେତ୍ର ରକ୍ତବର୍ଣ୍ଣ ।
ଡିବିଡିବି ଡମ୍ବରୁ ଯେ ନିରନ୍ତରେ ବାଜେ
ଗଳାରେ ସର୍ପଭୂଷଣ ଫୁତ୍କାର ଗର୍ଜ୍ଜେ ।
ଭୀମ ଶିବଙ୍କ ପୟରେ ପ୍ରଣମି ହୋଇଲେ
ପଶ୍ଚିମ୍ ରଜା ବରଣେ ଠାକୁରେ ପେଷିଲେ ।

ପଶୁଶସ୍ତ୍ର ନୃପତି କରନ୍ତି ହରଣ
ନଇବନେ ଆସିବେକ ଯେତେକ ନରଗଣ ।
ସ୍ୱାମି ଅନୁବ୍ରତେ ମତେ ବସ୍ତା ରଖିଥିବ
ଶିବଗଣ ସେନ ନିଜେ ଯାଗକୁ ହେ ଶିବ ।
ଏହା ଶୁଣି କହିଲେକ ସେ ପଞ୍ଚବଦନ
ଯାଇ ପଶ୍ଚିମରାଜାଙ୍କୁ କର ନିମନ୍ତ୍ରଣ ।
ଆହେ ଏକରାଜା ତହିଁ ଅଛି ପରତାପୀ
ମେଖଳଦେଶାଧିପତି ଅଟେ ମହାକୋପୀ ।
ତାର ସଙ୍ଗେ ବହୁ ଯୁଦ୍ଧ କଲା ଜଗସୁର
ଯୁଦ୍ଧେ ହାରି ପଳାଇଲା ହୋଇଣ କାତର ।
ଖ୍ୟାମସେନ ବୋଲି ସେହୁ ଜାହାର ନନ୍ଦନ
ଏତେ ବନ୍ଦି ହୋଇଲ କହ ସେ କାରଣ ।
ଶୁଣିଣ ଉମାବଲ୍ଲଭ ହରଷେ କହନ୍ତି
ମନଦେଇ ଶୁଣ ଆହେ ପବନ ସନ୍ତତି ।
ସତ୍ୟଯୁଗ ହୋଇବାନ ଗଲେ ବ୍ୟାସପତି
ବୈଶାଖ ଶୁକ୍ଳସପ୍ତମୀ ବାର ବୃହସ୍ପତି ।
ସେ ଦିନ ପୁଷ୍ୟ ନକ୍ଷତ୍ର ବାଣିଜ୍ୟ କରଣ
ବୃଦ୍ଧି ନାମେ ଯୋଗ କର୍କଟରେ ଚନ୍ଦ୍ର ଜାଣ ।
ଯେ ଦିନରେ ବେଦବ୍ୟାସ ଭ୍ରମନ୍ତି ବଣିନେ
ବୁଲି ବୁଲି ମହାଋଷି କୌତୁହଳ ମନେ ।
ନାନାଜୀବ ରୂପ ହୋଇ ବନେ ବନେ ଭ୍ରମି
ସବୁଜୀବ ଇଚ୍ଛା ନେଲେ ଋଷି ମହାତ୍ମାମ ।
କୌତୁହଳେ କ୍ଷଣେ କ୍ଷଣେ ହୋଇ ଅନ୍ୟରୂପୀ
ଶୃଙ୍ଗ ର କୌତୁକ ଆଶେ ରଙ୍ଗରସେ କ୍ଷେପି ।
ହରିଣୀ ଗୋଟିଏ ତହିଁ ଦେଖିକର ଯତି
ହରିଣ ହୋଇଣ ରଷ ତା ସଙ୍ଗରେ ମାତି ।
ହରିଣୀ ଉଦରେ ଋଷି ବୀର୍ଯ୍ୟକୁ ଛାଡ଼ିଲା
ହରିଣୀର ଗର୍ଭୁ ତହୁଁ ପୁତ୍ରେକ ଜନ୍ମିଲା ।
ମହାବଙ୍ଗ ପଣ୍ଡିତ ଯେ ମୃଗ ବନପତି
କଷ୍ଟିବ୍ୟା ରାଜ୍ୟରେ ସେହୁ ଅଟେ ଚକ୍ରବର୍ତ୍ତୀ
ଶ୍ରୀରାମଙ୍କୁ ସେବାକଲା ସେ ତ୍ରେତୟା ଯୁଗେ
ହେତୁବନ୍ଧ ବାନ୍ଧିଲା ସେ ବାରିଧି ତରଙ୍ଗେ ।
ପୁଣି ବିହରଇ ମୁନି ବନେ ଏ ସମୟେ
କୃଷ୍ଣଭଦ୍ରା ନଦୀକୂଳେ ଦେଖିଲେ ମୃଗୀଏ ।
ଆହେ ଖ୍ୟାମ ଯେ ମୃଗୁଣୀ ନାମ ସମନିକା
କାମ ଆତୁରା ହୋଇଣ ବୁଲୁଥିଲା ଏକା ।

ମୃଗରୂପ ଧଇଲେ ସେ ବ୍ୟାସ ମହାମୁନି
ବନେ କ୍ରୀଡ଼ାକଲେ ସେହି ମୃଗୁଣୀକି ଘେନି ।
ବହ୍ନଳତ ଶୃଙ୍ଗାରେ ସେ ଛାଡ଼ିଲେ ବିନ୍ଦୁ
ପୁତ୍ରହେଲା ନରଦେହ ମୃଗପିଣ୍ଡ ଗୋଟି ।
ମୃଗସେନ ନାମ ତାର ଜଗତେ ବିଖ୍ୟାତ
ମେରୁ ଦକ୍ଷିଣ କୋଣରେ ତାର ଆଧିପତ୍ୟ ।
ପଚାଶପଦ୍ମ ରାଜତ ଅଛନ୍ତି ତାହାର
ମୃଗବାହନ ଅଟଇ ତାଙ୍କ ମାନଙ୍କର ।
ସମ୍ରାର୍ଜ୍ଜନ ସଙ୍ଗେ ସେହୁ ବହୁଯୁଦ୍ଧ କଲା
ସତ୍ୟଯୁଗେ ମାନ୍ଧାତା ଜିଣି ନ ପାରିଲା ।
ତାହାକୁ ସଂଗ୍ରାମେ ଜିଣି ସମନୋତ୍ତ ଖ୍ୟାମ
ବ୍ୟାସଙ୍କ ସ୍ମରଣି ଜିଣି କରିବୁ ସଂଗ୍ରାମ ।
ସେ ବ୍ୟାସ ଯାଇଣ ତୋତେ ହେବେ ପରସନ୍ନ
ତେବେ ସେ ସାଧିହୋଇବ ତୋରେ ମୃଗସେନ
ଏହାନ୍ତରା ତୋତେ କଷ୍ଟ ନାହିଁ ଅନ୍ୟଠାବ
ସମସ୍ତ ସାଧ କରିବୁ ବୋଇଲେକ ଶିବ ।
ରାଜାଙ୍କୁ ନିମନ୍ତ୍ରି ତୁମ୍ଭ ଆସ ସବୁ ସାଧି
ଯାଅ ତୁ ପାଣ୍ଡବ ଏବେ ହେଉ କାର୍ଯ୍ୟସିଦ୍ଧି ।
ଏ ସପ୍ତମାନ ତୋତେ ମୁଁ ଦେଉଅଛି ଖ୍ୟାମ
ଜଗଜ୍ଜିତା ଶର ଦେଇ ହୋଇଣ ପ୍ରସନ୍ନ ।
ଯେଉଁ ଅସ୍ତ୍ରମାନ ଘେନି ଜିଣିଲୁ ତ୍ରିଯୁଗ
ତୋତେ ସେହି ଅସ୍ତ୍ର ଦେଲୁ ନାମ ପଞ୍ଚଶିଖ ।
ଅମୋଘ ଶକତି ଆଉ ତ୍ରିଶୂଳ ଶକତି
ବଜ୍ରମୁଦ୍‌ଗର ଖ୍ୟାମକୁ ଦେଲେ ପଶୁପତି ।
ଡମରୁ ଡ଼ମ୍ବରୁ ଦେଲେ ସେହୁ କରେ ଶବ୍ଦ
କୁତୂହଳେ ଦେଲେ ସ୍ୱାମୀ ବଜ୍ର ସିଂହନାଦ ।
ଆବର ଦେଲେ ଯେ ନାଥ ମହାକାଳ ବାଣ
ଏହାଯୋଗେ ହେ ମାରୁତି ସର୍ବ ରାଜା ଜିଣ ।
ପ୍ରମଥେ ଅନେକ ଅସ୍ତ୍ର ଦେଲେ ପଶୁପତି
ଯାଅ ତ୍ରୈଲୋକ୍ୟ ତୋତେ ନ ପଡ଼ୁ ବିପତ୍ତି
ଏସନକ ଆଜ୍ଞା ଖ୍ୟମେ ଦେଇ ପଞ୍ଚାନନ
ସେହିକ୍ଷଣି ସେ ସ୍ଥାନରୁ ହେଲେ ଅନ୍ତର୍ଦ୍ଧାନ ।
ପଶ୍ଚିମ ସୋମନାଥଙ୍କ ପାଶୁ ମହାବୀର
ପଶ୍ଚିମ ଦିଗେ ଗମିଲେ ବସି ରଥବର ।
ମାନସାନନ୍ଦ ବୋଲିଣ ସେ ଦେଶ ଗୋଟିଏ
ମାନଅର୍ଜ୍ଜୁନ ବୋଲିଣ ସେ ଦେଶରେ ରହେ ।

ବସ୍ତୁ ପ୍ରସାଦ ବୋଲିଣ ଅଛି ନଗ୍ରୀ ଗୋଟି
ତ୍ରିବେଣୀ ଘେନି ତାହା ଆସୁଅଛି ଫୁଟି ।
ସେ ନଗରଲରେ ରାଜ୍ୟ ଅଟଇ ତାହାର
ବଡ ଧାର୍ମିକ ଅଟଇ ସେହୁ ଦଣ୍ଡଧର ।
ଭୀମସେନ ତଳେ ମାନଙ୍କ ନଗରରେ
ରାଜ୍ୟଗୋଟି କମ୍ପିଲ ସେ ବୀରଭୁଜ ସାତେ
ନିଜ ଆସନେ ଥାଇଣ ବୋଇଲ ନୃପତି
ତୁମର ବଳାରେ କମ୍ପା କମ୍ପିଗଲା ପୃଥ୍ୱୀ ।
ରାଜାର ବଚନ ଶୁଣି ଗଲେ ଦେଶାନ୍ତରେ
ଧାତକାରେ ପ୍ରବେଶିଲେ ଗ୍ରାମର ବାହାରେ
ପର୍ବତୁ ଓହ୍ଲାଇଛନ୍ତି ଆଗୁଆଣି ଥାଟ
ମୁନୋହର ପୁଚ୍ଛାକଲେ ତୁମ୍ଭେ କଏ ଅଟ ।
ଅଦଭୁତେ ରାଜ୍ୟ କମ୍ପା ପଶିଲ ଆମ୍ଭର
ପରରାଜ୍ୟ ପଶିବାକୁ କି ଶକ୍ତି ତୁମ୍ଭର ।
କହିଲେକ ଭୀମ ତୁମ୍ଭେ ଶୁଣ ଦୂତମାନେ
ବାର୍ତ୍ତା କହ ଯାଇ ତୁମ୍ଭ ରାଜା ସନ୍ନିଧାନେ ।
ସନ୍ତକ କହିବ ତୁମ୍ଭେ ଜଗତକାରଣ
ରାଜସୂୟଯାଗ ନିମନ୍ତେ କରନ୍ତେ ବରଣ ।
ନିମନ୍ତ୍ରିବା ପାଇଁ ଆସିଅଛନ୍ତି ଏ ନଗେ
ସମଦଣ୍ଡ ଦେବ ରାଜା ଯିବେ ବେଗ ବେଗ
ବାର୍ତ୍ତାପାଇ ଦୂତେ ଗଲେ ହୋଇଣ ହରଷ
ମାନଅର୍ଜୁନର ଆଗେ କହିଲେ ସନ୍ଦେଶ ।
ସ୍ୱାମୀ ରାଜସୂୟ ଯାଗ କରିବା ନିମନ୍ତେ
ଜରାସନ୍ଧ ବଧ କରି ଅଇଲେ ଯେ ଏଥେ ।
ସ୍ୱାମୀ ପାଣ୍ଡୁବସୁନ୍ଦର ପବନର ବହି
ରାଜା ନିମନ୍ତ୍ରିବା ପାଇଁ ବଳେ କରିଅଛି ।
ବୋଇଲା ଦେବୀଙ୍କ ସୁତ ବ୍ୟାସଙ୍କର ନାତି
ଭୀମସେନ ଠାକୁର ସେ ପ୍ରତ୍ୟକ୍ଷ ଅଟନ୍ତି ।
ଦୂତମୁଖୁ ଏହିବାର୍ତ୍ତା ପାଇ ଧାତକରେ
ଜଗତ ଚୂଡ଼ ଉଠିଲା ବେଗେ ନୃପବରେ ।
ପାଏଡ଼ା ପାର ରାଜ୍ୟରେ କରାଇ ଉତ୍ସବ
ଆଗେ ଚାଳିଦେଇ ଶତେହାର ପାଣିଦ୍ରବ୍ୟ ।
ଶ୍ରୀକରେ କନକଥାଳୀ ଘେନିକରି ରାସ୍ତେ
ଭୀମସେନ ଆଗେ ସ୍ୱର୍ଣ୍ଣବୃଷ୍ଟି ନଯ କରାଏ ।
ସନ୍ନିଧେ ପ୍ରବେଶ ହୋଇକରି ମହାବଳୀ
ଭୀମପାଦେ କରପତ କରେ ନିଉଛାଳି ।

ଉଭୟ ଯୋଡ଼ିଣ ସେ ବସ୍ତୁ ମୁଣ୍ଡକରି
ସାଷ୍ଟାଙ୍ଗେ ପାଦେ ପଡ଼ିଲା ମାନଦଣ୍ଡଧାରୀ ।
ପୁଣ ପୁଣ ନୃପତି ଯେ ହୋଇ ପ୍ରଣାମି
ବେଳେ ଅପରାଧ ମୋର କ୍ଷମାକର ସ୍ୱାମି ।
ତେଣୁ ଉର ମୁଖୁଁ ମୁହିଁ ବାରତା ନ ପାଇ
ଖୋକାଏ ଦୂର ପାଶ୍ଚେଟି ନ ପାରିଲ ଯାଇ ।
ଆନନ୍ଦରେ ଅଶ୍ରୁଜଳ ବହେ ନେତ୍ର ବେନି
ଗ୍ରୀମ୍ବରେ ନୃପତି ଯାଇ କରଇ ଦଣ୍ଡମା ।
ଶରଣ ଶରଣ ବୋଲି କରେ ଆର୍ତ୍ତନାଦ
ସ୍ୱାମି କ୍ଷମ ମୁହିଁ ଅଜ୍ଞ ମୋର ଅପରାଧ ।
ରଥଉପରୁ ଓହ୍ଲାଇ ଆସିଣ ପାବନ
ମାନାର୍ଜୁନକୁ ବରିଲେ ଅକ୍ଷତ ଯେ ଘେନି ।
ତୋହର ଥାଟ ସକଳ ଯେତେ ଅଛି ବାବୁ
ସମସ୍ତ ସେନା ରଜୁସି ହେଙ୍କ ତୁ ଚଳିବୁ ।
ବଚନେ ବୋଇଲ ମାନଅର୍ଜୁନ ନୃପତି
ମୋହର ପୁରେ ମନୋହ୍ର କରିବା ମାରୁତି ।
ଅତ୍ୟନ୍ତ ଭାଗ୍ୟମୋହର ଦେଖିଲ ନୟନେ
ମୁହିଁ ନିସ୍ତରିଲ ଆଜ ତୁମ୍ଭ ଦରଶନେ ।
ଭୀମସେନ ବୋଇଲେ ମୁଁ ନ ପରଇ ରହି
ଏ ସୁଯୋଗ ବାହ୍ନିଁ ରାଜ୍ୟେ ରାଜ୍ୟେ ଯିବି ଧାଇ
ପଞ୍ଚାଶସହସ୍ର ରାଜା ନଉ ଦିବସରେ
କହିବ ସାଧ୍ୟ ଅସାଧ୍ୟ ଅଛନ୍ତି ଏଥିରେ ।
ଷଷ୍ଠ ଦିନରେ ରାଜାଏ ନୋହିଲେ ପ୍ରବେଶ
ଚରଣେ ଶିର ଛେଦିବେ ମୋର ପୀତବାସ ।
ରାଜାମାନଙ୍କେ ମଣୋହି କରି କରି ଗଲେ
ପଞ୍ଚାଶସହସ୍ର ବରିବ ମୁହିଁ କେତେକାଳେ ।
ଆହୋ ଅର୍ଜୁନ ତଳ ଯା ହୋଇଣ ନିର୍ଭ୍ରାନ୍ତ
ମାନଭଙ୍ଗ ଦେଶ ଭୀମ ଗଲେ ତକ୍ଷଣାନ୍ତ ।
ବୀରବର ଶବ୍ଦକରି ଥାଟ ସେ ଚଳାଇ
ବନ ପର୍ବତ କନ୍ଦର କ୍ରିଶିକରି ଯାଇ ।
କହଣ ନାମରେ ତହିଁ ଏକଇ ପର୍ବତ
ଗୁଣଭଦ୍ରା ବୋଲି ତହିଁ ବହେ ଏକ ତୀର୍ଥ ।
କାର୍ତ୍ତିକ ଶୁକ୍ଳପକ୍ଷ ଅଟେ ପୌର୍ଣ୍ଣମାସୀ
ଭରଣୀ ନକ୍ଷତ୍ର ଭୀମ ଜଳମଧ୍ୟେ ପଶି ।
ଅକାମାବଳ ଅଟଇ ଜାଣ ସେ ଦିନର
ତୀର୍ଥସ୍ନାନ କରି ଦାନ ଦେଲେ ବୃକୋଦର ।

ମନୋହର ଦେଶରେ ଯେ ସୁବାହୁ ନୃପତି
ପାରିଦଣ୍ଡ ଘେନି ତୀର୍ଥସ୍ନାନ ସେ କରନ୍ତି ।
ରାଜାର ଆଗରେ ଯାଇ ଜଣାନ୍ତି ମୁନିହି
ଭୀମ ଅଛନ୍ତି ଶରଭେଦ୍ରା କୂଳେ ରହି ।
ପଞ୍ଚାଶ ସହସ୍ର ରାଜା କରିବେ ବରଣ
ଯୁଧିଷ୍ଠିରଙ୍କ ଆଜ୍ଞାରେ ସେ ପଶ୍ଚିମେ ଗମନ ।
ଶୁଣି ଆନନ୍ଦିତ ହେଲା ସୁବାହୁ ନୃପତି
ଭୁଲେଣ ତାହାର ଅଛି ପାଞ୍ଚଖର୍ବ ହସ୍ତୀ ।
ଭୀମସେନର ଆଗତ ସେ ରାଜା ଶୁଣିଲା
ହସ୍ତୀ ତେଜି ଶଙ୍ଖଧ୍ୱନେ ଭୀମ ପାଶେ ଗଲା ।
ଆହେ ସ୍ୱାମି ବୃକୋଦର ତ୍ରାହି ତ୍ରାହି ବୋଲି
ଦନ୍ତେ ତୃଣ ଧରିଣ ପଡ଼ି ଗଡ଼ଗଲି ।
ଦର୍ଶନ କଲାକ ରାଜା ଦରଶନୀ ଘେନି
ସୁବର୍ଣ୍ଣଚୂଡ଼ ପର୍ବତେ ଭଜପ୍ସ ପାବନ ।
କାଳିଞ୍ଜନ ପଡ଼ିହାଗ କାଳଧ୍ୱଂସ ଦୂତ
ଧନପ୍ସେ ବାର୍ତ୍ତା କହିବେ ଭୀମଙ୍କ ଅଗ୍ରତ ।
ମନୋହର ଦେଶର ସେ ସୁବାହୁ ନୃମଣି
ସ୍ୱରଶତ ଦଣ୍ଡ ଭୁଲେ ଅନେକ ଷଉଣୀ ।
ତ୍ରାହି ବୋଲିଣ ଧନପ୍ସେ କରେ ପଉଣାମି
ଦର୍ଶନ କରିବାପାଇଁ ଆମ୍ଭେ ଦେବସ୍ୱାମୀ ।
ନାମ ସଙ୍କେତ ବୃଷ୍ଟିଣ ପବନର ବଳା
କଣ୍ଠେ ଭୀମ ସୁବାହୁ ନୃପକୁ ଦେଖିଲା ।
ଶ୍ରୀକର ଗୃହ ବୋଇଲା ପବନ ତନୟ
ଥାଟ ଘେନି ରାଜସୂୟ ଯଜ୍ଞେ ତୁହି ଯାଅ
ଯେତେକ ସୈନ୍ୟ ତୋହର ଅଶ୍ୱ ଗଜ ରଥ
ସମଦଣ୍ଡ ଘେନି ବେଗେ ଯାଅ ଇନ୍ଦ୍ରପ୍ରସ୍ଥ ।
ମକର ମାସ ମଧ୍ୟରେ ହେବ ମହାଯାଗ
ଦେଖା ଦରଶନୀ ଘେନି ଯାଅ ହୋଇ ବେଗ ।
ଶୁଣିଣ ସାନନ୍ଦ ହେଲେ ପାରିଦଣ୍ଡମାନେ
ଶ୍ରବଣେ ଯା ଶୁଣୁଥିଲୁ ଦେଖିଲୁ ନୟନେ ।
ତୁହି ଯେ ମାରୁତି ଅଟୁ ପାଣ୍ଡବ ସୁନ୍ଦର
ଜରାସନ୍ଧକୁ ବଧିଲୁ ଦୁର୍ଦ୍ଦାନ୍ତ ଅସୁର ।
ହିଡ଼ିମ୍ବାକୁ ମାରି ଆଉ ବକ ତିନିଜଣ
ତୁହି ଧରିଲା ମାତ୍ରକେ ଲଭିଲେ ମରଣ ।
ସ୍ୱାମି ତୁହି ବିଷଲଡ଼ୁ ଖାଇ ପାରି କଲୁ
ନାଗବଳ ଜିଣି ହେଲୁବଳୀ ବଧି ହେଲୁ ।
ପାଣ୍ଡବ ସ୍ୱୁରିକୁ ମାରି ଜୁଡ଼ାଇ କୌରବ
ତୋହର କୋପକୁ ଶଙ୍କା କରେ ବଳଦେବ ।
ତୁହି ଦେବ ଦୁଷ୍ଟଜନ ଗରବ ଗଞ୍ଜନ
ଭକ୍ତବତ୍ସଳ ପ୍ରୀତିରେ ଭକ୍ତ ମନସ୍କାମ ।
ଦୁଷ୍ଟ ସ୍ୱକୃତ ଆମ୍ଭର ଶରଣ ଘେନମା
ବହୁଦୋଷ କରିଅଛୁ ତାହା କର କ୍ଷମା ।
ଜରାସନ୍ଧ ବଧି ରାଜାଗଣ ଉଦ୍ଧାରିଲୁ
ଛୟାଣୋଇସହସ୍ର ରାଜା ବନ୍ଦୀ ମୁକ୍ତ କଲୁ ।
ରାଜସୂୟଯଜ୍ଞ ଦେଖିବୁ ତୋର ପରସନ୍ନେ
ପାଧ ନାଶି ତରିଯିବୁ ଭବୁଁ ଆମ୍ଭେମାନେ ।
ଅକ୍ଷତ ଗୁଆ ଘେନିଣ ସୁବାହୁ ନୃମଣି
ଦଣ୍ଡ ସାଜ ଅନୁକୂଳ କଲା ସେହିକ୍ଷଣି ।
ତହୁଁ ଭୀମସେନ ଗଲେ ଅତି ହୃଷ୍ଟମନେ
ଦଣ୍ଡ ଘେନିଣ ପ୍ରଦେଶ କୁଣ୍ଡିନୀର ବନେ ।
କୁଣ୍ଡିନଗ୍ର ବୋଲି ତହିଁ ନଗ୍ର ଯେ ଗୋଟିଏ
ଭୀଷ୍ମକ ବୋଲି କରଣ ତହିଁର ଯେ ରାଜ୍ୟେ ।
ରୁକ୍ମଣ ଯେ ରୁକ୍ମାଙ୍ଗଦ ଏହି ପୁତ୍ର ଦୁଇ
ରୁକ୍ମଣୀ ଦେବୀ ତାହାର ଦୁହିତା ଅଟଇ ।
ରୁକ୍ମଣ ବୋଲିଣ ଦୁଷ୍ଟ ତାର ଜ୍ୟେଷ୍ଠବଳା
ଦୁଷ୍ଟଙ୍କର ଭୁଲେ ତାର ସବୁବେଳେ ମେଳା ।
ରୁକ୍ମଣୀ ଦେବୀ କାଳରେ ହରିଙ୍କି ବାଛଇ
ଦୁଷ୍ଟ ଶିଶୁପାଳ ମେଳେ ସର୍ବଦା ବସଇ ।
ରୁକ୍ମଣୀ ଦେବୀଙ୍କି ହରି ନୟନେ ଜଗନ୍ନାଥ
ବହୁତ ସଂଗ୍ରାମ କରି କଲା ମନ୍ଦଭୃତ୍ୟ ।
ରଥେ ହରି ଛେଦୁଥିଲେ ତାର ମୁଣ୍ଡ ଗୋଟି
ରୁକ୍ମଣୀ ଭଜନ ଦେଖି କଲେ ସାତ ବେଣି ।
ଲାଜେ ଆଉ ନ ଗଲା ସେ କୁଣ୍ଡି ନଗରକୁ
ହର ଉଦ୍ୟାନେ ସେବିଲା ରୁଦ୍ର ଦେବତାଙ୍କୁ ।
ତାର ଭକ୍ତିରେ ପ୍ରସନ୍ନ ହେଲେ ଉମାନାଥ
ପିନାକ ସମାନ ଧନୁ ଦେଲେ ତାର ହସ୍ତ ।
ରୁଦ୍ର ପ୍ରସନ୍ନେ ହୋଇଛି ସେହି ମହାବଳୀ
ରାଜ୍ୟରେ ପ୍ରବେଶେ ଭୀମ ସେ ଆସି ଓଗାଳି ।
ଆରେ ରେ କାହିଁର ତୁହି ଅଟୁ ଏଡ଼େ ଦୁଷ୍ଟ
ମମରାଜ୍ୟେ ପଶୁ କପାଁ ପାମର ଦର୍ପିଷ୍ଟ ।
କାଳ ଆସି କରିଲାଣି ତୋତେ ଆକର୍ଷଣ
ଏହିକ୍ଷଣି ମୋର ହସ୍ତେ ହରାଇବୁ ପ୍ରାଣ ।

ଛୁକ୍ମଣ ଯେ ଆଜ୍ଞା ଦେଲ୍ଲ ନିଜ ସଇନଙ୍କି
ବନ୍ଧ ଧନା ରେ ନାରଚ ଘୁଣ୍ଡୁଛ କାର୍ତ୍ତିକ ।
ଛୁକ୍ମଣ ଆଜ୍ଞାରେ ଧାଇଁ ଆଇଲେ ସଇନ ।
ବନ୍ଧିଲେ ସର୍ବେ ନାରଚ ହସ୍ତେ ଧନୁ ଦେନି ।
କ୍ରୋଧଭରେ ବନ୍ଧିଲେ ଯେ ବାଣ ଡାକ ହାକେ
ଯେସନେ ଗର୍ଜି ଧାମନ୍ତ ଶୂନ୍ୟେ ବଳାହକେ ।
ଭୀମସେନଙ୍କ ଆଡ଼େ ଯେ ଧାଇଁଲେକ ବେଗେ
ମାର ମାର କହି ଯାଇଁ ଉଗାଳିଲେ ଆଗେ ।
କୋପେ ଶସ୍ତ୍ର ଧରି କରି ଦେନବଳ ଉଠି
ଜ୍ୱାଳାବଳୀ ବାଣମାନ କଲେ ତହିଁ ବୃଷ୍ଟି ।
ଶରେ ଶର ପଡ଼ିଲାକ ହୁଅନ୍ତେଣ ବେନି
ତହିଁରୁ ଝଲକ ଉଠୁଅଛଇ ବହ୍ନି ।
ବନ୍ଧିବାରୁ ଭୀମସେନ ଆଡ଼େ ଗଳଜାଳ
ସହି ନ ପାରି ଛୁକ୍ମଣ ସୈନ୍ୟ ଗଲେ ଭାଜି ।
ଛୁକ୍ମଣ ଯେ କୋପ କଲା ଆଡ଼େ ଭଗ୍ନ ଦେଖି
କୋପଭରେ ଉଠିଲ ସେ ଉଦ୍ବୋଧ ଉପେକ୍ଷି ।
ଅନବାର ଶର ସେ ଯେ ଗୁଣରେ ବସାଇ
ଏକ ମୁଖରେ ବନ୍ଧିଲେ ହୁହାଇ ହୁହାଇ ।
ଭୀମ ସୈନ୍ୟ ନ ଧୂଅନ୍ତି ରହିଅଛି ଲଗି
ଅନବାର ବନ୍ଧନ୍ତି ଯେ ଶର ବେଗି ବେଗି ।
ଛୁକ୍ମଣ ଉଠିଲେ ଯହୁଁ ନିଜଥାଟୁ ଗର୍ଜି
ଭୀମଙ୍କ ସଇନ ଭୟେ ପଳାଇଲେ ଭାଜି ।
ଛୁକ୍ମଣ ନାରଚମାନ କରୁଅଛି ବୃଷ୍ଟି
ତୁଷାର ଆକାରେ ଶର ପଡ଼ୁଅଛି କୋଟି ।
ଏରୂପ ସଂଗ୍ରାମ ଦେଖି କୋପେ ବୀର ଭୀମ
କମ୍ପାଇ ଗାତ୍ର ବୋଇଲେ ହୋଇ ଅତି ତମ ।
କାହିଁ ମୋର ରଥ ଶୁଣି ମରୁତ ସାରଥି
ଆକାଶକୁ ନେଲ୍ଲ ରଥ ପବନୁ ଝଟତି ।
ଭୀମ ହସ୍ତେ କୃତାନ୍ତକ ଗଦାବର ଦେଖି
ଭୟେ ପଳାଇଲେ ବୀର ସମର ଉପେକ୍ଷି ।
ଦଣ୍ଡଭଗ୍ନ ଦେଖିକରି ଧାଇଁଲ୍ଲ ଛୁକ୍ମଣ
ନନ୍ଦନଶୀଳୁନ୍ତ ବେନ ବୁଲାଏ ଆପଣ ।
ଜଳସ୍ଥ ମେଘ ଯେସନେ ନିର୍ଘାତେ ଗର୍ଜଇ
ବୁଲନ୍ତେ ଯେ ମହାକୁଳ ତେମନ୍ତ ଶୁଭଇ ।
ଛୁକ୍ମଣ ବୁଲେ ଉଠିଲେ ତାହାର ସଉତେ
ମାଇଲେ ଲକିଆ ଭୀମସେନଙ୍କର ଗାତ୍ରେ ।

ଛୁକ୍ମଣ ମୂର୍ତ୍ତି ଦେଖି ନ ସହିଣ ପାବନ
ବେଗରେ ଉଠିଲ୍ଲ କରେ ଗଦାବର ଘେନ ।
ରଥରୁ ଉଭୁର ସେହୁ ଧାଇଁଲକ କୋପେ
ପୃଥ୍ୱୀ କମ୍ପମାନ ହେଲ୍ଲ ଭୀମଙ୍କର ଦର୍ପେ ।
ରଥ ଏକ ଚଢ଼ିକରି ଧାଇଁଲ୍ଲ ଛୁକ୍ମଣ
ଭୀମସେନ ନିକଟରେ ମିଳିଲ୍ଲ ବହନ ।
ନିଜ ହସ୍ତେ ବୁଲାଇଣ ଏକ ଅସିପତ୍ର
ତାହାକୁ ପ୍ରହାର କଲ୍ଲ ଭୀମସେନ ଗାତ୍ର ।
ଗଦା ବୁଲାଇ ଉଠିଲ୍ଲ ବୀର ଟେକରକ
ତା ଅସିପତ୍ର କଣ୍ଡମାନେ ହେଲ୍ଲ ଭାଜ ।
କାଳେବର ଗଦା ଭୀମ ବୁଲାଇଣ ପିଟି
ଛୁକ୍ମଣ ରଥ ଭାଙ୍ଗିଣ ମହୀପରେ ଲୋଟି ।
ହସ୍ତୀ ଉପରେ ଉଠିଣ ଛୁକ୍ମଣର ସେନା
ବୃକୋଦରକୁ ବନ୍ଧିଲେ ତୀକ୍ଷ୍ଣ ତୀକ୍ଷ୍ଣମୁନା ।
ମରୁତଦେବ ପ୍ରତ୍ୟକ୍ଷେ ଯାକୁ ବରଦାୟେ
ସେ କି ଧୁଞ୍ଚଇ ସାମାନ୍ୟ କ୍ଷତ୍ରିଙ୍କର ଘାୟେ ।
କୋପଭରେ ବୁଲାଇଣ ଗଦା କାଳେବର
ଭୀମସେନ ପିଟିଲ୍ଲ ସେ ହସ୍ତୀର ଉପର ।
ଗଦା ପ୍ରହାରେ ଭାଙ୍ଗନ୍ତେ ହସ୍ତୀ କୁମ୍ଭସ୍ଥଳ
ଯୋଦ୍ଧା ମାହୁନ୍ତେ ପଡ଼ିଲେ ହୋଇ ଅପମାନ
ଅତି କୋପେ ହସ୍ତୀଙ୍କର ଧରି ଥୋଇ ହସ୍ତ
ବୁଲାଏ ତାକୁ ମାରୁତି ହୋଇ କୋପାନ୍ୱିତ ।
ଆଉ ହସ୍ତୀର ଉପରେ ଦିଅନ୍ତେ ସେ ପିଟି
ଗଜଗାଜ ମନସ୍ତାପେ ପଡ଼ନ୍ତି ଲେଉଟି ।
ପୁନରପି ଉଠି ବୀର କରେ ଧରି ଚାପ
ତୀକ୍ଷ୍ଣ ମୁନା ଶରମାନ ବନ୍ଧିଲ୍ଲ ଅମାପ ।
ନାରଚକୁ ଭୀମସେନ ଅଟନ୍ତି ନିର୍ଭୟା
ଶତସିଂହର ପ୍ରସଙ୍ଗେ ପାଷାଣ ତା କାୟା ।
ତହୁଁ ମାରୁତି ଉଠିଲ୍ଲ ପୁଣି ମହାବେଗେ
ଗଜ ଅଶ୍ୱ କଢ଼ାଇ ନେଇ ଅତି ବେଗେ ।
କହୁତ ସେନା ପଡ଼ିଲେ ତହୁଁ ମହୀ ଲୋଟି
ମହାବାତେ ଯେସନେକ ରମ୍ଭାବନ ଲୋଟି ।
ନିଜ ଦଣ୍ଡ ଅପଚୟ ଦେଖିଣ ଛୁକ୍ମଣ
ଭୀମସେନ ଉପରକୁ ଧାଇଁଲ୍ଲ ଆପଣ ।
କ୍ରୋଧଭରେ ନିଜ ହସ୍ତେ ଧରି ଅସିପତ୍ର
ବୁଲାଇ କେଇ ପିଟିଲ୍ଲ ଭୀମସେନ ଗାତ୍ର ।

ଦେଖି ମାରୁତ ପାଡିଲା ତାର ଗଦାବର
ବେନଖଣ୍ଡ ରୁକ୍ମଣର ଦେଲା ଅସିବର ।
ପୁଣି ମହାରାଗାନ୍ୱେ ପବନ ଆତ୍ମଜ
ରୁକ୍ମଣ ଉପରେ ନେଇ ପିଟିଲା ଗୁରୁଜ ।
ଶିରରୁ ରକ୍ତ ବହିଲା ସେ ଗୁରୁଜେ ଫାଟି
ରୁକ୍ମଣବୀର ପଡନ୍ତେ ଯାଏ ମହୀ ଲେଟି ।
କୋପଭରେ ଧାଇଁଲେ ଭୀମ ମହାବଳ
ଆକର୍ଷି ଧରିଲା ବେଗେ ରୁକ୍ମଣର ବାଳ ।
ରଙ୍ଗବର୍ଣ୍ଣ ଆଖିକରି ଓଷ୍ଠେ ଚାପି ଦନ୍ତ
ବାମକରେ କେଶ ଖଡ୍ଗ ଧରି ଦକ୍ଷହସ୍ତ ।
ରାଗରେ ଛେଦିବ ବୋଲି ରୁକ୍ମଣର ମାଥ
ଦେଖି ସାରଥି ଧରିଲା ଭୀମସେନ ହାତ ।
ବାବୁ ରାଜା ନିମନ୍ତ୍ରଣେ ଆସି ଧର୍ମ ଅର୍ଥେ
ଏଡେ ରାଜାକୁ ନାଶ ତୁ କରିବୁ କେମନ୍ତେ ।
ସମ୍ବରିଲା ସାରଥିର ବାକ୍ୟେ ଅସିବର
ରୁକ୍ମଣ ବୋଲେ ତୁ କେଉଁ ଦେଶ ଦଣ୍ଡଧର ।
ମୁହିଁ ଯୁଦ୍ଧକରି ହାରେ କୃଷ୍ଣ ବଳରାମେ
ଅଷ୍ଟାଙ୍ଗେ ସେ ବଳରାମ ଜିଣିଲେ ସଂଗ୍ରାମେ ।
ଭୀମ ବୋଇଲା କର୍ପା ତୁ ରାମ କୃଷ୍ଣେ ବୈରୀ
କି ନିମନ୍ତେ ତାହାସଙ୍ଗେ ତୁମ୍ଭ ଦ୍ୱନ୍ଦ୍ୱକାରୀ ।
ରୁକ୍ମଣ ବୋଇଲା ତୁମ୍ଭେ ଶୁଣ ବୀରମଣି
ରୁକ୍ମିଣୀ ଦେବୀ ଅଟନ୍ତି ମୋହର ଭଉଣୀ ।
ତା ହକାଶେ କରିଥିଲେ ପିତା ସେ ହରିଙ୍କୁ
ବଳାତ୍କାରେ ମୁଁ ବରିଲି ଯେ ଶିଶୁପାଳକୁ ।
ତହିଁର ନିମନ୍ତେ ଜାଣ ହେଲା ବଡ଼ଦ୍ୱନ୍ଦ୍ୱ
ତେଣୁ ମୋତେ ଅପମାନ ଦେଲେ ରାମଚନ୍ଦ୍ର
ରୁକ୍ମଣ ବାକ୍ୟେ ଆଶ୍ଚର୍ଯ୍ୟ ହୋଇଲେ ମାରୁତ
ସେହିକ୍ଷଣି ତାର କେଶ ଛାଡ଼ିଲେ ଝଟତ ।
ଭୁଜେ ଭୁଜ ଭିଡ଼ିକରି କଲେ କୋଳାରତ
ତୁମ୍ଭ ସୋଦର ଆମ୍ଭର ପ୍ରାଣର ସଙ୍ଗାତ ।
ହେ ରୁକ୍ମଣ ତୁମ୍ଭ ରାମ ହରିଙ୍କର ଶଳା
ରୁକ୍ମିଣୀଙ୍କ ହେଇ ତୁମ୍ଭ ପ୍ରଦ୍ୟୁମ୍ନ ମଉଳା ।
ଅହୋ ଆମ୍ଭର ତୁମ୍ଭର ଅପାର ପୀରତି
ନ ଜାଣିଣ ତୋତେ ମୁହିଁ ଚିହ୍ନିଲି ଦୁର୍ଗତି ।
ନ ଜାଣିଣ ଦ୍ରୋହ କଲି ତୁତ ଆମ୍ଭ ବନ୍ଧୁ
ଭାଗ୍ୟବଶେ ତୋର ଶିର ନ ଛେଦିଲି ବନ୍ଧୁ ।

ଶୁଣିଣ ରୁକ୍ମଣ ଶତ ସହସ୍ର ପ୍ରଣମି
ସାଧୁ ବୃକୋଦର ମୋତେ ରକ୍ଷାକର ସ୍ୱାମୀ ।
ବଡ଼ ଅପରାଧୀ ମୁହିଁ ଅଟଇ ଦୁର୍ଜନ
ଶରଣ ରକ୍ଷଣ କ୍ଷାନ୍ତି କର ଭୀମସେନ ।
ବୃକୋଦର ବୋଲେ ହେଲୁ ପ୍ରାଣରୁଁ ଅଧିକ
ଯାଗକୁ ଚଳ ହେ ଏବେ ହୋଇଣ ଉତ୍ସୁକ ।
ଧନୁମାସ ଶୁକ୍ଳପକ୍ଷ ପୂର୍ଣ୍ଣମୀର ତିଥି
ପୁଷ୍ୟା ନକ୍ଷତ୍ର ପ୍ରବେଶ ହୋଇବୁ ଉଚିତ ।
ରୁକ୍ମଣ ବୋଇଲା ସ୍ୱାମୀ ଦୟା ଥାଏ ଯେବେ
ମୋହର ପୁର ମଣୋହି କରନ୍ତୁ ଯେ ଏବେ
ଭୀମ ବୋଇଲେ ମାଇଲି ତୋର ବହୁ ସୈନ୍ୟ
ତୋହର ରାଜ୍ୟେ ଶୁଭୁଛି ବହୁ ଶୋକଧ୍ୱନି ।
ଆବର ତୋତେ ମୁଁ କଲି ରଣେ ପରାଜୟ
ଏ ସ୍ଥଳେ ଭୋଜନ ଅଟେ ଅତି ଅବଧେୟ ।
ବାରତା ପାଇ ଅଇଲା ଭୀଷ୍ମକ ରାଜନ
ସୁତବଚେ ଦର୍ଶନ ତେତେ କଲା ଭୀମସେନ
ସ୍ନେହେ ଧୋଇଲେ ନେଇ ପାଦ୍ୟ ଅର୍ଘ୍ୟଥାଳ
ଭୀମସେନଙ୍କୁ କରନ୍ତି ଯାଇ କଉଗୁଳ ।
ଆନନ୍ଦରେ ଅଶ୍ରୁଜଳ ବହେ ଆଖି ବେନି
ଭୀଷ୍ମକ ଯେ ପୂଜା କଲା ବହୁ ରତ୍ନ ଘେନି ।
ଅନେକ ବିନୟେ କହେ ଭୀଷ୍ମକ ନୃପର
ତୁମ୍ଭେ ଯେ ଅଟ ଦେଷ୍ଟ ମ ହରର ଠାକୁର ।
ତାର ପାରୁ ମାରମାରୁ ହେ ମାରୁତ ତୁମ୍ଭ
ତୋହ ବିନା ରକ୍ଷାକର୍ତ୍ତା ଆନ କେହି ନାହିଁ
ମୁହିଁ ନ ଜାଣିଣ ଦେବ ମରାଇଲି ସୈନ୍ୟ
ମୁଁ ହାରିଲି ତୁମ୍ଭର ବା କସ ଅପମାନ ।
ମୋପୁରକୁ ସ୍ୱାମୀ ଏବେ ଆସିବା ହେଉନ୍ତୁ
ଶ.ଜାଲା ଭୋଜନ କରି ଶାନ୍ତିକ ଭଜନ୍ତୁ ।
ମୋର ପୁରେ ପଡୁ ଏବେ ତୋର ପାଦରଜ
ଏ ହୀନ କୁଣ୍ଡୀନଗର ବଢ଼ୁ ଐଶ୍ୱର୍ଯ୍ୟ ।
ତୋ ସ୍ନାନପାଣି ପଡିଲେ ରାଜ୍ୟରେ ମୋହର
ସୁଖଧାରେ ବରଷେ ଯେ ବୃଷ୍ଟି ସୁରେଶ୍ୱର
ଆଜହୁଁ ଯେ ନିଷ୍କଣ୍ଟକ ହେଲା ରାଜ୍ୟ ମୋର ।
ଆଜହୁଁ ଯେ ସୁଖୀ ହେଲେ ମୋ ପ୍ରଜା ନଗର
ଆଜି ସାର୍ଥକ ହୋଇଲା ମୋହର ଜୀବନ
ତୁମ୍ଭ ବୃକୋଦର ଅଟୁ ମୋର ଇଷ୍ଟଧନ ।

ଏପରି ସ୍ତୁତି କରଇ ଭୀଷ୍ମକ ନୃବର
ଶୁମର ଯେ ଢାଳୁଛନ୍ତି ଦେବ ପାଞ୍ଚଶର ।
ଇନ୍ଦ୍ର ଦେବତାଙ୍କୁ ଦେଖି ଯେହ୍ନେ ହୃଷ୍ଟମନ
କୁଣ୍ଡୀ ନଗରରେ ତେହ୍ନେ ଉତ୍ସବର କୃତ୍ୟ
ସୁବର୍ଣ୍ଣ କଳଶ ନେତ ପତାକା ଉଡ଼ାନ୍ତି
ଆମ୍ବପତ୍ର ତୋଣାମାନ ଲମ୍ବେ ଚଉକତି ।
ଆଲଟ ପାଟଛତ୍ର ଯେ ଅନେକ ଗହନେ
ପୂର୍ଣ୍ଣ କଂଖ ମଣ୍ଡିଲେ ଅତି ପରମେନେ ।
ଏପରି ଉତ୍ସବ କରି ଭୀଷ୍ମକ ନୃବର
ବହୁ କୃତକୃତ୍ୟ ହେଲେ କୁଣ୍ଡୀ ନଗ୍ର ନର ।
ଯହୁଁ ପ୍ରସନ୍ନ ମୋତେହିଁ ପଣ୍ଡୁ ପୁତ୍ରଗଣ
ଏଣବେ କାହାକୁ ମୋର ଭୟ ଅଛି ପୁଣ ।
ଏପରି ଉତ୍ସବ କରି ଭୀଷ୍ମକ ନୃବର
ସାନନ୍ଦେ ଭୀମଙ୍କୁ ଦେଲ ଅଗଣାର ଘର ।
ଭୀମଙ୍କ ସ୍ଥାନରେ ଦେଲ ଅନେକ ଯୋଗାଡ଼
ସୁବାସ ତଣ୍ଡୁଳ ଘୃତ ପକ୍ୱାନ୍ନ ହରଡ଼ ।
ଭୀମଙ୍କ ସୂପକାର ତା କରଇ ରନ୍ଧନ
ବଳମ୍ବ ଦେଖିଣ ତହିଁ ଆପେ ଭୀମସେନ ।
ସହରି ଗଉଣି ନଳବଧି ତେନ ପ୍ରୀତି
ହାଣ୍ଡେ ପ୍ରସନ୍ନେ ଅନଳ ଯାହା ଦେଉଛନ୍ତି ।
ବୋହିଲ ସୁମର ଭୀମ ଅପେ ପାକେ ଲଗି
ତତକ୍ଷଣେ ରନ୍ଧନ ଯେ ହୋଇଲାକ ବେଗି ।
ଶତେ ପଞ୍ଚ ବ୍ୟଞ୍ଜନ ଆଦି ଦ୍ରବ୍ୟମାନ
ହାତ ଲଗନ୍ତେ ହୋଇଲା ଅମୃତ ସମାନ ।
ପାଞ୍ଚଘଡ଼ି ମଧ୍ୟେ ସବୁ ରନ୍ଧଣା ହୋଇଲା
ସ୍ନାହାନେ ଭୋଜନେ ବସେ ପବନର ବଳା ।
ସଜ ହୋଇଅଛି ତହିଁ ସାତଘଡ଼ି ପୂର୍ଣ୍ଣ
ଭୋଜନ କଲେ ଷଠିଏ ପଞ୍ଚଟି ଯେ ଅନ୍ନ ।
ଆଉ ଅନ୍ନ ଥିଲ ତହିଁ ବାରଶତ ପୌଟି
ଯୋଦ୍ଧା ସଇନ୍ୟମାନଙ୍କୁ ସେ ସମସ୍ତ ଅଣ୍ଟି ।
ଭୋଜନେ ଅତୃପ୍ତି ଭୀମ ସଂଗ୍ରାମେ ଅତୃପ୍ତି
ଶୃଙ୍ଗାରେ ଅତୃପ୍ତ ଭୀମ ଶୟନେ ଅତୃପ୍ତି ।
ଭୋଜନ ସାରିଣ ସାର କଲେ ଆଗମନ
ସିଂହାସନେ ବସେ କଲେ ଅତି ହୃଷ୍ଟମନ ।
ଛକୁଣ ଆପେ ତାମ୍ବୁଳ ଭଙ୍ଗି ଆଣଦେଲେ
ନାନାଜାତି ପୁଷ୍ପେ ତାଙ୍କୁ ବେଶ ସଜାଇଲା ।

କୁଟୁମ୍ବପାକ ଭୋଜନଣ କୁଣ୍ଡୀ ନରେଶ୍ୱର
ଭୃତ୍ୟପ୍ରାୟ ଖଟିଅଛି ଭୀମଙ୍କ ପାଶର ।
କ୍ଷୀରସ୍ତରେ ଶାଢ଼ୀ ଦେଇ ପବନ ତନୟ
ବୋଲେ ବଡ଼ ତୃପ୍ତି କଲ ମୋତେ କୁଣ୍ଡି ରାୟ
ମାଗ ଆହେ ଭୀଷ୍ମକ କୁ ଯେ ତୋହର ଇଚ୍ଛା
ସତ୍ୟ ମୋର ପୂରାଇବ ତୋର ମନୋବାଞ୍ଛା ।
ଭୀଷ୍ମକ ବୋଇଲା ଯେବେ ବର ଦେବ ସ୍ୱାମି
ମହାଭାରତ ଯୁଦ୍ଧେ ମୋ ପୁତ୍ରେ ଥିବୁ ଟହ୍ଲି ।
ଭୀମ ବୋଲେ ତୋର ପୁତ୍ର ଥିଲେ ମୋରକତ
କେହି ତାହାଙ୍କୁ ଦେଇ ନ ପାରିବ ବିପତ୍ତି ।
ଯଦ୍ୟପି ରହିବେ ସେହି କୌରବଙ୍କ ସାଥ
ତହିଁଲେ ନ ମାରିବ ଯେ ହେବ ର ମୋ ସତ
ମହତ ଲୋକଙ୍କ ବାଣୀ ପାଷାଣର ଗାର
ଭୀଷ୍ମକ ବୋଲେ ନିର୍ଭୟ ହେଲ ମୋ କୁମର
ରଥ ଅଡ଼ାଇ ପ୍ରଭାତରେ ଭୀମସେନ ବଳେ
କୁନ୍ତୀନଗ୍ର ତେଜିଗଲେ ପଦ୍ମଦଳ ରାଜ୍ୟ ।
ସିଂହାସନେ ବସିଅଛି ପଦ୍ମନକେଶରୀ
ପାଞ୍ଚଶତ ପାରିଦନ୍ତ ଯେହ୍ନ ଭୋଗକର ।
ସପତ ଅକ୍ଷଉଣୀ ବଳ ତାହାକୁ ଖଟାଇ
ପଦ୍ମଦଳ ଦେଶର ସେ ଠାକୁର ଅଟଇ ।
ପଦ୍ମଦେଶେ ପରଦେଶ ଭୀମ ମହାବୀର
ବୀରତୂର ଶବଦରେ କମ୍ପେ ତିନପୁର ।
ରାଜାର ଅଗ୍ରତେ ଯାଇ କହିଲେ ମୁନେହି
କେଉଁ ଦେଶ ରଜା ଆମ୍ଭ ରାଜ୍ୟକୁ ଆସଇ ।
ରଥ ଗଜ ଅଶ୍ୱ ଆଉ ପଦାତି ବହୁଳ
ବୀରତୂର ଶବଦରେ କମ୍ପେ ଭୂମଣ୍ଡଳ ।
ବହୁ ପ୍ରତାପ ତାହାର ବଡ଼ ବଳବନ୍ତା
ଯୋଦ୍ଧାଗଣେ ସମର୍ଥ ପ୍ରାକ୍ରମେ ଶକତା ।
ବସ୍ତରଣ ବୁଝ ଆହେ ପଦ୍ମନ କେଶରୀ
ସମାଧାନ କରିବା କି ସମର ବା କରି ।
ଶୁଣିଣ ରାଜ୍ୟଇଶ୍ୱର କଥା କୁତୂହଳେ
ତିନଲକ୍ଷ ଯୋଦ୍ଧା ଡାକ ରଣେ ଆଜ୍ଞା ଦେଲେ
ସାଜ ଆରେ ତୁରଙ୍ଗମ ମହାବଳବନ୍ତ ହସ୍ତୀ
ରାଜ୍ୟେ ପୂରାଇ ନ ଦଅ ଧରିଆଣ ରଥୀ ।
ପଦ୍ମନକେଶରୀ ରାଜା ଶୁଣିଣ ବଚନ
ଧାଇଁଲେ ସେ ସମଦଣ୍ଡ ଯେହ୍ନ ଯୋଦ୍ଧାଗଣ ।

ଉଦ୍ଦଣ୍ଡ ହେଲା ଲାଗିଲା ଡହ୍ନି ବେନି କୋଟି
ପ୍ରଳୟକାଳେ କି ମନ୍ଦର ଗିରି ଆସେ ଘୋଟି ।
ମାରମାର ଧର ଧର ପଡ଼ୁଅଛି ଡାକ
ପୃଥ୍ୱୀ କମ୍ପେ ଶୁଣିକରି କ୍ଷତ୍ରିଙ୍କର ହାକ ।
ଭୀମସେନଙ୍କୁ ବୋଲଇ ମରୁତ ସାରଥି
ଦଣ୍ଡ ସାଜ ଆସେ ପରା ଏ ଦେଶ ନୃପତି ।
ବିଶେଷ ଅନ୍ଧାର ଅତି ଘୋର ଏ ରଜନୀ
ସଂଗ୍ରାମେ କେହ୍ନ ପଡ଼ିଲେ ନ ପାରିବା ଚିହ୍ନି ।
ଏବେ ତରିବାକୁ ଆମ୍ଭେ କେବଣ ଉପାୟେ
ଏକ୍ଷଣି ମରିବେ ଯାର ସଇନ ଲକ୍ଷଏ ।
ଭୀମସେନ ବୋଲେ ତୁମ୍ଭ ନ କହ ଏମନ୍ତ
ଥୋକାଏ ନ ପଡ଼ିଲେ ସେ ନ ଛାଡ଼ଇ ମତ୍ତ ।
ମୁଖ୍ୟ ଅନର୍ଗଳ କ୍ଷତ୍ରୀ ଅଟେ ରଣରଙ୍ଗୀ
ସବୁଙ୍କୁ ମାରନ୍ତି ମାତ୍ର ହରିଙ୍କି ମୋ ଶଙ୍କା ।
ଯେତେ କଷ୍ଟ ପାଉଥିଲେ ଏହି ରାଜାମାନେ
ଜଗ ବଢ଼ କରିଥିଲା ଦ୍ୟୁନ୍ତା ଦ୍ୟୁତାଶନେ ।
ଜଗ ମାରି ଉଦ୍ଧରିଲି ଏ ରାଜା ସବୁନ୍ତି
ହଶାଶଏ ଦନ ମଧ୍ୟେ ଭୁଲିଲେ ଏ ପ୍ରୀତି ।
ଏହା କହୁ କହୁ ଭୀମ ହୋଇ ମହାରଥ
ପର୍ବତ ଉପରୁ ଡେଇଁ ପଡ଼ିଲେ ସେ ବେଗ ।
ନିଦାଘ କାଳେ ଦିଶଇ ଯେସନେ ତପନ
ସେହିପରି ଦେଖାଗଲା ଭୀମଙ୍କ ବଦନ ।
ଶୂନ୍ୟଭୁବନେ ଭେଦେ କି ଘୋରରୂପ କାୟେ
ବେନି ଲୋଚନ ବୁଲଇ କାଳଚକ୍ର ପ୍ରାୟେ ।
ମନ୍ଦରଗିରି ଯେଶନେ ନିଜସ୍ଥାନୁ ଉଠି
ଆସେ ସେ ସ୍ୱରୂପ ଦିଶେ ଭୀମ ଦେହ ଗୋଟି
ବିରୂପ ଯେ ବୀରଭଦ୍ର ବେନି ସେନାପତି
ଦୁଇପାଶେ ରହିଛନ୍ତି ଭୀମସେନ କତି ।
ରାହୁ କୁଳେ ଦିଶେ ଯେହ୍ନେ କେତୁ ଯେମଙ୍ଗଳ
ସେହି ସ୍ୱରୂପ ଦିଶନ୍ତି ତିନ ଅନର୍ଗଳ ।
ଉଠିଲେ ଯେ ରେ ରେ କାର କରି ଗଜରାଜ
ହାସେ ପଦ୍ମବନଥାଟ ପଳାଇଲେ ଭଜ ।
ପାଣ୍ଡବ ସୁନ୍ଦର କରେ ଗଦାବର ଧରି
ଯେହ୍ନେ ମତ୍ତଗଜ ଯାଏ ନ ମାନି କେଶରୀ ।
ବ୍ୟାଘ୍ର ଦେଖିଣ ଯେସନେ ଦୁରୁଡନ୍ତି ଗାଈ
ସେପରି ସଇନମାନେ ଗଲେକ ପଳାଇ ।
ଗିରିବର ପାୟୁ ଭୀମ ପିଟେ ଗଦା ତୋଳି
ରଥ ଗଜ ଅଶ୍ୱ ସୈନ୍ୟ ସବୁ ହୋନ୍ତି ଧୂଳି ।
କୋପଭରେ ଅଧରରେ ଗୁପିଣ ଦଶନ
ମେଘ ଗର୍ଜ୍ଜନ ପରାୟେ କଲା ଗରଜନ ।
ଅଶୀସହସ୍ର ଯୋଦ୍ଧାଏ ଥିଲେ ଆଗୁଆଣି
ପ୍ରହାରରେ ଉଡ଼ିଲେ ସେ ଅଗ୍ନିକଣା ଜାଣି ।
ଗଦାଘରେ ବୁଲିଅନ୍ତେ ଉଡ଼ି ରଥମାନ
ବହୁଦୂରେ ପଡ଼ନ୍ତି ସେ ହୋଇକରି ଚୂର୍ଣ୍ଣ ।
ରଜା ନବରେ ପଶିଲେ ଭୀମ ଗଜଗତି
ଗଦାଘାତେ ଘରମାନ ତାଡ଼ି ଦେଲେ ଭାଜି ।
ଭୁଜାମାଦାସ୍ୟାରେ ହେଲେ ମୃଆଖି ନଷ୍ଟ
ସେପରି ଭାଙ୍ଗିଲେ ଘର ବୃଷାନ୍ଧ ବହୁତ ।
ଦେଖିଣ ପଦ୍ମ କେଶରୀ କରି ମହାଭୟେ
ଗୃହ ଗୁଡ଼ିଣ ପଳାଏ ପଛକୁ ନ ଚାହେଁ ।
ଆରେ ରହ ରହ ବୋଲି ଡାକଇ ପାବନି
କାହିଁକି ପଳାଇଛୁରେ ଜୀବନକୁ ଘେନି ।
ମରୁତ ସାରଥି କହେ କ୍ରୋଧ ଶାନ୍ତକରି
ରାଜା ଆଗେ ଜଣାଇବା ଆମ୍ଭେ ଆସିବାରି ।
ନିସତ ହୋଇ ପଳାଏ ରାଜା ଗୃହ ତେଜି
ସୈନ୍ୟମାରି ରାଜ୍ୟ ତାଡ଼ି ପକାଇଲ ଭାଜି ।
ବୃକୋଦରକୁ ସମର୍ପି ଚଳଇ ମରୁତ
ପଦ୍ମ କେଶରୀ ପଳାନ୍ତେ ଜଗାଇଲା ପଥ ।
ରହ ହେ ପଦ୍ମକେଶରୀ କାହିଁକି ପଳାଉ
ଖେଳନ୍ତା ସିଂହ ମୁମୁରେ କେତେ ଦୂର ଯାଉ
ଜଗସନ୍ଧ ନିସୂଦନ ପ୍ରତିଜ୍ଞା ଯାହାର
ଭକତବତ୍ସଳ ସେହୁ ଶରଣ ପଞ୍ଜର ।
ପଶ୍ଚିମ ବଇଣେ ଆସେ ତୁ ଜାଣୁ ନାହିଁକି
ତଅଳେ ବାୟୁ ମୁମୁରେ ପଳାଉ କାହିଁକି ।
ଭୀମ ବଚନେ ଶୁଣି ପଦ୍ମନ କେଶରୀ
ରଥପରୁ ବେଗ ହୋଇ ପଡ଼ିଲା ଉତ୍ତରି ।
ଶୀଘ୍ର ସୁମନ୍ତ୍ରୀ ବୋଲଣ ବେନି ପାଟରାଣୀ
ତାଙ୍କୁ ଘେନି ପ୍ରଣମିଲା ପଦ୍ମ ନୃପମଣି ।
ଭୀମସେନ ତୁଷ୍ଟ ହୋଇଛନ୍ତି ରଥପର
ପ୍ରଣମିଲା ଶିରେ ହସ୍ତ ଦେଇ ନୃପବର
ପଦ୍ମକେଶରୀ ବହୁତ ଦୂରୁ ପରଣାମି
ବୋଲେ ସବୁ ଦୋଷ ମୋର କ୍ଷମାକର ସ୍ୱାମୀ ।

ଜରାସନ୍ଧ ଘରେ ମୁହିଁ ହୋଇଥିଲି ବନ୍ଦୀ
ଅନେକ ଶାସ୍ତି ସେ ମତେ ଦେଉଥିଲା ବାନ୍ଧି ।
ଘୋର କଷଣରୁ ମୋତେ ଉଦ୍ଧରିଲୁ ସ୍ୱାମି
ଧିକ ମୋହର ଜୀବନ ନ ପାରିଲି ଚର୍ଚ୍ଚି ।
ସ୍ୱାମି ମୁହିଁ ମତିହୀନ କିମ୍ବା ମୋର ଜ୍ଞାନ
ପରଲୋକ ବାନ୍ଧବ ହେ ତାର ଭୀମସେନ ।
ଏହା କହି ଶୀତରଣେ ନମେ ଯୋଡ଼ି ପାଣି
ଭୀମସେନ ଆଜ୍ଞାଦେଲେ ଉଠ ନୃପମଣି ।
ଆଜ୍ଞା ପ୍ରମାଣରେ ପଦ୍ମକେଶରୀ ଉଠିଲା
ଆନନ୍ଦରେ ଅଶ୍ରୁଜଳ ନେତ୍ରୁ ବହାଇଲା ।
ଅକ୍ଷତ ଗୁବାକ ତାକୁ ଦେଲେକ ପାବନ
ଚଳ ହୋ ପଦ୍ମକେଶରୀ ତୋର ଦଣ୍ଡ ଘେନ ।
ଶୁଭେଣ ପ୍ରବେଶ ହୁଅ ରାଜସୂୟ ସଭା
ଅଜ୍ଞାନ ପଣରେ ଦୋଷ କଲୁ ତୁହି ଅବା ।
ପୁଣ ପୁଣ ପ୍ରଣମିତ ପଦ୍ମ ଦଣ୍ଡଧର
ସ୍ୱାମି ମୋ ପୁରେ ମଣୋହି ପାଇଁ ବିଜେ କର
ଭୀମସେନ ବୋଲେ ସୁଖଭୋଗ ଇଚ୍ଛା ନାହିଁ
ଯଜ୍ଞ ନିମନ୍ତେ କୃଷ୍ଣଙ୍କ ଆଜ୍ଞା ଅଛି ଏହି ।
ନଉଦିନ ମଧ୍ୟେ ଯେବେ ରାଜା ନ ଆସିବ
ସେ ଯେଉଁଠି ଥିବ ତହିଁ ଛେଦନ ହୋଇବ ।
ଆହୋ ରାଜା ଏହିପରି ବାସୁଦେବ ଆଜ୍ଞା
ମୁହିଁ ତାଙ୍କ କଥା କରି ନ ପାରେ ଅବଜ୍ଞା ।
ଆମ୍ଭେ ରହି ନ ପାରିବୁ ତୁହି ଅପରାଧୀ
ସହସ୍ରେକ ରାଜା ନଉ ଦିବସରେ ସାଧି ।
ଆହେ ପଦ୍ମକେଶରୀ ତୁ ଜରା ବଧକାଳେ
ରାଜସୂୟ ଯାଗ ବୋଲିଣ କହିଲି ଯେ ବେଳେ
ତେତେ କଥା ପଚାରିଲୁ ତୁହି ତାଙ୍କପାଶେ
ପୁଣ ସଂଗ୍ରାମ କରିଲୁ କଥା ଅବିଶ୍ୱାସେ ।
ଏହିପରି କହି ଭୀମ ରାଜ୍ୟକୁ ଚଳାଇ
ମରୁତକୁ ଆଜ୍ଞା ଦେଲେ ରଥ ଦଅ ବାହି ।
ପଦ୍ମଦଳ ନରପତି କରିଲା ପ୍ରସ୍ଥାନ
ବିଜେ ପାଣ୍ଡବ ସୁନ୍ଦର ହିରଣ୍ୟ କାନନ ।
ହିରଣ୍ୟ ନାମରେ ତହିଁ ଅଛି ନଦୀଗୋଟି
ପଞ୍ଚଧାର ପର୍ବତରୁ ବାହାର ସେ ଫୁଟି ।
ସେ ନଦୀ ପଶ୍ଚିମେ ଅଛି ମାଧବ ନୃପତି
ହିରଣ୍ୟ ନଗ୍ରର ସେହି ଅଟେ ଅଧିପତି ।

ଯେ ରାଜାର ଦେଶାନ୍ତରେ ପଦ୍ମଦେଶେ ଥିଲେ
ଯାଦବସେନ ଆଗରେ ସମସ୍ତ କହିଲେ ।
ପଶ୍ଚିମଦିଗ କରଣେ ବୀର ବୃକୋଦର
ଅନେକ ରାଜାର ଦର୍ପ କରିଅଛି ଚୂର ।
କେଉଁ କ୍ଷଣେ ଯେହି କଥା ଜଗଜ୍ଜେଠି
ଯମଦଣ୍ଡ ଘେନି ସ୍ୱର ଆଣିବା ପାଗ୍ରେଟି ।
ଦେଶାନ୍ତରଙ୍କ ମୁଖରୁ ଏ ବାରତା ଶୁଣି
ଅଶୀଲକ୍ଷ ଭୁଜଙ୍ଗମ ରାଜାର ପଲ୍ଲାଣି ।
ବାରବାଜ ସ୍ୱର୍ଣ୍ଣେ ଗଢ଼ା ତ ହାର ମୁକୁଟ
ମାଣିକ୍ୟ ମୁକ୍ତାରେ ହେହି ବଶେ ଝଟ ଝଟ ।
କା ହସ୍ତେ ଆଲମ୍ବ କା ହସ୍ତରେ ପାଟଛତ୍ର
ସ୍ୱମର ପତକା ଅଶୀଲକ୍ଷ ଯୋଦ୍ଧା ହସ୍ତ ।
ଅନ୍ଧିକ ହିସ୍ୱାକୁ ଭୀମ କରୁଅଛି ବସି
ଏ ବେଳେ ମାଧବ ରାଜା ପ୍ରବେଶିଲା ଆସି
କାଳିଞ୍ଜନ ପଡ଼ିହାରୀ ଭୀମଙ୍କ ଦ୍ୱାରର
ଠାକୁର ଆଗ୍ଭିକଦେଲେ ରହେ ସେହିଠାର ।
ଯୁମ୍ଭର ଜଣାଏ କାଳିଞ୍ଜନ ପଡ଼ିହାରୀ
ମାଧବ ରାଜା ଆସିଛି ଦରଶନ କରି ।
ଆଜ୍ଞା ହେଲା ଠାକୁରଙ୍କୁ ଆସ ହୋ ମାଧବ
ଦେଖିଲେ ଥାଟ ଲୋକଙ୍କ ମନେ ଉକ୍ରଭବ ।
ଆଲଟ ଚାମର ଛତ୍ର ସବୁ ଉପଲେଖି
ଦୂରେ ଥାଇ ଭୀମସେନ ତାହାସବୁ ଦେଖି ।
ରହାନ୍ତେ ମାଧବସେନ କଲା ନଉଛାଳ
ଆଲଟ ଚାମର କେଳ ପଙ୍ଖାମାନ ତାଳ ।
ଦେଖା ଦରଶନୀ ସହ ସସ୍ତ ଘର ଧନ
ଘେନି ନଉଛାଳ କଲା ସେ ମାଧବସେନ ।
ତାକୁ ଦେଖି କୋଳାଗ୍ରତ କଲେ ସ୍ନେହେ ଭୀମ
ଆମ୍ଭର ସୋଦର ନାମ ତୁମ୍ଭର ଯେ ନାମ ।
ଶ୍ରୀହସ୍ତେ ଶାଢ଼ୀ ତାହାକୁ ଦେଲେ ବୃକୋଦର
ଦଣ୍ଡ ଘେନ ରାଜସୂୟେ ଯାଅ ନୃପବର ।
ଭୀମଙ୍କ ବଚନେ ବୋଲେ ସେ ମାଧବସେନ
ସ୍ୱାମି ଅଜ ହୋଇଅଛି ମୋର ପିତୃଦିନ ।
ଗଣ୍ଡା ଗୋଟିଏ ମାରଣ ଆଣିବଇଁ ମୁହିଁ
ଭୋଜନ କରି କାରଣ କରିବେ ଗୋସାଇଁ ।
ଏ ବଚନ ଶୁଣି ଭୀମ ହୋଇଲେ ତୃପତି
ଉତ୍ତମ ଭୋଜନ ଦେଲେ ମାଧବ ନୃପତି ।

ବସ୍ତ୍ର ଶୀତଳ ନଯୋଗୀ ଦ୍ରବ୍ୟମାନ ଦେଲେ
ସ୍ନାହାନ ସାରି ଭୋଜନେ ଭୀମସେନ ଗଲେ ।
ଆଚମନ ସାରିଣ ଯେ ବୀର ବୃକୋଦର
ହିରଣ୍ୟ ନଗରୁ ଥାଟ ଚଳାଇ ତାଙ୍କର ।
ଚେଦଦେଶ ବୋଲି ରାଜ୍ୟ ଅଛଇ ଗୋଟିଏ
ସେ ରାଜ୍ୟ ପ୍ରବେଶ ହେଲେ ପବନ ତନୟେ ।
ଚେଦିଦେଶ ରାଜା ନାମ ଅଟେ ଦମଘୋଷ
ଶାଲ୍ୱ ଶିଶୁପାଳ ତାର ବେନଗୋଟି ଶିଷ ।
ପାଞ୍ଚ ପର୍ବେ ଯେ ରାଜପଦ୍ମ ତାର ବଳ
ଅସୁର ଅଂଶରେ ଜାତ ସେହୁ ଶିଶୁପାଳ ।
ପିଙ୍ଗଳଭଦ୍ରା ବୋଲିଣ ତହିଁ ନଦୀଗୋଟି
ଶିବ ପିଙ୍ଗଳ ଜଟାରୁ ଆସୁଅଛି ଫୁଟି ।
ସେ ନଦୀ କୂଳରେ ଚେଦି ନଗ୍ର ଯେ ବସଇ
ରାଜ୍ୟ ଆୟତନ ଶତ ଯୋଜନ ଅଟଇ ।
ତାହାକୁ ଖଟନ୍ତି ବଶାଶତେ ନରପତି
ପଞ୍ଚବଂଶଯସ୍ତ୍ର ପାଞ୍ଚ ଅଇରାବତ ହସ୍ତୀ ।
କୋଟିଏ ଲକ୍ଷ ସାଜଇ ରେଖାର ତୁରଙ୍ଗ
ଲେଖାରେ ଜଗ୍ରସନ୍ତଇ ବସୋଇ ଅର୍ଦ୍ଧାଙ୍ଗ ।
ସେ ରାଜ୍ୟ ପ୍ରବେଶ ଯାଇ ପଣ୍ଡୁଙ୍କ କୁମର
ଷାଠିରୁ ଶବଦରେ ଉଚ୍ଛୁଳେ ନଗର ।
ମୃଗସ୍ବା ବନୋଦେ ଭ୍ରମୁଥିଲା ଶିଶୁପାଳ
ରେଖା ଅଶ୍ୱ ଖୁରପାଣି ପାଞ୍ଚଶତ ବଳ ।
ବନେ ଭ୍ରମଇ କୁମର ଦେଖଇ ବନୋଦେ
ବନ ଗହନ କନ୍ଦର ପୂରେ ଘଣ୍ଟାନାଦେ ।
ସହସ୍ରେକ ଲାଗିଅଛି ହୁଳା ଯେ ବହୁଡ଼
ପାରିଧି ବନୋଦେ ମୃଗ ମାରେ ସେ ଦଉଡ଼ ।
ମାରଇ ଯେ ବାଘଭାଲୁ ଶୃଗାଳାଦି ଜୀବ
ଗଣ୍ଡା ମୃଗ ଧରେ ହୋଇ କଉତୁକ ଭାବ ।
କୃଷ୍ଣାଜନ ମୃଗ ମାରେ ଋଷିଙ୍କ ନିମନ୍ତେ
ଆଉ କେତେ ଜୀବ ମାରେ ଭୋଜନର ଅର୍ଥେ
ନନ୍ଦାବର୍ତ୍ତକ ବୋଲିଣ ପର୍ବତ ଗୋଟି
ସେ ଗିରି ଉପରେ ଯାଇଁ ଶିଶୁପାଳ ଉଠି ।
ବନ ମଧ୍ୟରେ ଦେଖିଲା ଭୀମସେନ ଥାଟ
ଆସନ୍ତି ବଳ ମାଡ଼ିଣ ନ ଦିଶଇ ବାଟ ।
ପର୍ବତେ ଥାଇଣ ସର୍ବେ ଦେଖେ ଶିଶୁପାଳ
ରଷେ ଗମଇ କେବଣ ଅସୁରର ବଳ ।
ଶିଶୁପାଳ ଆଜ୍ଞା ଦେଲା ଯୋଦ୍ଧାଗଣ ଗଇ
ବନ୍ଧିଲେ ନାଗ୍ରତ ସର୍ବେ ପର୍ବତରେ ଥାଇ ।
ଧନୁକୁ ସାଜିଣ ହସ୍ତେ ଧରି ସର୍ବ ଯୋଧୀ
ପର୍ବତ ଶିଖରେ ଥାଇ ଆକର୍ଷିଣ ବନ୍ଧି ।
ଉପ୍ରର୍ଗରୁ ଶରମାନ ପଡ଼େ ଅନୁକ୍ଷଣେ
ଶରଘାଏ ଘୁମାଇଲେ ଭୀମଙ୍କ ସଇନେ ।
ନିଜ ସୈନ୍ୟ ଅସାଷ୍ଟମ ଦେଖିଣ ପାବନି
ଆପଣେ ଧାଇଁଲେ କରେ ଗଦାବର ଘେନି ।
କାଳବର ଛକରାଜ ହେନ ସେନାପତି
ଦୁଇ ବୀରେ ଭୀମ ବାମ ଦକ୍ଷିଣରେ ଛନ୍ତି ।
ରଥ ତ୍ୟାଗ କରିଣ ଯେ ଉଠି ଧ ତଳାରେ
ଯେସନେକ ବୃଷ୍ଟିକରେ ଜଳ ଆଷାଢରେ ।
ସେହିମତ ପଡ଼ୁଅଛି ଅନୁକ୍ଷଣେ ବାଣ
ଶସ୍ତ୍ର ପଡ଼ ଚୂର୍ଣ୍ଣ ହୋଏ ଭୀମଙ୍କ ହୃଦେଣ ।
ପର୍ବତ ଉପୁଡ଼ ଯେହ୍ନେ ଆସୁଅଛି ଶିଳ
ସ୍ତମ୍ଭୀଭୂତ ଶିଶୁପାଳ କହୁଛିଁ ନ ବୋଲି ।
ରେ ରେକାର ସୈନ୍ୟମଧ୍ୟେ ପଶିଲା ସେ ଯାଇଁ
ଗର୍ଜ୍ଜି ଆକର୍ଷିଲେ ଯେହ୍ନେ ରଖନ୍ତା କେ ନାହିଁ
କେଶ ମୁକୁଳିତ ଆଉ ମୁକୁଳା ବସନ
ଶରଦ ମେଘ ପ୍ରାୟେକ ଶୁଭଇ ଗର୍ଜ୍ଜନ ।
ପ୍ରହାରନ୍ତି ସଇନେ ଯେ ଲୁନ୍ତ ମୁନା ଖଣ୍ଡ
ଭୀମ ଦେହେ ନ ଭେଦଇ ହୁଅନ୍ତି ବିମୁଖ ।
ବନ୍ଧନ ବିମୁଖ ହେଲେ ପାଶଦଣ୍ଡମାନେ
ନାଗ୍ରତ ଗୋଟିଏ ନାହିଁ ତାହାରହିଁ ସୋଣେ
ରେ ରେ କରି ଭୀମ ଯହୁଁ ଅଇଲେ ଧାଇଁ
ପର୍ବତ ଉପରୁ ସର୍ବେ ପଡ଼ିଲେକ ଡେଇଁ ।
ପଳାଇଲେ ଶିଶୁପାଳ ସୈନ୍ୟ ଅସମ୍ଭାଳେ
ଗୋଡ଼ାଇ ପିଟିଲେ ତାଙ୍କୁ ଭୀମ ଅନର୍ଗଳେ ।
ବହୁତ ସଇନ ଯହୁଁ ସମରେ ପଡ଼ିଲେ
ପର୍ବତ ଉପରୁ ପଡ଼ି କେତେ ଚୂର ହେଲେ ।
ଶତଯୋଦ୍ଧା ସଙ୍ଗେ ଘେନି ଦମଘୋଷବଳ
ଭୀମ ପରେ ଶରବୃଷ୍ଟି କଲା ଅନର୍ଗଳ ।
ରେ ରେ କାର ଶବ୍ଦ କରି ଭୀମ ମହାବଳ
ବାମକରେ ଧଇଲା ଯେ ଶିଶୁପାଳ ବାଳ ।
ରକ୍ତ ହୋଇଅଛି ତହିଁ ଆସି ବାର ଗଡ଼
ଶିଶୁପାଳକୁ ଭୀମ ଯେ ଜାନୁପରେ ପାଡ଼ ।

ବଜ୍ରେ କଣ୍ଠ କଟାରିକୁ ପିଟେ ତା ବକ୍ଷରେ
ନ ଛିଣ୍ଡେ ନ ଶିଶୁପାଳ ଶିର କୃଷ୍ଣବରେ ।
କଟାରି ଭାଙ୍ଗିଣ ତହୁଁ ହେଲା ଖେନଖଣ୍ଡ
ଲବଙ୍ଗି ଅସ୍ତ୍ରମାରେ ଭୀମ ପରଚଣ୍ଡ ।
ଅସିପଞ୍ଚ ପଡ଼ିଲଇ ଶିଶୁପାଳ କଣ୍ଠ
କାଟି ନ ପାରିଲା ତାର କଣ୍ଠ ଏଡ଼େ ଆଣ୍ଟ ।
ଶିଶୁପାଳ କେଶ ଧରି ପବନର ବାଳ
ବୋଲେ କପାଁ ନ ଛାଡ଼ଇ ତୋହର ଏ କାଳ
ଭୀମସେନର ଅନଙ୍ଗ ପ୍ରାୟ ରୂପ ଦେଖି
ଅଙ୍ଗାରପଣ୍ଟଗ କଦା ଅଇଲା ଏଥିକ ।
ଦେଖ ଭରେ କହିଦେଲେ ଦମଘୋଷ ଆଗେ
ପୁତ୍ର ତୋର ନାଶଗଲା ବଜେକର ବେଗେ ।
ଅସମ୍ଭାଳ ହୋଇକରି ଧାଏଁ ନୃପମଣି
ଘୋଡ଼ାବନ୍ତ ଅମନାତ୍ୟ ଥାଟ ଯେ ପଲ୍ଲଣି ।
ରାଗେ ଦମଘୋଷ ଧାଏଁ କରେ ଧରି ଖଡ୍‌ଗ
ଅଧିର ପୁଷ୍ଟ କରିଣ ଧାଏଁ ଅତି ବେଗ ।
ଦଣ୍ଡ ହେକ ଦମଘୋଷ ମିଳ ତତକାଳ
ଦେଖିଲା ଧରିଛି ପୁତ୍ର କେଶ ମହାବଳ ।
ସବଳରେ ଧରି କେଶ ଟେକ ବାମକରେ
ଦକ୍ଷିଣ କରେ ଗଦାକୁ ବୁଲାଇଣ ଖରେ ।
ପର୍ବତ ଉପରୁ ଖାଁରି ପଡ଼ିଲାକ ତେଇଁ
ଦମଘୋଷର ସଇନ ସ୍ତମ୍ଭୀଭୂତ ହୋଇ ।
ଭୀମ କୋପ ଦେଖି ତେବେ ମରୁତ ସାରଥି
ଦମଘୋଷର ସମ୍ମତି ସରିବ ଏ ଶାନ୍ତି ।
ରଥ ତେଜିଣ ମରୁତ ଗଲା ରାଜାପାଶେ
ରାଜାର ସନ୍ନିଧେ ଯାଇ କହଇ ବିଶ୍ୱାସେ ।
କାହାକୁ କୋପକର ହେ ତୁମ୍ଭେ ନୃପମଣି
ଭୀମସେନ ବଗବଜେ ତୁମ୍ଭେ କି ନ ଜାଣି ।
ଜରାକୁ ନିଧନ ଏହୁ କଲେକ ସଂଗ୍ରାମେ
ରାଜାକୁ ମୁକ୍ତ କଇଲେ ଯୁଧିଷ୍ଠିରଙ୍କ ଧର୍ମେ ।
ତାର ତୁଲେ ରାଜା ଯୁଦ୍ଧ କରିଲେ ବିବାଦ
ଏହିକ୍ଷଣି ବୁଡ଼ାଇବୁ ଏଡ଼େକ ସମ୍ପଦ ।
ଏହି ବାରତା ପାଇଣ ଚେଦିଦେଶ ରାୟ
ମନ ମଧ୍ୟରେ ତାହାର ହେଲା ବଡ଼ ଭୟ ।
ଏହି ଭୀମସେନ ଅଟେ ହିଡ଼ିମ୍ବିଙ୍କ ନାହା
ଅଜ୍ଞାନରେ ପୁତ୍ର ମୋର ହୋଇଲା ଦ୍ରୋହା ।

କେଉଁଣ ସ୍ଥାନରେ ସଦା ଲୁଚିବି ମୁଁ ଯାଇଁ
ପାଣ୍ଡବେ ବିବାଦୀ ହୋଇ ଗତି ମୋର ନାହିଁ ।
ମରୁତ ବୋଇଲା ସେହୁ ଦୁଃଖୀ ଉଦ୍ଧାରଣ
ଭକତଜନ ବତ୍ସଳ ଶରଣ ରକ୍ଷଣ ।
ଆସ ଆସ ମହାରାଜା ସମର୍ପିବି ନେଇ
ପୁତ୍ର ତୋର ରକ୍ଷା ହେବ ଭୟ କର ନାହିଁ ।
ବୋଲେ ଦମଘୋଷ ମୋର ନାହିଁ ଯେ ଭରସା
ତୋହର ବଚନେ ମୁହିଁ କଲି ପ୍ରତିଆଶା ।
ଦମଘୋଷ ହସ୍ତ ଧରି ମରୁତ ସାରଥି
ଭୀମସେନର ଗ୍ରାମକୁ ନେଲାକ ଝଟତି ।
ଦଶନଖ ମୁଖେ ଭରି ଦମ ନୃପମଣି
ବୋଲେ ଦୋଷ କ୍ଷମା ମୋର କରିବାକ ସ୍ୱାମି
ହିଡ଼ିମ୍ବ ବଦାରି ନାଥ ବକ ଦର୍ପଧ୍ୱଂସି
କୁନ୍ତୀର ପ୍ରାଣ ନାଶିଲୁ ନଗାଜନେ ପଶି ।
ଜରା ବିନାଶକ ଦେବତାର ଯଜ୍ଞ ଧ୍ୱଂସା
ଯୁଗାନ୍ତକ ବାଦ୍ୟ ଭେଷା ଭାଙ୍ଗିଲୁ ସହସା ।
ପାଣ୍ଡୁକାନ୍ତରକୁ ମାରି ଉଦ୍ଧାରିଲୁ ବଂଶ
ଭକ୍ଷି ପାରି ନଲୁ ତୁହି ହଳାହଳ ବିଷ ।
ବେଦଶାସ୍ତ୍ର ବିଚକ୍ଷଣ କରୁଣା ନାଶନ୍ତା
ଦୁଃଖିଜନ ଉଦ୍ଧାରଣ ଶରଣ ରକ୍ଷନ୍ତା ।
ଦମଘୋଷ ମୁଣ୍ଡକରେ ହୋଇଣ ପ୍ରଣମି
ଦାସର ଦୋଷ ମନରେ ନ ଧରି ହେ ସ୍ୱାମି ।
ନ ଜାଣିଣ ଶିଶୁପାଳ କରିଅଛି ଦୋଷ
ଧର୍ମେ ତାକୁ ରକ୍ଷାକଲୁ ନ କର ବିନାଶ ।
ଦମଘୋଷ ସ୍ତୁତି ଶୁଣି କୁଇନ୍ତା ଦୁଳଳ
ଶାନ୍ତ ହୋଇ ଛାଡ଼ିଲେ ସେ ଶିଶୁପାଳ ବାଳ ।
ଭୀମସେନ ପଚାରଇ ଶୁଣ ଦମଘୋଷ
ମୋର ବଗବଜେ କହୋ ନ ଜାଣେ ତୋ ଶିଷ
ପୁଣି ବୋଇଲେ ତୋ ପୁତ୍ର ଦୁଷ୍ଟ ଯେ ପ୍ରକୃତ
ଜଗନ୍ନାଥ ତୁଲେ ତାର ଅଟଇ ଅପ୍ରୀତ ।
ଦମଘୋଷ ବୋଲେ ଦେବ ଶୁଣ ବୃକୋଦର
ଘଗର୍ଦ୍ଧ ଦେଶର ରାଜା ଯେ କେଶୀକେଶ୍ୱର ।
ତାହାର ଭାରିଯା ନାମ ଅଟେ ପ୍ରଶ୍ରବନ୍ତୀ
ତାର ତହୁଁ ଉପୁଜିଲା ଦୁଇଟି ଦୁହିତା ।
ବଡ଼ ଦୁହିତାର ନାମ ଅଟଇ ଦେବକୀ
ଆର ଦୁହିତାର ନାମ ଅଟେ ଶ୍ରୁତକୀର୍ତ୍ତି ।

ଦେବକୀ ବସୁଦେବେ ବିଭା କରାଇଲେ
ଦଇବକୀକୁ ପ୍ରଦାନ ମୋତେ ଯେ କରିଲେ ।
ବସୁଦେବର ଅଟେ ମୁଁ ସହୋଦର ଷଡ଼ୁ
ଏକଆତ୍ମା ହୋଇ କେହ୍ନ କାହାକୁ ନ ଛାଡ଼ୁ ।
ବାସୁଦେବ ଉପୁଜିଲେ ଦେବକୀର କୋଳେ
ଉପୁଜିଲା ଦୈବକୀର ଗର୍ଭୁ ଶିଶୁପାଳେ ।
କୃଷ୍ଣ ଜ୍ୟେଷ୍ଠ ଶିଶୁପାଳ ଅଟଇ କନିଷ୍ଠ
କେବଣ ମନ୍ଦବେଳେ ଏ ଦୁହେଁ ହେଲେଭେଟ
ଶିଶୁପାଳେ ଦେଖି କୃଷ୍ଣ ହୋଇଲେ ଅତୃପ୍ତି
ହରି ଦେଖି ଶିଶୁପାଳ କରଇ ଯେ ଖାତି ।
ବାଳକାଳେରେ ଦେବକୀ ତାହାଙ୍କୁ ନ ପାଳି
ଗୋପରେ ବଢ଼ିଲେ ଯାଇ ଦେବ ବନମାଳୀ
ଯସ୍ତାଗେ ଯୋଗ ପଡ଼ିଲା ଏକଇ ସମୟେ
କୃଷ୍ଣ ଯଶୋଦାଙ୍କୁ ଘେନି ଗଲେ ନନ୍ଦରାୟେ ।
ଦଇବକୀ ଶିଶୁପାଳ ସଙ୍ଗେ ଘେନିଗଲ
ଦୈବକୀ ଯଶୋଦାଠାରେ ପ୍ରୀତି କରାଇଲ ।
ଶିଶୁପାଳକୁ ଦେଲେ ଯେ ବାସୁଦେବ କୋଳେ
ଧଇଲେ ଯେ ବାସୁଦେବ ଅତି କୁତୂହଳେ ।
ସୁନ୍ଦର ଦେଖି ଶ୍ରୀହରି ଲଗାଇଲେ ହୃଦେ
ଦେହ ତୋଅଛୁଟହେଉ ବୋଇଲେଗୋବିନ୍ଦେ
ତୋହର ହେଉ ସହସ୍ର ସିଂହ ପରାକ୍ରମ
କେବେହେଁ ବଧ ତୁହ୍ନ ତେ ନୋହିବୁ ସଂଗ୍ରାମ
ଏହ୍ନ ବରଦେଇ ଦେବ କୋଳେଛନ୍ତି ଧରି
ଶିଶୁପାଳ କାନ୍ଦେ ଗୋଡ଼ ହଲାଇଣ କରି ।
ବାସୁଦେବଙ୍କ ହୃଦରେ ବାଜିଲା ତା ପାଦ
ମୂର୍ଚ୍ଛାଗତ ହୋଇକରି ପଡ଼ିଲେ ଗୋବିନ୍ଦ ।
ଧାତକାରେ କୋଳକରି ଧଇଲେ ଦୈବକୀ
ଅଶ୍ରୁଜଳ ବରଷଇ ଶ୍ରୀକୃଷ୍ଣଙ୍କ ଆଖି ।
ଚେତନା ପାଇଣ କୋପେ ନନ୍ଦସୁତ ବୋଲି
ଭ୍ରାତୃପଣେ ଏକ୍ଷଣି ମୁଁ ତୋତେ ବର ଦେଲି
ପ୍ରଥମରେ ମୋତେ ତୁହ୍ନ କରିଲୁ ପ୍ରହାର
ଅବଶ୍ୟ ଚକ୍ରରେ ଶିର କାଟିବି ତୋହର ।
ଦଇବକୀ ବିକଳ ଯେ ହେଲେ ତାହା ଶୁଣି
ଅନୁଗ୍ରହ କରି ନାଥ କହ ଚକ୍ରପାଣି ।
ଯେ ରଖେ ସେ ଭକ୍ଷେ ଏହା ଅଛି କେଉଁକାଳେ
ବାସୁଦେବ କ୍ଷମା କର ଦୋଷ ଶିଶୁପାଳେ ।

କେଶବ ବୋଇଲେ ଶୁଣ ତୁ ମୋହର ମାତ
ଅଷ୍ଟୋତ୍ତର-ଶତବର୍ଷ ଥିବ ତୋର ସୁତ ।
ମାଗୋ ଯେତେ ବଇଲୁଷ୍ଟ ହୋଇଲଟି ମୁଣ୍ଡି
ଅବଶ୍ୟ ଚକ୍ରେ ମାରିବ ଜାଣ ଏହାକୁହିଁ ।
ଅଷ୍ଟୋତ୍ତର ଶତବେଳେ ଯେବେ ଦୋଷ କରେ
କ୍ଷଣେ ନ ସହି ଛେଦିବି ଅବଶ୍ୟ ଚକ୍ରରେ ।
ଶୁଣ ହେ ପାଣ୍ଡବ ଆଦିକାଳର ଏ କଥା
ରୁକ୍ମିଣୀ ହରଣେ ହେଲା ଅନେକ ଅବସ୍ଥା ।
ଯାହାକୁ ଚକ୍ରେ ମାରୁଥିଲେ ତହିଁ ଦେବହରି
ସେ ବେଳେ ଛାଡ଼ିଲେ ମାତା ବଚନ ସୁମରି
ବସୁଦେବ ଦମଘୋଷ ଅଟୁ ବେନି ଭାଇ
ଦେବକୀ ଦୈବକୀ ଦୁଇ ଭଗିନୀ ଯେ ହୋଇ
ଗୋବିନ୍ଦ ସୋଦର ଏହୁ ଅଟଇ ଯୁକତେ
ତୁମ୍ଭର ଅଭିନ୍ନ ନୁହେଁ ନାଶିବ କେମନ୍ତେ ।
ଭୀମ ବୋଲେ ଦମଘୋଷ ମୁଁ ସଂଗ୍ରାମେ ରଙ୍ଗେ
ବେନିବେଳ ତା ଛାତିରେ ପ୍ରହାରିଲିଖଡ୍ଗେ
ଲୁହାହୁଁ ବଳ ତାହାର କଠିନ ଯେ ନ ତୋ
ମୋହର ଖଡ୍ଗ ତାହାର ଗଳା ଯେ ନ କାଟି
ଏହା କହି ଛାଡ଼ିଦେଇ ପିତା ତା ବଚନେ
ବହୁତ ଆଦର କଲେ ତାକୁ ଭୀମସେନେ ।
ଧର୍ମଦଣ୍ଡ ଘେନି ଦମଘୋଷ ନରପତି
ରାଜସୂୟ ସଭାକୁ ତୁ ଯାଅ ହେ ତୁରିତ ।
ମକର ଶୁକ୍ଳପକ୍ଷ ପ୍ରତିପଦା ଦିନ
ଯାଗର ପ୍ରଥମାହୁତି ହୋଇବ ସେ ଦିନ ।
ପ୍ରଥମ ପକ୍ଷେ ସମସ୍ତେ ହୋଇବେ ପ୍ରବେଶ
ବହୁ ପୂଜା କରି ବୋଲେ ରାଜା ଦମଘୋଷ ।
ସ୍ୱାମି ମଣୋହ୍ନ କରିବା ମୋହର ଭୁବନ
ରହି ନ ପାରିବ ବୋଲି ବୋଲେ ଭୀମସେନ
ସର୍ବରାଜା ନିମନ୍ତ୍ରିତ ନଉଦିନ ମଧ୍ୟେ
ଏହିମତ ସର୍ବରାଜା କରିବି ମୁଁ ସାଧ୍ୟେ ।
ତହୁଁ ଚଳେ ବୃକୋଦର ଥାଟକୁ ଚଳାଇ
ଦମଘୋଷେ ବାହୁଡ଼ିଲେ କିଛିଦୂର ଯାଇ ।
ଜୟ ଜୟ ଜଗନ୍ନାଥ କମଳା ବିଳାସ
ଶାରଦା ଦାସର ପୂର୍ଣ୍ଣ କର ଅଭିଳାଷ ।

---

## ନୈଋତସେନ ରାଜା ନିମନ୍ତ୍ରଣ ଓ ଜରାସନ୍ଧ ପୁତ୍ର ସହଦେବ ସହିତ ଯୁଦ୍ଧ

ନୈଋତ ବୋଲି ଜାଣ ପର୍ବତ ଗୋଟିଏ
ନୈଋତ ଦେଶେ ପ୍ରବେଶ ପବନ ତନୟେ ।
ନୈଋତସେନ ବୋଲଣ ତହିଁର ନୃପତି
ରତ୍ନଖାର ମଣ୍ଡଳରେ ସେ ଅଟେ ଅଧିପତି ।
ଟମକ ନିଶାଣ ଭେରୀ ନାନାବାଦ୍ୟ ବାଜେ
ଭୀମ ପରବେଶ ହେଲେ ରତ୍ନଖାରର ରାଜ୍ୟେ
ସେ ରାଜାର ବେଶାନ୍ତରେ ଥିଲେ ଚରଦେଶେ
ବାର୍ତ୍ତା ଜଣାଇଲେ ଯାଇ ନୈଋତର ପାଶେ
ଶୁଣିବା ଦେବ ରତ୍ନଖାର ମଣ୍ଡଳାଧିକାରୀ
ଭୀମସେନ ପଶ୍ଚିମକୁ ଛନ୍ତି ବିଜେକରି ।
ରାଜା ନିମନ୍ତ୍ରିବେ ରାଜସୂୟ ଯଜ୍ଞ ଅର୍ଥେ
ଶିଶୁପାଳେ ମାରୁଥିଲେ ପ୍ରତିଜ୍ଞା ନିମନ୍ତେ ।
ଶରଣପଞ୍ଜର ସେହି କୃଷ୍ଣ ଜଗନ୍ନାଥେ
ସମଦଣ୍ଡ ବେନ ଭୁଜ ଯିବାକ ପାର୍ଥେ ଟି ।
ମନ୍ତ୍ରୀ ବୋଇଲେ, ହୋ ଭୂଲ ସମଦଣ୍ଡ ଧର
ଯୁଧିଷ୍ଠିରଙ୍କ କନିଷ୍ଠ ସେ ପୃଥ୍ୱୀ ଅଧିକାରୀ ।
ମନ୍ତ୍ରୀର ବଚନ ଶୁଣି ହୋଇ କୃତକୃତ୍ୟ
ଆସ୍ଥାନୁ ଉଠିଲା ଆସେ ରାଜା ନୈଋତ ।
ଭୀମସେନ ନିକଟକୁ ସମ୍ଭ୍ରମରେ ଗଲେ
ଦର୍ଶନ କରିଲା ରାଜା ବିରୂପାର କୂଳେ ।
ବଶନଖ ମୁଖେ ଭରି ଦୂରୁ ପରଣାମି
ଶରଣପଞ୍ଜର ନାଥ ଈଶ୍ୱର ହେ ସ୍ୱାମୀ ।
ଭୀମସେନ ବୋଇଲା ହୋ ଶୁଣ ନୈଋତ
ସାଧୁ ବିବେକ ପଣ୍ଡିତ ତୁହି ଜ୍ଞାନବନ୍ତ ।
ଅଛନ୍ତି ମୂର୍ଖ ଅଜ୍ଞାନ ଅନେକ ନୃପତି
ଜାଣୁ ଜାଣୁ ଅକାରଣେ ପାଉଛନ୍ତି ଶାସ୍ତି ।
ନିମନ୍ତ୍ରଣାକ୍ଷତ ତାଙ୍କୁ ଦେଲେ ତୋଷମନେ
ସୈନ୍ୟସହ ଯାଅ ଶୀଘ୍ର ଇନ୍ଦ୍ରପ୍ରସ୍ଥ ଗ୍ରାମେ ।
ନୈଋତ ବୋଇଲା ତୋର ଅନୁଗ୍ରହ ନାଥ
ତୋ ପାଦରଜ ପଡ଼ିଲା ହୋଇଲି କୃତାର୍ଥ ।
ମୋହର ରାଜ୍ୟରେ ସ୍ୱାମି ରହିବ ଆଜକ
ଦେଖି ଆନନ୍ଦିତ ହେବେ ରାଜ୍ୟ ସର୍ବଲୋକ ।

ବୃକୋଦର ବୋଲେ ବେଳ ରହିବାକୁ ନାହିଁ
ଭୋଜନେ ଶୟନେ ମୋର ସୁଖ ଅଛି କାହିଁ ।
ପଞ୍ଚଶସହସ୍ର ରାଜାଙ୍କୁ ମୁଁ ନଉ ଦିବସେ
ନିମନ୍ତ୍ରିବ ବେଳ ନାହିଁ ଯିବ ବହୁଦେଶେ ।
ଏ କେଉଁ ରାଜ୍ୟଟି ବିଦିଶ ହେ ମରୁତସେନ
ବଡ଼ ବିଚିତ୍ର ଦିଶଇ ରାଜ୍ୟର ଗଠନ ।
ସ୍ୱାମି ଏ ମଗଧ ଦେଶେ ରାଜାର କଣ୍ଟକ
ଏଥେ ବନ୍ଦୀ ହୋଇଥିଲୁ ଆମ୍ଭେ ସର୍ବଲୋକ ।
ଛୟାଶୋଇ ସହସ୍ର ରାଜା କାହିଁ ଥାନ୍ତୁ ହାଦେ
ସମସ୍ତେ ବଞ୍ଚିଲୁ ସ୍ୱାମି ତୁମ୍ଭର ପ୍ରସାଦେ ।
ଶୁଣି ସେ ରାଜ୍ୟୁ ଚଳିଲେ ବେଗେ ଭୀମସେନ
ଦେଖନ୍ତି ଦାଣ୍ଡରେ ପୂର୍ଣ୍ଣ ରାଜ୍ୟ ସର୍ବଜନ ।
ଜୟ ଜୟ ମା ମଙ୍ଗଳା ଜୟ ସର୍ବବାଳୀ
ସମସ୍ତେ ଅର୍ଦ୍ଧ୍ୟ ଘେନିଣ ଦ୍ୟନ୍ତି ହୁଳହୁଳି ।
ଏ ଉତ୍ତାରୁ ଭୀମ ହସ୍ତେ ପଶ୍ଚିମ ମୂରତି
ଅଜ୍ଞା ଦେଲେ ବାହୁଡ଼ି ହୋ ନୈଋତ ନୃପତି
ରାତ୍ର ଦିବସ ବର୍ତ୍ତେହେଁ ନ ରହି ଚଳିବୁ
ରାଜାକୁ ବାଟେ ଦେଖିଲେ ସଙ୍ଗେ ଘେନିଯିବୁ
ବାହୁଡ଼ିଲେ ନୃପବର ଦଣ୍ଡଛତ୍ର ନେଇ
ସ୍ୱରାଜ୍ୟ ନ ଯାଇ ରହିଲା ନଦୀକୂଳେ ଯାଇ ।
ତହୁଁ ବୃକୋଦର କଲେ ପଶ୍ଚିମକୁ ବିଜେ
ଖାଇତୂର କାହାଳି ଯେ ଟମକହିଁ ବାଜେ ।
ମଳୟଗିରି ବୋଲିଣ ଏକ ପରବତ
ସେ ପର୍ବତ ଦିଶଇ ଯେ ସୁନ୍ଦର ଅତ୍ୟନ୍ତ ।
ସେ ଗିରିରେ ଦମୟନ୍ତୀ ତପ କରୁଥିଲେ
ପଞ୍ଚଶ ବର୍ଷ ପର୍ଯ୍ୟନ୍ତେ ନିର୍ଭୟେ ରହିଲେ ।
ଗନ୍ଧବତୀ ବୋଲିକରି ବହେ ଏକନଦୀ
ଗନ୍ଧମଳୟ ପର୍ବତୁ ଆସଇ ସେ ଭେଦି ।
ଦକ୍ଷିଣ ଦିଗକୁ ଧାଇ ବହଇ ଉଜାଣି
ଉତ୍ତରକୁ ଧାଇ ଏକ ବହଇ ତ୍ରିବେଣୀ ।
ବେନନଦୀ ବହୁଅଛି ମଗଧକୁ ଘେରି
ପଞ୍ଚଶ ଯୋଜନ ନଗ୍ର ଆୟତନ ପୂରି ।
ଭୀମସେନ ବିଜେ କଲେ ସେହି ପରବତେ
ପୃଥିବୀ ଯେ କମ୍ପୁଅଛି ବୀର ତୁରଙ୍ଗାଘାତେ ।
ସହଦେବ ନୃପତିକୁ ଚରେ ଜଣାଇଲେ
ସ୍ୱାମି କେଉଁ ରାଜା ବିଜେ ଏଥିକି କରିଲେ ।

ଶୁଣି ଆଜ୍ଞା ଦେଲ ତହୁଁ ଜରାର ତନୟ
ପାଶେ ଉଭା ହୋଇଥିଲେ ଜୟ ଯେ ବିଜୟ ।
ଅଶୀ କ୍ଷୌଣୀ ଥାଟ ଘେନ ଯାଅ ଏହିକ୍ଷଣି
କ୍ଷତ୍ରୀ କମ୍ବା ଅନ୍ୟଜାତି ଭୂପେ ଆସ ଚହ୍ନି ।
କବା ଅସିଅଛି ସେହି ମରଦା ନିମନ୍ତେ
କି ଅବା ଆସିଛି ପ୍ରିୟ ବାନ୍ଧବର ଅର୍ଥେ ।
ଏ ପଶ୍ଚିମ ଦିଗେ ଆଉ ନାହିଁ ପରରାଷ୍ଟ୍ର
ବାରତା ନ କହି କପାଁ ଆଣିଲ ସେ ଥାଟ ।
କେଉଁ ଦୁଷ୍ଟ ରାଜା ସେହି ଆସେ ଯୁଦ୍ଧମାଗି
ଧାଆଁ ପାରିଦଣ୍ଡମାନେ ଉଗାଳ ହୋ ବେଗି
ପବନହୁଁ ବେଗକରି ଯାଅ ଚରଗଣେ
ରାଜ୍ୟରେ ପଶି ନ ଦିଅ ଆଜ୍ଞା ପରମାଣେ ।
ରାଜା ଆଜ୍ଞା ପରମାଣେ ଧାଇଁଲେ ମୁନେହିଁ
ମଳୟ ପର୍ବତେ ଛନ୍ତି ଭୀମସେନ ରହି ।
ଆଗୁଆଣି ଥାଟରୁ ଯେ ଉଗାଳିଲେ ଚର
ରାଜ୍ୟେ ନ ପଶ ତୁମ୍ଭଙ୍କୁ ହାଁକି ମଗଧର ।
ଥାଟ ଆଗରେ ବିକାଳ ଥିଲ ସେନାପତି
ରଣ ପକାନ୍ତେ ଖଡ଼ଗ ପ୍ରହାରିଲ ଧାତି ।
ବେନିଖଣ୍ଡ ହୋଇ ଛିଡ଼ିପଡ଼ିଲ ମୁନେହିଁ
ଭୀମ ଠାକୁରେ ଅଛନ୍ତି ପର୍ବତରେ ରହି ।
ଆଗୁଆଣି ହୋଇ ଜୟ ବିଜୟ ଯେ ଥିଲେ
ସହଦେବ ଆଗେ ଯାଇଁ ବାରତା କହିଲେ
ସ୍ୱାମି ବଡ଼ ଦୁଷ୍ଟ ମୂର୍ଖ ଅଟନ୍ତି ସେ ଥାଟ
ନ ବିଚାରି ଦୂତର ସେ କଲେ ମୁଣ୍ଡକାଟ ।
ଦୂତ ଚର ମଧ୍ୟସ୍ଥ ଯେ ଶରଣ ଏ ଚାରି
ଯାଙ୍କୁ ବଧ କଲେ ଦୋଷ ବ୍ରହ୍ମହତ୍ୟା ସରି ।
ରଣ ପକାଇବା ମନେ ନାଶ କଲ ପ୍ରାଣୀ
ଧସାଇ ରାଜ୍ୟେ ପଶନ୍ତି କାହାକୁ ନ ଗଣି ।
ଜୟ ବିଜୟ ଏ ଦୁଇ ମହାକୋପାନଳେ
ଦୁଇ ପାଟେ ଧରିଛନ୍ତି ହସ୍ତେ ଶୃଙ୍ଖଳ ଶୃଙ୍ଖଳେ ।
ସହସ୍ରଲକ୍ଷ ଯୋଦ୍ଧା ଯେ ରେଖାର ଭୁଜଙ୍ଗ
ରେ ରେ କାରି ଶବ୍ଦକରି ଧାଇଁଲେକ ବେଗ
କୁନ୍ତ ଅସି ମୁଦୁଗର କରେ ଘେନ ଜାଠି
ସକଳେ ପ୍ରହାରି କଲେ ଏକାବେଳେ ଉଠି ।
କାଳ ବିକାଳ ଭୀମର ଦୁଇ ସେନାପତି
ବଜ୍ରାବଳ ଗଦାଧରି ଅଶ୍ୱେ ଚଢ଼ିଛନ୍ତି ।

ରାଗରେ ଉଠିଲେ ଜରାସନ୍ଧ ପୁତ୍ର ତନ
ହୂଳାଇ ନାଙ୍କିଆ ଆଉ ଘାଷ୍କ୍ଣ ଅସି ଘେନ ।
ମେଘ ଗର୍ଜ୍ଜନ ପ୍ରାୟେକ ଶୁଭେ ଘୋର ରଡ଼ି
ଦୁଇଥାଟ ହୋଇଲେ ଯେ ହାବୋଡ଼ାହାବୋଡ଼ି
ଆକାଶ କମ୍ପାଉଅଛି ସୈନ୍ୟ ମୁଖଧ୍ୱନି
ପ୍ରହାରନ୍ତି ଯେ ଯାହାର ଅସ୍ତ୍ର ଶସ୍ତ୍ର ଘେନ ।
ଧାଆଁରେ ମାରରେ ବୋଲି ଦ୍ୟନ୍ତି ଘୋରଡାକ
ଗଗନରେ ଖେଳୁଛନ୍ତି ଯେସନ୍ତେ ବଳାହକ ।
ଏସନକ ଘୋଳ ହେଲ ଦୁଇଦଳ ଥାଟ
ରୁଧିର କୋଳ ହୋଇଲେ ତହିଁ ସର୍ବରାଷ୍ଟ୍ର ।
ସଇନଙ୍କ ଗୋଳ ଦେଖି ଗର୍ଜି ଭୀମସେନ
ରଥ ଉପରୁ ଡେଇଁଣ ପଡ଼ିଲ ବହନ ।
ବୁଲଅନ୍ତି କାଳଚକ୍ର ପ୍ରାୟେ ବେନି ଆଖି
ଘାବଲେ ମଗଧ ସୈନ୍ୟ ଭୀମରୂପ ଦେଖି ।
ଗଦା ବୁଲାଇଣ ସେହୁ ପବନ ଆଘାତେ
ହାବଡ଼ା ହାବୋଡ଼ି ହୋଇ ପଡ଼ିଲେ ନିର୍ଘାତେ
ମାର ମାର ବୋଲି କରି ଉଠିଲ ପାବନ
ଗୋଡ଼ାଇ ମାଇଲ ସେହି ମଗଧ ସଇନ ।
ରକତେ କର୍ଦ୍ଦମ ଗଜ ଅଶ୍ୱର ସହିତେ
ମଡ଼ାଏ ପଡ଼ିଲେ ଅଷ୍ଟ ଯୋଜନ ପର୍ଯ୍ୟନ୍ତେ
ପବନ ବିଘାତେ ଯେସନ୍ତେ ହନ୍ତି ପଦ୍ମଫୁଲ
ତେସନ୍ତେ ବୋହଲାଇ ଦେଲେ ଭୀମ ଅନର୍ଗଳ
ସଂଗ୍ରାମେ ନପାରି ଯହୁଁ ହୋଇଲେ ସଇନ
ଘୂଞ୍ଚି ପଳାଇଲେ ଜୟ ବିଜୟ ଏ ବେନି ।
ସହଦେବର ସମ୍ମୁଖରେ କହିଲେ ବାରତା
ସ୍ୱାମି ସଂଗ୍ରାମରେ ସେହୁ ଅଟେ ମହାମତ୍ତ ।
ଚାରିଲକ୍ଷ ଯୋଦ୍ଧା ତୋର ପଡ଼ିଲେ ତା ରଣେ
ଏତେ ଥାଟକୁ ମର୍ଦ୍ଦନ କଲ ଏକା ଜଣେ ।
ପଚାରିଲେ ନ କହେ ସେ କେଉଁ ଦେଶରାଜା
ନାଶକରି ଦେବତା କି ପ୍ରତ୍ୟକ୍ଷେ ବଡ଼ୋଜା ।
ମର୍ତ୍ତ୍ୟଲୋକରେ ନ ଦେଖେ ଏପରି କାହାକୁ
ଆଜ ତୋତେ ଦେଲ ସେହି ବଡ଼ ପ୍ରମାଦକୁ
ଭଗ୍ନବଳ ଥାଟ ଦେଖି ନୃପ ସହଦେବ
ମତ୍ତହସ୍ତୀଏ ଚଢ଼ିଲ ମନେ କରି ଗର୍ବ ।
ହସ୍ତେ ବେନି ଗଦା ଘେନି ସେ କୁମର ମଣି
ସାଜିଲ ବଳ ତାହାର ତେଇଶ ଅକ୍ଷୌଣୀ ।

ରଥ ଛୁଟିଲେ ସାଙ୍ଗ ନବଶଙ୍ଖ ପାରତନ୍ତ୍ର
ଘାତଭୁତ ଶବଦରେ କମ୍ପିଲା ଭୂଖଣ୍ଡ ।
ମଞ୍ଜୁଁ ତେଜ ଘାରକ୍ତତ ଘୁମ୍ପୁରେଣ ବାଜେ
ମନ୍ତ୍ରୀ ଅମାତ୍ୟଙ୍କୁ ଘେନି ସଂଗ୍ରାମକୁ ଚଜେ ।
ରାଜ୍ୟ ଭିତରେ ପଶନ୍ତି ପାଣ୍ଡବ ସଇନ
ସଗ୍ରାମେ ନର୍ଭୟେ ସେତୁ ଛନ୍ତି ଶସ୍ତ୍ର ଘେନ ।
ସହଦେବ ଘୁମୂରେ ଯେ ନେଇ ଭେଟି ରଥ
ଚଳନ୍ତି ଛକ୍ଷ୍ଣ ନାରାଚ ଯୋଖି ଅପ୍ରମିତ ।
ମଗଧ ସେନାଙ୍କ ଛତ ବଜ୍ରପ୍ରାୟ ଘୋଟି
ଚଳନ୍ତେ ସେ ସବୁ ଭୀମ ଶରୀରେ ନ ଫୁଟି ।
ଯାହାଙ୍କ ପିତା ଅଟନ୍ତି ପବନ ଦେବତା
କେ ତାହା ଘୁମୁରେ ଅଛି ତ୍ରୈଲୋକ୍ୟ ଜେତା ।
ପାଣ୍ଡବସୁନ୍ଦର ଭୀମ କୃତାନ୍ତକ ରୂପୀ
ଚେଇଛି କ୍ଷୌଣୀ ବଳଙ୍କୁ ଏକ ଯୋଦ୍ଧା ବ୍ୟାପି
ମଗଧ ପାଟରେ ଲୁନ୍ତ ପ୍ରହାରଲେ ଆଣି
ବଗଜେ ମୁକୁଟ ବଳ ଆଦିତ୍ୟକୁ ଜିଣି ।
ତରୁଣ ଆଦିତ୍ୟ ପ୍ରାୟ ଦିଶେ ବୃକୋଦର
କେ ଆସି ରଣେ ଝାସିବ ତାହାର ଘୁମୁର ।
ଦଣ୍ଡ ଘେନି ବୃକୋଦର ଛୁଟିଲେକ ଗର୍ଜି
ମଗଧ ସଇନ ସବୁ ପଳାଇଲେ ଭଜି ।
କେଶରୀ ଦେଖି ପଳାନ୍ତି ଯେସନ୍ତେ ବନଜୀବ
ତାହା ପାଟକୁ ମନ୍ତିଲ ସୁନ୍ଦର ପାଣ୍ଡବ ।
ମହାରଣ ଧନ୍ଦୋଳ ଯେ ଜହ୍ନିତ ଜେ ଘାର
ଭୀମଙ୍କ ସୈନ୍ୟ ଛନ୍ଦନ୍ତି ଶର ବ୍ରେଷ ଭର ।
ଆପଣେ ସେ ଭୀମସେନ ଗଦା ଘେନ ପିଟି
ସହଦେବର ସଇନ ମଧ୍ୟରେ ଲୋଟି ।
ବନ୍ଦି ଭଗ୍ନ ଦେଖି ଧାଇଁ ମଗଧର ରାଜ୍ୟେ
ଅଶୀଲକ୍ଷ ଯୋଦ୍ଧା ଘେନି ପରବେଶ ହୋଏ ।
ବୃକୋଦର ଘୁମୁରେ ଯେ ସହଦେବ ଭେଟି
ଆକର୍ଷିଣ ଯୋଦ୍ଧାମାନେ କଲେ ଚରି ଦୃଷ୍ଟି ।
ଲୋହ ପାଷାଣୁ କଠିନ ଯେଉଁ ଘୀର କାଟେ
ଅଶୀସହସ୍ର ଯୋଦ୍ଧାଙ୍କୁ ସେ କରେ କି ଭୟେ
ଏକ ପ୍ରହାରେ ଲୋଟନ୍ତି ଗଜ ଯେ ମାତଙ୍ଗେ
ଧାଇଁଣ ସେ କଚୁଡ଼ନ୍ତି ନେଇ ରଥେ ରଥେ ।
ସହଦେବର ଦେଖନ୍ତେ ପଡ଼ିଲେ ସେ ବଳ
ଶୋଣିତ ବୃଷ୍ଟି ହୋଇଲା ଯେସନ୍ତେ ବୃଷ୍ଟିଜଳ ।

ଦୁଇପଦ୍ମ ରଥ ଘ୍ରାରିପଦ୍ମ ମତ୍ତନାଗ
ନବପଦ୍ମ ପଡ଼ିଲେ ଯେ ବ୍ରେଖାର ତୁରଙ୍ଗ ।
ଅଗଣିତ ସୈନ୍ୟ ମଲେ କେତୁ ତାହା ଲେଖି
ପଳାଇଲା ସହଦେବ ସଂଗ୍ରାମ ଉପେକ୍ଷି ।
ତାଳେକ ପ୍ରମାଣେ ଚର୍ଣ୍ଣି ପଡ଼ିଲେକ ମାଡ଼ି
ଅପ୍ରମିତ ଯୁଦ୍ଧ ହେଲା ପଞ୍ଚଦଶ ଘଡ଼ି ।
ଭୀମସେନ ଗଦାଘାତେ କେତେ ସୈନ୍ୟ ଉଡ଼ି
ରଥ ଗଜ ଅଶ୍ୱ ସୈନ୍ୟ ବହୁଦୂରେ ପଡ଼ି ।
ସହଦେବ ବାଳପୁ ଯେ ଜୟୁ ତନଭ୍ରାତେ
ସେଠାରେ ରହିଲେ ଚଢ଼ି ଏକ ଏକ ରଥେ ।
ସହଦେବ ପୁଚ୍ଛେ ତୁମ୍ଭେ କେଉଁ ଦେଶ ରଥୀ
ମୁଁ ତୋ ଶତ୍ରୁ ନୁହେଁ କପାଁ ମୋ ସୈନ୍ୟ ନିପାତ
ମୁହିଁ ତୋର କେଉଁ ଦୋଷ କରିଛୁ ବା ପୂର୍ବେ
ଭୀମସେନ ରାଜ୍ୟ ଦେଲେ ପିତାର ଅଭାବେ ।
ମୋର ପିତା ଜରାସନ୍ଧ ଥିଲା ମହାଦୁଷ୍ଟ
କୃଷ୍ଣରେ ବବାଦୀ ହୋଇ କଲା ମନ୍ଦବାଟ ।
ପଞ୍ଚରାଜ୍ୟେ ନ ପାରିଲେ ରହି ବାସୁଦେବ
କ୍ଷୀରୋଦ ମଧ୍ୟ ରହିଲେ କରି ଭଲ ଠାବ ।
ରାଷ୍ଟ୍ରପଦ ପାଇବାକୁ ପିତା ଇଚ୍ଛାକଲା
ଅନେକ ରାଜାମାନଙ୍କୁ ବାନ୍ଧିଣ ଆଣିଲା ।
ପନ୍ଦର ଦିନ ପର୍ଯ୍ୟନ୍ତ କରିଲା ଆହୁତ
ରାଜାଙ୍କୁ ମାରି ପକାନ୍ତେ ଅଷ୍ଟମୀର ତିଥି ।
ସନ୍ଦେଶ ଶୁଣି ବିଜୟ କଲେ ବାସୁଦେବ
ସଙ୍ଗେ ଆଣିଥିଲେ ଭୀମ ଅର୍ଜ୍ଜୁନ ପାଣ୍ଡବ ।
ଦାନ ଗ୍ରହଣ ନିମନ୍ତେ ଅଇଲେ କପଟେ
ଯଜ୍ଞଶାଳରେ ପଶିଲେ ମୋ ପିତା ନିକଟେ ।
ବେଦ ଅଧ୍ୟୟନ କରି ମାଗିଲେ ସଂଗ୍ରାମ
ମାଲବନ୍ଦେ ଜରାସନ୍ଧ ନାଶକଲେ ଭୀମ ।
ଜରାସନ୍ଧକୁ ମାରିଣ କୃପାକଲେ ମୋତେ
ଏ ମଗଧେ ଅଭିଷେକ ଉତ୍ସବ ନିମନ୍ତେ ।
ଦେବ ଭୀମସେନ ମୋତେ କୋଳରେ ବସାଇ
ରାଜ୍ୟେ ଅଭିଷେକ କଲେ ଶିରେ ପାଟଦେଇ
ରାଜାମାନଙ୍କୁ ବନ୍ଦୀରୁ ମୁକତ କରିକେ
ସର୍ବ ନୃପତିଙ୍କ ପାଶେ ମୋତେ ସମର୍ପିଲେ ।
ଯେଉଁ ଆଜ୍ଞା ଦେଇଛନ୍ତି ମୋତେ ବୃକୋଦର
ତହାରିଷ ସେ ଆଜ୍ଞାରେ ଅଛି ନିରଧାର ।

ପରଭୂମି ନ ଜାଣେ ମୁଁ ଆଉ ପରରାଷ୍ଟ୍ର
ପ୍ରଣାମ ଆଜ୍ଞାରେ ମୁଁ ନ ଜାଣେ ପରଥାଟ ।
ତାହାଙ୍କ ଆଜ୍ଞାରେ ମୁଁ ନ ଲଙ୍ଘେ ପରସୀମା
ତୁ ମୋହର ସୈନ୍ୟ ନାଶ କଲୁ ମହାତମା
ବୃକୋଦର ଦୟାରେ ମୁଁ ବର୍ତ୍ତେ ସବୁକାଳେ
ସେ ମୋ ପିଅର ଅଟନ୍ତି ଜାଣ ଏତେବେଳେ
କାର୍ପଣ୍ୟ ହୋଇ କହଇ ରାଜାର ନନ୍ଦନ
ସ୍ୱାମି ଜାଣିଅଛ ରଖ ଆସି ଭୀମସେନ ।
ସହଦେବର ମୁଖରୁ ଏହି କଥା ଶୁଣି
ଭୀମ ବୋଲେ ଆସ ବାବୁ ମୋ କୁମରମଣି ।
ଆରେ ବାବୁ ଯୁଦ୍ଧରେ ମୁହିଁ ଅଟେ ଭୀମ
ନ ଜାଣି ତୁ ଯୁଦ୍ଧ କଲୁ ତୋତେ କଲି ଶ୍ରମ ।
ଶୁଣି ସହଦେବ ଉଠି ପଡ଼ିଲା ସେ ଡେଇଁ
ଶତସହସ୍ର ପ୍ରଣମିତ ହେଲେ ତିନଥର ।
ସ୍ୱାମି କ୍ଷମାକର ମୋର କରିବା ଅପ୍ରାଧ
ନ ଜାଣିଣ କଲି ମୁହିଁ ବହୁତର ଯୁଦ୍ଧ ।
ଶରଣ ରକ୍ଷଣ ନାଥ ଭକତ ବତ୍ସଳ
ବୀରଙ୍କର ଶିରୋମଣି ଅଟ ମହାବଳ ।
କୈଳାସ ରକ୍ଷା କରିଲୁ କୁମ୍ଭକ ବଦାର
ହିଡ଼ିମ୍ବିକୁ ନାଶିଲୁ ବଦାର କୁମ୍ଭୀରା ।
ଶିବଗଣଙ୍କର ତୁହି ଛଡ଼ାଇଲୁ ଚିନ୍ତା
ଦୁଷ୍ଟ ଦୁରାତ୍ମଙ୍କର ଗର୍ବକୁ ଗଞ୍ଜନ୍ତା ।
ବେଦବର ସମ ତୁହି ଅଟୁ ମହାବଙ୍କ
ଅଜ୍ଞାମୀଙ୍କ ଇମା ତୁହି ଆଦର ସର୍ବଜ୍ଞ ।
ପାଣ୍ଡବାସୁର ନିଧନ ବକାଦର୍ପଗଞ୍ଜା
ମର୍ତ୍ତ୍ୟେ ଥାଇ ନାଗଲୋକେ ପାଉଅଛୁ ପୂଜା ।
ଦୟାସାଗର ଶରଣବନ୍ଧୁ ଅଟୁ ତୁହି
ଜରାସନ୍ଧ ବିନାଶିଲୁ ମଲ୍ଲଯୁଦ୍ଧ ଦେଇ ।
ପବନ ଆତ୍ମଜ ତୁମ୍ଭେ ଦୟାର ସାଗର
ଏହି ଅପରାଧ ପ୍ରଭୁ ମୋର କ୍ଷମାକର ।
ବହୁତର ସ୍ତୁତି ଚଲ ମଗଧର ବାଳ
ବେନନେତ୍ର ବହେ ତାର ଆନନ୍ଦାଶ୍ରୁ ଜଳ ।
ପୁଣ ପୁଣ ପ୍ରଣମିତ ହୁଅନ୍ତେ ବାଳକେ
ଦୟା ବହି ଭୀମସେନ ବସାଇଲେ କୋଳେ ।
ମୁଖେ ଚୁମ୍ବଦେଲେ ତାକୁ ବେନିଭୁଜ ଧରି
ଆସ ପୁତ୍ର ବୋଲି କହି ଭୀମ କୋଳକରି ।

ବହୁ ସୈନ୍ୟ ମଲେ ତୋର ଆରେ ପୁତ୍ରମଣି
ମୋ ଆସିବା ବାର୍ତ୍ତା ଘରେ ନ ଦେଲି ନ ଆଣି
ପଶ୍ଚିମ ଦିଗେ ବିଜୟ ଆମ୍ଭେହେଁ ନ ଜାଣୁ
ଦେଶାନ୍ତର ମୁଖରୁ କି ସନ୍ଦେଶ ନ ଶୁଣୁ ।
ଏ ଉତ୍ତରୁ ଅଙ୍ଗୀଦେଲେ ମଗଧ ନୃମଣି
ରାଜ୍ୟରେ ଉତ୍ସବ କର ତୁମ୍ଭେ ଏହିକ୍ଷଣି ।
ଗ୍ରାମର ଡାକୁଅଛନ୍ତି ଆଗେ ତିନରାତେ
ହୁଦଣ୍ଡ ଭ୍ରମର ଧରନ୍ତି ଅମାତ୍ୟେ ।
ବିଜେକଲେ ଭୀମସେନ ଚନ୍ଦ୍ରଶାଳାପୁରେ
ସମାରୋହରେ ଉତ୍ସବ ହୋଇଲା ରାଜ୍ୟରେ ।
ବହୁ କୃତକୃତ୍ୟ ହୋଇ ବୋଲି ସର୍ବଜନେ
ହରିଲୁ ସକଳ ଦୁଃଖ ତୋର ଦରଶନେ ।
ପ୍ରତ୍ୟକ୍ଷେ ଦେଖିଲୁ ଆଜ କିବା ନଦାବସ୍ତୁ
ସମସ୍ତେ ତରିଲୁ ଆମ୍ଭେ ଫସ ଭବ କଷ୍ଟୁ ।
ମଣୋହି ଯୋଗାଡ଼ ବେଗେ କରେ ସହଦେବ
ଜାଣିଥିଲା ଭୀମଙ୍କର ମଣୋହିର ଭାବ ।
ସହସ୍ରେକ ସୁପକାର ଥାନ୍ତି ଅନୁବ୍ରତ
ରୋଷଘର ପରିମଳ ରନ୍ଧଣା ନିମନ୍ତେ ।
ସୁସଞ୍ଚ ବୃହଳ ନେଲେ ଷାଠିଏ ପଇଟି
ବହୁ ବ୍ୟଞ୍ଜନ କରିଲ ଯେତେ ଯାକୁ ଅଣ୍ଟି ।
ସହସ୍ରେକ ସୂପକାର କରନ୍ତି ରନ୍ଧନ
ଶତେକ ମାଲ କରନ୍ତି ତଇଲ ମର୍ଦ୍ଦନ ।
ସ୍ନାନକଲେ ଭୀମସେନ ନଦୀର ଭିତରେ
ଆହ୍ନିକ ସାରି ବିଜୟ କଲେ ମଣୋହିରେ ।
ଘୃତର ଯୋଗାଡ଼ମାନ ନିରାମିଷ ଅନ୍ନ
ପରଶନ୍ତି ସୂପକାରେ ସୁପକ୍ୱ ବ୍ୟଞ୍ଜନ ।
ଭୁଞ୍ଜି ସାରି ବୃକୋଦର ଉଠିଲେ ବହନ
ପମାର ନୀରରେ ତହିଁ କଲେ ଆଚମନ ।
ଆଚମନ ସାରି ଭୀମ ବିଜୟେ ଆସ୍ଥାନେ
ଖଟନ୍ତି ଯେ ବିଳାସିନୀ ନୃତ୍ୟକାରୀମାନେ ।
ଉର୍ବଶୀ କଳିକା ଆଦି ସପ୍ତ ବାରନାରୀ
ନାଚନ୍ତି ଗାଆନ୍ତି ତାନମାନ ଲୟ ଧରି ।
ତୁମ୍ବୁର ବାଦ୍ୟ କରନ୍ତି ତାଳ ଧରି ହସ୍ତେ
ମୋହିନୀମାନେ ମୋହନ୍ତି ତାଙ୍କୁ ନୃତ୍ୟଗୀତେ
ସ୍ନାନ ଆଦି ଷଟକର୍ମ ସାରି ସହଦେବ
ମଣୋହି ସାରିଣ ଉଭା କଙ୍କରଇ ଭାବ ।

ଶ୍ରୀକରରେ ଅର୍ଘ୍ୟ ଘେନ ଜରାସନ୍ଧ ସୁତ
ବୃକୋଦର ପାଦେ ଦେଲା ହୋଇ ତୋଷଚିତ୍ତ
ଲକ୍ଷେଶ୍ୱର ସ୍ୱର୍ଣ୍ଣ ଦେଲା ଦେଖା ଦରଶନୀ
ପୁଣ ପୁଣ ସହଦେବ କରଇ ଦଇଘ ।
ସହଦେବଙ୍କୁ କୋଳ କରି ଧରି କହେ ଭୀମ
ରାଜସୂୟ ଯଜ୍ଞକୁ ତୋର ସଜକର ସୈନ୍ୟ ।
ଶ୍ରୀକରେ ମାରୁତି ଦେଲେ ଅକ୍ଷତ ଯେ ଗୁଆ
ଦଣ୍ଡଘେନ ଏତକ୍ଷଣ ରାଜସୂୟ ଯାଆ ।
ସହଦେବ ବୋଲେ ସ୍ୱାମୀ ତୋ ଆଜ୍ଞା ପ୍ରମାଣେ
ଇନ୍ଦ୍ରପ୍ରସ୍ଥେ ଅନୁକୂଳ ମୋର ଏତକ୍ଷଣେ ।
ତେଇଶୀ ଷଉଣୀ ଦଳ ସହଦେବ ସାଜ
ମନ୍ତ୍ରୀଏ ରଥେ ଯୋଚନ୍ତି ଘ୍ୱର ଘ୍ୱର ବାଜ ।
ସହଦେବଙ୍କୁ ନମନ୍ତି ତହିଁ ବୃକୋଦର
ଶ୍ରୀମୁଖେ ବୋଇଲେ ବାବୁ ଶୁଭ ହେଉ ତୋର
ନଉଗ୍ରାଳ ସହଦେବ କରି ପରଣାମି
ଏପରି ଦୟା ସର୍ବଦା ରଖିଥିବ ସ୍ୱାମି ।
ଦଣ୍ଡ ଘେନ ବାହାରିଲା ଜରାସନ୍ଧ ବଳା
ଶାରଳା ଦାସ କହଇ ଚରଣ ଶାରଳା ।

---

## ମରୁତରାଜା ନିମନ୍ତ୍ରଣ ଓ ବୀରବାହୁ ରାଜା ସହିତ ଯୁଦ୍ଧ

ମଗଧ ଦେଶୁ ବାହାର ହୋଇ ସେହିକ୍ଷଣ
ମରୁତଦେଶେ ପ୍ରବେଶ ମରୁତ ନନ୍ଦନ ।
ପୃଥିବୀ ଯେ ଉଚ୍ଛୁଳଇ ବୀରତୂର ନାଦେ
ଶୁଭୁଛି ସୁସ୍ୱର ଧ୍ୱନି ବହୁଳ ଶବଦେ ।
ମରୁତ ଦେଶରେ ଭୀମସେନ ଯେ ପଶଇ
ଦେଶ ଈଶ୍ୱର ରାଜାପାଶେ ବାର୍ତ୍ତା ଦେଲେ ନେଇ
ଶୁଣ ଦେବ ସାବଧାନେ ମରୁତ ନୃପତି
ଭୀମସେନ ବଡ଼ବଳେ ରାଜାନ୍ତ ନମନ୍ତି ।
ମଗଧ ଦେଶରୁ ଦେବ ବିଜେ କଲେ କାଲି
ଦଣ୍ଡ ସାଜ ଭୀମସେନ ଆସୁଛନ୍ତି ବଳି ।
ଚର ମୁଖୁ ବାର୍ତ୍ତା ଶୁଣି ମରୁତ ନୃପତି
ପାତ୍ର ମନ୍ତ୍ରୀ ସଙ୍ଗେ ଘେନ ବାହଇ ଚଡ଼ତ ।
ଦଶନଖ ସମସ୍ତେହେଁ ମୁଖେ ଛନ୍ତି ଧର
ସ୍ୱାମି ତ୍ରାହି ତ୍ରାହି ବୋଲି ଶରଣ ପୁକାର ।

ଭୀମସେନ ଉଠୁଛନ୍ତି କୌଣପ ପର୍ବତ
ତହିଁ ଦର୍ଶନ କରନ୍ତି ନୃପତି ମରୁତ ।
ପାଣିଦ୍ରବ୍ୟ ଶତେଶ୍ୱର ଦେଖା ଦରଶନୀ
ମରୁତ ଦର୍ଶନ କଲା ଶ୍ୱେତ ହସ୍ତୀ ଘେନ ।
ତାହା ଦେଖିଣ ଆନନ୍ଦହେଲେ ବୃକୋଦର
ଆସ ଆସ ନୃପତି ତୁ ବାନ୍ଧବ ମୋହର ।
ହେ ରଜା ତୋର ଯେ ନାମ ମୋ ପିତାର ନାମ
ଆଉବେଳେ ମୋତେ ତୁ ନ କରିବୁ ପ୍ରଣାମ ।
ଅକ୍ଷତ ଗୁବାକ ଦେଲେ ମରୁତର ହାତେ
ସମଦଣ୍ଡ ଘେନ ରାଜା ଯାଅ ଇନ୍ଦ୍ରପ୍ରସ୍ଥେ ।
ମରୁତସେନ ନୃପତି କଲେ ବହୁ ସେବା
ବୋଲେ ମୋର ପୁରେ ସ୍ୱାମି ଆଜକ ରହିବା ।
ମଣୋହି କରଣ ଦେବ ଚଳ ଅନ୍ୟଦେଶେ
ଭୀମସେନ ବୋଲେ ଅନ୍ନ ନ ରୁଚେ ହରଷେ ।
ରାଜାଗଣ ନମନ୍ତିବା ମୋର ଇଷ୍ଟକର୍ମ
ଯେଉଁପରି ରାଜାମାନେ ଯାଆନ୍ତି ବହନ ।
ତୁ ତାତ ଚଳ ତୋହର ସମଦଣ୍ଡ ଘେନ
ଶୁଣିଣ ମରୁତ ବେଗେ ଚଳେ ସୈନ୍ୟଘେନ ।
ବହୁତର ବୀରତୂର ଟମଦହିଁ ବାଜେ
ପାଣ୍ଡବସୁନ୍ଦର ଚଳେ ସେହିଠାରୁ ବଜେ ।
ଦଳାଙ୍ଗୀ ନଦୀର କୂଳେ ଉଜାଣି ସେ କାନ୍ତ
ତହିଁ ରାଜ୍ୟ କରେ ବୀରବାହୁ ନରପତି ।
ବଡ଼ ପ୍ରତାପୀ ରାଜା ସେ କାଳେ ନୁହେ ସାଧି
ଜରାସନ୍ଧ ଯୁଦ୍ଧେ ତାକୁ ନ ପାରିଲା ବାନ୍ଧି ।
ପଞ୍ଚଦଶ କ୍ଷୌଣୀ ବଳ ତାହାଙ୍କୁ ଖଟଇ
ତାହାର ରାଜ୍ୟକୁ ଚନ୍ଦ୍ରଗିରି ନିକଟହିଁ ।
ସେ ରାଜ୍ୟେ ଯାଇ ପ୍ରବେଶ ହୋଇଲେ ମାରୁତି
ଚରେ ବାର୍ତ୍ତା ଜଣାଇଲେ ବୀରବାହୁ କତି ।
ସ୍ୱାମୀ ପାଣ୍ଡବସୁନ୍ଦର ବୃକୋଦର ଭୀମ
ଦିଗବିଜେ କରିବାକୁ ଅଇଲା ପଶ୍ଚିମ ।
ବହୁତର ରାଜ୍ୟ ଦେବ ଆସିନ୍ତି ସେ ଜିଣି
ଆମ୍ଭ ରାଜ୍ୟେ ପଶିଲା ସେ କାଳଦଣ୍ଡ ପାଣି ।
ଶୁଣିକର କୋପ କଲା ନୃପ ବୀରବାହୁ
କଏରେ ପାଣ୍ଡବ ତାର ଏଡ଼େ ଦର୍ପ କାହୁଁ ।
କେଉଁ ଦେଶରେ ସେହି ଏଡ଼େ ବଡ଼ ଭୀମ
ନିଷ୍ଟୟ ପାଞ୍ଜି ତାହାର ପୋଛିଲଣି ଯମ ।

ନ ଜାଣଇ କରେ ରାଜା ଷାଇବାହୁ ବୋଲି
ଯୁଦ୍ଧେ ପରାକ୍ରମ୍ୟ ମୂର୍ତ୍ତି ତାହାକୁ ନ କଲି ।
କେ ଜାଣଇ ପାଣ୍ଡବରେ କେ ଜାଣଇ ଭୀମ
ମୋର ଯୁଦ୍ଧେ ଆଜ ତାଙ୍କୁ ନଷ୍ଟେ ନେବ ଯମ ।
ସୁବାହୁ ବୋଲି କରଣ ଅଟେ ତାର ପାଶ
ତାହାକୁ ଗଇ ବୋଇଲା ହୋଇ କୋପଚିତ୍ତ
ପଞ୍ଚଅଇବ୍ରତ ଟଥ ପାଞ୍ଚକ୍ଷୌଣୀ ଦସ୍ତ
ଏ ସର୍ବ ଏଠାରୁ ନେଇ କେତେ ଭୁଞ୍ଜ ଯାଅ ।
ରାଜ୍ୟରେ ପଶି ଆସନ୍ତ ଥାଅ ମହାବଳୀ
ଆରେ ରହ ରହ ବୋଲି ଆଗେ ସେ ଉଗାଳ
ଶୁଣିନାହୁଁ କ୍ରୁଦ୍ଧ କରେ ନୃପ ବୀରବାହୁ
ନଷ୍ଟସ୍ୟ ତୋର ବଳକୁ ଘୋଟିଲାଣି ରାହୁ ।
ପ୍ରାଣୀଏ ବର୍ତ୍ତିନ୍ତ କରେ ଉଗାଳନ୍ତେ କାଳ
ମୃଗପଲ ଦେଖି ଭୟ କରେ କି ଶାର୍ଦ୍ଦୂଳ ।
କହୁଚ ପ୍ରତିଜ୍ଞା ଚର୍ଣ୍ଣି କରୁଛନ୍ତି ସୈନ୍ୟ
ଏ ସକଳ କଥା ଶୁଣୁଅଛି ଭୀମସେନ ।
ଭୀମ ଥାଟେ ଆଗ୍ରଆଣୀ କାଳ ଯେ ବିକାଳ
ବଜ୍ରାବଳୀ ଗଦାମାନ ଧରି କରସ୍ଥଳ ।
ବୋଇଲେ ସୁବାହୁ ପାଶେ ତୋ ରାଜାକୁ କହ
ନାଶକର ଦେବତାକୁ କେ କରିବ କୋହ ।
ବାଳକାଳେ ଘାର ପାଦେ ଶତଶୃଙ୍ଗ ଚୂନା
ନ ଜାଣେ କି ବୀରବାହୁ ବୃକୋଦର ଜେନା
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବେ
ଚତୁର୍ଦ୍ଦିଗ ରାଜା ସମଦଣ୍ଡ ଘେନଯିବେ ।
ଭୂମରେ ଅନ୍ତର ପୂର୍ବ ନାହିଁ କଲୁ ଦ୍ୱନ୍ଦ୍ୱ
ଶୁଣିଣ ପଣ୍ଡିତ ଲୋକ ହୁଅନ୍ତି ଆନନ୍ଦ ।
ପ୍ରତ୍ୟକ୍ଷେ ଶମନ ଏଥେ ବଳେ କଲେ ଆସି
କଏ ଏଥୁ ଉଦ୍ଧରିବ କାଳମୁଖେ ପଶି ।
କାଳ ବିକାଳଙ୍କ କଥା ଶୁଣି ପାଶ ଆଗେ
କୃତାନ୍ତକ ଗଦା ଘେନି ପ୍ରହାରିଲା ବେଗେ ।
ଗଦା ଆସନ୍ତେ ଦେଖିଲା ଭୀମ ସେନାପତି
ବାମକରରେ ତାହାକୁ ଧଇଲା ଝଟତି ।
ସେହି ଗଦାକୁ ସେକାଳେ ଧରି ନିଜ ହସ୍ତେ
ଲେଉଟାଇ ପିଟିଲା ସେ ପ୍ରତିଜ୍ଞା ସାମର୍ଥେ ।
ଗଦାଘାତେ ସୁବାହୁର ରଥ ଚୂର ହେଲା
ପାଦଗତିରେ ସୁବାହୁ ମୁଦ୍‌ଗର ପିଟିଲା ।

ଗଦାବର ବୁଲାଇଣ ପିଟିଲା ବିକାଳ
ଏମନ୍ତ ଉଭୟେ ଯୁଦ୍ଧ ହେଲା ବହୁବେଳ ।
ବିକାଳର ସମରରେ ଲେଉଟିଲା ସୁବାହୁ
ଚନ୍ଦ୍ର ଦେବତାକୁ ଯେହ୍ନେ ଘୋଟେ ଦୁଷ୍ଟରାହୁ
ଆକର୍ଷି ବିକାଳ ତାକୁ ମାଡ଼ଣ ବସିଲା
ଦ୍ୱିଫାଳ କରି ସୁବାହୁ ପାଶକୁ ଚଳିଲା ।
ସଂଗ୍ରାମରେ ପାଶ ଯନ୍ତ୍ରୁଁ ହୋଇଲା ସଂହାର
ଭାଙ୍ଗିଲେ ସଇନ୍ୟ ଆଉ ନ ଟେକିଲେ ଶିର ।
ଧାମନ୍ତି କାଳ ବିକାଳ ବେନି ସେନାପତି
ମହା କାଳାନଳ ପ୍ରାୟେ ଭୟଙ୍କର ମୂର୍ତ୍ତି ।
ବୁଲାଇଣ ଗଦାବର ଅତି କୋପେ ପିଟି
ବହୁ ସଇନ୍ୟ ପଡ଼ିଲେ ଚର୍ଣ୍ଣି ମଞ୍ଜି ଲେଉଟି ।
ରଥେ ରଥ କଚାଡ଼ିଲେ ଗଜେ ଗଜ ଧରି
ପିଟନ୍ତେ ସର୍ବେ ପଡ଼ିଲେ ଲକତ ଉଦ୍‌ଗାରି ।
ଏକଲକ୍ଷ ରଥ ପଞ୍ଚ ମର୍ଦ୍ଦନ୍ତି ଯେ ହସ୍ତୀ
ପଞ୍ଚକୋଶେ ପଡ଼ି ପୃଥ୍ୱୀ ହେଲା ରକ୍ତମୟ ।
ରାଜାର ସମ୍ମୁଖରେ ଯାଇଁ କହିଲେ ମୁନେହିଁ
ସ୍ୱାମି ସର୍ବେ ନାଶଗଲେ ସୈନ୍ୟ କେହି ନାହିଁ ।
କାଳ ବିକାଳ ସେକ୍ଷଣ ବେନି ସେନାପତି
ପ୍ରତ୍ୟକ୍ଷରେ ବଶୁଛନ୍ତି କାଳ ଯମ ମୂର୍ତ୍ତି ।
ଆନ୍ତର ବୋଲି ନ କଲୁ କୁହ ନୃପମଣି
ସ୍ୱରକ୍ଷୌଣୀ ନାଶଗଲେ ତୋହର ସଇନ୍ୟ ।
ଶୁଣିଣ ଅଧର ପୁଷ୍ଟ କରେ ବୀରବାହୁ
ପାଣ୍ଡବ ମାନଙ୍କ ଆରେ ଏଡ଼େ ଦର୍ପ କାହୁଁ ।
ସେନ୍ୟ ସାଜ ବୋଲି ଆଜ୍ଞାଦେଲା ନୃପମଣି
ରଥ ଗଜ ଅଶ୍ୱ ଦଣ୍ଡ ସଇନ୍ୟ ପଲଣି ।
ଏଗାର କ୍ଷଉଣୀ ପୁଣି ସୈନ୍ୟବଳ ସାଜ
ଧାମନ୍ତି ଯେ ସୈନ୍ୟମାନେ ହୋଇ ଗଳଗାଜ
ନଗର ଭିତରେ ବଳେ ପଶୁ ଆରେ ଭୀମ
ଦଣ୍ଡ ଦେଖି ଭୀମ ସ୍ମରେ ପୁରୁଷ ଉତ୍ତମ ।
ସ୍ୱାମି ତୁମ୍ଭେ ବୋଲି ଥିଲି ରାଜା ନ ମାରବୁ
ପଶ୍ଚିମଦ୍ୱାର ରାଜାଙ୍କୁ ନିମନ୍ତ୍ରି ଆଣିବୁ ।
ସ୍ୱାମି ଜରାସନ୍ଧ ବଧ କଲ୍ ଏ ନିକଟେ
ଏଡ଼େବଡ଼ କଥାଗୋଟି ପାସୋରିଲେ ଦୁଷ୍ଟେ
ଆଜ ଯୁଦ୍ଧେ ନ ବର୍ତ୍ତିବ ଏହି ବୀରବାହୁ
ଏ ରାଜାର ଭୁଲେ ଧନ ଦେବ ମୋର ଚହୁଁ

ରଥିଁ ସୁବର୍ଣ୍ଣ ସଜାଏ ଚଢ଼ାଇବେ ହର
ଦୁଷ୍ଟଙ୍କ ପ୍ରତିଜ୍ଞା ଦେହ ସନ୍ଧ ଯେ ନ ପାର ।
ହି ସ୍ୱରଟା ନ ମାଇଲେ ହତ ନୋହେ ସାଧି
ଦୁଷ୍ଟରାଜା ବଞ୍ଚିଥିଲେ କାର୍ଯ୍ୟ ନୋହେ ସିଦ୍ଧି ।
ମରୁତ ସାରଥି ବୋଲେ କୋପ ଶାନ୍ତକର
ରାଜାଙ୍କୁ ମାଇଲେ ଯଶ ହେବ କ ତୋହର ।
ଏରୂପେ କହିଲା ଯହୁଁ ମରୁତ ସାରଥି
ଶୁଣିକର ବୃକୋଦର କୋପକଲେ ଶାନ୍ତି ।
ଶୀରବାହୁ ସୈନ୍ୟମାନେ ବେଢ଼ିଲେକ କୋପେ
ପଦ୍ମ ଆଘାତରେ ଯେହ୍ନେ ଗରଜନ୍ତ ସର୍ପେ ।
ଧର ଧର ମାର ମାର ବୋଲ ପଡ଼େ ବୋଉ
ସୈନ୍ୟଙ୍କ ହିଂସାଘାତରେ କମ୍ପେ ପୃଥ୍ୱୀଦେବୀ
ରେ ରେ କାର କର ଯାରେ ପ୍ରଭଞ୍ଜନ୍ତ ରଡ଼ି
ସେ ରଡ଼ି ଶୁଭଇ ଯେହ୍ନେ ମେଘ ଘଡ଼ଘଡ଼ ।
ସର୍ପ ଦେଖି ଖଗେଶ୍ୱର ଯେହ୍ନେ ରାଗ ହୋଇ
ସେପରି ଉଠିଲେ ଭୀମ ନ ସାହିଲେ ସନ୍ଧି ।
ସେନାପତି ବୃତାନ୍ତଙ୍କ ଜାଣ ଆଗୁସର
ସେ ଥାଟେ ପଶିଲେ ଯଥା ଇନ୍ଦ୍ରମକେଶରୀ ।
ଜାଣେବର ଗଦା ଘେନି ଧାଇଁଲେ ମ ରୁଚି
ରଣେ ଅନବାଇ ସେହ୍ନ ଅଟନ୍ତି ଅଶାନ୍ତି ।
ଯେଉଁପରି ଦେଖାଯାଏ ମନ୍ଦର ଭୂଧର
ସେହ୍ନ ସ୍ୱରୂପ ଦିଶଇ ପାଣ୍ଡବ ସୁନ୍ଦର ।
ଗଦା ବୁଲାଅନ୍ତେ ତା'ର ବହେ ଯେ ପବନ
ସେ ବାତେ ଉଡ଼ିଲେ ବହୁ ଶୀରବାହୁ ସୈନ୍ୟ
ଗଦାରୁ ବହେ କ ରଥିଁ ଅଣଷ୍ଠ ବାତ
ରଥ ଗଜ ଅଶ୍ୱ ଆଦି ଉଡ଼ିଲେ ବହୁତ ।
ଅନେକ ଦୂରେ ସେମାନେ ପଡ଼ିଲେକ ଉଡ଼ି
ଯମସମ ମୂର୍ତ୍ତି ଧରି ଭୀମଦେଲେ ରଡ଼ି ।
ଦେଖିଣ ତରସ୍ତ ହେଲା ଉଜାଣର ପତି
ଉଲ୍‌କାପାରୁ ବଞ୍ଚିବାକୁ ନାହିଁ ତାର ଶକ୍ତି ।
ମରୁତ ସାରଥି ବୋଲେ କୋପକୁ ସହର
ନିଜ କାର୍ଯ୍ୟ ଅଛି ତାର ଦୋଷ କ୍ଷମାକର ।
ସେବକର ଦୋଷାଦୋଷ ସ୍ୱାମି ଯେ ସହଇ
ଯେତ୍ତେ ପ୍ରଭୁ ହୁଏ ସେତ୍ତେ ଦଣ୍ଡଇ କ୍ଷମଇ ।
ମରୁତ ଏହା କୁହନ୍ତେ ଶୀରବାହୁ ତେଣେ
ବହୁତ ପ୍ରତିଜ୍ଞା କରେ ଶର ସନ୍ଧି ଗୁଣେ ।

ଏହା ଦେଖି କୋପଭରେ କମ୍ପାଇଣ କାୟ
ଗଦା ତୋଳିଣ ଧାଇଁଲେ ପବନ ତନୟ ।
ସଂଗେ ଅଇବ୍ରତ ଯୋଦ୍ଧା ଏକମୁଖ ହୋଇ
ପ୍ରହାର କଲେ ଭୀମକୁ ଖଡ୍‌ଗ କୁନ୍ତ ନେଇ
ଗଜପଲ ଦେଖି ଯେହ୍ନେ ଧାମଇଁ କେଶରୀ
ତେହ୍ନେ ବୃକୋଦର ଧାଏଁ ଗଦା ଘେନିକରି
ତା ନଡ଼ ଶବଦେ ସାତବ୍ରହ୍ମାଣ୍ଡ କମ୍ପିଲା
ମହା ମହା ଗିରି ବୃକ୍ଷ ଭାଙ୍ଗି କ ପଡ଼ିଲା ।
ଯୋଡ଼ିଲା ପବନ ଜବା ଆସେ ସ୍ଥାନ ତେଜ
ସେପରି ବେଗେ ଧାମନ୍ତି ଭୀମ ଗଜରାଜ ।
ଆକର୍ଷି ମାଇଲେ ବହୁ ସୈନ୍ୟକୁ ସମରେ
ରଥ ନେଇ କଚାଡ଼ିଲେ ରଥର ଉପରେ ।
ପୁଣି ବାହା ନାଦ କରି ଗଜେ ଗଜ ପିଟି
ଅଶ୍ୱେ ଅଶ୍ୱ କଚାଡ଼ନ୍ତେ ପଡ଼ିଲେ ସେ ଲେଟି
ସୈନ୍ୟ ନାଶ ହେବା ଦେଖି ଆସେ ଶୀରବାହୁ
ବୋଲେ ରେ ପାଣ୍ଡବା ଏତେ ଦର୍ପ କାହ୍ନ୍ଥ ବହୁ
ପରରାଷ୍ଟ୍ରେ ପଶି ତୋର ଏତେବଡ଼ ଦର୍ପ
ଖଗେଶ୍ୱର ଆଗେ କାହିଁ ଗରଜଇ ସର୍ପ ।
ଅନେକ ପ୍ରତିଜ୍ଞା କରି ଗର୍ଜି ସେହୁ ରାୟେ
ଅଶ୍ୱେ ଚଢ଼ି ଖେପିଲା ସେ ଶ୍ୟେନପକ୍ଷୀ ପ୍ରାୟେ
ଶତ ଶତ ଭାର ଘେନି ଗଦା ସେ ବୁଲଇ
ଭୀମସେନର ଉପରେ ପିଟିଲା ନଠାଇ ।
ସେ ଆଘାତେ ଭୀମସେନ ଦେହ ଗଲା ଫାଟି
ରକତ ବହିଲା ଯେହ୍ନେ ହୁଏ ଜଳବୃଷ୍ଟି ।
ସେ ଆଘାତେ ଘୁମାଇଲେ ପବନର ବାଳ
ପୁଣି ତେଜ ଉଠିଲା ସେ ତେଜେ ଅନଗଳ ।
ବୃକୋଦର ମୁରଛିକ ଚକାଶିଣ ଭୀମ
ଗଦା ବୁଲାଇଣ ପୁଣି କରିଲେ ସଂଗ୍ରାମ ।
ଆରେ ଆରେ କହି ଗଦା ପିଟିଲେକ ତୋଳି
ଗଜ କୁମ୍ଭରେ ବାଜନ୍ତେ ଗଜ ହେଲା ଧୂଳି ।
ସାବଧାନରେ ଧାମଇଁ ଶୀରବାହୁ ନୃପ
ଭୀମକୁ ଗଦା ପିଟିଲା କରି ମହାକୋପ ।
ସେ ଗଦା ପିଟନ୍ତେ ଭୀମ ଗଦାକୁ ପାତିଲା
ଦୁଇଗଦା ଘରଷଣେ ଅନଳ ଉଠିଲା ।
ଗଦା ବୁଲାଇ ମାରନ୍ତେ ବୀର ବୃକୋଦର
ଶୀରବାହୁ ଗଦା ବାଜି ହେଲା ଶତେ ଚୂର ।

ଗଦା ଭାଜନ୍ତେ ହରଷେ ହେନ ଖଡ଼୍ଗଫଳା
ନିର୍ଭୟେ ଯୁଝେ କୁମୁଦସେନ ରାଜବଳା ।
ବାୟୁଗତିରେ ବୁଲାଇ ସେହି ଖଡ଼୍ଗକୁ
ପ୍ରହାର କଲାକ ନେଇ ଭୀମର ଗାତ୍ରକୁ ।
ଖଡ଼୍ଗ ଦେଖି ଭୀମ ବାମଅଙ୍ଗ ପାତିଦେଲା
ବାଜିଣ ସେହି ଖଡ଼ଗ ଭାଙ୍ଗି ଗୁଣ୍ଡା ହେଲା ।
ଖଡ଼୍ଗ ଭାଙ୍ଗୁ ବୀରବାହୁ ହେଲା ଶୂନ୍ୟହସ୍ତ
ଭୀମସେନକୁ ମାଇଲା ରୋଷେ ବେଜ୍ରମୁଥ ।
ପ୍ରତିଜ୍ଞା ବଳବନ୍ତ ସେ ପବନର ଶିଷ୍ୟ
ବାମହସ୍ତରେ ଧଇଲା ବୀରବାହୁ କେଶ ।
ଦକ୍ଷିଣ ହସ୍ତେ ଖଡ଼ଗ ଧରି କୋଳାଗ୍ରତେ
ମାରିବ ବୋଲି ଖଡ଼ଗ ଉଞ୍ଚାଏ ତୁରିତେ ।
ଖଡ଼୍ଗ ଉଞ୍ଚାନ୍ତେ ମନ୍ତ୍ରୀତ କଲା କୋଳାଗ୍ରତ
ବୋଇଲା ହୋ ଭୀମ ତୁମ୍ଭେ କୋପ କର ଶାନ୍ତ
ସୂତକୁ ପେଲି ଦେଇଣ ଭୀମ ପରଚଣ୍ଡା
ମାରିବାକୁ ସେ ରାଜାକୁ ଝମକାଏ ଖଣ୍ଡା ।
ଛାଡ଼ ଛାଡ଼ ହେ ସାରଥି ବୋଲେ ବୃକୋଦର
ଅବଶ୍ୟ ଶିର ଛେଦିବ ଏ ବୀରବାହୁର ।
ସାରଥି ବୋଲେ ଅଇଲୁ ରାଜାକୁ ନିମନ୍ତି
ରାଜାଙ୍କୁ ମାଇଲେ ଲଜ୍ଜା ହେବ କେଉଁମତି ।
ସଜ୍ଜନ ପାଳକ ତୁହି ଭାଙ୍ଗୁ ମୂଢ଼ ଦର୍ପ
ଭକତବତ୍ସଳ ତୁହି ତ୍ୟାଗ କର କୋପ ।
ଏହାପ୍ରତି ମନ ମଧ୍ୟେ କରିଲେ ତୁ ରିହ
ଏ ଅନାଥ ହେବ ଆହେ ପବନ ତନୟ ।
ଏକାଳେ ଦନ୍ତେ ତୃଣ ଧରି ବୀରବାହୁ
ବୋଲେ ତୋ ଶରଣ ଦୋଷ କ୍ଷମ ମହାବାହୁ
ମୁଁ ଅଜ୍ଞାନ ତୁ ଅନାଥ ଜନଙ୍କର ବନ୍ଧୁ
ଶରଣରକ୍ଷଣ ନାଥ ବଂଶ ତୋର ସାଧୁ ।
ନ ଜାଣି ପ୍ରତିଜ୍ଞା ମୁହିଁ କଲଇଁ ବହୁତ
ମୁଁ ଅଧମ ମୋର ଦୋଷ କ୍ଷମ ବଳବନ୍ତ ।
ମୁହିଁ ଅବା ଦ୍ରୋହ ତେତେ କଲଇଁ ଅଜ୍ଞାନେ
ଏଥିକୁ ଅବା ଦ୍ରୋହ ତୁ କରିବୁ ବିଧାନେ ।
ପଣ୍ଡିତ ଜନଙ୍କର ଯେ ଶତ୍ରୁ ମିତ୍ର ନାହିଁ
ବ୍ରାହ୍ମଣ ବୈର କରିଲେ ଦୋଷ କ ନୁହଇ ।
ମୂର୍ଖ ଅପରାଧୀ ହେଲେ ସେହୁ ଦଣ୍ଡ ପାଏ
ମୁହିଁ ମୂର୍ଖ ଅପରାଧୀ ଦୋଷ କ୍ଷମ ରାୟେ ।

ଶରଣ ସୋଦର ନାଥ ମୋତେ କର ରକ୍ଷା
ପ୍ରାଣଦାନ ମାଗୁଅଛି ଦିଅ ଏହି ଭିକ୍ଷା ।
ବହୁସ୍ତୁତି କରି ରାଜା କାନ୍ଦଣ ବିକଳେ
ପ୍ରଣାମ କରଇ ପୁଣ ଭୀମ ପାଦତଳେ ।
ଏମନ୍ତ ଦେଖି ବୋଇଲେ ପବନ ଦୁଲାଳ
ଦୁଷ୍ଟପଣେ ଯିବା ହେବିଗିଲୁ ତୁହି ମହୀପାଳ ।
ଏହା କହି ପୁଣ ଯେତେ ଦେଲେକ ପାବନ
ବୋଇଲେ ରାଜସୂୟଯଜ୍ଞେ ଯାଅ ସୈନ୍ୟ ଘେନ
ଚନ୍ଦନ କସ୍ତୁରୀ ତାର ଶିରରେ ଲେପିଲେ,
ଦେବାଙ୍ଗବସନ ଭୀମ ତା ମାଥେ ବାନ୍ଧିଲେ ।
ଅନେକ ଭକ୍ତିରେ ବୀରବାହୁ ନୃପମଣି
ପାଦ୍ୟଦଣ୍ଡସହ ଭୀମସେନ ଗଲା ଘେନି ।
ନିଜ ସିଂହାସନ ପରେ ନେଇ ବସାଇଲା
ନାନା ଉପଚାରେ ଭୀମ ଚରଣ ପୂଜିଲା ।
ନିଜେ ବୀରବାହୁ ଛତ୍ର ଧରି ଉଭା ହେଲେ
ବନ୍ଧୁବର୍ଗାଦି ଆଳଟ ଚାମର ବିଞ୍ଚିଲେ ।
ବିଜୟ ଭୀମ ନୃପତି ଆସ୍ଥାନ ଉପରେ
ନାଚୁଛନ୍ତି ବରାଙ୍ଗନା ତାହାର ଗ୍ରାମରେ ।
ବାସବବେ ପୃଚ୍ଛା କଲେ ସେ ବୀର ନୃପତି
ଆଜ ମୋ ପୁରରେ ଦେବ ରହ ଦିବାରାତି ।
ଭୀମ ବୋଲେ ଧ୍ୱଂସ କଲି ମୁଁ ତୋହର ରାଜ୍ୟ
ତନ୍ତୁସୈନ୍ୟ ନାଶ କଲି ହେଲା ତ ଅକାର୍ଯ୍ୟ ।
ତୋହର ରାଜ୍ୟରେ ଆମ୍ଭେ ରହିବୁ କେମନ୍ତେ
ରାଜାଙ୍କୁ ନିମନ୍ତି ଯିବୁ ପଶ୍ଚିମ ପ୍ରଶସ୍ତେ ।
ଆସ୍ଥାନୁ ଓହ୍ଲାଇ ସେହି ରାଜାଙ୍କୁ ସମ୍ବୋଧି
ଅମନାତ୍ୟେ ଶାଢ଼ୀ ଦେଲେ ବହୁତ ପ୍ରବୋଧି
ବୀରବାହୁ ବୋଲେ ଦେବ ତୋ ସଙ୍ଗରେ ଥିବ
ତୋପର ସ୍ୱାମୀଙ୍କ ଛାଡ଼ି କପାଁ ଆଗ ଯିବ ।
ଭୀମ ବୋଲେ ମୋ ସଙ୍ଗକୁ ନ ବଳାଅ ଇଚ୍ଛା
ରାଜସୂୟ ଯଜ୍ଞେ ଚଳ ପୂରୁ ମନୋବାଞ୍ଛା ।
ବାହୁଡ଼ିଲା ବୀରବାହୁ ତଥ୍ୟ କଥା ଶୁଣି
ଆପଣା ରାଜ୍ୟେ ଚଳିଲା ଥାଟକୁ ଘେନିଣି ।
ଜୟ ଶ୍ରୀଶାରଳା ଚଣ୍ଡୀ ଝଙ୍କଡ଼ବାସିନୀ
ତୋ ପାଦ ତଳେ ଶାରଳା ଦାସ ମହାମୁନି ।

---

## କାଶୀରାଜାଙ୍କ ନିମନ୍ତ୍ରଣ ଓ ପଞ୍ଚଧାର ତୀର୍ଥର ମାହାତ୍ମ୍ୟ

ବଣ୍ଡ୍ରସେନ ସେ ସ୍ଥାନରୁ ଚଳିଲେ ମାରୁତ
ଦଦୃଢ଼ ହୁଳା ଲଗାଇ ଗଲେ ନଶାରତ ।
ମହାସନ୍ନଦ୍ଧରେ ଚଳିଯାନ୍ତେ ଭୀମସେନ
ପ୍ରବେଶିଲେ ନପାଖରେ ହରଙ୍କ ଉଦ୍ୟାନ ।
ସେହି ନପାଖରେ କାଶୀତୀର୍ଥ ଯେ ବସଇ
କାଶୀଶ୍ୱର ବୋଲି ରାଜା ରହିଥିଲେ ତହିଁ ।
ବଡ଼ ପ୍ରତାପୀ ସେ ରାଜା ସେବା କରେ ଶିବ
ଧାର୍ମିକ ବିବେକ ସେହି ମହା ବଳିଷ୍ଠବ ।
ଶିରେ ଜଟା ଚୁଡ଼ଚାନ୍ଦ୍ର ଶ୍ରୀଭୁଜେ କଙ୍କଣ
ଶୂଳେକ ଧରି ବୃଷଭ ବାହନେ ଭ୍ରମଣ ।
କୋଟିଏ ଗଣନାୟକ ଥାନ୍ତି ତାର କୂଳେ
କେ ରାଜା ସମ ନୋହିବ ସମର କରିଲେ ।
ତିନିଭୁବନର ଲୋକେ ସଂଗ୍ରାମେ ତ ସମ
ନୋହିବେ ଏଂଡ଼ ବଳିଷ୍ଠ ସେ ହଣାୟୁ ଯମ ।
ମହାବଳବନ୍ତ ସେହି ଶିବଙ୍କ ପ୍ରସନ୍ନେ
ରଥୀପଣେ ସାମରଥା ନାହିଁ ତା ସମାନେ ।
ଭୀମସେନ ପ୍ରବେଶିଲେ ତାହାର ରାଜ୍ୟରେ
ବହୁ ବୀର ତୂରି ଢୋଲ ବାଜେ ଏକଥରେ ।
ଖବର ଜଣାଇଲେ ଯାଇ କାଶୀଶ୍ୱର ପାଶେ
ପଶ୍ଚିମ ରାଜାଙ୍କୁ ଜିଣି ଭୀମସେନ ଆସେ ।
ବୀରବାହୁ ରାଜ୍ୟ ପଶି ତା ସୈନ୍ୟ ମାଇଲେ
ରାଜା ଯୁଦ୍ଧେ ହାରନ୍ତେ ତାଙ୍କୁ ପ୍ରାଣଦାନ ଦେଲେ ।
ରାଜସୂୟ ଯାଗ ଅର୍ଥେ ରାଜା ନିମନ୍ତ୍ରଇ
ଯେଡ଼ୁ ହସ୍ତ କରେ ତାର ସକଳ ସରଇ ।
ବିସ୍ମରଣ କାର୍ଯ୍ୟକର କାଶୀଶ୍ୱର ରାୟ
ସଂଗ୍ରାମ କଲେଟି ହେବ ହେବଟି ଅଜୟ ।
ନରପତି ହୋଇ ଯେବେ ପଶଇ ଶରଣ
ଆଦର ଭକ୍ତି କଲେ ତା ରକ୍ଷାହୁଏ ପ୍ରାଣ ।
ଦେଶାଉର ମୁଖୁ ଏହି ବଚନକୁ ଶୁଣି
ବଣ୍ଡସାଜ ବୋଲି ବୋଲେ କାଶୀ ନୃପମଣି ।
ଆଜ୍ଞା ମାତ୍ରେ ସଜହେଲେ ବୀର ଯୋଦ୍ଧାମାନେ
ଶୂଳ ଏକ ଏକ ଧରି ବଜେ ବୃଷ ସନେ ।
ଏକ ହସ୍ତେ ଶୂଳ ଆର ହସ୍ତରେ ଡମ୍ବରୁ
ହୃଦରେ ଭୂଷଣ ସର୍ପ ଝୋଳନ୍ତି ଫେରୁ ।
ପଞ୍ଚଧାନ ଜଟାବନ୍ଧ ଶିରେ ତାମ୍ରଫଣୀ
ଡମ୍ବରୁ ବାଇ ଆସନ୍ତି ଚନ୍ଦ୍ର ଶୂଳପାଣି ।
ଭୀମ ଦଳେ କରଛନ୍ତି କାଶୀନଦୀକୂଳେ
ହେପୁରାନ୍ତକ ଦବେତ ରୁଦ୍ରବଟ ଦଳେ ।
ଦୂରୁ ଦେଖିଲେ ତାହାକୁ କାଶୀ ନରପତି
ଭୀମସେନଙ୍କର ଅଟେ ଭୈରବ ମୂରତି ।
ଦଣ୍ଡହସ୍ତେ ଗଦାଧର ଗିରିସମ କାୟ
ଦେଖି ହାସ କଲେ ସେହି କାଶୀଶ୍ୱର ରାୟ ।
ଚରଗଣ ଜଣାଇଲେ ଶୁଣିମା ହେ ଭୀମ
ଦେଖ ରୁଦ୍ରବରେ ରାଜା ଆଦ ଶିବସମ ।
ଭୀମସେନ ରୂପ ଚହିଁ କାଶୀଶ୍ୱର ହସି
ବୃଷଭୁଁ ଓହ୍ଲାଇ ହସ୍ତେ ଅର୍ଘ୍ୟ ଘେନ ଆସି ।
ଭୀମସେନ ପାଶେ ମିଳି ଦେଲେକ ପାଦାର୍ଘ୍ୟ
ବୋଲେ ତୁ ଠାକୁର ଅଟୁ ଏହି ମଧ୍ୟ ସ୍ୱର୍ଗ ।
ସଂସାର ଜନଙ୍କ ହିତେ ଜରାସନ୍ଧ ବଧି
ଶିବପୁରେ ଦେଲୁ ରାଜା ଷୋଡ଼ାଳଙ୍କୁ ସାଧି ।
ନ ଜାଣି ଦୁଷ୍ଟ ରାଜାଏ ହେଉଛନ୍ତି ବଣା
ତୁହି ପରମ ପଣ୍ଡିତ ନୁହେଁ ତାଙ୍କୁ ଜଣା ।
କୁମ୍ଭଜ ଉଦାର କଲୁ କପିଳାସ ରକ୍ଷା
ଶତଶୃଙ୍ଗ ଦର୍ପ ଭଙ୍ଗା ସର୍ପବିଷଭକ୍ଷା ।
ସନ୍ଧି ପାଉ ଦୁଷ୍ଟଙ୍କର ଦର୍ପକୁ ତୁ ସହୁ
ନ ଜାଣି ଅପ୍ରାଧି ହେଲି ତୋରେ ବୀରବାହୁ ।
ଅନେକ ସ୍ତୁତି କରି ସେ କାଶୀ ଦେଶସ୍ୱାମି
ଦୂରେ ରହି ହୁଏ ଶତ ସହସ୍ର ପ୍ରଣମି ।
ଭୀମ ବାକ୍ୟ ସ୍ମରି କାଶୀଶ୍ୱରକୁ କହିଲେ
ଉଠ ରାଜା ଠାକୁରଙ୍କ ତୋତେ ଆଜ୍ଞାହେଲେ ।
ଭୀମ ନିଜେ କୋଳକରି ଧରି ସେ ରାଜାକୁ
ଅକ୍ଷତ ଗୁଆ ଦେଇଣ ନିମନ୍ତ୍ରିଲେ ତାକୁ ।
ପୁଣି ବୋଇଲେକ ଭୀମ ଶୁଣ କାଶୀଶ୍ୱର
ରାଜସୂୟଯଜ୍ଞ କରନ୍ତି ଦେବ ଯୁଧିଷ୍ଠିର ।
ଆମ୍ଭର ଜ୍ୟେଷ୍ଠ ସୋଦର ଜାଣ ସେ ଅଟନ୍ତି
ବ୍ରହ୍ମହତ୍ୟାରୁ ତରିବେ ପଣ୍ଡୁ ନରପତି ।
ଅନେକ ନୃପତି ତହିଁ ହୋଇବେକ ମେଳ
ପଶ୍ଚିମେ ପେଷିଲେ ମୋତେ ଦେବ ବନମାଳୀ
ରହିଛନ୍ତି ଯେତେ ତୋର ଥାଟ ଆଦ ସୈନ
ଇନ୍ଦ୍ରପ୍ରସ୍ଥେ ଯାଅ ଦେଖା ଦରଶନା ହେନ ।

ଶୁଣି ଅନେକ ବିନୟେ ବୋଲେ କାଶୀଶ୍ୱର
ସ୍ୱାମି ଆଜକ ମଣୋହି ମୋର ପୁରେ କର ।
ତାର ଭକ୍ତି ଦେଖି ଭୀମ କଲେ ସନମତ
ତା ପୁରେ ପ୍ରବେଶ ହେଲେ ପବନର ସୁତ
ବେନ ଅଇବ୍ରତ ଭୀମ ସଙ୍ଗେ ସୂପକାର
ତାଙ୍କ ରନ୍ଧଣାରେ ତୃପ୍ତ ହୁଅନ୍ତି ବୃକୋଦର ।
ସେ ସୂପକାରେ ବୋଇଲେ ଶୁଣ କାଶୀନାଥ
ଠାକୁରଙ୍କର ମଣୋହି ଦେଇ ପାରବତ ।
ସଂଗ୍ରାମରେ ଭୋଜନରେ ଆଉ ଶୃଙ୍ଗାରରେ
ଅଦ୍ଭୁତ ଥାଆନ୍ତି ଏ ସବୁ ସମୟରେ ।
ବିଳମ୍ବ ନ ସହେ ଯାହା ଦେବ ଶୀଘ୍ର ଆଣ
ତିନଶ ଷାଠଏ ପୌଟି ଦେଲେ ଅଧେ ଜାଣ
ବ୍ୟଞ୍ଜନ ପାଇଁ ପରିବା ଯେତେ ଦେଇପାର
ରଜା ବୋଇଲେ ସେଥିକ ଚିନ୍ତା କିପାଁ କର
ଯେତେକ ଅଣାଇ ଦେବ ମୁଁ ଅନ୍ନ ବ୍ୟଞ୍ଜନ
ବେଗେ ତୁମ୍ଭେ ସୂପକାର କର ଯା ରନ୍ଧନ ।
ଶୁଣି ସୂପକାରେ ସ୍ନାନ କାର୍ଯ୍ୟାଦି ସାରିଲେ
ହାଣ୍ଡି ତଣ୍ଡୁଳାଦି ଦ୍ରବ୍ୟେ ରନ୍ଧଣା କରିଲେ ।
ବୋହଗ ପ୍ରସନ୍ନେ ହେଲା ବହୁ ପାକସାର
ସ୍ନାନ ତର୍ପଣ ସାରିଲେ ବୀର ବୃକୋଦର ।
ହେ ଚୈତନ୍ୟ ମାରୁତିଙ୍କୁ ରହେ ନିଦ୍ରା ନାହିଁ
ଦିବସରେ ଭୋଜନକୁ ଇଚ୍ଛା ନ ବଳଇ ।
ରଜାମାନଙ୍କୁ କିପରି ସାଧିବ ଏ ଇଚ୍ଛା
ତେବେ ସେ ପୂରଣ ହେବ ମୋର ମନୋବାଞ୍ଛା ।
ବେଗ ହୋଇ ଭୀମସେନ ମଣୋହି ସାରିଲେ
କ୍ଷଣକେ ଭୋଜନ କରି ଆଚମନ କଲେ ।
ତାମ୍ବୁଳ ଚର୍ବଣ କରି ହୋଇଲେ ସୁବେଶ
ତହୁଁ ବସ୍ତ୍ର ସାଜ ବୋଲି ଦେଲେ ଏ ଆଦେଶ
ଘୁମୁରେ ସେ କାଶୀଶ୍ୱର ଓଳଗ ହୋଇଲେ
ବସ୍ତ୍ର ସାଜ ଭୀମସେନ ତହୁଁ ବାହାରିଲେ ।
ଜୟ ଶଙ୍ଖ ଭେରି ତୂରୀ ବାଦ୍ୟ ବଜାଇଣ
ତିହୁଡ଼ି ଦେଖିବାକୁ ବିଜେ କଲେ ଭୀମସେନ ।
ମାର୍ଗଶିର ଶୁକ୍ଳପକ୍ଷ ଚଉଠି ଦିବସ
ଚଳିଲେକ ଭୀମସେନ ହୋଇଣ ହରଷ ।
ପଞ୍ଚଧାରା ବୋଲି କରି ନଦୀ ଏକଗୋଟି
ଧୌସଙ୍ଗ ପର୍ବତରୁ ଆସିଅଛି ଫୁଟି ।

ସେ ନଦୀରେ ମାର୍ଗଶିର ମାସେ ସ୍ନାନକଲେ
ପଞ୍ଚମହାପାତକ ଯେ ଗୁଡ଼ପାଏ ଥିଲେ ।
ଗୋହତ୍ୟା ବୃଷଳୀ ଆଦି ପାତକୀ ମନୁଷ୍ୟ
ସ୍ନାନ କଲାମାତ୍ରେ ଅଙ୍ଗୁ ଦୋଷ ହେବ ନାଶ
ସେ ପଞ୍ଚବେଣୀ ନଦୀର ଜଳେ ଲିଙ୍ଗ ଅଛି
ସେ ଲିଙ୍ଗର ତେଜପୁଞ୍ଜ ଫୁଟି ବିରାଜୁଛି ।
ଅଶୀତାଳ ଗଭୀରରେ ସେହି ରହିଛନ୍ତି
ସ୍ନାନସାରି ବୁହିଁଲେ ସେ ନେହଙ୍କୁ ଦିଶନ୍ତି ।
କାଳଧ୍ୱଂସନ ଭଗର ଭୀମକୁ କହିଲ
ସ୍ୱାମି ତୋ ଯୋଗେ ଆମ୍ଭର ପାପ ନାଶଗଲା
ଏ ମହାତୀର୍ଥକୁ ଦେଖି ହୋଇଲୁ ସମର୍ଥ
ଏଠାରେ ଥିଲା ଅନ୍ଧକ ନାମେ ଏକ ଦୈତ୍ୟ ।
ଷାଠିଏ ସହସ୍ର ବର୍ଷ ହେଲା ମହାଯୁଦ୍ଧ
ତ୍ରିଅମ୍ବକ ନାଥ ତାକୁ ରଣେ କଲେ ବଧ ।
ଯହୁଁ ସେ ମଲା ଏ ତୀର୍ଥ ହୋଇଲା ନିର୍ମଳ
ଏଥେ ସ୍ନାନକଲେ ଖଣ୍ଡେ ଦୁରିତ ସକଳ ।
ଏହା ଶୁଣି ଭୀମସେନ ପଞ୍ଚଧାରା ତୀର୍ଥେ
ଶୌଚ ହୋଇ ଜଳ ମଧ୍ୟେ ପଶିଲେ ସୁଚିତ୍ତେ
ଦେଖିଲେ ବିଜେ ପରମ ଦେବତା ଧୂର୍ଜଟି
ଅଶୀତାଳ ଗଭୀରରୁ ତେଜ ଦିଶେ ଫୁଟି ।
କର ଯୋଡ଼ିଣ ବିଚିତ୍ର ବୀର୍ଯ୍ୟଙ୍କର ନାଥ
କ୍ଷୀପାରେଶ୍ୱର ସ୍ୱାମିଙ୍କୁ କଲେ ବହୁ ସ୍ତୁତି ।
ନମସ୍ତେ ନମସ୍ତେ ଦେବ ଅଭୟ ବରଦ
ନମସ୍ତେ ନମସ୍ତେ ଦେବ ବ୍ୟାଘ୍ର ତୋ ହୃଦ
ନମସ୍ତେ ନମସ୍ତେ ଦେବ ତୁ ପରମ ଯୋଗୀ
ନମସ୍ତେ ନମସ୍ତେ ଦେବ ଗୌରୀ ଅର୍ଦ୍ଧଅଙ୍ଗୀ
ନମସ୍ତେ ନମସ୍ତେ ଦେବ ବିବୁଧଙ୍କ ରାଜ
ନମସ୍ତେ ନମସ୍ତେ ଦେବ ପାର୍ବତୀ ଐଶ୍ୱର୍ଯ୍ୟ ।
ନମସ୍ତେ ନମସ୍ତେ ଦେବ ସର୍ବ ପିତାମାତା
ନମସ୍ତେ ନମସ୍ତେ ଦେବ ତୁମ୍ଭ ବରଦାତା ।
ନମସ୍ତେ ନମସ୍ତେ ଦେବ ପଞ୍ଚଦଶ ଆଖି
ନମସ୍ତେ ନମସ୍ତେ ଦେବ ପର ଦୁଃଖେ ଦୁଃଖୀ
ନମସ୍ତେ ନମସ୍ତେ ଦେବ ହେ ଗରଳଭକ୍ଷ
ନମସ୍ତେ ନମସ୍ତେ ଦେବ ବିଦାରିଲ ଦକ୍ଷ ।
ନମସ୍ତେ ନମସ୍ତେ ଦେବ ନୀଳକଣ୍ଠ ସ୍ୱାମି
ଭୀମ ଏ ସ୍ତୁତି ପଢ଼ିଣ ତାହାଙ୍କୁ ପ୍ରଣମି ।

ଯେ ଏହି ତୀର୍ଥର ନାମ ସଦା ସୁମରଇ
ତା ବାଞ୍ଛା ପୂରଣ ହୁଏ ସମ୍ପଦ ବଢ଼ଇ ।
ଯେହୁ ଅଟଇ ପଣ୍ଡିତ ବିଜ୍ଞବନ୍ତ ପ୍ରାଣୀ
ବିଷ୍ଣୁକଳା ଘେନଣ ସେ ଉପୁଜେ ଧରଣୀ ।
ଯେ ଏହି ପଞ୍ଚତୀର୍ଥକୁ କରେ ଏକ ଲୟ
ଯମଦଣ୍ଡରୁ ସେ ପ୍ରାଣୀ ହୁଅଇ ନିର୍ଭୟ ।
ଧର୍ମ ଅର୍ଥ ମୋକ୍ଷ ଅଛି ଯେବଣକି ଶାସ୍ତ୍ରେ
ଜ୍ଞାନ ଆଉଁ ତାହା ପ୍ରାଣୀ ମୁଞ୍ଚିବେ କେମନ୍ତେ
ଏ ନାବେ ବସି ତରିବେ ଏ ଭବ ଜଳଧି
ସକଳ ଜନଙ୍କୁ ଏହା ଦେଖାଇଲ ବୁଦ୍ଧି ।
ସଞ୍ଚିତ କର ହୃଦରେ ହରିନାମ ଗୋଟି
ଯେ ସ୍ଥାନେ ନାମ ହୁଅଇ ତହିଁ ସୁଧାବୃଷ୍ଟି ।
ଇହ ଛରଲେକେ ପ୍ରାଣୀ ପାଏ ପରିତ୍ରାଣ
ଆପଦ ପଡ଼ିଲେ ତାର ନ୍ୟନ୍ତ ନାରାୟଣ ।
ଆହେ ଜନେ ରାଗ ମୋହ ମାୟା ଛାଡ଼ ହିଂସା
ଏହା ଚେତ ଭାରତରେ ବିଳାସ ମନୀଷା ।
କୁଟୁମ୍ବ ଦେଖି ମାୟାରେ ନ ପଡ଼ ହେ ବାବୁ
ଅନିତ୍ୟ ସଂସାରେ ଏଥେ ଜଗନ୍ନାଥ ସବୁ ।
ତାହାଙ୍କୁ ଯେତେକ ଭଜିବ କରି ଏହି ଇଚ୍ଛା
ଅବଶ୍ୟ ପୂର୍ଣ୍ଣ କରିବେ ହରି ତୁମ୍ଭ ବାଞ୍ଛା ।
ଶରୀରେ ଧରିଛ ଯେଉଁ ଦୁଇଟି ଶ୍ରବଣ
ମନକୁ ନିବେଶି ତହିଁ ଭାରତକୁ ଶୁଣ ।
ଅଗତ ସଂସାରକୁ ଏ ଅଟଇ ଯେ ଚିତ୍ତ
ଧନ ସୁତ ବଢ଼େ ଯମଦଣ୍ଡେ ନାହିଁ ଭୀତି ।
ଏ ସଂସାର ତରିବାକୁ ଯାର ଥିବ ଇଚ୍ଛା
ଭାରତ ଶୁଣି ପୂରଣ କରନ୍ତୁ ମନବାଞ୍ଛା ।
ବହୁ ପୁଣ୍ୟରୁ ହୋଇଛୁ ମାନବ ଶରୀର
ପଞ୍ଚଭୂତ ଆତ୍ମା ଛନ୍ତି ଜ୍ଞାନର ଭଣ୍ଡାର ।
ଅମୃତେ ବିଷ ଉପୁଜେ ନାହିଁ କେଉଁକାଳେ
ସଂସାର ସାଗରୁ ନରେ ତର ଧର୍ମବଳେ ।
କାୟା ଯେତ୍ତେ ନ ଛୁଟଇ ଅମୃତ ଭକ୍ଷିଲେ
ସମନ ନ ଦଣ୍ଡେ ଯେତ୍ତେ ହରିଙ୍କୁ ସେବିଲେ ।
ଶ୍ରୀହରି ଚରିତ ଅଟେ ଏ ମହାଭାରତ
ଏହା ଲେଖିବାକୁ ମୁହିଁ ହେଲି ସମରଥ ।
ଜିହ୍ୱା ଲଳସେ ନ ବଧ ପଶୁ କଦାଚିତେ
ମୁହିଁ ଏହା ଜଣାଇଲି ସଂସାରର ହିତେ ।

ବୈକୁଣ୍ଠ ଲଭିବ ନରେ ଭାରତ ଶୁଣିଲେ
ମୁକ୍ତିବାଟ ମିଳେ ଏଥେ ଶାରଳା ବୋଇଲେ
ଆହେ ସାଧୁଜନେ ଶୁଣ ନିବେଶିଣ ମତି
ପଶ୍ଚିମ ଦିଗର କଥା ସଭାପର୍ବ ସ୍ଥିତି ।
ଭୃଗୁପ୍ରସ୍ଥଖଣ୍ଡ ଏ ମହାଭାରତ ଚରିତ
ହେ ପଣ୍ଡିତ ଜନେ ଶୁଣ ସ୍ଥିର କରି ଚିତ୍ତ ।
ପଶ୍ଚିମ ଦିଗ ବାରିତା ପଞ୍ଚତୀର୍ଥ କଥା
ଶୁଣିଲେ ଖଣ୍ଡନ ହୁଏ ଗୋ ବ୍ରାହ୍ମଣ ହତ୍ୟା ।
ଜଗନ୍ନାଥ ଶ୍ରୀଚରଣେ ରଖିଣ ମାନସ
ଭାରତ ରଚନା କରେ ଶ୍ରୀଶାରଳା ଦାସ ।

---

## ବିରାଟ ରାଜା କୀଚକଙ୍କୁ ଭୀମଙ୍କର ପତ୍ର ପ୍ରେରଣ

ଏଥୁ ଅନନ୍ତରେ ପୁଣି ମନୁ ନୃପବର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛା କଲେ କହ ମୁନି ଭୀମ ସ୍ତବ କଲେ
ତଦନ୍ତରେ କେଉଁ ରାଜା ନଗ୍ରକୁ ଗମିଲେ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ନରପତି
ପଞ୍ଚବେଣୀ ତୀର୍ଥେ ଭୀମ କରି ବହୁସ୍ତୁତି ।
ସ୍ନାନ କରନ୍ତେ ଦିଶିଲେ ଯୋଗେଶ୍ୱର ମୂର୍ତ୍ତି
ଦେଖନ୍ତେ ଶରୀରୁ ପାପ ହେଲ ବିନଶ୍ୟତି ।
ଯେତେ ହତ୍ୟା କରିଥିବ ଜ୍ଞାନେ ବା ଅଜ୍ଞାନେ
ବେନିଜନ୍ମ ଆଦୋର ସେ ଥାନ୍ତି ଜୀବମାନେ ।
ପଞ୍ଚବେଣୀ ତୀର୍ଥରେ ଯେ କରଇ ସ୍ନାହାନ
ପ୍ରତ୍ୟକ୍ଷ ଛୁଡ଼ଇ ତାର ହତ୍ୟା ଦୋଷମାନ ।
ହତ୍ୟାଦୋଷ କରଇ ଯେ ଜ୍ଞାନେ ବା ଅଜ୍ଞାନେ
ସେହି ପାପ ଗୋଡ଼ାଇଣ ଥାନ୍ତି ସନ୍ନିଧାନେ ।
ହତ୍ୟାକଲା ପ୍ରାଣୀଙ୍କୁ ଯେ ପ୍ରମାଦ ଚଳନ୍ତି
ଅନ୍ତିମ କାଳେ ତାହାର ପୁଣ୍ୟ ଘେନିଯାନ୍ତି ।
ଯେ ପ୍ରାଣୀ ଯାହାକୁ ନାଶ କରଇ ଅଦୋଷେ
କାଳରୂପେ ସେ ତାହାକୁ ନାଶେ ଅବଶେଷେ
କାଳିକୁ ବିନାଶ କଲେ ଶ୍ରୀରାମ ଠାକୁରେ
ଭେଡ଼େ ଛାଡ଼ି ନାଶଗଲେ ଜଗତ ହସ୍ତରେ ।
ଯେଉଁମାନେ ନିନ୍ଦ ପୁରେ ଆହେ ନରନାଥ
ଜୀବମାନଙ୍କୁ ନିର୍ଦ୍ଦୋଷେ କରନ୍ତି ହତ ।

କାଳେ କାଳେ ହତ୍ୟାଦୋଷ ଲାଗଇ ଅବଶ୍ୟ
ଯେଉଁକାଳେ ନ ଯାଏଟି ଶୁଣ ହେ ନରେଶ ।
ଏ କଥା ନିଶ୍ଚୟ କରି ବୁଝ ନରମଣି
କୌଣସି ଉପାୟେ ତରି ନ ପାରଇ ପ୍ରାଣୀ ।
ଯେବେ ଏହି ପଞ୍ଚତୀର୍ଥେ ସ୍ନାହାନ କରିବ
ତେବେ ସେ ପ୍ରାଣୀ ନିଶ୍ଚୟ ତହିଁରୁ ତରିବ ।
ଅନେକ ହତ୍ୟା କରିଣ ଥିଲେ ବୃକୋଦର
ସ୍ନାନକରୁ ହତ୍ୟା ଦୋଷ ହୋଇଲା ଅନ୍ତର ।
ଅଙ୍ଗ ବାହାର ଅଗାଧଜଳେ ଗଲେ ଭାସି
ତହୁଁ ଭୀମସେନ ବେଗେ ଉପରକୁ ଆସି ।
ଦଣ୍ଡ ଯେବେ ବଜେ ପଞ୍ଚଧାରା ପରବତେ
ଦୂତଙ୍କୁ ପୁଚ୍ଛନ୍ତି ତେଣେ ରାଜ୍ୟ ଅଛି କେତେ ।
ମୁନେଇ ବୋଲେ ଉତ୍ତର ପଶ୍ଚିମର କୋଣେ
ମଲ୍ଲଦେଶ ମତ୍ସ୍ୟଦେଶ ରାଜ୍ୟ ଅଛି ଏଣେ ।
କୀଚକ ଜଣିଲ ଦେବ ତ୍ରିଗର୍ତ୍ତର ଥାଟ
ମତ୍ସ୍ୟ ମଲ୍ଲଦେଶ ଭୋଗ କରଇ ବିରାଟ ।
ସଙ୍କୋଚନ ରାଜା ଝିଅ ସୁଦେଷ୍ଣା ଯେ ଥିଲା
ତାହାଙ୍କୁ ବିରାଟ ରାଜା ବିବାହ ହୋଇଲା ।
ସଙ୍କୋଚନର କୀଚକ ମୂଳେ ଶତଦଳା
ମହା ମହା ପରାକ୍ରମୀ ସେ ବିରାଟ ଶଳା ।
ତାହାର ରାଜ୍ୟକୁ ଯେବେ ଯିବ ତୁମ୍ଭେ ଦେବ
ପନ୍ଦରଶତ ଯୋଜନ ବନରେ ଚାଲିବ ।
ତହିଁର ମଧ୍ୟରେ ଦେବ ନାହିଁ ଗ୍ରାମ ଘର
ସେହି ବନସ୍ତ ଅଟଇ ତାହାର ଗୋଚର ।
ତାର ବାଣିଜ୍ୟ ଗୋରସ ଦଧି ଛେନା ଘୃତ
ଆବର ତା ରାଜ୍ୟେ ହୁଏ ଶସ୍ୟାଦି ବହୁତ ।
ଦୁହାଁଳ ହିପଦ୍ମ ଲକ୍ଷେ ବରଡ଼ିଆ ଗାଈ
ପଦ୍ମେକ ଅଣ୍ଡିରା ବଛା ପଦ୍ମେ ବଛା ମାଈ ।
ସ୍ୱାମୀ କୀଚକ ତା ଶଳା ଅଟେ ମହାବଳୀ
ସଂଗ୍ରାମେ ସମାନ ତାକୁ ନାହିଁ ମହୀସ୍ଥଳୀ ।
ମୁନେନ୍ଦ୍ର ବଚନେ ବୋଲେ ପବନର ସୁତ
ସେ ମତ୍ସ୍ୟ ଦେଶକୁ ବେଗେ କଢ଼ାଅ ତୁ ବାଟ ।
ଭୀମସେନ ସଙ୍ଗେ ଥିଲେ ପାଞ୍ଚ ଧୂମାକ୍ଷତ
ହୋଇଲା ସେ ରାଜ୍ୟ ଦେବ ଦୁସ୍ତର ବହୁତ ।
ତା ପାଖେ ଶ୍ରୀମୁଖ ଦେଇ ବରଗିବା ଦୂତ
ଶ୍ରୀମୁଖ ପାଇ ବିରାଟ ଯିବ ଇନ୍ଦ୍ରପ୍ରସ୍ଥ ।

ନଇ ବବସେ ଭ ଗଲେ ସେ ମତ୍ସ୍ୟାଧିପତି
ପଶ୍ଚିମ ରାଜାଙ୍କୁ କର ଦିବା ତାର ଗତି ।
ତାହାର ବଚନେ ଭୀମ କହିଲେ ତୋଷହୋଇ
ସଇଭ ହୋଇ ଶ୍ରୀମୁଖ ଲେଖ ଆହେ ପାନ୍ଥ ।
ଆଜ୍ଞା ପ୍ରମାଣେ ଶ୍ରୀମୁଖ କଲେକ ଲେଖନ
ଯେହ୍ନେ ଭୀମଙ୍କ ପ୍ରତିଜ୍ଞା ମଙ୍ଗଳ ବିଧାନ ।
ତାଳପତ୍ରରେ ଯତନେ ଲେଖନ୍ତି ଅକ୍ଷର
ଭୀମସେନଙ୍କ ପ୍ରତିଜ୍ଞା ଅଟେ ଯେଉଁପରି ।
ବିବେକ ପଣ୍ଡିତ ଅଟେ ସୁଚତୁର ପୁଣି
ଶ୍ରୀମୁଖ ଲେଖନ କଲେ ମନ୍ତ୍ରୀ ଶିରୋମଣି ।
ଶ୍ରୀ ଅନାଦ ପ୍ରଭୁଙ୍କ ଶ୍ରୀଚରଣେ ଶରଣ
ସୋମବଂଶ କୁଳରେ ଯେ ଅଟନ୍ତି ମଣ୍ଡନ ।
ପାଣ୍ଡୁସୁତ ନାୟକ ଶ୍ରେଷ୍ଠ ଯେ କୁଳରେ
ଜାନୁଘଣ୍ଟ ଧାରନ୍ତି ତାହାଙ୍କୁ ସମରେ ।
ଯଯାତିଦେବ ଦେଶର ସେ ରକ୍ଷାପାଳକ
ଭରତବଂଶୀୟ ଅଟନ୍ତି ସେ କୁଳନାୟକ ।
ଏହାଙ୍କ ତାତ ଅଟନ୍ତି କୁଳର ମଣ୍ଡନ
କୃମୁଦ ଦୈତ୍ୟର ଯେହୁ ଘେନିଲେ ପରାଣ ।
କୈଳାସ ସ୍ୱର୍ଗକୁ ଯେହୁ କଲେ ଉଦ୍ଧାରଣ
ପାଣ୍ଡବାସୁର ଦର୍ପ ଯେ କଲେକ ଧ୍ୱଂସନ ।
କାଶୀ ଭବନର ସେହୁ ରକ୍ଷଣ ପାଳକ
ଶିବପୁର ପ୍ରଜାଙ୍କର କଷ୍ଟ ଉଦ୍ଧାରକ ।
କୁରୁବଂଶରେ ଯାହାଙ୍କ ଯଶ ପରସ୍ପର
ଶତଧନୁ ଶରଣଟି ନେଲା ଯାହାଙ୍କର ।
କଉଶିକ ତୀର୍ଥରେ ଯେ ରକ୍ଷଣପାଳକ
କପଟ ବକଲଣ୍ଡୁକୁ ଯେ ଘୋର ଭକ୍ଷକ ।
ନାଗବଳଙ୍କର ଯେହୁ ଗରବ ଗଞ୍ଜିତ
ଚନ୍ଦ୍ରାବଳୀର ଅଟଇ ଯେହୁ ପ୍ରାଣନାଥ ।
ଶବର ପଲ୍ଲୀରେ ଯେହୁ ରକ୍ଷକ ପାଳକ
ଯେହୁ କପଟରେ ଯାଇ ମଗଧ କଟକ ।
ଜରାସନ୍ଧ ରାଜାକୁ ଯେ କଲେ ନିସୂଦନ
ଛୟାଣୋଇସସ୍ର ରାଜା ବନ୍ଦୀରୁ ମୋଚନ ।
ଇନ୍ଦ୍ରପ୍ରସ୍ଥ ଦାରୁଣା ହସ୍ତିନା ଜଇତ୍ରା
ଏହି ସ୍ୱବେଷ୍ଟି ଗ୍ରାମର ଯେ ରକ୍ଷା କରନ୍ତା ।
କୁଣ୍ଡଳ ଋଷିଙ୍କ ଯେହୁ ମାନ ଉଦ୍ଧାରଣ
ବାଳଭାବେ ଶତଶୃଙ୍ଗ ଯେହୁ କଲେ ଚୂର୍ଣ୍ଣ ।

ଦୋହଗ୍ଧ ପ୍ରସଙ୍ଗେ ଯେହୁ ବାଳକ କାଳରେ
ମହାବଳବାନ ହେଲେ ଜାଣନ୍ତି ସଂସାରେ ।
ଅଷ୍ଟାଙ୍ଗ ସର୍ପଙ୍କୁ ଯେ ମୁଷ୍ଟେ କଲେ ଚୂର୍ଣ୍ଣ
ଜତୁଘର ଉତ୍ପାତକ ଯେହୁ ଭୀମସେନ ।
କୁମ୍ଭୀର ଦୈତ୍ୟଙ୍କୁ ଜଳେ ନିଧନ ଯେ କଲେ
ନିଉଗ୍ରୀକ ମଧୁବନେ ଯେ ବୀର ମାଇଲେ ।
ଏକାଚକ୍ରା ନଗରେ ଯେ ହୋଇଲେ ରାଜନ
ବକାସୁରଙ୍କୁ ଯେ ବୀର କରିଲେ ନିଧନ ।
ଅଶ୍ଳେଷାର ଦର୍ପକୁ ଯେ ଭଞ୍ଜନ କରିଛି
କୀଚପୁତ୍ରଙ୍କୁ ଯେ ବୀର ଉଦ୍ଧାରି ଧରିଛି ।
ବୃନ୍ଦାବଳ ଧ୍ୱଂସିଲା ଯେଉଁ ବୀରବର
ହିଡ଼ିମ୍ବିକ ଅସୁରଙ୍କୁ ଯେ କରେ ସଂହାର ।
ହିଡ଼ିମ୍ବିକାର ଅଟନ୍ତି ଯେହୁ ପ୍ରାଣନାଥ
ପାଞ୍ଚାଳୀର ଯାହାଠାରେ ସଦା ତୁଷ୍ଟ ଚିତ୍ତ ।
ଲକ୍ଷେ ରାଜାଙ୍କ ଉପରେ ଯେ ମଉଡ଼ମଣି
ଯା ନାମେ ଭୟ କରଇ କାଳଦଣ୍ଡ ପାଣି ।
ଧୃତରାଷ୍ଟ୍ର ବଂଶର ଯେ ଅଟନ୍ତି ସଲ
ଯୋଦ୍ଧାମାନଙ୍କ ଉପରେ ଯେହୁ ମହାମଲ୍ଲ ।
ଦ୍ରୋଣ କୃପ କର୍ଣ୍ଣ ଶଲ୍ୟ ଶକୁନି ଆଦର
କୁରୁପତି ଆଦି ଯାର ନାମେ ଥରହର ।
ସୋମବଂଶ ଯାହା ଯୋଗେ ଅଭୟ ହୋଇଲା
କରୁଣାକର ଗନ୍ଧର୍ବେ ଯେହୁ ଉଦ୍ଧାରିଲା ।
ମାନଗୋବନ୍ଦର ଯେହୁ ମାନମର୍ଦ୍ଦନ
ଯାହାର ପ୍ରାକ୍ରମ ଶତସିଂହର ସମାନ ।
ଶତ୍ରୁଙ୍କୁ ଶରଣ ଯେହୁ ବୀର ନ ରଖଇ
ଦନ୍ତେ ତରଣ ଧଇଲେ ମାରେ ଯେ ଗୋଡ଼ାଇ
ଯୋଗୀଜନମାନଙ୍କର ଯେ ରକ୍ଷା ପାଳକ
ଦୁଷ୍ଟଗଣଙ୍କୁ ଯେ ବୀର କାଳକୃତାନ୍ତକ ।
ରାଜାଧିରାଜାଙ୍କ ପରେ ଯେ ଅଟେ କେଶରୀ
ବୀରବର ନାନା ଭେଦେ ଉଡ଼ଇ ଯାହାର ।
ସଜ୍ଜନେ ରାଜ୍ୟ କରନ୍ତି ଯାହାର ପ୍ରସାଦେ
ଯାକୁ ଜିଣି ନ ପାରନ୍ତି ଶତ୍ରୁଏ ବିବାଦେ ।
ବଳରାମଙ୍କର ଯେହୁ ଅଟନ୍ତି ସଲ
ରାକ୍ଷସ ନିଧନେ ଯେହୁ ଅଟେ ସହୁଲ୍ଲ ।
ଗଦା ଯୁଦ୍ଧରେ ଯେ ବୀର ଅଟନ୍ତି ନିପୁଣ
ଋଷିଋଷିଏ ଯା ଗୁଣ କରନ୍ତି ବର୍ଣ୍ଣନ ।

ଅରଣ୍ୟରେ ତପୀଙ୍କର ଯେ ରକ୍ଷାପାଳକ
ରାକ୍ଷସବଳମାନଙ୍କୁ ଯେ ପ୍ରାଣକଣ୍ଟକ ।
କେଶରୀକ କଶ୍ରପାରେ ଯେ ଅସ୍ତ୍ରଜନ
କାଳକେତୁ ଦୈତ୍ୟଶିର ଯେ କରେ ଛେଦନ ।
କାଳାନ୍ତକ କାଳେଦର ଧରେ ଗଦାବର
କାଳଦଣ୍ଡ ପକ୍ଷାଗ୍ରରୁ ଅଟେ ଯାହାଙ୍କର ।
ଯମ ସମାନ ଅଟଇ ଯେହୁ ବୀର ଭୀମ
କାଳ ବିକାଳ ଡରନ୍ତି ଶୁଣି ଯାର ନାମ ।
ଚିତ୍ରଗୁପ୍ତ ଅଟଇ ଯା ପାଦର ଆସନ
ଲୌହଦଣ୍ଡ ରଥ ଯାର ଅପୂର୍ବ ମଣ୍ଡନ ।
ଶାର୍ଦ୍ଦୂଳକେତନ ଚିହ୍ନ ଯା ରଥେ ଉଡ଼ଇ
ମୁକୁଟବନ୍ଧା ଯୋଦ୍ଧାଙ୍କ ମୁକୁଟ ଅଟଇ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ନୈର୍ଋତ
ବାୟବ୍ୟ ଈଶାନ ଅଗ୍ନିଦେବ ନରନାଥ ।
ଚତୁର୍ଦ୍ଦିଗ ରାଜାଙ୍କର ଯେ ମଉଡ଼ମଣି
ବୀରାଧିବୀରମାନଙ୍କ ଯେ ବୀର ଅଗ୍ରଣୀ ।
ଯେହୁ ପାଣ୍ଡବ ସୁନ୍ଦର ନାମେ ଭୀମସେନ
ପଶ୍ଚିମରାଜା ଦରଶେ କଲେ ଆଗମନ ।
ବହୁତ ରାଜାଙ୍କୁ ଜିଣି ନିମନ୍ତ୍ରଣ ଦେଇ
ମଗଧଦେଶ ମତ୍ସ୍ୟଦେଶ ତୋ ସୀମାରେ ରହି ।
ଦୂତ ହସ୍ତେ ପଠାଇଲେ ତା ମୁଖ ପ୍ରସାଦ
ସନ୍ତକ ଦେଇଛନ୍ତି ଜାଣ ଏହି ଗଦା ମୁଦ ।
ଏ ଲେଖା ପାଇଲା ମାତ୍ରେ ବିରାଟ ରାଜନ
ସୈନ୍ୟସହ ଯିବୁ ଘେନି ଦରଶନୀ ଧନ ।
ରାଜସି ଯାଗ ହୁଅଇ ଇନ୍ଦ୍ର ପ୍ରଶସ୍ତରେ
ପଢ଼ିଲା ମାତ୍ରେ ଚଳିବୁ ସେଠାକୁ ସତ୍ୱରେ ।
ମଣ୍ଡଳାଧିପତି ରାଷ୍ଟ୍ରପତି ବୀରବର
ବୃକୋଦର ସ୍ୱାମୀଙ୍କର ଏ ଆଜ୍ଞାପତ୍ରର ।
ହେଳା ନ କରିବୁ ତୁହି ବିରାଟର ପତି
ଦୂତ ପଠାଇଣ ଅନ୍ୟ ରାଜ୍ୟେ ଗଲୁ ଇତି ।
ଶ୍ରୀମୁଖ ଲିଖନ କରି ଯତ୍ନେ ଧୂମାକ୍ଷତ
ତାହାକୁ ପଢ଼ନ୍ତେ ଶୁଣି ଭୀମ ତୁଷ୍ଟ ଚିତ୍ତ ।
କାଳଞ୍ଜିନ ଆଉ କାଳଧ୍ୱଂସନ ଉତର
ଏ ବେନି ଦୂତଙ୍କୁ ଡାକି ବୀର ବୃକୋଦର ।
ତାହାଙ୍କୁ ଶ୍ରୀମୁଖ ଦେଇ ବୋଇଲେ ଏସନ
ବିରାଟଙ୍କୁ ଏହି ଲେଖା ଦେବରେ ବହନ ।

ଯେ ଆଜ୍ଞା କହିଣ ଦୂତେ ନମସ୍କାର କଲେ
ଶ୍ରୀମୁଖ ସେନଣ ତହୁଁ ଶିରେ ଲଗାଇଲେ ।
ଦେବ ବିମାନ ଆରୋହି ବେନି ସେନାପତି
ଶଏ ଭାଇ ସଙ୍ଗେ ଘେନି ଚଳିଲେ ଝଟତି ।
ସେହି ବିମାନ ଗୋଟିକ ଅପୂର୍ବ ଗଠନ
ପବନ ଗତିରେ ଚଳେ ନାହିଁ ତା ସମାନ ।
ଜୟ ଜୟ ଜଗନ୍ନାଥ ଶ୍ରୀ ପୁରୁଷୋତ୍ତମ
ଜୟ ଜୟ ନାରାୟଣ ନବଘନ ଶ୍ୟାମ ।
ଆହେ ଭୀମ ମୋର ହୃଦେ ହୁଅ ଅଳଂକୃତ
ସର୍ବ ମଙ୍ଗଳା ଚରଣେ ସଦା ମୁଁ ଆଶ୍ରିତ ।
ମନକର୍ଣ୍ଣ ଦେଇ ଶୁଣ ହେ ବିଜ୍ଞ ପଣ୍ଡିତ
ମୁଁ ଶୂଦ୍ରମୁନି ଶାରଳା ଚଣ୍ଡୀଙ୍କର ସୁତ ।
ଶ୍ରୀଶାରଳା ଚଣ୍ଡୀଙ୍କୁ ମୁଁ ସୁମରଣା କରି
ଲେଖଇ ଏ ସଭାପର୍ବ ଭାରତେ ବିସ୍ତରି ।

---

## ମଦନସେନ ରାଜାକୁ ନିମନ୍ତ୍ରଣ, କନ୍ଦର୍ପସେନ ସହିତ ଯୁଦ୍ଧ ଓ ତାହାର ମୃତ୍ୟୁ

ଏଥୁ ଅନନ୍ତରେ ଶୁଣ ବଳିଙ୍କ ରାଜନ
ଅଗସ୍ତି ମୁନିଙ୍କ ପାଦ କରିଣ ବନ୍ଦନ ।
ବୋଇଲେକ ଭୀମସେନ ଲେଖା ଲେଖାଇଲେ
ଦୂତଙ୍କ ହସ୍ତରେ ଦେଇ ତାଙ୍କୁ ପଠାଇଲେ ।
ତଦପରେ କେଉଁଆଡ଼େ ଗଲେ ବୃକୋଦର
ସେ କଥା ବିସ୍ତାର କରି କହ ମୁନିବର ।
ରାଜାଙ୍କ ବଚନ ଶୁଣି କହନ୍ତି ଅଗସ୍ତି
ଏକମନେ ଶୁଣ ତୁହ୍ମେ ମନୁ ନରପତି ।
ଦୂତଙ୍କୁ ବିଦାରେ ପେଷି ଚଳିଲେ ପାବନୀ
ସୁରମଣ୍ଡଳରେ ଯାଇ ବିଜେ ସୈନ୍ୟ ଘେନି ।
ପଶ୍ଚିମରେ ସୋମରାଷ୍ଟ୍ର ଗହନ ଯେ ଦେଶ
ତହିଁ ମଧ୍ୟେ ଭୀମସେନ ହେଲେ ପରବେଶ ।
ଶର ଗୁଣା ଅଧାଟି ଯେ ମହୁରି ବାଜଇ
ବାଦ୍ୟ ଗହଳରେ ପୃଥ୍ୱୀ ଉଛୁଳି ପଡ଼ଇ ।
ଲୁତହନେ ସେ ରାଜ୍ୟକୁ ଯାନ୍ତି ଭୀମସେନ
ରାସ୍ତେରେ ନୃତ୍ୟ କରନ୍ତି ଅପସରା ଗଣ ।
ମଦନିକା କାମସେଣା ମେନକା ମେହନୀ
ଆଗୁଁ ସ୍ୱାଙ୍କୁ ପଠାଇଣ ଦେଲେ ସମ୍ବୋଧନ ।
ସପ୍ତମସ୍ୱରରେ ବୀଣା ବାଜେ ନନାଦରି
ଅପସରାଏ ନାଚନ୍ତି ହୋଇ ଆନନ୍ଦରି ।
ଦେଖି ଶୁଣି ରାଜା ଆଗେ କହେ ଦେଖାଉନ୍ତି
ଅବଧାନ କର ଦେବ ମଦନ ଠାକୁର ।
ଜଗକୁ ମାର ଯେ କଲେ ରାଜାଙ୍କୁ ମୋଚନ
ଆସନ୍ତି ସେହି ରାଜାଙ୍କ କର ନିମନ୍ତ୍ରଣ ।
ଏକ୍ଷଣି ପଶିଲେ ଦେବ ଆମ୍ଭର ରାଜ୍ୟରେ
ଦେଖି ଆସି ଜଣାଇଲୁ ତୁମ୍ଭର ଛାମୁରେ ।
ବଳନ୍ତି ରାଜା ରାଜସିଂହାସନର ନିମନ୍ତେ
ଦୁଷ୍ଟନିସୂଦନ ଦଣ୍ଡ ଧରିଛନ୍ତି ହସ୍ତେ ।
ରାଜ୍ୟରେ ପ୍ରବେଶ ଆସି ହେଲେଣି ଏକ୍ଷଣି
କି ଉପାୟ କରିବ ହେ ମଦନ ନୃମଣି ।
ଦୂରମୁଖଁ ଏହା ଶୁଣି ସୋମରାଷ୍ଟ୍ର ଦେବ
ବୋଇଲା ମୋ ପୁରେ ବେଗେ କରଅ ଉତ୍ସବ ।
ରାଜାର ଆଜ୍ଞାରେ ତହିଁ ଗଲେ ଦୂତଗଣ
ରାଜ୍ୟ ଉତ୍ସବ କରିଲେ ପୁରକୁ ମଣ୍ଡିଣ ।
ପୂର୍ଣ୍ଣକଳସ ପତାକା କେତ ଉଡାଇଲେ
ଅଷ୍ଟ ରତନରେ ରାଜଭବନ ଖଞ୍ଜିଲେ ।
ସେହି ରାଜ୍ୟରେ ପ୍ରବେଶ ହୋଇଲେ ମାରୁତି
ଆସ୍ଥାନ ଛେକି ଅଇଲା ମଦନ ନୃପତି ।
ଦ୍ରୁପଦ ଶ୍ୱଶୁର ସେହି ଧୃଷ୍ଟଦ୍ୟୁମ୍ନ ଅଜା
ପାଦ୍ୟ ଅମନାତ୍ୟ ଘେନି ଅଇଲା ସେ ରାଜା ।
ବେନିଭୁଜେ ରାଜା ବେଗେ ବୀରମରକୁ ଘେନି
ଭୀମସେନ ପାଶେ ଯାଇ କରଇ ବଇଣୀ ।
ଜୟ ଜୟ ବୃକୋଦର ପବନଦୁଲାଳ
ଜରାସନ୍ଧବନକାଶି ଭକ୍ଷକ ଗରଳ ।
ମହାପାତକ ଧ୍ୱଂସିଲ ତୁମ୍ଭର ଦର୍ଶନେ
ମୋହର ରାଜ୍ୟ ପବିତ୍ର ହେଲା ଏତେ ଦିନେ ।
ଏରୂପେ ମଦନଦେବ ବହୁ ସ୍ତୁତି କଲା
ନଇଁତ୍ରାଳ ହୋଇ ଭୀମ ଚରଣେ ଶୁତିଲା ।
ଭୀମ ଆଜ୍ଞା ଦେଲେ ଉଠ ହେ ମଦନ ଦେବ
କୁଶଳେ ତୋ ଜନପ୍ରଜା ଅଛନ୍ତି ନା ସର୍ବ ।
ମଦନଦେବ ନୃପତି ବୋଲେ ଯୋଡ଼ି ପାଣି
କୃଷ୍ଣ ପ୍ରସାଦେ ଅଛନ୍ତି ଛନ୍ତି ପ୍ରଜାଶ୍ରେଣୀ ।
ପଶ୍ଚିମ ରାମ ଆଜ୍ଞା ଯେତେବେଳେ ମେଣ୍ଟିଣ ନ ଯାଇ
ଏ ପଶ୍ଚିମନ୍ଦିର ଚେତେବେଳେ ରହିଛି ଗୋସାଇଁ ।

ତହୁଁ ତା ନଗ୍ରକୁ ବିଜେ କରିଲେ ପାବନୀ
ଶତସସ୍ର ପ୍ରଣିପାତ ହେଲେ ବଜ୍ରସେନ ।
ବହୁ ଧନରତ୍ନେ ଭେଟିଲେ ଭୀମପାଦେ ଥୋକେ
ଥୋକେ ଠିଆ ହେଲେ କରି ବଶମୁଖ ମୁଖେ
ଅଳକାନାଥ କି ବିଜେ କରିଛନ୍ତି ଭୂମି
ସେ ରୂପେ ଶୋଭା ପାଆନ୍ତି ବୃକୋଦର ସ୍ୱାମୀ
କୁଶଳ ପୁଚ୍ଛନ୍ତି ତାଙ୍କୁ ସେ ମଦନଦେବ
ଶୁଣି ଭୀମ ବୋଇଲେ ମୋ କୁଶଳଟି ସର୍ବ ।
ଦ୍ୱିତୀ ବାସୁଦେବ ସମ ଦେଖିଲଇଁ ତୋତେ
ଅନାଦି ଶିବ ବିଜେ ମୋ ସୌରାଷ୍ଟ୍ରମଣ୍ଡଳେ ।
ଆଜି ସୁଫଳ ହୋଇଲା ମୋହର ଜୀବନ
ଜାଣିଲି ମୋତେ ତ ସାହାନ୍ତି ଭୀମସେନ ।
ତହୁଁ ରାଜା ଆଜ୍ଞା ଦେଲା ସୂପକାର ଠାରି
ମଣ୍ଡପୁଲ ରନ୍ଧଣାଟି ବେଗ କରି ଯାଇ ।
ଅନେକ ଯୋଗାଡ଼ ରାଜା କଲା ସମ୍ଭବରେ
ଆହ୍ନିକ ସାରିଣ ଭୀମ ବିଜେ ମନୋହରେ ।
ଭୋଜନରେ ଅତୃପତ ଯାହାର ମନୀଷା
ତ୍ରୈଲୋକ୍ୟ ମଧ୍ୟରେ କେ ତା ପୂରାଇବ ଆଶା
ଭୋଜନାନ୍ତେ ଆଚମନ କଲେ ବୀରମଣି
ତାମ୍ବୁଳ ଯୋଗାଡ଼ଦେଲା ସେ ନୃପତି ଆଣି ।
ଶତପୁତ୍ର ସଙ୍ଗେ ଘେନି ସେ ମଦନଦେବ
ଆଲଟ ଚାମର ଘେନି ଖଟିଲେ ସେ ସର୍ବ ।
ତାଙ୍କୁ ଶାଢ଼ୀ ଦେଇ ବୋଲେ ବାଳେବର ବୃତ୍ତ
ନ ଜାଣ କି ରାଜସୂୟ ଯଜ୍ଞ କଥା ତଥ୍ୟ ।
ଏବେ ଶୁଣ ତୋର ଚିନ୍ତା ଯେତେ ଅଶ୍ୱସୈନ୍ୟ
ଏକ୍ଷଣି ଚଳ ତୁ ଘେନି ଦେଖା ଦରଶନ ।
ଆଜ୍ଞା ପରମାଣେ ସେହି ମଦନ ଭୂଦେବ
ପଞ୍ଚାଶ ରଥେ ପୂରାଏ ଆଣି ପାଣିଦ୍ରବ୍ୟ ।
ଦ୍ୱେଷୀର ତୁରଙ୍ଗ ବାୟୁତୁଲ୍ୟ ଯେଉଁ ବାଜି
ରଥ ଗଜ ସୈନ୍ୟ ରାଜା ସମ୍ଭବରେ ସାଜି ।
ଭୀମ ସାକ୍ଷାତେ ମଦନ ସାଜି ସୈନ୍ୟ ବଳ
ଐଶାନ୍ୟ ମୂର୍ତ୍ତିର ତହୁଁ କରେ ଅନୁକୂଳ ।
ସଉରାଷ୍ଟ୍ର ଦେଶ ତେଜି ଗଲେ ବାତସୁତ
କଉଶିକ ଦେଶେ ଯାଇ ହେଲେ ଉପସ୍ଥିତ ।
ବିଜୟ ନଗର ପାରେ କୌଶିକନଗର
କନ୍ଦର୍ପସେନା ନୃପତି ମାଧବ କୁମର ।

ଦଶମର୍ବ ରଥ ତା ଅଶୀଲକ୍ଷ ହସ୍ତୀ
ଛଶାଶତେ ଖର୍ବ ଅଶ୍ୱ ଦ୍ୱିକୋଟି ପଦାତି ।
ବେଦନଶତ ପାରିଦଣ୍ଡ ନୃପଙ୍କୁ ଖଟନ୍ତି
ବେଢ଼ନଶତ ଯୋଜନର ଅଟେ ଅଧିପତି ।
ଭୀମସେନ ତହିଁ କଲେ ଯାଇ ସେହି ରାଜ୍ୟ
କହାଳ ଦମା ଟମକ ଯେ ବୀରତର ବାଜେ ।
ବୁଲୁଥିଲେ ଗର୍ଜନ୍ତ ଯେ ତୁରଙ୍ଗମ ଗତି
ମହା ଗହଳ ଶବଦ ଶୁଣି ସିଂହରଡ଼ି ।
ଧାଇଁନ୍ତି ଯୋଦ୍ଧାଏ ବେଗେ ମହା ମହା ମଲ୍ଲ
ତାଙ୍କ ପାଦଭରେ ଦୁଏ ପୃଥ୍ୱୀ ଟଳ ଟଳ ।
କୌଶିକ ପର୍ବତେ ରାଜା ପାରିଦଣ୍ଡ ହେଲେ
କାବେଶୀ ନଗର କୂଳେ ଭୀମଙ୍କୁ ଭେଟିଲେ ।
ରହ ରହ ବୋଲି ଡାକି ଜଗାଇଲେ ଥାଟ
ଗଜଙ୍କୁ ଆଗରେ ରଖି ଆବୋରିଲେ ବାଟ ।
ପଚ୍ଛା କଲେ ନାମ କିସ କେଉଁ ଦେଶବାସୀ
କେବଣ କାରଣେ ଆମ୍ଭ ରାଜ୍ୟ ପଶି ଆସି ।
ନ ଜାଣୁ କିରେ କନ୍ଦର୍ପ ରାଜା ଅଛି ବୋଲି
ଯମ ଦଗାନନ୍ତେ ପଶି ପାରି କରେ ପେଲି ।
ପ୍ରତିଜ୍ଞା ସାମରଥ ଏ ପଶ୍ଚିମ ନରେଶ
ଯୋଦ୍ଧା ସାଜିକରି ଗଲା କନାଉଜ ଦେଶ ।
ଭାଙ୍ଗି ଚୂରକଲା ଏଡୁ ଆନୁଆନ ଗିରି
ଯୁଦ୍ଧେ ଅଙ୍ଗାର ପନ୍ନଗ ଯାରେ ଗଲା ହାରି ।
ଜରାସନ୍ଧ ରାଜା ଯାକୁ ନ ପାରିଲା ସାଧି
ତାହାର ସମ୍ମୁଖରେ କିସ ଦେଖାଅ ହେ ଯୋଦ୍ଧି
ଲୋହଧନୁ ଧରେ ଦୁଇବଂଶସସ୍ର ବଳ
ନାରାଚ ବନ୍ଧନେ ଯେହୁ ଫଟାଏ ଅଚଳ ।
ସୁଶୋଭରେ ଯେଉଁଜନ କାମକୁ ନିନ୍ଦଇ
ଅପସରା ବଶ ହୋଇ ଯାର ରୂପ ଚାହିଁ ।
ଯେବେ ରାଜ୍ୟକୁ ଆସିଛ ତୁମ୍ଭେ ବନ୍ଧୁପଣେ
ତେବେ ଏଥେ ଥାଅ ଆମ୍ଭେ ଜଣାଉ ଏକ୍ଷଣେ ।
ଶତ୍ରୁ ହବେ ପଶୁଥିବୁ ଆମ୍ଭ ରାଜ୍ୟ ଯେବେ
ପାଞ୍ଜିରୁ ତୋ ନାମ ଯମ ପୋଛିଲାଣି ତେବେ
ଅନେକ ପ୍ରତିଜ୍ଞା ଯହୁଁ କଲେ ପୁଣ ପୁଣ
ପର ପ୍ରତିଜ୍ଞା ଶୁଣି କି ସହେ ଭୀମବାଣ ।
ସୈନ୍ୟବଳମାନେ ତାର ଆସୁଛନ୍ତି ମାଡ଼ି
ଧାଇଁଲେ ମାରୁତି ମନୁ ଉପରୋଧ ଛାଡ଼ି ।

ମୁଦ୍‌ଗର ବୁଲାଇ ଭୀମ କଲେକ ସମର
ନଘାତେ ପିଟନ୍ତେ ବହୁସୈନ୍ୟ ହେଲେ ଚୂର
ଏକ ପ୍ରହାରେ ପଡ଼ିଲେ ବହୁଗଜ ଯୋଧୀ
ଭୀମ ସଇନ ଆକ୍ରୋଶେ ପୁଣି ଶର ବିନ୍ଧ ।
ଯୋଦ୍ଧା ଗଜ ହସ୍ତ ସର୍ବେ ପଡ଼ିଲେ ଘୁମାଇ
ଆବର ପଦାତ ମର ଗଦା ହେଲେ ଚର୍ଣ୍ଣି ।
ନଶେ ହସ୍ତ ଦେଇ ଭୀମ ପ୍ରତିଜ୍ଞାରେ ଗର୍ଜି
ରାଜା ପାରିଦଣ୍ଡମାନେ ପଳାଇଲେ ଭଜି ।
ରାଜମନ୍ତ୍ରୀ ଯେ ସକଳ ଦଣ୍ଡଭଗ୍ନ ଦେଖି
ତିନିଲକ୍ଷ ଯୋଦ୍ଧା ସେନ ଅଇଲା ଚର୍ହିକ ।
ନାଗର ବନ୍ଧନେ ଆସି ସଜ୍ଜନ ସଇନ
ଆବର୍ତ୍ୟ କରଣ ଲୁଟ ହୋଇଲା ରଜନୀ ।
ସାଞ୍ଜୁ ଟୋପର ତାଡ଼େଣି ପାଗ ବଜ୍ରସେହ୍ନା
ପରିଡ଼ା ନାୟକ ମହାମଲ୍ଲ ବଡ଼ଜେନା ।
ସୁବର୍ଣ୍ଣର କନା କୁନ୍ତ ଅଷ୍ଟରତ୍ନେ ଖଞ୍ଜା
ଆକାଶରେ ଶୋଭା ପାଏ ଯେସନେକ ଲଞ୍ଜା ।
ଅନୁବ୍ରତେ ନଜ ଥାଟ ତେହ୍ନେ ସାଜଥାଏ
ସଂଗ୍ରାମେ ବଡ଼ ଶକତା ସେ କନ୍ଦର୍ପ ରାୟେ ।
ସଦା ସେ କନ୍ଦର୍ପସେନ ଜଣେ ପରରାଷ୍ଟ୍ର
ଖର ବର୍ଷା ସବୁଦିନେ ସାଜଥାଏ ଥାଟ ।
ଯୁଦ୍ଧରେ ତେଣେ ଅନେକ ପଡ଼ିଲେଣି ସୈନ୍ୟ
ତଥାପି ନ କହେ ମନ୍ତ୍ରୀ ଯୁଦ୍ଧ ବିବରଣ ।
ବଡ଼ ସୂର୍ଯ୍ୟବଂଶୀ ରାଜା ସେ କନ୍ଦର୍ପସେନ
ଶୁରବନ୍ତ ପଣ୍ଡିତ ସେ ସଙ୍ଗରେ ନିପୁଣ ।
ରଣେ ତା ସୈନ୍ୟ ପଡ଼ନ୍ତେ ମାଙ୍କ ନ ଘୁଞ୍ଚନ୍ତି
ଭୀମସେନ ଗଦାଘାତେ ବହୁ ପଡ଼ୁଛନ୍ତି ।
ଯେଉଁ ଭୀମ ସମରରେ ଅଟଇ ନିର୍ଦ୍ଦୟ
ଶରଣ ନ ରଖଇ ସେ ଦୁଭାର ନିର୍ଦ୍ଦୟ ।
ପଳାନ୍ତି ସଇନ ଯଥା ବାସଭଗ୍ନ ପକ୍ଷୀ
ବୃକୋଦର ମୂର୍ତ୍ତି ତାର କେ ରହିବ ଦେଖି ।
ଶତଶୃଙ୍ଗ ପ୍ରସନ୍ନେ ଯା ବଜ୍ର ଅଟେ ଅଙ୍ଗ
ସମରେ ଅନିବାର ସେ ରଣେ ନୁହେ ଭଙ୍ଗ ।
ଯେସନେକ ମତ୍ତଗଜ ଧାମଇ ମୃଣାଳ
ଥାଟ ମନ୍ଥନ କରଇ ତେହ୍ନେ ବାତବଳ ।
ରମ୍ଭାବନ ଯେହ୍ନେ ଭାଙ୍ଗେ ପ୍ରଚଣ୍ଡ ପବନ
କନ୍ଦର୍ପସେନ ସୈନ୍ୟଙ୍କୁ ତେହ୍ନେ ଭୀମସେନ ।

ପଡ଼ିଲେକ ରଥ ଗଜ ଅଶ୍ୱ କୋଟି କୋଟି
ରକତ ମାଂସେ କର୍ଦ୍ଦମ ହୋଇଲା ଧରଣି ।
ସତୁରି ମର୍ଦ୍ଦିତ ରଥୀ ସାତଲକ୍ଷ ହସ୍ତୀ
ପାଞ୍ଚକୋଟି ଅଶ୍ୱ ଚୌଦକୋଟି ଯେ ପଦାତ ।
ଏତେକ ସୈନ୍ୟ ପଡ଼ିଲେ ପିଟୁଁ ବାତସୁତ
ତଥାପି କୋପ ତାହାର ନୋହିଲକ ଶାନ୍ତ ।
ଯୋଦ୍ଧାମାନେ ପଳାଇଲେ ସମର ଉପେକ୍ଷି
ବିଶ୍ରାମ ନ ନେଇ ଗଲେ ରାଜାର କଟକ ।
ବୋଇଲେ ଶୁଣ କନ୍ଦର୍ପସେନ ଚକ୍ରବର୍ତ୍ତୀ
ସମଦଣ୍ଡ ସୈନ୍ୟ ତୋର ହେଲେ ବିନଶ୍ୟତ
ବଡ଼ଇ ଦୁରାଚାରୀ ରଥୀ ଆସି ଅବଲୀଳେ
ମାଇଲାଣି ବହୁସୈନ୍ୟ ତୋର ଅପ୍ରମିତେ ।
ଶୁଣି କୋପାନଳ ହେଲା ସେ କନ୍ଦର୍ପଦେବ
ରେ ରେ ବୋଲି ଉଠିଲା ସେ କରି ମତ୍ତଗର୍ବ
କୁଠାର ଆୟୁଧ ଘେନ ସେ କନ୍ଦର୍ପରାୟ
ଚଢ଼ିଲା ବେଗେ ଅଶ୍ୱେକ ଉଚ୍ଚୈଃଶ୍ରବା ପ୍ରାୟ ।
ବାମ ଡାହାଣେ ଚଳନ୍ତି ପାଞ୍ଚଖର୍ବ ରଥୀ
ବିଦ୍ୟାଧର ପରାୟେକ ସେ ଶୋଭା ପାଆନ୍ତି
ଶିରେ ମୁକୁଟ ଝଟକେ କରେ ଅସିବର
ଡାକନ୍ତି ହାକନ୍ତି ଶବ୍ଦକରି ରେରେକାର ।
ଦୂରୁଁ ଦେଖି ତାକୁ ଭୀମ ହୋଇ ମହାରାଗ
ରଥ ଉପରୁ ତଳକୁ ଡେଇଁଲେ ସେ ବେଗ ।
ଧାମନ୍ତେ ବୁଲାଇ କାଳଦଣ୍ଡ ପ୍ରାୟେ ଆସି
ପଳାନ୍ତି ସଞ୍ଚାଣେ ଦେଖି ଯେହ୍ନେ କ୍ଷୁଦ୍ରପକ୍ଷୀ ।
ତେହ୍ନେ ପଳାନ୍ତି ମାରୁତି ପଛନ୍ତୁ ମାଇଲେ
ଏପରି ଅନେକ ସୈନ୍ୟ ଚର୍ହି ନାଶ ଗଲେ ।
ଗଦାଘାତେ ଗଜକୁମ୍ଭ ଧୂଳି ହୋଇଗଲା
ବର୍ଦ୍ଧମାନକ ରାଜା ସେନାପତି ଯା ଦେଖିଲା ।
ପାଞ୍ଚ ଅଇରାବତ ହସ୍ତୀ ଘେନି ଅଗେ ଥିଲା
ଗଦାଘାତେ ହସ୍ତୀସହ ସେହି ନାଶ ଗଲା ।
ଏହିରୂପେ ରଣରଙ୍ଗେ ଭୀମ ମହାମନା
ଗଦା ପ୍ରହାରେ ଅସଂଖ୍ୟ କରି ଦେଲେ ଚୂନା ।
ଅସ୍ଥି ମାଂସ କିଛି ଚର୍ହି ନ ରହେ ପ୍ରହାରେ
ଯା ଦେଖି କନ୍ଦର୍ପସେନ ଧାଏଁ କୋପଭରେ ।
ରାଜା ଉଠନ୍ତେ ଉଠିଲେ ସଙ୍ଗେ ସର୍ବଯୋଧି
ଗୁଣ ଟାଣି ଅନିବାର ଶରମାନ ବିନ୍ଧ ।

ସଂଗ୍ରାମ ଦେଖିଲେ ଯେତ୍କ ହୁଅଇ ଭୟତ
ସେତ୍କ ଏ ସଂଗ୍ରାମ ଦେଖି ହୋଇ ଆନନ୍ଦିତ ।
ରଢ଼ ଘୁଡ଼ ବୁଲାଇଣ କୋପେ କାଳଦଣ୍ଡ
କନ୍ଦର୍ପ ପରେ ପିଟିଲା ହୋଇ ପରଚଣ୍ଡ ।
ଭୀମ ଗଦାଘାତେ ତାର ଚୂର ହେଲା ରଥ
ଧାଇଁଲା ପାବଗଣ୍ଡରେ ସେ କନ୍ଦର୍ପନାଥ ।
ଭେଟାଭେଟି ହୋଇ ଦୁହେଁ ଉଚ୍ଚବାଚ ହେଲେ
ବେନ ମତ୍ତସିଂହ କଏ କେଣେ ନ ଘୁଞ୍ଚିଲେ ।
ଦୁହେଁ ଆୟୁଧ ବୁଲାଇ ଆରମ୍ଭିଲେ ଯୁଦ୍ଧ
ଭୀମକୁ କନ୍ଦର୍ପ ହାଣେ କୁଠାର ଆୟୁଧ ।
ବାମଅଙ୍ଗ ପାତିଲାକ ପାଣ୍ଡବ ସୁନ୍ଦର
ଅଙ୍ଗେ ପଡ଼ି ଚୂର୍ଣ୍ଣ ହେଲା ସେ ବଜ୍ର କୁଠାର ।
ଆୟୁଧ ହୀନେ କନ୍ଦର୍ପ ହେଲା ଶୂନ୍ୟହସ୍ତ
ତେବେହେଁ ସେ ଯୁଦ୍ଧ ତେଜ ନ ହୁଏ ନିରସ୍ତ ।
ଆକର୍ଷି ଭୀମସେନର ଧରେ ବେନ ଭୁଜ
ମୁଷ୍ଟିକ ମାଇଲେ ତାକୁ ପବନ ଆତ୍ମଜ ।
ଭୀମସେନ ମୁଷ୍ଟି ବାଜି ତାହାର ଶିରରେ
ମୂର୍ଚ୍ଛାଗତ ହୋଇ ରଜା ପଡ଼ିଲା ଭୂମିରେ ।
ବେଗେ ଭୀମ ଗଦାବର ପ୍ରହାରିଲା ତୋଳି
କନ୍ଦର୍ପ ରଜାର ଅସ୍ଥିମାଂସ ହେଲା ଧୂଳି ।
ରଜା ପଡ଼ନ୍ତେ ପଳାଇ ଗଲେ ପାରଦଣ୍ଡ
ତାର ବେନପୁତ୍ର ଥିଲେ ଚଣ୍ଡ ସେ ପ୍ରଚଣ୍ଡ ।
ସେ ଦୁହେଁ ଧାଇଁଲେ ବେନ ମାତଙ୍ଗ ଆରୋହି
ଭୀମସେନ ପରେ ଶସ୍ତ୍ର ବର୍ଷିଲେକ ଯାଇ ।
ବର୍ଷନ୍ତେ ଲେହ ନାରାଚ ତୀକ୍ଷ୍ଣ ତୀକ୍ଷ୍ଣ ମୁନା
ଦେଖିଣ ଗର୍ଜି ଧାଇଁଲେ ଭୀମ ମହାମନା ।
ଗଦା ବୁଲାଇ ପିଟନ୍ତେ ହସ୍ତୀ କୁମ୍ଭସ୍ଥଳେ
ସେ ଘାତେ ପଡ଼ିଲେ ବେନ ଗଜ ଏକାବେଳେ ।
ଅତି କୋପାନଳ ହୋଇ ମାରୁତି ଧାଇଁଲେ
ବେନ କୁମରଙ୍କ କେଶ ସବଳେ ଧଇଲେ ।
ତୋଳି କଚାଡ଼ି ଇଚ୍ଛନ୍ତେ ବେନ କୁମରଙ୍କୁ
ମନ୍ତ୍ରିତ ସାରଥି ଧରେ ସେ ଭୀମସେନଙ୍କୁ ।
ବୋଲେ କୋପ ଶାନ୍ତ କର ପାଣ୍ଡବ ସୁନ୍ଦର
ଏହାଙ୍କୁ ନ ନାଶ ଏହି ବାଳୁତ କୁମର ।
ଏହାଙ୍କ ପିତାଙ୍କୁ ତୁମ୍ଭେ ନାଶ କଲୁ ଯୁଦ୍ଧେ
ଏହାଙ୍କୁ ରଜା କରବା ଏହି ରାଷ୍ଟ୍ର ମଧ୍ୟେ ।
ସାରଥି ବାକ୍ୟେ ଶୁଣିଲେ ଭୀମ ତାଙ୍କ ବାଳ
ମୁକ୍ତ ହୋଇ ଲୋଟିଲେ ସେ ଭୀମ ପଦତଳ
ଗଳାରେ କୁଠାର ଦେଇ କରନ୍ତି ବନ୍ଦନା
ସ୍ୱାମି ଶରଣେ ରକ୍ଷଣ ପାଣ୍ଡବ ପାବନ ।
ତୁମ୍ଭେ ଦୁଃଖିଜନନାଥ ଶରଣ ରଖିନ୍ତା
ତୁମ୍ଭେ ସେ ପ୍ରସନ୍ନ ହେବ ଅଟ ବରଦାତା ।
ନ ଜାଣି ମୋ ପିତା କଲା ଦୁଷ୍ଟ ଆଚରଣ
ଜଗଦ୍‌ବନ୍ଦନ ସ୍ୱାମୀଙ୍କୁ ଚିନ୍ତେ ଦ୍ରୋହପଣ ।
ଆପଣାର କଲା କର୍ମେ ଆପେ ଗଲା ନାଶ
ପ୍ରତ୍ୟକ୍ଷେ ନାରାୟଣ ତୁ ମୋତେ ହେଉ ଦୃଶ୍ୟ
ଅକାରଣ କାରଣ ତୁ ଦୁଃଖିଜନ ତାତ
ଆମ୍ଭେ ଅଜ୍ଞାନୀ ବାଳକ ଅଟୁ ତୋର ସୁତ ।
ଏପରି ସ୍ତୁତି କରିଣ କନ୍ଦର୍ପ କୁମର
ଦୁହେଁ ନେତ୍ରୁ ବୁହାଇଲେ ଅଶ୍ରୁ ଝରଝର ।
ଦୁହିଙ୍କ ବନସ୍ଥ ଦେଖି ସଦୟ ପାବନ
କୋଳେ ବସାଇ କନ୍ଦର୍ପସେନ ପୁତ୍ର ବେନ ।
ବୋଲେ ଶୋକ ଛାଡ଼ ବାବୁ ମଲାଣି ତ ପିତା
ମୁହିଁ ଏବେ ତୋହର ଯେ ରକ୍ଷଣ କରତା ।
ଏ ରାଜ୍ୟରେ ରଜା ମୁହିଁ କରିବି ତୁମ୍ଭଙ୍କୁ
ସବୁରଜା ସେବୁଥିବେ ତୁମ୍ଭର ପାଦକୁ ।
ସ୍ୱର୍ଣ୍ଣ ବଜ୍ର ମଣି ମୁକୁଟ ତାଡ଼ ଜଗଦ୍‌ବଳା
ବାହୁଟି ପିନ୍ଧାଇ କଣ୍ଠେ ଦେଲେ ରତ୍ନମାଳା ।
ପାତ୍ର ଅମାତ୍ୟ ସବୁଙ୍କୁ ପାଶକୁ ହକାରି
ତାଙ୍କ ଶିରେ ବାନ୍ଧିଲେକ ଶାଢ଼ୀ କରେ ଧରି ।
ବୋଲେ ଯେହ୍ନେ ଖଟିଥିଲ କନ୍ଦର୍ପ ନୃପକୁ
ତେହ୍ନେ ଭକ୍ତି କରିବ ଏ ଚଣ୍ଡ ପ୍ରଚଣ୍ଡଙ୍କୁ ।
ଯେ ଅମାନ୍ୟ କରି ମନେ ଧରିବ କୁକୃତ
ଶିଶୁଙ୍କ ମନେ ସ୍ୱାଙ୍କଠାରେ ହେବ ଅଭକ୍ତ ।
ନିଶ୍ଚୟ ତାଙ୍କୁ ବଧିବି ଏ କଥା ମୋ ସତ୍ୟ
ପିତା ପ୍ରେତକାର୍ଯ୍ୟ ସାରି ଯାଅ ଇନ୍ଦ୍ରପ୍ରସ୍ଥ ।
ଏରୂପେ ତଥାର ଭୀମ ପାତ୍ର ଅମାତ୍ୟେ
ଚଣ୍ଡକୁ ରଜା କରିଣ ଶାଢ଼ୀ ଦେଲେ ମାଥେ ।
ବୋଇଲେ ଦଶମୀ ଧନପାତ୍ର ସୈନ୍ୟସହ
ବିଳମ୍ବ ନ କରି ଯିବ ମନେ ରଖିଥାଅ ।
ସେହି ଚଣ୍ଡ ନୃପତିକୁ କରି ନିମନ୍ତ୍ରଣ
ଚଢ଼ି ବଣ୍ଡ ଗେଳନଗଲେ ବୀର ଭୀମସେନ ।

ଜୟ ଜୟ ମହେଶ୍ୱର କପିଳାସ ନାଥ
ମସ୍ତକରେ ଗଙ୍ଗାଦେବୀ ପଲ୍ଲବଭୂଷିତ ।
ପଞ୍ଚ ବଦନେ ଚନ୍ଦ୍ର ନେତ୍ର ଶୋଭା ପାଏ
ସର୍ବଦା ଡମ୍ବରୁ ତୁମ୍ଭ କରେ ବାଜୁଥାଏ ।
ବୃଷଭ ବାହନେ ଚଢ଼ି ଭ୍ରମ ତ୍ରିପୁର
ଭକତଜନଙ୍କୁ ବାଞ୍ଛା ପୂର୍ଣ୍ଣେ ଦିଅ ବର ।
ଏଣୁ ମୁଁ ତୁମ୍ଭ ପାଦରେ କରଇ ଜଣାଣ
ଏ ସଭାପର୍ବ ଲେଖଇ ଦିଅ ଦିବ୍ୟଜ୍ଞାନ ।
ଉମାବଲ୍ଲଭଙ୍କ ପାଦେ ସଦା କରି ଆଶ
ଭାରତ ପଦ ଯୋଡ଼ଇ ଶ୍ରୀଶାରଳା ଦାସ ।

## ଭୀମଙ୍କର ସୁଜାଣେଶ୍ୱର ରାଜା ନିମନ୍ତ୍ରଣ ଓ ଅଶ୍ୱିନୀକୁମାରଙ୍କ ଜନ୍ମ

ଏଥୁଅନ୍ତେ ବୈବସ୍ୱତ ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ ହୋଇଲେ ପ୍ରଣତି ।
ପଚାରିଲେ ଏ ଉତ୍ତରୁ କିସ କଲେ ଭୀମ
ବିସ୍ତାରି କହନ୍ତୁ ତାହା ହେ ମୁନି ଉତ୍ତମ ।
ମୁନିବର ବୋଇଲେକ ଶୁଣ ହେ ରାଜନ
ଚଣ୍ଡରାଜାଙ୍କୁ ନିମନ୍ତ୍ରି ପବନନନ୍ଦନ ।
ତାହାଲ ଦେଶେ ପ୍ରବେଶ ହୋଇଲେ ମାରୁତି
ସେ ରାଜ୍ୟେ ରାଜା ସୁଜାଣେଶ୍ୱର ଚକ୍ରବର୍ତ୍ତୀ ।
ଜାହ୍ନବୀ ନାମରେ ତହିଁ ସରିତ ଗୋଟିଏ
ଆକାଶବାହିନୀ ବହେ କ୍ଷୀରନଦୀ ପ୍ରାୟେ ।
ସେ ନଦୀକୂଳେ ତାହାଲ ଦେଶଟି ବସଇ
ରଥ ଗଜ ନାହିଁ ରାଜ୍ୟେ ଅଶ୍ୱପୂର୍ଣ୍ଣ ତହିଁ ।
ସତ୍ୟଯୁଗରେ ତରଣି ସଞ୍ଜ୍ଞା ସଙ୍ଗେ ପ୍ରୀତି
କରିବାରୁ ଅଶ୍ୱଗଣ ବହୁତ ଉତ୍ପତ୍ତି ।
ସର୍ବେ ଅଶ୍ୱାରୋହ ତହିଁ ସୈନ୍ୟଆଦି କରି
ଧନୁଶର କମାଣାଦି ନାନା ଅସ୍ତ୍ରଧାରୀ ।
ମହାସମ୍ପଦ ରାଜାର ଶତ ପାରିଦଣ୍ଡ
ସଂଗ୍ରାମେ ନିପୁଣ ସେହି କ୍ଷତ୍ରିକୁଳଷଣ୍ଢ ।
ବୀର ତୂରୀ ଡମ୍ଫ ସେ ମର୍ଦ୍ଦଳ ବଜାଇ
ବଣ୍ଡବେଶେ ତାହାଲରେ ଭୀମ ହେଲେ ଯାଇ ।
ଡଗର ବୋଲେ ଶୁଣ ମା ସୁଜାଣ ନୃପତି
ରାଜ୍ୟେ ପଶୁଛି କେବଣ ଦେଶ ନରପତି ।
ବହୁତ ପ୍ରତିଜ୍ଞା ତାର ଅଟେ ମହାରଥୀ
ପଶ୍ଚିମଦିଗେ ଆସିଛି ଶୁଣ ତାର କଥା ।
କନ୍ଦର୍ପସେନ ବଧିଲା ତାର ନଗ୍ରେ ପଶି
ଏବେ ଆମ୍ଭ ରାଜ୍ୟେ ସେହି ପଶିଲାଣି ଆସି ।
ସହସ୍ରେକ ରଥ ଦୁଇ ସହସ୍ର ମାତଙ୍ଗ
ସହସ୍ରେକ ଅଛି ଦେବ ତା ସଙ୍ଗେ ତୁରଙ୍ଗ ।
ପଦାତି ତା ସଙ୍ଗେ ଅଛି ଦଶ ଅଯୁତ
ବେନି ଅଯୁତ ଅଛି ତାର ପାଟଛତ୍ର ।
ତୁମ୍ଭ ରାଜ୍ୟରେ ପଶଇ ଏତେକ ସମ୍ପଦ
ତ୍ରିଭୁବନ କମ୍ପଇ ତା ବାଦ୍ୟ ଶବଦ ।
ଚରଗଣଙ୍କ ମୁଖରୁ ଏହି ବାର୍ତ୍ତା ପାଇ
ଆଜ୍ଞା ଦେଲାକ ନୃପତି ପାତ୍ରଗଣେ ରାଇ ।
ଆଗୁଆଣି ଥାଟେ ତାର ଅଛି କେତେ ବଳ
ଯାଅ ଦେଖି ଆସ ବୋଇଲା ସୁଜାଣ ଭୂପାଳ ।
ରାଜାର ବଚନ ଶୁଣି ସଇନ୍ୟ ଚଳିଲେ
ଢକଢୋଲ ଦାଉଣ୍ଡି ଯେ ଆଗେ ବଜାଇଲେ ।
ମଙ୍ଗୁଆଳ ମହାମଲ୍ଲ ଯେ ବାଜେ ରାମତାଳ
ସୈନ୍ୟ ଚାଳନ୍ତେ ନାଗିଏ ଦେଲେ ହୁଳହୁଳ ।
କଳକଳା ନାଦକରି କୁଠାରକୁ ଧରି
ନସ୍ତ୍ର ବାହାରେ ଦୁଆରେ ରହିଲେ ଆବୋରି
କୁନ୍ତ ବୁଲାଇ ଭ୍ରମନ୍ତେ ଭୀମଙ୍କ ଗଉଣେ
ଗଜ ଧୂଆଁରେ ଉଠନ୍ତି ଆବରି ମାହୁନ୍ତେ ।
ସୈନ୍ୟ ପଛୁଆରି ଧରି ଅଭେଦ ଚାଢ଼େଣି
ବୁଲନ୍ତି ଝିଲକେ ତାହା ବିଜୁଳି କି ଜାଣି ।
ରଣେ ଅନିବାର ଅଟେ ସେ ପାଣ୍ଡବ ବୀର
ବସୁମତୀ ନ ସହଇ ଯାର ପାଦଭାର ।
ଦୟା କରଇ ଯଦ୍ୟପି ମହତ୍ତ୍ୱ ଦେଖାଇ
ଉଚିତ ହେଲେ ତାର ଜୀବନ ଯେମନଇ ।
ସୈନ୍ୟ ଦେଖି ମାରି ବୋଲି ଆଜ୍ଞା ଦେଲେ ଭୀମ
ମୋହର ଆଗେ ଦେଖାନ୍ତୁ ସୈନ୍ୟ ଆସ ଛମ
ସିଂହ ଅଟେ ବନସ୍ତରେ ପଶୁଙ୍କର ପତି
ପଶ୍ଚିମ ଦିଗରେ ସେହି ଅଟେ ଅଧିପତି ।
ଯଦ୍ୟପି କି ମତ୍ତଗଜ ହେବ କୋପକାରୀ
ତାର ପ୍ରାୟ ଭଖଇ କି ବିକ୍ରମ କେଶରୀ ।
ତହିପ୍ରାୟ ବୁଲାଇଣ ସୈନ୍ୟ ଜଣ ବୃଷ୍ଟି
ରଣ ରଙ୍ଗରେ ପାଣ୍ଡବ ବିକ୍ରମରେ ଉଠି ।

କରଯୋଡ଼ି ବୋଇଲେକ କୃତାନ୍ତକ ମନ୍ତ୍ରୀ
ସ୍ୱାମି ଆମ୍ଭେ ଥାଇ ଯୁଦ୍ଧେ ପଣ କପାଁ ଧାତ ।
ଭୀମସେନ ବୋଲେ ମୋର ଅନପ ସଇନ
ସାଧିବ ପାଞ୍ଚସହସ୍ର ରାଜା ତୁମ୍ଭ ସେନ ।
ବାହୁଡ଼ାଇ ଏହି ଅଶ୍ୱ ନେଇପାର ଯେବେ
ତେବେ ସେଦସ୍ଥାକଦିବେ ମୋତେବାସୁଦେବେ
ଏଥୁ ଗୋଟିଏ ଯେବେ କ ହେବ ପରମାଦ
ସମସ୍ତ କାର୍ଯ୍ୟ ମୋହର ହୋଇବ ଅସାଧ୍ୟ ।
ସ୍ୱରଦରେ ରାଜା ବରୁଣକୁ ଗଲେ ଯେତେ
ସହଦେବର ପଞ୍ଜିରେ ଲେଖାଅଛି ତେତେ
ଭଜିରୁ ଜୋଟିଏ ଯେବେ ହୋଇପିବ ଊଣା
ନନ୍ଦା ପାଇବ ନୋହିବ ଗୀରମଧ୍ୟେ ଗଣା ।
ଆହେ ମେରୁ ଆଶ୍ରେ କରଅଛ ତୁମ୍ଭେମାନେ
ବହୁରାର୍ଥ ଭ୍ରମିପିବ ହସ୍ତିନା ଭୁବନେ ।
ସଇନଗଣ ବୋଇଲେ ତୋ ଜୀବନ ସାଧୁ
ପାର୍ଦ୍ଧଜାଗା ହୁଅ ଲକ୍ଷ୍ମୀ ନ ଛାଡ଼ୁ ତୋ କାନ୍ଧୁ ।
ଭୀମଙ୍କ ପ୍ରତିଜ୍ଞା ଶୁଣି ଉଠିଲେ ସଇନ
ବାହା ନାଦ ଶବଦରେ କମ୍ପି ଲା ମେଦନୀ ।
ଥାଟ ପିଠି ରକ୍ଷାକାରୀ ହୋଇଲେକ ଭୀମ
ଧାଇଁଲେ ଉଦମେ କଲ କରିଲେ ସଂଗ୍ରାମ ।
ଅସୁର ଦେଖି ପଳାନ୍ତି ଯେସନ୍ତେ ଋଷମାନେ
ସେରୂପେ ପଳାଇ ଗଲେ ତାହାଙ୍କର ସୈନ୍ୟେ
ସଂଗ୍ରାମ ନିମନ୍ତେ ବୀରେ ପଶିଲେକ ଯାଇ
ତଜନ୍ତି ଗର୍ଜନ୍ତି ସର୍ବେ ସର୍ପପ୍ରାୟ ହୋଇ ।
ଦେଖି ହାସିଲେ ତାହାଙ୍କ ଦେଶର ସଇନ
ଭୟରେ ପଳାଇ ଗଲେ ଯେଝା ପ୍ରାଣ ଘେନି
ତାଙ୍କ ପଛେ ଧାଏଁ କାଳଦଣ୍ଡ ପାକ୍ଷାଗୁରୁ
ରଣେ ଅଭୟ ସେ ଅଟେ ଯାଏ ଯଥା ମେରୁ ।
ତିନ ଯୋଜନ ପର୍ଯ୍ୟନ୍ତେ ପାଏଡ଼ା ପାଡ଼ିଲା
ଭିତର ପୁରେ ପ୍ରବେଶ ବୃକୋଦର ହେଲା ।
ସୈନ୍ୟ ପଳାଇବା ଦେଖି ସୁଜାଣ ନୃପତି
ଜଗତ ଉପରୁ ଡେଇଁ ପଡ଼ିଲେକ ଧାତି ।
ରହ ରହ ବୋଲିକରି ଉଚ୍ଚେ ଡାକଦେଇ
ମହାବାହୁ ପୃଷ୍ଠେ ଚଢ଼ିଯାଏ ନରସାଇଁ ।
କରେ ଶୋଭା ପାଏ ତାର ଲୁହାର କମାଣ
ଭୀମଙ୍କ ପାଶେ ଭେଟିଲା ନୃପତି ସୁଜାଣ ।

ରଥ ଛାଡ଼ି ଭୀମସେନ ଅଛି ଉଭା ହୋଇ
ଏ ବେଳେ ସୁଜାଣ ରାଜା ମିଳିଲେକ ଯାଇ ।
ବୋଇଲେକ ରାଜା ତୁମ୍ଭେ କେଉଁଦେଶ ରଥୀ
ଏ ମୋର ଅଶ୍ୱକୁ କପାଁ ଦେଉଅଛ ମନ୍ତ୍ରି ।
ତୋହର ମୋହର ତ ଯେ ବାଦ ନାହିଁ ପୂର୍ବେ
ଅକାରଣେ ନାଶୁ କପାଁ ମୋର ସୈନ୍ୟ ଏବେ
ମନ୍ଦର ସମାନ ଦିଶେ ତୋହର ଏ କାୟେ
ପ୍ରତ୍ୟକ୍ଷ ଦିଶୁ ତୁ ବାବୁ କାମଦେବ ପ୍ରାୟେ ।
କି ଅବା ଆକାଶ ତେଜ ଦିଜେ ଆଖଣ୍ଡଳ
ନରଜନ୍ମ ହୋଇ ତୋର ଜୀବନ ସୁଫଳ ।
ସମସ୍ତ ରାଜା କରନ୍ତି ମୋତେ ଗଉରବ
କପାଇଁ ଅଇଲୁ କହ ଏ ମୋହର ଠାବ ।
ସମସ୍ତ ରାଜାଙ୍କ ମୂର୍ଦ୍ଧି ଅଟେ ଗଉରବୀ
ଅଶ୍ୱବଣିଜ ମୋ ଯେତେ ନେଡ଼ାକେତେ ହେବ
ତିନିଶତ ଯୋଜନ ମୋ ମନୋହର ବନ
ଅଶ୍ୱିନୀକୁମାରଙ୍କ ଏ ଅଟେ ଜନ୍ମସ୍ଥାନ ।
ଆକାଶବାହିନୀ ଏଥେ ନଦୀ ଧବଳାଙ୍ଗୀ
ଯମୁନା ଯେ ସରସ୍ୱତୀ ଗଙ୍ଗା ସଙ୍ଗେ ସଙ୍ଗୀ ।
ଆକାଶ ବାହିନୀ ବହେ ମେରୁର ମେଖଳ
ଦିବାରାତ୍ର ବହୁଥାଏ କ୍ଷୀରବର୍ଣ୍ଣିବ ଜଳ ।
ପୂର୍ବରୁ ଏମନ୍ତ କଥା ଶୁଣିଅଛି ମୁହିଁ
ତୁମ୍ଭ ଆଗରେ କହିଲି ସକଳ ଫିଟାଇ ।
ସଂଜ୍ଞା ସଙ୍ଗେ ଦିନନାଥ ଶୃଙ୍ଗାର କରନ୍ତି
ଆଦିତ୍ୟଙ୍କ କ୍ରୀଡ଼ାରଶ୍ମି ସହି ନ ପାରନ୍ତି ।
କଷ୍ଟ ପାଇ ଦିନେ ଦେବୀ କଲେକ ସେ ମାୟା
କଳ୍ପନା କରି ଶରୀରୁ ଜାତ କଲେ ଛାୟା ।
ସକଳ ଶୋଭାରେ ହେଲା ସେହି ପରିପୂର୍ଣ୍ଣ
ସଂଜ୍ଞା ପରାୟେ ଦିଶିଲା ତାର ଚନ୍ଦ୍ର ବର୍ଣ୍ଣ ।
ଆଦିତ୍ୟଙ୍କୁ ସମର୍ପିଣ ସେ ଛାୟା କନ୍ୟାକୁ
ହ୍ରାସରେ ଗଲେ ପଶ୍ଚିମ ମେରୁ ମେଖଳାକୁ ।
ଯେଉଁଠାରେ ଆଦିତ୍ୟଙ୍କ ତେଜ ନ ପଡ଼ଇ
ସେହିସ୍ଥାନରେ ସେ ଦେବୀ ଗୋପ୍ୟହେଲେଯାଇ
ଛାୟା ଘଟିଲା ଜାଣିଣ ଆଦିତ୍ୟ ପ୍ରକୃତି
ସଂଜ୍ଞାହିଁ ଅନେକରୂପେ ଖଟେ ଦିବାରାତି ।
ସୂର୍ଯ୍ୟଙ୍କର ମନ ଜାଣି ଛାୟା ଏହିମତେ
ତାହାଙ୍କୁ ଘଟିଲେ ପଞ୍ଚମନୁ ପରିଯନ୍ତେ ।

ହିରଣ୍ୟନାଭପୁଣ ତା ନ ପାରନ୍ତି ଜାଣି
ବନେ ଯମ ଶନୈଶ୍ଚର ଏହି ଭ୍ରାତ ବେନି ।
ଯମ ସୁମନ୍ତ୍ରକମଣି ଖେଳଣ ଅଇଲା
ଦୁଆରେ ବସିଣ ଭାଇସଙ୍ଗେ ଖେଳୁଥିଲା ।
ତାହା ଦେଖିକରି ମୋତେ ଛାୟା କୋପକଲା
ଭର୍ତ୍ସନା କରଣ ମଣି ଛଡ଼ାଇଣ ନେଲା ।
ଅଞ୍ଚଳ ଧରଣ ଯମ ଲଗାଇଲେ ବାଟେ
ମଣି ନ ଦ୍ୟନ୍ତେ ମାଇଲେ ବାମପାଦେ ଆଣ୍ଟେ
ଆନ୍ତର ମାତା ହୋଇ ଭୂ ଏତେକ ନିର୍ଦ୍ଦୟା
ପାଦଘାତେ ମୂର୍ଚ୍ଛାହୋଇ ପଡ଼ିଲାକ ଛାୟା ।
ଚେତ ଲଭେ ଶାପ ଦେଲା ଶୁଣ ଆରେ ଯମ
ମୂର୍ତ୍ତିଟି ଜାଣ ତୋହର ଅଟେ ଗୁରୁଜନ ।
ରାଗେ ଯେ ପାଦେ ମାଇଲୁ କରି ମୂର୍ଖ ବୁଦ୍ଧି ।
ସେ ପାଦେ ହେଉ ଗଳିତ ମହା କୁଷ୍ଠବ୍ୟାଧି ।
ଛାୟାଙ୍କର ଶାପ ଯେବେ ନୋହିଲା ମେଣ୍ଟଣ
ଯମ ପାଦେ କୁଷ୍ଠବ୍ୟାଧି ହେଲା ତତକ୍ଷଣ ।
ଗଳିଲା ପୂଜ ରକତ ପାଦଗୋଟି ଫୁଟି
ପୋଡ଼ନ୍ତେ ଶମନ କାନ୍ଦ ମହୀପରେ ଲୋଟି ।
ଦିନକରେ ବୁଲୁ ବୁଲୁ ଦେବ ଅଂଶୁମାଳୀ
ହିରଣ୍ୟଗର୍ଭ ପୁରକୁ ଅଇଲେ ସେ ଚଳି ।
ପ୍ରବେଶ ହୁଅନ୍ତେ ଯାଇ ସୂର୍ଯ୍ୟ ଯେ ଭୁବନେ
ଯମ ଯାଇ ମିଳିଲେକ ତାଙ୍କ ସନ୍ନିଧାନେ ।
କୋଳେ ଧଇଲେ ତ୍ରୈଲୋକ୍ୟନାଥ ତପ୍ତନିଧି
ଦେଖିଲେ ଯମ ପାଦରେ ମହା କୁଷ୍ଠବ୍ୟାଧି ।
ଦୁର୍ଗନ୍ଧ ଗନ୍ଧାଇ ବହୁଅଛି ଯେ ଶୋଣିତ
ଆରେ ପୁତ୍ର କେଉଁ କର୍ମ ତୋତେ ରେ ଏମନ୍ତ
ପିତା ମୁଖରେ କହିଲେ ଯମ ବଇବତେ
ମାତା କୋପକରି ଏହି ଶାପଦେଲେ ମୋତେ
ଶୁଣି ଆଶ୍ଚର୍ଯ୍ୟ ହୋଇଲେ କମଳ ବାନ୍ଧବ
ମାତାଙ୍କର ଶାପ କାହିଁ ପୁତ୍ରକୁ ଫଳିବ ।
ବାଳକମାନଙ୍କର ଯେ ଦୁର୍ଜ୍ଜନ ପ୍ରକୃତି
ଖେଳନ୍ତା ଶିଶୁ ମାତାଙ୍କୁ ବଡ଼ ଦୁଃଖ ଦ୍ୟନ୍ତି ।
ବହୁତ ବିମୁଖ ହୋଇ ଗାଳିଦ୍ୟନ୍ତି ମାଏ
କୌଣସି କାଳେ ପୁତ୍ର ନ ହୁଏ ଅପତ୍ୟେ ।
ମାତାଙ୍କର ଶାପ ଯେବେ ପଡ଼ିବ ପୁଅକୁ
ଆଉ କି ଉପାୟ ଅଛି ପୁତ୍ରେ ବଞ୍ଚିବାକୁ ।

ମନେ ଏହା ବିଚାରନ୍ତି ଗଗନ ବିହାରୀ
ଏହି ଅବା ଏ ପୁତ୍ରର ନୁହେଁ ଗର୍ଭଧାରୀ ।
ଗର୍ଭଧାରୀ ମାତା ଶାପ ନ ଦେବେ ଏମନ୍ତ
ମନେ ସ୍ନେହ ଟିକି ମୁଖେ କହେ କଟୁ ଉକ୍ତି ।
ସ୍ତ୍ରୀ ଭାବ ଧ୍ୟାନେ ଜାଣିଲେ ଦିନକର ବନ୍ଧୁ
ଜାଣି ଛାୟାକୁ ବୋଇଲେ କହନ ତୋ ସାଧ୍ୱି
ସଂଜ୍ଞା ସନ୍ନ ନ ପାଇ ତ ମୋହର ସେ ଜ୍ୟୋତି
ପଞ୍ଚମନ୍ତ୍ର ପଢ଼ିଯନ୍ତେ ଖଟିଲୁ ମୋ କଣ୍ଠ ।
ଦେବସ୍ତ୍ରୀକୁଳକୁ ତୋର ମହିମା ଦୁର୍ଲ୍ଲଭ
ପଞ୍ଚମନ୍ତ୍ର ପଢ଼ିଯନ୍ତେ ମୁଁ ଛାୟାବଲ୍ଲଭ ।
ଧ୍ୟାନବଳରେ ଏ ସବୁ ପାଇଲେ ସେ ଜାଣି
ଦେଖିଲେ ସଂଜ୍ଞା ଲୁଚିଛି ମେରୁ ହୋଟେ ପୁଣି
ନିଜରୂପ ଛାଡ଼ି ସେହି ହୋଇ ଅନ୍ୟରୂପ
ଘୋଟକୀ ରୂପରେ ସଂଜ୍ଞା ହୋଇଅଛି ଗୋପ୍ୟ ।
ଏମନ୍ତ ସ୍ୱରୂପ ଦେବ ଦେଖି ଧ୍ୟାନବଳେ
ଅଶ୍ୱପୁରୁଷ ରଚନ ଆପଣେ ହୋଇଲେ ।
ମେରୁ ମେଖଳେ ପଶିଲେ ସେ ଆଦିତ୍ୟ ଦେବ
ହ୍ରେଷାରବ କଲେ ଯେହ୍ନେ ଅଶ୍ୱଙ୍କର ଭାବ ।
ଅଶ୍ୱମାନଙ୍କ ଲକ୍ଷଣ ଯେସନ ପ୍ରକୃତି
ସଂଜ୍ଞାହିଁ ଶବଦ କଲେ ଶୁଣି ତତ୍କ୍ଷଣାନ୍ତ ।
ସେ ଶବ୍ଦ ଶୁଣି ଘୋଡ଼ାଇ ସେହି ଅଶ୍ୱବର
ଅଶ୍ୱ ସାଙ୍ଗରେ ଯାଇଣ କଲେକ ଶୃଙ୍ଗାର ।
ପୁଚ୍ଛିଲେ ଘୋଟକୀ ତୁମ୍ଭେ କେବଣ ଦେବତା
ଅଶ୍ୱରୂପୀ ବୋଇଲେ ମୁଁ ଅଟଇ ସବିତା ।
ସଂଜ୍ଞା ସଙ୍ଗେ କ୍ରୀଡ଼ାକଲେ ଦେବ କୁତୂହଳେ
ବଢ଼ିଲା ଶୃଙ୍ଗାର ରସ ମହାକାମ ହେଲେ ।
ଘୋରରୂପୀ ବୀର୍ଯ୍ୟ ଗର୍ଭେ ପଡ଼ୁ ଊର୍ଦ୍ଧ୍ୱରେତା
ମୋହେ ପଡ଼ିଲେ ଘୋଟକୀ ହଜାଇଣ ଚେତା
ଅମୋଘ ରେତ ତାଙ୍କର ଯତ୍ନେ ସେ ଖସିଲା
ଛିନଧାର ହୋଇକରି ତା ଗର୍ଭୁ ବହିଲା ।
ଧାରକରୁ ଅର୍ଦ୍ଧଧାର ସଂହରିଲେ ଗର୍ଭ
ସଇନ୍ଦୁ ଜାତ ହୋଇଲେ ସେ ଅଶ୍ୱିନୀଦେବ ।
ମନୁଷ୍ୟ ଶରୀର ଅଶ୍ୱପରି ମୁଣ୍ଡ ଗୋଟି
ମହାମନ୍ତ୍ର ମହୌଷଧି ତା ଅମୃତ ଦୃଷ୍ଟି ।
ଜାତ ହୋଇକରି ସେହି ବୃଦ୍ଧିଲା କୁମର
ତାହାର ଦୃଷ୍ଟି ପଡ଼ିଲା ବନେ ଯେତେ ଦୁର ।

ସେ ବୃକ୍ଷମାନେ ହୋଇଲେ ଜାଣ ମହୌଷଧି
ତାହା ଲେପ କ୍ଷେପକଲେ ନାଶେ ସର୍ବବ୍ୟାଧି
କହନ୍ତେ ସୁଜାଣେଶ୍ୱର ନୃପ ଚୂଡ଼ାମଣି
କୋପ ଛାଡ଼ି ଭୀମ ଶାନ୍ତ ହେଲେ ତା ଶୁଣି ।
ଖଣ୍ଡଧାର ପଡ଼ିଲା ଯେ ମେରୁର ମେଖଳେ
ବହିଯାଇ ମିଶିଲା ସେ ସରସ୍ୱତୀ ଜଳେ ।
ସେ ମହାତୀର୍ଥ୍ୟ ମିଶ୍ରିତ ହୁଅନ୍ତେ ତା ଘେନ
ବହଇ ଯେ ସରସ୍ୱତୀ ଈଶାନ ବାହିନୀ ।
ଆଦିତ୍ୟ ସଞ୍ଜାର ମନୋହର ଏ ଭୁବନେ
ମନୋହରବନ ନାମ ହୋଇଲାକ ଏଣେ ।
ସେ ବନରେ ଥିଲେ ଯେତେ ବଡ଼ ବଡ଼ ଜୀବ
ସେମାନେ ରେତ ପିଇଣ ଲଭିଲେକ ଗର୍ଭ ।
ସରସ୍ୱତୀରୁ ପିଇଲେ ସେ ରେତ ପାଣିକି
ତାଙ୍କ ତହୁଁ ଜନ୍ମହେଲେ ଘୋଟକ ଘୋଟକୀ ।
ନାନା ଜାତିର ସୁନ୍ଦର ସୁନ୍ଦର ତୁରଗ
ପୂର୍ଣ୍ଣହୋଇ ରହିଛନ୍ତି ଏହି ବନଭାଗ ।
ସେ ଅଶ୍ୱଙ୍କୁ ସମ୍ଭାଳି ମୁଁ ରଖିଛି ଯତନେ
କିଣିବାକୁ ଆସୁଛନ୍ତି ଧନଲୋକ ମାନେ ।
ଯେଉଁ ଅଶ୍ୱର ହୋଇବ ଯେତେକଟି ମୂଲ୍ୟ
ଅଧା ଧନ ନେଇ ବାହୁଡ଼ ଦଅଇ ମୁଁ ଭଲ ।
ମୋହର ତହୁଁ ସମସ୍ତେ ଅଶ୍ୱ ଘେନିଯାନ୍ତି
ତେଣୁକରି ମୋର ନାମ ଅଟେ ଅଶ୍ୱପତି ।
ଏତେବଡ଼ ରାଜ୍ୟ ମୋର ପର ଉପକାରୀ
କେତେ ସତ ବଳିଲା ତୋ ଏହା ଧ୍ୱଂସକର ।
ପରଲୋକ ହିତେ ମୁହିଁ ବଞ୍ଚଇ ସର୍ବଦା
ତୁମ୍ଭ ଗୁଣବନ୍ତ ମୋର ସୈନ୍ୟ କଲୁ ପଦା ।
ଭୀମ ବୋଲେ ତୁ କହିଲୁ ଆପଣାର କଥା
ତୋ କଥା ଶୁଣି ମୋହର ଜନ୍ମିଲା ଯେ ବ୍ୟଥା
ତୁ କି ନ ଜାଣୁ ରାଜସୂୟ ଯାଗ ହେବ ବୋଲି
ପଶ୍ଚିମ ରାଜାଙ୍କୁ ମୁହିଁ ନିମନ୍ତ୍ରି ଅଇଲି ।
ମୁହିଁ ସେ ଭୀମ ପାଣ୍ଡବ କୁଳରତି ଶ୍ରେଷ୍ଠ
ଯାହାର ନିମନ୍ତେ ଜରାସନ୍ଧ କରି ନଷ୍ଟ ।
ଭୀମସେନ ମୁଖରୁ ଏ ତଥ୍ୟ କଥା ଶୁଣି
ଅଶ୍ୱ ପୃଷ୍ଠରୁ ଡେଇଁଣ ପଡ଼ି ନୃପମଣି ।
ବୃକୋଦର ପାଦତଳେ ବହୁତ ପ୍ରଣମି
ସର୍ବ ଦୋଷ ମୋର କ୍ଷମା କରିବାକ ସ୍ୱାମି ।

ମୁହିଁ ବନଚର ତେବ କିସ ମୋର ବୁଦ୍ଧି
ପାଣ୍ଡବ ଦର୍ଶନେ ମୋର ହେବ କାର୍ଯ୍ୟ ସିଦ୍ଧି ।
ବହୁତ ବିନୟ ହୋଇ ଆନନ୍ଦ ହୃଦରେ
ରାଜ୍ୟ ଉତ୍ସବ କରିଲା ନାନା ପରକାରେ ।
ଜଗତି ପର୍ଯ୍ୟନ୍ତେ ରଜା ପାଏଡ଼ା ପାଡ଼ିଲା
ବହୁ ବିନୟେ ଭୀମଙ୍କ ଚରଣ ସେବିଲା ।
ତା ଜଗତୀପରେ ଭଜେ କଲେ ଖାଇମଣି
କେଡ଼ି ଦେଖିଛନ୍ତି ନରେ ତାଙ୍କୁ ଯକ୍ଷ ଜାଣି ।
ମହା ସମ୍ଭ୍ରମରେ ରାଜା ଯୋଗାଡ଼େଇ ଦେଲା
ରହିଣ ପାଣ୍ଡବ ତହିଁ ଭୋଜନ କରିଲା ।
ଶ୍ୱେତାର ତୁରଙ୍ଗମ ଯେ ବାୟୁତୁଲ୍ୟ ଗତି
ସ୍ୱରଲକ୍ଷ ଦେଲା ଆଉ ମଦଗଳ ହସ୍ତୀ ।
ଧଳା କଳା ଚଉରାଶୀ ଲକ୍ଷଣରେ ପୂର୍ଣ୍ଣ
ଗ୍ରାମୁରେ ଦେଲା ଆଦିତ୍ୟ ଅଶ୍ୱର ସମାନ ।
ଲକ୍ଷେକ ଭାର ନରେଶ ପାଣିଦ୍ରବ୍ୟ ଘେନ
ଭୀମସେନେ ଦେଲା ଏତେ ଦେଖା ଦରଶନୀ ।
ଗୁଡ଼ାକ୍ଷତେ ନିମନ୍ତ୍ରଣ କଲେ ବୃକୋଦର
ବୋଇଲେ ଯା ସମର୍ପିବୁ ସାତ୍ୟକି ପାଶର ।
ମୋତେ ଦେଲୁ ଯେତେକ ତୁ ଦେଖାଦରଶନୀ
ସାତ୍ୟକି ସମ୍ଭାଳିଥିବ ଭଣ୍ଡାର ତା ଘେନ ।
ତୋର ଯେତେ ସମଦଣ୍ଡ ତାହାଙ୍କ ସହିତେ
ଏହିକ୍ଷଣି ଅନୁକୂଳ କର ଇନ୍ଦ୍ରପ୍ରସ୍ଥେ ।
ଏମନ୍ତ ଶୁଣି ବୋଇଲେ ସେ ସୁଜାଣେଶ୍ୱର
ସୈନ୍ୟସହ ଯିବ ସ୍ୱାମି ନ କର ଉତ୍ତର ।
ଭୀମ ବୋଇଲେ ଜାଣ ତୁ ସୁଜାଣ ନୃପତି
ପ୍ରବେଶିବୁ ଯାଇ ପୌଷପୂର୍ଣ୍ଣିମାର ତିଥି ।
ବିଶ୍ରାମ ନ କର ଯିବୁ ତ୍ୱରି ଅହୋରାତ୍ରେ
ଯେମନ୍ତେ କୃଷ୍ଣ ଲଙ୍ଘନା ନ କରନ୍ତି ମୋତେ ।
ଚଳିଲା ଡାହାଳେଶ୍ୱର ଓଳଗି ମେଲ୍ଲଇ
ସେଠାବରୁ ଭୀମସେନ ଗଲେ ବେଗ ହୋଇ
ଜୟ ଜୟ ଜଗନ୍ନାଥ ଅନାଥର ନାଥ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ତୁମ୍ଭ ହସ୍ତ ।
ଗତି ମୁକ୍ତି ଦାତା ତୁମ୍ଭେ ଜୀବମାନଙ୍କର
ତୁମ୍ଭ ନାମ ଭକ୍ତଙ୍କର କଣ୍ଠ ହେମହାର ।
ତିନିପୁର ଅଧିକାରୀ ତୁମ୍ଭେ ଦେବରାଜ
ଅସୁରଙ୍କ ଗର୍ବ ଖର୍ବକାରୀ ତୁମ୍ଭ ତେଜ ।

କୃଷ୍ଣ କେଶବ ମୁରାରି ଶ୍ରୀ ମଧୁସୂଦନ
ରାମ ହରି ପଦ୍ମନାଭ ପତିତପାବନ ।
ଏହି ନାମାବଳି ଯେହୁ ଆନନ୍ଦ ହୃଦରେ
ଦୃଢ଼କରି ଭଜୁଥିବ ଦଣ୍ଡେ ଯେ ଅନ୍ତରେ ।
ତୁମ୍ଭର ନାମ ଅଟଇ ପାପୀ ପାପହରି
ଯମଦୂତଙ୍କ ହାତରେ ନ ପଡ଼େ ସେ ଧରି ।
ତବ ପାଦ ପଙ୍କଜରେ ମଧୁ ଲାଳସରେ
ମୋ ମନଭୃଙ୍ଗ ଗୋଡ଼ାଏ ପିଇ ନିରନ୍ତରେ ।
ଦୟାକର ଦୀନବନ୍ଧୁ ଏ ଅଧମ ପ୍ରତି
ଶାରଳାଦାସର ସଦା ଏତିକି ବିନତି ।

---

## ବିରାଟ ରାଜ୍ୟରେ ଭୀମଙ୍କ ଦୂତର ଅପମାନ

ପୃଚ୍ଛା କଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
ରାମ ଶ୍ରୀମୁଖ ଗଲା ଯେ ବିରାଟ କଟକ ।
ବିରାଟ ଶ୍ରୀମୁଖ ପାଇ କେଉଁ କୃତ୍ୟ କଲା
ବୁଝି ହେଲା କି ନୋହିଲା ଦୁତେ ଶାସ୍ତିହେଲା
ଏହା ଶୁଣିବାକୁ ମନ ହେଉଛି ଉଦ୍‌ବେଗ
ସଂଶୟ ଫିଟାଇ କହ ମୁନି ମହାଭାଗ ।
ଅଗସ୍ତି କହିଲେ ଶୁଣ ହେ ମନୁ ରାଜନ
ବିରାଟ ରାଜ୍ୟକୁ ଗଲା ଦୂତ କାଳଞ୍ଜନ ।
ସଙ୍ଗତରେ ନେଇଗଲା ଶତେକ ସଇନ
କାଳଞ୍ଜନ ଯାଏ ଏକ ଆରୋହି ବିମାନ ।
କଥୋପକଥନ ହୋଇ ପଥ କ୍ଷେପିଗଲେ
ବିରାଟ ରାଜ୍ୟରେ ଯାଇଁ ପ୍ରବେଶ ହୋଇଲେ ।
କୀଚକ ବସେ କରୁଛି ବାହାର ଜଗତି
ଶତେ ବିଳାସିନୀ ତାକୁ ଚାମର ଢାଳନ୍ତି ।
ବିରାଜେ ମଣି ମୁକୁଟ ତାହାର ଲଲାଟେ
କି ଅବା ସୁରଈଶ୍ୱର ବସେ ବଇରାଟେ ।
କାଳଞ୍ଜନ ପତ୍ରହାରୀ ଏ ଆରମ୍ଭ ଦେଖି
ଭାଳିଲା ଏହି କି ବିଜେ ମର୍ତ୍ତ୍ୟଦେଶ ସାଇଁ ।
ହସ୍ତରେ ଧରି ଶ୍ରୀମୁଖ ବୋଲେ କାଳଞ୍ଜନ
ହେ ବିରାଟ ଜଗତକୁ ଉହ୍ଲାଇ ବଦନ ।
ପାଏଡ଼ା ପାଢ଼ ଶ୍ରୀମୁଖ ଘେନସି ହେ ରାୟେ
କେବଣ ଦର୍ପ ତୋହର ଏତେକ ନିର୍ଭୟେ ।

କୀଚକ ବୋଇଲା ତୁହି ଅଟୁ କାହା ଚର
ଦୂତ ହୋଇକରି ତୋର ଏତେକ ସ୍ୱତର ।
କେ ରେ ଶ୍ରୀମୁଖ ଦେବାକୁ ମୋତେ ସାମରଥ
ନ ଜାଣୁ କି ସଂଗ୍ରାମେ ମୁଁ ଅଟେ ବଳବନ୍ତ ।
ଶରଣକୁ ସୋଦର ମୁଁ ପର ଲୋକ ବନ୍ଧୁ
ନଷ୍ଟେଁ ଆଜ ଶିର ତୋର ନାଶଯିବ ବନ୍ଧୁ ।
ପ୍ରତିଜ୍ଞା କରଣ ଯହୁଁ କୀଚକ କହିଲା
କାଳଞ୍ଜନ ପତ୍ରହାରୀ ଶୁଣି କୋପକଲା ।
ଜଗତବନ୍ଦନ ବୃକୋଦର ମହାମତି
ତୋ ଭର୍ତ୍ସନା ବୋଲ ସେହି ସହି ନ ପାରନ୍ତି
ପ୍ରତିଜ୍ଞା କରି ସେ ଯେ ବୋଲେ କାଳଞ୍ଜନ
ନ ଜାଣୁ କି ହୋ ବିରାଟ ସେହୁ ଭୀମସେନ ।
ହିଡ଼ିମ୍ବକ ରାକ୍ଷସ ଯେ ବଧାଇଲେ ଜଣେ
ପଞ୍ଚାନେ ଲକ୍ଷେ ରାଜାଙ୍କୁ ଜିଣିଲେ ସେ ରଣେ ।
ଓଡ଼ାଧର ଦର୍ପଭଞ୍ଜା ମର୍ଦ୍ଦି ବକାସୁର
ପ୍ରତିଜ୍ଞା ସାମରଥ ଯେ ଯୁଧିଷ୍ଠି ସୋଦର ।
ଯା ନାମ ଶୁଣିଲେ ହରି କୃଷ୍ଣ ଭୟକରେ
ଜରାସନ୍ଧ ଯେ ବଧିଲେ ଏକ ମୁଥକରେ ।
ବୀରବର ପାଣ୍ଡବ ସେ ଷୋହଳ ପଞ୍ଚାଣ
ରାଜସୂୟ ଯାଗ ହେତୁ କରେ ଆଗମନ ।
ପଶ୍ଚିମ ଦିଗରେ ଛନ୍ତି ଯେତେ ନରପତି
ତାହାଙ୍କୁ ଅକ୍ଷତ ଦେଇ ନେବେ ସେ ନମନ୍ତି
ଦୁଷ୍ଟ ଦର୍ପ ଧ୍ୱଂସନ ଯେ ଜଗତେ ଉତ୍ତମ
ତ୍ରୈଲୋକ୍ୟ ଚମକେ ଯାର ବୃକୋଦର ନାମ ।
ପାଏଡ଼ା ପାଢ଼ ଶ୍ରୀମୁଖ ଘେନ ହେ ବିରାଟ
ଠାକୁର ବଜେକଲେ ଏ ପଶ୍ଚିମ ସୌରାଷ୍ଟ୍ର ।
କାଳଞ୍ଜନ ପତ୍ରହାରୀ କୀଚକ ନ ଚିହ୍ନି
ବିରାଟ ପ୍ରାପ୍ୟ ମଣି ସେ ବୋଲେ କଟୁବାଣୀ ।
କୀଚକ ବିରାଟ ନିନ୍ଦା ନ ପାରଇ ସହି
ତେଣୁ କୀଚକର ମନେ ଥିଲା ରାଗହୋଇ ।
ତା ମୁଖରୁ ବାରମ୍ବାର ପୌଢ଼ କଥା ଶୁଣି
ଜଗତି ପରେ କୀଚକ ରାଗେ ଖିରଝୁଣି ।
ବୋଇଲା ଯା କେଶ ଧରି ଯାଆ ଆରେ ନେଇ
ଜଗତିର ତଳେ ଥିଲେ ଅନେଶ୍ୱତ ଭାଇ ।
କୀଚକ ଆଜ୍ଞାରେ ବେଗେ ଧାଇଁ ଅମନାତ୍ୟ
ପଶୁଁ ପାଣୀ ଗଦା ଆଦି ବୁଲଇ ତ୍ୱରିତ ।

ରେରେକାର କରି ବେଗେ ଆଇଲେ ସେ ଧାଇଁ
କାଳଞ୍ଜନ ପାଶେ ମିଳି ଧଇଲେକ ଯାଇଁ ।
ସବଳରେ ସାଉଁଟିଣ ଧଇଲେକ ବାଳ
ଉଠାଇ ନଅନ୍ତେ ପାଦ ନ ଲାଗଇ ତଳ ।
ଶ୍ରୀମୁଖ ଉଚ୍ଚଣ୍ଡ କରି ବୋଇଲେ ତା ତହୁଁ
ବୋଇଲେ ଏଠାକୁ ଆସି ଏଡ଼େ ଦର୍ପ ବହୁ ।
ଶିରଶ୍ଛେଦନେ ଖାତକ ସହୁଁ ଆଜ୍ଞାଦେଲା
ଯାତକେଶ୍ୱର ମରଣ ବରାଟେ କହିଲା ।
ସ୍ୱାମୀ ଭୀମସେନ ନାମ ଇନ୍ଦ୍ରପ୍ରସ୍ଥେ ଘର
ଜରାସନ୍ଧକୁ ସଂଗ୍ରାମେ କଲା ଯେ ସଂହାର ।
ଯୁଧିଷ୍ଠିର ଦେବଙ୍କ ରାଜସୂୟ ଯାଗକାର୍ଯ୍ୟେ
ଦଣ୍ଡ ଘେନି ସେ ମାରୁତି ଏ ପଶ୍ଚିମେ ବଜେ ।
ବହୁ ରାଜା ଜିଣି ବଳେ ପଞ୍ଚଧାର ଖାର୍ଥେ
ହେ ସ୍ୱାମି ଶ୍ରୀମୁଖ ଗୋଟି ଦେଇଅଛି ତୋତେ
ଖାତକ ଧରାଇ ତାକୁ କରୁଛି ନିଧନ
ଶୁଣିଣ ସେ ମତ୍ସ୍ୟେଶ୍ୱର ଧାଇଁଲେ ବହନ ।
ଖାତକର ଭ୍ରାତେ ତାକୁ ନେଉଛନ୍ତି ହାଣି
ରହ ରହ ବୋଲି ଦୂରୁ ଡାକେ ନରମଣି ।
ରାଜାର ବଚନେ ସର୍ବେ ହୋଇଲେ ସ୍ତମ୍ଭିତ
କାଳଞ୍ଜନେ କୋଳକଲା ମତ୍ସ୍ୟ ନରନାଥ ।
ବନ୍ଧନରୁ ମୁକ୍ତ କରି ତାକୁ ଘେନିଗଲା
ସ୍ୱର୍ଣ୍ଣ ଆସନେ ବସାଇ ସ୍ନାନ କରାଇଲା ।
ଖାତକ ଭ୍ରାତାମାନଙ୍କୁ ରାଜେ ଦେଲା ଗାଳି
ଆରେ ଯାହାକୁ ଖଟିଣଥାନ୍ତି ବନମାଳୀ ।
ଏମନ୍ତ ଅଜ୍ଞାନୀ ତୁମ୍ଭେ ଅଟ ଦୁଷ୍ଟ ମନ୍ଦ
ହିଂସୁ ନିରଞ୍ଜନଙ୍କ ଶ୍ରୀମୁଖକୁ ନନ୍ଦ ।
ବହୁତ ବଚନେ ରାଜା କଲା ନିଉଛାଳ
ଶ୍ରୀମୁଖକୁ ବେଢ଼ିଲା ସେ ପାତି କରାଞ୍ଜଳି ।
ତାହାକୁ ମାଥେ ଲଗାଇ ମତ୍ସ୍ୟଦେଶ ପତି
କାଳଞ୍ଜନକୁ କରିଣ ବହୁତ ଭକତି ।
ତାହାର କର ଧରିଣ ପୁରେ ଘେନିଗଲା
ନିଜ ଆସ୍ଥାନ ଉପରେ ତାକୁ ବସାଇଲା ।
ଷଡ଼ଶର ସ୍ୱର୍ଣ୍ଣ ଦେଇ କଲା ପାଦପୂଜା
ଶ୍ରୀମୁଖ ମୁଦ ପେଡ଼ିଣ ମତ୍ସ୍ୟଦେଶ ରାଜା ।
ଯାଚକ ମନ୍ତ୍ରୀକୁ ଦ୍ୟନ୍ତେ ସେ ସବୁ ପଢ଼ିଲା
ପ୍ରତିଜ୍ଞା ଶୁଣି ବିରାଟ ବହୁ ଭୟ କଲା ।

ବହୁତ ପ୍ରତିଜ୍ଞା ଆଉ ବହୁତ ବଡ଼ିମା
ଶୁଣିଣ କାଳେବରର ଦୁଃସହ ମହିମା ।
ମନେ ମନେ ଭୟକରି ସେହି ମତ୍ସ୍ୟେଶ୍ୱର
ଭଗ୍ୟରଲ ନଷ୍ଟେ ରାଜ୍ୟ ନାଶଗଲା ମୋର ।
ସ୍ୱାମି ଦୂତେ ହିଂସିଲା ଏ ଖାତକ ମୂଢ଼
ଏ ରାଜ୍ୟ ଏଥର ଶିଘ୍ର ମୋର ହେବ ଗୁଣ୍ଡ ।
ଅନେକ ବିନୟେ କହେ ସେ କାଳଞ୍ଜନକୁ
ତୁମ୍ଭେ ଦୟାକଲେ ଅଛି ମୋର ବର୍ତ୍ତିବାକୁ ।
ଖାତକର ଦୋଷମାନ କରିବାକ କ୍ଷମା
ତୋ ଧର୍ମ ଉଦୟ ହେବ ଜାଣ ହେ ମହାତ୍ମା ।
ତୁମ୍ଭେ ଦୟାକଲେ ଜାଣ ରକ୍ଷା ହେବ ମୁହିଁ
ଏ ବିଷୟେ ତୋ ତହୁଁ ମୋ ଆନ କେହି ନାହିଁ
କାଳଞ୍ଜନ ବୋଇଲା ତୁ ଶୁଣ ମତ୍ସ୍ୟପତି
ତୋ ଅପରାଧ ଖଣ୍ଡୁଛି ତୁହି ହୁଅ ଶାନ୍ତ ।
ହରି ସହଦେବ ଯେହୁ ଯୁଧିଷ୍ଠିରଙ୍କ ମନ୍ତ୍ରୀ
ଭୂତ ଭବିଷ୍ୟ ଆଗତ ସେ ସର୍ବ ଜାଣନ୍ତି ।
ଉତ୍ପତ୍ତି ପ୍ରଳୟ ହୁଏ ତାହାଙ୍କୁ ଟି ଦୃଶ୍ୟ
ସେ ମନ୍ତ୍ରୀ ସର୍ବଦା ଥାନ୍ତି ଯୁଧିଷ୍ଠିରଙ୍କ ପାଶ ।
ଅବଶ୍ୟ ଯାଗେ ରାଜାଙ୍କ ବିଷୟ ପଡ଼ିବ
ଖାତକର ଦୋଷ ମନ୍ତ୍ରୀ ରାଜାଙ୍କୁ କହିବ ।
ଏ କଥା ଲୁଚିବ ନାହିଁ ଜାଣ କଦାଚିତେ
ଅବଶ୍ୟ ଖାତକ ନାଶଯିବ ଭୀମ ହାତେ ।
ସମବସ୍ତ୍ର ଘେନି ତୁମ୍ଭ ଇନ୍ଦ୍ରପ୍ରସ୍ଥ ଯିବୁ
ତୋର ଖାତକକୁ ବାବୁ ସଙ୍ଗତେ ନ ନେବୁ ।
ସଦାକାଳେ ମୁଁ ଧର୍ମଙ୍କ ଦୂତ ପେଷକାରୀ
ମୂର୍ଖପଣେ ତୋ ଖାତକ ବହୁ ଦୋଷକରି ।
ମଧ୍ୟସ୍ଥ ହୋଇଣ ଯେବେ ରହିବି ତା ଆଗେ
ଅବଶ୍ୟ ଦ୍ୱନ୍ଦ୍ୱ ଘଟିବ ଅହୋବଳ ସଙ୍ଗେ ।
ଦ୍ୱନ୍ଦ୍ୱ ହୋଇଲେ ହୋଇବ ଜାଣ ବ୍ରହ୍ମହତ୍ୟା
ସେ ଦୋଷେ ଦଣ୍ଡିବ ଦୂତେ ଶମନ ଦେବତା
ଯଦ୍ୟପି ଖାତକ ତୋର ହେଲା ଅପରାଧୀ
ତୋ ଶପଥ ଠାକୁରେ ନ କହିବ ତା ବୁଦ୍ଧି ।
ଅନେକ ଯୋଗାଡ଼ ଦେଲେ ସେ ମତ୍ସ୍ୟ ରାଜନ
ଭୁଞ୍ଜି ତୃପତ ହୋଇଲା ଦୂତ କାଳଞ୍ଜନ ।
ବିରାଟ ରାଜାକୁ ଦ୍ୟନ୍ତେ ସେ ଅକ୍ଷତ ଗୁଆ
ଉଠି ମାଥେ ଲଗାଇଲା ସେ ସୁଦେଷ୍ଣା ନାହା ।

କାଳଞ୍ଜନ ବୋଲେ ତୋର ଯେତେ ଥାଟ ସୈନ୍ୟ
ତାହା ଯେବେ ଇନ୍ଦ୍ରପ୍ରସ୍ଥେ କର ତୁ ଗମନ ।
ପାଣିଦ୍ରବ୍ୟ ଶତେହାର ଦେଲା ମତ୍ସ୍ୟପାଳ
ଭୀମସେନଙ୍କୁ କହିବ ମୋହର କୁଶଳ ।
କାଳଞ୍ଜନ ବୋଇଲା ଯା ଯେବେ ଯିବୁ ତୁହି
ରାଜସୂୟ ଯଜ୍ଞେ ଏହା ଦେବୁ ମୁକୁଳାଇ ।
ଏହି କଥା କହି ତହୁଁ ବାହୁଡ଼ିଲା ଦୂତ
ବିମାନ ଚଳିଲା ତହୁଁ ପବନୁ ତୁରିତ ।
ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛି ତା ସ୍ଥାନରେ ।
ତହିଁ ଉପରେ ଦେଉଳ ଅତି ଶୋଭାବନ
ନୀଳଚକ୍ରେ ପାଟନେତ ଉଡ଼େ ଘନ ଘନ ।
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖ ଚକ୍ର ବହି ।
ପାପୀଜନଙ୍କୁ କରୁଛ ତହିଁ ମୋକ୍ଷଦାନ
ଜୟ ଜୟ ଜଗନ୍ନାଥ ପତିତପାବନ ।
ଜୟ ଜୟ ଜଗନ୍ନାଥ କମଳାର ପତି
ଶାରଳା ଦାସର ତୁମ୍ଭ ପାଦେ ରହୁ ମତି ।

---

## ବକ୍ରସେନ ରାଜାଙ୍କ ଆମନ୍ତ୍ରଣ କର୍ଣ୍ଣସୁବନ୍ଧ ରାଜାଙ୍କର ସୂର୍ଯ୍ୟଙ୍କ ପ୍ରତି ସ୍ତବ ଓ ଲଗ୍ନାଜିତ ରାଜାଙ୍କ ଆମନ୍ତ୍ରଣ

ଅଗସ୍ତିଙ୍କୁ ପୁଚ୍ଛା କଲେ ମନୁ ନରଗଣ
ଏ ଉତ୍ତରେ କସ କଲେ କହ ଭୀମସେନ ।
ଅଗସ୍ତି କହିଲେ ଶୁଣ ମନୁ ନୃପବର
ଦୂତ ସବୁ ଜଣାଇଲା ଭୀମଙ୍କ ପାଶର ।
ଡାହାଳ ଦେଶକୁ ଜିଣି ଚଳଇ ମାରୁତି
ବେଲ୍ଲଳ ଦେଶେ ପ୍ରବେଶ ପଞ୍ଚଦନ ଝତି ।
ଚନ୍ଦ୍ରସେନ ବୋଲି ସେହି ବେଲ୍ଲଳ ରାଜନ
ତା ରାଜ୍ୟେ ଯାଇ ପ୍ରବେଶ ହେଲେ ଭୀମସେନ
ଭଗ୍ୟବର ବୋଲଣ ଯେ ସେ ରାଜାର ମନ୍ତ୍ରୀ
ସେ ଯାଇ ଜଣାଇଲାକ ଚନ୍ଦ୍ରସେନ କତି ।
ତୋ ପିତାକୁ ମାରୁଥିଲା ଯେଉଁ ଜରାସନ୍ଧ
ତାହାକୁ ଯେଉଁ ପାଣ୍ଡବ ଯୁଦ୍ଧେ କଲା ବଧ ।
ଷଷ୍ଟିମ ରାଜା ବଇଣେ ସେହି ଭୀମସେନ
ଆସିଛନ୍ତି ଯାଇ ତାଙ୍କୁ କର ଦରଶନ ।
ବହୁତ ରାଜ୍ୟକୁ ସେହି ଆସୁଛି ଉଜାଡ଼ି
ସଜନ ରକ୍ଷପାଳକ ଦୁଷ୍ଟେ ମାରେ ମୋଡ଼ି ।
ଶୁଣି ସହସ୍ରେକ ଭାର ପାଣିଦ୍ରବ୍ୟ ଧନ
ସପ୍ତଅଶ୍ୱ ଅଷ୍ଟରଥେ ଖଞ୍ଜିଲା ବିମାନ ।
ସହସ୍ରେକ ଛାଟଛନ୍ଦ ସହସ୍ରେ ଜନତା
ସହସ୍ରେକ ଭାର ଦେଲା କର୍ପୂର ମୁକୁତା ।
ଧନେ କୁବେର ସମାନ ଅଟେ ନୃପମଣି
ଅନେକ ରତ୍ନ ଘେନଣ ବିଜେ ତତକ୍ଷଣି ।
ଭୀମଙ୍କ ଆଗେ ବାରତା ଦେଲା ଯାଇ ଦୂତ
ବର୍ଣ୍ଣନେ ଆସୁଛି ଗାଙ୍କମାଧବର ସୁତ ।
ରହି ଥୋଇ ଦରଶନ କରଇ କୁମର
ସ୍ୱାମି ଶତ୍ରୁ ଧ୍ୱଂସି ତୁହି ବୀର ବୃକୋଦର ।
ଅଭୟ ସୋମବଂଶୀ ତୋ ଜୀବନଟି ସାଧୁ
ଶରଣ ରକ୍ଷଣ ନାଥ ନରେଶର ବନ୍ଧୁ ।
ଧଇଣ ଦନ୍ତେ ତୃଣ ଗଳାରେ କୁଠାର
ବୋଲେ ମୁଁ ଶରଣ ଗଲି ମୋତେ ରକ୍ଷାକର
କାଳକେ ବିନୟେ ଦୟା କରିଲେ ମାରୁତି
ଦଣ୍ଡ ଘେନ ଯଜ୍ଞସ୍ଥାନେ ଚଳ ବିଦାଗତି ।
ବେଲ୍ଲଳଦେଶ ନୃପତି କରି ପୁଣି ସେବା
କ୍ଷଣକେ ବିଶ୍ରାମି ସ୍ୱାମି ମଣୋହି କରିବା
ଭୀମ ବୋଇଲେକ ମୋତେ ଏଡ଼େ ସୁସ୍ଥ କାହିଁ
ରାଜାଗଣଙ୍କୁ ବେଗେ ମୁଁ ନିମନ୍ତ୍ରିବି ଯାଇ ।
ଚନ୍ଦ୍ରସେନକୁ ବିଦାୟ ଦେଇ ବୀରମଣି
କୋଶଳଦେଶେ ପ୍ରବେଶ ହେଲେ ଗଦାପାଣି ।
ଗନ୍ଧବତୀ ବୋଲକର ନଦୀ ଏକଗୋଟି
କର୍ଣ୍ଣିରଷିଙ୍କ କର୍ଣ୍ଣରୁ ଆସୁଛି ଯେ ଫୁଟି ।
ମନ୍ଦର ଅନୁଜ ଖରପୀଡ଼ ପରବତ
ମେଘର ଜନ୍ମଭୂମି ସେ ଆନ୍ତି ଅନୁବ୍ରତ ।
ସେ ପର୍ବତ ଉପରେ ଯେ ଭୀମସେନ ଉଠି
ଦେଖିଲେ କୋଶଳଦେଶ ରତ୍ନମୟ ସୃଷ୍ଟି ।
ସବୁଙ୍କ ଘରେ ଲଗିଛି ସ୍ୱର୍ଣ୍ଣ ରୁଅ ଶ୍ରେଣୀ
ସୁବର୍ଣ୍ଣର ଖମ୍ବ ଅଷ୍ଟ ରତନେ ଗୁନ୍ଥଣି ।
ସ୍ୱର୍ଣ୍ଣ କଳସ ରହିଛି ସବୁ ପିଢ଼ାପରେ
ଅଳକା ଭୁବନ ପରି ସେହୁ ଶୋଭା ଧରେ ।

ନର ଆପ୍ପତନେ ଚନ୍ଦ୍ରବଂଶ ପୁଣ ସ୍ତନ
ତାଙ୍କୁ ବେଢ଼ି ଅଛୁ ସ୍ୱର୍ଣ୍ଣଗିରି କାନ୍ଥ ଭଳ ।
ଏମନ୍ତ ଦେଖି ପ୍ରଶଂସେ ପବନ ଆତ୍ମଜ
କେଉଁ ପୁଣ୍ୟବନ୍ତ ରଜା ପାଇଛୁ ଏ ରାଜ୍ୟ ।
ପୂର୍ବେ ଯେ ସଞ୍ଚପ୍ପ କଲ୍ମ ତା ଜୀବନ ଧନ୍ୟ
ପୁଣ ପୁଣ ପ୍ରଶଂସଇ ବୀର ଭୀମସେନ ।
ବରାଜ ବୋଲି କଥଣ ଏକ ଦେଖିଲାର
ସେ ରାଜ୍ୟକୁ ଯାଉଛୁ ସେ ଘେନି ମୃଗହାର ।
ତାଙ୍କୁ ଘେନି ଭୀମ ବୋଲେ ଶୁଣରେ ବିରାଟ
ଏହା କେଉଁ ଦେଶ ଏଥେ କଏ ନରନାଥ ।
ବିରାଟ ବୋଇଲା ତୁମ୍ଭେ ଶୁଣ ଦୂରଦେଶୀ
ମୃଗହାର ଓହ୍ଲାଇଣ ବୋଲେ ପାଶେ ବସି ।
ହରିହରବଂଶେ ଥିଲେ କଣସ୍ପ ଯେ ରାଜ୍ୟେ
କୌଶଲ୍ୟା ନାମେ ଉପୁଜେ ତାର ଦୁହିତାଏ ।
ବଡ଼ଇ ଧାର୍ମିକ ରାଜା ଦାନେ ଶୁଭବନ୍ତା
ପର ଦୁଃଖେ ଦୁଃଖୀ ମାଗନ୍ତାଙ୍କୁ ସେ ଦଅନ୍ତା ।
ଅତି ଦାନରେ ଦରିଦ୍ର ଯହୁଁ ସେ ହୋଇଲା
ପ୍ରଜା ଯା ଅର୍ଜନ୍ତି ତହୁଁ ଦୁଇଗୁଣ ନେଲା ।
କଷ୍ଟ କଲ୍ପକର ରାଜା ନ ଘେନଇ ସଞ୍ଜା
ଲୁଷି କରଣ ବଞ୍ଚନ୍ତି ତାର ଜନ ପ୍ରଜା ।
କେଉଁ ପାପେ କଏ ଶାପ ଦେଲା ତାଙ୍କୁ ପୂର୍ବେ
ଏପରି ଦରିଦ୍ର ହେଲେ ତାର ପ୍ରଜା ସର୍ବେ ।
ପ୍ରଜାଙ୍କର ଦୁଃଖ ଦେଖି ସେହି ନରନାଥ
କରତାଙ୍କୁ ସେବାକଲା ବସି ଅର୍କ ତୀର୍ଥ ।
ଅଜପା ମନ୍ତ୍ରେ ଦିବସନାଥ ମନ ତୋଷି
ଅଲ୍ପ ଜଳ ତ୍ୟାଗକରି ମହାଯୋଗେ ବସି ।
ଅନାହାରେ ବସିଲା ସେ ରାଜା ରାଜ୍ୟ ଅର୍ଥେ
ସୂର୍ଯ୍ୟଙ୍କୁ ସେବିଲା ପଞ୍ଚବର୍ଷ ପରିଯନ୍ତେ ।
ସ୍ତୁତି ପାଠକରେ ତାଙ୍କୁ ସ୍ତୁତି କରଇ
ତିମିର ନାଶନ ତୁମ୍ଭ ଜନ୍ମ ହେ ଗୋସ୍ୱାଇ ।
ତୋହର ସୁଦୃଷ୍ଟି ବୃଷ୍ଟି ଯାଇ ଶୂନ୍ୟପଥେ
ଗଗନେ ସଞ୍ଚରୁ ନାଥ ପ୍ରାଣୀ ସୁଖ ହୁଏ ।
ପ୍ରଳୟ ଆଗମ ଜାଣି ତୁମ୍ଭେ ମନେ ମନେ
ଅଣାକାରଙ୍କୁ ତୁମ୍ଭେ ଚିନ୍ତିଲୁ ଦେବ ଧ୍ୟାନେ ।
କଳପ ଯାଏ ରଖିଲୁ ମହା ତେଜ ମୂର୍ତ୍ତି
ଅନାଇ ନ ହୁଏ ଦେବ ତୋର ଯେଉଁ ଜ୍ୟୋତି

ଅବଲ୍ଲୁପ୍ତ ପ୍ରାତଃକାଳୁ ଉଠିଆସୁ କାହୁଁ
ଜଗତ ଉଜ୍ଜ୍ୱଳ ହୁଏ ସର୍ବେ ସ୍ତୁତି ଗୃହୁଁ ।
ସ୍ୱାମି ଅନ୍ଧକାରୁ ବୋଲି ଏକଇ ଦିବସେ
ବସିଲୁ ଅଚଳ ହୋଇ ନିଦ୍ରାର ଆଳସ୍ୟ ।
ନିଦ୍ରାକୁହିଁ ଇଚ୍ଛା ଦେବ କଲୁ ଯେତେବେଳେ
ପବନ ଅଗ୍ନି ଆକାଶ ହେଲେ ତେତେବେଳେ
ଯେତେକାଳ ପରିଯନ୍ତେ ଥିଲୁ ତୁ ନିଆଇ
ଆତଯାତ ହେଉଥିଲେ ଭବେ ସର୍ବେ ରହି ।
ଚନ୍ଦ୍ରା ଘୁଞ୍ଚି ନାଥ ତୁମ୍ଭ ବସନ୍ତଣ ଲୟେ
ସମୁଦ୍ରେ ଘୋଟିଲା ଦେବ ମୋହର ପ୍ରଳୟେ ।
ଏକ ଦିବସେ ତୋହର ହୋଇଲା କଲ୍ପେ
ତଆଇଁ ଉଠି ବସିଣ ପୁଣି ନାଥ ଆପେ ।
ଶରୀରରୁ ପକାଇଲୁ କାଢ଼ି ପଞ୍ଚଧାତୁ
ପାଞ୍ଚ ପୁରୁଷ ଜନ୍ମିଲେ ତୋର ଜ୍ଞାନ ହେତୁ ।
ଋଦ୍ଧି ସିଦ୍ଧି ବୁଦ୍ଧି ସନକ ଯେ ସନାତନ
ଏ ପାଞ୍ଚ ପୁରୁଷ ଦେବ ଆଦ୍ୟେ କଲୁ ଜନ୍ମ ।
ଏ ପାଞ୍ଚଙ୍କ ଶରୀରରେ ଥୋଇ ପଞ୍ଚଆତ୍ମା
ସେ ପଞ୍ଚେ ହେଲେ ଗୋଟିଏ ଗୋଟିଏ ମହାତ୍ମା
ସତ୍ୟଯୁଗ କରଣ ତୁ ଆଦ୍ୟେ ସୃଷ୍ଟି ସଞ୍ଚି
ବିଧାତା ଅନନ୍ତ ରୁଦ୍ର ବ୍ରହ୍ମା ଯେ ବିରଞ୍ଚି ।
ଆଜ୍ଞା ଦେଲୁ ସ୍ୱାମି ଏହି ପୁରୁଷଙ୍କୁ ଚାହିଁ
ଯାଅ ବେଗେ ତୁମ୍ଭେ ନବସୃଷ୍ଟିକୁ ଉଆଇ ।
ତୋର ଆଜ୍ଞାରେ ସଞ୍ଚିଲେ ସେ ସଚରାଚର
ସ୍ତିରଖାନ ଚଉରାଶୀ ଜନ୍ମୁ ଭିନ୍ନାକାର ।
ସ୍ୱର୍ଗମର୍ତ୍ତ୍ୟ ପାତାଳ ଏ ତିନ୍ଦ୍ର ତିଭୁଲୋକ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁମ୍ଭ ପ୍ରଭୁ ଏକ ।
ସକଳ ଜୀବମାନଙ୍କ ତୁମ୍ଭ ଦିବ୍ୟଚକ୍ଷୁ
ଯେ ଯହିଁ ଥାଇ ଯା କରେ ସବୁ ଦେଖୁ ଦେଖୁ
ଯେ ଯାହା କରଇ ତାହା ଦେଖ ପ୍ରତ୍ୟକ୍ଷରେ
ସେମାନଙ୍କୁ ଶାସ୍ତି ଦିଅ ତୁମ୍ଭ ସଂସାରରେ ।
ଧ ରନ୍ତା ଉଦ୍ଧରନ୍ତାରୁ ନାମ କରତାର
ଦେଖିଣ ସ୍ତୁତି କରନ୍ତି ତୋତେ ସୁରନର ।
ଯାବତ ଜନଜନ୍ତୁଙ୍କ ଜନ୍ମକର୍ତ୍ତା ତୁମ୍ଭ
ପ୍ରଜାପତି ପୁରୁଷ ତୋ ତହୁଁ ଆନ ନାହିଁ ।
ଜାତ ଅନ୍ତ ଏ ଦୁଇରେ ତୁମ୍ଭ ଯେ କରତା
ତୋ ତହୁଁ ଜନ୍ମ ହୋଇଲେ ଶମନ ଦେବତା ।

ତାହାଙ୍କୁ ହକାରି ତୁମ୍ଭେ ଆଜ୍ଞା ଦେଲୁ ପ୍ରଭୁ
ପାପପୁଣ୍ୟ ବିଚାରି ତୁ ଜୀବେ ଦଣ୍ଡ ଦେବୁ ।
ସ୍ୱାମି ଆଦ୍ୟାବଳାରେ ତୋ କୋଟିଏ କିରଣ
ସଞ୍ଜ୍ଞା ତବ ଭଗି ତେଜ ସହି ନ ପାରଣ ।
ଉତ୍ସୁକରି ଦେଖା ସଙ୍ଗୁଁ ହୋଇଲେ ଅନ୍ତର
ସଞ୍ଜ୍ଞା ନିମନ୍ତେ ବସିଲୁ ପର୍ବତ ଉପର ।
ନବଲକ୍ଷ ନଉସହସ୍ର କିରଣ ତୋହର
ତାକୁ ଊଣା କଲୁ ବସି ପର୍ବତ କନ୍ଦର ।
ଏହା ଦେଖି ସଞ୍ଜ୍ଞାଦେବୀ ତୋତେ କୋଳ କଲା
ସହସ୍ରେ କିରଣ ତେଜ ତୋହର ରହିଲା ।
ସେ ପରମ ସାଧ୍ୱୀ ସେ ଆଦ୍ୟ ଅର୍ଦ୍ଧପତ୍ନୀ
ସ୍ତ୍ରୀ ସକଳେ ଉପୁଜଣ ରହାଇଲା ସୀମା ।
ଦକ୍ଷନନ୍ଦିନୀ ସଂସାରଜନନୀ ହିତକାରୀ
ଘେନିଲେ ମୁଁ ଏହି ତେଜ ସହି ତ ନ ପାରି ।
ଏ କଳିଯୁଗରେ ଲୋକେ ସହିବେ କେମନ୍ତେ
ସକଳ ଦହନ ହେବ ଜଳିବେ ପର୍ବତେ ।
ସଂସାର ହିତେ ସେ ବେନି ଗଲେ ଅବସର
ସପ୍ତକିରଣ ବହିଲେ ଗଗନ ବିହାରୀ ।
କୋଟିଏ କିରଣ ଯେବେ ସୂର୍ଯ୍ୟଙ୍କର ଥାନ୍ତା
ଜୀବ ଜନ୍ତୁ ପତଙ୍ଗାଦି ଦହ୍ୟ ହୁଅନ୍ତା ।
ସ୍ୱାମି ପରଦୁଃଖେ ଦୁଃଖ ଲାଗେ ପରିଚିନ୍ତା
ପରମାନନ୍ଦ ସ୍ୱାମି ତୁ ଅଟୁ ବରଦାତା ।
ତୁ ଦେବ ଆଦିତ୍ୟ ଗାନଜନଙ୍କ ଅନାଦି
ଯୋଗିଜନମାନଙ୍କ ତୁ ହୃଦୟ ସମାଧି ।
ସ୍ୱାମି ଉଦେଗିରି ପ୍ରଦକ୍ଷଣ କରୁ ନିତ
ତବ ପ୍ରସନ୍ନରେ ନାଥ ହୋଇବି ମୁକତ ।
ଛାୟାର ବଲ୍ଲଭ ନାଥ ସପ୍ତଅଶ୍ୱଶାୟୀ
ତୋ ନିର୍ମଳ ଜ୍ୟୋତିରୂପ ନ ପାଇନ୍ତି ଋଷି ।
ସ୍ୱାମି ଅନିତ୍ୟ ସଂସାର ଅକୂଳ ସାଗର
ରାଗ ମୋହବେଳୁ ଏଥେ ଭାସେ ନିରନ୍ତର ।
ହେ ସ୍ୱାମି ଅଜ୍ଞାନ ମୂର୍ଖ ଜ୍ଞାନ ମୋର କିସ
ଗିରିଜାଙ୍କ ଶ୍ରୀଚରଣ ଦାସର ମୁଁ ଦାସ ।
ହେ ବରିଷ୍ଠ ପ୍ରଭୁ ତୁମ୍ଭ ପାଦରେ ବଇମା
ସର୍ବଦା ଚିନ୍ତେ ଶାରଳା ଦାସ ଶୂଦ୍ରମୁନି ।
ମନୁରାଜା ଆଦିତ୍ୟଙ୍କୁ ଧ୍ୟାନକରି ବୋଇଲେ
ଅନେକ ସ୍ତୁତି କଶ୍ୟପନନ୍ଦନେ ଯେ କରିଲେ ।

ପରସନ୍ନ ହେଲେ କି ନ ହେଲେ ଦିବାକର
ଏ କଥା ମୋ ଆଗେ ଫେଡ଼ି କହ ମୁନିବର ।
ରାଜା ବଚନେ ଅଗସ୍ତି କଲେ ଏ ଉତ୍ତର
କଶ୍ୟପେ ପ୍ରସନ୍ନ ହୋଇ ଯାଚିଲେକ ବର ।
ଯେବେ ପ୍ରସନ୍ନ ହୋଇଲ ମୋତେ ହେ ଆଦିତ୍ୟ
ଚନ୍ଦ୍ରଭାଗା ତଟେ ଅଛି ଅର୍କନାମେ ଦୈତ୍ୟ ।
କଶ୍ୟପନନ୍ଦନ ବର ନେବା ଦୈତ୍ୟ ଶୁଣି
ଘେନେ ସ୍ୟାଙ୍କୁ ଦେଇଥିନ୍ତି ବର ଦିନମଣି ।
ନ ପୁଣି ମାଗଇ ଏହି ମୋହର ମଣ୍ଡଳ
ସ୍ୱା ଭାଲ ଧାଇଁଲା ଧରି ଲୁହାର ମୁଷଳ ।
ଏ ମୁଷଳେ କଶ୍ୟପକୁ କରିଦେଇ ଚୂର
ଲକ୍ଷେ ଯୋଜନେ ଥାଇ ତା ଜାଣି ଦିବାକର
କର ବଢ଼ାଇ ଧଇଲେ ସେ ଅସୁର କର
ସୂର୍ଯ୍ୟଙ୍କୁ ଦେଖି ପ୍ରଣମେ ସେହି ଦୈତ୍ୟାସୁର ।
ଦେଖ ବିଜୟ ନାଥଙ୍କ ମହିମା କିପର
ଆକାଶୁଁ କର ବଢ଼ାଇ ଦୈତ୍ୟ ଭୁଜ ଧରି ।
କୋପରେ ବୋଲନ୍ତି ତାକୁ ଶୁଣ ରେ ଚଣ୍ଡାଳ
ଆସିଅଛୁ ମୋ ଭକ୍ତକୁ ମାରିବାକୁ ଶୂଳ ।
ଅର୍କେ ବୋଲେ ତପସ୍ଥାନ ନାଶୁଛି ମୋହର ।
ତାର ବାକ୍ୟେ ରାଗ ହୋଇ ଦେବ ଦିନକର
ମାଇଲେକ ସୂର୍ଯ୍ୟାବର୍ତ୍ତ ଚଣ୍ଡ ଅଂଶୁମାଳ
ଅର୍କର କଣ୍ଠୁ ବୋହିଲା ଯେମ୍ଭୁ ରକ୍ତ ଗଳି ।
ଏ ସମୟେ ଆକାଶରେ ବୋଲନ୍ତି ବୃନ୍ଦାର୍କେ
ସ୍ୟାଙ୍କୁ ଛାଡ଼ିଲେ ମରିବୁ ଆମ୍ଭେ ଦେବଲୋକେ
ଏମନ୍ତ ଶୁଣିଣ ସୂର୍ଯ୍ୟଦେବ ସିନ୍ଧୁକୂଳେ
ଅର୍କକୁ ମାଡ଼ି ବସିଲେ ଶିଡ଼ା କୁଭୁହଲେ ।
ଅଗ୍ନି କୋଣେ ଚନ୍ଦ୍ରଭାଗା ପଶ୍ଚିମ ପ୍ରଶସ୍ତେ
କୋଣାର୍କ ନାମ ରଖିଲା ଥାତା ଏ ନିମନ୍ତେ ।
ଅର୍କଦୈତ୍ୟ ମାଡ଼ିବସି ହୋଇ ହୃଷ୍ଟମନ
ବର ମାଗ ହେ କଶ୍ୟପ ତୋହର ଯେ ମନ ।
କଶ୍ୟପ ବୋଇଲା ଯେବେ ହୋଇଲ ପ୍ରସନ୍ନ
ମୋ ରାଜ୍ୟ ସୁବର୍ଣ୍ଣବୃଷ୍ଟି କର ସାତଦିନ ।
ମୋର ପ୍ରଜାଜନମାନେ ହୋଇବେକ ସୁଖୀ
ସଦା ଧନ ପୂର୍ଣ୍ଣ ଥିବେ କେ ନୋହିବେ ଦୁଃଖୀ
ସୂର୍ଯ୍ୟ ବୋଲେ ସାତଦିନ ସ୍ୱର୍ଣ୍ଣବୃଷ୍ଟି ହେଲେ
ଶସ୍ୟ କେଉଁଠି ଉପୁଜିବ ପୃଥ୍ୱୀ ନ ତିନ୍ତିଲେ ।

କଣସ୍ୟୁ ବୋଇଲା ତେବେ କର୍ଣ୍ଣ ସାତଘଡ଼ି
ସୂର୍ଯ୍ୟ ବୋଲେ ତେବେ ବୃଷଲତା ଯିବେ ସଡ଼ି
ସାତଦଣ୍ଡ ବରଷିବ ଶୁଣ ହେ କଣସ୍ୟୁ
ରାଜ୍ୟଯାକ ହେବ ତୋର ଯେ ସୁବର୍ଣ୍ଣମୟ ।
ବରାଜ ଶବର କହେ ଭୀମଙ୍କ ଅଗ୍ରତ
ସ୍ୱର୍ଣ୍ଣବୃଷ୍ଟି ହେଲା ସାତଦଣ୍ଡ ପର୍ଯ୍ୟନ୍ତେ ।
ତ୍ରେତୟାଯୁଗେ କୋଶଳ ଦେଶ ନାମେ ଖ୍ୟାତ
ଦ୍ୱାପରେ ଏଥେ ହୋଇଲା ଏ କଣସ୍ୟୁନାଥ ।
ଭରତ ବୋଇଲା ପୂର୍ବେ ଏହି ରାଜ୍ୟ ଅଛି
ତ୍ରେତୟା ଯୁଗରେ ଏହା ଯେତେ ଥିଲେ ସବୁ ।
କୌଶଲ୍ୟା ପିଅର ଯାର ରାମଚନ୍ଦ୍ର ନାତି
ହରିହର ବଂଶ ରାଜା ଜଗତେ ବିଖ୍ୟାତି ।
କଣସ୍ୟୁ ବନ୍ଦୀର ପୁତ୍ର ସୁରମ୍ୟ ନୃପତି
ତ୍ରେତୟାରେ କଣ୍ଠବନ ଏ ପାଳିଲେ ପୃଥ୍ୱୀ ।
ଏହାର ପୁତ୍ର ଅଟଇ ଜାଣ ଲଗ୍ନାଜିତ,
ଲକ୍ଷଣା ବୋଲି କନ୍ୟାଏ ଏହାର ଦୁହିତ ।
ଏ କନ୍ୟାକୁ ଭାର୍ଯ୍ୟା ହେଲେ ଦେବ ବାସୁଦେବ
ସେ କନ୍ୟା ପୁତ୍ର ବସନ୍ତ ଆଉ ସଦାଶିବ ।
ବରାଜ ଶବର ବୋଲେ ଶୁଣ ହେ ନୃପତି
ଲଗ୍ନାଜିତ କୋଶଳରେ ଅଟେ ଚକ୍ରବର୍ତ୍ତୀ ।
ଶୁଣିଣ ଭୀମ ବୋଇଲେ ତଳାଅ ରେ ବଳ
ତା ରାଜ୍ୟରେ ପଶ ସର୍ବେ ବୋଲେ ବାୟୁବାଳ
ମରୁତ ସାରଥି ବୋଲେ ସେ ବ୍ୟାଧ ବିରାଜେ
ବାରତା କହ ତୁ ଯାଇ ସେ କୋଶଳ ରାଜ୍ୟେ
ବୋଲିବୁ ଜରାନାଶନ ପାଣ୍ଡବ ସୁନ୍ଦର
ପଶ୍ଚିମ ରାଜା ଜିଣିବେ ତାଙ୍କ ଆସିବାର ।
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବେ
ଏ ପଶ୍ଚିମ ଦିଗ ରାଜା ସର୍ବେ ଚଳି ଯିବେ ।
ମରୁତ ସାରଥି ବାକ୍ୟେ ଚଳନ୍ତି ଭରତ
ଲଗ୍ନାଜିତର ରାଜ୍ୟରେ ପ୍ରବେଶ ତୁରିତ ।
ବୋଲେ ଶୁଣମା କୋଶଳ ଦେଶ ଅଧିକାରୀ
ପାଣ୍ଡବ ଭୀମସେନ ଯେ ଜରାର ଅରି ।
ରାଜସୂୟଯଜ୍ଞ ସେ ଦେବ କରିବା ନିମନ୍ତେ
ରାଜା ଜିଣନ୍ତି ବୁଲନ୍ତି ପଶ୍ଚିମ ପ୍ରାନ୍ତେ ।
ସମସ୍ତ ନୃପତି ଦେବେ ଯାଉଛନ୍ତି ସାଥେ
ଯେ ରାଜା ନ ଯାଏ ତାକୁ ନାଶ କରେ ଯୁଦ୍ଧେ

ଜ୍ଞାନସେନ ମନ୍ତ୍ରୀ କହେ ରାଜାକୁ ବିନୟୀ
ପାଣ୍ଡବ ବାସୁଦେବ ଯେ ଅଭିନ୍ନ ଅଟଇ ।
ସୈନ୍ୟ ସେନ ସ୍ୱଳ୍ପ ରାଜା ଆଣିବା ପାଛୋଟି
ଶୁଣିଣ ଆନନ୍ଦ ରାଜା ସେହିକ୍ଷଣି ଉଠି ।
ପାଏଡ଼ା ପାଡ଼େ ସେ ରାଜା ରାଜ୍ୟର ଭିତରେ
ଭୀମରେକ ନଜେ ସେହି ଧଇଲାକ କରେ ।
କଟକ ଭିତରେ ଯାଇ ପଶନ୍ତେ ପାବନ
ମଲ୍ଲୁଆଳ ଯୋଦ୍ଧାମାନେ ଦର୍ପେ କଲେ ଧ୍ୱନ ।
ଭୀମ ଠାକୁର ବିଜୟ କରିଥିଲେ ରଥେ
ଘାମୁରେ ଭ୍ରମର ତାଳ ରାଜ୍ୟ ପ୍ରଣପତେ୍ୟ ।
ଅନେକ ବିନୟ ହୋଇ କହଇ ପ୍ରଣମି
ଆହେ କ୍ଷତ୍ରିୟ ସୁନ୍ଦର ରକ୍ଷା କର ସ୍ୱାମି ।
ତା ବାକ୍ୟ ଋଷି ଓହ୍ଲାଇ ଯୁଧିଷ୍ଠି ସାନୁଜ
ଉଠ ଉଠ ବନ୍ଧୁ ବୋଲି ଧରି ବେନଭୁଜ ।
ତୁହି ତ ଯଦୁନାଥଙ୍କ ଶ୍ୱଶୁର ଯେ ଅଟୁ
ତୁ ମୋ ପିତାସମ ମୋର ପାଦେ କମ୍ପା ଖଟୁ
ଲଗ୍ନାଜିତ ବୋଇଲାକ କର ଯୋଡ଼ିକରି
ପଶ କଟକ ଠାକୁର ଜଗତାଧିକାରୀ ।
ସୁନ୍ଦର ଦିଶିଲା ରାଜ୍ୟ ମାରୁତି ବୁଲନ୍ତେ
ଜନ ଗହଳେ ଦେଖନ୍ତି ପୂର ଅପ୍ରମିତେ ।
ତାହାର ଗଡ଼ କଞ୍ଚଣ ଭିତର ଜଗତ
ତହିଁ ଯାଇ ବିଜେ କଲେ ପାଣ୍ଡବ ମାରୁତି ।
ଅନେକ ସମ୍ପଦେ ରାଜା ଉତ୍ସବ କରାଇ
ବହୁତ ବିଧିରେ ଅର୍ଘ୍ୟ ଭୀମକୁ ବନ୍ଦାଇ ।
କୋଶଳର ନରନାରୀ ଦେଖିଣ ସାନନ୍ଦ
ଭାଳନ୍ତି ମର୍ତ୍ତ୍ୟ କି ବିଜେ କଲେ ଆସି ଇନ୍ଦ୍ର
ସୂପକାର ରାଇ ଆଜ୍ଞା ଦେଲେକ ନୃପତି
ରନ୍ଧଣା ଯୋଗାଡ଼ କରି ଯାଇଣ ଝଟତି ।
ବେନ ଅଇଭୁତ ସୂପକାରେ ଯେ ବହନ
ରନ୍ଧିଲେ ଅମୃତ ସମ ଯୋଗାଡ଼ ଯେମାନ ।
ମାତବଧାନ ଷାଠିଏ ପଉଟି ଯେ ଅନ୍ନ
ସୂପକାରମାନେ ତାହା କଲେକ ପକ୍ୱାନ୍ନ ।
ଆଜ୍ଞା କି ପାଉଣ୍ଡ ଭୀମ ମଣୋହିରେ ବଟଜ
ମହାସମ୍ଭବରେ ତହିଁ ଶଙ୍ଖ ଘଣ୍ଟା ବାଜେ ।
ମଣୋହି ସାରିଣ ଭୀମ କଲେ ଆଚମନ
ବିଜୟ ମାରୁତି ଚନ୍ଦ୍ରଶାଳା ଯେ ଭୁବନ ।

ଚକ୍ଷୁଃସମ ଭୀମ ଅଙ୍ଗେ କଞ୍ଚଲେ ଲେପନ
ଦିବ୍ୟ ଅଳଙ୍କାର ଦିଶେ ପବନ ନନ୍ଦନ ।
ଭଞ୍ଜିଣ ଭୃପତି ଦେଲେ ସକଳ ଧନଇ
ଏ ସମସ୍ତେ ନଗ୍ନାଜିତେ ଜଣାଇ ପାବନ ।
ଅକ୍ଷତ ଗୁଆ ଦେଇଣ କଲେ ନିମନ୍ତ୍ରଣ
ଥାଟ ଘେନ ଚଳ ଇନ୍ଦ୍ରପ୍ରସ୍ଥେ ଏହିକ୍ଷଣ ।
ଭୀମବାକ୍ୟେ ନଗ୍ନାଜିତ ଘେନ ତାର ବଳ
ସେକ୍ଷଣି ଇନ୍ଦ୍ରପ୍ରସ୍ଥକୁ କଲା ଅନୁକୂଳ ।
ନଗ୍ନାଜିତକୁ ଚଳାଇ ବୀର ବୃକୋଦର
ସୈନ୍ୟସହ କୋଶଳରୁ ହୋଇଲେ ବାହାର ।
ଜୟ ହେ ଜାନକୀକାନ୍ତ ଜୟ ରାମଚନ୍ଦ୍ର
ବାଳିକି ମାରି ସୁଗ୍ରୀବେ କଲ କପି ଇନ୍ଦ୍ର ।
ସମୁଦ୍ରରେ ସେତୁବନ୍ଧ ବନ୍ଧାଇଲେ ହେଳେ
ସ୍ୱଦଳ ସଙ୍ଗତେ ଝଡ଼େ ଜଳ ବାନ୍ଧିବନେ ।
ସିନ୍ଧୁ କୂଳରେ ରହିଲେ ଜାନକୀ ରମଣ
ତହିଁ ଶରଣ ପଶିଲେ ଯାଇ ବିଭୀଷଣ ।
ସୀତା ଚୋର ରାବଣର ବଂଶ ବିନାଶିଲ
ବିଭୀଷଣଙ୍କୁ ଲଙ୍କାରେ ରାଜପଟ୍ଟ ଦେଲ ।
ଜାନକୀଙ୍କି ଉଦ୍ଧାରିଣ ଆସି ନିଜ ପୁର
ଅଭିଷେକ ହୋଇଲେ ସେ ଅଯୋଧ୍ୟାନଗର ।
ସେ ଦାଶରଥି ପଙ୍କଜ ଚରଣେ ଶରଣ
ଶାରଳାଦାସ କରଇ ଭାରତ ରଚନ ।

---

## କର୍ଣ୍ଣକେଶରୀ ଓ ରାମଚନ୍ଦ୍ର ରାଜାଙ୍କ ନିମନ୍ତ୍ରଣ

ଏଥି ଅନନ୍ତରେ ପୁଣି ମନୁ ଦଣ୍ଡଧର
ବିନୟରେ ଅଗସ୍ତିଙ୍କି ଯୋଡ଼ି ଦେଇକର ।
ପୁଛାକଲେ କହ ମୁନି କୋଶଳରୁ ଭୀମ
ଯାଇ ପୁଣି କେଉଁଠାରେ କଲେ କେଉଁ କର୍ମ ।
ଅଗସ୍ତି କହିଲେ ଯାହା ପୁଛାକଲ ଶୁଣ
ନଗ୍ନାଜିତକୁ ଚଳାଇ ହିଡ଼ିମ୍ବୀରମଣ ।
କୋଶଳ ଦେଶରୁ ନିଜ ଥାଟକୁ ଚଳାଇ
କନ୍ୟକା ଦେଶରେ ଭୀମ ପ୍ରବେଶିଲେ ଯାଇଁ
ମଳୟ ବସନ୍ତ ବୋଲି ଏକ ପରବତ
ଦଣ୍ଡ ଘେନ ଭୀମସେନ ତହିଁ ଉପସ୍ଥିତ ।
ପାଟଭୁର ପାଖଡୋଳ ଯେ ଯାର କାହାଳୀ
ଘୋର ବାଦ୍ୟ ଶବଦରେ ସମୁଦ୍ର ଉଚ୍ଛୁଳ ।
କଣ୍ଟସୁଭଗ୍ନୀ ବୋଲିଣ ଏକ ନଗ୍ରୀ ଗୋଟି
ସ୍ୱର୍ଣ୍ଣଭଦ୍ରାଠାରୁ ହେଉ ଆସୁଅଛି ଫୁଟି ।
ସେ ନଗ୍ରୀ ଉତ୍ତରଖଣ୍ଡର ସେ କନ୍ୟକା ଦେଶ
କର୍ଣ୍ଣକେଶରୀ ବୋଲିଣ ତହିଁ ନରେଶ ।
ବଡ଼ାଇ ପ୍ରତାପୀ ରାଜା ସେ କର୍ଣ୍ଣକେଶରୀ
ଶୃଙ୍ଗଟ ପାଣିଦଣ୍ଡ ପରେ ଅଧିକାରୀ ।
ଚଉଦକ୍ଷୌହିଣୀ ତାର ଅଛି ସୈନ୍ୟବଳ
ଅନୁକ୍ଷଣେ ସାଜିଥାଏ ସୈନ୍ୟ ସେ ଭୂପାଳ ।
ଗର୍ଜନେ ନିଶାଣ ଉଠେ ନାନାବାଦ୍ୟ ବାଜେ
ସଦା ସମ୍ଭ୍ରମେ କନ୍ୟକା ରାଜ୍ୟେ ଭୀମ ବିଜେ ।
ଆସିଛି ସେ ବଡ ରାଜା ଦେଖି ବୃକୋଦରେ
କାହିଁର ଏ ଦଳ ବୋଲି ରାଜାଙ୍କୁ ପଚାରେ ।
କରପତ୍ର ଯୋଡ଼ିକରି କହିଲେ ମୁଦେନ୍ଦ୍ର
କେଉଁଣ ଦେଶର ରାଜା ଆସେ ଦଣ୍ଡବାନ୍ଧି ।
ସଙ୍ଗେ ରଥ ଗଜ ଅଶ୍ୱ ଆବର ପଦାତି
କହୁଛି ଅନନ୍ତ ସେନ୍ୟ ଅଛି ମହାରଥୀ ।
ମହା ପ୍ରତାପୀ ସେ ତାର ଅପାର ପ୍ରତିଜ୍ଞା
ଏ ବିଧି ରାଜା ତାଙ୍କୁ ନ କରନ୍ତି ଅବଜ୍ଞା ।
ଏହା ଶୁଣି କୋପକଲା ସେ କର୍ଣ୍ଣକେଶରୀ
ଯୋଦ୍ଧାଙ୍କୁ ବୋଇଲେ ଆବର ତାକୁ ଆଣ ଧରି ।
ରାଜାର ଆଜ୍ଞାରେ ଗଲା ଶୂରସେନ ମନ୍ତ୍ରୀ
ସାଜିଲା ରଥ କରି ଶଲକ୍ଷ ତାର ରଥୀ ।
ମହାମଦମତ୍ତ ଦନ୍ତା ପାଞ୍ଚକୋଟି ନାଗ
ଗୃହଳକ୍ଷ ଖଙ୍ଗ ସାଜିଲା ସେନ୍ଧାର ତୁରଙ୍ଗ ।
ପୁଣି ବଶାଶତ ଖଙ୍ଗ ସାଜିଣ ହଇନ
ବାହାରିଲା ଶୂରସେନ ରାଜା ଆଜ୍ଞା ଘେନ ।
ଭୀମଁ ଅନନ୍ତ ମଳୟ ବସନ୍ତ ପର୍ବତେ
କଣ୍ଡ ଘେନ ଶୂରସେନ ଗମିଲା ତ୍ୱରିତେ ।
ଗିରିବର ଶିଖରକୁ ଉଠନ୍ତେ ସେ ଯାଇଁ
କରରେ କୁନ୍ତ ଖଡ଼ଗ ମୁଷଳ ବୁଲାଇ ।
ଡାକରେ କର୍ମି ଉଠଇ ଗିରି ବନ ଘୋର
ଡାକ ଶୁଣନ୍ତି ଦିଙ୍ଗରେ କରି ବେ ରେକାର ।
କେଉଁଣ ଦେଶର ତୁମ୍ଭେ ଅଟୁସି ହୋ ରାୟ
ସ୍ୱହସ୍ତେ ଲେଡ଼ିଲୁ କିପା ମରଣ ଉପାୟ ।

ଏହା ବାରତାରେ କମ୍ପା ପଶିଲ ଏ ରାଜ୍ୟ
ନ ଜାଣେ କି ନିମନ୍ତ କର୍ଣ୍ଣକେଶରୀ ସେ ରାଜା ।
ରାଜାଧିରାଜେଶ୍ୱର ସେ କକ୍ଷା ଜଗତ୍ରଠି
ପଶ୍ଚିମ ଦିଗେ ଚମକ ପଡେ ଯା ନା ଗୋଟି ।
ତେଣାନରେ ବାରତା ଶ ନ ଦେଲେ କୁମ୍ଭଙ୍କ
ମଗଧେଶ ନ ମାରନ୍ତ ପଶି ଏ ରାଜ୍ୟକୁ ।
ପ୍ରାଣେ ଆଶାଥିଲେ ଭୀମ ପଣରେ ଶରଣ
ହୋଇଲେ ତୋ ପ୍ରାଣଗୋଟି ରଖି ଅକାରଣ ।
ସୃଷ୍ଟି ପୃଷ୍ଠି ପ୍ରତିଜ୍ଞା ସେ ଧର୍ମ ସୁତ କରେ
ପୃଥିବୀ କମ୍ପରେ ହସ୍ତୀ ଗର୍ଜି ଶବଦରେ ।
ଶୁଣି ଭୀମ ଚଣ୍ଡପାପେ ଦୃପ୍ତଭଲ ଆଖି
କେଶରୀ ଉଠିଲା କି ସେ ଗଜବଳ ଦେଖି ।
ଫଣା ବସ୍ତାରି ଯେମନେ ଉରଜନ୍ତ ଅନ୍ତ
ଖଗ ଦେଖିଣ ପଶନ୍ତି ସେହେଁ ତଳେ ଯାଇଁ ।
ତେସନ ଏକା ପାଣ୍ଡବ ଉଠେ ରଣରାଜ
ଘେନିଲେ କର୍ଣ୍ଣକେଶରୀ ଥାଟ ସଙ୍ଗେ ସଜ ।
କାଳଦଣ୍ଡ ଯେନ ଯଥା ଉଠେ ନାଶକର
ସେ ରୂପେ ଭୀମସେନର ତେଜ ପ୍ରଖର ।
ଗଦା ବୁଲନ୍ତେ ପୃଥିବୀ ଉଲ୍‌କାପାତ ପ୍ରାୟେ ।
ଦେଖି ସୈନ୍ୟ ପଳାଇଲେ ଭୟ ମହାଭୟେ ।
ପକାନ୍ତେ ଭୀମ ତାହାଙ୍କୁ ଅନେକ ପ୍ରହାର
ରଥ ଗଜ ଅଶ୍ୱ ବହୁ ପଡ଼ି ହେଲେ ଚୂର ।
କ୍ଷଣେ ମନ୍ଥଇ ପାଣ୍ଡବ ବୀରବର ଏକା
ପଶିଲେ ସଂଗ୍ରାମ ମଧ୍ୟେ ସେ ବୀର ନିଃଶଙ୍କା ।
ଲେଉଟି ଯୋଦ୍ଧାଏ ଶର ବର୍ଷନ୍ତେ ପଛରୁ
ସେ ଶର ସବୁ ଆସିବା ଦେଖିଣ ଦୂରରୁ ।
ବାମପଦଙ୍କ ପାତଦଏ ଭୀମ ମହ ବଳୀ
ଯୋଦ୍ଧାଙ୍କ ଅସ୍ତ୍ର ନ ଭେଦେ ବାଜ ହୁଏ ଧୂଳି ।
ଘୋଡ଼ାଇ ଭୀମ ମାଇଲେ ତାଙ୍କୁ ବଜ୍ରମୁଠ
ଦୁର୍ବାର ସୈନ୍ୟ ପଡନ୍ତ ପାଇ ସେ ଆଘାତ ।
ଶସ୍ତ୍ର ଭେଦ ନ ହୁଅଇ ଯେଉଁ ଭୀମ କାୟେ
ଯାହାର କୋପକୁ ଯମ କରଇଟି ଭୟେ ।
ମାନସ ନାହକେ ତାର ସାକ୍ଷାତେ କେ ରହୁ
ବୃକୋଦର ମୂର୍ତ୍ତି ଦେଖି କାର ଭୟ ନୋହୁ ।
ଅନେକ ସୈନ୍ୟଙ୍କ ପ୍ରାଣ ନେଲେକ ଘୋଡ଼ାଇ
ବେନ ଯୋଜନ ପର୍ଯ୍ୟନ୍ତ ଠାବ କାହିଁ ନାହିଁ ।

ସୈନ୍ୟଙ୍କ ମରଣ ଦେଖି ମନ୍ତ୍ରୀ ଭୟ ପାଇ
ତଷ୍ଟନଖ ମୁଖେ ଭରି ଶରଣ ମାଗଇ ।
ଶରଣ ରଖ ବୋଲଇଣ ଫୁକାରେ ଅମାତେ
ଧାଇଁ ତାର କେଶ ଭୀମ ଧରି ବାମହସ୍ତେ ।
ଦକ୍ଷିଣ କରେ ଖଡ଼ଗେ ତାକୁ ଦ୍ୟନ୍ତେ ମାରି
ପଡ଼ିଲା ସେ ମନ୍ତ୍ରିବର ରକତ ଉଦ୍‌ଗାରି ।
ରାଜାର ପାଶେ କହିଲେ ଯାଇଁ ଚରଗଣ
ଦଣ୍ଡ ସେନ ପଡ଼ିଲେକ ମନ୍ତ୍ରି କରି ରଣ ।
ଶୁଣି ବିରସ ହୋଇଲେ କେଶରୀ ନୃପତି
ହା ହା ମନ୍ତ୍ରୀ ବୋଲି ରାଜା ପଡ଼ିଲେକ କ୍ଷିତି ।
ରାଜାର ଶୋକ ଦେଖିଣ ତା ଜ୍ୟେଷ୍ଠ ନନ୍ଦନ
ତାହାର ନାମ ଅଟଇ ଜାଣ ରୁକ୍ମପଣ୍ଡ ।
ରାଜାକୁ ସମ୍ଭାଷି କରେ ପ୍ରତିଜ୍ଞା ସେ ବାଳ
ମୋହର ଥାନ୍ତେ ହେ ପିତା କପାଁ । ତୁମ୍ଭେ ଭାଳ
ସାଷ୍ଟାମ ହୋଇଣ ଏବେ ବସ ନୃପମଣି
ଆଜ୍ଞା ଦିଅ ମୋତେ ଆସେ ସେ ବୀରକୁ ଜିଣି ।
ବହୁ ପ୍ରତିଜ୍ଞା କରନ୍ତେ ଆଜ୍ଞାଦେଲେ ରାଜା
ଆଜ୍ଞା ଦିଅନ୍ତେ କୁମର ସୈନ୍ୟ କଲା ସଜ୍ଜା ।
ଦଣ୍ଡ ସଜାଇ ସେ କର୍ଣ୍ଣ କେଶରୀର ସୁତ
ରେ ରେ କାର କରି ପାଶେ ଭୀମସେନ ଥାଟ
ରାଜାର ସଇନ୍ୟ ବେଗେ ହୋଇଲେ ବାହାର
ବେଢ଼ନଥାଟ ଭେଟ ହେଲେ ନଗର ଭିତର ।
ଭୀମ କୃତାନ୍ତକ ମନ୍ତ୍ରୀ କହେ ସେ ବାଳକୁ
ଏତେ ସୈନ୍ୟ ମସାଇଣ ଆସୁ ମରିବାକୁ ।
କେଶାଉରେ କି ବାରତା ନ କହିଲେ ତୋତେ
ଭୀମ ପଶ୍ଚିମ ବରଣେ ଆସେ ଯଜ୍ଞ ଅର୍ଥେ ।
ଜରକୁ ବଧିଲ କରି ସେ ମାଲ ସଂଗ୍ରାମ
ଯମ ଉପରେ ହୋଇଏ ସେ ଦିଗ୍ୱିଜୟ ଯମ ।
ବାହୁଡ଼ କହ ତୋହର ପିତାର ଅଗ୍ରତେ
ଜ୍ଞାନ ଥାଉଁ ଥାଉଁ ନାଶ ଯିବରେ କେମନ୍ତେ ।
ତଥ୍ୟ ବାରତା ପାଇଣ ଗଲା ରୁକ୍ମପଣ୍ଡ
ପିତାର ସମ୍ମୁଖେ ବୋଲେ କରି ଦରଶନ ।
ହେ ପିତା ଆସନ ଗୋଟି ବେଗେ ତ୍ୟାଗକରି
ଚାଲ ଭୀମ ଠାକୁରଙ୍କୁ ଦରଶନ କରି ।
ଜରା ବଧିଲେ ସଂସାର ଜନଙ୍କର ହିତେ
ପଶ୍ଚିମ ରାଜା କରନ୍ତୁ ଯଜ୍ଞର ନିମନ୍ତେ ।

ଭକତ ବତ୍ସଳ ନାଥ ଶରଣ ପଞ୍ଜର
କାଳ ଦଣ୍ଡଧର କୃଷ୍ଣ ସାହା ଯାହାଙ୍କର ।
ସ୍ବଳଶସ୍ତ୍ର ରାଜାଙ୍କୁ ଅଇଲେଣି ସାଧି
ପାଣ୍ଡବଙ୍କ ତୁଲେ ଆମ୍ଭେ କ ହେବା ବିରୋଧି ।
ପଶ୍ଚିମ ଦିଗେ ଜଗତ୍ତୁଁ ନାହିଁ ବଳବନ୍ତ ।
ଏ ତାକୁ ସାଧିଲ ସ୍ବାକୁ କେ ଅଛି ଶକତା ।
ପ୍ରଭୁର ବଚନ ଶୁଣି ସେ କର୍ଣ୍ଣକେଶରୀ
ଜଟିଳକ ଆସ୍ଥାନକୁ ବେଗେ ତ୍ୟାଗକରି ।
ସଙ୍ଗରେ ଅନନ୍ତ ତାର ସଚଶ ଗ୍ରାରଯା
ଶରଣ ପୁକାରି କହ୍ନ ଯାଏ ମହାରାଜା ।
ଗଳଦେଶରେ କୁଠାର ଦନ୍ତରେ ତୃଣ
ଧନସ୍ୟେବୋଲେ ମୁଁ ଜନ୍ମେ ଜନ୍ମେ ତୋ ଶରଣ
ଆନନ୍ଦରେ ଅଶ୍ରୁଜଳ ବହେ ଦେହନନ୍ଦ
ପୁଣ ପୁଣ ପ୍ରଣମେ ସେ ଭୀମ ପଦାରତ ।
ମରୁତ ସାରଥି ଦେଖି କହଇ ବାରତା
ପଶ୍ଚିମଦିଗ ରାଜାଙ୍କ ମଧ୍ୟେ ଏ ମହତା ।
ଏ ରାଜା ଜାଣି ନ ପାରି ତୋହର ପ୍ରତିଜ୍ଞା
ସେ ହେତୁ କରିଲା ଏଣୁ ତୋ ବାକ୍ୟ ଅବଜ୍ଞା ।
ମରୁତ ସାରଥି ବାକ୍ୟେ ଭୀମ ହୋଇ ଶାନ୍ତ
ବୋଲେ ଉଠ ହେ ରାଜନ ମନୁ ଗଲା ଭ୍ରାନ୍ତ ।
ଆଜ୍ଞା ପ୍ରମାଣେ ଉଠନ୍ତ ସେହି ନରମଣି
ସନ୍ଧିଧିକୁ ଆଶ୍ୱାସିଣ ତାକୁ ଡାକଆଣି ।
ଅକ୍ଷତ ଗୁଆ ତାହାଙ୍କୁ ଦେଲେ ବୃକୋଦର
ବୋଇଲା ଏକ୍ଷଣି କୃଷ୍ଣ ସସୈନ୍ୟେ ଦ.ହାର ।
ଯାଗହେତୁ ନମନ୍ତି ମୁଁ ଅଇଲି ରାଜାଙ୍କୁ
ଆଟ ସୈନ୍ୟ ଘେନି ଚଳ ତୁ ଇନ୍ଦ୍ରପ୍ରସ୍ଥକୁ ।
ଦେଖା ହରିଣୀ ଧନ ଘେନି ସେହିକ୍ଷଣି
ଆଜ୍ଞା ପ୍ରମାଣେ ଚଳିଲା ସେହି ନୃପମଣି ।
ତାକୁ ଚଳାଇ ଚଳଲେ ପାଣ୍ଡବେ ସଙ୍ଗରେ
ଯାଇ ପ୍ରବେଶ ହୋଇଲେ କର୍ଣ୍ଣାଟ ଦେଶରେ
ସେ ଦେଶରେ ରାମଚନ୍ଦ୍ର ନାମେ ନରପତି
ପ୍ରତାପୀ ରାଜା ସେ ବସ୍ତୁ ବଂଶେ ଅଧିପତି ।
ମାନମା ନୃପାକୂଳରେ କଟକ ତାହାର
ବଡ଼ ଧର୍ମୀ ସେହି ରାଜା ପଶ୍ଚିମ ଦିଗର ।
ସେ ରାଜାଙ୍କୁ ଛନଶତ ଖଟେ ପାରିବଣ୍ଡ
ବେନଶତ ଯୂଣ ମାଡ଼ବସେ ସ...

ଭୀମ ବଳେ ସେ ମାନମା ସରିତର କଳେ
ତହିଁ ପଶି ସ୍ନାନକଲେ ଆଣ୍ଟ କର ବେଳେ ।
ଘୋର ତ୍ରଭ ଶବ୍ଦ ଶୁଭେ ବଡ଼ଇ ଗହଳ
ବ୍ରହ୍ମାଣ୍ଡ କମ୍ପେ ମେଦିନୀ ହୁଏ ଟଳ ଟଳ ।
ସମଦଣ୍ଡ ଘେନି ରାଜା ଆସ୍ଥାନରେ ବଜେ
ସେ ଶବ୍ଦ ଶୁଣି ମନ୍ତ୍ରୀକୁ ପୁଚ୍ଛେ ଏ କ ବାଜେ ।
ଶୁଣିଣ ମନ୍ତ୍ରୀ କହଇ ଶୁଣ ହେ ରାଜନ
କ୍ଷନିବର ସ୍ୱନ୍ଦର ଯେ ବୀର ଭୀମସେନ ।
ଜରାସନ୍ଧକୁ ଯେ କଲା ଜୀବନେ ନିଧନ
ପଶ୍ଚିମେ ସେ ଆସିଛନ୍ତି ରାଜା ନିମନ୍ତ୍ରିଣ ।
ରାଜସୂୟ ଯାଗସ୍ଥାନେ ଯିବେ ଲକ୍ଷେ ରାଜା
ତେବଙ୍କ ଘେନିଣ ଧନେ କରିବେ ଧଡ଼ୋଜା ।
ଅନେକ ଉତ୍ସବ ହେବ ଇନ୍ଦ୍ରପ୍ରସ୍ଥେ ହେବ
ଯାଦବଂଶ ଘେନି ତହିଁ ଯିବ ବାସୁଦେବ ।
ସୁପଣ୍ଡିତ ମନ୍ତ୍ରିମଣି ବୁଝାଇ କହିଲା
ଶୁଣିକରି ରାମରାଜା ସନ୍ତୁଷ୍ଟ ହୋଇଲା ।
ପାଟଛତ୍ର ଘେନି ବାଜେକଲା ରାମରାଜା
ଗୁମର ହସ୍ତରେ ଗଲେ ତା ବେନି ହାରଯା ।
ଭୀମସେନଙ୍କୁ ଦେଖିଲା ରାଜା ଖଣ୍ଡେଦୂରୁ
ଦେହୁଁ ଖାଲ ଦକ୍ଷେ ନମସ୍କାର କରୁ କରୁ ।
ବନସ୍ୱସ୍ତେ ଅନେକ ସ୍ତୁତି ସେ କରିଲା
ସସ୍ତ୍ର ଦଣ୍ଡବତ କରି ଚରଣେ ଶୁଭିଲା
ପାଦେ ପଡ଼ି ନଉଚ୍ଛଳ କରେ ନୃପମଣି
କରେ ଗୁମର ତାଳନ୍ତି ରାଜା ପାଟରାଣୀ ।
ସେ ରାମରାଜା ଭକତି ଦେଖିଣ ପାବନ
ପ୍ରଶଂସା କରି କହିଲେ ମହିମା ତୋ ଧନ ।
ଢଗମ୍ବର ରାଜା ହୋଇ ପାରିଲୁ ତୁ ଚହ୍ନି
ଭକତ ଗ୍ରବରେ ବଶକଲୁ ମୋତେ ପୁଣି
ନ ଜାଣି ନାଶ ହୋଇଲେ ଅନେକ ନୃପତି
କପଟ ଚହ୍ନିଲୁ ମୋତେ କରୁ ଏତେ ଭକ୍ତି ।
ଏହା ଶୁଣି ବୋଇଲକ କର୍ଣ୍ଣାଟ ଈଶ୍ୱର
ଜଗପୂରେ କରିଥିଲ ଆମ୍ଭଙ୍କୁ ଉଦ୍ଧାର ।
ଜଗ ହେଇ ଯାଇଥିଲା ଆମ୍ଭଙ୍କୁ ଯେ ବାନ୍ଧ
ଶିକୁଳି ପିନ୍ଧାଇ ପୁରେ କରିଥିଲା ବନ୍ଦୀ ।
ସଂସାର ଜନଙ୍କ ହିତେ ଜଗ ଦର୍ପ ଧ୍ୱଂସି
ତୁମ୍ଭେ ଉଦ୍ଧାରିଲ କାଟି ଯମ କାଳଫାଶି ।

ସେ ଉପକାର କି ମୋର ପାସୋରିବ ମନ
ସେ ଧନୁ ଚାହିଁଛୁ ତୁମ୍ଭେ କଲ ପ୍ରାଣଦାନ ।
ଅଶ୍ୱମେଧ ଯାଗ ମୁହିଁ କରିଥିଲି ପୂର୍ବେ
ତେଣୁ ତବ ପାଦ ରାଜ୍ୟେ ପଡ଼ିଲିକ ଏବେ ।
ମୋ ରାଜ୍ୟ ଦସ୍ୟୁ ତ ସବୁ ହୋଇଲା ଧ୍ୱଂସନ
ଜୟତେ ଦେଖିଲୁ ଆଜ ଦ୍ୱିଜ ନିରଞ୍ଜନ ।
ଭୀମସେନ ଦରଶନ କଲେ କର୍ଣ୍ଣାଟମଣ୍ଡଳେ
ରାମେଶ୍ୱର ଲିଙ୍ଗ ଦେଖି ମାନମାର କଲେ ।
କରପଦ୍ମ ଯୋଡ଼ି ବୋଲେ ଶ୍ରୀପତି ନୃପତି
ସୀତାଙ୍କର ସ ନଭଙ୍ଗ ହୋଇଥିଲା ଏଥି ।
ଏହା କହି ମାରୁତିଙ୍କ ପୁତେ ଘେନିଗଲା
ଆପଣାର ସିଂହାସନେ ନେଇ ବସାଇଲା ।
ମଣୋହର ସଞ୍ଜା ବେଗେ ହେଲା ନରମଣି
ସ୍ୱମର ଘେନି ଭୀମଙ୍କୁ ଖଟିଲେକ ପୁଣି ।
ଅଇବ୍ରତ ସୂପକ ର ଭୀମ ସଙ୍ଗେ ଥିଲେ
ସେ ନଗରେ ପଶି ବେଗେ ମଣୋହି ରାନ୍ଧିଲେ
ଦୋହର ଯାହାକୁ ହୋଇଅଛନ୍ତି ପ୍ରସନ୍ନ
ନିମିଷକେ ସୂପକାର କରିଲେ ରନ୍ଧନ ।
ଷାଠିଏ ପଉଟି ଅନ୍ନ ଆବର ବ୍ୟଞ୍ଜନ
ଭୋଜନ କରି ତୃପତ ହେଲେ ଭୀମସେନ ।
ମଣୋହି ସାରିଣ ଭୀମ କଲେ ଆଚମନ
ସଇନମାନେ ହରଷେ କରିଲେ ଭୋଜନ ।
ବାଜିଲା ଢୋଲ ଟମକ ଉଡ଼ିଲା ନିଶାଣ
ଶ୍ରୀରାମରାଜାଙ୍କୁ ଭୀମ ଦେଲେ ନିମନ୍ତ୍ରଣ ।
ଯେତେକ ହସ୍ତି ଘୋଡ଼ର ପାରିଦଣ୍ଡ ସୈନ୍ୟ
ଇନ୍ଦ୍ରପ୍ରସ୍ଥେ ଯାଅ ଦେଖା ଦରଶମା ଘେନ ।
ଜୟ ଜୟ ଜଗନ୍ନାଥ ଅଗତିର ଗତି
ଜୟ ଜୟ ନୀଳାଦ୍ରି ବିହାରୀ ଲକ୍ଷ୍ମୀପତି ।
କୃଷ୍ଣ କମଳ ଚରଣେ ରହୁ ମୋର ଆଶ
ଏହି ଭିକ୍ଷା ମାଗେ ସଦା ଶ୍ରୀଶାରଳା ଦାସ ।

---

## ଭୀମଙ୍କର କିରାତ ଓ କାମପାଳ ସଙ୍ଗେ ଯୁଦ୍ଧ ଏବଂ ଜୟଲାଭ ଓ ନିମନ୍ତ୍ରଣ

ଏଥୁଅନନ୍ତରେ ମୁଣି ମନୁ ନରପତି
ଅଗସ୍ତି ମୁନଙ୍କ ପାଦେ କରିଣ ପ୍ରଣତି ।
ପ୍ରଜ୍ଞାକଲେ କର୍ଣ୍ଣାଟରେ ଶ୍ରୀରାମେ ନିମନ୍ତି
ପୁଣି କେଉଁଦେଶେ ଗଲେ ପବନ ସନ୍ତତି ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ରାମରାଜାଙ୍କୁ ବିଦାୟ ମାଗି ବୃକୋଦର ।
ନିମନ୍ତ୍ରଣ ଦେଇ ତହୁଁ ଗଲେ ଭୀମସେନ
ଦଣ୍ଡ ଘେନିଣ ପଶିଲେ ଦସ୍ୟୁ ବାତ ବନ ।
ସେହି ରାଜ୍ୟରେ କିରାତସେନ ଚକ୍ରବର୍ତ୍ତୀ
ଭୀମ ଯାଉନ୍ତେ ଉଠିଲା ହୋଇ କୋପମୂର୍ତ୍ତି ।
ବୋଲେ କି ଦର୍ପ ତୋହର ବସ୍ତ୍ର ବନେ ପଶୁ
ମାନବ ଜନ୍ମ ହୋଇଣ ଏତେକ ଭରସୁ ।
ମରଣ ଇଚ୍ଛି ଅଇଲୁ ଏତେକ ପରାଣୀ
ବୁଝିଲି ମରିବ ସର୍ବେ ଅଇଲୁ ନ ଜାଣି ।
ମାର ମାର ଶବ୍ଦ କରି ଉଠାଇଲେ ସୈନ୍ୟ
ମାରନ୍ତି ପଦାଦି ଆଉ ନାରାଚ ଘେନ ।
ଦିବାର ଶେଷ ଦ୍ୱିପ୍ରହର ହୋଇଅଛି ରାତି
ଯୁଦ୍ଧରେ କିରାତ ଅଟେ ସେ ବନାଧିପତି ।
ଛଳେଛଳେ ବନଚର ସେ ଏ ଯେ ପରଦେଶୀ
ବାୟୁବେଗେ ସେ ଜନ୍ତୁଙ୍କ ପାରେ କୃଟଫାଶି ।
ଗିରିବରେ ଉଠିଣ ଯେ କିରାତ ଭୂଦେବ
ବାନ୍ଧଇ ନାରାଚ ସେହି ମନେ କରି ଗର୍ବ ।
ରଣ ରଙ୍ଗରେ ଧାଉଁଦୋଳା ଶବ୍ଦରେ ଜାଣନ୍ତି
ବହୁ ଶର ଛନ୍ଦି ଭୀମ ସୈନ୍ୟେ ପୀଡ଼ାଦ୍ୟନ୍ତି ।
ରାତ୍ରେ କିରାତ ସୈନ୍ୟଙ୍କୁ ଦେଖିଣ ନ ପାରି
ଭୀମଙ୍କ ସୈନ୍ୟ ଆସନ୍ତି ତହୁଁ ଅପସରି ।
ବନସ୍ତରୁ ନିଜଦଳ ଆସନ୍ତେଣ ଖଜ
ବେଗେ ମାରୁତି ଉଠିଲା ତହୁଁ ଗଜରାଜ ।
ମରୁତ ସାରଥିକୁ ସେ ବୋଇଲା ଏସନ
ଭେଟିବା ମୋହର ରଥ ବାହା କୁ ବହନ ।
ଭୀମଙ୍କୁ ବୁଝାଇଲା ସେ ମରୁତ ସାରଥି
ଯୁଦ୍ଧରେ ଧନୁମାସ ଏ ଅମାବାସ୍ୟା ରାତି ।
ଏ ପର୍ବତେ କିରାତେଣ ମୋତେ ଅଛୁ ଭେଟି
ପର୍ବତ ଉପରେ ଥାଇ ଶର କରେ ବୃଷ୍ଟି ।
ରାତ୍ରରେ କି ଯୁଦ୍ଧ ତୁହ କରିବୁ ପାବନ
ପ୍ରଭାତେ ବସିବୁ ପାଦ୍ଧ ଆଜର ରଜନୀ ।
ତେବେଣେ ନାରାଚ ସନ୍ଧିଣ କିରାତ ରାଜନ
ଭୀମସୈନ୍ୟ ଉପରକୁ କଲା ବରଷଣ ।

ଅଗ୍ରଗାମୀ ହୋଇଥିଲେ ଯେତେ ଭୀମସୈନ୍ୟ
ଶସ୍ତ୍ରଘାତରେ ସମସ୍ତେ ଲଭିଲେ ନିଧନ ।
ରକତ ଧାର ବହିଲା ସବୁଙ୍କର କାୟେ
ଶରୀର ଦିଶେ ମନ୍ଦାର କୁସୁମର ପ୍ରାୟେ ।
ପଳାଇବା ବାଟ ନାହିଁ ହୋଇଲେ ବିମୁଖ
ସେ ଦଣ୍ଡକ ଯୁଗ ପ୍ରାୟେ ମଣିଲେ ସେ ଦୁଃଖ
ଦୁଃଖରେ ସର୍ବେ ଜଣାନ୍ତି ରକ୍ଷାକର ଭୀମ
ତୁମ୍ଭେ ଦେବ ପ୍ରତିଜ୍ଞାରେ ଅଟ ହିତଧାମ ।
ମେରୁ ଆଶ୍ରିତେ ରକ୍ଷଣ ପାଇଲୁ ଏ କଷ୍ଟ
କନାଦୋଷେ ଦଣ୍ଡ ହଏ ରାଜେ ଜେ ପାପିଷ୍ଠ
ସୈନ୍ୟଙ୍କ ବଚନ ଶୁଣି ମରୁତ ସୁତ ଥାଇଥି
ତିମିରନାଶନ ମଣି କାନ୍ତି ତତକ୍ଷଣାନ୍ତ ।
ଭୀମଙ୍କ ହୃଦଦେଶରେ ତାହା ଲମ୍ବାଇଲା
ସେ ମଣିର ତେଜ ବ୍ୟାପି ଅନ୍ଧାର ନାଶିଲା ।
ସେ ବନଯାକ ହୋଇଲା ଯେ ଆଲୋକମୟେ
ଦିବସକାଳରେ ଯେସନେ ସବୁ ଦେଖାଯାଏ ।
ସେପରି ଦିଶନ୍ତେ ଭୀମ ଚୌଦିଗେ ଝମ୍ପିଲେ
କଗଚ ସୈନ୍ୟ ଦିଶିଲେ ଯହିଁ ଲୁଚିଥିଲେ ।
ରଥୁ ଡେଇଁପଡ଼ି ଭୀମ ଗଦାବର ଘେନ
ଧାଇଁଲେ ସେ ବୃକୋଦର କାଳମୂର୍ତ୍ତି ଜାଣି ।
ବୃକୋଦର ମୂର୍ତ୍ତି ଧର ବିକାଶିଲେ କାୟେ
କଗଚ ସୈନ୍ୟ ଦିଶିଲେ ମୃଗପଲ ପ୍ରାୟେ ।,
ଗଦାବର ବୁଲାଇଣ ଧାଇଁ ଭୀମସେନ
ପିଟନ୍ତେ ଚର୍ଣ୍ଣି ଲୋଟିଲେ କଗଚର ସୈନ୍ୟ ।
ପର୍ବତପରି ଦିଶଇ ଭୀମର ଶରୀର
ରଜନୀରେ ଦେଖାଯାନ୍ତି ଯେସନେ ଶଶଧର ।
ଗଗନମଣ୍ଡଳେ ଯାଇ ଲାଗେ ବେଣିବାହୁ
ରୋହିଣୀବଲ୍ଲଭ ଦେଖି ଯେସନେ ଧାଏଁ ରାହୁ ।
ଏକାଳେ ପାଣ୍ଡବେ ଚର୍ଣ୍ଣି କଲେ ରଣ ରଙ୍ଗ
ରକତେ ଜର୍ଜର ହୁଏ କଗଚର ଅଙ୍ଗ ।
ସଂଗ୍ରାମରେ ନିର୍ଭୟ ଯେ ଭୀମ ବୀରମଣି
ଗଜଙ୍କୁ ସେ କଚୁଡ଼ଇ ମୃଗଯୂଥ ଜାଣି ।
କଣ୍ଠ ଗର୍ଜ୍ଜନେ ପଡ଼ନ୍ତି ମହା ମହା ନାଗେ
ସଂଗ୍ରାମେ ପ୍ରହାରେ ମନୁ ଜପରୋଧ ରାଗେ ।
ଏକା ଜଣକେ ମର୍ଦ୍ଦିଲେ କଗଚ ସଇନ
ନାଏ କଗଚେଶ୍ୱର ସବୁ ଯୋଦ୍ଧା ଘେନ ।

କୋପେ ବନର ପର୍ବତ ପଳାଇଲା ରାଜ
କଗଚ ସୈନ୍ୟଙ୍କୁ ଭୀମ ଧାଏଁ ଗଜରାଜ ।
ରଥ ଗଜ ଅଶ୍ୱ ସୈନ୍ୟ କେହି ନାହିଁ ସାହା
ଏକା ଘୋଡ଼ାଇ ପିଟଇ ହିଡ଼ମ୍ବିକାନାହା ।
ସହସ୍ର ଯୋଦ୍ଧାଙ୍କୁ ଘେନି ପଳାଇ କଗଚ
କାଉଁଶୀ ଦେଶରେ ଯାଇଁ ହେଲା ଉପସ୍ଥିତ ।
କାଉଁଶୀ ଦେଶର ରାଜା ନାମ କାମପାଳ
ତାଙ୍କୁ ଶରଣ ମାଗଇ କଗଚ ଭୂପାଳ ।
ଆହେ କାମପାଳ ତୁମ୍ଭେ ରକ୍ଷାକର ମୋତେ
ଦଣ୍ଡଭୟେ ପଳାଇ ମୁଁ ଅଇଲି ନୃପତେ ।
ଦଶଲକ୍ଷ ରଥୀ ପାଞ୍ଚଲକ୍ଷ ମଲେ ନାଗ
କ୍ଷଉଣୀ ପଦାତି ନବମର୍ଦ୍ଦିତ ତୁରଙ୍ଗ ।
ଏତେ ସୈନ୍ୟ ମରଇଲା ମୂର୍ଖ ଅକାରଣେ
କେଉଁଠୁ ଆସିଣ ନାଶ କଲା ଯୋଦ୍ଧା ଜଣେ ।
କାମପାଳ ବୋଇଲା ତୁ ରହସି ନିଶ୍ଚିନ୍ତେ
କେ ତୋହର ଶତ୍ରୁ ତାକୁ ଦେଖେ ମୁହିଁ ନେତେ
ଏଥୁଅନ୍ତେ ସେ ପାଣ୍ଡବ କାଳଦଣ୍ଡ ପାଣି
କାଉଁଶୀ ଦେଶେ ପ୍ରବେଶ ହେଲେ ସେହିକ୍ଷଣି ।
ରଥ ଗଜ ଅଶ୍ୱ କିଛି ସଙ୍ଗେ ନାହିଁ ସାହା
ମନ୍ଦର ପର୍ବତ ପରି ଦିଶେ ଭୀମ କାୟା ।
ଧାଇଁ ମାରୁତି ପଶିଲା କଟକ ଭିତରେ
କାଳଚନ୍ଦ୍ର ଆଖି ଦେଖି ପଳାଇଣ ଡରେ ।
କହିଲେ ଡାକରେ ଶୁଣ ନୃପ କାମପାଳ
କାଳଦେବ ବିଜେକଲା ତୋ ରାଜ୍ୟ ସମ୍ଭାଳ ।
ଦେଶାନ୍ତର ମୁଖୁ ବାର୍ତ୍ତା ପାଇ ନରନାଥ
ବିଜେକଲା ବେଗେ ସାଜ ଲୌହମୟ ରଥ ।
ସହସ୍ରେ ଶାର୍ଦ୍ଦୂଳ ତାର ରଥେ ଯୋଚ୍ଛି ଅଛି
ହରିଙ୍କ ଘେନଣ ପୃଷ୍ଠେ ଖଗ କି ଉଡ଼ୁଛି ।
ତେସନେ ଶୋଭେ କାମପାଳ ନରପତି
ବିଜେକଲା ଘେନି ତେନ ମହାଭୂତ ରଥୀ ।
ସମସ୍ତଙ୍କ ରଥେ ଯୋଚ୍ଛି ହୋଇଛି ଶାର୍ଦ୍ଦୂଳ
ଏକମୁଖ ହୋଇ ସବୁ ଉଠିଲେକ ବଳ
ଚଢ଼ି ଯାନ୍ତି ସହସ୍ରେକ ଯୋଦ୍ଧା ମତ୍ତହସ୍ତୀ
କଗଚେଶ ଯାଏ କାମପାଳ ପଛକତି
ସ୍ୱରଶତ ପାଶଦଣ୍ଡ କାମପାଳ ତୁଲେ
ବାର କ୍ଷଉଣୀ ପଦାତି ଭୀମ ଜଗାଳିଲେ ।

ବନସ୍ତର ଭିତରେ ସେ ସଇନ ଗହନ
ତାଙ୍କର ସୈନ୍ୟ ବଅନ୍ତ ଯେହ୍ନେ ବନ୍ୟମାନ
ସେ କାମପାଳ ସଇନ ବେଢ଼ି ଣ ଭୀମଙ୍କୁ
ନକଟେ ଶର ବନ୍ଧନ୍ତେ ଭୀମ ଉପରକୁ ।
କେ ସସ୍ର କେ ଦ୍ୱିସହସ୍ର ବନ୍ଧେ ଖେଡ଼ାବାଣ
ଜ୍ୱାଳାବଳ ଶର ମାରି କଲେ ଘୋରରଣ ।
ଗୁରୁତର ଯୁଦ୍ଧ ଦେଖି ପାଣ୍ଡବ ତରୁଣ
ଚନ୍ତ ତୁଳସୀବଲ୍ଲଭ ବୋଲେ ତୁମ୍ଭେ ଶୁଣ ।
ହେ ଦେବ ତୁମ୍ଭେ ଯେ ଆଜ୍ଞାମୋତେଥିଲ ଦେଇ
ତାହା ମୁଁ ଭ୍ରଷ୍ଟ କରୁଛୁ ମୋର ଦୋଷ ନାହିଁ
ସ୍ୱଜୂସିଯାଗ ପଛେ ନ କରନ୍ତୁ ଠାକୁର
ପଣ୍ଡୁ ବ୍ରହ୍ମହତ୍ୟା ଦୋଷ ନୋହୁ ପଛେ ପାର
ନ ରଖିବ ମାରିବ ମୁଁ ଆଜ ରାଜାଗଣ
ଆଦ୍ୟନ୍ତ କଥାକୁ ସାକ୍ଷୀ ଥାଅ ନାରାୟଣ ।
ନାରାୟଣ ସାକ୍ଷୀ ରଖି କାଳରୂପୀ ଭୀମ
ରେ ରେକାର ଶବ୍ଦ କରି କଲେ ସଗ୍ରାମ ।
ଧଇଲକ ବୃକୋଦର ମୂର୍ତ୍ତି ବଳବନ୍ତା
ଗଗନଶିଖରେ ଯାଇ ଲାଗେ ତାର ମଥା ।
ପ୍ରତ୍ୟକ୍ଷ ଶମନଦେବ ପବନ ସନ୍ତତ
ଶତସିଂହ ବଳ ଯୋଗୁଁ କାଳେବର ମୂର୍ତ୍ତି ।
ଶୂଳ ବଜ୍ର ବ୍ରହ୍ମଶକ୍ତି ତାର ନାହିଁ ଭୟ
ବଜ୍ରେ ନିର୍ମାଣ ହୋଇଛି ଯେଉଁ ତାର କାୟ ।
ମାଡ଼ି ବସିଲେ ଶତେକ ସିଂହ ଯାର ଅଙ୍ଗ
ତଥିଁକି ତା ଭୟ ନାହିଁ ଶରୀର ଅଭଙ୍ଗ ।
ବାମଅଙ୍ଗ ଆଉଁଷିଲେ ପ୍ରଚଣ୍ଡ ପବନ
ବୋଇଲେ ଏ ଅଙ୍ଗ ତୋର ବଜ୍ର ହେଉ ଭୀମ
ଯଦି ମନ୍ଦର ପଡ଼ିବ ତୋର ବାମଅଙ୍ଗ
ତଥିଁ ପଡ଼ିଲେ ଅଙ୍ଗ ନୋହିବ ତୋ ଭଙ୍ଗ ।
ପିତାର ବରରେ ସେହି ସଂଗ୍ରାମେ ଦୁର୍ଜ୍ଜୟ
ଶରଣ ବୋଇଲେ ଯେହ୍ନେ ପେଷ ଯମାଳୟ ।
ସଂଗ୍ରାମ ଦେଖିଲେ ଯେହ୍ନେ ତେଜଇ ଭୋଜନ
ସଂଗ୍ରାମ ଦେଖି ଯେ ତାର ତେଜଇ ମୈଥୁନ ।
କଳକାଳ କୃତାନ୍ତକ ଯାହାର ବାରଧୁ
ହରପ୍ରିୟା ନ ଛୁଡ଼ନ୍ତି ଯେଉଁ ତାର କନ୍ଧୁ ।
ଏ ମହୀର ଭର ସେହୁ ନବାରିବା ଅଥେ
ପଞ୍ଚମର୍ତ୍ତି ସାଜିଅଛି ବିଧାତା ଏ ମର୍ତ୍ତ୍ୟେ ।

ଏସନ ମହିମା ଯାର କହିଲେ ନ ସରି
ରଣେ ଧସାଇ ପଶିଲା ଗଦାବର ଧରି ।
ସଂଗ୍ରାମ ଦେଖିଲେ ଯାର ଉଲ୍ଲସଇ ମନ
ରଣରଙ୍ଗୀ ଯେହ୍ନେ ଥାଟ କରଇ ମନ୍ଥନ ।
ଚେପନ୍ତେ ଯାହାର ପାଦ ଗମେ ତଅଳରେ
ମହାଖେଳା ଦେଖି ଯେହ୍ନେ ପାଣ୍ଡବ ବହରେ ।
ଗଦା ବୁଲାଇଣ ବୀର ପଶିଲେକ ଯାଇ
ରଣଧନୋଳା କରିଲା ସମ୍ମୁଖରେ ରହି ।
ବାଜେ ବଜଘୋଷ ବୀରତୂରି ଯେ ଦାଉଣ୍ଡି
ପ୍ରବେଶି ଯୋଦ୍ଧାଙ୍କୁ ଦେଖି ନାଚନ୍ତି ଖେମୁଣ୍ଡି
ହିଡ଼ିମ୍ବି ବୀର ବଲ୍ଲଭ ଅଟେ ରଣରଙ୍ଗୀ
ପିଟିଲା କାଉଁରିବଳ ମନୁ ତେଜ ଶଙ୍କା ।
ରାଜା ଆଜ୍ଞାରେ ପଳାଇ ନ ଯାନ୍ତି ସଇନ
ଏକ ପଡ଼ନ୍ତେ ଆରେକ ଧାଏଁ ଶସ୍ତ୍ର ଘେନ ।
ଭୀମଙ୍କ ଗଦାଘାତରେ ହେଉଛନ୍ତି ଚୂରି
ହସ୍ତୀ ମାଡ଼ି ପଡ଼ନ୍ତି ଯେ ଯୋଦ୍ଧାରି ଉପରି ।
ମହାବାତେ ଯେଉଁପରି ଭାଙ୍ଗେ ରମ୍ଭାବନ
ତେହ୍ନେ ଲୋଟାଇଲେ ଭୀମ ବହୁତର ସୈନ୍ୟ
ପକ୍ଷ ହେଲା ଗିରି ଯେହ୍ନେ ଆସିକରି ଧାଇଁ
ଯହିଁ ପଡ଼େ ସେଠାବଲେ ସକଳ ନାଶଇ ।
ସେପରି ତଅଇଁ ଛନ୍ତି ବୀର ବୃକୋଦର
ରଥ ଅଶ୍ୱପରେ ପଡ଼ି ହୁଅନ୍ତି ସେ ଚୂର ।
ଦୈତ୍ୟବଳ ଦେଖି ଯେହ୍ନେ ଧାମନ୍ତି ଚାମୁଣ୍ଡା
ସେରୂପେ ଧ୍ୱଂସେ ବଳଙ୍କୁ ଭୀମ ପରଚଣ୍ଡା ।
ଶସ୍ତ୍ର ଘଡ଼ି ନ ଭେଦଇ ଭୀମଙ୍କ ଶରୀରେ
ରଣେ ବିମୁଖ ହୋଇଲେ କାଉଁରୀର ବୀରେ ।
ସୈନ୍ୟଙ୍କ ଦୁର୍ଦ୍ଦଶା ଆଉ ମରିବାର ଦେଖି
କାମପାଳ ପଳାଇଲା ସମର ଉପେକ୍ଷି ।
କହନ୍ତି ମନୁ ରାଜାକୁ ବଣ୍ଣ ମୁନିବର
କାମାକ୍ଷୀ ହୋଇ ଦେବୀ ଯେ କାଉଁରୀ ଦେଶର
ପ୍ରତ୍ୟକ୍ଷରେ ମାତଙ୍ଗୀ ଯେ ଧରେ ବୀରମୂର୍ତ୍ତି
ପ୍ରାତେ କୁମାରୀ ମଧ୍ୟାହ୍ନେ ବୃଦ୍ଧରୂପା ହୋନ୍ତି ।
ସନ୍ଧ୍ୟାକାଳେ ସେ କାମାକ୍ଷୀଦେବୀ କାମସେଣା
ନିଶାକାଳେ ସେ ମୋହିନୀ ଅଟେ ସର୍ବଜଣା ।
ନିଶାରେ ଭ୍ରମି ଚାମୁଣ୍ଡା ରୂପେ ମାହେଶ୍ୱରୀ
ମୋହିନୀ ରୂପେ ସଂସାର ବଶ ସେହୁ କରି ।

କାଳାନ୍ତକ ଯୁଗାନ୍ତକ ଏହୁ ସର୍ବବିଦ୍ୟା
ସ୍ତମ୍ଭନ ମୋହନ ବଶ୍ୟ ଆଦି ମନ୍ତ୍ରସିଦ୍ଧା ।
ଧରଣ ଧାଇଣ ଆଉ ତାଡ଼ଣ ଗୁପତ
ମାୟାମୋହନ ଆଦି ସେ ଜାଣଇ ସମସ୍ତ ।
କାଉଁରର କାମାକ୍ଷୀ ସେ ଦେବୀ ଭଇରବୀ
କାମପାଳ ନୃପତି ସେ ଦେବୀ ପାଦେ ସେବି ।
ଅନାଦି ମାହେଶ୍ୱରୀ ଗୋ ଅଭୟ ଦାୟିନୀ
କାଉଁରୀ ମଣ୍ଡଳର ତୁ ଅଟୁ ଗୋ ମଣ୍ଡନ ।
ଶୀତାଂଶୁମଣ୍ଡଳ ଶୋହେ ଅଭୟା ମାତଙ୍ଗୀ
ବେଦ ମନ୍ତ୍ର ସାଧନୀ ଗୋ ପ୍ରସନ୍ନ ଶୁଭାଙ୍ଗୀ ।
ସତ୍ୟ ତ୍ରେତୟା ଦ୍ୱାପର କଳିହି ଗୋ ପ୍ରସିଦ୍ଧି
ଜଳ ସ୍ଥଳ ଅନନ୍ତ ତୁ ଇଖୁ ଉଦୟ ସାଧି ।
ସିଦ୍ଧ ସୁରଗଣ ତୋତେ କହନ୍ତି ଯେ ଆଶ
ସେମାନଙ୍କୁ ତାର ତାଙ୍କ ଦୁର୍ଗତିକୁ ନାଶ ।
ବାଳୁତରୁପରେ ଦେବୀ ଖେଳ କୁତୂହଳେ
ମୋହିଲୁ ବାଳଖିଲ୍ୟାଙ୍କୁ ନୃତ୍ୟରସ ଖେଳେ ।
ଅଭୟା ମାହେଶ୍ୱରୀ ଗୋ ପ୍ରସନ୍ନେ ସାନନ୍ଦେ
ତୋପାଦେ ଶରଣଗଲି ମୋତେ ଦୁଃଖ ବାଧେ
ଏହି ରୂପେ ବହୁସ୍ତୁତି କରଣ ସେ ରାୟେ
କାଉଁରୀ କାମାକ୍ଷା ପାଦେ ଜଣାଏ ବିନୟେ ।
ରାଜାର କଷ୍ଟ ଦେଖିଣ ବଜେ କାତ୍ୟାୟନୀ
ବୋଇଲେ କି ନିମନ୍ତେ ତୁ ସେବୁ ନରମଣି ।
ରାଜା ବୋଇଲେ ତୋ ପ୍ରସନ୍ନେ କାହିଁନାହିଁ ଆଶ
ଅତୋଷେ ଯାହାକୁ ମୁହିଁ ନ କରେ ବିନାଶ
ତୋହର ପ୍ରସନ୍ନେ ରାଜା ନ ଥିଲି ସେ ଭୟ
ତୋହର ପ୍ରସନ୍ନେ ମାତ ମୁହିଁ ସର୍ବଜୟ ।
ଅଭୟା ହିଙ୍ଗୁଳା ମାଗୋ ମୋତେ ରାଖ ତୁହି
ତୋ ଉପରେ ଏ ପୁରେ ପଶି ନ ପାରନ୍ତି କେହି
ସେବ କାଳଚନ୍ଦ୍ର ରଥେ ବୁଲଇ ବ୍ରହ୍ମାଣ୍ଡ
ମାତ୍ର ପଡ଼ିଲେ ଧ୍ୱଂସଇ ସହସ୍ରକ ଖଣ୍ଡ ।
କେଉଁ ରାଜା ଅଦ୍ଭୁତେ ପଶିଲା ମୋ ପୁରେ
ଯୁଦ୍ଧେ ନ ପାରିଲା ଦୟା ନ କଲୁ ମୋ ଠାରେ
ତୋ ପ୍ରସନ୍ନେ ସର୍ବଜୟୀ ଅଭୟା କାମାକ୍ଷୀ
ତୋହର ଆଗେ ଗୋ ମାତ ହେଲି ମୁଁ ନିର୍ମାଥୀ
ଏତେକାଳ ରଖି ଏବେ ତେଜୁ ଗୋସାମଣୀ
ଏହା କହି ନରପତି କାନ୍ଦେ ପୁଣି ପୁଣି ।

ରାଜା ବଚନେ ବୋଲନ୍ତି ଦେବୀ ଶାକମ୍ଭରୀ
ସଂଗ୍ରାମେ ପଶିଲୁ କେପା ମୋତେ ନ ପଚାରି ।
ପଶ୍ଚିମ ଦିଗେ ବିଜୟ କଲା ଭୀମସେନ
ନିମନ୍ତ୍ରି ନେବ ପଞ୍ଚଶ ସହସ୍ର ରାଜନ ।
ଲକ୍ଷେ ନରପତି ଯାର ଚରଣକୁ ବନ୍ଦି
କଣ୍ଠା ତା ତୁଲେ ଅଜ୍ଞାନେ ହେଲୁ ପ୍ରତିଦ୍ୱନ୍ଦୀ ।
ନକେ ଶିବ ଭୟ କରେ ଯାହାର କୋପକୁ
ବନ ରାମ ଥରି ଉଠେ ଶୁଣି ଯା ନାମକୁ ।
ଯାହାର ରଡ଼ି ଶୁଣିଲେ କମ୍ପେ କୁମ୍ଭବୁକୁ
ଉଲ ପ୍ରଣେ ନାଶ କାକୁ ନ କଲା କୁମ୍ଭକୁ ।
କାମପାଳ ବୋଲେ ମୋର ହେଲା ଅପଚୟେ
କେବଣ ବୁଦ୍ଧିରେ ଏବେ ରକ୍ଷା ହେବ ମାୟେ
ତୁମ୍ଭେ ରକ୍ଷା କର ମାତ ମୋତେ ସର୍ବକାଳେ
ମୋ ଦୁଃଖ ଦେଖି ଦୟାଳ ହୁଅ ଏତେବେଳେ
ରାଜାର ବିକଳ ଦେଖି ବୋଇଲେ କାମାକ୍ଷୀ
ଅକାରଣେ ରାଜା ତୁହି ହୋଇଲୁ ନିର୍ମାକ୍ଷୀ ।
ତୋତେ କି ବାର୍ତ୍ତା ନ ଦେଲେ ଆସି ଚରଗଣେ
ଭୀମ ଆସନ୍ତି ପଶ୍ଚିମେ ରାଜାଙ୍କ ବରଣେ ।
ପାଞ୍ଚସହସ୍ର ରାଜାଙ୍କୁ ନେଇ ସେ ନିମନ୍ତ୍ରି
ଅଜ୍ଞାନେ ତାହାର ତୁଲେ ହୋଇଲୁ ଅପ୍ରୀତି ।
ଏବେ ରାଜ୍ୟ ସମର୍ପିବ ତୋତେ ତାର ଚର୍ଚ୍ଚି
ଦୟା କରୁ ତୋହଠାରେ ପାର୍ଥ ଜ୍ୟେଷ୍ଠଭାଇ
ଯାହାକୁ ବନଗ୍ୟେ ଖଟିଛନ୍ତି ନାରାୟଣ
ଭାରତେ ଘରେଇ ମଲ୍ଲ ଯେଉଁ ଭୀମସେନ ।
କାମପାଳ ନୃପତିକୁ ଘେନ ସଙ୍ଗତରେ
ବିଜୟ କରିଲେ ଦେବୀ କେଶରୀ ପୃଷ୍ଠରେ ।
ରାଜାକୁ ସଙ୍ଗରେ ଘେନ ବିଜେକଲେ ମାଏ
ପ୍ରବଳ ନ ପାରଇ ରାଜା ଭୀମସେନ ଭୟେ ।
ରାଜା ବୋଲଇ ଗୋ ଭକ୍ତବତ୍ସଳା ଜନନୀ
ଏ ବିପଦୁଁ ତାରବୁଟି ଦୁର୍ଗତିନାଶିନୀ ।
ରାଜାକୁ ବୋଧ ଦେଇଣ ଅନାଦି ଶକତି
ଭୀମସେନର ସମ୍ମୁଖେ ମିଳିଲେକ ଧାଇ ।
କାମାକ୍ଷୀଙ୍କ ମୂର୍ତ୍ତି ଦେଖି ପାଣ୍ଡବ ସୁନ୍ଦର
ଗଦା ଦେଇ ଛାଡ଼ି ନମେ ଦେବୀଙ୍କ ପୟର ।
ଜୟ ତୁ ମାତଙ୍ଗୀ ମାଗୋ ପ୍ରସନ୍ନେ ଅଭୟେ
ଶରଣରକ୍ଷଣୀ ଭକ୍ତବତ୍ସଳେ ଗୋ ମାୟେ ।

ପଶ୍ଚିମ ଦିଗେ ଅଇଲ ରାଜାଙ୍କୁ ନମନ୍ତି
କାହିଁ ନ ଦେଖିଲ ମାଗୋ ତୋହର ମୂର୍ତ୍ତି ।
ହସି ବୋଇଲେ କାମାକ୍ଷୀ ଦେବୀ ମହାତମୀ
ବାବୁ କାଉଁରୀ ଦେଶଟି ଦୁର୍ଗମ ଏ ଭୂମି ।
ପଶ୍ଚିମ କୋଶଳ ମଧ୍ୟେ ଏ କାଉଁରୀ ଦେଶ
ଏଥେ ଏହ୍ନ କାମପାଳ ଅଟଇ ନରେଶ ।
ଏ ରାଜାର ବଂଶଯାକ ମୋହର ଶରଣ
ସର୍ବଦା ଏହାଙ୍କୁ ମୁହିଁ ଥାଏ ପରସନ୍ନ ।
ମୋ ପ୍ରସନ୍ନେ ଏ ରାଜାଙ୍କୁ କେ ଜିଣନ୍ତା ନାହିଁ
ଶତ୍ରୁ ଉପଘାତେ ନୃପେ ରକ୍ଷା କରେ ମୁହିଁ ।
ମୋ ପ୍ରସନ୍ନେ କାହାକୁ ଏ ନ କରଇ ଭୟ
ଯମ କାଳଦଣ୍ଡେ ଏହ୍ନ ନୋହିବ ଯେ କ୍ଷୟ ।
ଅଷ୍ଟୋତ୍ତର ଶତବର୍ଷ ପ୍ରାଣୀଙ୍କ ଆୟୁଷ
ଏତେ ବର୍ଷେ ଏଠାକାର ପ୍ରାଣୀ ହେବେ ନାଶ
ତୁ ମୋହର ଯେହ୍ନେ ପୁତ୍ର ତେହ୍ନେ ଏ ମୋ ବାଳ
ଯାର ଦୋଷ କ୍ଷମା କର ଏହାଙ୍କୁ ସମ୍ଭାଳ ।
କାମପାଳଙ୍କୁ କହିଲେ ଦେବୀ ଭଗବତୀ
ଭୀମସେନଙ୍କ ଚରଣେ କର ତୁ ଭକତି ।
ଦେବୀଙ୍କର ବଚନରେ କାମପାଳ ରାଜା
ମାରୁତିର ଚରଣରେ କରିଲେକ ପୂଜା ।
ତାର ସଙ୍ଗେ ଯାଇଥିଲ କବଚ ନୃପତି
କାମପାଳ ତୁଲେ ସେହ୍ନ ଭୀମେ କଲେ ଭକ୍ତି ।
ବେନି ନୃପେ ଭୀମ ପାଦେ ହେଲେ ପରଣାମି
ଅନାଥଜନ ଠାକୁର ସୋମବଂଶ ସ୍ୱାମୀ ।
ଭୀମକୁ କୋଳେ ବସାଇ ଦେବୀ କାମସେଣା
କାମପାଳେ ସମର୍ପିଲେ ହେମବନ୍ତ ଜେମା ।
ଏହାକୁ ବସ୍ୱା ବାବୁରେ ସଦା କରଥିବ
ଯାବତ କାଳକୁ ଏହି ତୋ ଉକତ ହେବ ।
ଏହା କହି ସମର୍ପିଲେ ବେନି ନରମଣି
ଭୀମ ବୋଇଲେକ ଯେ ତୋ ଆଜ୍ଞା ଗୋସାମଣି
ତୁ ଦେବୀ କାଉଁରୀ ଦେଶେ ମଣ୍ଡଣୀ ଗୋ ମାୟେ
ତୁ ଯାରେ ପ୍ରସନ୍ନ ହେଉ ସେ ଥାଏ ନିର୍ଭୟେ
ଭୀମ ବଚନେ ତୃପତି ହୋଇ ଜଗନ୍ମାତ
ସନ୍ନେ ଭୀମକୁ ଦେଲେ ସେ କାମ୍ୟକ ଅସ୍ତ୍ର
ବୋଇଲେ ଏ ଅସ୍ତ୍ର ଥିଲେ ସଂଗ୍ରାମେ ତୁ ଧର
ହରି ହର ଆଦି ତୋତେ କେ ନୋହିବେ ସର
ଅସ୍ତ୍ର ପାଇଣ ବଜସ୍ତ୍ର ହିଡ଼ିମ୍ବିକ ନାହା
ବୋଲେ ଏ ଲୋକ କଷ୍ଟବ ତୁହି ଥିଲେ ସାହା
କାମପାଳେ ଭୀମ ବସ୍ତ୍ର ଗଉରବ କଲେ
କବଚକୁ ତାର ବୋଲେ ଭୀମ ଗ୍ରହଦେଲେ
ତଦପରେ ସେ ବେନଙ୍କୁ କହିଲେ ପାବନ
ଏହିକ୍ଷଣି ଚଳ ତୁମ୍ଭେ ସମଦଣ୍ଡ ଘେନ ।
ଦରଶନୀ ଧନ ତୁମ୍ଭେ ସଙ୍ଗତରେ ନେବ
ଇନ୍ଦ୍ରପ୍ରସ୍ଥେ ମିଳ ତାହା ଯୁଧିଷ୍ଠିଙ୍କୁ ଦେବ ।
ଦୁଇ କର ଯୋଡ଼ି ବୋଲେ କାଉଁରୀର ପତି
ମୋ ପୁରେ ମଣୋହି କର ରହ ଆଜ ରାତି
ରାଜା ବଚନେ ରହିଲେ ତହିଁ ଭୀମସେନ
କଲେ ଗୋସାମଣୀ କଲେ ଅନ୍ନ ଯେ ବ୍ୟଞ୍ଜନ
ଅମୃତ ରନ୍ଧଣାମାନ କାମସେଣା କଲେ
ସନ୍ଧ୍ୟା ତର୍ପଣ ସାରିଣ ଭୀମସେନ ଗଲେ ।
ଦିବ୍ୟବେଶ ହୋଇ ଦେବୀ ସେ ତ୍ରୈଲୋକ୍ୟମୋହିନୀ
ବୋଇଲେ ବସ ହୋ ଭୀମ ସୈନ୍ୟଙ୍କୁ ଘେନ
ଭୀମ ବୋଲେ ଯା ରାନ୍ଧିଛୁ ତୁ ଗୋ ଜଗନ୍ମାଏ
ଜଣଙ୍କୁ ତ ନ ଅଣ୍ଟିବ ଏ ଆଠକାଠିଏ ।
ଅଳ୍ପ ଅନ୍ନେ କାହିଁ ମାତ ତୃପ୍ତ ହେବ ମୁହିଁ
ଅତିଥି ଅତୃପ୍ତ ହେଲେ ଧର୍ମ ନାଶଯାଇ ।
ବୋଇଲେ କାମାକ୍ଷୀ ଭୀମେ ମାତା ପରଷିଲେ
ପୁଷେ ତୃପତି ହୁଅନ୍ତୁ ଅଳପ ଭଷିଲେ ।
ଦେବୀ ବାକ୍ୟେ ମଣୋହିରେ ମାରୁତି ବସିଲେ
କାମାକ୍ଷୀ ଭୀମସେନଙ୍କୁ ଅନ୍ନ ପରଷିଲେ ।
ଅଇବ୍ରତେ ହସ୍ତୀ ଦୁଇ ଅଇବ୍ରତ ରଥୀ
ସ୍ୱରପଦ୍ମ ଅଶ୍ୱାରୋହୀ ନିଲକ୍ଷ ପଦାତି ।
କଲେ ମାହେଶ୍ୱରୀ ଅନ୍ନ ତହିଁ ପରଷନ୍ତି
ମହା ଆନନ୍ଦରେ ବସି ସକଳେ ଭୁଞ୍ଜନ୍ତି ।
ଏତେ ଲୋକଙ୍କୁ କାମାକ୍ଷୀ ଦେବୀ ଦ୍ୟନ୍ତି ଅନ୍ନ
ଅନେକ ତୃପତି ହୋଇ କରନ୍ତି ଭୋଜନ ।
ପରଷନ୍ତି ଆଠକାଳ ଅନ୍ନ ଗୋସାମଣି
ଯେସନେକ ନହିଁତରୁ ନେଉଛନ୍ତି ଆଣି ।
ଅନେକ ଗୋରସ କ୍ଷୀରପିଠା ଅଗଣିତ
ଭୋଜନେ ତୃପତି ହେଲେ ପବନର ସୁତ ।
ସୁପକ୍ୱ ଅନ୍ନାଦି ବସି ହରଷେ ଭୁଞ୍ଜନ୍ତି
ତୃପତ ହୋଇ ସକଳେ ପ୍ରଶଂସା କରନ୍ତି ।

ଭୀମଙ୍କର ସ୍ୱପକାରେ ସେ ଯୋଗାଡ଼ ଖାଇ
ପ୍ରଶଂସି ଭୁଞ୍ଜନ୍ତି ମନୁ ଉଙ୍କଣା ଛଡ଼ାଇ ।
ମହାମାୟା ପରଷନ୍ତି ତାହାଙ୍କୁ ଆନନ୍ଦେ
ଭୁଞ୍ଜନ୍ତି ଭୀମାଦି ସୈନ୍ୟ ପରମ ସାନନ୍ଦେ ।
ଅଶେଷରେ କାମାକ୍ଷୀ ଯେ ଜଗତ ମୋହନୀ
ସମସ୍ତଙ୍କୁ କହନ୍ତେ ସେ ସ୍ୱମଧୁର ବାଣୀ ।
ଭୁଞ୍ଜ ଅଢ଼ାଇ ପ୍ରହର ହୋଇଅଛି ରାତି
ଯେତେ ଖାଇବ ହେ ଖାଅ ହୋଇ ହୃଷ୍ଟମତି
ଖଣ୍ଡ କ୍ଷୀରିସା କଦଳ ଅମୃତର ରସ
ଅନନ୍ତ ସ୍ୱପକ ଆମ୍ବ ଡାଳିମ୍ବ ପଣସ ।
ଏହା ସବୁ ନେଉଛନ୍ତି ଦେବୀ ଧନ୍ଦମାସେ
ଭୁଞ୍ଜନ୍ତି ସକଳେ ବସି ଅତ୍ୟନ୍ତ ହରଷେ ।
ଯେଉଁ ପଦାର୍ଥମାନ ନ ପାଇ ଅବସରେ
ତାହା ପରଷନ୍ତି ଦେବୀ ଭଉତିକ ରତେ ।
ଭୁଞ୍ଜ ରେ ବାବୁ ଯେ ଯାହା ପୂର୍ଣ୍ଣିଉର ବାଞ୍ଛା
ଯତ୍ନିକ ଯାର ସଗଗ ଜିଅ ମନଇଚ୍ଛା ।
ଭୋଜନ କରନ୍ତେ ତହିଁ ପ୍ରସନ୍ନଇ ରାତି
ଖାଇଣ ସକଳ ସୈନ୍ୟ ହୋଇଲେ ତୃପତି ।
ଏ ସମୟେ ଦେବଆଲେ ଶଙ୍ଖଧ୍ୱନି କଲେ
ତାମ୍ରଚୂଡ଼ ପିକ କାକଆଦି ଡାକ ଦେଲେ ।
ପୂର୍ବଦିଗରେ ଅରୁଣ ହୋଇଲେ ପ୍ରକାଶ
ଭୋଜନ କରି ସକଳେ ହୋଇଲେ ସନ୍ତୋଷ
କର୍ପୂର ରଜ ମିଶ୍ରିତ ସୁଶୀତଳ ପାଣି
ପିଇବାକୁ ତାଙ୍କୁ ଦେଲେ ଦେବୀ ଗୋସାମଣୀ
ଆଚମନ ସାରି ଭୀମ ବିଜୟୁ ଆସ୍ଥାନ
ସୁବାସ ତାମ୍ବୁଳ ବଡ଼ କଲେକ ଚର୍ବଣ ।
କାମାକ୍ଷୀଙ୍କୁ ବନ୍ଦୁସେବା କଲେ ବୃକୋଦର
ବଡ଼ଇ ଦୁର୍ଲ୍ଲଭ ମାଗୋ ମହିମା ତୋହର ।
ଏକହାଣ୍ଡି ଅନ୍ନ ମାଗୋ ହାଣ୍ଡିଏ ବ୍ୟଞ୍ଜନ
ସମସ୍ତ ସଇନ ମୋର କଲେକ ଭୋଜନ ।
ଆହୁରି ଅନ୍ନ ବ୍ୟଞ୍ଜନ ହାଣ୍ଡିଏ ରହିଛି
ଏ କଥା ବଡ଼ ଆଶ୍ଚର୍ଯ୍ୟ ମୋତେ ଯେ ଲାଗୁଛି
କାମାକ୍ଷୀ ବୋଇଲେ ଆମ୍ଭେ ହିଙ୍ଗୁଳା ଦୁହିତା
ସକଳ ବିଦ୍ୟାରେ ଆମ୍ଭ ଅଛୁ ପାରଗତା ।
ଯାବତ ବିଦ୍ୟା ଆମ୍ଭର ଆସ୍ଥ ସିଦ୍ଧ ହୋଇ
ମାତା ପ୍ରସନ୍ନେ ଅମୃତ ଯୋଗାଡ଼ କରଇ ।

ଲକ୍ଷେ ରଜାଙ୍କର ନନ୍ତ ଯେତେକ ସଇନ
ସମସ୍ତଙ୍କ ପରଷିବ ଏଥୁ ଅଭି ଯେନ ।
ଲକ୍ଷେରଜା ସୈନ୍ୟସହ ଯଦ୍ୟପି ଆସିବେ
ଏହି ଆଟିକାକ ଅନ୍ନେ ସର୍ବେ ତୋଷ ହେବେ
ତ୍ରିଶିକୁଳରେ ସାଧବୀ ଅଛନ୍ତି ଯେତେ
ଅନ୍ନ ବ୍ୟଞ୍ଜନ ଅଣ୍ଟାଇ ସେହୁ ପରଷନ୍ତେ ।
ଏକମାତା ପିତାଠାରୁ ଯେବଣ ଦୁହିତା
ଏକ ସ୍ୱାମୀଠାରେ ଯାର ଥାଏ ଚିତ୍ତବୃତ୍ତି ।
ତାଙ୍କ ଶରୀରେ ବିଜୟ କରେ ମୁଁ ସର୍ବଦା
ଆମ୍ଭେ କାତ୍ୟାୟିନୀ ତାର ବାଞ୍ଛା କରୁ ସିଦ୍ଧା
ଭୀମଙ୍କୁ ଯେ ଅନୁଗ୍ରହ କଲେ କାମସେଣା
କହିଲେକ ମହାବିଦ୍ୟା ଅଭୁଟ ରାନ୍ଧଣା ।
ରାନ୍ଧିବାକୁ ଅଳ୍ପ ହେବ ପର୍ଷନ୍ତେ ବହୁତ
ଭୁଞ୍ଜିବେକ ଯେଉଁମାନେ ହୋଇବେ ତୃପତ
ଏମନ୍ତ ବିଦ୍ୟା ତୁ ବାବୁ ହୃଦେ ଥିଲେ ଯେନ
ରାନ୍ଧିବୁ ରଉଣା ସୌରି ନଳବିଧି ଜିନ ।
ରାଜସୂୟ ଯାଗେ ଏହା କରସି ରନ୍ଧନ
ଏକା ରନ୍ଧନେ କରିବେ ରାଜାଦି ଭୋଜନ ।
ତୁ ନନ୍ଦଶାଳେ ଦେବୁଟି ଯୋଗାଡ଼ ସମ୍ଭାର
ବିବାଗରେ ଭୁଞ୍ଜିଥିବେ ସୈନ୍ୟ ଅସୁମାର ।
ଏମନ୍ତ ପ୍ରସନ୍ନେ ଦେବୀ ବହୁବିଦ୍ୟା ଦେଲେ
ସ୍ତମ୍ଭନ ମୋହନ ବିଦ୍ୟାଆଦି ଶିଖାଇଲେ ।
ବାବୁ ତୋତେ ନ ପଡ଼ିବ କଷ୍ଟ ବୃକୋଦର
ମୁହିଁ ବିଜେ କରିଥିବ ବାମଅଙ୍ଗେ ତୋର ।
ସତ୍ୟେ ପ୍ରସନ୍ନ ଯହୁଁ ହୋଇଲେ ଅଭୟେ
ତହୁଁ ମାରୁତି ଉଠିଲେ କରି ଜୟେ ଜୟେ ।
କାମାକ୍ଷୀ ଦେବୀଙ୍କୁ ତହିଁ କଲେ ନିମନ୍ତ୍ରଣ
ଅକ୍ଷତ ଗୁଆ ଅର୍ପିଲେ ନମି ଶ୍ରୀଚରଣ ।
ରାଜସୂ ଯାଗକୁ ବିଜେ କରିବେ ଗୋ ମାୟେ
ରାନ୍ଧଣାଶାଳେ ଆପଣେ କରିବେ ବିଜୟେ ।
ଏତେକ ବଚନେ ଭୀମ ଦେବୀଙ୍କୁ ଜଣାଇ
ବୋଲେ ରଜାଙ୍କୁ ନମନ୍ତି ଯାଉଅଛୁ ମୁହିଁ ।
ଏରୂପେ କହି ସେଠାରୁ ଗଲେ ବୃକୋଦର
କାମପାଳ ଇନ୍ଦ୍ରପ୍ରସ୍ଥେ ହୋଇଲ ବାହାର ।
ଜୟ ଜୟ କାମାକ୍ଷୀ ତୋ କାଉଁଶିମଣ୍ଡନା
ଜଗତ ଜୀବଜନ୍ତୁଙ୍କ ତୁହି ମା ଜନନୀ ।

ପରଦୁଃଖ କାତରା ଗୋ ଅଭୟା ଅପର୍ଣ୍ଣା
ହଂସ ର ରଜୁ ବନ୍ଧନୁ ମୁକ୍ତ କର କନା ।
ଏହୁ କଳକାଳେ ହେଲ ମାୟାମେ ହବନ୍ଦୀ
ଏଥିରୁ ମୁକତ ବେଗେ କର ଗୋ ଅନାଦ ।
ମୋହଜଳେ ପଡ଼ିଅଛି ଅଜ୍ଞାନୀ ଅହିୟା
ତୁ ସର୍ବାଙ୍ଗ ସାଧଣୀ ଗୋ ଅଣାକାର ପ୍ରିୟା ।
ତୋ ଆଜ୍ଞା ହେଲେ ବପଦୁଁ କରୁ ତୁ ତାରଣ
ଲେମଟିଏ ପୃଥିବୀକୁ କଣଲୁ ଧାରଣ ।
ସତ୍ତ୍ୱ ରଜ ତମ ମାଗୋ ସିଦ୍ଧ ଷଡ଼ମୁଦ୍ରା
ତୋହର ଭୃସଭେ ମାଗୋ କାଳ କାମନନ୍ଦା
ଭୂତ ଭବିଷ୍ୟତ ବର୍ତ୍ତମାନ ଜନକୋଟି
ଏ ସକଳ ତୋତେ ଜଣାଅଛି ବଶ୍ୱ ସୋଟି ।
ମ ଯ୍ୟା ଯୋଗବଳେ ମାତା ସବୁ ପାରୁ ଜାଣି
କୃପା କର କୃପାମୟୀ ଦେବୀ ନାରାୟଣୀ ।
ଶମନ ଦର୍ପ ଧ୍ୱଂସନେ କାମାକ୍ଷୀ ହୋଇଲୁ
ତୋ ଆଶ୍ରିତ ଜନେ ମାତ ଉଦ୍ଧର ଧଇଲୁ ।
ଆଗୋ ମାତ ଶ୍ରୀପ୍ୟାଦେବୀ କାଉଁଶୀ କାମାକ୍ଷୀ
ଶାରଳା ଦାସକୁ ଥାଅ ଭତ୍ୟାଚରଣେ ରଖି ।

## ଶିବରାଜା ଅମ୍ବର ରାଜାଙ୍କୁ ନିମନ୍ତ୍ରଣ

ଏଥିଅନ୍ତେ ଅଗସ୍ତିଙ୍କୁ ମନୁ ନରବର
ପୁନରପି ପୁଚ୍ଛା କଲେ ଯୋଡ଼ି ଦେନି କର ।
କହ ମୁନି କାଉଁଶୀକୁ ଭେଜ ଭୀମସେନ
କେଉଁ ଦେଶକୁ ସେ ପୁଣି କରିଲେ ଗମନ ।
ଅଗସ୍ତି କହିଲେ ତୁମ୍ଭେ ଶୁଣ ନୃପବର
କାମପାଳ କଟକକୁ ପେଷି ବୃକୋଦର ।
ନଜ ସଇନମାନଙ୍କୁ ସଙ୍ଗତରେ ଘେନି
କାଉଁଶୀ ଦେଶୁ ବାହାର ହୋଇଲେ ପାବନି
ଗହଳେ ଯାଆନ୍ତି ଜୟଶଙ୍ଖକୁ ବଜାଇ
ମାଳିନୀ ନଦୀକୂଳରେ ଥାଟ ଯେ ଚଳାଇ ।
ଦଣ୍ଡ ଘେନି ବୃକୋଦର ପଶ୍ଚିମ ମୂରତି
ବନ ପର୍ବତ ଲଙ୍ଘିଣ ଚଳିଇ ମାରୁତି ।
ବହରନ୍ତି ସଇନଏ ମନର ହରଷେ
ବଜେ କଲେ ବୃକୋଦର ମହାରାଷ୍ଟ୍ର ଦେଶେ
ସେ ରାଜ୍ୟରେ ଶିବ ନାମେ ଏକ ନରପତି
ଶ୍ୱେତାଶ୍ୱ ପଞ୍ଚାଶକୋଟି ତାହାକୁ ଖଟନ୍ତି ।

ଲକ୍ଷେକ ହସ୍ତୀ ଖଟନ୍ତି ଅର୍ବୁଦେ ସଇନ
ପଶ୍ଚିମ କୋଣରେ ଛନ୍ତି ଯେତେକ ରାଜନ ।
ଅଭିଷେକବେଳେ ତହୁଁ ପାଟାଶ୍ୱ ଆଣନ୍ତି
ସେ ଅଶ୍ୱରେ ଅଭିଷେକ ରାଜାଏ ହୁଅନ୍ତି ।
ସମସ୍ତ ରାଜାଙ୍କର ସେ କୁଳ ଇଷ୍ଟଗୁରୁ
ହେତାଯୁଗ ମାହେଶ୍ୱର ରାଜା ଅମଳରୁ ।
ଭୀମସେନ ପରବେଶ ହେଲେ ସେହି ରାଜ୍ୟ
ନଗ୍ରରେ ପଶନ୍ତେ ବାଦ୍ୟ ଉତାଉଳ ବାଜେ ।
ଯମଦଣ୍ଡ ସେନ ରାଜା ବଜୟ ଆସ୍ଥାନେ
କାମଦେବ ମନ୍ତ୍ରୀ ଥିଲା ତାର ସନ୍ନିଧାନେ ।
ସମ୍ଭାଜରେ ଥିଲା ରାଜା ନିଷ୍ଟଳର ବେଳେ
ଦୂତ ଯାଇ ଜଣାଇଲା କଯଡ଼ର ତଳେ ।
ହେ ଦେବ ଶୁଣିମା ହେଉ ପରବସ୍ତୁ ବାର୍ତ୍ତା
ଯୋଦ୍ଧାଏକ ପଶେ ରାଜ୍ୟେ ବଡ଼ ବଳବନ୍ତା ।
ସକଳ ଦେଶକୁ ସେହୁ ଆସୁଛନ୍ତି ଜଜ
ତୋହର ଦେଶେ ପଶିଲା ଏବେ ଖଳଖାଳ ।
ଏହିକ୍ଷଣି ନଗ୍ର ତୋର ହୋଇବଟି ଚୂର
ପୃଥିବୀ ଦୁଲୁକୁ ଅଛି ବାଦ୍ୟନାଦେ ତାର ।
ତୁ ମହାପାଣ୍ଡବ ଅଟୁ ରାଜାଧି-ଈଶ୍ୱର
ଶତ୍ରୁ ଉପଗତ ହେଲା ବୁଦ୍ଧି କାର୍ଯ୍ୟ କର ।
ଡଗର ମୁଖରୁ ରାଜା ଶାଇଣ ବାରତା
ମନ୍ତ୍ରୀକୁ ପୃଚ୍ଛି ହୋଇଲା କରିବା କ କଥା ।
ମନ୍ତ୍ରବର ବୋଲେ ତହୁଁ ଶୁଣିବା ନୃପତି
ଭୀମ ଆସନ୍ତେ ପଶ୍ଚିମେ ରାଜାଙ୍କୁ ଜିଣନ୍ତି ।
ରାଜସୂୟ ଯାଗସତ୍ର ଯୁଧିଷ୍ଠି କରିବେ
ଲକ୍ଷେ ନରପତ ସୈନ୍ୟସହ ତହିଁ ଯିବେ ।
ପ୍ରତ୍ୟେକ ଦେଶ ରାଜାଙ୍କୁ ଅଇଲେଣି ସାଧି
ହେ ନରେଶ ନ କର ଯେ ମନେ ଅନ୍ୟ ବୁଦ୍ଧି
ଦରଶନୀ ଧନ ଘେନ ଚଳ ଭୀମ ପାଶ
ଶୁଣି ନରପତ ମନେ ଅତ୍ୟନ୍ତ ହରଷ ।
ଏକଲକ୍ଷ ପାଟଅଶ୍ୱ ବାଛୁଣ ଘେନଲା
ଦେଖା ଦରଶନୀ ଧନ ଲକ୍ଷେକର ନେଲା ।
ପାଞ୍ଚ ମନ୍ତ୍ରୀ ଅମନାତ୍ୟ ଘେନ ନୃପବର
ବାହନ ବସ୍ତ୍ରାନେ ସେହୁ ହୋଇଲା ବାହାର ।
ଭୀମ ବଜେ କରିଛନ୍ତି ନଗେଳ ପର୍ବତେ
କରବାରେ ରାଜା ବାର୍ତ୍ତା ଜଣାଇଲେ ଦୂତେ ।

ଶୁଣ ସାବଧାନେ ହେବ ବୀର ଚୂଡ଼ାମଣି
ନଇର୍ତ୍ତ କୋଣେ ପୁଣ୍ଡ୍ରରାଜ ଚକ୍ରପାଣି ।
କରୁଷାର ଦେଶରେ ଯେ ସେହୁ ଅଧିପତି
ବଡ଼ଇ ପ୍ରତାପୀ ସେ ତ ଅଟେ ଚକ୍ରବର୍ତ୍ତୀ ।
ସୁବର୍ଣ୍ଣର ଶଗଡ଼ଏ କରିଛି ନିର୍ମିତ
କାଠର ଗରୁଡ଼େ ଏକ ଥାଏ ଅନୁବ୍ରତ ।
ସେ ଗରୁଡ଼ ଏକା ଥାଏ ହଗଦ୍ୱଜେ କରି
କାଠ ବେନିଭୁଜେ ଥାଏ ଶଙ୍ଖ ଚକ୍ରଧରି ।
ଗାଣ୍ଡିବ ସମାନ ଧନୁ ଧରି ବାମହାତେ
ବାସୁଦେବଙ୍କୁ ନିନ୍ଦେ ସେ ଦୁଷ୍ଟ କୋପଚିତ୍ତେ
ଦ୍ୱିଷ କୃଷ୍ଣରୂପ ଧରି ହଗଦ୍ୱଜେ କରେ
ବଡ଼ ପ୍ରତାପୀ ରାଜା ସେ ପଶ୍ଚିମ ଦିଗରେ ।
ଦୁର୍ଦ୍ଧାର ରାକ୍ଷସଗଣ ଅଟନ୍ତି ତା ବଳ
ରାଜାଙ୍କ ମଧ୍ୟରେ ସେହୁ ଅଟେ ମହାବଳ ।
ଜରାପୁତ୍ର ସହଦେବ ଦେଇଛି ଦୁହିତା
ତେଣୁ ମନେ କାହାକୁ ସେ ନ କରେ ଗଣିତା
ଶୁଣିଣ ମାରୁତି ମନେ ବଡ଼ ମହାରୋଷ
ଗଦା ଉଆଇଁଣ ହାତେ ଆଉଁଷିଣ ନଶ ।
ବୋଇଲେ ସ୍ୱାମୀଙ୍କ ବେଶ ଧରେ ସେ ପାମର
ଶଙ୍ଖ ଚକ୍ର ଗାଣ୍ଡୀବାଣ ବହେ ଗ୍ୱରକର ।
ଦେଖିବା କପଟ ସେହୁ କେତେ ସାମରଥ
ହେ ସାରଥି ବେଗକରି ବାହା ମୋର ରଥ ।
ମରୁତ ସାରଥି ବୋଲେ ଆଜ୍ଞା ଅବଧାରି
ଯିବା ଶିବ ନରେଶଙ୍କୁ ନିମନ୍ତ୍ରଣ କରି ।
ଏମନ୍ତ କହିଣ ରଥ ଚଳାଏ ସାରଥି
ଶିବରାଷ୍ଟ୍ରରେ ପ୍ରବେଶ ହୋଇଲେ ଝଟତି ।
ଆସୁଥିଲ ଦରଶମା ଘେନ ଶିବରାଜା
ଭୀମଙ୍କୁ ଭେଟିଣ ପଥେ କଲା ପାଦପୂଜା ।
ଲକ୍ଷେଶ୍ୱର ପାଣିଦ୍ରବ୍ୟ ଶ୍ରୀସ୍ତମ୍ବରେ ଥୋଇ
ଶତସହସ୍ର ଦଣ୍ଡବତ କଲା ନରସାଇଁ ।
ପୁଣି ଭୀମଙ୍କୁ ସେ ଦେଲା ଏକଲକ୍ଷ ବାଜୀ
ଶୁଦ୍ଧ ସ୍ଫଟିକ ବର୍ଣ୍ଣ ସେ ପବନଠୁଁ ତେଜି ।
ଏତେକ ଅଶ୍ୱ ଭୀମଙ୍କୁ କଲା ସମର୍ପଣ
ଶ୍ରୀଚରଣେ ଗଡ଼ଘାଲି ନମେ ପୁଣ ପୁଣ ।
ରାଜା ଭକ୍ତି ଦେଖି ଭୀମ ଉଠି ଆଜ୍ଞା ଦେଲେ
କାଳଞ୍ଜନ ପଡ଼ହାସ ଯାଇ ଉଠାଇଲେ ।

ଉଠ ଉଠ ଶିବରାଜା ତୋତେ ଆଜ୍ଞାହେଲା
ଆଜ୍ଞା ପ୍ରମାଣେ ସେ ରାଜା ଭୂମିରୁ ଉଠିଲା ।
ବେନିକର ମସ୍ତକରେ ଦେଇ କଲା ସ୍ତୁତି
ବହୁତ ବିନୟ ଭାବ ଦେଖିଣ ମାରୁତି ।
ରଥ ଉପରୁ ସେହୁ ଉତୁରି ଚଞ୍ଚଳ
ସେ ଶିବ ନରପତିଙ୍କୁ କହିଲେକ ବୋଲ ।
ନିମନ୍ତ୍ରଣର ଅକ୍ଷତ ଦେଇ ତାର ହସ୍ତେ
ବୋଇଲେ ନିର୍ଭୟ ତୁମ୍ଭ ହୁଅ ଏବେ ଚିତ୍ତେ ।
ତୋହର ଥାଟେ ଅଛନ୍ତି ଯେତେକ ସଇନ
ଇନ୍ଦ୍ରପ୍ରସ୍ଥେ ଚଳ ତୁମ୍ଭ ସେମାନଙ୍କୁ ଘେନ ।
ଯେତେକ ଧନ ଆଣିନ୍ତୁ ମୋହର ପ୍ରଭୁଙ୍କୁ
ଏହା ସବୁ ନେଇ ଦେବୁ ଶ୍ରୀଯଦୁପତିଙ୍କୁ ।
ରାଜୁସୀ ଯାଗ କରନ୍ତି ଯୁଧିଷ୍ଠିର ରଜା
ଲକ୍ଷେରାଜା ଯାଇ ତାଙ୍କୁ କରିଲେକ ପୂଜା ।
ଶିବରାଜା ବୋଲେ ଆଜ ମୋର ପୁରେ ରହି
ମଣୋହି କରନ୍ତୁ ସ୍ୱାମୀ ସୁଖୀ ହେବି ମୁହିଁ ।
ଭୀମ ବୋଲେ ଏକ୍ଷଣି ହୋଇନାହିଁ ରାତି
ଅନେକ ରାଜାଙ୍କୁ ମୁହିଁ ନେବଇଁ ନିମନ୍ତ୍ରି ।
ଖେଜଣ ଶତ୍ରୁନଙ୍କୁ ମୋ ମନେ ଚିନ୍ତା ନାହିଁ
ଭଗବାନଙ୍କ ଯେ ଆଜ୍ଞା ତା ପାଳିବି ମୁହିଁ ।
ନଉ ଦିବସେ ପଞ୍ଚାଶ ସହସ୍ର ନରେଶ
ନିମନ୍ତ୍ରି ମକର ମାସେ ହୋଇବ ପ୍ରବେଶ ।
ନିରଧାରି ଆଜ୍ଞା ଦେଇ ଅଛନ୍ତି ଗୋବିନ୍ଦ
ଏ ମଧ୍ୟେ ନ ଗଲେ ମୋର ମୁଣ୍ଡ ହେବ ଛେଦ
ହେ ରାଜା ଉତ୍ତର କୋଣ ବାଟେ ତୁମ୍ଭ ଯିବୁ
ମଘଦେଶୁଁ ବିରାଟଙ୍କୁ ଡାକ ସଙ୍ଗେ ନେବୁ ।
ବିରାଟ ପଣ୍ଡିତ ତାର କୀଚକ କୁବୁଦ୍ଧି
କହିବୁ ନଷ୍ଟେ ସେ ଯିବ ଗାଢ଼ ତାର ଆଧି ।
ଶିବରାଜା ବୋଲେ ତୁମ୍ଭ ଆଜ୍ଞା ପରମାଣ
ମଘଦେଶୁଁ ବିରାଟଙ୍କୁ ନେବି ତତକ୍ଷଣ ।
ବିରାଟର ପୁତ୍ର ସେହୁ ଉତ୍ତର କୁମର
ତାକୁ ଝିଅ ଦେଇଛି ମୁଁ ସେ ଜ୍ୱାଇଁ ମୋହର
ଯଦ୍ୟପି ବିରାଟ ରାଜା ମୋହର ସମୁଧି
ସ୍ୱାମି ତୋ ଆଜ୍ଞା ପ୍ରମାଣେ ନେଇପାରେ ସାଧି
ଭୀମସେନଙ୍କ ଚରଣେ ଓଳଗି ମେଲାଇ
ଶିବ ରାଜା ଉତ୍ତରକୁ ଥାଟ ଗଲା ବାହି ।

ଲକ୍ଷେ ଶ୍ୱେତାଶ୍ୱେ ମୁକୁଟବନ୍ଧା ଥିଲେ ଯୋଦ୍ଧା
ଭଗଦତ୍ତ ସେ ବିଦ୍ୟାଧର ପ୍ରାୟ ସର୍ବ ସିଦ୍ଧା ।
ଶିବରାଜାଙ୍କୁ ପେଷିଣ ପାଣ୍ଡବ ମାରୁତ
ଅମ୍ବୁ ଦେଶରେ ପ୍ରବେଶ ହେଲେ ସେହୁ ରାତ ।
ଚରଗଣ ଜଣାଇଲେ ନୃପେଶ ଅଗ୍ରତେ
ଭୀମ ଆସି ରାଜ୍ୟେ ଉଭେ ସୈନ୍ୟଙ୍କ ସହିତେ
ଶୁଣି ସାନନ୍ଦ ସେ ଅମ୍ବୁଦେଶ ଅଧିକାରୀ
ପାଏଡ଼ା ପଠା ଦେଲେଣ ଆଜ୍ଞା ଅବଧାରି ।
ନରେଶଙ୍କ ଆଜ୍ଞାମତେ ଗଲେ ପାତ୍ର ମନ୍ତ୍ରି
ଅନେକ ବହୁଡ଼ି ହୁଳା ଜଳାଇଲେ ଧାଡି ।
ଦେବାଙ୍ଗ ବସନମାନ ପାଏଡ଼ା ପାଡ଼ିଲେ
ନରପତିଙ୍କ ସମ୍ମୁଖରେ ଯାଇ ଜଣାଇଲେ ।
ଶୁଣି ହିହସ୍ତେ ଭୀମର ଦେଖି ନରମଣି
ମଳୟା ବାସନ୍ତୀ ବୋଲି ତା ଦେନ୍ତି ରମଣୀ ।
ଏହାଙ୍କୁ ସଙ୍ଗରେ ନେଇ ଅମ୍ବୁଦେଶ ରାଜା
ଦରଶନ ଧନ ଦେଇ ଭୀମେ କଲା ପୂଜା ।
ଭୀମ ତା ନଗ୍ରେ ଜଗତୀ ଉପରେ ବିଜେସ୍ଥେ
ଲକ୍ଷେ ହୁଳା ଜଳୁଁ ଦଶେ ଦିବସ ପର୍ଯ୍ୟେ ।
ରାଜାର ଭକତି ଦେଖି ପବନ ନନ୍ଦନ
ଅଭୟ ଦେଇ ତାହାକୁ ହୋଇଲେ ପ୍ରସନ୍ନ ।
ବୋଇଲେ ତାହାକୁ ତୁହି ପଶ୍ଚିମରେ ଧନ୍ୟ
ରାଜାମାନଙ୍କ ଉତ୍ତମ ଅଟୁ ପୁଣ୍ୟବାନ ।
ଏହା କହିଣ ଅକ୍ଷତ ତାର କରେ ଦେଲେ
ରାଜସୂୟ ଯାଗକୁ ତୁ ଯାଅସି ବୋଇଲେ ।
ତୋହର ଯେତେକ ସୈନ୍ୟ ସେମାନଙ୍କୁ ନେବୁ
ଇନ୍ଦ୍ରପ୍ରସ୍ଥେ ଅତିଶୀଘ୍ର ଯାଇ ପ୍ରବେଶିବୁ ।
ଏରୂପେ କଥାବାର୍ତ୍ତାରେ ରାତ୍ର ହେଲା ଶେଷ
ପୂର୍ବଦିଗରେ ଉଦୟ ହୋଇଲେ ଦିନେଶ ।
କାକ ପିକ ତାମ୍ରଚୂଡ଼ ଖଗାଦି ରଡ଼ିଲେ
ଶଙ୍ଖ ଘଣ୍ଟା ଶବ୍ଦ ହେଲା ଦେବତାଙ୍କ ଆଳେ
ଏ ସମୟେ ଭୀମ ପ୍ରାତଃକୃତ୍ୟ ଶେଷ କଲେ ।
ଭୁଞ୍ଜାବଢ଼ା କରି ତହିଁ ଭୋଜନ କରିଲେ ।
ଭୋଜନ ସାରି ଟିକିଏ ନେଲେ ଅବସର
ସୈନ୍ୟମାନେ ଇଚ୍ଛା ସୁଖେ କରିଲେ ଆହାର
ଜୟ ଜୟ ଜଗନ୍ନାଥ ଜଗତ ଜୀବନ
ଏ ସଂସାର ଖେଳସର ତୁମ୍ଭର ଭିଆଣ ।
ଏ ମାୟାରୁ ଉଦ୍ଧରିବ କାହାର ସାଧ୍ୟ ନାହିଁ
ତୁମ୍ଭର ଦୟା ହିଁ ମୂଳ ଅଟେ ଭବଗ୍ରାହୀ ।
ଏଣୁ ତୁମ୍ଭ ଚରଣରେ ପଶିଲି ଶରଣ
ଏ ଜଞ୍ଜାଳୁଁ ମୁକ୍ତ କର ଦଅ ଭକ୍ତିଧନ ।
ଏତିକ ପ୍ରାର୍ଥନା ତୁମ୍ଭ ପାଦେ ଆହେ ହରି
ଶାରଳା ଦାସ ଅଟଇ କୃପାର ଭିକାରୀ ।

---

## ଭୀମଙ୍କର ପୁଣ୍ଡରୀକ ବାସୁଦେବ ରାଜା ସହିତ ଯୁଦ୍ଧ ଓ ତାହାର ବନ୍ଧନ

ଏହା ଶୁଣି ମନୁରାଜା ଆନନ୍ଦିତ ହେଲେ
ମୁନିଙ୍କର ପାଦତଳେ ସାଷ୍ଟାଙ୍ଗେ ପଡ଼ିଲେ ।
ପୁଣି ଉଠି ବୋଇଲେକ କହ ମୁନିବର
ତହୁଁ ପୁଣ କାହିଁ ଗଲେ ବୀର ବୃକୋଦର ।
ଏହା ଶୁଣିଣ ଅଗସ୍ତି ରାଜାକୁ କହିଲେ
ଅମ୍ବୁ ରାଜାକୁ ଚଳାଇ ତହୁଁ ଭୀମ ଗଲେ ।
ସେଠାରୁ ଉତ୍ତମ ମୂର୍ତ୍ତି ହୋଇଣ ମାରୁତି
କରଷାର ଦେଶକୁ ସେ ଥାଟ ଚଳାବନ୍ତି ।
ତହିଁ କଉଶିକୀ ନାମେ ଅଛି ନଦୀ ଗୋଟି
ନୈଋତେ ମେଖଳାରୁ ସେ ଧାର ଆସେ ଫୁଟି ।
ଦକ୍ଷିଣ ସାଗରେ ଯାଇ ହୋଇଛି ସଙ୍ଗମ
ସେ ନଦୀକୂଳରେ ଯାଇ ପ୍ରବେଶିଲେ ଭୀମ ।
ବାଜଇ ବିଜୟଘୋଷ ଯେ ଦାଉଣ୍ଡି ଟମକ
ମେଦିନୀ କମ୍ପଇ ସ୍ୱର୍ଗେ ପଡ଼ିଲା ଚମକ ।
ସେହିଠାରେ ରହ ବୋଲି ବୋଇଲେ ପାବନି
ବିଶ୍ରାମ କରିବା ସର୍ବେ ରହିବେକ ଯେ ପୁଣି ।
ଭୀମଙ୍କ ଆଜ୍ଞାରେ ସର୍ବେ ସେଠାରେ ରହିଲେ
ଶୋଇ ବସି ରାତ୍ର ଗୋଟି ସୁଖେ ପୁହାଇଲେ
ପ୍ରାତେଃ ଭୀମ ସ୍ନାନ କଲେ ସେ ନଦୀଜଳରେ
ଦୂତେ ଜଣାଇଲେ ତେଣେ ରାଜାର ଆଗରେ
ପୁଣ ଦେବ କରଷାର ଦେଶ ଅଧିକାରୀ
ଦଣ୍ଡ ଘେନି କେଉଁ ରାଜା ଆସେ ବିଜେକରି
ସଙ୍ଗେ ରଥ ଗଜ ଅଶ୍ୱ ଅନେକ ପଦାତି
ମହାବଳବନ୍ତ ସେହୁ ଅଟେ ମହାରଥୀ ।
କୃତାନ୍ତକ ମୂରତି ସେ ଯମ ଦର୍ପଭଞ୍ଜା
ନମନ୍ତି ନେବାକୁ ଆସେ ପଶ୍ଚିମର ରାଜା ।

ଅସଂଖ୍ୟ ମହିମା ତାର ନ ସରେ କହନ୍ତେ
ବହୁଦେଶ ସାଧିକରି ଆସେ ଏକା ରଥେ ।
ଏହି ପଶ୍ଚିମ ଦିଗରେ ତୁମ୍ଭେ ଚକ୍ରବର୍ତ୍ତୀ
ଏଥିକି ବିସ୍ତର କାର୍ଯ୍ୟ କର ମହାମତି ।
ଉତ୍ତର ମୁଖୁ ବାରତା ପାଇ ପୁଣ୍ଡ୍ରରାଜ
କହେ ବୁଦ୍ଧି ମହୀପାଳ ମନ୍ତ୍ରିବର ମୁଖ ।
ଜାଣୁ କି ହୋ ମନ୍ତ୍ରି ଏହି କେଉଁଦେଶ ଥାଟ
ଏ ପଶ୍ଚିମ କୋଶଳରେ ଅଭସ୍ପ ମୋ ଗଷ୍ଠି ।
ରାଜାର ବଚନ ଶୁଣି ବୋଲେ ମନ୍ତ୍ରିବର
କେଉଁଦେଶ ଥାଟ ମୋତେ ନାହିଁ ଯା ଗୋଚର
ଏହା ଶୁଣି ଆଜ୍ଞା ଦେଲ କରସାର ନାଥ
ଯାଅ ହୋ ଅବରୋଧ କରି ତା ଆସିବା ପଥ ।
ରାଜା ବଚନେ ବାହାର ହେଲେ ଅମାତ୍ୟେ
ଆଜ୍ଞା ଦେଲେକ ସେ ସୋମଦତ୍ତ ସେନାପତେ
ସଜ ହୁଅ ଗଜ ଅଶ୍ୱ ରଥେ ପାରିଦଣ୍ଡ
ଉଗାଳ ନ ପଶୁ ଆମ୍ଭ ରାଜ୍ୟ ତାର ଦଣ୍ଡ ।
ରାଜାଜ୍ଞାରେ ବାହାରିଲେ ସର୍ବ ସେନାପତି
ମଣ୍ଡିଲେ ରଥ ସହିତେ ମତ୍ତହସ୍ତୀ ପନ୍ତି ।
ହୀରା ନୀଳା ମରକତ ମଣି ବଇଦୂର୍ଯ୍ୟ
ଏ ସବୁ ଖଞ୍ଜନ୍ତେ ରଥ ଦିଶେ ସୂର୍ଯ୍ୟତେଜ ।
ଝଲକେ ଲଙ୍କିଆ ଗୁରୁଜ ଦ ଅସିପକ୍ଷ
ରେ ରେକାର ଶବ୍ଦକରି ଧାଇଁଲେ ସମସ୍ତ ।
ତାଙ୍କ ଗହଳ ଶବଦେ କମ୍ପି ଗଲ ଭୂତ
ଶେଷ ଯୁଦ୍ଧକାଳେ ଯେହ୍ନେ ଡାକନ୍ତି ଭୈରବୀ
ସେହି ପ୍ରକାର ଚହ୍ଲାର ଘୋଡ଼ଣ କୌଣପେ
ଗମନ କରିଲେ ଉଦେଗିରିର ସ୍ୱରୂପେ ।
ଦଶ ଅରବୁଦ ରଥ ବିଂଶଲକ୍ଷ ହସ୍ତୀ
ତ୍ରିଂଶଲକ୍ଷ ଅଶ୍ୱ ତିନ ଅକ୍ଷଉଣୀ ପଦାତି ।
ପାଞ୍ଚଛଟ ଆଲମ୍ବ ଯେ ଅନେକ ଉଦଣ୍ଡ
ସଂଗ୍ରାମକୁ ବାହାରିଲେ ଶତ ପାରିଦଣ୍ଡ ।
ଭୀମସେନ ରହିଛନ୍ତି ନଦୀ ପୂର୍ବଭାଗେ
କରସାର ଥାଟ ମିଳେ ପଶ୍ଚିମର ଭାଗେ ।
ମୁଖତୋଳ ଶବ୍ଦ ଶୁଣି ବୁଦ୍ଧି ଭୀମସେନ
ଦେଖିଲେ ନଦୀ ସେପାରେ ଅନେକ ସଇନ୍ୟ
ରେ ରେକାର ଶବ୍ଦ କରି ଯୋଦ୍ଧାଏ ଗର୍ଜନ୍ତି
ଅଶ୍ୱମାନଙ୍କୁ ଖେଦାଇ କୋପରେ ପିଟନ୍ତି ।

ଖେଦାଇ ଖତାଇ କରି ମଜୁଆଳ ନାଟ
ଦେଖି ରାଗେ ମାରୁତଙ୍କ କମ୍ପିଲ ମୁକୁଟ ।
ଉପରକୁ ଡିଆଁ ଇଣ ଧରେ ଗଦା ଦେବ
ନଦୀର ଭିତରେ ଡେଇଁ ପଶିଲ ପାବନ ।
ସେ ନଦୀର ଗଭୀର ଯେ ଅଟେ ତାଳ ତିନ
ପଶନ୍ତେ ମାରୁତିଙ୍କ ଯେ ହେଲ ଆଣୁ ଆଣି ।
ପୁଣ୍ଡ୍ରରାଜ ବାସୁଦେବ ପକ୍ଷ ଯେତେ ଯୋଧୀ
ନଦୀ ସେପାରେ ଥାଇଣ ଭୀମେ ଶର ବିନ୍ଧି ।
ବରଷାଋତୁରେ ଯେହ୍ନେ ବରଷଇ ନୀର
ତେସନ ପରାସ୍ତେ ସାର ବିନ୍ଧୁଛନ୍ତି ଶର ।
ସେ ନଦୀ ପୂରିଲ ତହିଁ ହେଉ ଶରବୃଷ୍ଟି
ଭୀମଙ୍କ ଶରୀରେ ଶର ଗୋଟିଏ ନ ଫୁଟି ।
ନଦୀ ପାରହୋଇ ବୀର ଉଠେ ଗଳଗାଜ
କରସାର ସଇନ୍ୟ ପଳାଇଲେ ଲାଜ ।
କାଳଚକ୍ର ନୟନରେ ଚାହିଁ ବୃକୋଦର
ହାସେ ପଳାଇଲେ କେହି ନ ରହି ସମ୍ମୁର ।
ଏକା ମାରୁତି ଅଛନ୍ତି ପଶ୍ଚିମର କୂଳେ
ଭୀମଙ୍କ ସୈନ୍ୟ ଡେଇଁଣ ପଡ଼ିଲେ ଯେ ଜଳେ
ଅଗାଧଜଳ ଯେ ଥିଲ ହୋଇଗଲ ସ୍ଥଳ
ପଶି ରମିଲେ ସଇନ୍ୟ ହେଲେ ଆକୁଳ ।
ସଂଗ୍ରାମରେ ବୃକୋଦର ପଶିଅଛି ଏକା
ଅସଂଖ୍ୟ ସଇନ୍ୟକ ତା ମନେ ନାହିଁ ଶଙ୍କା ।
ସୁରବର ସୁନ୍ଦର ସେ ଭୀମ ମହାବଳୀ
ରଥମାନଙ୍କୁ କଚାଡ଼େ ବାମକରେ ତୋଳି ।
ଏକ ରଥ ଘେନି ଅନ୍ୟ ରଥପରେ ପିଟି
ଗଜ ଅଶ୍ୱ ପଦାତି ଯେ ମହୀପରେ ଲୋଟି ।
ବଜସ୍ତୁ କଲ କି ଆସି ଶମନପୁରୁଷ
ସେକାଳେ ମନର ଭୁଲ୍ଲ ତା ଦେହ ପ୍ରକାଶ ।
ଗିରିବରେ ଅସ୍ତ୍ର ପଡ଼େ ଯେହ୍ନେ ଚୂନାହୁଏ
ତେହ୍ନେ ଖର୍ଷ୍ଣ ଅସ୍ତ୍ର ଅଙ୍ଗେ ପଡ଼ି ଭୀମକାୟେ
ଶତଶୃଙ୍ଗ ପ୍ରସନ୍ନେ ଯା ବଜ୍ରଅଟେ କାୟା
ନାନା ଅସ୍ତ୍ରମାନଙ୍କୁ ସେ ଅଟଇ ନିର୍ଭୟା ।
ଅନେକ ସଇନ୍ୟ ତାର ମାଇଲ ଗୋଡ଼ାଇ
ଶରଣ ପୁକାରନ୍ତି ଯେ ମୁଖେ କର ଦେଇ ।
ନନ୍ଦସ୍ୱ ପାଣ୍ଡବ ସୈନ୍ୟ ମଧ୍ୟେ ପଶି ରଣେ
ଦଶସହସ୍ର ରଥୀଙ୍କି ମାଇଲ ସେ ଜଣେ ।

ଗଜ ଅଶ୍ୱ ପଦାତି ଯେ ନ ଯାଇ କଳନ
ସୈନ୍ୟ ମାଏଣ୍ଡା ପାଡ଼ିଲେ ଚଉଦ ଯୋଜନ ।
ଚଳାଇ ସୈନ୍ୟ କହିଲେ ରାଜାର ଅଗ୍ରତେ
ହେ ରାଜା ବିପଦ ଆସି ପଡ଼ିଲାକ ତୋତେ ।
ଅନେକ ସଇନ ତୋର ମାଇଲା ସେ ଜଣେ
ପ୍ରତ୍ୟକ୍ଷେ ଶମନ କି ସେ ହରେ କଲାରଣେ ।
ବିନାଶକାଳକୁ ଦେବ ନ ଫୁରଇ ବୁଦ୍ଧି
ଅଦୋଷରେ ନ ହରନ୍ତୁ ଏଡ଼େ ବଡ଼ ଆଧି ।
ଧାର୍ମିକ ନୃପତି ତୁମ୍ଭ ଅଟ ମହାବଙ୍କ
ଶୂରବନ୍ତ ପୁରୁଷ ତୁ ବିବେକ ଏବଙ୍କ ।
ହରେ ନାରାୟଣ ତୁମ୍ଭ ପଶ୍ଚିମ କୋଶଳେ
ତୋ ସମାନେ ରାଜା କେହ୍ନ ନାହିଁ ରବିତଳେ
ଅକସ୍ମାତେ ଏ ଉତ୍ପାତ ହେଲା ଅହେ ଦେବ
ବୁଝି କାର୍ଯ୍ୟ କର ଆହେ କରବୀର ଧବ ।
ଏହ୍ନପର ନରଧାର ବାକ୍ୟ ଶୁଣି ରାୟ
ବୋଲେ ମୂର୍ଖ ମହାରାଜା କର୍ପା କର ଭୟ ।
ପ୍ରତିଜ୍ଞା କଲି ମୁଁ ବାସୁଦେବଙ୍କ ବିରୋଧୁ
ମର୍ତ୍ତ୍ୟ ସର୍ବ ରାଜପୁରେ ମହିମା ମୋ ସାଧୁ ।
କହୁଁ କହୁ ସେ ରାଜାର ପ୍ରତିଜ୍ଞା ବଢ଼ିଲା
ବେଗେ ଦଣ୍ଡ ସାଜ ବୋଲି ମନ୍ତ୍ରୀକୁ କହିଲା ।
ରାଜାର ବଚନେ ମନ୍ତ୍ରୀଆଦି ସର୍ବସାରେ
ସଜ ହେଲେ ରାଜା ହରେ ଗରୁଡ଼ ପିଠରେ ।
ଶଙ୍ଖ ଚକ୍ର ଗାଣ୍ଡୀବାଦି ଅସ୍ତ୍ରମାନ ସେନ
ପ୍ରତ୍ୟକ୍ଷେ ଦିଶେ କୃଷ୍ଣଙ୍କ ଶୋଭା ଜ୍ୟୋତି ଜାଣି
ଲକ୍ଷେକ ପାଟହସ୍ତ ଯେ ରଖି ବେନି ପାଖ
ଏଡ଼େ ସମ୍ଭବେ ବିଜୟ କଲା ପୁଣ୍ଡ୍ରରାଜ ।
ସୁରଶତ କୋଟି ହସ୍ତୀ ବିଂଶକୋଟି ରଥୀ
ତ୍ରିକୋଟି ଅଶ୍ୱ ଦ୍ୱାଦଶ କ୍ଷଉଣୀ ପଦାତି ।
ଦଶଲକ୍ଷ ତୁରଗ ଯେ ଆଗରେ ଧରାଇ
ମହାସମ୍ଭବରେ ବିଜେ କରିବାର ସାଇଁ ।
ବାଜେ ବାରତୂର ଢୋଲ ଉଡ଼ଇ ନିଶାଣ
ନିର୍ଘାତ ସଦୃଶ ସେହ୍ନ ବାଜୁଛନ୍ତି ବାଣ ।
ସେ ଶବଦେ କମ୍ପମାନ ହୁଏ ତିନିପୁର
ରଣଧାନ୍ଦୋଳା ବାରଧି ଅଟେ ମହାବୀର ।
ସୈନ୍ୟ ସଜାଇଣ ଥାଏ ନାନା ରତନରେ
ରଥୀ ରଜଚାଦଙ୍କର ମୁକୁଟ ଶିରରେ ।

କୋଟି ଅର୍ବୁଦ ସୈନ୍ୟ ଉପରେ ରାଜା ଯେହ୍ନ
ସହସ୍ରେ ଶାର୍ଦ୍ଦୂଳ ରଥେ ଯୋଚାଥାଏ ସେହ୍ନ ।
ଲକ୍ଷେ ରାଜାଙ୍କ ଭଣ୍ଡାରେ ଯେତେ ଥିବ ଧନ
ପୁଣ୍ଡ୍ରରାଜ ମୁକୁଟକୁ ନୋହିବ ସମାନ ।
ଦୈତ୍ୟ ଦାନବ ସଂଗ୍ରାମେ ଅଟେ ସେ ନିର୍ଭୟ
ବିନ୍ଧ୍ୟଗିରି ସମାନରେ ଅଟେ ତାର କାୟ ।
ଶକଟରେ ରଥ ରଥପରେ ଖଗଧ୍ୱଜ
ସେ ଖଗେ ବିଜୟ ପୁଣ୍ଡ୍ରରାଜ ମହାରାଜ ।
ପଶ୍ଚିମ କୋଶଳ ରାଜାଙ୍କର ଅଟେ ଗୁରୁ
ଆସନ୍ତେ ଭୀମ ଦେଖିଲେ ତାହାକୁ ଦୂରରୁ ।
ଦେଖି ଅପସରଇ ସେ ପବନ ତନୟେ
ସାରଥିକୁ ବୋଲେ ହରେ କଲେ ଦେବରାୟେ
ସାରଥି ବୋଇଲା ଶୁଣ ପବନର ବତ୍ସ
ବାସୁଦେବ ଚିହ୍ନ ବହେ ଏହ୍ନ ପୁଣ୍ଡ୍ରରାଜ ।
କାଠ ବେନି ଭୁଜେ ଯେହ୍ନ ଶଙ୍ଖ ଚକ୍ର ଧରି
କୃଷ୍ଣେ ନନ୍ଦେ କାଠ ଖଗପୃଷ୍ଠେ ବିଜେକରି ।
ବଡ଼ ପ୍ରତାପୀ ହିକାକ ବାସୁଦେବ ବଳା
ଜଗନ୍ନାଥଙ୍କ ସ୍ୱରୂପେ ବର୍ଣ୍ଣ ଦିଶେ କଳା ।
ଭୀମସେନ କୋପ କଲେ କୃଷ୍ଣ ନିନ୍ଦା ରୋଷେ
ନଷ୍ଟେଁ ପୁଣ୍ଡ୍ରରାଜ ଯିବ ନାଶକର ପାଶେ ।
ଜଗନ୍ନାଥ ନିନ୍ଦୁକକୁ ରଖି ତ କି ପାରି
କୃଷ୍ଣଙ୍କର ଶତ୍ରୁ ଯେହ୍ନ ଆମ୍ଭର ବଇରି ।
ପାଣ୍ଡବେ ସପକ୍ଷ ସେହ୍ନ ଅଟେ ଦୟାନିଧି
ମୁଁ ଏହାକୁ କେମନ୍ତେ ଥୋଇବି ଏ କୃଷ୍ଣ ବିରୋଧି
ଭୀମ କୋପ ଦେଖି ବୋଲେ ମରୁତ ସାରଥି
ଏହାର ବଂଶର କଥା ଶୁଣ ହୋ ମାରୁତି ।
ହିକାଳ ବାସୁଦେବର ସୁତ ଅଟେ ଏହ୍ନ
ଅନନ୍ତ ବାସୁଦେବର ନାତି ଏ ଅଟଇ ।
ପ୍ରତ୍ୟେକ ନୃପତି ଏକ ଅନାଦିଙ୍କ ବଂଶୀ
ଜନ୍ମେ ଜନ୍ମେ ଏ କୃଷ୍ଣଙ୍କଠାରେ ସଦା ଦୋଷୀ
ଅନଙ୍ଗ ବାସୁଦେବ ଯେ ଏହାଙ୍କର ବଂଶେ
ତୈତିଳ ଅପସରୀକୁ ରମିଲା ଆକାଶେ ।
ତ୍ରୈଲୋକ୍ୟ ବାସୁଦେବ ତା ପୁତ୍ର ହୋଇଲା
ତ୍ରୈଲୋକ୍ୟର ଏକପୁତ୍ର ସଦାଶିବ ହେଲା ।
ଏହାର ନନ୍ଦନ ସୁରସିଦ୍ଧ ବାସୁଦେବ
ଏହା ପୁତ୍ର ପଦ୍ମଦେବ ଯା ପୁତ୍ର ପୁଣ୍ଡ୍ରକ ।

ଏହାର ନନ୍ଦନ ସଦାଶିବ ପଦ୍ମକର
ବାସୁଦେବ ବୋଲି ପୁତ୍ର ହୋଇଲା ଏହାର ।
ଅନଙ୍ଗ ନାମେ ହୋଇଲା ବସୁଦେବ ବଳା
ଅନଙ୍ଗ ଭାର୍ଯ୍ୟା ବାବହି ଅଟେ ସତ୍ରକଳା ।
ସୁଦର୍ଶା ସୁଲକ୍ଷଣା ତା ରୂପ ନିନ୍ଦେ ଶଶୀ
ନିତ୍ୟ ମନ୍ତ୍ର ପଢ଼ି ବେଣୁ ବାଇ ତୋଷେ କାଶୀ
ସପତସ୍ୱର ସେ ବେଣୁ ପିନାକୀ ଅଧାତି
କେଦାର ମହାଲିଙ୍ଗଙ୍କ ପାଦେ ଥାଏ ଭକ୍ତି ।
କର୍ଣ୍ଣବେଣୀ ସ୍ନାନ ଯାଏ ତାଙ୍କ ଦରଶନେ
ପତିବ୍ରତା ସ୍ତ୍ରିଶା ସେହୁ ନ ଭଜଇ ଆନେ ।
ବଇଶାଖ ଶୁକ୍ଳପକ୍ଷ ଶୁକ୍ରବାର ଚୌଠି
ଗ୍ରୀଷ୍ମ ଋତୁରେ ଆର୍ଦ୍ରା ନକ୍ଷତ୍ର ପଇଠି ।
ପାକାଶୁଦ୍ଧ ସ୍ନାନ ହେବ ସେ ଦିନ ସେ ବାଳୀ
ବିଶ୍ୱନାଥ ଦର୍ଶନରେ ଚଳେ ମଧ ତଳ ।
ବଜ୍ରକବଚ ବୋଲିଣ ଏକ ରକ୍ଷପତି
ନିବାତ କବଚର ସେ ଅଟେ ଗଣନାନ୍ତ ।
ସ୍ତ୍ରୀପ୍ରବ୍ରତ ପାଳଣ ସେ ଆସେ ସତ୍ରକଳା
ହର ପଞ୍ଚଟେ ଦେଖିଲା ସେ ଅସୁର ବଳା ।
ଦେଖି କାମରୂପୀ ଦୈତ୍ୟ ତେଜି ନିଜ କାୟ
କପଟେ ହେଲା ଅନନ୍ତ ବାସୁଦେବ ପ୍ରାୟ ।
ବିଶ୍ୱନାଥଙ୍କୁ ସେବିଣ ଲେଉଟେ ଯୁବତୀ
ସନ୍ଧ୍ୟାକାଳଗତେ ଅଳ୍ପ ହୋଇଥିଲା ରାତି ।
ହସ୍ତରେ ଖଟ୍ୱାଙ୍ଗ ଏକ ଘେନ କଣ୍ଡଣପ
ସତ୍ରକଳାକୁ ଭେଟିଲା ଧରି ମାୟାରୂପ ।
ଦେଖିଲା ସୁଦର୍ଶା ନେତ୍ରେ ପଥେ ନିଜ ସ୍ୱାମୀ
ନିଜର ବଲ୍ଲଭ ମଣି ତକ୍ଷଣେ ପ୍ରଣମି ।
ଅଧର ସ୍ପର୍ଶ କରିଣ ବୋଇଲା ଚଣ୍ଡାଳ
କାହିଁ ରହିଥିଲୁ ଭୁଞ୍ଜ ହେଲା ରାତକାଳ ।
ନିଜ ସ୍ୱାମୀ ମଣି ଭୟ କରିଲା ଯୁବତୀ
ବୋଲେ ପୂଜା ମାଗୁଥିଲି ବିଶ୍ୱନାଥ କତି ।
ମନୁମନ୍ତ୍ରଗିର ଜାବନ୍ୟାସ ଚେଟଚଳେ
ଦୁରନ୍ତ ଅସୁର ତାକୁ ଧଇଲେକ କୋଳେ ।
ବର୍ଣ୍ଣି ଦିଶଇ ଅନନ୍ତ ବାସୁଦେବ ପ୍ରାୟ
ରୂପ ଦେଖିଣ ସୁଦର୍ଶା ସମର୍ପିଲା କାୟ ।
ରକ୍ଷସର ଶୃଙ୍ଗାର ସେ ହୋଇଲା ବହୁତ
ବୋଲେ ମୋ ସ୍ୱାମୀର ଭବ ନୁହେଁତ ଏମନ୍ତ ।

ରସେ ଶୃଙ୍ଗାର ସହିତ କଷ୍ଟେ ରସକଳା
ଗ୍ରହିଲା ମହାବୀର୍ଯ୍ୟ ସେ ଦୈତ୍ୟ ମହାବଳା ।
ବହୁତବେଳେ ସୁଦର୍ଶା ପାଇଲାକ ଜ୍ଞାନ
ଅନ୍ତଃପୁରେ ପରବେଶ ହେଲା ସେହିକ୍ଷଣ ।
ମନ୍ତ୍ରିତ ସାରଥି ବୋଲେ ଶୁଣ ବାୟୁବଳା
ଦୈତ୍ୟବୀର୍ଯ୍ୟେ ସେ ପୁତ୍ରକୁ ଜନ୍ମ କଲା ବାଳା ।
ଦେଖିଣ ଅନନ୍ତରାଜ ଅତିତୁଷ୍ଟ ହୋଇ
ଅନେକ ସେ ଦାନ ଦେଲା ଦ୍ୱିଜଙ୍କୁ ଡକାଇ ।
ପୁରେ ଉତ୍ସବ କରାଏ ହୋଇ ହର୍ଷମତି
ଯେ ଯାହା ମାଗଇ ଦିଏ ଦୟାକରି ମତି ।
ହିକାଳ ବିଶ୍ୱନାଥଙ୍କୁ ସେବି ଲଭୁଁ ବଳା
ହିକାଳ ବାସୁଦେବ ତା ନାମ ରଜା ଦେଲା ।
ଯଦ୍ୟପି ଜନମିଲା ସେ ବିଷ୍ଣୁଙ୍କର ବଂଶେ
ରାକ୍ଷସକଳା ହୋଇଲା ମନ୍ଦବୀର୍ଯ୍ୟ ଦୋଷେ ।
ରାକ୍ଷସମାନେ ସବଦା ବିଷ୍ଣୁଙ୍କ ବଇରୀ
ଅନନ୍ତ ଅବତାରେ ଏ ଅଟେ ଚକ୍ରଧାରୀ ।
ହିକାଳର ପୁତ୍ର ପୁଣ୍ଡରୀକ ବାସୁଦେବ
ଏହି ଯେ ବହିଲା ହାଦେ ଅସୁର ସ୍ୱଭାବ ।
ଅସୁର ନିଧନେ ଜାତ ପ୍ରଭୁ ଦାମୋଦର
ପଶ୍ଚାତେ ଏହାକୁ ସେହୁ କରିବେ ସଂହାର ।
ତୁ କର୍ଣ୍ଣ ଏହାକୁ ବଧ କରିବୁ ସମରେ
କୃଷ୍ଣ ଯା ବିଷ୍ଣୁରଂକ ସେ ରାଜସୂୟ ସଭରେ ।
ଯଦି ଏହାକୁ ମାରିବୁ ଭୁଞ୍ଜ ଭୀମସେନ
ରାଜା ସୈନ୍ୟ ଗଢ଼ିବାକୁ ବହୁ ଲୋଡ଼ା ଧନ ।
ଭୀମ ବୋଲେ ପ୍ରଭୁଙ୍କୁ ଏ କରଇ ଅବଜ୍ଞା
ମୋ ଦେହେ ସହି ନୁହଇ ଏସନ ପ୍ରତିଜ୍ଞା ।
ଏହାକୁ ବଧିଲେ କୃଷ୍ଣ ହୋଇବେ ସାନନ୍ଦ
ଯାତସ୍ଥାନେ ଏହାଯୋଗେ ନ ହୋଇବ ଦ୍ୱନ୍ଦ୍ୱ
ସୂତ ବୋଲେ ରଜାଙ୍କର ବହୁ ଅବଗୁଣ
ଦୋଷ ବାଛିଲେ କି କରି କରିବ ବରଣ ।
ଯଦ୍ୟପି କୃଷ୍ଣଙ୍କଠାରେ ଏ ଦୋଷୀ ହୋଇଛି
ପୃଥ୍ୱୀଶ୍ୱର ସ୍ୱାକୁ କର୍ଣ୍ଣ ପ୍ରଭୁ ଦେଇଛନ୍ତି ।
ତରାଇ ଏହାକୁ ଆମ୍ଭେ ଯେ ପ୍ରକାରେ ସାଧି
ପ୍ରାଣେ ନ ମାରିଣ ଯ୍ୱାକୁ ନେଇଯିବା ବାନ୍ଧି ।
ଶୁଣିଣ ଆନନ୍ଦ ହେଲେ ହିଡ଼ମ୍ବିକା ନାହା
ବୋଲେ ପଣ୍ଡୁରାଜ ପାଖେ ବେଗେ ରଥବାହା

କ କ ବୋଲଇ ବୁଝିବା ସ୍ଥଳ ଆଗେ ଦେଖି
ଝର୍ପା ସୈନ୍ୟଙ୍କୁ ମାରିବା ଏ ସର୍ବେ ନିର୍ମାକ୍ଷୀ ।
ଭୀମବାକ୍ୟ ସୂତ ବେଗେ ବାହିଲାକ ରଥ
ଅନ୍ତରୀକ୍ଷେ ଚଳି ଗୁଡ଼ି ସଇନ ସମସ୍ତ ।
ପୁଷ୍ପକ ରହିଥିଲା ନନ ମଧ୍ୟ ଥାଟ
ଭୀମ ବଳେଇର ଯାଉଁ ପଥେ ହେଲେ ଭେଟ ।
ଯେସନ ପ୍ରକାରେ ଉଡ଼ି ଯାଆନ୍ତି ପବନେ
ତେସନେ ସଇନ ପଡ଼ିଲେ ଭୀମ ଗଦାଘାତେ ।
ବହୁତ ଦୂରେ ପଡ଼ିଲେ ସର୍ବେ ଉଡ଼ିଯାଇ
ପୃଷ୍ଠରେଣ ଗୁଡ଼ି ସୈନ୍ୟ ଗଲେକ ପଳାଇ ।
ରଥ ଚେଳଣ ପାଣ୍ଡବ ଧାଇଁ ଧାଙ୍କାରେ
ଡେଇଁଣ ଚଢ଼ିଲା ତାର ରଥର ଉପରେ ।
କୋପେ ପ୍ରହାରିଲା ଗଦା ତହୁଁ ଭୀମ ତୋଳି
ଛାଟର ଗରୁଡ଼ ଭାଙ୍ଗି ହୋଇଲାକ ଧୂଳି ।
ରଥ ଶକଟ ଭାଙ୍ଗିଣ ତାର ଧୂଳି ହେଲା
ବାମହସ୍ତରେ ତା କେଶ ମାରୁତି ଧରିଲା ।
ଯେତେବେଳେ ଭୀମ ତାର କେଶକୁ ଧଇଲେ
ବଜ୍ରାବଳୀ ଗଦା ପିଟେ ତାର ବକ୍ଷସ୍ଥଳ ।
ଭୀମ ଅଙ୍ଗେ ବାଜଇ ତାର ଗଦାବର
ଭାଙ୍ଗିଣ ପଡ଼ିଲା ତଳେ ହୋଇ ଶତେଚୂର ।
ପୁଣି ପ୍ରହାର କରିଲା ରଜା ଅସିବର
ଖଡ଼ଗ ଉଚୁଡ଼ି କରି ନେଲା ବୃକୋଦର ।
ବାମକରେ କେଶ ଖଡ଼୍ଗ ଧରି ଦକ୍ଷପାଣି
ବୋଲଇ ଏହାର ଶିର ପକାଇବି ହାଣି ।
ମରୁତ ସ ରଥି ତ ର ଧଇଲାକ ହସ୍ତ
ରହ ରହ ବୃକୋଦର ନ କର ତୁ ହତ ।
ସାରଥି ବାକ୍ୟେ ବଞ୍ଚାଇ ଭୀମ ସେ ଖଡ଼ଗ
କେଶ ଧରିଣ ଟିଙ୍କନ୍ତି ନୋହି ଶାନ୍ତ ରାଗ ।
ଭୟେ ପଳାଇଲେ ତହୁଁ ଯୋଦ୍ଧା ଅମାତ୍ୟ
ଶରଣ ପଶିଲେ ଯାଇ ଭୀମ ପାଦତଳେ ।
ବାରସନ୍ତ୍ର କ୍ଷୌଣୀ ବଳ ଶସ୍ତ୍ରକୁ ପକାଇ
ତ୍ରାହି ତ୍ରାହି ବୋଲନ୍ତି ଯେ ମୁଖେ କର ଦେଇ
ବିନୟ ହୋଇ କହଇ ମରୁତ ସାରଥି
ଏ ରଜାର ହତେ କୋପ କରିବାକୁ ଶାନ୍ତ ।
ଜୀବନ ଚର ନୁହଇ ବୁଝ ମହାତମା
ଯୁଗେ ଯୁଗେ ଲୁହାଷ ତୁ ତୋହର ଗରିମା ।

ଆହେ ଭୀମ କ୍ଷମାଗୁଣେ କର କ୍ଷମା ଦାନ
ସଂସାରେ ସ୍ତୁତିବ ସଦା ତୋତେ ଧନ୍ୟ ଧନ୍ୟ
ଏ ଯେ ବିନୟ ହୁଅନ୍ତି ତୋତେ ସୈନ୍ୟମାନେ
ଧର୍ମ ଉଦେ ହେଉ କୋପ ତେଜ ଭୀମସେନେ ।
ଶରଣ ରକ୍ଷଣ ତୁମ୍ଭ କଥା ଜଗଜ୍ଜେଠ
ତ୍ରୈଲୋକ୍ୟ ବିକାଶିଲାଣି ତବ ନାମଗୋଷ୍ଠି ।
ଭୀମ ବୋଇଲେ ଛାଡ଼ିଲି ମୁଁ ତୋହର ବୋଲେ
ପ୍ରାଣେ ରକ୍ଷା କଲି ସୈନ୍ୟେ ଯାଆନ୍ତୁ ସକଳେ
ରଜାକୁ ରଥେ ବାନ୍ଧି ମୁଁ ନେବଇଁ ଅବଶ୍ୟ
ବନ୍ଧନ ଯାର ଦେଖନ୍ତୁ ଯଜ୍ଞେ ହୃଷୀକେଶ ।
ଏହା କହି ରଜା କେଶ ଗୁଡ଼ି ପାଟଡ଼ୋରେ
ବନ୍ଧନ କଲେ ତାହାକୁ ରଥର ଖମ୍ବରେ ।
ତାହାର ପାରିଦଣ୍ଡକୁ ଭୀମ ଆଜ୍ଞା ଦେଲେ
ଅକ୍ଷତ ଗୁଆ ଦେଇଣ ଶାଢ଼ୀ ବନ୍ଧାଇଲେ ।
ବୋଇଲା ଯୋଦ୍ଧାଙ୍କୁ ତୁମ୍ଭେମାନେ ସୈନ୍ୟଘେନ
ଇନ୍ଦ୍ରପ୍ରସ୍ଥେ ଚଳ ଶୀଘ୍ରେ ଦିବସ ରଜନୀ ।
ସୈନ୍ୟ ସକଳ ବୋଲନ୍ତି ଭୀମଙ୍କୁ ପ୍ରଣମି
ଆମ୍ଭ ରଜାଙ୍କ ବନ୍ଧନ ଫେଡ଼ିବାକ ସ୍ୱାମି ।
ଭୀମସେନ ବୋଲେ ତୁମ୍ଭେ ନ କହ ଏମନ୍ତ
ତୁମ୍ଭ ରଜା ନ ମାରିବ ଏ ମୋ ସତ୍ୟ ସତ୍ୟ ।
ରଥେ ବନ୍ଧନ ହୋଇଣ ବୋଲେ ବାସୁଦେବ
ମୂର୍ଖ ଜାଣି ନ ପାରିଲି ବିଜୟ ପାଣ୍ଡବ ।
ସ୍ୱାମି ନ ଜାଣିଣ ଦ୍ରୋହ କଲି ଅନମିତେ
ପ୍ରତ୍ୟକ୍ଷେ ଫଳିଲା ଫଳ ଅର୍ଜିଲି ସ୍ୱହସ୍ତେ ।
ପଞ୍ଚାଶ ସହସ୍ର ରଜା ଛନ୍ତି ପଶ୍ଚିମରେ
କାହାକୁ ବନ୍ଧନ ଦେବ କରିଛ ରଥରେ ।
ମୋହର ଦୋଷ ମୋଚନ କର ମହାବୀର
ଦଣ୍ଡ ଘେନ ଏହିକ୍ଷଣ ଯିବ ଆଜ୍ଞା କର ।
ଭୀମସେନ ବୋଲେ ତୋର ଏତେକ ଗରବ
କୃଷ୍ଣଙ୍କ ସମ ବୋଲଇ ତୁମ୍ଭ ବାସୁଦେବ ।
ବାସୁଦେବଙ୍କ ପ୍ରଭୁଙ୍କୁ ନେବି ତୋତେ ଧରି
ସେ ତୋତେ ଦଣ୍ଡନ୍ତୁ ଅବା ଛାଡ଼ନ୍ତୁ ବିଚାରି ।
ସୈନ୍ୟଙ୍କୁ ବୋଧି ପେଷିଲା କରିଗାର ପତି
ବନ୍ଧନେ ରହିଲା ରଜା ଦୁଃଖକରି ଅତି ।
ଜୟ ଜୟ ମହାପ୍ରଭୁ ଶରଣ ସୋଦର
ଜୟ ଜୟ ମହାପ୍ରଭୁ ଶଙ୍ଖ ଚକ୍ରଧର ।

ଅଗତିର ଗତି ତୁମ୍ଭେ ଦୁଷ୍ଟ ଗର୍ବହାରୀ
ଶାରଳା ଦାସର ପ୍ରଭୁ ସେବନ୍ତୁ ଗୁହାରି ।

---

## ଗଣପତି ଓ ରୁଦ୍ରଦେବ ରାଜାଙ୍କୁ ନିମନ୍ତ୍ରଣ

ଏଥୁଅନ୍ତେ ମନୁରାଜା ଯୋଡ଼ି ବେନିକର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛା କଲେ କହ ମୁନି ତହୁଁ ରାମସେନ
ପୁନଶ୍ଚ କେଉଁ ରାଜ୍ୟକୁ କରିଲେ ଗମନ ।
ରାଜାର ବିନୟ ଭାବ ଦେଖିଣ ଅଗସ୍ତି
ବୋଇଲେକ ଶୁଣ ରାଜା ସ୍ଥିରକରି ମତି ।
କରଣୀର ଦେଶ ଜିଣି ଚଳେ ବୀରମଣି
ନର୍ଣ୍ଣିରଦେଶେ ପ୍ରବେଶ ହୋଇଲେକ ପୁଣି ।
ସେ ରାଜ୍ୟର ନରପତି ଅଟେ ଗଣପତି
ତହିଁ ଯାଇଣ ପ୍ରବେଶ ହୋଇଲେ ମାରୁତି ।
ଦେଶାନ୍ତର ଜଣାଇଲେ ରାଜା ସନ୍ନିଧାନ
ପଶ୍ଚିମେ ବଳି ଆସଇ ଜଗବନ୍ଦନ ।
ପୁଣ୍ଡରୀକ ନରପତି ଜଣେ ମନ୍ଦବୁଦ୍ଧି
ତାହାକୁ ସେ ରଥଖମ୍ବେ ରଖିଅଛି ବାନ୍ଧି ।
ଶୁଣିଣ ସାନନ୍ଦ ହେଲେ ଗଣପତିରାଜେ
ମୁହିଁ ଜାଣିଛି ପଶ୍ଚିମ ଦିଗେ ରାମ ବିଜେ ।
ପାତ୍ର ଅମାତ୍ୟଙ୍କୁ ଡାକି ବୋଇଲେ ଝଟତି
ପୁରେ ଉତ୍ସବ କରାଅ ବୋଲି ଗଣପତି ।
ହାଟ ବାଟ ପହଁରାଇ କରାଅ ନିର୍ମଳ
ଦ୍ୱାରେ ଦ୍ୱାରେ ରମ୍ଭାତରୁ ରୋପନ୍ତୁ ସକଳ ।
ସର୍ବଘର ଚୂଳଘରେ ସୁବର୍ଣ୍ଣ କଳସ
ନାନା ଭଙ୍ଗିର ପତାକା ଉଡ଼ାଅ ବିଶେଷ ।
ଶତପୁତ୍ରଙ୍କୁ ନେଇଣ ନର୍ଣ୍ଣିରର ପତି
ହସ୍ତେ ଚାମର ଘେନିଣ ଆସେ ତୋଷମତି ।
ସ୍ତିରୀ ପୁରୁଷ ଅଟନ୍ତି ଯେତେକ ମୋ ରାଜ୍ୟେ
ଅଳଙ୍କାରେ ଭୂଷା ହୋଇ ଆସ ମୋର କାର୍ଯ୍ୟେ
ବିଷ୍ଣୁ ନିରଞ୍ଜନ ଯେ ବିଜୟେ ମୋ ପୁରୀ
ଦର୍ଶନେ ସମସ୍ତ ପାପ ଯିବ ଅପସରି ।
ରାଜାର ଆଜ୍ଞାରେ ଶୀଘ୍ର ଚଳିଲେ ସଇନ
ଦିବ୍ୟବାସ ଅଳଙ୍କାରେ ହୋଇଲେ ମଣ୍ଡନ ।
ଚାମର ଛତ୍ର ଉଦଣ୍ଡ ଘେନିଣ ପ୍ରସ୍ଥାଣେ
ମହାସମ୍ଭ୍ରମେ ଆସନ୍ତି ରାଜା ସୈନ୍ୟମାନେ ।
ନବଶତ ପାଶ୍ୱଦଣ୍ଡ ସୈନ୍ୟ ବଂଶ କ୍ଷୌଣୀ
ଏତେକ ଖଟନ୍ତି ସେହି ମହା ନୃପମଣି ।
ରଥ ମାତଙ୍ଗ ସଙ୍କୁଳ ପରାର୍ଦ୍ଧ ଖଟଇ
ପନ୍ଦରଶତ ଯୋଜନେ ଯେ ପ୍ରଭୁ ଅଟଇ ।
ପଶ୍ଚିମ କୋଣରେ ଯେହୁ ମହାଗରୁହଂସି
ସବୁଙ୍କଠାରୁ ଅସାଧ ଗଣେଶଙ୍କୁ ତୋଷି ।
ବହୁ ଉତ୍ସବ କରାଇ ନର୍ଣ୍ଣିରର ରାଜା
ଶ୍ରୀ ଲମ୍ବୋଦର ସ୍ୱାମିଙ୍କୁ କରଇ ସେ ପୂଜା ।
ଅନେକ ଉପହାର ସେ ବହୁ ଭୋଗମାନ
ରାମ ଶାନ୍ତିଅର୍ଥେ ଦେଇ ତୋଷି ଗଜାନନ ।
ରାମ ବିଜେ କରିଛନ୍ତି ନର୍ମଦାର କୂଳେ
ରାଜା ଦର୍ଶନ କରିଲେ ପ୍ରାତଃସ୍ନାନବେଳେ ।
ସସ୍ୱରର ପାଣିଦ୍ରବ୍ୟ ଦେଇ ଦରଶଣ
ଦର୍ଶନ କଲେ ରାଜା ଯୋଡ଼ି ବେନିପାଣି ।
ହାହା ହାହା କହି ପୁଣ ପୁଣ ସେ ପ୍ରଣମି
ଶରଣ ରଖ ହେ ଜବନସୂଦନ ସ୍ୱାମି ।
ସମ୍ମୁଖରେ ଜଣାଏ ବେଗେ ଦୂତ କାଳଞ୍ଜନ
ନର୍ଣ୍ଣିରର ରାଜା ଆସି କରଇ ଦର୍ଶନ ।
ଆନନ୍ଦରେ ଅଶ୍ରୁଜଳ ବେନିନେତ୍ରୁ ଗଡ଼େ
ଗଦଗଦ ହୋଇ ରାଜା ଭୂତଳରେ ପଡ଼େ ।
ଦରହସ ହୋଇକରି ତହିଁ ବୃକୋଦର
ବୋଇଲେ କାର୍ଯ୍ୟଟି ସିଦ୍ଧିହେଉ ଯେ ତୋହର
ବହୁତ ବିନୟୀ ହୋଇ କହଇ ରାଜନ
ଆଜ ସାର୍ଥକ ହୋଇଲା ମୋହର ଜୀବନ ।
ଦେଖିଲି ନେତ୍ରେ ପ୍ରତ୍ୟକ୍ଷ ବିଜେ ବାସୁଦେବ
ଗୁଡ଼ିଲା ପାତକ ମୋର ଯାହାଥିଲା ସର୍ବ ।
ସୁରସୁନ୍ଦର ନାମ ତୋ କଥା ଜଗତେ
ଦର୍ଶନମାତ୍ରେ ମୋହର ଦୁଃଖ ଗଲା ଛୁଟି ।
ତା କଟକେ ବିଜେ କଲେ ପବନ ଦୁଲାଳ
ଦେଖିଲେ ରାଜ୍ୟର ଲୋକେ ଆନନ୍ଦ ସକଳ ।
ପୁରେ ଉତ୍ସବ କରନ୍ତି ସର୍ବ ନରନାରୀ
ଯହିଁ ଭାବ ତହିଁ ଭକ୍ତି କେହୁ ଅନ୍ତକରି ।
ଅଳଙ୍କାରରେ ମଣ୍ଡନ ହୋଇ ସର୍ବନାରୀ
ଅର୍ଘ୍ୟସ୍ଥାଳମାନ ଘେନି ଦ୍ୟନ୍ତି ହୁଳହୁଳି ।

ବାଜେ ଖାରତୂର ବାଦ୍ୟ ମହୁରି କାହାଳ
ସୈନ୍ୟ ଖଟନ୍ତି କରଣ ସେ ତାଣ୍ଡବ କଳ ।
ନର୍ତ୍ତକ ବେଶରେ ଭୀମ ଅନେକ ସାନନ୍ଦେ
ଜଗତରେ ଭଜେ ଭଲେ ଆନନ୍ଦିତ ହୃଦେ ।
ପଞ୍ଚ ମହାବେଢ଼ ତାର ଶତପୁଷ୍ପ ସେନ
ଜଗନ୍ନାଥ ଚଳେ ତାକୁ କରନ୍ତି ଦଇମା ।
ପୁଣ ରାଜା ପ୍ରଣମଇ ଜଗନ୍ନାଥ ଚଳ
ମଧ୍ୟସ୍ୱର୍ଗ ଠାକୁର କୁ ଭଜେ ରଦ୍ଧତଳ ।
ଯାହା ଦୋଷ କରିଥିବ ଜ୍ଞାନେ ବା ଅଜ୍ଞାନେ
କ୍ଷମ ଗୁଣେ ତାହା ପ୍ରଭୁ ନ ଧରିବ ମନେ ।
ଭୀମ ତାହାକୁ ସନ୍ତୋଷେ ଦେଇଣ ଅକ୍ଷତ
ବୋଇଲେ ତୋ ଦଣ୍ଡ ଘେନ ଯାଅ ଇନ୍ଦ୍ରହସ୍ଥ ।
ରାଜା ବୋଲେ ଶିରେ ଧାର୍ଯ୍ୟ ଯେ ଆଜ୍ଞା ତୋହର
ଆଜ ମୋ ପୁରେ ରନ୍ଧନ ମଣୋହି କୁ କର ।
ରଣପତିର ବଚନେ କୃଷ୍ଣ ହେଲେ ଭୀମ
ଭକ୍ତି ଅନୁରୂପେ ତହିଁ ଉପୁଜଇ ଧର୍ମ ।
ତାହାକୁ ବୋଇଲେ ଭୀମ ତୋ ସମାନ କେହି
ଏ ପଶ୍ଚିମ କୋଶଳରେ ଥିବ କବା ନାହିଁ ।
ଯେବେ କହିଲୁ ତୋପୁରେ ଭୁଞ୍ଜିବା ସାଦରେ
ଆଜ୍ଞା ଦ୍ୟନ୍ତେ ସୂପକାର ଗଲେ ରୋଷଘରେ ।
ଅଇକ୍ରିତ ସୂପକାର ଥିଲେ ଭୀମ ସଙ୍ଗେ
ଲକ୍ଷଣା ଯୋଗାଡ଼ସେହୁ କଲେ ବେଗେ ବେଗେ
ଅମୃତ ଯୋଗାଡ଼ ହେବ କଲେ ଯେ ପ୍ରକାରେ
ସେପରି ଯୋଗାଡ଼ କଲେ ଯାଇ ସୂପକାରେ ।
ଗଉଷି ଖଉଷି ନଳ ବିବିଧ ରନ୍ଧନ
ଅଧିକ ସାର ମଣୋହି କଲେ ଭୀମସେନ ।
ପରଷନ୍ତି ଆନନ୍ଦରେ ସର୍ବ ବନ୍ଧୁଜନ
ଭୀମ ଭୁଞ୍ଜିଲେ ତିନଶଷାଠି ପୌଟି ଅନ୍ନ ।
ସଙ୍ଗ୍ରାମେ ଅତୃପ୍ତ ଯେହ୍ନେ ଭୋଜନେ ଅତୃପ୍ତି
ଶୃଙ୍ଗାର ରସରେ ସଦା ଯା ମନ ଅଶାନ୍ତ ।
କାମ୍ୟକପୁର ପରସ୍ତେ ଭୁଞ୍ଜି ପ୍ରଶଂସିଲେ
ଆଚମନ କରିବାକୁ ବାହାର ହୋଇଲେ ।
ସୁବାସିତ ନୀର ଭୀମ କଲେ ଆଚମନ
କର୍ପୂର ତାମ୍ବୁଳ ବଢ଼ କରିଲେ ଚର୍ବଣ ।
ଅଷ୍ଟାରହରେ ଖଚିତ ସୁବର୍ଣ୍ଣ ଖଟୁଲି
ତହିଁପରେ ଭୀମ ହଁ ଲଅନ୍ତି ମୃଦୁସୁଲି ।

ଗୃହମୁରେ ନୃତ୍ୟ କରନ୍ତି ସେ ବାରଯୋଷିତ
ଗାବନ୍ତି ସୁସ୍ୱରେ ସେ ଯେ ମଧୁର ସଙ୍ଗୀତ ।
ଧ୍ୟାନ ଭୋଜନ ସାଶ୍ରଣ ନର୍ତ୍ତକର ପତି
ଶତପୁଷ୍ପ ଘେନ ଭୀମେ ବୁମର ତାଳନ୍ତି ।
ବହୁ ସନ୍ତୋଷେ ବୋଇଲେ ତାକୁ ଭୀମସେନ
ପଶ୍ଚିମ କୋଶଳେ ତୁହି ରାଜାଗଣେ ଧନ୍ୟ ।
ଏହା କହି ତାଡ଼ ଝୁମ୍ପା ବାହୁଟି ସକଳ
ଶିରେ ସୀମନ୍ତମଣି ଗଳେ ଦେଲେ ହନୁମାନ ।
ବହୁ ଅଳଙ୍କାର ଦେଲେ ତା ଭାର୍ଯ୍ୟା ସ୍ତ୍ରୀଙ୍କୁ
ବୋଇଲେ ଏକ୍ଷଣି ଯାଅ ଇନ୍ଦ୍ରପ୍ରସ୍ଥକୁ ।
ବୃକୋଦରଙ୍କର ଆଜ୍ଞା ଶିରରେ ନଟବେଶି
ସେହିକ୍ଷଣି ଅନୁକୂଳ କଲେ ପୁରୁ ଆସି ।
ଏ ସମୟେ ଲଗାଇଣ ବହୁତ ମାଳବା
ବାହାରିଲେ ବୃକୋଦର ମନରେ ନିଃଶଙ୍କା ।
ଦେଖାଉରେ ସେ ବାରତ ଶୁଣିକରି କାନେ
କାର୍ତ୍ତିକପୁର ନର୍ତ୍ତର ଗିରି ସନ୍ନିଧାନେ ।
ଦଶାଶତେ ଯୋଜନ ସେ ଏ ଠାବକୁ ଦୂର
ବନ ଗହନଭୂମି ଯେ ବହୁତ ଡଙ୍ଗର ।
ତହିଁର ନରପତି ଯେ ଅଟେ ରୁଦ୍ରଦେବ
କାର୍ତ୍ତିକ ଜନ୍ମସ୍ଥ ତହିଁ ହିଙ୍ଗ ସଦାଶିବ ।
ସତ୍ୟ ଯୁଗେ ଉପୁଜଇ ତାରକା ଦଇତ
ତାରଣୀ ନଗର ଖୀର ତାରକା ପର୍ବତ ।
କାର୍ତ୍ତିକକୁମାର ଜନ୍ମ ହୋଇଲେ ସେ ବନ
ଅନଙ୍ଗ ତହନକାରୀ ଦେବ ତ୍ରିଲୋଚନ ।
କୁମାର ବୋଲି ତା ନାମ ଦେଲେକ ଇଶ୍ୱର
ଏ ବାଳୀ ହେଲେ ତାରକା ଅସୁରର ଅର ।
ତାରକା ନଗରେ ସ୍ନାନକରି ବୃକୋଦର
ଯାଇ ଉଠିଲେ କାର୍ତ୍ତିକ ପର୍ବତ ଉପର ।
ଦେଖିଲେ କୁମାର ଷଡ଼ମୁଖ ମହାରୂପୀ
ବାମ ଚରଣେ ତାରକାସୁରେ ଛନ୍ତି ଚପି ।
ଦକ୍ଷିଣ ଚରଣ ଗୋଟି ଲମ୍ବାଇ ଅଛନ୍ତି
ସେ ପାଦ ଗୋଟିକ ସ୍ୱର୍ଗ ଯାଏ ବ୍ୟାପିଅଛି ।
ଦ୍ୱାଦଶ ନେତ୍ର ଦ୍ୱାଦଶ ଅଟେ ତାଙ୍କ ଭୁଜ
ମର୍କତ ପରସ୍ତେ କଣ୍ଠି କାଳାନଳ ତେଜ ।
ଅନାଦି ବ୍ରହ୍ମାକ୍ଷିସୂତ କୁ ସିଦ୍ଧ ଦେବତା
ଦେବଙ୍କ ଦୁଃଖ ଖଣ୍ଡନେ କୁ ମହାଶକତା ।

ପିନାକ ସମାନ ଧନୁ ଧରିଅଛୁ ପାଣି
ପଳାନ୍ତି ଦୁରିତ ମାନେ ତା ଶବଦ ଶୁଣି ।
ହେ ପରମଯୋଗୀ ତୋର ମନୋହର ରୂପ
ଭକ୍ତବତ୍ସଳ ଗଞ୍ଜିଲୁ ନାଶକର ଦର୍ପ ।
ମୟୂର ବାହନେ ବସି ଭ୍ରମ ତ୍ରିପୁର
ପଦ୍ମବର୍ଣ୍ଣ ଶୁଦ୍ଧ ତୋ କାୟା ଅନଙ୍ଗ ସୁନ୍ଦର ।
ଜୟ ଜୟ ହେ କାର୍ତ୍ତିକ ତୁମ୍ଭେ ବିଶ୍ୱରୂପୀ
ନବଦ୍ୱୀପ ସପ୍ତସିନ୍ଧୁ ମଧ୍ୟେ ଅଛ ବ୍ୟାପି ।
ଭୟଙ୍କର ଭୟଙ୍କର ତାରକାସୁରକୁ
ଡରି ପଳାଇଲେ ଦେବେ ତେଜି ସେ ସ୍ଥାନକୁ
କ୍ଷେପିଣ ଅମରପୁର କରିଲାକ ନାଶ
କୁମାର ବୟସେ ତାକୁ ତୁମ୍ଭ କଲୁ ଧ୍ୱଂସ ।
ବହୁତ ବିନୟ ତୋତେ କଲେ ଦେବତା ଏ
ସର୍ବଭୁବନେ ଶୁଭିଲା ତୋର ଜୟେ ଜୟେ ।
ପ୍ରସନ୍ନରେ ବର ତୋତେ ଦେଲାକ କପାଳୀ
ସୁରବର ସୁନ୍ଦର ତୋ ଛଅଟି ମଉଳି ।
ନବଲକ୍ଷ ଡମ୍ବରୁ ତୋ ଶ୍ରୀହସ୍ତରେ ବାଜେ
ଦେବାଙ୍ଗ ଜୟମାଳା ତୋ ହୃଦରେ ବିରାଜେ
ମୁହିଁ ତୋ ପାଦେ ଶରଣ ହେ କାର୍ତ୍ତିକେଶ୍ୱର
ଏ ପାପ ସଂସାରୁ ତୁମ୍ଭ ଉଦ୍ଧରଣ ଧର ।
ତୁମ୍ଭ ଚରଣେ ମୋହର କୋଟି ନମସ୍କାର
ଈଶ୍ୱରଙ୍କ ସ୍ନେହ ତୁମ୍ଭେ ସବୁ କରିପାର ।
ଭବିଷ୍ୟତ ବର୍ତ୍ତମାନ ଭୂତ ତିନିକଥା
ତବ ପ୍ରସନ୍ନେ ଜାଣି ମୁଁ ଗୁଡ଼ିବଇଁ ଚିନ୍ତା ।
ଅକଳନ୍ତ ସାଗରେ ମୁଁ ପଶିଲି ନ ଜାଣି
ବଳାଇଲି ପ୍ରତିଜ୍ଞା ମୁଁ ନ ପଢ଼ି ନ ଶୁଣି ।
କୈଳାସ ପଶ୍ଚିମ ଦ୍ୱାରେ ତୁମ୍ଭେ ଦ୍ୱାରପାଳ
ଯୁଗକ ବଞ୍ଚିଲୁ ଚଉଷଠି ଲକ୍ଷେ କାଳ ।
ନ ଜାଣଇ ବିଦ୍ୟା ନୁହେଁ ପଣ୍ଡିତ ପ୍ରବର
ଅଜ୍ଞାନେ ଲେଖୁଛି ହେଉ ଶ୍ରୁତି ସୁଖକର ।
ଅଳ୍ପ ଭୋଜନ କଲେ ତ ପୂରଇ ଉଦର
କର୍ଣ୍ଣେ ପିବନ୍ତେ ଅତୃପ୍ତ କ୍ଷୀରତ ସାଗର ।
ବଳେ ଚିନ୍ତାମଣି କାର୍ତ୍ତିକେୟ ନଗ୍ର ପୁରେ
ମୁଁ ତାଙ୍କୁ ଭେଟେ ତାରକା ପର୍ବତ ଉପରେ ।
କହିତ ମାନବ ତୁ ନ ସତ୍ୟ କହୁକଥା
ପାଦେ ପ୍ରହାରିଲୁ ତୋର ଗଣେଶ ଯେ ଭ୍ରାତା
ତୋର ବାମପାଦ ବଜ୍ରଗଜ ମୁଖେ ବାଜ
ବାମପାର୍ଶ୍ୱ ଦନ୍ତଗୋଟି ପଡ଼ିଲାକ ଭାଜ ।
ସେ ଭଗ୍ନଦନ୍ତ ଗୋଟିକ ପଡ଼ି ଧରାପରେ
ରସାତଳ ହୋଇଥିଲା ଧରା ସେ କାଳରେ ।
ଧରଣୀକୁ ରସାତଳ ହେବା ଦେଖି ନେତେ
ବାମହସ୍ତେ ସମ୍ଭାଳିଲେ ତାହା ଗଣନାଥେ ।
ରାଗେ ତୋତେ ଶାପଦେଲେ ସେହି ବାଳବୁଦ୍ଧି
ଯେପାଦେ ମାଇଲୁ ମୋତେ ହେଉ କୁଷ୍ଠବ୍ୟାଧି
ସ୍ୱର୍ଗେ ଜ୍ୟେଷ୍ଠ ସୋଦରମାନେ ତୁମ୍ଭ ପିତା
ବାଳକର ଶାପରୁ ତୁ ନୋହିଲୁ ବଞ୍ଚିତା ।
ଗଳିଲା ଦୁର୍ଗନ୍ଧ ପୂଯ ଲମ୍ବୋଦର ଶାପେ
ତାହା ଖଣ୍ଡିଲୁ ଅଜପାମନ୍ତ୍ର ଜପି ଗୋପ୍ୟେ ।
ଅକାରଣ କାରଣ ତୁ ପ୍ରଭୁ ନିରାକାର
ଅଗାଧ ସାଗରୁ ମୋତେ ତାର ହେ କୁମାର ।
ଏ ତିନି ଭୁବନେ ତୋର ମହିମା ଦୁର୍ଲ୍ଲଭ
ଏ ମୋହଜଳରୁ ରକ୍ଷାକର ସ୍କନ୍ଦଦେବ ।
ଗିରିଜାଙ୍କ ନନ୍ଦନ ତୁ ଦେବତାଙ୍କ ସେନା
ନାରାୟଣ ସମ ଯମ ଘରବରଞ୍ଜନା ।
କଷ୍ଟିତ ପାପୁ ମନୁଷ୍ୟକୁଳେ ଅଛୁ ଜନ୍ମି
ଦୁର୍ଗତି ସାଗରୁ ମୋତେ ପାରିକର ସ୍ୱାମି ।
ହେମବନ୍ତର କୁମର ନାମ ଚନ୍ଦ୍ରଧ୍ୱଜ
ତୁମ୍ଭର ଅଟେ ମାତୁଳ ବଶିଷ୍ଠ ଆତ୍ମଜ ।
ବାଲ୍ୟତ ଖେଳରେ ସେହି ହେଲେ ବାରୁଆଳ
ତବ ଶାପରେ ହୋଇଲା ପାଷାଣର ଭଳ ।
ତୁମ୍ଭ ଶାପରୁ ତରିବା ହେତୁ ସେ କୁମରେ
ରହିଲେ ତୁଠ ପାଷାଣ ହୋଇ ଗଙ୍ଗାଘାଟରେ ।
ବାଳଖିଲ୍ୟ ଅନନ୍ତରେ ବାଳ ବ୍ରହ୍ମବେତ୍ତା
ତୁହି ସେ ଏ ପାପଦୋଷୁ ମୋତେ ଉଦ୍ଧରନ୍ତା
ନମସ୍ତେ ହେ ବିଶ୍ୱେଶ୍ୱର କାର୍ତ୍ତିକେୟ ସ୍ୱାମି
ଶାରଳା ଦାସକୁ ବର କପିଳାସଗାମୀ ।
ଅଗସ୍ତି କହନ୍ତି ଶୁଣ ମନୁ ନରପତି
ଏମନ୍ତ ବିନୟ ହୁଅନ୍ତେ କୁମାରଙ୍କ ଭକ୍ତ ।
ଜାଣି କୁମାର ବିଜୟେ ମୟୂର ବାହନେ
ଦେଖିଣ ସାନନ୍ଦ ଭୀମ ହୋଇଲେକ ମନେ ।
ଅନେକ ସ୍ତୁତି ମାରୁତି ଶ୍ରୀମୁଖରେ ବୋଲି
ଶତସହସ୍ର ଦଣ୍ଡବତ କଲେ ଯୋଡ଼ପାଲି ।

ପ୍ରସନ୍ନ ହୋଇ ବୋଇଲେ ସେ ଚନ୍ଦ୍ରମଉଳି
ସାଧୁ ସାଧୁ ପାଣ୍ଡବ ତୁ ଅଟୁ ମହାବଳୀ ।
ପଶ୍ଚିମେ ଭୂମି ସମସ୍ତ ରାଜାଙ୍କୁ ସାଧିଲୁ
ବହୁତ ଦୂରରେ ଆସି ଆମ୍ଭଙ୍କୁ ଭେଟିଲୁ ।
ଆଉ ଅଛି ଅଳ୍ପ ଦେଶ ଅନେକ ରାଜନ
ଗର୍ଭପୁରେ ସାଧି ଭୂମି ପବନ ନନ୍ଦନ ।
ଏ କାର୍ତ୍ତିକ ନଗ୍ର ହାଦେ ପଶ୍ଚିମ କୋଣରେ
ଏ ସ୍ଥାନେ ବଜସୁ ଆମ୍ଭେ କରୁ ସର୍ବ କାଳେ ।
ଏ ମହାରାଜ୍ୟକୁ ଭୀମ ଉଜାଡ଼ ନ କର
ଘରେ ସାଧିକରି ଆମ୍ଭେ ଦେଖନ୍ତେ ବସ୍ତୁର ।
ସେ ରାଜାର ନାମ ଅଟେ କାର୍ତ୍ତିକ ନୃପତି
କାର୍ତ୍ତିକ ରାଜ୍ୟର ସେହୁ ଅଟେ ଚକ୍ରବର୍ତ୍ତୀ ।
ସେ ରୁଦ୍ରଦେବ ବଜସୁ ଆସ୍ଥାନ ଉପରେ
ଦେଶାନ୍ତର ଯାଇ ବାର୍ତ୍ତା କହିଲା ଭୀମରେ ।
ଶୁଣ ଦେବ କେଉଁ ଦେଶରୁ ରାଜା ଏକ ଆସି
ଅନେକ ସଇନ୍ୟ ଘେନି ତୋର ରାଜ୍ୟେ ପଶି ।
ବସ୍ତୁଷଣ କାର୍ଯ୍ୟକର ତୁମ୍ଭେ ନରସାଇଁ
ଜଗତେ ଜଣନ୍ତା ଦେବ ତାକୁ କେହି ନାହିଁ ।
ଉଗର ମୁଖରୁ ରାଜା ପାଇଣ ବାରତା
ଦଣ୍ଡ ସାଜ ବୋଲି ଆଜ୍ଞା ଦେଲେ ମହାରଥୀ ।
ଆକାଶ ଢମ୍ପାଇଲେ କେ ଗାରଡୁର ବାଦ୍ୟ
ପେଲ୍ଲମା କମ୍ପିତ ହେଲା ବାଦ୍ୟର ଶବଦେ ।
ବହୁରନ୍ତି ରାଉତେ ଯେ ତୁରଙ୍ଗମ ଚଢ଼ି
ମାର ମାର ଧର ବୋଲି ଘୁଡ଼ୁଛନ୍ତି ରଡ଼ି ।
ସ ଜ ସାଜ ବୋଲିକରି ବ୍ୟନ୍ତେ ଘୋଉଡାକ
ଧାଇଁଛନ୍ତି ଅଗ୍ରଆରେ ପ୍ରତିଜ୍ଞା ଅନେକ ।
ସୁତ୍ତର ପ୍ରତିଜ୍ଞା ଯେ କହିତ ନୁହଇ
ନବଶତ ପାରିହସ୍ତି ଘେନ ରାଜା ବାହି ।
କମ୍ପିଲକ ରେରେକାର ଶବ୍ଦେ ମହାଆଳ ।
ରେଣୁ ଉଡ଼ନ୍ତେ ଅଦୃଶ୍ୟ ହେଲେ ଅଂଶୁମାଳି
ରୁଦ୍ରଦେବ ନୃପତି ଯେ ସମଦଣ୍ଡ ଘେନ
ଆସି କାରକା ପର୍ବତେ ଭେଟିଲା ପାବନ ।
ଅସ୍ତ୍ର ଚଳାଇ କରି ଉଠିଲେ ରଉଡେ
ରଜକୁ ଧୂଆଇ ଶିଖେ ଧାମନ୍ତି ମାହୁନ୍ତେ ।
ତାରକା ପର୍ବତେ ଉଠ ବେଢ଼ି କୋପାନଳେ
ଦେଖିଲେ ଶୂନ୍ୟ ପୃଷ୍ଠେ ଭାସିଲେ ସକଳେ ।

ଭୀମସେନ ପୃଚ୍ଛାକଲେ କାର୍ତ୍ତିକେଶ୍ୱରଙ୍କୁ
ସ୍ୱାମି ଏ ରାଜା ଆଇଲା ଯୁଦ୍ଧ କରିବାକୁ ।
ଏତ କଥା କହେ ଦେବ ତୋର ଉପରୋଧେ
ଏତେ ସୈନ୍ୟଙ୍କୁ ନାଶନ୍ତି ମୁଁ ନିଶ୍ଚିତ ଯୁଦ୍ଧେ
ଏହା ଶୁଣି ବୋଇଲେ ସେ କାର୍ତ୍ତିକ ଦେବତା
ଆମ୍ଭ ବୋଲି ମାନ ତୁମ୍ଭ ଟିକେ ସମ୍ଭାଳଥା ।
ଯା କହି ଶୂନ୍ୟେ କୁମର କହିଲେ ଏ ବାଣୀ
ନା ସଙ୍ଗେ ସମର କରି ଆସୁ ନରମଣି ।
ନ ଜାଣୁ କି ନ କହିଲେ ତୋତେ ଦେଶାନ୍ତର
ଏ ପଶ୍ଚିମ ଦିଗ ବିଜେ ପାଣ୍ଡବ ସୁନ୍ଦର ।
ଶୁଣି ସାନନ୍ଦ ସେ ରୁଦ୍ରଦେବ ନରପତି
ହସ୍ତୀର ଉପରୁ ରାଜା ଓହ୍ଲାଇଲା ଝଟତି ।
ଭୂମିରେ ପଡ଼ିଣ ଶତସହସ୍ର ପ୍ରଣମି
ବୋଲେ ନ ଜାଣି ଆଇଲି ଦଣ୍ଡ ସାଜ ସ୍ୱାମି ।
ଅଜ୍ଞାନଙ୍କ ପଣ୍ଡିତଙ୍କ ନ ଥାଇ ଯେ କୋପ
ମୋ ଉକ୍ତ ଘେନ ସ୍ୱାମି ଛାଡ଼ ପରତାପ ।
ତୁ ଦେବ ଏ ସଂସାରକୁ ଅଟୁ ଉଦ୍ଧାରନ୍ତା
ତୁମ୍ଭ ଦେବ ଏ ସକଳ ନୃପଙ୍କୁ ପାଳନ୍ତା ।
ବନଚର ନୃପତି ନ ଜାଣୁ ଆମ୍ଭେ କିଛି
ମୂର୍ଖ ଅଜ୍ଞାନ ଆମ୍ଭର ଜ୍ଞାନ କେବା ଅଛି ।
ଭକ୍ତବତ୍ସଳ ତୁ ସୋମବଂଶ ଅଧିପତି
ମୋର ଦୋଷ ଖଣ୍ଡି ବା ପ୍ରଭୁ କୋପକର ଶାନ୍ତି
ରାଜାର ବିନୟ ଦେଖି କୋପ କଲେ ସାମ୍ୟ
କାର୍ତ୍ତିକ ଦେଖନ୍ତେ ବହୁ ପ୍ରୀତି କରେ ଭୀମ ।
ନିମନ୍ତ୍ରଣ ଦ୍ରବ୍ୟ ଦେଇ ବୋଇଲେ ପାବନ
ଦଣ୍ଡଘେନ ଇନ୍ଦ୍ରପ୍ରସ୍ଥେ ଚଳ ଏହିକ୍ଷଣି ।
ସଙ୍ଗେ ଘେନିଯାଅ ଦେଖା ଦରଶନୀ ଧନ
ଦିବସ ରଜନୀ ଘେନ ଚଳ ତୁ ବହନ ।
ବିଳମ୍ବ କରିଲେ କାର୍ଯ୍ୟ ହୋଇବ ଅସାଧି
ମହାଯଜ୍ଞ ସଙ୍ଗରେ ହୋ ହେବା ଅପରାଧୀ ।
ମୁଁ ଯେ ଅନୁଗ୍ରହ କଲି କୁମାର ସାକ୍ଷାତେ
ଯାବତ କାଳକୁ ବସ୍ତୁ କଲି ମୁହିଁ ତୋତେ ।
ଶୁଣି ଆଜ୍ଞା ପରମାଣେ ସେ କାର୍ତ୍ତିକ ସ୍ୱାମି
ଯିବ ବୋଲି କହି ଶତସହସ୍ର ପ୍ରଣମି ।
ଆଜ୍ଞା ଦେଲା ସକଳର ନବଶତ ହସ୍ତୀ
ରଥ ରଥୀ ବହୁ ଅଶ୍ୱ ସଇନ୍ୟ ପଦାତି ।

ଶୁଣିକର ବିଭୀଷଣ ସାରଥି ଚଳିଲା
ସୈନ୍ୟଙ୍କୁ ସଜାଇ ରଥ ମଣ୍ଡନ କରିଲା ।
ପୁଣ ପୁଣ ରାଜା ପଡ଼ି ଶ୍ରୀରାମ ପାଦତଳେ
ବୋଇଲା ଆଜ ରଜନୀ ଏ ମୋହର ଆଳେ ।
ମୋହର ପ୍ରଜା ତୁମ୍ଭଙ୍କୁ କରନ୍ତୁ ଦର୍ଶନ
ଏତିକ ତବ ଶ୍ରୀପଦେ ମୋର ନିବେଦନ
ସ୍ୱାମୀ ପ୍ରତ୍ୟକ୍ଷରେ ତୁମ୍ଭ ଅଟ ଜଗନ୍ନାଥ
ପଦରଜ ପଡ଼ି ହେଉ ମୋ ରାଜ୍ୟ ପବିତ୍ର ।
ଶ୍ରୀରାମ ବୋଲେ ରହିବାକୁ ମୋତେ ବେଳନାହିଁ
ଭୋଜନ ଶୟନକୁ ମୋ ଇଚ୍ଛା ନ ବଳଇ ।
ମହା ମହା ରାଜାମାନେ ଛନ୍ତି ଏ ପଶ୍ଚିମେ
ପାଞ୍ଚଶସ୍ର ରାଜାଙ୍କୁ ସାଧି ନଇଦିନେ ।
ମକର ମାସେ ପ୍ରବେଶ ହେବ ସ୍ୱାଙ୍କୁ ଘେନ
ଏ ଆଜ୍ଞା ଦେଇଅଛନ୍ତି ଦେବ ଚକ୍ରପାଣି ।
ତୁ ବହନ ଚଳ ତୋର ଘେନ ଥାଟ ସୈନ୍ୟ
ରୁଦ୍ରଦେବ କାର୍ତ୍ତିକଙ୍କ ଚରଣେ ପ୍ରଣମ ।
କରି ଶ୍ରୀରାମଙ୍କ ଚରଣେ ଶତ ନମସ୍କାର
ଥାଟ ଘେନ ନରପତି ହୋଇଲା ବାହାର ।
ସେ କାର୍ତ୍ତିକ ଦେବଙ୍କର ଚରଣେ ଶରଣ
ଶୂଦ୍ରମୁନି ଶ୍ରୀଶାରଳା ମାଗେ ଅନୁକ୍ଷଣ ।

---

## ଶବରୀ ନାରାୟଣଙ୍କୁ ନିମନ୍ତ୍ରଣ

ପୁନରପି ପୃଚ୍ଛାକଲେ ମନୁ ଦଣ୍ଡଧର
କହ ମୁନି କାହିଁ ଗଲେ ତହୁଁ ବୃକୋଦର ।
ଅଗସ୍ତି କହିଲେ ତୁମ୍ଭେ ଶୁଣ ନରପତି
କନାଉଜ ଦେଶକୁ ଯେ ଚଳିଲେ ମାରୁତି ।
ମଣିଭଦ୍ରା ବୋଲିକରି ଅଛି ନଦୀଗୋଟି
ସରସ୍ୱତୀ ନଦୀରୁ ସେ ଆସୁଅଛି ଫୁଟି ।
ସେ ନଦୀକୂଳେ ଚଳଇ ପାଣ୍ଡବ ବରୁଣ
ଆକାଶ ଉତୁଳେ ବାଦ୍ୟ ଉଡ଼ଇ ନିଶାଣ ।
କାରିସୁନ୍ଦର ବୋଲିଣ ପର୍ବତ ଗୋଟିଏ
ସେ ପର୍ବତ ପରେ ଶ୍ରୀରାମ କରିଲେ ବିଜୟେ ।
ଶଙ୍ଖ ତୁରି ନାନାବାଦ୍ୟ ଗହଳରେ ବାଜେ
ଏସନକ ସମ୍ଭ୍ରମରେ ସେ ପର୍ବତେ ବିଜେ ।
ଧନୁମାସ ଶୁକ୍ଳପକ୍ଷ ସପ୍ତମୀର ତିଥି
ସେଦିନ ପର୍ବତ ପରେ ବିଜୟ ମାରୁତି ।
ଶତଭିଷା ନକ୍ଷତ୍ର ଯେ ଅଟେ ଅର୍କବାର
ବାଳବ ନାମେ କରଣ ଯୋଗ ସେ ଦିନର ।
ସିଦ୍ଧି ନାମେ ଯୋଗ ପୁଣ ଶୁଭ ଅନୁକୂଳେ
ଶ୍ରୀରାମ ବିଜେକଲେ କୃତାନ୍ତକ ବଟ ମୂଳେ ।
ଶବରୀ ନାରାୟଣ ଯେ କନାଉଜପତି
ଜଳକ୍ରୀଡ଼ା କରେ ଘେନ ସହସ୍ର ଯୁବତୀ ।
ଦେଖାଉର ବୋଲେ ଯାଇ ସେ ରାଜାର ପାଶ
ଦଣ୍ଡବାହୁ ଆସେ କେଉଁଦେଶ ନରଈଶ ।
ରଥ ଗଜ ଅଶ୍ୱ ଦେବ ପଦାତି ଅଳପ
ମହାବଳବନ୍ତ ତାର ପ୍ରତିଜ୍ଞା ଅମାପ ।
ଦୁର୍ବାର ପ୍ରତିଜ୍ଞା ତାର ଅଟେ ମହାଯୋଧି
ପଶ୍ଚିମଦିଗ ରାଜାଙ୍କୁ ଆସୁଛି ସେ ସାଧି ।
କ୍ଷତ୍ର ଭାବ କଲେ ଦେବ ନ ବର୍ତ୍ତନ୍ତି କେହି
ଭକ୍ତିରେ ଶରଣ ନେଲେ କରନ୍ତି ସେ ସାହା ।
ଚରର ମୁଖୁଁ ଏସନ ବାରତାକୁ ଶୁଣି
ଜଳକ୍ରୀଡ଼ା ରସେ ତା ନ ଶୁଣି ନୃପମଣି ।
କୋଶଳ ଦେଶକୁ ଶ୍ରୀରାମ ଅଇଲେକ ମାଡ଼ି
ମନ୍ତ୍ରୀଆଦି ଉଗାଳିଲେ ତାଙ୍କ ଯାନ ଚଢ଼ି
ପାଞ୍ଚଲକ୍ଷ ରଥୀ ପଞ୍ଚବିଂଶ ଲକ୍ଷହସ୍ତୀ
ଚାରିଲକ୍ଷ ଊଣେଇଶ ସହସ୍ର ପଦାତି ।
ପାଞ୍ଚଲକ୍ଷ ରାଜା ଯେଉଁ ରାଜାଙ୍କୁ ଖଟନ୍ତି
ପଶ୍ଚିମ କୋଶଳେ ମହାଗରିଷ୍ଠ ଅଟନ୍ତି ।
ଅନଙ୍ଗ ସଦୃଶ ତାର ଶରୀର ସୁନ୍ଦର
ମହାବଳିଷ୍ଠ ଆବର ଅଟେ ଧନୁର୍ଦ୍ଧର ।
ଜରାସନ୍ଧ ରାଜା ସଙ୍ଗେ ବାହୁଯୁଦ୍ଧ କଲା
ପଞ୍ଚଦଶ ଦିନ ଯୁଦ୍ଧେ ସମାନ ହୋଇଲା ।
ମହାପ୍ରତାପୀ ତା ସୈନ୍ୟ ନ ଯାଇ କଳନା
ଏହା ଶୁଣି ହୃଷ୍ଟ ହୋଇଲେ ଶ୍ରୀରାମ ମହାମନା ।
ପର୍ବତ ଉପରେ ଥାଇ ଥାଟ ତାର ଦେଖି
ରାଗେ ବୁଲାଇଲେ ଚକ୍ରସାସ୍ତ୍ର ବେନ ଆଖି ।
ମନେ ଚିନ୍ତିଲେ ତ୍ରୈଲୋକ୍ୟ ପ୍ରଭୁ ଚିନ୍ତାମଣି
ରାଜାଙ୍କ ଦୁଷ୍ଟପଣ ତୁ ଜାଣିଥିବୁ ସ୍ୱାମି ।
ତୁମ୍ଭେ ବୋଇଲେ ଯେ ରାଜା ଦୋଷକୁ କରିବ
ତା ସୈନ୍ୟ ମାରି ତାହାକୁ ବାନ୍ଧିଣ ଆଣିବ ।
ବିଷ୍ଣୁର କୋପ କରିବୁ ଜାଣି ଦେବ ମୋତେ
ଏତେ ଦୁର୍ଭର କଥାକୁ ସହିବ କେମନ୍ତେ ।

ମନେ ମନେ ସ୍ମରି ବସ୍ତୁର କାଳଦଣ୍ଡ ପାଣି
ପର୍ବଙ୍କୁ ଡେଇଁ ପଡ଼ିଲା ରଙ୍ଗେ ସେହିକ୍ଷଣି ।
କାଞ୍ଚନ କାଞ୍ଚନ ଭର ଗଦା ଘେନି ହସ୍ତେ
ବ୍ରହ୍ମାଣ୍ଡ କମ୍ପାଇଲା ସେ ଗର୍ଜ୍ଜନର ଘାତେ ।
ରଥରେ ଭୁଲିଲା ସେହି ଯୁଧିଷ୍ଠିର ଆଜ୍ଞା
ତ୍ରୈଲୋକ୍ୟେ ଅକଥନୀୟ ଯାହାର ପ୍ରତିଜ୍ଞା ।
ବୃକୋଦର ମୂର୍ତ୍ତି ତାର ପ୍ରକାଶିଲା କାର୍ଯ୍ୟେ
ଉଚ୍ଚଭାରେ ଦେଖାଗଲା ବନ୍ୟଗିରି ପ୍ରାୟେ ।
ଏସନ ସଦୃଶ ରୂପ ପ୍ରକାଶିଲା ଭୀମ
ସଙ୍ଗେ ତା ଦେହନ୍ତି ଝାଳ ବହେ ଗମଗମ ।
ଗିରିବର ବେଢ଼ିଛନ୍ତି ଜଳଧର ଆଟ
କାଦମ୍ବଷ ପାନେ ସୈନ୍ୟ କରୁଛନ୍ତି ନାଟ ।
ବାଜେ ଜୟଘୋଷ ବୀରମର୍ଦ୍ଦଳ ଦାରୁଣ
ନିଶାରେ ନାଚନ୍ତି ସର୍ବେ ଯେ ଖେମଟା ଖଣ୍ଡି ।
ଅଶ୍ୱନ୍ତ ଖେଦାଇ କରି ବୁଲୁଛନ୍ତି ବୀରେ
ଲଙ୍କିଆ ଝଲକେ ଅର୍କତେଜ ପରକାରେ ।
ବହନ୍ତି ଯେ ଅସିପତ୍ର କୁନ୍ତ ବଜ୍ରବାଣ
ଅସୁର ତେଜ ପରାୟେ ଦିଶନ୍ତି ଯୁଦ୍ଧେଣ ।
ମଲ୍ଲୁଆଳ ଯୁଦ୍ଧ ଦେଖି ରଥରେ ମାରୁତି
ଗଦାବର ବୁଲାଇଣ ଧାଏଁ ମହାକ୍ଷଣୀ ।
ଭୀମସେନ ଛଅସହସ୍ର ଯୋଦ୍ଧା ଭୁଲେ ଥିଲେ
ରେରେକାର ଶବ୍ଦକରି ସକଳେ ଧାଇଁଲେ ।
କୃତାନ୍ତକ ରୂପ ଯଥା ବଶଇ ପାବନ
ମୂର୍ତ୍ତି ଦେଖି ପଳାଇଲେ କନାଉଜ ସୈନ ।
ସମରେ ଅନବାର ସେ ହିଡ଼ମ୍ବୀବଲ୍ଲଭ
ବୀରମାନଙ୍କ ମଧ୍ୟେ ଯା ମହିମା ଦୁର୍ଲ୍ଲଭ ।
ପାଦରେ ଭୀମ ସୈନ୍ୟଙ୍କୁ କଲେ ମର୍ଦ୍ଦନ
ଗଦାର ଘାତେ ବହୁତ ରଥ କଲେ ଚୂର୍ଣ୍ଣ ।
ପାଞ୍ଚଲକ୍ଷ ରଥୀ ସର୍ବେ ଏକମୁଖ ହୋଇ
ଭୀମସେନ ପରେ ଶର ବର୍ଷନ୍ତି ନଠାଇ ।
ବରଷା ଋତୁରେ ଯେହ୍ନେ ବରଷଇ ନୀର
ସେହିପରି ଉପରକୁ ବୃଷ୍ଟି ହୁଏ ଶର ।
ସେ ଶରମାନଙ୍କୁ ଭୀମ ମନରେ ନ ଗଣି
ବଜ୍ରାଙ୍ଗ ହୋଇ ଅଛଇ କ୍ଷତ୍ରି ଚୂଡ଼ାମଣି ।
ଅଭେଦ ଦେହ ତା ଶତଶୃଙ୍ଗ ପରସଙ୍ଗେ
ଯା ଶରୀରେ ନ ଭେଦନ୍ତି ତୀକ୍ଷ୍ଣ ଶରମାନେ ।

ପର୍ବତେ ନ ଫୁଟି ଯେହ୍ନେ ଖସିପଡ଼େ ଶର
ଭୀମ ଶରୀରେ ନ ଭେଦେ ଶର ସେ ପ୍ରକାର ।
ଯେ ପାଣ୍ଡବ ସଂଗ୍ରାମରେ ଅଟଇ ନିର୍ଭୟ
ଶତଶୃଙ୍ଗ ପ୍ରସଙ୍ଗେ ଯା ବଜ୍ର ଅଟେ କାୟ ।
ଗଦାବର ଅସିପତ୍ର କୁନ୍ତମୁନା ଯାଠି
ବୁଲଇ ଭୀମଙ୍କ ପରେ ଯୋଦ୍ଧାମାନେ ପିଟି ।
ଅସ୍ତ୍ରକୁ ଭୟ ତାହାର ନ ଥାଇ ଯୁଦ୍ଧରେ
କୃତାନ୍ତକ ମୂର୍ତ୍ତି ଭୀମ ଧଇଲେ ରଥରେ ।
ଏକାନ୍ତେ ମଣ୍ଡିଲା ସେ ଯେ କନଉଜ ଆଟ
ପଳାଅନ୍ତି ସଇନ୍ୟ ନ ପାଆନ୍ତି ବାଟ ।
ରଥେ ରଥ ଭଙ୍ଗଡ଼ଇ ବେଙ୍ଗକରେ ଟୋଳ
ଗଜନ୍ତି କଢ଼ାଇ ସେ ଗଜପରେ ବଳୀ ।
ଧାଇଁ ସଂଗ୍ରାମ କରେ ବୀର ବୃକୋଦର
ରଥ ଗଜ ଅଶ୍ୱମାର କରିଦଏ ଚୂର ।
ସମରେ ବିମୁଖ ହୋଇ ସକଳ ସଇନ୍ୟ
ପଳାନ୍ତି ଯାନ ବାହନ ତେଜି ପ୍ରାଣ ଘେନି ।
ଅନେକ ସୈନ୍ୟଙ୍କୁ ଭୀମ ମାରି ଲୋଟାଇଲେ
ନବଯୋଜନ ପର୍ଯ୍ୟନ୍ତ ମଡ଼ାରେ ପୂରିଲେ ।
କଦଳୀ ବୃକ୍ଷେ ଲୋଟନ୍ତି ଯେହ୍ନେ ବାତ ଘାତେ
ତେସନେ ସୈନ୍ୟ ଲୋଟିଲେ ନଯୂଣ ପର୍ଯ୍ୟନ୍ତେ
କେତେକ ସୈନ୍ୟ ଭୟରେ ପଳାଇଣ ଗଲେ
ଶବଶାନାରାୟଣଙ୍କ ଆଗରେ କହିଲେ ।
ବୋଇଲେକ ସାବଧାନେ ଶୁଣ ନୃପମଣି
ଜଳକ୍ରୀଡ଼ାରେ ଆପଣ ରହିଛ ମାତିଣ ।
ଆମ୍ଭେ ବହୁଯୁଦ୍ଧ କଲୁ ସେ ରଥୀ ସଙ୍ଗରେ
ତୀକ୍ଷ୍ଣ ଶର ନ ଭେଦଇ ତାହାର ଶରୀରେ ।
ବହୁତ ସଇନ୍ୟ ହେବ ପଡ଼ିଲେକ ଯୁଦ୍ଧେ
ଅସଂଖ୍ୟ ଯୋଦ୍ଧା ପଡ଼ିଲେ ସେହି ରଣ ମଧ୍ୟେ ।
ପଞ୍ଚମରଦ୍ଭୁତ ହେବ ପଡ଼ିଲେ ମାତଙ୍ଗ
ଦଶ ଅର୍ବୁଦ ପଡ଼ିଲେ ସୈଂଖାର ତୁରଙ୍ଗ ।
ଏଗାର ଯୋଜନ ଯାଏ ମଡ଼ା ପୂର୍ଣ୍ଣ ହେଲା
ଅସଂଖ୍ୟ ପଦାତି ମଲେ ଗଣନା ନୋହିଲା ।
ଦୂତଙ୍କ ମୁଖରୁ ରାଜା ଏ ବାରତା ଶୁଣି
ଜଳକ୍ରୀଡ଼ା ତେଜିକରି ବାହାର ସେକ୍ଷଣି ।
ମହାନାଗ ଗର୍ଜ୍ଜି ଯେହ୍ନେ ଫଣା ଟେକିକରି
ଆକାଶେ ଖେଳଇ ତେହ୍ନେ ବଦନ କେଶରୀ ।

ମୋହର ଛାମୁରେ ଆରେ ଏଡ଼େ କାଇ ଦର୍ପ
ଖଗ ଛାମୁରେ ପ୍ରତିଜ୍ଞା କରେ ଆସି ସର୍ପ ।
ସାଜରେ ମୋ ରଥ ଆଜ୍ଞା ଦେଲେ ନୃପମଣି
ଜୟସେନ ସୁତ ରଥ ସାଜିଲେ ସେକ୍ଷଣି ।
ସୂର୍ଯ୍ୟମଣ୍ଡଳ ରଥରେ ରତ୍ନାଦି ଖଚିଲେ
ସହସ୍ରେ ଶାର୍ଦ୍ଦୂଳ ନେଇ ତହିଁରେ ଯୋଚିଲେ ।
ଲୁହାର ଧନୁ କରରେ ଧରିଣ ନୃପତି
ଲୁହା ତୂଣେ ଶରଭରି ଆସେ କୋପମୂର୍ତ୍ତି ।
ରଥ ଉପରେ ବିଜୟ କଲେ ନରମଣି
ସଙ୍ଗରେ ସଇନ ନେଲେ ପଚାଶ କ୍ଷୌହଣୀ ।
ପାରିବଣ୍ଡିକୁ ବେହଣ ରାଜା ବିଜେ କଲେ
ଆସନ୍ତେ ଭୀମସେନକୁ ଆଗରେ ଭେଟିଲେ ।
ଦେଖିଲେ ଭୀମ ମୂରତି କାଳାନଳ ତେଜ
ପୃଚ୍ଛା କଲେ ରଥେ ଥାଇ ସେହି ମହାରାଜ ।
ହେ ମହାତ୍ମା ତୁମ୍ଭେ ଅଟ କେଉଁ ଦେଶ ରଥୀ
ବୃଥା ମୋ ସୈନ୍ୟଙ୍କୁ କିପାଁ ମାଇଲୁ ତୁ ମନ୍ଥି
ମୂର୍ଖ ତ ନୁହଇ ତୋର ସୁନ୍ଦର ବଇଷ
ଅବଭୂତ ଅପକାର ବ୍ରହ୍ମହତ୍ୟା ସରି ।
ନ ପୁଚ୍ଛି ରାଜ୍ୟରେ ମୋର ପଶିଲୁ କେମନ୍ତେ
ଏତେ ସୈନ୍ୟ ବଧିଲୁ ତୁ କେବଣ ନିମନ୍ତେ
ନ ଜାଣିଲେ କି ତୋ ଆଗେ ମୋର ଚରଗଣ
ପଶ୍ଚିମେ ବାରଧି ମୋ ନାଁ ଶବରୀ ନାରଣ ।
ପଶ୍ଚିମ କୋଶଳେ ଥିଲେ ରାଜା ଜରାସନ୍ଧ
ଛୟାଣୋଇ ସହସ୍ର ରାଜା ବନ୍ଦୀ କଲେ ମନ୍ଦ ।
ସେ ରାଜା ସଙ୍ଗରେ ମୁହିଁ କଲି ବନ୍ଧୁ ତୋଳ
ଯାକୁ ହାରି ପଳାଇଲେ ସେ କୃଷ୍ଣ ଗୋପାଳ ।
ସେ ଜରା ମୋ ସଙ୍ଗେ ଯୁଝି ପାଇଗଲେ ଲଜ୍ଜା
ମୋତେ ସାଧି ନ ପାରିଲେ ସେ ମଗଧ ରାଜା ।
ମୋହର ମହିମା କି ରେ ଶୁଣିନାହୁଁ ତୁହି
ଆୟୁ ଥାଉ ମରିବାକୁ ଅଇଲୁ କିପାଇଁ ।
ବେଳେ ବେଳେ ଏ ପ୍ରତିଜ୍ଞା କରନ୍ତେ ସେ ରାଜା
ଶୁଣି ମୁକୁଟ କମ୍ପାଏ ପବନ ଆତ୍ମଜା ।
ରଥର ଉପରୁ ବେଗେ ପଡ଼ିଲେ ସେ ଡେଇଁ
ମନ୍ତ୍ରିତ ସାରଥି ତାକୁ ଧଇଲା କୁଣ୍ଢାଇ ।
ରହ ରହ ବୃକୋଦର ନ କର ତୁ କୋପ
କହିବ ଦୋଷକୁ କିପାଁ ଏଡ଼େ ପରିତାପ ।
ଅକାରଣେ ରାଜାଙ୍କୁ ତୁ ଲୋଡ଼ି ଅଛୁ ମାରି
କା ଘେନି ଯାଗ କରିବେ ଧର୍ମ ଦଣ୍ଡଧାରୀ ।
ସହଜେ ସ୍ୱରେଟି ରାଜା ନ ଅଣ୍ଟେ ଯାଗକୁ
ଏହାକୁ ନାଶିଲେ ହରି ରଗିବେ ତୁମ୍ଭଙ୍କୁ ।
ଭୀମ ବୋଲେ ମୋ ଆଗେ ଏ ଦେଖାଏ ପ୍ରତିଜ୍ଞା
କେମନ୍ତେ ସହିବି ଅଜ୍ଞ କଲେ ଏ ଅବଜ୍ଞା ।
ଏହା ସମାନ କରିବ ସୁବର୍ଣ୍ଣ ରାଜାଏ
ଏହି ପଶ୍ଚିମ କୋଶଳେ ରହିକ କଥାଏ ।
ଧର.ଣ ସହସ୍ର ରାଜାଙ୍କୁ ବରିବ ଏ ଦବେ
ଦୁଇ ରତ୍ନ ମାଇଲେ ଯେ ସାଧି ହେବେ ବେଗେ
ଛାଡ଼ ଛାଡ଼ ପିତା ତୁମ୍ଭେ କଟାଳ ନ କରି
ପ୍ରତିଜ୍ଞା ଦେଖାଏ ଆସି ଏ ଦୁଷ୍ଟ ପାମର ।
ଭୀମକୁ ବୁଝାଇଲେ ସେ ମନ୍ତ୍ରିତ ସାରଥି
ନାରାୟଣ ନାମ ସ୍ମରି ନ ନାଶ ଏ ଭ୍ରାନ୍ତି ।
ଯେତେକ ଲୋକ ଜଗନ୍ନାଥଙ୍କ ଭକତ
କାରଣ ନିମନ୍ତେ ନାମ ଦ୍ୟନ୍ତି ତାତ ମାତ ।
ଶବରୀ ନାରାୟଣଙ୍କୁ କହିଲେକ ରହି
ପ୍ରତ୍ୟକ୍ଷେ ନାରାୟଣ ସେ ପାଣ୍ଡବ ସୁନ୍ଦର ।
ରାଜସୂୟ ଯାଗ ଏହି କରିବା ନିମନ୍ତେ
ଭୀମସେନ ବିଜେ କଲେ ପଶ୍ଚିମ ପ୍ରଶସ୍ତେ ।
ଏ ନଗର ରାଜାଙ୍କୁ ନେବେ କରି ନିମନ୍ତ୍ରଣ
ଅତି ଆନନ୍ଦେ ଯାଗକୁ ଯାନ୍ତି ରାଜାଗଣ ।
ତୋହର ପରି ବିବାଦ କଲେ ପୁଣ୍ଡରିକ
ରଥରେ ବନ୍ଧା ହୋଇଛି ପ୍ରତ୍ୟକ୍ଷରେ ଦେଖ ।
ଏଡ଼େ ବଡ ସମ୍ପଦକୁ ନ ନାଶ ନୃପତି
ଦୁଷ୍ଟପଣ ଛାଡ଼ି କରି ତାହାକୁ ଭକତି ।
ଶୁଣି ବଚନେ ଆନନ୍ଦ ହୋଇ ନୃପନାଥ
ବୋଲେ ଭୀମ ବୋଲି ମୁହିଁ ଏହା ନ ଜାଣେତ
ଯଜ୍ଞ ହେବ ବୋଲି ମୁହିଁ ଜାଣି ତ ନ ଥିଲି
ଏତେ ଗୁଡ଼ାଏ ସୈନ୍ୟଙ୍କୁ ବୃଥା ମରାଇଲି ।
ପୁଣି ବୋଲେ କହ ମନ୍ତ୍ରୀ କୋପେ ଭୀମସେନ
ଆସି ନ ପୁଣ ନିଅଇ ମୋହର ଜୀବନ ।
ମନ୍ତ୍ରୀ ବୋଲେ ତାକୁ ମନେ ଶଙ୍କା ତୁ କର
ସୁଖ୍ୟାତି ପାଇବ ଦେବ ବୋଲି କଲେ ମୋର
ଶରଣ ରକ୍ଷଣ ସେହି ଦୁଷ୍ଟଙ୍କ ମାରଣ
ଭକ୍ତବତ୍ସଳ ଯେ ପଛେ କରଇ କରୁଣା ।

ଭକତ ହୋଇଲେ ତାରେ ସେ ଦୁଷ୍ଟ ଅପାର
ଅଭକତ ହେଲେ ତାକୁ କରଇ ସଂହାର ।
ମନ୍ତ୍ରୀର ବଚନେ ରାଜା ତ୍ୟାଗ କଲେ ରଥ
ନଶସ୍ତ ହୋଇ ବନସ୍ତେ କଲେ ପ୍ରଣିପାତ ।
ଦୁଇ ହସ୍ତରେ ଚାମର ଧରି ସ୍ତୁତି ବୋଲି
ନଇଗଳ ହୋଇ ରାଜା ଶୁଏ ତଡ଼ବାଲି ।
ଆନନ୍ଦେ ବେନି ନୟନରୁ ବହେ ଅଶ୍ରୁଜଳ
ବଶନଖ ମୁଖେ ଭରି ନମେ ପାଦତଳ ।
ଜୟ ସୁରସୁନ୍ଦର ତୁ ପାଣ୍ଡବ ମାରୁତ
ତୋର ଆଶ୍ରା ନେଲେ ଯମ ଦଣ୍ଡେ ନାହିଁ ଭୀତ
ତୁହି କାଳ ଗଦାଧାରୀ ଯମଦର୍ପ ଭଞ୍ଜା
ଶରଣ ଉଦ୍ଧାରଣ ତୁ ଦୁଷ୍ଟ ଦର୍ପଗଞ୍ଜା ।
ମୁହିଁ ତୋହର ଶରଣ ନେଲି ବୃକୋଦର
ଦାସର ଦୋଷକୁ ଦେବ ତୁହି କ୍ଷମାକର ।
ଦନ୍ତେ କୁଟା ଧରି ପୁଣ ପୁଣ ନଇଗଳ
ଝାଳେ କନ୍ଦର୍ପ ଶରୀର ତହିଁ ଲାଗେ ଧୂଳ ।
ଶରଣପଞ୍ଜର ନାଥ ଭକତବତ୍ସଳ
ପଶ୍ଚିମ ରାଜା ନମନ୍ତି ତୋର ଅନୁକୂଳ ।
ମୁଁ ପାପୀ ନ ଦେଖି ପ୍ରଭୁ ଦୋଷ ଅରଜିଲି
ଅକାରଣେ ମୋର ବହୁ ସୈନ୍ୟ ମରାଇଲି ।
ମୁହିଁ ଏଥି ଦୋଷ ଦେବ କରିଲି ଅଜ୍ଞାନେ
ହୋଇଲି ମୁକତ ଦେବ ତୋର ଦରଶନେ ।
ସଙ୍ଗେ ସହସ୍ରେକ ସୁତ ସହସ୍ରେ ଯୁବତୀ
ଆସିଣ ସେମାନେ ପୁଣି କଲେ ବହୁ ସ୍ତୁତି ।
ମଲ୍ଲତ ସାରଥି ବୋଲେ ଭୀମଙ୍କ ଆଗରେ
ଶବଶ ନାୟକଙ୍କୁ ଆଜ୍ଞା କର ବାରେ ।
ଏହି ଯେ ଅନାଥ ତୁହି ଅନାଥଙ୍କ ବନ୍ଧୁ
ଶରଣରକ୍ଷଣ ତୋର ମହିମାଟି ସାଧୁ ।
ଆମ୍ଭେ ଏହାର ରାଜ୍ୟକୁ ନମନ୍ତିଣ ଆସି
ଆମ୍ଭର କାର୍ଯ୍ୟେ ଏହାର ବହୁ ସୈନ୍ୟ ନାଶି
ଅନେକ ସୈନ୍ୟଙ୍କୁ ତୁହି କରିଲୁ ବିନାଶ
ତହିଁକି ମନରେ ତାର ନାହିଁ କିଛି ରୋଷ ।
ସେ ଅଧମ ଆସି ଏବେ ଭକ୍ତି କରେ ତାର
ବହୁ ଅପରାଧ ଥିଲେ ତୁହି କ୍ଷମାକର ।
ସାରଥି ବଚନେ ଭୀମ କୋପ କଲେ ଶାନ୍ତ
ହୋଇଲେ ଉଠ ନରେଶ ତେଜ ମନୁଭ୍ରାନ୍ତ ।

ଆଜ୍ଞା ପ୍ରମାଣେ ଉଠିଲା ତକ୍ଷୁ ନୃପମଣି
ସ୍ନେହେ କୋଳକଲେ ତାକୁ କାଳଦଣ୍ଡ ପାଣି
ନମନ୍ତିଣ ପୂଗାକ୍ଷତ ଦେଇଣ ପାବନ
ବୋଇଲେ ଇନ୍ଦ୍ରପ୍ରସ୍ଥ ଯା ତୋର ଥାଟବେନ
କରିବେକ ରାଜସୂୟ ଯଜ୍ଞ ଧର୍ମସୁତ
ଆମ୍ଭର ଦିଗବିଜୟ ସେଥି କାରଣ ତ ।
ବରଷମା ଧନ ଘେନି ଚଳ ତୁ ନୃପତି
ମୁହିଁ ଯାଉଛୁ ଆବର ରାଜାଙ୍କୁ ନମନ୍ତି ।
ଆଜ୍ଞମାନେ ସେ ଶବଶାନାରାୟଣ ଗଲା
ଦଣ୍ଡ ଘେନି ଭୀମସେନ ପ୍ରୟାଣ କରିଲା ।
କନଉଜ ଦେଶ ଜିଣି ଗଲେ ଭୀମସେନ
ବନ୍ଧ୍ୟମାଳରେ ପ୍ରବେଶ ହୋଇଲେ ଯାଇଣ ।
ମନ୍ଦାରଉଦକ ନାମେ ଏକ ନଦୀଗୋଟି
ରଙ୍ଗବର୍ଣ୍ଣ ବନ୍ଧ୍ୟଗିରି ପଚ୍ଛୁ ଆସେ ଫୁଟି ।
ଭୀମସେନ ବଜେକଲେ ସେ ଗିରି ଉପରେ
ମହାତୀର୍ଥ ଦେଖି ସ୍ନାନ କରିଲେ ତହିଁରେ ।
ନିତ୍ୟକର୍ମ ସାରିଣ ସେ ଦେଖା ନଦୀକୂଳେ
ଭେଟିଲେ ବିଶ୍ୱାବସୁକୁ ଗିରିର ମଣ୍ଡଳେ ।
ହେ ଗୋବିନ୍ଦ ଦୟାମୟ ରାଜୀବ ଲୋଚନ
ସିନ୍ଧୁସୁତା ପ୍ରାଣଧନ ଭକତ ଜୀବନ ।
ଦୟାକର କୃପାସିନ୍ଧୁ ମୋହଠାରେ ବାରେ
ଭବଭୟ ନାଶଯାଉ ଜଣାଏ ପାଦରେ ।
ଶାରଳା ଦାସଇ ସଦା ଏତିକି ମାଗୁଣି
କେବେହେଁ ପାସୋରି ନ ଦେବ ଆହେ ଚକ୍ରପାଣି

---

## ଶ୍ରୀକୃଷ୍ଣ ସ୍ୱର୍ଗରୁ ସୁଧର୍ମା ସଭା ଆନୟନ

ପୁଣି ମନୁ ପୁଚ୍ଛାକଲେ ଅଗସ୍ତି ମୁନିଙ୍କି
କହ ମହାତମା ମୋତେ ଅମୃତ ବାଣୀକି ।
ରାଜାମାନେ ଯାଅନ୍ତି ଯେ ସେ ଇନ୍ଦ୍ରପ୍ରସ୍ଥେ
କାହିଁ ଯାଇ ବିଶ୍ରାମ ଏ କରନ୍ତି ସମସ୍ତେ ।
ଏହାଙ୍କ ଚରିତ୍ରମାନ କରେ କିଏ ପୁଣି
କେମନ୍ତେ ସନ୍ତୋଷେ ଅଛନ୍ତି ଧର୍ମ ନୃପମଣି ।
ଏଥିର ବାରତା ମୋତେ କହିବା ମହାତ୍ମା
ସାତ୍ତ୍ୱିକ ପୁରୁଷ ତୁହି ସ୍ୱୟଂ ବିଶ୍ୱବ୍ରହ୍ମା ।
ବେଦଶାସ୍ତ୍ରେ ନାହିଁ ତୋତେ ଦେବାକୁ ଉପମା
ଭାଗ୍ୟବନ୍ତ ପୁରୁଷ ତୁ ଅଟୁ ଧର୍ମଆତ୍ମା ।

ରାଜା ବଚନେ ବୋଲନ୍ତି କୃଷ୍ଣଋଷି ଦ୍ୱିଜା
ଶୁଣ ରାଜା ତୁମ୍ଭଠାରେ ଅଛି ବହୁ ପୂଜା ।
ରାଜାମାନେ ତନ୍ତ୍ର ସାଜ ସେଠାକୁ ଯାଆନ୍ତି
ଯମୁନା କୂଳେ ବାରୁଣାବନ୍ତରେ ରହନ୍ତି ।
ହସ୍ତିନା ରାଜ୍ୟ ଆସ୍ଥାନେ ଭଜେ ଧର୍ମସୁତ
ସମଦଣ୍ଡ ଘେନ ଭଜେ କୌରବ ସମସ୍ତ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ଭୂରିଶ୍ରବା
ଖଟିଛନ୍ତି ଇନ୍ଦ୍ରେ ଯଥା ଋଷି ଆଉ ଦେବା ।
ଏମନ୍ତ ଦେଖି କହିଲେ ଯାଇ ଚାରଗଣ
ରାଜା ଏ ବନେ କଲେଣି ବାରୁଣାବନ୍ତେଣ ।
ରାଜାମାନଙ୍କ ଆସିବା ଶୁଣି ଯୁଧିଷ୍ଠିର
ମନେ ମନେ ହୋଇଲେକ ଆନନ୍ଦ ଅପାର ।
କୃଷ୍ଣ ରାଜାସୈନ୍ୟଙ୍କର ଚରଣ ବୁଝିଲେ
ତାଙ୍କୁ ଯତନେ ଯମୁନା କୂଳରେ ରଖିଲେ ।
ରାଜାଙ୍କ ଆସିବା ଦେଖି ଦେବ ଦଇତ୍ୟାର
ଖରେ ଭଜେ କରଗଲେ ଅମର ନଗର ।
ଦେଖିଲେ ଶ୍ରୀକୃଷ୍ଣ ଲଗିଛନ୍ତି ବିଶ୍ୱକର୍ମା
ଅମରପୁର ମୋହର ସେ ସଭା ସୁଧର୍ମା ।
ନିଜେ ମଣ୍ଡିଲେ ସେ ସଭା ପ୍ରଭୁ ଜନାର୍ଦ୍ଦନ
ସେ ସଭାର ଆୟତନ ଦ୍ୱାଦଶ ଯୋଜନ ।
ତାହାକୁ ପୁଣି କୁବେର କରଲେ ମନ୍ତ୍ରଣି
ଗରୁଡ ପୃଷ୍ଠରେ ସଭା ରଖି ଚକ୍ରପାଣି ।
ସ୍ୱର୍ଗ ଭୁବନୁ ଅଇଲେ ନଶି ଅଛି ହୋଇ
ଇନ୍ଦ୍ରପ୍ରସ୍ଥେ ବସାଇଲେ ନ ଜାଣିଲେ କେହି ।
ଯେଉଁ ସଭାରେ ବସନ୍ତି ନିତ୍ୟ ଦେବଗଣ
ସେ ସଭାକୁ ହରି ମର୍ତ୍ତ୍ୟେ କଲେ ଆନୟନ ।
ଯେ ସଭାରେ ଥିଲେ ଭବଚନ୍ତା ନ ବାଧଇ
କ୍ଷୁଧା ତୃଷା ନ ଲାଗଇ ଯମଦଣ୍ଡ ନାହିଁ ।
ତ୍ରୈଲୋକ୍ୟ ମଧ୍ୟରେ ଯେଉଁ ସଭା ଶୋଭାବନ
ମଞ୍ଚପୁରେ ସ୍ଥାପନ ତା କଲେ ଭଗବାନ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ସେ ମାନେ ଗୋବିନ୍ଦ
ପଞ୍ଚରାଜ୍ୟ ଲୋକେ ଦେଖି ହୁଅନ୍ତି ଆନନ୍ଦ ।
ସୁବର୍ଣ୍ଣ ଯୋଗାଡ ଆଣିଦେଲେକ କୁବେର
ରାଜାମାନଙ୍କୁ ଅର୍ପିବ ଯେତେ ଅଳଙ୍କାର ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଚକ୍ରଧାରୀ
ସ୍ୱର୍ଗରୁ ଏହି ସଭାକୁ ଆଣିଲ କପଟ ।

ନ ପୁଣ ବାସବ ଦେବ ମୋତେ କରେ କୋପ
ସେ ରଗିଲେ ପଣ୍ଡୁଙ୍କ ନ ଯିବ ହତ୍ୟାପାପ ।
ଗୋବିନ୍ଦ ବୋଇଲେ ଶୁଣ ରାଜରାଜେଶ୍ୱର
ଛଳେ ସ୍ୱା ଭର୍ତ୍ସା କରନ୍ତୁ ଦେବ ସୁନାସୀର ।
ଚୌଷଠି କୋଟି ଅମର ନକ୍ର ଛଳାସିନୀ
ତୋହର ଗ୍ରାମକୁ ଦେବ ଆସିବେ ଏଷଣି ।
ଇନ୍ଦ୍ରଙ୍କ ଚୌଷଠିକୋଟି ବିଦ୍ୟାଧର ପୁଣେ
ତାଙ୍କୁ ପେଷିବେ ଏଥଣି ତୋ ଇନ୍ଦ୍ରପ୍ରସ୍ଥେ ।
ନିଜେ ବିଜୟ କରିବେ ଦେବ ମଘବାନ
ବ୍ରହ୍ମା ସଙ୍ଗତେ ଆସିବେ ବୃନ୍ଦାରକଗଣ ।
ବରୁଣରାଜା ଆସିବ ସପ୍ତସିନ୍ଧୁ ତେଜ
ବାସୁକୀ ସହ ଆସିବେ ତୋତେ ଲଭେ ଉଜ
ପ୍ରସ୍ତାବ ବାକ୍ୟରେ ଦେଖ କହନ୍ତେ ମାଧବ
ଅନେକ ସାନନ୍ଦ ହେଲେ ଶୁଣି ଧର୍ମଦେବ ।
ଏଣେ ପୁରୋହିତେ ଡାକ ପୁଛେ ଧୃତରାଷ୍ଟ୍ର
ରାଜାମାନେ ଆସିଣ ଯେ ମିଳଲେ ନିକଟ ।
ସଭାର ଭିଆଣ ତହିଁ ହୋଇଛି କେମନ୍ତ
ପୁରୋଧା ବୋଇଲେ ଶୁଣ ଅମ୍ବିକାର ସୁତ ।
ସଭାର ମହିମା ମୁଖେ କହିତ ନ ପାର
ଘାତକ୍ଷୀ ଜୀବନ ଗୋଟି ଅଟଇ ତୋହର ।
ପଣ୍ଡୁନନ୍ଦନମାନଙ୍କ ଅପାର ସମ୍ପଦ
ଦେଖିଥାନ୍ତୁ ଭିନ୍ନ ଜନ୍ମ ବେନଚକ୍ଷୁ ଅନ୍ଧ ।
ମହାଯାଗ ସଭା ଏକ ଦେବ ନୃପମଣି
ଲକ୍ଷେରାଜା ଆସୁଛନ୍ତି ଥାଟକୁ ପଳଣି ।
ଏରୂପେ ବୁଝାଇ ଯହୁଁ କହିଲେ ପୁରୋଧା
ଶୁଣି ଧୃତରାଷ୍ଟ୍ର ମନେ ହେଲା ଗରୁବାଧା ।
ଜୟ ଜୟ କୃପାସିନ୍ଧୁ ସିନ୍ଧୁସୁତା ପତି
ଜୟ ଜୟ ଦୀନବନ୍ଧୁ ଅଗତିର ଗତି ।
ତୁମ୍ଭେ ଯାକୁ ଦୟାକର ଆତଙ୍କନାଶନ
ତାକୁ ନ ବାଧଇ ଭବକୂପର କଷଣ ।
ଏହି ଭିକ୍ଷା ତୁମ୍ଭ ପାଦେ ମାଗୁଛି ହେ ପ୍ରଭୁ
ଶାରଳା ଦାସକୁ ତାର ଏହି ମାୟାଭବୁଁ ।

---

## ଉତ୍ତରଦିଗ ରାଜାଗଣ ନିମନ୍ତ୍ରଣେ ପାର୍ଥଙ୍କ ଗମନ

ମନୁରାଜା ପୃଚ୍ଛା କଲେ ଅଗସ୍ତି ମୁନିଙ୍କୁ
ଅର୍ଜୁନ ବିଜୟ କଲେ ଉତ୍ତର ଦିଗକୁ ।
ଉତ୍ତରଦିଗ ରାଜାଏ କ୍ଷତ୍ରୀ ମହାଯୋଧୀ
କେମନ୍ତେ ପାର୍ଥ ଆଣିଲେ ସେମାନଙ୍କୁ ସାଧି ।
ଏଥିର ଚରିତ ମୋତେ କହ ତପୋନିଷ୍ଠ
ତୋହର ବଚନେ ମୋର ତୁଟି ଭ୍ରାନ୍ତ କଷ୍ଟ ।
କହନ୍ତି ଅଗସ୍ତି ମୁନି ସୁଜ୍ଞ ବ୍ରହ୍ମଦେବି
ଯୋଗାଧି ଯୋଗେଶ୍ୱର ଯେ ବୈବସ୍ୱତ ଶ୍ରୋତା
କାର୍ତ୍ତିକ କୃଷ୍ଣ ଚତୁର୍ଥି ବୁଧଙ୍କର ବାର
ରୋହିଣୀ ନକ୍ଷତ୍ର ଭୋଗ ଅଟେ ସେ ଦିନର ।
ବବ ନାମେ କରଣ ଯେ ଯୋଗ ବଜ୍ରସ୍ଥାନ
ବୁଧଙ୍କର ବେଳ ଚନ୍ଦ୍ର ବୃଷେ ବିଦ୍ୟମାନ ।
ଏପରି ଯୋଗେ ବାହାର ହେଲେ ଫାଲ୍‌ଗୁନି
ଉତ୍ତରକୁ ମୁଖ କରି ହେଲେ ପଥଗାମୀ ।
ଗରୁଡ଼ ପିଠିରେ ବସି ସେ ଦେବ ଅଚ୍ୟୁତ
ଅର୍ଜୁନ ପଠାଇ ପଥ ଫେରିଲେ ତୁରିତ ।
ଯମୁନା ନଦୀର ତୀରେ ଥାଟକୁ ଚଳାଇ
ବର୍ଦ୍ଧମୁଖ ପର୍ବତରେ ବିଜେ କଲେ ଯାଇ ।
ଅରୁଣଉଲ୍ଲୋଳ ବୋଲି ଏକଇ ବନସ୍ତ
ତୀରକ ଉପରେ ତହିଁ ଲୁଚନ୍ତି ତ୍ରିଗର୍ତ୍ତ ।
ସପ୍ତ ଅର୍ବୁଦ ରଥୀ ତ୍ରିଂଶକୋଟି ହସ୍ତୀ
ନବ କୋଟି ତୁରଙ୍ଗମ ଅକ୍ଷୌହିଣୀ ପଦାତି ।
ରାଜ୍ୟଭ୍ରଷ୍ଟ ହୋଇଣ ସେ ଅତି ଦୁଃଖ ମନେ
କନ୍ଦମୂଳ ଖାଇ ରାଜା ବୁଲେ ବନେ ବନେ ।
ପାର୍ଥ ଆସିବାର ବାର୍ତ୍ତା ଶୁଣିଣ ତ୍ରିଗର୍ତ୍ତ
ଛାମୁକୁ ଆନନ୍ଦେ ରାଜା ଅଇଲା ତୁରିତ ।
ଗଣ୍ଡା ବୃନ୍ଦକୋଟି ରାଜା ଚଳାଇଣ ଆଗେ
ପାର୍ଥଙ୍କୁ ଦର୍ଶନ କଲା ଅମୃତର ଯୋଗେ ।
ପୁଚ୍ଛିଲେ ପାର୍ଥ ତାହାକୁ କେଉଁଦେଶ ରାଜ୍ୟେ
ବୁଲୁଅଛ ବନଗାମୀ ହୋଇ କାହା ଭୟେ ।
ବୋଇଲେ ତ୍ରିଗର୍ତ୍ତ ତହୁଁ ତାଙ୍କୁ ଯୋଡ଼ହସ୍ତେ
ଶୁଣ ଦେବ କହୁଅଛୁ ମୋ ଅବସ୍ଥା ଯେତେ ।
ସ୍ୱାମି ମଦ୍ରଦେଶ ବୋଲି ଥିଲା ମୋର ରାଜ୍ୟ
ସୁରସେନ ନୃପତିର ମୁଁ ଅଟେ ତନୁଜ ।
ସ୍ୱାମୀ ମୋ ଦେଶ ପଡ଼ଶା ଅଟେ ମତ୍ସ୍ୟଦେଶ
କର୍ଣ୍ଣକେଶରୀ ହୋଇଲା ଇଚ୍ଛାନନ୍ଦ ଶିଷ୍ୟ ।
ଇଚ୍ଛାନନ୍ଦର ନନ୍ଦନ ନୃପତି ସୌରାଷ୍ଟ୍ର
ଅନୁକ୍ରମେ ହେନ୍ତେ ରାଜା ମନ୍ତ୍ରି ଥାଇ ଆଠ ।
କରାତ ରାଜାର ଭୂଲେ ବହୁତ ବକାଗ୍ନି
ସେହେତୁ ଅନୁକ୍ରମେ ସେ ସୈନ୍ୟଙ୍କୁ ସମ୍ଭାଳି
ବୈରାଷ୍ଟ୍ର କରାତର ଯେ ହୋଇଲା ସଂଗ୍ରାମ
ଶତେକ ଦିବସ ଯୁଦ୍ଧ ହେଲା ଅବିଶ୍ରାମ ।
ବହୁତ ଯୁଦ୍ଧ କରଣ ନୃପତି କରାତ
ଗଦା ପିଟନ୍ତେ ଭାଙ୍ଗିଲା ବୈରାଷ୍ଟ୍ରର ରଥ ।
ବିରଥୀ ହୋଇ ପଳାଏ ଭୟେ ନୃପମଣି
କରାତ ରାଜା ତାହାର କେଶ ଧରିଆଣି ।
ରାଗରେ ନୃପତି କରେ ଧରି ତୀକ୍ଷ୍ଣ ଖଣ୍ଡା
ବୈରାଷ୍ଟ୍ର ରାଜାକୁ ହାଣି କଲା ମସିଗୁଣ୍ଡା ।
ଶ୍ରୀବଲ୍ଲୀ ବୋଲି ନାମେଣ ବୈରାଷ୍ଟ୍ରର ରାଣୀ ।
ସ୍ୱାମୀର ଅଭାବେ ସେହୁ ପଳାଇ ସେକ୍ଷଣି ।
ମଲ୍ଲାର ଦେଶର ରାଜା ଅଟେ ସଂକୋଚନ
ତାହାର ରାଜ୍ୟରେ ରାଣୀ ହୋଇଲା ଗୋପନ
ରାଜପତ୍ନୀ ବୋଲି ଦୟା କଲା ନୃପମଣି
ଭିନ୍ନ ନବରେ ରଖିଲେ ବୈରାଷ୍ଟ୍ରର ରାଣୀ ।
ଯେତେବେଳେ ସଂକୋଚନ ପୁରେ ରାଣୀ ଗଲା
ତେତେବେଳେ ତିନିମାସ ଗର୍ଭ ହୋଇଥିଲା ।
ସଂକୋଚନ ରାଜା ତାକୁ ସମ୍ଭାଳିଲା ଯତ୍ନେ
ପୁତ୍ରେ ଜନ୍ମିଲା ଶ୍ରାବଣ ଚତୁର୍ଥୀର ଦିନେ ।
ଦେଖି ସଂକୋଚନ ରାଜା ଆନନ୍ଦିତ ମନେ
ବରାଟ ନାମ ତା ଦେଲା ଏକବିଂଶ ଦିନେ ।
ବୈରାଷ୍ଟ୍ର ରାଜାର ପୁତ୍ର ବରାଟ ତା ନାମ
ରୂପଗୁଣେ ସୁନ୍ଦର ସେ ଯେସନେକ କାମ ।
ସଂକୋଚନ ନରେଶର ହେଲା ଦୁହିତାଏ
ସୁଦେଷ୍ଣା ନାମ ତାହାର ଦେଲା ମହାରାସ୍ୱେ ।
ଘେନି ସଂକୋଚନ ନିଜ ପୁତ୍ରକୁ ବସାଇ
ତାକୁ କୀଚକ ରେ ତୋତେ ପସ୍ତୁରୁଛି ମୁହିଁ ।
ମଦ୍ର ଦେଶର ରାଜା ଯେ ଅଟଇ ବୈରାଷ୍ଟ୍ର
କରାତ ହକାରେ ସେହୁ ହୋଇଗଲା ନଷ୍ଟ ।
ତା ଭାର୍ଯ୍ୟା ଗର୍ଭରେ ଥିଲା ପଳାଇ ଅଇଲା
ଆମ୍ଭ ଘରେ ଥିଲା ସେହୁ ପୁତ୍ରେ ଜାତ କଲା ।

ବୈରାଗ୍ୟେ ଗ୍ରହିଲା ଯହୁଁ ରାଣୀ ସଭରସ୍ତ୍ରୀ
ତେଣୁ ସେ ପୁରର ନାମ ଦେଲି ମୁଁ ବିରାଟ ।
ଆରେ ବାବୁ ତାଙ୍କୁ ମୁହିଁ ପାଳିଲି ଯତନେ
ତା ପଛରେ ଜନମିଲ ପୁଣି ତୁମ୍ଭେମାନେ ।
ଏବେ ମନମଧ୍ୟେ ମୁହିଁ ଏହା ଅଛି ଭାବି
ସେହି ବିରାଟଙ୍କୁ ମୋର ଝିଅ ଦେଇଦେବ ।
ଯେବେ ପୋଷାଇଛୁ ବାବୁ ତୋର ବସୁରକୁ
ସୁଦେଷ୍ଣା ବିବାହ ଦେବା ସେ ପୋଷ୍ୟପୁତ୍ରକୁ ।
ସୁସିଦ୍ଧ ବଂଶର ସେହି ଅଟେ ଅଧିକାରୀ
ଏମନ୍ତ ଭାବିଛୁ ବୁଦ୍ଧି କହ କି ବିଚାରି ।
ମତ୍ସ୍ୟଦେଶ ହୋଇଅଛି ଏବେ ଅରାଜକ
ତୋ ବଳରେ ସ୍ଥାନୁ ତହିଁ କର ଅଭିଷେକ ।
ଯାଚକ ବୋଲେ ପାଇଲା ଏ କଥା ମନକୁ
ନିଶ୍ଚେ ଏ ରାଜ୍ୟେ ସ୍ଥାପନ କରିବଇଁ ତାଙ୍କୁ ।
ପୁତ୍ରକୁ ମଣାଇ କରି ରାଜା ସଙ୍କୋଚନ
ବିରାଟଙ୍କୁ ସୁଦେଷ୍ଣା ସେ କରିଲ ପ୍ରଦାନ ।
ତ୍ରିଗର୍ତ୍ତ କହଇ ଶୁଣ ଆରେ ଫାଲଗୁନେ
ସମସ୍ତେ ବିରାଟ ଥିଲା ସଙ୍କୋଚ ଭୁବନେ ।
କୀଚକ ଯହୁଁ ମହିମା ଅର୍ଜିଲା ବହୁତ
ଅନେକ ରାଜ୍ୟ ଜିଣିଲା ହୋଇ ବଳବନ୍ତ ।
ସ୍ୱାମୀ ମର୍ତ୍ତ୍ୟପୁର ମଧ୍ୟେ ନାହିଁ ତାଙ୍କୁ ଯେ ଧି
ବହୁତ ବଳିଷ୍ଠ ରାଜା ଅଇଲା ସେ ସାଧି ।
ଅନେକ ପ୍ରତିଜ୍ଞା ସେହୁ କଲାକ ଆସ୍ଥାନେ
ଆଉ ରାଜା ନ ରହିବ ଏ ମଧ୍ୟଭୁବନେ ।
ସଙ୍କୋଚନ ବୋଲେ ତୋର ଅପାର ମହିମା
ବିରାଟ ସ୍ଥାପି ରହିଲେ ଉଦ୍ଭବ ଗାରିମା ।
ଦୁହିତା ଗୋଟିକ ତାଙ୍କୁ କରିଲ ପ୍ରଦାନ
ରାଜ୍ୟେକ ଦେଲ ତାହାଙ୍କୁ କରି ତୁ ରାଜନ ।
ଏହା ଶୁଣିଣ କୀଚକ ଅତ୍ୟନ୍ତ ରାଗରେ
ସୈନ୍ୟ ଚଳାଇ ମିଳିଲା ମୋହର ରାଜ୍ୟରେ ।
ଅନେକ ସଂଗ୍ରାମ ହୋଇଲା ତାହାର ମୋହର
ମୋ ସାହା ହୋଇ ଯୁଝିଲା କରାତ ଈଶ୍ୱର ।
କରାତ ଶବର ମୁହିଁ ଦୁଇ ନରନାଥ
କୀଚକର ତୁଲେ ଯୁଦ୍ଧ କଲୁ ଅପ୍ରମିତ ।
ଶତସିଂହ ବଳ ଧରେ ସଙ୍କୋଚନ ବାଳ
ଅନେଷ୍ଟତ ହାରି ସେନ ଜିଣିଲା ମଣ୍ଡଳ ।

କେ ଯୋଦ୍ଧା ହୋଇ ପୃଥ୍ୱୀରେ ତାଙ୍କୁ ସରିନାହିଁ
ତିନିପୁର ଜିଣିବାକୁ ଶକ୍ତିବାନ ସେହି
କୀଚକର ମୋର ଯୁଦ୍ଧ ହେଲା ଏହିମତେ
ଚୌଦବାର ଯୁଦ୍ଧ କଲା ଆସି ମୋ ସଙ୍ଗତେ ।
ଶେଷେ କୌଣସି ଉପାୟେ ତାହାଙ୍କୁ ନ ପାରି
ରାଜ୍ୟ ଛାଡ଼ି ଆଇଲି ମୁଁ ତହିଁ ଅପସରି ।
ମଧ୍ୟଦେଶ କରାତର ଠାରୁ ଜିଣିନେଲା
ମୋ ମତ୍ସ୍ୟଦେଶକୁ ପୁଣି ଅଧିକାର କଲା ।
ବିରାଟଙ୍କୁ ମତ୍ସ୍ୟ ମଧ୍ୟଦେଶ ଚକ୍ରବର୍ତ୍ତୀ
କରି ଆପଣେ ହୋଇଲା ତାର ସେନାପତି ।
ବଉଡ଼ିଆ ବାଉଲକ୍ଷ ଦ୍ୱିପଦ ଦୁହିଁଲ
କୀଚକ ଯୋଗେ ଭୋଗଇ ବିରାଟ ଭୂପାଳ ।
ବଳାତ୍କାରେ ବିରାଟ ଯେ ମୋ ରାଜ୍ୟ ଭୋଗଇ
ବୁଲୁଅଛି ବନରେ ମୁଁ ଫଳମୂଳ ଖାଇ ।
ସ୍ୱାମୀ ତୁ ଭକ୍ତବତ୍ସଳ କରୁଣାସାଗର
ନିଅନ୍ତା ରାଜ୍ୟକୁ ମୋର ମୋତେ ଦାନକର ।
ଅର୍ଜୁନ ବୋଇଲେ ଶୁଣ ହେ ତ୍ରିଗର୍ତ୍ତ ରାଜା
ସମଦଣ୍ଡ ଘେନ ତୁହି ଇନ୍ଦ୍ରପ୍ରସ୍ଥେ ଯା ଯା ।
ବିରାଟହିଁ ଆସିବ ଏ ରାଜସୂୟ ସଖ୍ୟକୁ
ତୋ ପାଇଁ ବୋଲିବା ଆମ୍ଭେ ସେହି କୀଚକକୁ
ଯେଉଁପରି ନିଜ ରାଜ୍ୟ ପାଇ ତୁ ତୋହର
ସେହିପରି ଉପାୟ ମୁଁ କରିବି ନିକର ।
ପାର୍ଥର ଚରଣେ ରାଜା ଓଳଗି ମେଲ୍ଲିଲ
ବାହାରିଲା ତ୍ରିଗର୍ତ୍ତ ସେ ଥାଟକୁ ଚଳାଇ ।
ତହୁଁ ବିଜୟ କରିଲେ ପାର୍ଥ ବୀରମଣି
ଉତ୍ତର ଦିଗେ ଚଳାଇ ଥାଟର ପଲଣି ।
ପ୍ରାଞ୍ଜଳଦେଶେ ପ୍ରବେଶ ହେଲେ ଫାଲଗୁନ
ପୃଥିବୀ କମ୍ପୁ ଅଛି ବୀରତୂର ଶବ୍ଦ ଶୁଣି ।
ପ୍ରାଞ୍ଜଳ ଦେଶର ରାଜା ଗୋପାଳ ନୃପତି
ସ୍ୱରଶତ ପାରିଦଣ୍ଡ ତାହାଙ୍କୁ ଖଟନ୍ତି ।
ପାଞ୍ଚକୋଟି ରଥ ପାଞ୍ଚକୋଟି ଯେ ତୁରଙ୍ଗ
ବହୁ ପଦାତି ଚଉଦ ଅର୍ବୁଦ ମାତଙ୍ଗ ।
ଅର୍ଜୁନ ପ୍ରବେଶ ହେଲେ ସେ ରାଜ୍ୟର ରାଜ୍ୟେ
ବୀର ତୂର ଟମକ ଯେ ବାଦ୍ୟମାନ ବାଜେ ।
ଆସ୍ଥାନରେ କରିଛନ୍ତି ବସେ ନରଭୂଷଣ
ମହାରାଜନ ଶୁଭିଲା ବୀରତୂର ଘୋଷ ।

ମନ୍ତ୍ରୀର ବଚନ ଶୁଣି ନୃପତି ପୁଚ୍ଛଇ
ଏ କସ ଠେକ ଆମ୍ଭର ରାଜ୍ୟରେ ଶୁଭଇ ।
ଏକାଳେ ଆସ୍ଥାନ ତଳେ ଜଣାଇଲେ ଚର
ଶ୍ୱେଦେବ ଶୁଣିମା ହେଉ ପ୍ରାଞ୍ଜଳଈଶ୍ୱର ।
ବନ ଡଙ୍ଗର ଜଟିଣ ରାଜାଏ ଆସୁଛି
ରଥ ଗଜ ଅଶ୍ୱ ସୈନ୍ୟ ଅଳ୍ପ ତାର ଅଛି ।
କେବଣ ଦେଶରୁ ହେବ ଆସୁଛି ସେ ବାହି
ରାଜା ହୋଇ ସମ୍ମୁରେ ତା ମିଳନ୍ତା କେ ନାହିଁ
ଏହା ଶୁଣିଣ ତରସ ହେଲେ ନରପତି
ସମ୍ମୁରେ ଜଣାଇଲେକ ସୁରେଶ୍ୱର ମନ୍ତ୍ରୀ ।
ସ୍ୱାମି ହସ୍ତିନାଠାକୁର ଯୁଧିଷ୍ଠିର ରାଜନ୍
ତାହାଙ୍କର ସାନୁଜ ଏ ବୀର ଧନଞ୍ଜୟେ ।
ଦିଗବିଜୟ କରନ୍ତି ରାଜସୂୟ ଅର୍ଥେ
ଲକ୍ଷେ ରାଜାଙ୍କୁ ଜିଣନ୍ତି ନେବେ ସେ ସଙ୍ଗତେ
ମନ୍ତ୍ରୀମୁଖୁଁ ଏ ବାରତା ଶୁଣି ନରନାଥ
ସାଜିଲେ ତାହାର ଅଶ୍ୱ ଗଜ ମହାରଥ ।
ବହୁତର ସଇନଙ୍କୁ ଘେନ ନୃପମଣି
ବିଜେକଲେ ମହାରାଜା ଥାଟର ପଲ୍ଲଣି ।
ସକଳ ସୈନ୍ୟ ଘେନିଣ ବିଜେ ମହାରାଜ
ଦିଷ୍ଟକୃଷ୍ଣଙ୍କୁ ଦେଖିବି କି ସୁଭାଗ୍ୟ ଆଜ ।
ଦର୍ଶନେ ସୁଫଳ ଆଜ ହୋଇବ ଜୀବନ
ପ୍ରାଞ୍ଜଳ ମଣ୍ଡଳାଧିପ ଭାଳିଲେ ଏସନ ।
କଟକ ଭିତରେ ବିଜେକଲେ ଫାଲଗୁଣ
ଦର୍ଶନ ଦଲେ ସମ୍ମୁରେ ରାଜାଥାଟ ସୈନ ।
ଅର୍ଜୁନଙ୍କର ଚରଣେ କଲେ ପ୍ରଣିପତ୍ୟ
ଦେଖିଣ ସାନନ୍ଦ ହେଲେ ବାସବଙ୍କ ସୁତ ।
ପୂଜାକ୍ଷତ ଦେଇ ତାଙ୍କୁ କଲେ ନିମନ୍ତ୍ରଣ
ସମଦଣ୍ଡ ଘେନ ରାଜା ଯାଅ ଏହିକ୍ଷଣ ।
ରାଜସୂୟ ଯଜ୍ଞହେବ ଇନ୍ଦ୍ରପ୍ରସ୍ଥରେ
ତୁମ୍ଭେ ଯାଇ ରହିବ ହେ ବାରୁଣାବନ୍ତରେ ।
ସଲଶସସ୍ର ରାଜାଙ୍କୁ ଏ ବିଗୁ ମୁଁ ନେବ
ତେବେ ଯାଇଁ ଯୁଧିଷ୍ଠିରଙ୍କୁ ଦର୍ଶନ କରବ ।
ଏହି କହି ତାଙ୍କୁ ଦେଇ ଚଳିଲେ ବିବସି
ଶୂନ୍ୟ ଦିଗପାଳ ପ୍ରାୟେ ରୂପ ବିରାଜୁଛି ।
ଗମନ୍ତେ ତୁରଙ୍ଗମାନ ଶୂନ୍ୟେ ଉଡ଼େ ଧୂଳି
ବରଷା ଋତୁରେ ଯେସନ୍ତେ ଝଟକେ ବିଜୁଳି ।

ସେ ରଥେ ବେଗେ ଗମନ୍ତି ରଥ ହସ୍ତୁ ଗର
ମାତଳି ସାରଥି ରଥ ବାହେ ବେଗକର ।
ମାଳବ ଦେଶରେ ଯାଇ ପ୍ରବେଶ ଅର୍ଜୁନ
ଯମନା କୂଳରେ ରାଜ୍ୟ ପାଏ ଶୋଭାବନ ।
ସେ ଦେଶର ବୀରବର ନାମେ ନରପତି
ବହୁତର ପାରଦଣ୍ଡ ରାଜାଙ୍କୁ ଖଟନ୍ତି ।
କୁବେର ସମ୍ପଦ ପରି ତା ଭଣ୍ଡାର ଧନ
ତା ରାଜ୍ୟେ ପ୍ରବେଶ ହେଲେ ଯାଇଣ ଅର୍ଜୁନ ।
ନାନା ବାଦ୍ୟ ବାରତୂର କଲେ ଘୋରଧ୍ୱନ
ଇନ୍ଦ୍ରବିଜେ କଲାପ୍ରାୟ ଗମନ୍ତି ଫାଲ୍‌ଗୁନ ।
ରାଜ୍ୟ ପଶୁଁ ଓଗାଳିଲେ ଆସି ଚରଗଣ
ଆମ୍ଭ ରାଜ୍ୟ ପଶ ଆହେ କେବଣ କାରଣ ।
ନ ଜାଣ କି ବୀରବର ଏ ଦେଶ ନୃପତି
ଉତ୍ତର କୋଣରେ ଯାର ମହିମା ବିଖ୍ୟାତି ।
ଧାର୍ମିକ ବିବେକ ଏହୁ ମହାବଳବନ୍ତା
ଏହି ପୃଥିବୀରେ ନାହିଁ କେ ତାଙ୍କୁ ଜିଣନ୍ତା ।
ଜୟ ବିଜୟ ପାର୍ଥର ବେନ ସେନାପତି
ଅଶ୍ୱେ ଅଶ୍ୱେ ଚଢ଼ି ସେହି ଆଗରେ ଚଳନ୍ତି ।
ଚରଙ୍କ କଥା ନ ଶୁଣି ସେନାପତି ଦୁଇ
ସେହି ରାଜ୍ୟରେ ପଶିଲେ ସବଳେ ଧସାଇ ।
ଏମାନେ ଯିବାର ଜାଣି ରାଜା ବୀରବର
ଏକସସ୍ର ରଥୀଙ୍କୁ ସେ ଡାକିଣ ସତ୍ୱର ।
ବୋଇଲା ରେ ତୁମ୍ଭେମାନେ ଯାଅ ଏହିକ୍ଷଣ
ପ୍ରାଣେ ନ ମାର ତାହାକୁ ଧରକର ଆଣ ।
ରାଜାର ଆଜ୍ଞାପାଇଣ ଗଲେ ସସ୍ରରଥୀ
ବାଣ ପୂରାଇ ଧାଇଁଲେ ହୋଇ କୋପମୂର୍ତ୍ତି ।
ମୁକୁଟବନ୍ଧା ଅଟନ୍ତି ସେ ସହସ୍ର ରଥୀ
ଶ୍ୱେଖାର ଶ୍ୱେତଅଶ୍ୱ ସେ ରଥେ ଯୋଚନ୍ତି
ତର୍ଜନ୍ତି ଗର୍ଜନ୍ତି ସେହୁ ସନ୍ଧି ତୀକ୍ଷ୍ଣମୁନା
ନିକଟ ହୋନ୍ତେ ମିଳିଲେ ମାଳବର ସେନା ।
ଦେଖି କୋପାନଳ ହେଲେ ପାର୍ଥ ସେନାପତି
ପରଶ ବୁଲାଇ ସେହୁ ଉଠିଲେକ ଧାତି ।
ମାଳବ ଯୋଦ୍ଧାଙ୍କ ପରେ କରନ୍ତେ ପ୍ରହାର
ଅନେକ ମରି ପଡ଼ିଲେ ଧରଣୀ ଉପର ।
ପଡ଼ନ୍ତି ଉଠନ୍ତି ସେହୁ ଗର୍ଜନ୍ତି କୋପରେ
କେତେ ଯୋଦ୍ଧା ନ ଯୁଝିଲେ ପାଦକେ ସମରେ

ଯାଠି କୁନ୍ତ ଧରି ସେହୁ ମାଲଯୁଦ୍ଧ କଲେ
ପାର୍ଥଙ୍କ ସୈନ୍ୟ ଆଗରୁ ଉବୁରି ନ ଗଲେ ।
ଆଗୁଆଣି ଥାଟେ ଥିଲେ ସହସ୍ରେକ ବଳ
କେହି ନ ବର୍ତ୍ତିଲେ ଯୁଦ୍ଧେ ପଡ଼ିଲେ ସକଳ ।
ଧାଇଁଣ ସେ ବୀରଗଣ କହିଲେ ରାଜାଙ୍କୁ
ସ୍ୱାମି ବଡ଼ ଦୁରପଦ ପଡ଼ିଲା ତୁମ୍ଭଙ୍କୁ ।
ସହସ୍ରେକ ରଥୀ ଆଗେ ଉଗାଳିଣ ଥିଲେ
ସେ ସମସ୍ତ ଯୋଦ୍ଧା ଘୋର ଯୁଦ୍ଧରେ ପଡ଼ିଲେ
ଏତେକ ମାତ୍ରଣ ଦେବ ନୋହିଲାକ ଶାନ୍ତ
କଟକ ଭିତରେ ପଶେ ହୋଇଣ ନଭ୍ରାନ୍ତ ।
ଆହୋ ମହାରାଜା ଏବେ ସମ୍ଭାଳ ତୋ ରାଜ୍ୟ
ଜନଜନ୍ତୁ ନାଶଗଲେ ହୋଇବ ଅକାର୍ଯ୍ୟ ।
ଡ଼ଗର ମୁଖୁ ବାରତା ପାଇ ବୀରବର
ଆପଣେ ବଜେ କଲା ସେ ଚୌଦୋ ଉପର ।
ରାଜାର ବଜେ ଦେଖିଣ ଧାଇଁଲେ ସଇନ
ଯେ ଯାହାର ଅସ୍ତ୍ରମାନ ନଜେ ନଜେ ଘେନ ।
ମହାଥାଟ ଦେଖିକରି ସେ ଜୟ, ବିଜୟ
ଏହୁ ବେନ ସେନାପତି ଧୁଆଇଲେ ହୟ ।
ମାର ମାର ବୋଲିକରି ପକାଇଲେ ବୋବ
ଯୋଗ୍ନୀବୃନ୍ଦ ବେଢ଼ ଯେହ୍ନେ ଡାକନ୍ତ ଭୈରବୀ
ସଂଗ୍ରାମେ ଅଜୟ ଅଟେ ଯାହାର ବୀରଧୂ
ସେନାପତିଙ୍କ ମହିମା ଯେହ୍ନେ ଅଟେ ସାଧୁ ।
ଧନୁ ଆମଣ୍ଟିଲେ ସେହି ଜୟ ଯେ ବିଜୟ
ଆଗେ ଓଗାଳିଲେ ରାଜ୍ୟ ପାରିବନ୍ତ ତୟ ।
ସାତଖଣ୍ଡ ରଥ ଆଉ ଆଠଖଣ୍ଡ ହସ୍ତୀ
ଘୂରଶତ ହୟବର ଷଉଣୀ ପଦାତି ।
ଏତେ ସୈନ୍ୟ ବୀରବର ଘେନ ତହବର୍ତ୍ତୀ
ରଣ ହାନ୍ଦୋଳନ କଲା କଉଶିକ ଗୋଷ୍ଠୀ ।
ହସ୍ତିନାର ବୀରମାନେ କରିଲେ ସମର
ତାଙ୍କ ହାଙ୍କେ କମ୍ପୁଅଛି ପର୍ବତ ଡଙ୍ଗର ।
ଗର୍ଜିଣ ଉଠିଲେ ଯହୁଁ ମାଳବର ବଳ
ଦୁଇସୈନ୍ୟ ମିଶିଗଲେ ତହୁଁ ମହାଗୋଳ ।
ବାଇଣ ନ ଗଲା କେହି ପରି କେ ଆପଣା
ହଣାହଣି ହେଲେ ତେଜ ଉପ୍ରୋଧ ଧାରଣା ।
ମାତଳି ସେଠାରୁ ରଥ ବାହିଲା ସତ୍ୱର
ଘୋଷ ଟଙ୍କାରି ଉଠିଲା ପାର୍ଥ ଧନୁର୍ଦ୍ଧର ।

ଅର୍ଜୁନର ସେନାପତି ଜୟ ଯେ ବିଜୟ
ତାଙ୍କୁ ଓଗାଳିଲେ ଆସି ମାଳବର ରାୟ ।
ବୀରବର ସୁନ୍ଦର ସେ କ୍ଷତ୍ରୀ ଅନର୍ଗଳା
ସମରେ ଅଭୟ ସେହି କ୍ଷତ୍ରୀ ମହାଗଳ ।
ମାଳବର ସେନାଏ ଯେ ଥଇଲେକ ଧାଇଁ
ବୁଲଅନ୍ତି ଲକ୍ଷିଆ ସେ ସିଂହନାଦ ଦେଇ ।
ଧାଆଁରେ ମାରରେ ବୋଷେପ୍ରତିଜ୍ଞାରେ ବୋଲି
ଗାଳିତୂର ଶବଦରେ ପକାନ୍ତି କୁରୁଳି ।
ଜୟ ବିଜୟ ଏ ଦୁହେଁ ବୁଲଇ ପଞ୍ଚଘ
ଗର୍ଜନ୍ତି ବର୍ଷାକାଳର ସମ କଳାମେଘ ।
ସୈନ୍ୟଙ୍କ ଉପରେ ଯହୁଁ ପ୍ରହାରିଲେ ଗଦା
ଭାଙ୍ଗିଲେ ଯବନବଳ ପିଟି କଲେ ପଦା ।
ରଥୀ ସାରଥି ପଡ଼ିଲେ ସୈନ୍ୟ ଭୂମିଲୋଟି
ରଥେ ବିଜୟ କରଛି ପାଣ୍ଡବ କଶାଟୀ ।
ଅରଜୁନ ଆଜ୍ଞାଦେଲେ ଡ଼ାକି ସାରଥିକି
ମୋର ରଥ ବାହାବେଗେ ରାଜାର କଟକ ।
ପବନ ବେଗରେ ରଥ ବାହିଲା ମାତଳି
ମାଳବ ରାଜାର ପାଶେ ଶୀଘ୍ର ଗଲା ମିଳି ।
ବୀରବର ରାଜାର ଯେ ଦେହ ବଜ୍ରସମ୍ଭ
ପାର୍ଥଙ୍କୁ ଦେଖି ବନ୍ଧିଲା ଶର ଅଗଣନା ।
ରଥ ଉପରେ ଥାଇଣ କହନ୍ତି ଅର୍ଜୁନ
କହୋ ବୀରବର ତୁମ୍ଭ ନିତାନ୍ତ ଅଜ୍ଞାନ ।
କାହାର ବୁଲେ ବିବାଦ କରୁ ରାଗଚିତ୍ତେ
ଦେଖାଉରେ ବାରତା କି ନ କହିଲେ ତୋତେ
ଉତ୍ତରଦିଗେ ବିଜେ ମୁଁ କରିଛି ଫାଲ୍ଗୁନ
ରାଜାଙ୍କୁ ନମନ୍ତି ରାଜସୂୟେ ଯିବ ଘେନ ।
ନ ଜାଣିଣ ବୃଥା ତୁମ୍ଭି କରିନ୍ତୁ ସମର
ଅଳ ରଣେ ସୈନ୍ୟ କପଁ: କରୁ ଅପହାର
ଏଡ଼େ ବଡ଼ ରାଜା ହୋଇ ଅପଣ୍ଡିତ ପଣେ
ମରାଇଲୁ ସଇନ୍ୟଙ୍କୁ ତୁମ୍ଭ ଅକାରଣେ ।
ଧନଞ୍ଜୟ ବାକ୍ୟ ଯହୁଁ କହିଲେ ଏମନ୍ତ
ଶୁଣିଣ ରଥରୁ ଡେଇଁ ସେହି ନରନାଥ ।
ଅର୍ଜୁନର ରଥତଳେ ହୋଇଣ ପ୍ରଣମି
ବୋଲେ ଦାସ ଦୋଷ କ୍ଷମାକର ଦେବସ୍ୱାମି
ଅର୍ଜୁନ ବୋଇଲେ ତୁମ୍ଭ ଉଠ ଉଠ ବାବୁ
ହୋଧ ପରମ ଚଣ୍ଡାଳ ତୁ ବସ କରବୁ ।

ସଇନଙ୍କି ଡ଼ାକଦେଲ ଛୁଦ ହୋ ହଭ ଏଁ
ନ ଜାଣି ନାଶ ହେଉଛ ସର୍ବେ ହୁଅ ଅସ୍ତେ ।
ଇକଚବସ୍ତ୍ରକ ଦୋଷ କଲେଣି ଉପେକ୍ଷା
ସେ ଯେ ନାଶ ଗଲେ ଗଲେ ତୁମ୍ଭେ ହୁଅ ରକ୍ଷା ।
ସମସ୍ତ ପଳାଇଥିଲେ ମହାଭୟ କରି
ରାଜାର ମଧୁର ବାକ୍ୟ ଶୁଣିଲେ ସେ ଫେର
ନିମନ୍ତ୍ରଣ ଯୋଗାଡ଼କୁ ସଦ୍ୟସାତି ଦେଲେ
ଇନ୍ଦ୍ରପ୍ରସ୍ଥେ ଯାଅ ବୋଲି ଏ ଆଜ୍ଞା କରିଲେ ।
ଶୁଣି ସାନନ୍ଦେ ବୋଲଇ ସେହି ନରମଣି
ସ୍ୱାମି ଆଜ୍ଞା ପ୍ରମାଣେ ମୁଁ ଯିବି ଏହିକ୍ଷଣି ।
ମାଳବ ରାଜା ନମିଲେ ପାର୍ଥ ପଦ୍ମପାଦେ
ଲଭିଲ ଅନେକ ପୁଣ୍ୟ ତୁମ୍ଭର ପ୍ରସାଦେ ।
ସ୍ୱାମି ମନୋହର ଯୋଗ ଡ଼ କରିବ ବିଧାନ
ଏତେ ବେଳ ହୋଇଲାଣି ଆସିଣ ମଧ୍ୟାହ୍ନ ।
ଅର୍ଜୁନ ବୋଇଲେ କୁହୋ ଶୁଣ ବୀରବର
ମନୋହିକ ବେଳ ନାହିଁ ଅଛୁଟି ମୋହର ।
ଷୋଳଶ ସହସ୍ର ରାଜା ଜଉଦ୍ଦନ ମଧେ
ନିମନ୍ତ୍ରିବ ନାହିଁ ଅବା ସାଧି ହେବ ଯୁଦ୍ଧେ ।
ଦଣ୍ଡସେନ ବାହାର ତୁ ହୁଅ ଏହିକ୍ଷଣ
ଦବାରଦେ ଅନୁବ୍ରତେ କରିବୁ ପ୍ରୟାଣ ।
ଯେଉଁ ରାଜା ନ ଯାଇଣ ବିଳମ୍ବ କରିବ
ନିଶ୍ଚେ ଯଜ୍ଞଦ୍ରୋହୀ ହୋଇ ସେହି ନାଶଯିବ ।
ଆମ୍ଭେ ଯେ କହିଲୁ ଏହା ନିର୍ଦ୍ଧାରି କରି
ଅନୁକୂଳ କରି ରାଜା ଲଗ୍ନକୁ ବରିର ।
ମାଳବ ଦେଶରୁ ବିଜେ କଲେ ଫାଲ୍‌ଗୁନ
ବନ୍ଧୁ ସମ୍ଭବେ ଚଳଲେ ଅଷ୍ଟ ସୈନ୍ୟ ଘେନ ।
ମାଳବଦେଶ ଅନ୍ତରେ ଜାମ୍ବୁକ ଯେ ବନ
ହରିଣାକ୍ଷୀ ବୋଲି ନଦୀ କରଇ ପ୍ରୟାଣ ।
ସେ ନଦୀର କୂଳେ ଅଛି ସୌରଭ ପର୍ବତ
ସେ ଗିରି ଉପରେ ଯାଇ ବିଜେକଲେ ପାର୍ଥ ।
ଏରଣ୍ଡଙ୍ଗ ବୋଲି ତହିଁ ରାଜ୍ୟ ଯେ ଗୋଟିଏ
ତହିଁ ରାଜ୍ୟ କରେ ହନୁମନ୍ତ ନରପତେ ।
ପାର୍ଥ ଡ଼ାକିଲେ ବିଜୟ ଜୟ ସେନାପତି
ଆଦିତ୍ୟ ଅସ୍ତ ଯାଇଣ ହେଲ ନିଶାଗତି ।
ସ୍ୱପରେ ପଶିବା କିପାଁ ଆମ୍ଭେ ପରରାଷ୍ଟ୍ର
ରାଜାଙ୍କୁ ପରତେ ନାହିଁ ରହ ଏଥେଁ ଆଟ ।

ରହିଲେ ସଇନ ସହ ସେହି ପର୍ବତେ
ରନ୍ଧଣା ସାମଗ୍ରୀମାନ ଆଣିଦେଲେ ଦୂତେ ।
ସୂପକାରମାନେ ତହିଁ କରିଲେ ରନ୍ଧନ
ସମସ୍ତେ ନଦୀରେ ପଶି ସାରି ନିତ୍ୟକର୍ମ ।
ପାର୍ଥ ହରିବେ ଅମୃତ ଯୋଗାଡ଼ ଭୁଞ୍ଜିଲେ
ଆଚମନ କରି ତହିଁ ସୁଖରେ ବସିଲେ ।
ଏ ସମୟେ ଅଷ୍ଟକନ୍ୟା ପ୍ରଧାନ ନର୍ତ୍ତକୀ
ବାସବ ନଜେ ତାହାଙ୍କୁ ଡ଼ାକାଇ କଉତକ ।
ସୁଧର୍ମା ସଭାରେ ଥିଲେ ଅଷ୍ଟ ବିଦ୍ୟାଧର
ଏମାନଙ୍କୁ ପାର୍ଥ ପାଶେ ପେଷିଲେ ସତ୍ୱର ।
ପୁଷ୍ପକଯାନ ଆରୋହି ଅର୍ଜୁନଙ୍କୁ ଭେଟି
ଅମରବଳ ସିମାଏ ନୃତ୍ୟରସେ ଖଟି ।
ଲୁତୁହଳେ ରହଟିଏ ହୋଇଲା ପାହାନ୍ତି
ବାର୍ତ୍ତା ପାଇଲେକ ଏରଣ୍ଡଙ୍ଗ ଚକ୍ରବର୍ତ୍ତୀ ।
ଧାର୍ମିକ ପଣ୍ଡିତ ହନୁମନ୍ତ ନରପ
ଶୁଣିଲା ପର୍ବତେ ଛନ୍ତି ବୀର ଧନଞ୍ଜୟ ।
ଘେନିକରି ଶତହାଇ ସେହି ମତ୍ତହସ୍ତୀ
ପାର୍ଥଙ୍କୁ ଦର୍ଶନ କଲା ରଜନୀ ପାହାନ୍ତି ।
ଦେଖିଣ ଦାଣ୍ଡହସିତ ସୁଭଦ୍ରାର ନାହା
ସମଦଣ୍ଡ ଘେନ ରାଜସୂୟକୁ ତୁ ଯାଆ ।
ସେ ବୋଲେ ଦେଖିଲି ନେତ୍ରେ ଦିକ୍ଷ ନାରାୟଣ
ଜୀବନ ସୁଫଳ ହେଲା ଲଭିଲି କାରଣ ।
ଶ୍ରବଣେ ଯାହା ଶୁଣିଥିଲି ଦେଖିଲି ନୟନେ
ପ୍ରତ୍ୟକ୍ଷେ ବଶୁଛୁ ତୁହି ନାରାୟଣ ସମେ ।
ତହିଁ ଶତସସ୍ତ ହୋଇ ଦଣ୍ଡ ପରଣାମି
ମୋର କଟକ ଭିତରେ ବିଜେକର ସ୍ୱାମି ।
ମୋ ରାଜ୍ୟରେ ନରନାରୀ ସମସ୍ତେ ଦେଖନ୍ତୁ
ଗତ ଜନ୍ମର ପାତକମାନ ଉପେଖନ୍ତୁ ।
ଶୁଣିଣ ହନୁମନ୍ତର ଏମନ୍ତ ବଚନ
ତାର ରାଜ୍ୟେ ବିଜେକଲେ ବୀର ଧନଞ୍ଜୟ ।
ପୁରମାନଙ୍କେ ଉତ୍ସବ କଲା ରାଜଦେବ
ମନୋହ ଯୋଗାଡ଼ କଲା ବଦ୍ଧତ ସମ୍ଭବ ।
ପାଏତା ପାଡ଼ିଣ ରାଜା କଲକ ବିନତି
ତେବେ ବିଶୁଛନ୍ତି ପାର୍ଥ ଯେହ୍ନେ ଶଚୀପତି ।
ଗମନ କଲେକ ପାର୍ଥ କଟକ ଭିତରେ
ଦର୍ଶନ କରନ୍ତି ସର୍ବେ ବେଳ ପାର୍ଶ୍ୱରେ ।

କଟକ ବୁଲ ରାଜାଙ୍କୁ ବୋଲେ ଫାଲଗୁନ
ରାଜସୂୟ ଯାଗକୁ ଯା ସମଦଣ୍ଡ ଘେନ ।
ବାହୁଣାବନ୍ତରେ ହେବ ତୁମ୍ଭେ ଉପସ୍ଥିତ
ରାଜାମାନେ ସେହିଠାରେ ହେବେ ଏକତ୍ରିତ ।
ଏରଡ଼ଙ୍ଗ ନୃପତିକୁ ଚଳାଇ ଫାଲ୍‌ଗୁନ
ବଙ୍ଗଦେଶରେ ପ୍ରବେଶ ହେଲେ ସେହିକ୍ଷଣି ।
ସେ ବଙ୍ଗଦେଶ ରାଜାର ନାମ ଯେ ଚନ୍ଦଙ୍ଗ
ଶତକ୍ଷୌଣୀ ବଳ ତାର ଅଟେ ମହାଭାଗ ।
ଆସ୍ଥାନ ତଳେ କହିଲେ ଯାଇ ଚରଗଣ
ସ୍ୱାମି ଯୁଧିଷ୍ଠିର ଭାଇ ବୀର ଅର୍ଜୁନ ।
ଉତ୍ତରଦିଗୁ ନମନ୍ତି ନେଦେ ରାଜ ଗଣ
ପ୍ରତିଜ୍ଞା ସାମର୍ଥ ସେ ତ ପାଣ୍ଡବ ଅର୍ଜୁନ ।
ରାଜସୂୟ ଯାଗ ବୋଲିଣ ହେବ ମହାସଭା
ସମଦଣ୍ଡ ଘେନି ବୁଲି ସେ ସଭାକୁ ଯିବା ।
ସ୍ୱାମି ଦୁଷ୍ଟ ହେଲେ ନାଶେ ସନ୍ତେ ପ୍ରତିପାଳ
ଗର୍ବ ଦର୍ପଗଞ୍ଜ ସେହି ଅଟେ ମହାବଳୀ ।
ଶୁଣିଣ ଆନନ୍ଦ ହେଲା ଚନ୍ଦାଙ୍ଗ ନୃପତି
ଆସ୍ଥାନ ତେଜିଣ ରାଜା ଆଇଲା ଝଟତି ।
ଦେଖା ଦରଶମା ସେହି ଶତେଭାର ଧନ
ଅର୍ଜୁନ ସମ୍ମୁଖରେ ରାଜା କଲା ଦରଶନ ।
ଭକତି ଦେଖିଣ ଶାନ୍ତ ହେଲେ ଫାଲଗୁନ
ମାଳାଗୋଟି ନେଲେ ପାର୍ଥ ଶ୍ରୀହସ୍ତରେ ଘେନ
ରାଜସୂୟଯାଗ କରିବେ ଧରମ ଯୁଧିଷ୍ଠି
ପଣ୍ଡୁ ମହାରାଜାଙ୍କର ଖଣ୍ଡିବେ ଅରିଷ୍ଟି ।
ଲକ୍ଷେକ ନୃପତି ତହିଁ ହୋଇବେକ ରୁଣ୍ଡ
ଯେବେ ରାଜାର ଯେତେ ସୈନ୍ୟ ପାଇଦଣ୍ଡ
ଘେନ ସକଳେ ସେଠାରେ ହୋଇବେ ପ୍ରବେଶ
ମୋର ସୈନ୍ୟ ଘେନ ଏଥୁ ଯାଅ ନରଈଶ ।
ତୋର ଇଚ୍ଛାମତେ ଘେନ ଦେଖା ଦରଶନ
ଅବିଳମ୍ବେ ଏ ସ୍ଥାନରୁ ଯାଅ ନରମଣି ।
ଅକ୍ଷତ ଗୁବାକ ତାକୁ ଦେଇଣ ଶ୍ରୀହସ୍ତେ
ବୋଇଲେ ଏକ୍ଷଣି ତୁମ୍ଭେ ଯାଅ ଇନ୍ଦ୍ରପ୍ରସ୍ଥେ ।
ଆଜ୍ଞା ପ୍ରମାଣେ ସେ ବଙ୍ଗଦେଶ ଅଧିକାରୀ
ଦଣ୍ଡଘେନ ବାହାରିଲା ମନ୍ତ୍ରୀକ ବରୁରି ।
ପାଳନ କରତା ଅଟ ଆହେ ଜଗନ୍ନାଥ
ଶାରଳା ଦାସେ ଦେଖାଅ ପ୍ରଭୁ ମୁକ୍ତିପଥ ।

---

## ମଙ୍ଗଳ ସେନ ରାଜା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ଅଗସ୍ତିଙ୍କ ପାଦେ ନମି ମନୁ ଦଣ୍ଡଧର
ପୁନରପି ପୃଚ୍ଛା କଲେ କହ ମୁନିବର ।
ବଙ୍ଗଦେଶ ଜିଣି ପାର୍ଥ ତହୁଁ କାହିଁ ଗଲେ
ଏ କଥା ବିସ୍ତାରି ବେଗେ କହ ମୋର ଭୁଲେ
ରାଜା ର ବଚନ ଶୁଣି ବୋଇଲେ ଅଗସ୍ତି
ତୁମ୍ଭେ ଯାହା ପୃଚ୍ଛା କଲ ଶୁଣ ମହାମତି ।
ଚଳିଗଲେ ଫାଲଗୁନ ବଙ୍ଗଦେଶୁଁ ପୁଣି
ଅତିଶୀଘ୍ର ଯାଉଛନ୍ତି ବନଗିରି ଜିଣି ।
କର୍ଣ୍ଣାଟ ଦେଶରୁ ନେଲେ ଥାଟକୁ ଚଳାଇ
ମହାଆନନ୍ଦରେ ବୀରବାଦ୍ୟକୁ ବଜାଇ ।
ସିନ୍ଧ ବୋଲିଣ ଅଛଇ ଏକ ପରବତ
ତହିଁ ଯାଇ ବିଜେ କଲେ ବୀରବର ପାର୍ଥ ।
ସୂପକାର ରଇ ଆଜ୍ଞାଦେଲେ ଫାଲଗୁନ
ରନ୍ଧଣା ଯୋଗାଡ଼ ତୁମ୍ଭେ କର ଏହିକ୍ଷଣି ।
ଲାଗିଲେ ସେ ସୂପକାରେ ରନ୍ଧଣା ବିଧାନେ
ଭୁଞ୍ଜିଲେ ସଇନ୍ୟମାନେ ଅଭି ସୁବିଧାନେ ।
ଆପଣେ ମଣୋହି ସାରି ବୀର ଫାଲ୍‌ଗୁନ
ଗୋବିନ୍ଦ ଧ୍ୟାଇ ବାହାରି ହେଲେକ ଧଇନ ।
କର୍ଣ୍ଣାଟ ଦେଶରେ ଯହୁଁ ମିଳିଲେକ ଥାଟ
ମଙ୍ଗଳସେନ ନୃପତି ଜାତ ମହାରାଷ୍ଟ୍ର ।
ଦେଶ ଉରେ ଜଣାଇଲେ ଶୁଣ ନରନାଥ
ପରରାଷ୍ଟ୍ର ଥାଟ ଆସି ହେଲା ଉପଗତ ।
ସହସ୍ରେକ ରଥ ତାର ଦୁଇସହସ୍ର ହସ୍ତୀ
ପଞ୍ଚସହସ୍ର ଅଶ୍ୱ ଦୁଇକ୍ଷଉଣୀ ପଦାତି ।
ଟମକ ନିଶାଣ ବିଜିଘୋଷ ଯେ ବାଜନ୍ତି
ଘୋର ବାଦ୍ୟ ଶବଦରେ କମ୍ପେ ମହୀଖଣ୍ଡି
ପରରାଷ୍ଟ୍ରେ ପଶୁଅଛୁ ନାହିଁ ତାର ଡର
କେଉଁ ଦେଶ ନୃପତି ସେ ନ ଜାଣୁ ତା ଘର
କବା ଅଙ୍ଗାରପଲ୍ଲଗ କରିଲେ କି ବଜେ
ଦେବବାଦ୍ୟ ଦୁନ୍ଦୁଭି ଯେ ଅନୁକ୍ଷଣେ ବାଜେ
ଚରଙ୍କ ମୁଖରୁ ରାଜା ପାଇଣ ବାରତା
ଅଧରପୃଷ୍ଠ କରିଣ ହୋଇ କୋପଚିତା ।
ପ୍ରତିଜ୍ଞା କଲା ସେକ୍ଷଣି ନିଂଶ ହସ୍ତ ଦେଇ
ପୃଥିବୀରେ ସମସରି ମୋତେ କେ ଅଛଇ ।

ଯଦ୍ୟପି ହୋଇବ ବ୍ରହ୍ମା ରୁଦ୍ର ଦଇବତ
ନିଶ୍ଚୟ ମୃତ୍ୟୁ ତାହାକୁ ହେବ ପଶୁପତ ।
ଏପରି ବହୁ ପ୍ରତିଜ୍ଞା କରି ନରମଣି
ବୋଲେ ସାଜ ଅଶ୍ୱ ଗଜ ଥାଟର ପଲ୍ଲାଣି ।
ସମଦଣ୍ଡ ଥାଟ ସାଜ ସେ ମଙ୍ଗଳସେନ
ସ୍ୱରଶତ ଅଶ୍ୱ ରଥେ ଯୋଚିଲା ବହନ ।
ବହୁତ ସଇନ ତାଇ କେ ପାରିବ କଳି
ଆକାଶେ ବ୍ୟାପିଲା କ୍ଷତ୍ରୀଙ୍କର ପାଦଧୂଳି ।
ବହୁତ ବଳ ଚଳିଲା କ୍ଷତ୍ରୀ ମହାବୀର
ମେଦିନୀ ନ ସହଇ ଯେ ତାଙ୍କ ପାଦଭର ।
ପଚାଶ ମେଦଛ ରଥ ପାଞ୍ଚକ୍ଷୌଣୀ ହସ୍ତୀ
ଅର୍ବୁଦେ ଅଶ୍ୱ ଏଗାର କ୍ଷଉଣୀ ପଦାତି ।
ସମରେ ସୈନ୍ୟମାନଙ୍କୁ ଚଳାଇ ଜାବଡ଼େ
ରାଜ୍ୟରୁ ବାହାର ହେଲା ରାଜା ତଡ଼ବଡ଼େ ।
ଏବେଳେ ସୈନ୍ୟେପ୍ରବେଶ କଲେ ସବ୍ୟସାଚୀ
ଉଡ଼ନ୍ତି କୁରଙ୍ଗ ଯେସ୍ନେ ଶୂନ୍ୟେ ଉଡ଼େ ପକ୍ଷୀ
ଜୟବିଜୟ ପାର୍ଥରି ବେନି ସେନାପତି
ଆଗୁଆଣି ଥାଟେ ଯାନ୍ତି ହୋଇଣ ନିଭ୍ରାନ୍ତି ।
ବଡ଼ ଦୁରପଦ ସେହୁ ପ୍ରତିଜ୍ଞା ଅଛନ୍ତି
କାହାକୁ ବଳରେ ସେ ନ କରନ୍ତି ଗଣିତ ।
ଯୁଦ୍ଧେ ପ୍ରବେଶ ହୋଇଲେ ଯହୁଁ ବେନିବଳ
ସମଥାଟ ପରଥାଟ ମିଶି କଲେ ଗୋଳ ।
ବଢ଼ିଲା ସମର ଯହୁଁ ପଦାତି ମଧ୍ୟରେ
ପିଟାପିଟି ହଣାହଣି ହେଲେ ପରସ୍ପରେ ।
ରଥ ଚଢ଼ି ବଳେ ଯହୁଁ ସେ ମଙ୍ଗଳସେନ
ତାହାକୁ ଦେଖି କ୍ରୋଧରେ ବୀର ଅରଜୁନ ।
କରେ ଘେନିଣ ଗାଣ୍ଡୀବ ଟଙ୍କେ ଦ୍ରୋଣଗୁରୁ
ସୈନ୍ୟ ଘୁଞ୍ଚିଲେ ଅର୍ଜୁନ ତୀକ୍ଷଣ ଅସ୍ତ୍ର ମାରୁ ।
କାଟନ୍ତେ ନାରାଚମାନ ପାର୍ଥ ମହାମତି
ଭୂମିରେ ଚହୁଁ ପଡ଼ିଲେ ବହୁତ ପଦାତି ।
ପୁଣି ହସ୍ତେ ନାରାଚ ସନ୍ଧି କଲେ ବୃଷ୍ଟି
ହସ୍ତୀଙ୍କର କୁମ୍ଭସ୍ଥଳ ଶର ଗଲା ଫୁଟି ।
ଗର୍ଜନ ଦେଇ ଲେଟନ୍ତେ ଚହୁଁ ହସ୍ତୀଗଣ
ରକତେ କର୍ଦ୍ଦମ ହେଲା ସେ ରଣପ୍ରାଙ୍ଗଣ ।
ପୁଣ ପୂର୍ଣ୍ଣ ଶରମାରେ ବୀର ଧନଞ୍ଜୟେ
ପଡ଼ିଲେକ ଶତ ଶତ ଅଶ୍ୱ ତାର ଘାଏ ।
ମହାରଣରେ ନାରାଚ ଛନ୍ଦନ୍ତେ କଷ୍ଟି
ବାତାଘାତେ ଚୂତଫଳ ଯେସ୍ନେ ଭୂମି ଲୋଟି,
ସେହିପରି ଶିରମାନ ପଡ଼ିଲେ ସେ ଯୁଦ୍ଧେ
ଭୂତରି ପ୍ରାୟେ ନାଚିଲେ ଶିର ନାହିଁ କନ୍ଧେ
ଲକ୍ଷେ ଯୋଦ୍ଧା ଘେନି ଉଠି ସେ ମଙ୍ଗଳସେନ
ଅନେକ ନାରାଚ କଲେ ପାର୍ଥଙ୍କୁ ସନ୍ଧାନ ।
ଦେଖି ପାର୍ଥ ଧନୁ କରେ ଯୋଖି ତୀକ୍ଷଣ ଶର
ରାଜା ବନ୍ଧିବା ଅସ୍ତ୍ରକୁ କଲେ ଚୂରମାର ।
ବରଷା ଋତୁରେ ଯେସ୍ନେ ମେଘ ବରଷନ୍ତି
ସେପରି ବାଣ ବନ୍ଧିଲେ ହୋଇ କୋପମୂର୍ତ୍ତି
କର୍ଣ୍ଣାଟ ରାଜାର ଥିଲେ ଯେତେ ସୈନ୍ୟବଳ
ରକତରେ ଜରଜର ହୋଇଲେ ସକଳ ।
ଲକ୍ଷେକ ରଥ ଆବର ବେନିଲକ୍ଷ ହସ୍ତୀ
ପାଞ୍ଚଲକ୍ଷ ଅଶ୍ୱ ବେନି କ୍ଷଉଣୀ ପଦାତି ।
ପଡ଼ିଲେ ତିନି ଯୋଜନ ଭୂମି ପରିଯନ୍ତେ
ଏହା ଦେଖିଣ ବିଷାଦ ହେଲା ମହୀପତେ ।
ମରିଲେ ସଇନ କେହି ନ ରହିଲେ ଜଣେ
ପାଏଡ଼ା ପଡ଼ିଲା ନବଯୋଜନ ପ୍ରମାଣ ।
ଧାଇଁଲେ ପିଶାଚଗଣ ରକ୍ତମାଂସ ଖେଦ
ରକତେ କର୍ଦ୍ଦମ ହୋଇ ବହିଯାଏ ନଦୀ ।
ସମରେ ପାଇଲା ରାଜା ଯହୁଁ ଅପମାନ
ପଳାଏ ସମରକ୍ଷେତ୍ରୁ ସେ ମଙ୍ଗଳସେନ ।
ଅନ୍ତରୀକ୍ଷେ ପାର୍ଥ ରଥ ବାହିଲା ମାତଳି
ମଙ୍ଗଳସେନଙ୍କୁ ପାର୍ଥ ଯାଇଣ ଜଗାଳି ।
କହ ହେ ମଙ୍ଗଳସେନ ପଳାଉ କାହିଁକି
ଅନେକ ପ୍ରତିଜ୍ଞା କଲୁ ଆଜ କେହୁ ରଷି ।
ପ୍ରିୟ ବଚନେ କହନ୍ତି ତାକୁ ଅରଜୁନ
ପ୍ରତିଜ୍ଞା ଦେଖାଇ ଏବେ ପଳାଉ ରାଜନ ।
ଜବ ବଧ କଲୁ ଆମ୍ଭେ ରାଜସୂୟ ଅର୍ଥେ,
ସ୍ୱରଗଣ ବାରତା କି ନ କହିଲେ ତୋତେ
ପ୍ରକୃତ ବାରତା ଯହୁଁ ପାଇଲା ନୃପତି
ଶରୀରୁ ଭୟ ଛାଡ଼ିଣ ହୋଇଲା ନିଭ୍ରାନ୍ତି ।
ରଥରୁ ଡେଇଁ ମଙ୍ଗଳସେନ ନରପତି
ବୋଇଲା ମୋହର ଦୋଷ କ୍ଷମ ମହାମତି ।
ତୁ ଦେବ ରଣେ ଅଜୟୀ କ୍ଷତ୍ରୀ ଦର୍ପଗଞ୍ଜା
ସଧାଟକ କାଟିଅଛୁ ଶିବ ଦର୍ପଭଞ୍ଜା ।

ସ୍ୱାମି ଏ ସ୍ୱର୍ଗ ମଧ୍ୟରେ ଯା ଚରଣେ ବନ୍ଧ
ନ ଜାଣି ପାମର ତାରେ ହେଲେ ପ୍ରତିଦ୍ୱନ୍ଦୀ ।
ପାଞ୍ଚାଳୀର ସ୍ୱାମୀ ଭୃତ୍ୟ ସୁଭଦ୍ରା ବଲ୍ଲଭ
ମୋର ଅପରାଧ କ୍ଷମ କର ଉମାଧବ ।
ଶରଣପଞ୍ଜର ଭୃତ୍ୟ କୃଷ୍ଣ ପ୍ରାଣସଖା
ଦର୍ଶନେ ମୃକଣ୍ଡ ହେଲ ମୋତେ କର ରକ୍ଷା ।
ବହୁତ ସ୍ତୁତି କରଣ ସେ ମଙ୍ଗଳରସ୍ୟେ
ଘଡ଼ିଏକ ବେଳଯାଏ ପ୍ରଣିପାତ ହୁଏ ।
ଶ୍ରୀ ହସ୍ତେ ଅକ୍ଷତ ଗୁଆ ଦେଇ ପାର୍ଥ କହ
ଅଜ୍ଞାନେ ଯୁଦ୍ଧ କଲୁ ତୋତେ ଆମ୍ଭ ଦୋଷନାହିଁ
ମୂର୍ଖ ହୋଇଣ ଯଦ୍ୟପି ହୁଏ ଦୋଷକାରୀ
ପଣ୍ଡିତେ ତାହାର ଦୋଷ ମନରେ ନ ଧର ।
ମୂର୍ଖ ଦୋଷ କଲେ ଜ୍ଞାନୀ କରନ୍ତି ଉପେକ୍ଷା
ଧର୍ମଶାସ୍ତ୍ର ମାନଙ୍କରେ ଏହା ଅଛି ଲେଖା ।
ମୂର୍ଖଲୋକେ ଯେବେ ପାପ କରନ୍ତି ଅଜ୍ଞାନେ
ତାକୁ ଉଦ୍ଧାରଣ ନେତ ଜ୍ଞାନୀଜନମାନେ ।
ହେ ରାଜନ ମନମଧ୍ୟେ ଭ୍ରାନ୍ତ ତୁ ନ କର
ବରୁଣାବନ୍ତକୁ ସୈନ୍ୟ ଚଳାଅ ସତ୍ୱର ।
ଅର୍ଜୁନ ବାକେ ଗୁଡ଼ିଲ ରାଜା ମନୁ ଭ୍ରାନ୍ତି
ସମବସ୍ତ୍ର ସାଜ ରାଜ୍ୟେ ଚଳିଲ ତଡତ ।
ସେ ରାଜ୍ୟରୁ ଚଳିଗଲେ ବୀର ଅରଜୁନ
କାଶୀରେ ପ୍ରବେଶ କଲା ପୂର୍ଣ୍ଣିମାର ଦିନ ।
ଗୋପନ ଭୂମି ସେ ତୀର୍ଥ ଯେ ମଣିକର୍ଣ୍ଣିକା
ମହା ପୁଣ୍ୟତୀର୍ଥ ସେତୁ ପାପ ନାଶେ ଏକା
ତହିଁରେ ସ୍ନାନ ତର୍ପଣ କରି ବୀରପାର୍ଥ
ଗିରିଜା ପ୍ରାଣପତିଙ୍କି ବନ୍ଦେ ହୁବଟତ ।
ନମସ୍ତେ ଶ୍ରୀ ତ୍ରିଲୋଚନ ନମୋ ମହାଦେବ
ନମସ୍ତେ ହେ ବିରୂପାକ୍ଷ ନମେ ସଦାଶିବ ।
ନମସ୍ତେ ଦେବ ସୌରଭ ବିଭୂତି ସର୍ବାଙ୍ଗ
ନମସ୍ତେ ଦେବ ଗଉରୀବଲ୍ଲଭ ଶ୍ରୀଲିଙ୍ଗ ।
ନମସ୍ତେ ଶିବ ଅନଙ୍ଗ ନେତ୍ରାନଳେ ଧ୍ୱଂସ
ନମସ୍ତେ ଶଶାଙ୍କଧାରୀ ବିଶ୍ୱେଳ ମହେଶ ।
ନମସ୍ତେ ଆଦ୍ୟ ଈଶାନ ଜଗତର ଗୁରୁ
ନମସ୍ତେ ତୁ ମହାଦେବ ପୃଥ୍ୱୀରକ୍ଷାକରୁ ।
ନମସ୍ତେ ତୁ ସଦାଶିବ ମହାଲିଙ୍ଗ ଗୋଟା
ନମସ୍ତେ ଶ୍ରୀ ମହେଶ୍ୱର ଗୌରୀ ଆଖିଫୁଟା ।

ଅର୍ଜୁନର ମୁଖୁ ଏହି ବଚନକୁ ଶୁଣି
ଲିଙ୍ଗ ବିଦାରି ବାହାର ହେଲେ ଶୂଳପାଣି ।
ଟହ ଟହ ହସିଣ ସେ ଦେବ ବିଶ୍ୱନାଥ
ଗୌରୀ ଆଖିଫୁଟା ମୋତେ ବୋଇଲୁ କେମନ୍ତ
କରପଦ୍ମ ଯୋଡ଼ିକରି ବୋଲେ ଧନଞ୍ଜୟ
କୋପ ନ କଲେ କହି ମୁଁ ପାରେ ଦେବରାୟ
ମହେଶ ବୋଇଲେ ଯେବେ ହୋଇବ ସ୍ୱରୂପ
ସକୃତ କଥାକୁ କପାଁ କରିବା ହେ କୋପ ।
ପାର୍ଥ ବୋଇଲେ ପ୍ରଥମ ଅବତାରେ ଉମା
ଦକ୍ଷଯଜ୍ଞେ ସେ ଦହନ ହେଲେ ତୋର ବାମା
ସେହି ମାହେଶ୍ୱରୀ ପୁଣି ଦ୍ୱିତୀ ଅବତାରେ
ହୈମବତୀ ନାମେ ଜାତ ଶୈଳରାଜା ଘରେ ।
ଦୁହିତା ଦେଖି ଆନନ୍ଦ ହେଲେ ଶୈଳରାଜା
ଶ୍ରଦ୍ଧାରେ ତାଙ୍କର ନାମ ଦେଲେକ ଗିରିଜା ।
ବାଳକାଳେ ବାପଘରେ ଖେଳଇ କୁମାରୀ
ଆକାଶ ଗଙ୍ଗା କୂଳରେ ଧୂଳିଘର କରି ।
ଦିଗମ୍ବର ପୁରୁଷ ତୁ ଗଲୁ ତାହା ଦେଖି
ଉମାଙ୍କର ଶରୀରକୁ ଚାହିଁଲୁ ତୋ ଆଖି ।
ଟୂଳି ଘର ଧୂଳି ହାତ ତୃଣ କରି ଖେଳ
ଏମନ୍ତ ସମୟେ ତୁହି ତହିଁ ଯାଇ ମିଳ ।
ବାଳୁତ ରୂପ ହୋଇଲୁ ତାଙ୍କର ସମାନ
ଡମ୍ବରୁ ବାଦ୍ୟ ବାଇଲୁ ତହିଁ ଘନ ଘନ ।
ବିଭୂତିଭୂଷଣ ଶିରେ ଅକଳିତ ଜଟା
ଶିରେ ଗଙ୍ଗା ଲଲାଟରେ ଅର୍ଦ୍ଧଚନ୍ଦ୍ର ଫୁଟା ।
ଶୁକ୍ଳଗର୍ଗଡ଼ ଗଳାରେ ସର୍ପ ହାଡ଼ମାଳ
ଯାମଳ ଲାଉଯନ୍ତ୍ର ତୋ କରରେ ତ୍ରିଶୂଳୀ ।
ଡିବ ଡିବ ଡମ୍ବରୁ ଯେ ବଜାଇଲୁ ଡାକ
ସେହି କୁମାରୀମାନେ ଯେ ହସିଲେ ତା ଦେଖି
ଦେଖିକରି ଉପହାସ କଲେ ସର୍ବବାଳୀ
ମିଛ ଖେଳ ଘରକୁ ଯେ ଯୋଗୀ ପୁଣି ମିଳ ।
ହସନ୍ତି କୁମାରୀମାନେ କସ ଆମ୍ଭେ ଦେବା
ଦେଖୁଛ ଧୂଳି ଖେଳୁଛୁ ଆଜ କ କହିବା ।
ଗଉରୀ ବୋଇଲେ ସଖି ନାସ୍ତି କପାଁ କଲ
ବୁଝାଇ କହିବା ତାଙ୍କୁ ସର୍ବେ ଏବେ ଚାଲ ।
ଯାଇ ଗଉରୀ କହିଲେ ତାଙ୍କୁ କୁତୂହଳେ
ଦେଖ ରାଉଳ ଅଛି କ ଆମ୍ଭର ଏ ଖେଳେ ।

ଭିକ୍ଷା ନ ପାଇଲେ ତୁମ୍ଭେ ହେବ ମହାରାଗୀ
ଡମ୍ବରୁକୁ ବଜାଉଛ କପାଁ ଆହେ ଯୋଗୀ ।
ଅପୂର୍ବ ମଣି ତୋ ପକ୍ଷେ ଗୌରୀ ଗଲେ ଦେଖି
ଡମ୍ବରୁ ଟଣି ବାଜଲା ଦେବାଙ୍କର ଆଖି ।
ସେହି ଗଣି ବାଜନ୍ତେଣ ନେତ୍ରରେ ତାଙ୍କର
ତେଣୁ ବାମଚକ୍ଷୁ ଟେରା ହୋଇଲେ ଗଉରୀ ।
ସ୍ୱାମି ତୁମ୍ଭ ନ ଯାଣୁ କି ଏ କଥା ଯୁକତି
ଲୋକନାଥ ସ୍ୱାମିଙ୍କୁ ପାସୋରିଲ୍ ଏତେ ।
ଅର୍ଜୁନ ମୁଖରୁ ଏହି ବଚନକୁ ଶୁଣି
ପାର୍ବତୀ ମୁଖ ଚାହିଁଲେ ଦେବ ଶୂଳପାଣି ।
ଯାହା ସେ ପ୍ରସ୍ତାବେ ବୋଲଗଲା ଅରଜୁନ
ସତ ଅଟେ କି ଗଉରୀ ପାର୍ଥର ବଚନ ।
ପାର୍ବତୀ ବୋଇଲେ ପାର୍ଥ ଅଟେ ଶ୍ରୁତିଧର
ହରପର ବହୁ କଥା ଅଛି ତା ମନର ।
ଯଥାର୍ଥ ଅଟଇ ସ୍ୱାମି ଅର୍ଜୁନର କଥା
ଏହାକୁ ମିଥ୍ୟା ନ ମଣ କଇଳାସ କର୍ତ୍ତା ।
ଗିରିଜା ମୁଖରୁ ହର ଏସନକ ଶୁଣି
ସତସ୍ୟ ସାନନ୍ଦ ହେଲେ ଦେବ ଶୂଳପାଣି ।
ବୋଇଲେ ଧନ୍ୟ ପାଣ୍ଡବ ତୋ ଜୀବନ ଧନ୍ୟ
ତୋ କଥାରୁ ନ ଗୁଞ୍ଜିଲୁ ଦେବୀ ଉମଙ୍ଗ ।
ସଦାଶିବ ପଦ୍ମପାଦେ ଅର୍ଜୁନ ବିନୟେ
ବୋଇଲେ ହେ ଭୂତନାଥ ଦେବାକ ଅଭୟେ
ଶରଣ ରକ୍ଷଣ ନାଥ ଗଉରୀବଲ୍ଲଭ
ଶ୍ରୀହରିର ପ୍ରିୟବନ୍ଧୁ ଜୟ ସଦାଶିବ ।
ସୋଡବଳ ଧାରଣା ତୁ ପର ଦୁଃଖେ ଦୁଃଖୀ
ଯେ ତୋତେ ସେବା କରଇ ବହୁ ଭୋଗେସୁଖୀ
ସେବକ ଲୋକେ ଈଶ୍ୱର ପଦ ଅଛି ଦେଇ
ଆପଣେ ଯେ ବୁଲୁଅଛି ଦିଗମ୍ବର ହୋଇ ।
ଦଣ୍ଡଛତ୍ର ସିଂହାସନ ଦେଇ ସେବକକୁ
ବାହାନ କରିଲ ପ୍ରଭୁ ବୃଦ୍ଧ ବଳଦକୁ ।
ସେବକକୁ ଦେଇ ଅଷ୍ଟଭୋଗ ଚଉସାରେ
ହାଡ଼ମାଳ ଲମ୍ବାଇଲ ଆପଣା ହୃଦରେ ।
ଦେବତାଙ୍କ ମଧ୍ୟେ ତୁମ୍ଭ ଯେ ପରମ ସାଧୁ
ପର ଦୁଃଖରେ କାତର ତୁ ପରମ ବନ୍ଧୁ ।
ବାରାଣସୀପୁର ବିଶ୍ୱନାଥ ମହାଦେବା
ତୁମ୍ଭ ଶ୍ରୀ ଚରଣ ଯୁଗେ ରହୁ ମୋର ସେବା ।
ସ୍ୱାମି ବ୍ରହ୍ମହତ୍ୟା ଦୋଷ ମୁକ୍ତ ଯେଉଁ ଗଥେ
ହେ ନାଥ ତୁମ୍ଭ ଚର ଣ ରହୁ ଅନୁବ୍ରତେ ।
ହେ ନାଥ ତୁମ୍ଭ ଚରଣେ ସଦା ରହୁ ମନ
ଶୂଦ୍ର ଶାରଳା ଦାସର ଏହା କର ପୂର୍ଣ୍ଣ ।

## ଅର୍ଜୁନର କ୍ଷେତ୍ରପାଳ ନୃପତିଙ୍କ ନିମନ୍ତ୍ରଣ ଓ ମାହେଶ୍ୱର ରାଜା ସହିତ ଯୁଦ୍ଧ

ଏଥୁଅନ୍ତେ ମନୁରାଜା ବେନିକର ଯୋଡ଼ି
କୁମ୍ଭଋଷି କୁମରଙ୍କ ଚରଣରେ ପଡ଼ି ।
ପଚ୍ଚାରିଲେ ଭଦ୍ର ମୁନି ଶିବ କି କହିଲେ
ସେହିଠାରୁ ପାର୍ଥ ପୁଣି କେଉଁ ରାଜ୍ୟ ଗଲେ
ଅଗସ୍ତି କହିଲେ ରାଜା କର ହେ ଶ୍ରବଣ
ଏହା ଉତ୍ତାରୁ ହୋଇଲା ଯେ ଘଟଣାମାନ ।
ଅରଜୁନ ଜଣାଇଲେ ତୁମ୍ଭ ମୃତ୍ୟୁଞ୍ଜୟ
ଅନ୍ତଯୋଗେ ପାର୍ଥକୁ ଯେ ଦେଲେକ ଅଭୟ
ଆବର ଯେ ନାନା ବିଦ୍ୟାମନ୍ତ୍ର ତାକୁ ଦେଲେ
ଅର୍ଜୁନ ସେ ସବୁ ପାଇ ସାନନ୍ଦେ ଘୋଷିଲେ
ସକଳ କାର୍ଯ୍ୟ ସୁବିଧା ହେବ ତୋର ବାବୁ
ଶିବଗଣ ଘେନ ଆମ୍ଭେ ରାଜସୂୟେ ଯିବୁ ।
ବାରାଣସିପୁରେ କ୍ଷେତ୍ରପାଳ ନରପତି
ବହୁ ସମ୍ଭବେ ଆଇଲା ସେହି ଲିଙ୍ଗ କତି ।
ଅଷ୍ଟଙ୍ଗ ଯୋଗାଡ଼ି ଦେଲେ ଧନଞ୍ଜୟ ତାକୁ ।
ସମଦଣ୍ଡ ଘେନି ଚଳ ରାଜସୂୟ ଯାଗକୁ ।
ବାରୁଣାବନ୍ତେ ଉତ୍ତର ଦ୍ୱାରେ ସେ ପ୍ରଶସ୍ତ
ମୋର ଯିବାଯାଏ ରୁନ୍ଧ ହୋଇବ ସମସ୍ତ ।
ଆହେ କ୍ଷେତ୍ରପାଳ ତୋର ଯେତେକ ସଇନ
ଏହିକ୍ଷଣି ଚଳ ଦେଖା ଦରଶନ ଘେନ ।
ପାର୍ଥଙ୍କ ବଚନେ କ୍ଷେତ୍ରପାଳ ଅଧିପତି
ସମଦଣ୍ଡ ଘେନି ରାଜ୍ୟ ବାହାର ଭଉତି ।
କାଶୀପୁର ପ୍ରଦକ୍ଷିଣ କରି ଅରଜୁନ
ଯମୁନାପୁରେ ପ୍ରବେଶ ହୋଇବେ ବହନ ।
ସେ ଯମୁନାପୁରେ ମାହେଶ୍ୱର ନରପତି
ସେ ରାଜ୍ୟ ବିଜେ ବିଚାର ପାର୍ଥଙ୍କର ନାତି ।
ଆଳମ୍ବ ଉଦଣ୍ଡ ପାଟଛତ୍ର ପାଞ୍ଚଲକ୍ଷ ।
ହୀରାର ସ୍ୱର୍ଣ୍ଣ ମୁକୁଟ କେକୀପୁଚ୍ଛ ପକ୍ଷ ।

ଅସ୍ତ୍ର ରତନରେ ରାଜା ରଥ ଅଛି ମଣ୍ଡି
ବଜାନ୍ତି ଯେ ଜୟଘୋଷ ଦୁନ୍ଦୁଭି ବାଉଣ୍ଡି ।
ଏହିପରି ରାଜାଗ୍ରେ ସର୍ବଦା ଭ୍ରମନ୍ତି
ଶତ୍ରୁ ଆଗମ ବାରତା ରାଜାଙ୍କୁ ଦଅନ୍ତି ।
ପାର୍ଥ ପଶନ୍ତେ ରାଜ୍ୟରେ ଆସି ଭଟ୍ଟଆଳ
ଜଗାଳି ସୁରଣ ଯୋଦ୍ଧା ଏକୁଁ ଏକ ବଳୀ ।
ବୋଲେ ନ ଜାଣୁ ଯମୁନାନଗ୍ର ଏହି ବୋଲି
ନ ପଚାରି ସୈନ୍ୟସହ କିପାଁ ପଶୁ ପେଲ ।
ରେରେକାର ଶବଦର ପଡ଼ିଲେ କୁହୁଳି
ଧାଇଁଲେ ସର୍ବେ ଅନେକ କଟୁ ବାକ୍ୟ ବୋଲି
ଜୟ ବିଜୟ ଏ ଦୁଇ ପାର୍ଥ ସେନାପତି
କୃତାନ୍ତ ରୂପ ପରାୟେ ଦିଶେ ତାଙ୍କ ମୂର୍ତ୍ତି ।
ହସ୍ତେ ବେନି ବେନି ଗଦା ଅନନ୍ତ ସେ ଯେହ୍ନ
ପୃଥ୍ୱୀ କମ୍ପି ଉଠେ ଶୁଣି ତାଙ୍କ ମୁଖଧ୍ୱନି ।
ଗଦା ବୁଲାଇ ରଥରୁ ପଡ଼ିଲେ ସେ ଡେଇଁ
ପିଟିଲେକ କୋଟାନକେ ଗଦାକୁ ବୁଲାଇ ।
ବିଶେଷରେ ଅନ୍ଧକାର ରଜନୀ ପାହାନ୍ତି
ଗୋଡ଼ାଇ ସେ ଦୁଇବୀର ମାଇଲେ ବିକୋଟି
ପଳାଇ ବୋଇଲେ ଜୟଦାସ ମନ୍ତ୍ରୀଦ୍ୱାରେ
ଆସି ଅଦ୍ଭୁତ ଯୋଦ୍ଧାଏ ପଶିଲେ ରାଜ୍ୟରେ
ନଗ୍ରରେ ପଶନ୍ତେ ଆମ୍ଭେ ଜଗାଳିଲୁ ପଥ
ଅଣଉକ୍ରୋଧେ ମାରନ୍ତି କରି ଘଡ଼ାଘାତ ।
ରାଜା ମନ୍ତ୍ରୀ ମହାଗୋଳ ଶୁଣିଣ ଶବଦ
ଧାଡ଼କାରେ ବାହାରିଲ ହୋଇ ମହାକ୍ରୁଦ୍ଧ ।
ସୈନ୍ୟ ସାମନ୍ତ ଆବର ପାତ୍ରାଦି ଅମାତ୍ୟ
ଅସମ୍ଭାଳେ ଧାଇଁଲେ ସେ ବାହନ ସହିତେ ।
କରେ କରବାଳ ଆଉ କୁନ୍ତ ଖଡ୍ଗ ଯାଠି
ମାର ମାର ବୋଲି କହି ଧାମନ୍ତି ଲେଉଟି ।
ବେଗରେ ଅଶ୍ୱ ସାଜନ୍ତି ଧାଇଁ ବଳୁଆନେ
କାଦମ୍ବରୀ ପାନେ କେଶ ବାସ ଅସମ୍ଭାଳେ ।
ଅମାତ୍ୟମାନେ ସଜାନ୍ତି ଯାଇ ମତ୍ତହସ୍ତୀ
କରେ ଅଙ୍କୁଶ ଘେନଣ ଗଜ ଉଖରନ୍ତି ।
କଟକେ ପଶନ୍ତେ ସର୍ବେ ଆସି ଜଗାଳିଲେ
ସୈନ୍ୟମାନଙ୍କୁ ଚାହିଁ ଅର୍ଜୁନ ବୋଇଲେ ।
ଆହେ ସମସ୍ତେ ଏଠାରେ ରହ ଲେଉଟ ହୋଇ
ରଜନୀ ପାହିବା ଯାଏ ଥାଅ ଦୁଃଖ ସହି ।

ରାତ୍ରିକାଳେ ସୈନ୍ୟ ମଧ୍ୟେ ହେବ ମହାଗୋଳ
ସ୍ଥିରଥାଇ ରହ ତୁମ୍ଭେ କୋପକୁ ସମ୍ଭାଳି ।
ଆମ୍ଭେ ଦିଗବିଜେ କଲୁ ରାଜସୂୟ ଅର୍ଥେ
ପିତା ବ୍ରହ୍ମହତ୍ୟା ଦୋଷ ଖଣ୍ଡିବା ନିମନ୍ତେ ।
ଧର୍ମ ଅର୍ଜିବାକୁ ଆସି କରିବା କି ପାପ
ହତ୍ୟା ବିବାଦ ହୋଇଲେ ନ ଉଡ଼ଇ ପାପ ।
ଧର୍ମ ବଚନ ଶୁଣାଇ ଆପଣାର ଥାଟ
ମାହେଶ୍ୱର ରାଜାସୈନ୍ୟ ହେଲେ ଯାଇ ଭେଟ
ବଡ଼ ପ୍ରତିଜ୍ଞା କରନ୍ତି ବୀରମାନେ ଡାକି
ବାନ୍ଧିଲେ ନାଗର ସର୍ବେ ପରଥାଟ ଦେଖି ।
କାହିଁର ଭୁବେ ପଶିଲ ଆସି ଅନମିତେ
ଯା ଭୟେ ଡରନ୍ତି ଧର୍ମ ଜୟ ପରଯନ୍ତେ ।
ଶୁଣି ନାହଁ କି ଯମୁନା ନଗ୍ର ଅଧିକାରୀ
ଚତୁର୍ଦ୍ଦଶ ରାଜାମାନେ ଯା କୋପକୁ ଡରି ।
ଶିବ ଦେଇଛନ୍ତି ତାକୁ ମାହେଶ୍ୱର ନାମ
କାଳିତ ମାନେ ସାଧିଲ ଯେହୁ ଗୁରୁଧର୍ମ ।
ଗୁଳଶସ୍ତ୍ର ରାଜାଙ୍କ ଯେ ମଣ୍ଡଳମଣି
ଉତ୍ତର ଦିଗେ କମ୍ପନ୍ତି ଯା ପ୍ରତିଜ୍ଞା ଶୁଣି ।
କେଉଁ ବଳରେ ପଶିଲ ଏଥେ ତୁମ୍ଭେ ଦୁଇ
ଜୀବନକୁ ଆଶା ଥିଲେ ଯାଅ ଯା ବାହୁଡ଼ି ।
ଆପଣ ପ୍ରତିଜ୍ଞାମାନ କରନ୍ତି ଯେ ବୀରେ
ବାହୁଲ୍ୟ ଭୟେ କହିଲୁ ସଂକ୍ଷେପି ଏଠାରେ ।
ଅନେକ ପଣ୍ଡିତ ସେତ୍ର କରନ୍ତି ମତ୍ତରେ,
ଏଣେ ସହି ନ ପାରିଣ ଗର୍ଜୁଛନ୍ତି ବୀରେ ।
ଅର୍ଜୁନ ବୋଇଲେ ରହିଥାଅ ହେ ସଭିଏଁ
ରଜନୀ ପାହିଣ ହେଉ ଅରୁଣ ଉଦୟେ ।
ବୁଝିବ ପ୍ରତିଜ୍ଞା ଆଜ ରଜନୀ ପାହିଲେ
ଫଳଶ୍ରୁତି ହୁଅଇ କି କଥା ବଖାଣିଲେ ।
ଘୋର ଅନ୍ଧକାର ପୁଣି ଅନେକ ତୁଷାର
ଶତ୍ରୁ ଉଦେ ହେଲେ ଯାହା ହୋଇବ ବିଚାର
ବହୁସର୍ପ ଗର୍ଜୁଥାନ୍ତି ଯେସନେ ଫେଣ୍ଟି ଧରି
ଖଗେଶ୍ୱର ଦରଶନେ ପଳାନ୍ତି ଯେପରି ।
ସେହିପରି ରାଜଥାଟ ପାର୍ଥକୁ ବେଢ଼ିଲେ
ନାନା ଅସ୍ତ୍ରମାନ ଘେନି ତାହାକୁ ବିନ୍ଧିଲେ ।
ଅର୍ଜୁନ ସହନ୍ତି ଫଳା ଉହାଡ଼ରେ ରହି
ବସିଥାନ୍ତି ନାଗମାନ ବସି ତୁନି ହୋଇ ।

ବର୍ଷନ୍ତି ସଇନମାନେ ଶର ଅପ୍ରମେୟ
ବେଗେ ରଥ ନ ପାରିଲେ ସେ ଜୟ ବିଜୟ ।
ରଥ ବେଢ଼ନ୍ତେ ଥାଇଁ ଡାକିଲେ ସଇନ
ଶର ଆଘାତେ ନିରେଖ ହେଲୁ ଫାଲଗୁନ ।
ବଳିଲେ ସଇନ ଯହୁଁ ଡାକିଲେ ଏପରି
ଜୟ ବିଜୟ ଏ କଷ୍ଟ ଦେଖିଣ ନ ପାରି ।
ଅର୍ଜ୍ଜୁନ ବଚନକୁ ସେ କରିଣ ଅବଜ୍ଞା
ଗର୍ଜି ଉଠିଲେ କରିଣ ଦୁଃସହ ପ୍ରତିଜ୍ଞା ।
ଗଦା ବୁଲାଇଣ ସେହି କୋପେ ନେଇ ପିଟି
ଅଶ୍ୱ ଗଜ କୁମ୍ଭସ୍ଥଳ ଭୂମିପରେ ଲୋଟି ।
ଧରିଣ ବୁଲନ୍ତି ହସ୍ତୀଙ୍କର ଥୋଇହସ୍ତ
ଆକର୍ଷିଣ କବୁଡ଼ନ୍ତି ଜାଣି ବଜ୍ରଘାତ ।
ଗଜରେ ଚୂରି ହୁଅନ୍ତି ପଡ଼ି ବଜ୍ରସେହ୍ନା
ରଥ ମହାରଥ ପଡ଼ି ହେଉଅଛି ଚୂନା ।
ମହା ତେଜୋବନ୍ତ ଉଠନ୍ତେଣ ଗଜଗାଛ
ମାହେଶ୍ୱର ସେନା ତହୁଁ ପଳାଇଲେ ଭାଜ ।
ସଂଗ୍ରାମରେ ବିମୁଖ ଯେ ହୋଇଲେ ସଇନ
କାହାନାହେ ଦୁଇଘାରେ କରେ ଧନୁ ଘେନ ।
ଛନ୍ଦନ୍ତେ ନାରାଚ ଝଲକନ୍ତି ତୀକ୍ଷ୍ଣ ମୁନା
ଗାଉଡଙ୍କ ହୃଦେ ଗଡ଼ି କାଟି ବଜ୍ରସେହ୍ନା ।
ହୃଦ ମଧ୍ୟରେ ପଶିଣ ପିଠିକି ନିକଳି
ରୁଧିରେ କର୍ଦ୍ଦମ ହୋଇ ପଡ଼ୁଛନ୍ତି ତଳ ।
ଅସିପଣ ପ୍ରହାର ସେ କରନ୍ତି ତା ଉରେ
ପଡ଼ନ୍ତି ଦ୍ୱିଖଣ୍ଡ ହୋଇ ଗଡ଼ନ୍ତି ରୁଧିରେ ।
ଏକବାର ପ୍ରହାରନ୍ତେ ବଟବଂଶ କରି
ମଣ୍ଡଳେଣେ ନ ଘୂଞ୍ଚନ୍ତି ନ ଯାନ୍ତି ସେ ମରି ।
ନାଚନ୍ତି ସେ ରଣରଙ୍ଗେ କରି ସିଂହନାଦ
ମଲ୍ଲାନେ ବଜାନ୍ତି କଡ଼ା ଧୁମ୍ବୁଗ ଯେ ବାଦ୍ୟ ।
ପାର୍ଥଙ୍କୁ ସୈନ୍ୟ କରନ୍ତି ବହୁ ଶସ୍ତ୍ରାଘାତ
ପଡ଼ିଲେ ସଇନ ଘେନ ଯୋଜନ ପର୍ଯ୍ୟନ୍ତ ।
ରକତରେ କରଦମ ହେଲା ମହୀଆଳୀ
ପଳାଇଲେ ସଇନଏ ଦେଇଣ ବୋବାଳି ।
ଦନ୍ତରେ ତୃଣ କେହି ମୁଖରେ ଅଙ୍ଗୁଳି
ରଥ ଗଜ ତେଜି କେହି ଚରଣରେ ଲୋଟି ।
ଭଗ୍ନବଳ ଦେଖି ଡାକଦେଲେ ଫାଲଗୁନ
ରହରେ ଆମ୍ଭର ବଳ ନ ମାର ସଇନ ।

ନିସତ ଥାଟକୁ କେବେ ମାରି ନ ଯୋଗାଇ
କ୍ଷତ୍ରୀଧର୍ମ ନୁହେ କଲେ ଧର୍ମନାଶ ଯାଇ ।
ରହିଲେ ସଇନ ଶୁଣି ପାର୍ଥର ଭାରତୀ
ଯମୁନା ପ୍ରବଳ ଥାଟ ଗଲେ ଯାଇ ଶାନ୍ତ ।
ମହାଉତ୍କୃଷ୍ଟ ପରସ୍ପେ ବିକାଶଇ ଅଙ୍ଗ
ଅବଧାରି ହୋଇଲେ ଯେ ମହେଶ୍ୱର ଆଗ ।
ସ୍ୱାମି ରଣରଙ୍ଗ ହୋଇ ପାଇଲ ଯେ ଶାନ୍ତି
ଅମରପୁର ତେଜ କି ଭଜେ ସୁରପତି ।
ମ ଭଜ ହୋଇ କେ ତାକୁ ଜୟ କରିବାକୁ
ମହୀସ୍ଥଳେ ଏପରି କେ ନ ଦେଖି କାହାକୁ ।
ସ୍ୱାମି ତା ବହୁପ୍ରତିଜ୍ଞା ମହାଚଣ୍ଡୀ ବଳୀ"
ରାଜ୍ୟ ଗ୍ରହଣ ହେ କେବ କରଜରେ ପଳା ।
ରାଜ୍ୟ ରକ୍ଷିବାକୁ ନୋହିବ ଯେତେକ କରୁ ବୁଦ୍ଧି
ଶରଣ ପଶିଲେ ହେବ ସର୍ବ କାର୍ଯ୍ୟସିଦ୍ଧି ।
ଶିରବନ୍ତ ସୁନ୍ଦର ସେ ଦୟାବନ୍ତ ରଥୀ
ଶରଣ ବୋଇଲେ ସେହି ରଣ ନ କରନ୍ତି ।
ସୁରେଶ୍ୱର ନାମେ ଥିଲେ ପାର୍ଥ ପୁରୋହିତ
ଧୌମ୍ୟ ପୁରୋହିତଙ୍କର ସେହି ନିଜ ସୁତ
ସେ ପ୍ରୋହିତ ଚଢ଼ିଥିଲେ ଅର୍ଜ୍ଜୁନଙ୍କ ରୁଲେ
ଗ୍ରାମରେ ଉଭା ହୋଇଣ ଏପରି କହିଲେ ।
ଆହେ ପାର୍ଥ ମିତ୍ର ମୁଁ କି ରାଜାର ଚିହ୍ନିକ
ସମାଧାନ କର ତାକୁ ଆଣିବ ଏଥିକି ।
ଅର୍ଜ୍ଜୁନ କୁନ ହୋଇଲେ କାର୍ଯ୍ୟର ନିମନ୍ତେ
ଯମୁନା ନଗ୍ରେ ପଶିଲେ ବେଗେ ପୁରୋହିତେ ।
ଦିବ୍ୟ ସୁଖାସନେ ଚଢ଼ି ପାଟଛତ୍ର ଘେନି
ଗ୍ରାମରେ ଯେ ହେଉଅଛି ଶତେ ଶଙ୍ଖଧ୍ୱନି ।
ଦଣ୍ଡ ଘେନ ଆସୁଅଛି ଥାଟର ପଲଣି
ପ୍ରୋହିତ ବୋଲେ ଅଜ୍ଞାନ ହେଲୁ ନରମଣି ।
ମୁନେହି ବାରତା କି ନ କହିଲା ତୁମ୍ଭଙ୍କୁ
ଅକାରଣେ ଦ୍ୱନ୍ଦ୍ୱ କରୁ ତୁହି ମରିବାକୁ ।
ନ ଜାଣୁ କି ପଞ୍ଚାଳେ ସେ ରାଧାଚକ୍ର ବିନ୍ଧି
ଲକ୍ଷେ ରାଜାଙ୍କର ମାନ ଥିଲେ ଯେ ମରଦି ।
ହସ୍ତିନାର ଠାକୁର ଯେ ଅଟନ୍ତି ଯୁଧିଷ୍ଠି
ଶ୍ରୀମଙ୍କ ସାନୁଜ ଏହି ପାଣ୍ଡବ ଜଗତି ।
ନ ଜାଣୁ କି ଦହିଥିଲେ ଯେ ଖାଣ୍ଡବ ବନ
ବହୁ ସମରେ ହାରିଲେ ଯାକୁ ମଘବାନ ।

ଜାଣୁ ତ ଅଗ୍ନିକୁ ଦେଲେ ଯେହ୍ନ ମହୌଷଧି
ତାହାଙ୍କର ପାରଗଲା ଲୁ ଦୁବୁଦୁ ବ୍ୟାଧି ।
ସେ ପାଣ୍ଡବ ଜାଣ ଏହ୍ନ ବୀର ଫାଲଗୁନ
ଏକଶରେ ଜିଣିପାରେ ସ୍ୱର୍ଗ ମର୍ତ୍ତ୍ୟ ତିନ ।
ନ ଜାଣୁ କି ଦ୍ୱାରକାରେ ସୁଭଦ୍ରା ହରିଲେ
ବହୁ ସମରେ ଯାହାକୁ ଖ୍ରାମ ହାରିଗଲେ ।
ନ ଜାଣୁ ଉତ୍ତରଦିଗ ଜିଣିଛନ୍ତି ସାଧି
ଅଜ୍ଞାନପଣରେ କପାଁ ତାର ତୁମ୍ଭେ ବାଧି ।
ନ ଜାଣୁ କି ଏହି ସେହ୍ନ ପାର୍ଥ ଧନୁର୍ଦ୍ଧର
ପର ଦୁଃଖେ ଦୁଃଖୀ ଆଉ ଶରଣ ସୋଦର ।
ଆହୋ ରାଜା ତୋ କୁଟୁମ୍ବ ଆଣ ବୁଲ ଯିବା
ରାଜ୍ୟ ରକ୍ଷା ହେବ ତୋତେ ଦେଖା କରାଇବା
ଦୁର୍ଭର ବଳୀଙ୍କ ସେହ୍ନ ଅଟେ ଦର୍ପଭଞ୍ଜା
ଦୁଃଖୀଜନ ରକ୍ଷଣ ସେ କଉଣପରାଞ୍ଜା ।
ପୁରୋହିତଙ୍କ ମୁଖରୁ ଏହି ବାକ୍ୟ ଶୁଣି
ହସ୍ତୀରୁ ପଡ଼ିଲା ରାଜା ବଜ୍ରାଘାତ ଜାଣି ।
ଉଠି ବୋଇଲା ଆଦ୍ୟରୁ ନ ଜାଣିଲି ଏହା
ଅବିବେକପଣେ ମୂର୍ଖ ହୋଇଲି ଦୋରେହା ।
ଅକାରଣେ ନାଶ କଲି ଅନେକ ସଇନ
ନ ପୁଣ ନାଶ କରନ୍ତୁ ମୋତେ ଫାଲଗୁନ ।
ପୁରୋହିତ ବୋଇଲେ ରାଜା ନୁହ ଅସାଷ୍ଟମ
ତୋତେ ଦୟା କରିବେ ସେ ପୁରୁଷ ଉତ୍ତମ ।
ଏହା କହି ପୁରୋହିତ ଧରି ରାଜା ହାତ
ବୋଲେ ମୋର ସଙ୍ଗେ ଆସ କୁଟୁମ୍ବ ସହିତ ।
ହିଶ ନାରାୟଣଙ୍କର ଦେଖି ରୂପ ରେଖ
ଯାଉ ହୋ ରାଜା ତୋହର ଦୁର୍ଭର ପାତକ ।
ସଙ୍ଗରେ ଘେନିଣ ଆସ ପୁତ୍ର ଯେ ଘରଯା
ପାଦ ଗତିରେ ଗମନ କରି ଆହେ ରାଜା ।
ଗଜ ବାଜୀ ରଥ ଆଦି ଦେଖି ଏ ସକଳ
ସଙ୍ଗରେ ନ ନେଇ ତାର ନିଜ ସୈନ୍ୟବଳ ।
ବରଷମା ଘେନିଲା ସେ ଲକ୍ଷେଶ୍ୱର ମୁକ୍ତା
ତଉସର ଜଷା ଅଷ୍ଟରତ୍ନେ ଅଗଣିତା ।
ସଙ୍ଗେ ଅଷ୍ଟୋତ୍ତର ଶ୍ୱରଶତ ଯେ ଘରଯା
ଶତେକ କୁମାରୀ ତିନଶତ ଯେ ଆତ୍ମଜା ।
ସମସ୍ତେ ଯେ ଧରିଛନ୍ତି ଆଲଟ ଚାମର
ଡାକନ୍ତି ଯେ ଦେବ ଦେବ ପ୍ରତିକାର କର ।

ପାର୍ଥଙ୍କ ଆସନ ଦୃଶ୍ୟହେଲା ଯେତେ ଦୂରୁ
ଦେହୁଁ ଝାଳ ବହେ ରାଜା ନଉଦ୍ଗାଳ କରୁଁ ।
ପାଶେ ଆସି ରାଜା ଶତସହସ୍ର ପ୍ରଣମି
ବୋଲେ ଭକ୍ତବତ୍ସଳ ମୋ ପ୍ରାଣ ରଖ ସ୍ୱାମି ।
ଏହା କହି ପୁଣ ପୁଣ ପ୍ରଣାମ କରଇ
କାର୍ପଣ୍ୟ ହୋଇଣ ରାଜା ଭୂମିରେ ଲେଟଇ ।
ଗ୍ରୁମୁରେଁ ଯାଇଣ ବାର୍ତ୍ତା କେଲେ ପୁରୋହିତ
ଅବିବେକ ଦୋଷ କଲା ନ ପାଇ ଉଚିତ ।
ଆପଣଙ୍କ ଆଜ୍ଞାହେଲେ ଉଠିବ ସେ ରାୟ
ଶୁଣିଣ ଦରହସିତ ହେଲେ ଧନଞ୍ଜୟ ।
ପୁରୋହିତେ ବୋଇଲେ ଉଠ ଯମୁନାଧିକାରୀ
ଦୟା ଅନୁଗ୍ରହ ତୋତେ ହେଲା ତାହାଙ୍କର ।
ଉଠି ପୁଣ ପୁଣ ରାଜା କରେ ପ୍ରଣିପାତ
ପୁତ୍ର ଦୁହିତା ଘରଯା କୁଟୁମ୍ବ ସହିତ ।
ଅର୍ଜୁନ ବୋଇଲେ ତୋର ନସ ଅବା ଦୋଷ
ଅଜ୍ଞାନରେ ତୋର ସୈନ୍ୟ କରାଇଲୁ ଧ୍ୱଂସ ।
ଆହ୍ମ ଅନୁଗ୍ରହ ତୋତେ ହେଲା ଆହୋ ରାୟ
କୋନାରାତ କଲେ ତାକୁ ବୀର ଧନଞ୍ଜୟ ।
ତୁହି ମୋହର ବାନ୍ଧବ ହେଲୁଟି ଆଜହୁଁ
ହରଷ ହୋଇଲା ମନ ତୋତେ କଥା କହୁଁ ।
ତୋର ସମଦଣ୍ଡ ଘେନ ଆହେ ମହାରାଜା
ବାରୁଣାବନ୍ତକୁ ତୁହି ବହନ ଚଳଯା ।
ଏ ଅଶ୍ୱମାନ ଦେବୁଟି ହରିଙ୍କ ଗୋଚରେ
ବରଷମା ଧନ ରଖାଇ ଦେବୁ ତୁ ଭଣ୍ଡାରେ ।
ପାରିଦଣ୍ଡ ଆଦିକରି ଯେତେକ ସଇନ
ମହାଯଜ୍ଞ ଦେଖିଯାଅ କୁଟୁମ୍ବକୁ ଘେନ ।
ରାଜା ବୋଲେ ତୋ ଦର୍ଶନେ ପାପଗଲା କ୍ଷୟ
ଜଗଜ୍ଜିତା ବୋଲି ଯମଦଣ୍ଡେ ନାହିଁ ଭୟ ।
ପାର୍ଥବୋଲେ ମୋଦେଖନ୍ତା ଘେନତୋର ସୈନ୍ୟ
ଶୁଭ ଅନୁକୂଳେ ରାଜା ଚଳ ଏହିକ୍ଷଣି ।
ଅର୍ଜୁନ ଆଜ୍ଞାକୁ ରାଜା ନବେଶିଣ ଶିର
ଯମୁନାକୁ ତେଜ କରି ହୋଇଲା ବାହାର ।
ଜୟ ନୀଳାଦ୍ରି ବିହାରୀ ଶଙ୍ଖଚକ୍ରଧାରୀ
ଦୁଷ୍ଟ ଗର୍ବ ଖର୍ବକାରୀ ଦଇତଙ୍କ ଅରି ।
ଦୟାକର ଦୀନବନ୍ଧୁ ଶାରଳା ଦାସକୁ
ନ ଭୁଲ କୌଣସି କେଳେ ତୁମ୍ଭର ନାମକୁ ।

## ଅର୍ଜୁନଙ୍କର ବରୁଣ, ଜଳନ୍ଧର, ବ୍ୟୋମକେଶ ରାଜାଙ୍କୁ ନିମନ୍ତ୍ରଣ ଓ ମନ୍ମଥ ରାଜାଙ୍କ ସହିତ ଯୁଦ୍ଧ ଏବଂ ଜୟ

ଏଥୁ ଅନନ୍ତରେ ପୁଣି ବଳଙ୍କ ଈଶ୍ୱର
ଅଗସ୍ତିଙ୍କୁ ପୁଚ୍ଛାକଲେ ଯୋଡ଼ ହୋଇକର ।
ଯମୁନାପୁର ରାଜ୍ୟଲୁ ଚଳାଇ ଅର୍ଜୁନ
କେଉଁ ରାଜ୍ୟକୁ ସେ ପୁଣି କରିଲେ ଗମନ ।
ଏ କଥା ବିସ୍ତାର କରି ମୋର ଆଗେ କହ
ତାହା ଶୁଣି ମୋ ମନରୁ ଯାଉ ସେ ସନ୍ଦେହ ।
ଅଗସ୍ତି କହିଲେ ତାହା ଶୁଣ ଏବେ ଭୂପ
ଯମୁନାପୁର ରାଜାଙ୍କୁ ପୂଗାଛିତ ହୋଇ ।
ଅତି ହରଷରେ ଅଶ୍ୱ ଚଳାଇଣ ଗଲେ
ବୀରବର ସେ ରାଜ୍ୟରେ ପ୍ରବେଶ ହୋଇଲେ ।
ଯମୁନାପୁର ରାଜନ ପାଇଣ ସନ୍ଦେଶ
ଉଡ଼ଙ୍ଗ ରାଜା ସାଜିଲା ରଥ ଗଜ ଅଶ୍ୱ ।
ସେ ଉଡ଼ଙ୍ଗ ଦେଶେ ରାଜା ଅଟଇ ବରୁଣ
ଭୁଲେ ହେନାଛି ଭିନଶ ପାରିଦଣ୍ଡ ଗଣ ।
ବେଶାଉରେ ବାର୍ତ୍ତା ଦେଲେ ଗ୍ରାମୁକୁ ଯାଇଣ
ଅନୁଚର ପରବତେ ଭଜେ ଅରଜୁନ ।
ଯମୁନା ଦେଶ ଜିଣିଣ ଆସନ୍ତି ଏ ପୁରେ
ଯାହା ଶୁଣି ଅଇଲୁ ତ କହିଲ ଗ୍ରାମୁରେ ।
ଏହା ଶୁଣି ନରପତି ଅତ୍ୟନ୍ତ ହରଷେ
ସମଦଣ୍ଡ ସୈନ ରାଜା ସନ୍ନିବରେ ଆସେ ।
ଅନେକ ଉଦଣ୍ଡ ଆଉ ପାଟହସ୍ତିମାନ
ଗ୍ରାମୁକୁ ହୋଇଛି ସ୍ୱରିତ ଖର ଧନ ।
ସ୍ୱରେ ଯାଇଣ ବାରତା କହିଲେ ପାର୍ଥଙ୍କୁ
ସ୍ୱାମି ଉଡ଼ଙ୍ଗର ରାଜା ଆସୁଛି ଗ୍ରାମୁକୁ ।
ଶୁନକୋଣରୁ ବାହନ ଶେଜଜର ରାସ୍ତୁ
ବଣନଖ ମୁଖେ ଭରି ଶରଣ ତି ପ୍ରାପ୍ତ ।
ଅର୍ଜୁନ ବଜେ ଚନ୍ଦନ ବୃଷର ଚଳର
ସାଖେ ଯାଇ ନଉଛଳ କଲା ନୃପବର ।
ଅନେକ ହିନବସନ ହେବାଙ୍ଗ ପଡଣୀ
ନଉଛଳି କଲା ରାଜା ବହୁବସ୍ତ ସେନ ।

ସନ୍ନିଧିରେ ପ୍ରତିପତ୍ୟ ହୋଇ ଦଣ୍ଡଧର
ସ୍ତବ ପାଠକଲ ଜୟ ପାଣ୍ଡବ ସୁନ୍ଦର ।
ତୁମ୍ଭେ ଦେବ ଯୋଗେଶ୍ୱର ଦୁଃଖୀଜନ ବନ୍ଧୁ
ଶରଣ ପୋଷକ ଦେବ ଜଗତରେ ସାଧୁ ।
ତୁ ଦେବ ବାସବ ଆଉ ଦ୍ୱିତୀ ନାରାୟଣ
ସ୍ୱାମି ତବ ପାଦେ ଜନ୍ମେ ଜନ୍ମେ ମୁଁ ଶରଣ ।
ତା ଭକ୍ତିରେ ପରସନ୍ନ ହେଲେ ଫାଲଗୁନ
ପ୍ରଣମନ୍ତ ହାତ୍ସ ହାତ୍ସ ବୋଲିଣ ସଇନ ।
ଦେଖିଣ ଆନନ୍ଦ ହେଲେ ବାସବର ବଳା
ଉଡ଼ଙ୍ଗ ରାଜା ଗଳରେ ଦେଲେ ରତ୍ନମାଳା ।
ଆହେ ବରୁଣ ତୁ ଅଟୁ ବଡ଼ ଜ୍ଞାନବନ୍ତ
ତୋ ସମ ବଦେଖ ଆଉ ନାହିଁ ଏ ଜଗତ ।
ଶ୍ରୀହସ୍ତେ ଅର୍ଜୁନ ଦେଲେ ଯଜ୍ଞ ନିମନ୍ତ୍ରଣ
ରାଜସୂୟ ଯଜ୍ଞକୁ ରାଜା ଯାଅ ହେ ବହନ ।
ବରୁଣ ବୋଇଲେ ଦେବ ମୋର ବହୁଭାଗ୍ୟ
ଆଜ୍ଞା ପ୍ରମାଣେ ଯିବି ମୁଁ ଏହିକ୍ଷଣି ବେଗ ।
ବହୁ ସେନ ମହାରାଜା ହୋଇଲେ ବାହାର
ତହୁଁ ପାର୍ଥ ଭଜଦ୍ୱଜେ କଲେକ ସଞ୍ଚର ।
ବୀରଦେଶ ବୋଲିକରି ରାଜ୍ୟ ଯେ ଗୋଟିଏ
ତହିଁ ଯାଇ ପରବେଶ ହେଲେ ଧନଞ୍ଜୟେ ।
ମାର୍ଗଶିର କୃଷ୍ଣପକ୍ଷ ଦ୍ୱିତୀୟାର ତିଥି
ରବିବାର ଆଦ୍ରା ମିଥୁନ ଚନ୍ଦ୍ର ତଥି ।
ତୈତିଳ ନାମେ କରଣ ସାଧ୍ୟନାମେ ଯୋଗ
ତୁଳା ସଂକ୍ରାନ୍ତିକ ଊନବିଂଶ ଦିନ ଭୋଗ ।
ଅର୍ଜୁନ ବଜେ ଗଣ୍ଡକୀ ନଦୀର ତୀରରେ
ବୈଦୁର୍ଯ୍ୟ ନାମରେ ଏକ ପର୍ବତ ଉପରେ ।
ଧୂରେଶ୍ୱର ପୁରୋହିତ କହିଲେ ବୃତ୍ତାନ୍ତ
ବାବୁ ଗଣ୍ଡକୀ ନଦୀ ଏ ଯୁଗେ ଯୁଗେ ତୀର୍ଥ ।
ଆକାଶମାର୍ଗ ଏହି ଯେ ମେରୁର ମେଖଳ
ବ୍ରହ୍ମା ସ୍ନାନ କରନ୍ତି ଯେ ଏଥେ ତିନିଓଳ ।
ତ୍ରିସନ୍ଧ୍ୟା କରନ୍ତି ଏଥେ ଦେବ ବେଦବର
ଉଦକ ଗଣ୍ଡୂଷ କରେ ସେ ପ୍ରତିଦିନର ।
ବ୍ରହ୍ମାର ଗଣ୍ଡୂଷ ହେତୁ ଅଟେ ଏ ଉଦକ
ତେଣୁକରି ଏହାନାମ ଅଟଇ ଗଣ୍ଡକୀ ।
ବ୍ରହ୍ମା କର୍ଣ୍ଣରୁ କାଢ଼ିଲା କାନକୁଟ ମଳ
କର୍ଣ୍ଣକୂଟ ପର୍ବତ ଏ ଆସଇ ନିକଳ ।

ବଜ୍ରକାଟ ଅଛୁ ସେହି ପର୍ବତ ଉପରେ
ସେ ପୋକ ଶରୀର ଦଶେ ବୈଦୂର୍ଯ୍ୟ ଆକାରେ
ମାଳର ତେଜ ପରାୟେ ଦଶେ ହେମାବଳୀ
ଚଉଦ ନେତ୍ର ମାଣିକ୍ୟ ସମ ନରେ ଝଳ ।
ହୀରାତେଜ ପ୍ରକାଶଇ ଦନ୍ତ ଦେହଗୋଟି
ମର୍କତ ତେଜ ପରାୟେ ତା ପାଦ ସ୍ୱରେଟି ।
ଶୁଦ୍ଧସ୍ଫଟିକ ପ୍ରାୟେକ ଦଶେ ସ୍ୱରଭୂଜ
ଅମୋଘ ମଣି ପ୍ରାୟେକ ନଖ ଯେ ବଜ୍ରଜ ।
କାଳାନଳ ଅଗ୍ନି ପ୍ରାୟେ ତା ଜହ୍ୱା ପ୍ରକାଶି
ମନୁ କଳ୍ପେକ ବଞ୍ଚିଲ ଏ ପର୍ବତେ ବସି ।
ପରମ ଯୋଗୀ ଅଟଇ ଏହି ବଜ୍ରପୋକ
ସହସ୍ର ବର୍ଷ କାଟଇ ଶିଳା ଗୋଟିଏକ ।
ବ୍ରହ୍ମା ରୁଦ୍ର ନାରାୟଣ ଏ ତିନ ମୂରତି
ଏହା ବିନୁ ଅନ୍ୟ କିଛୁ କାଟେ ନ ଜାଣନ୍ତି ।
ଆକାଶ ଗଙ୍ଗା ଏହି ଯେ ମେରୁର ମେଖଳା
ଏଥିରୁ ଜାତ ହୁଅଇ ଶାଳଗ୍ରାମ ଶିଳା ।
ପ୍ରୋହିତ ବାକ୍ୟେ ସାନନ୍ଦ ହେଲେ ଧନଞ୍ଜୟେ
ଗଣ୍ଡକୀ ନଦୀକୁ ପାର୍ଥ ସ୍ନାନକରି ଯାଏ ।
ପ୍ରାତଃସ୍ନାନ ସନ୍ଧ୍ୟାଦି ଆହ୍ନିକ ଯେ କରି
ମଣୋହି ସକାଶେ ସୂପକାରେ ଅବଧାରି ।
ପାର୍ଥର ବାକ୍ୟେ ସାନନ୍ଦ ସର୍ବ ସୂପକାର
ରନ୍ଧଣା ବିଧି କରନ୍ତି ହୋଇ ତତ୍ପର ।
ଏମନ୍ତ ସମୟେ ଶାରଦେଶ ମହାରାଜା
ଲୋକେଶ୍ୱର ଜଳନ୍ଧର ପାଶେ କଲା ପୂଜା ।
ମସ୍ତକରେ ଜଟା ତାର ତାମ୍ରମୁଦ୍ରା କଣ୍ଠେ
କଷାବସ୍ତ୍ର ପରିଧାନେ ତପୋଧନ ବର୍ଣ୍ଣେ ।
ଲକ୍ଷେଯୋଦ୍ଧା ସର୍ବେ ଶ୍ୱେତ ତୁରଙ୍ଗ ଆରୋହି
ପାର୍ଥ ଅଗେ ଉଭାହେଲେ ଅଶ୍ୱରୁ ଓହ୍ଲାଇ ।
ବରୁପାଯେ ସେହି ରାଜା ସେ ପରମଯୋଗୀ
ଯୋଗବଳେ ହୋଇଅଛି ମହାସୁଖ ଭୋଗୀ ।
ପାର୍ଥଙ୍କୁ ଦର୍ଶନ କଲା କାଳକୂଟ ନଗେ
ବରୁପାକ୍ଷ ବୃତ୍ତାନ୍ତ ଯେ ହେଲା ତାର ଆଗେ ।
ବାବୁ ସାଧୁ ପାଣ୍ଡବ ରୁ ପୃଥ୍ୱୀ କଲୁ ରକ୍ଷା
ଉତ୍ତର କୋଶଳେ ତେ ର ନୋହିଲା ଯେକକ୍ଷା
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ସର୍ବଗୁରୁ
ରାଜସୂୟ ଯଜ୍ଞେ ଯାଅ ଆମ୍ଭ ବାଞ୍ଛା ପୂରୁ ।

ଭସମୁଦ୍ରା ଶିକା ବସ୍ତ୍ର ନାରାୟଣ ମୂର୍ତ୍ତି
ମହାରୁଦ୍ର ଶିଳା ଜାଣି ସେ ପିଙ୍ଗଳଜ୍ୟୋତି ।
ଏହାସବୁ ସେନକରି ଯାଅ ସ୍ୱୟଂଯୋଗୀ
ପାର୍ଥ ଆଜ୍ଞା ପ୍ରମାଣରେ ଚଳଗଲେ ବେଗି ।
ଗଣ୍ଡକୀ ପଶ୍ଚିମ ଦ୍ୱୀପେ ଉଙ୍ଗବୋଲି ଦେଶ
ତହିଁର ନରପତି ଯେ ଅଟେ ବ୍ୟୋମକେଶ ।
ପଞ୍ଚଷଉଣୀ ତାହାର ପଦାତି ସଇନ
ରଥ ସୃହତଙ୍କ ଆଉ ଅଶ୍ୱ କୋଟି ତିନ ।
ତିନଶତ ପାରଦନ୍ତି ହେନଣ ନୃପତି
ପାର୍ଥଙ୍କୁ ଦର୍ଶନ କଲା ହୋଇ ହୃଷ୍ଟମତି ।
ସ୍ୱରଶତ ଭାର ସ୍ୱର୍ଣ୍ଣ ଦଉଣମା ଧନ
ଆତର ଯେ ଶ୍ୱେତହସ୍ତୀ ସହସ୍ରେ ପ୍ରମାଣ ।
ଏତେକ ବୋଲଣ ସେବା କଲା ସେ ନୃପତି
ବଦ୍ଧଭବନସ୍ଥ ହୋଇଣ କଲାକ ଭକତି ।
କରପଦ୍ମ ଯୋଡ଼ିକରି ବୋଲେ ବ୍ୟୋମକେଶ
ସ୍ୱାମି ଏହି ନଗରରେ ମୋହର ଯେ ଦେଶ ।
ମୋହର ପୁରକୁ ସ୍ୱାମି ବିଜେକରି ଯିବ
ଏହିକ୍ଷଣି ନାଦ ଆସି ପ୍ରବେଶ ହୋଇବ ।
ଆଜକ ମୋହର ପୁରେ ରହନ୍ତୁ ଗୋସାଇଁ
ମୋ ରାଜ୍ୟ ସୁଫଳ ହେବ କଲେକ ମଣୋହି
ଅର୍ଜୁନ ବୋଇଲେ ବ୍ୟୋମକେଶର ବଚନେ
ପରାନ୍ନ ଭୋଜନ ମୁହିଁ କରିବି କେସନେ ।
ଆମ୍ଭେ ଯେ ଭୋଜନ ଦାନ ଦେବୁଁ ଅପ୍ରମିତ
ତବାନ୍ନ ଭୁଞ୍ଜିଲେ ଧର୍ମ ରହିବ କେମନ୍ତ ।
ବାହୁଡ଼ି ହସ୍ତିନାରାଜ୍ୟେ ପ୍ରବେଶ ପର୍ଯ୍ୟନ୍ତେ
ପରଗୃହେ ଭୋଜନ ମୋ ନାହିଁ କଦାଚିତେ ।
ଯେତେକ ନୃପତିମାନେ ଆମ୍ଭ ବିଜୟାଶ
ହସ୍ତ ନା ରାଜସୂୟଯାଗେ ଯାଅ ବିଜେ କରି ।
ଅକ୍ଷତ ଗୁବାକ ତାକୁ ଦେଲେ ଆଖଣ୍ଡଳୀ
ବ୍ୟୋମକେଶ ନରପତି ଦଣ୍ଡଘେନ ଚଳି ।
ଗଣ୍ଡକୀ ନଦୀରେ ପାର୍ଥ ଆହ୍ନିକାଦି ସାରି
ଆପଣେ ମଣୋହିଠାରେ ଯାଇ ବିଜେକରି ।
ଭୋଜନ ସାରଣ ତହିଁ କଲେ ଆଚମନ
ରଥ ସାଜନ୍ତେ ବାଜିଲ ଶାରଭୂମମାନ ।
ରଥେ ବିଜେକଲେ ପାର୍ଥ ଶୁଭଲଗ୍ନ ଦେଖି
ସମଦଣ୍ଡ ସେନକରି ଚଳାଇ ସଇନ ।

ସମଦଣ୍ଡ ସନ୍ନତରେ ଅ ଟକୁ ଚଳାଇ
ଭୂପାଳ ଦେଶେ ପ୍ରବେଶ ହୋଇଲେ ଯେ ଯାଇ
ବାଜେ ବଜଘୋଷ ବେଦବାଦ୍ୟ ଯେ ଦୁନ୍ଦୁଭି
ଶବଦରେ କମ୍ପମାନ ହୁଅଇ ପୃଥିବୀ ।
ଭୂପାଳର ରାଜ ଚକ୍ରବର୍ତ୍ତୀ ମନମଥ
ବଡ଼ ସମ୍ପଦେ ସେ ରାଜା ରାଜ୍ୟରେ ବିଖ୍ୟାତ
ବେଣୀଗଙ୍ଗାନଦୀତୀରେ କଟକ ତାହାର
ବୈଲୋଚନ ପର୍ବତରେ ବଜେ ପାର୍ଥବୀର ।
ସମଦଣ୍ଡ ଘେନ ରାଜା ମୃଗୟା ବନୋଦେ
ବହରନ୍ତେ ଯୋଦ୍ଧାମାନେ ପରମ ସାନନ୍ଦେ ।
ଦୁନ୍ଦୁଭି ନାଦ ଶୁଣିଣ ପୁଚ୍ଛଇ ନୃପତି
ଏ କି ଶବଦ ଶୁଭଇ ଏ ଆମ୍ଭର ପୃଥ୍ୱୀ ।
କରପଦ ଯୋଡ଼ିକରି କହିଲେ ମୁନୀନ୍ଦ୍ର
ଏକ ରାଜା ବୈଲୋଚନ ନଗ୍ରେ ଅଛି ରହି ।
ରଥ ଗଜ ଅଶ୍ୱ ତାର ଅଳପ ପଦାତି
ଦଣ୍ଡଘେନ ହୋଇଅଛି ଉତ୍ତମ ମୂରତି ।
ଦୂତମୁଖୁଁ ଶୁଣି ରାଜା ହୋଇ କୋପଭର
ସାରଥିକି ବୋଇଲା ଯେ ବାହ ରଥ ମୋର ।
କାହୁଁ ଆଗମ ହୋଇଛି ଜାଣିବି ଆଜି
ମ ପୁଣ ବଳେ ପଶଇ ଏ ମୋହର ରାଷ୍ଟ୍ର ।
ରାଜା ଆଜ୍ଞାରେ ବାହିଲା ଜଣେ ସାରଥି
ତକ୍ଷଣକୁ ଚଳାଇଲା ଆଜି ଚକ୍ରବର୍ତ୍ତୀ ।
ବୈଲୋଚନ ପର୍ବତ ପର୍ଶ୍ୱେ ରାଜା ହୋଇ
ଶତେପୁର କରି ସୈନ୍ୟ ବେଢ଼ାଇଲା ତହିଁ ।
ଗିରି ଉପରକୁ ରାଜା ବଜେ ବାଣ ଘେନ
ଝଲକନ୍ତି ତୀକ୍ଷ୍ଣ ମୁନ ଅଗ୍ନି ତେଜ ଜାଣି ।
ପାର୍ଥ ସଇନ୍ୟ ଦେଖିଲେ ଥାଇ ଗିରିପର
ନାରତମାନେ ବନ୍ଧିଲେ ହୋଇ କୋପଭର ।
ଅସ୍ତ୍ରଘାତେ ଗିରି ଭଙ୍ଗି ପଡ଼ୁଅଛି ଝଡ଼
ଝଲକଇ ଯୋଦ୍ଧାଙ୍କର ପରେ ଶର ପଡ଼ ।
ସେହ୍ନା ଶୋପଇ ବାହୁଟି ଆଉ ଜଗଦ୍ବନ୍ଦା
ଫୁଟନ୍ତେ ସେହ୍ନା ଦିଶଇ ଯେହ୍ନେ ରଙ୍ଗମାଳା ।
ଗଜ ଅଶ୍ୱ ଫୁଟି ଶର ଉଡ଼ୁଛନ୍ତି ରଥେ
ଚୂର ହେଉଛନ୍ତି ଯେହ୍ନେ ବଜ୍ରର ଘାତେ ।
କର୍ଣ୍ଣିବେ ସଇନମାନେ ଆକୁଳିତ ହୋଇ
ଘରକୁଁ ଜୟ ବିଜୟ ପଡ଼ିଲେକ ତେଇଁ ।

ରଣେ କାତର ହୋଇଲେ ମନ୍ମଥର ଠାଟ
ପଳାବନ୍ତି ସଇନ ଯେ ନ ଧରଇ ହାଟ
ସମରେ ଅନବାରଣ ପାଣ୍ଡବଙ୍କ ଯୋଦ୍ଧା
ବହୁତ ନାରତ ବୀରେ ଧନୁଶରେ ବନ୍ଧ ।
ଉଭୟଙ୍କ ଧନ୍ଦୋଳାରେ ବଢ଼ିଲା ସମର
ପଡ଼ନ୍ତେ ନାରତ ଶୂନ୍ୟ ହୋଇ ଅନ୍ତଃଖର ।
ଏକ ନାରତକେ ପଞ୍ଚଶତ ବୀର ଫୁଟି
ନାଚନ୍ତି କବନ୍ଧମାନେ ରକ୍ତ ହୁଏ ବୃଷ୍ଟି ।
ଦଣ୍ଡଭଗ୍ନ ଦେଖି ମନମଥ ଚକ୍ରବର୍ତ୍ତୀ
ମୁକୁଟବନ୍ଧା ସେଠାରୁ ଲକ୍ଷେ ଘେନ ସାଥି ।
ରଣ କରିବା ପାଇଁକ ଯାଆନ୍ତେ ତପଳେ
ବୁଲଇ କୁନ୍ତ ମାଇଲେ ବୀର ତତକାଳେ ।
ଜୟ ବିଜୟ ଉଠିଲେ ଗଦାକୁ ବୁଲାଇ
ପିଟିଲେକ ଗଜଙ୍କର ଉପରକୁ ଧାଇଁ ।
ଅଭଙ୍ଗ ଯୋଦ୍ଧା ଅଟନ୍ତି ପାଣ୍ଡବ ସଇନ
ପୁଣ ପ୍ରହାର କରିଲେ ଅସ୍ତ୍ରମାନ ଘେନ ।
ଉଭୟ ବଳ ସମର ଦେଖି ଫାଲ୍ଗୁନ
ବାହିଲା ସାରଥି ଅମସ୍ତଧି ଅଶ୍ୱ ଘେନ ।
ଲକ୍ଷେଶର ପେଷିଲେକ ବୀର ଧନଞ୍ଜୟେ
ଲକ୍ଷେ ଯୋଦ୍ଧା ପଡ଼ିଲେ ସେହି ଶରଘାଏ ।
ରଜା ଦେଖନ୍ତେ ପଡ଼ିଲେ ବହୁତର ହସ୍ତୀ
ନାଚନ୍ତି କବନ୍ଧେ ହେଲା ରକ୍ତମୟ ପୃଥ୍ୱୀ ।
ସେନାମାନେ ପଡ଼ିବାର ଦେଖି ମନମଥ
ସାରଥିକି ବୋଇଲା ତୁ ବାହା ମୋର ରଥ
ବେଗେ ସାରଥି ବାହିଲା ରଥ ବେଗକରି
ପାର୍ଥ ଛାମୁରେ ମିଳିଲା ରାଜା ସ୍ୱପ ଧରି ।
ବୋଇଲା ରେ ଶୁଣ ତୁହି କେଉଁଦେଶ ରଥୀ
ଅଦୋଷେ ମୋ ସୈନ୍ୟନାଶି ମୋରରାଜ୍ୟମନ୍ତ୍ରୀ
କେଉଁ ଦେଶ ରାଜା ଅବା କେଉଁ ଦେଶସେନା
ପର ରାଜ୍ୟ ପଶି କପାଁ ଦେଖାଉ ଗାରିମା ।
ପ୍ରାଣୀଙ୍କୁ ନାଶ କରନ୍ତି ଯେ ବିନା ଦୋଷରେ
ବହୁଶାନ୍ତି ପାନ୍ତି ସେହୁ ଜନ୍ମପତି ପୁରେ ।
ଏପରି କହିଲା ଯହୁଁ ମନ୍ମଥ ନୃପତି
ରଥେ ଥାଇଣ କହିଲେ ପାର୍ଥ ମହାମତି ।
ରଥେ ଅର୍ଜ୍ଜୁନ ଗାଣ୍ଡୀବଧାରୀ ଯାଷାଗୁରୁ
ରାଜସୂୟଯାଗ ନିମନ୍ତେ ଦିଗବିଜେ କରୁ ।

ଯୁଧିଷ୍ଠି ସେବ କରିବେ ମହାଯଜ୍ଞ ସଙ୍ଗ
ସମସ୍ତ ରାଜା କରିବେ ତାଙ୍କ ପାଦସେବା ।
ଶୁଣିଣ ବୋଲେ ମନ୍ମଥ ଦ୍ରୋହକର୍ମ କଲି
ଅଜ୍ଞାନପଣେ ଅନେକ ପ୍ରମାଦ ଅର୍ଜିଲି ।
ମୁହିଁ ପାମର ନ ଜାଣି କଲି ବହୁ ଦ୍ରୋହ
ନାରାୟଣ ଅଙ୍ଗ ତୁହି ଶାନ୍ତଭାବ ବହ ।
ଅନେକ କାର୍ପଣ୍ୟ ଯହୁଁ ହେଲା ନରେଶ୍ୱର
ପାର୍ଥ ବୋଇଲେ ହେ ରାଜା ଭୟ ତୁ ନ କର
ଅଜ୍ଞାନ ପ୍ରାଣୀର ଦୋଷ ଆମ୍ଭେ ଯେ ନ ଧରୁ
ଅଜ୍ଞାନ ପ୍ରାଣୀ ନାଶିଲେ ବ୍ରହ୍ମହତ୍ୟା ସରି ।
ଏବେ ଗୁଡ଼ ମନୋଭ୍ରାନ୍ତ ବୋଲେ ଶବ୍ୟସାଚୀ
ଆମ୍ଭେ କହୁଅଛୁ ତୋର ଦୋଷ ନାହିଁ କିଛି ।
ଆପଣେ ଅକ୍ଷତ ଗୁଆ ଶ୍ରୀହସ୍ତେ ଘେନଣ
ମନମଥ ରାଜା କରେ କଲେ ସମର୍ପଣ ।
ତାହାର କଣ୍ଠରେ ଦେଲେ ମନୋସୃଜ ମାଳ
ବୋଇଲେ ଏକ୍ଷଣି ରାଜା ଯାଅ ତୁହି ଚଳି ।
ଦ୍ୱାରାବତୀ ଯିବପଥେ ନ ରହିବ କାହିଁ
ଅତି ବେଗେ ବାରୁଣାରେ ପହଞ୍ଚିବ ଯାଇ ।
ଶୁଭ ଅନୁକୂଳେ ରାଜା ପାର୍ଥ ଆଜ୍ଞା ଘେନ
ବାରୁଣାବନ୍ତକୁ ଗଲା ଚଳାଇ ସଇନ ।
ଜୟ ଜୟ ଦୀନବନ୍ଧୁ ଜଗତ କରତା
ତୁମ୍ଭେ ପ୍ରଭୁ ପ୍ରାଣୀଙ୍କର ଗତି ମୁକ୍ତି ଦାତା ।
ତୁମ୍ଭଛଡ଼ା ତ୍ରାଣକର୍ତ୍ତା ନାହିଁ ଏ ସଂସାରେ
ଶାରଳା ଦାସ ଶରଣ ମାଗେ ଏ ହେତୁରେ ।

---

## ବୈଲୋଚନ ସହିତ ପାର୍ଥଙ୍କ ଯୁଦ୍ଧ ଓ ନିମନ୍ତ୍ରଣ

ଏଥିଅନ୍ତେ ପୃଚ୍ଛାକଲେ କଲିଙ୍ଗ ରାଜନ
ଭୂପାଳ ଦେଶରୁ କାହିଁ ଗଲେ ଅର୍ଜୁନ ।
ଏ କଥା ବିସ୍ତାରି କରି କହ ମୋର ଆଗ
ଶୁଣିବାପାଇଁକ ଚିତ୍ତେ ଅତ୍ୟନ୍ତ ଉଦ୍‌ବେଗ ।
ଅଗସ୍ତି କହିଲେ ଶୁଣ କଳିଙ୍ଗାଧିପତି
ଯାହା ପୁଚ୍ଛାକଲୁ ଶୁଣ ସ୍ଥିରକରି ମତି ।
ଭୂପାଳ ଦେଶରୁ ତେଜ ବୀର ଅରଜୁନ
ଉଜାଣକାନ୍ତ ରାଜ୍ୟକୁ କରିଲେ ପ୍ରୟାଣ ।

ସେ ମହାନଗ୍ର ବିଶାଳ ସମୁଦ୍ରର କୂଳେ
ବେଢ଼ ଯୋଜନ ବିସ୍ତାର ନଗ୍ର ପରିମଣ୍ଡେ ।
ସେ ଉଜାଣ ନଗ୍ର ବେଢ଼ପୁଣ ଆସୁରନ
ସେ ରାଜ୍ୟର ପୁରମାନ ସୁବର୍ଣ୍ଣେ ନିର୍ମାଣ
ଯାହାର ଘରେ ପୁ ରୁଷେ ଅଛନ୍ତି ଯେ ଯେତେ
ସମସ୍ତେ ଯୁଦ୍ଧେ ନିପୁଣ ମହାବଳବନ୍ତେ ।
ସେହି ରାଜ୍ୟରେ ପଦାତି ନାହିଁ ଯେ ତାଙ୍କର
ସମସ୍ତେ ମୁକୁଟବନ୍ଧା ମହା ଧନୁର୍ଦ୍ଧର ।
ନାରାଚରେ ମାରୁ ଚକ୍ଷୁଗ୍ରାହନ୍ତ ସେ ବନ୍ଧ
ନାରାଚେ ଅଚଳଗିରି ପାରନ୍ତି ସେ ଭେଦ ।
ଏସନକ ବଳବନ୍ତ ଅଛନ୍ତି ସେ ବୀରେ
ଶ୍ୟେନପକ୍ଷୀ ପ୍ରାୟେ ସେହୁ ପଶନ୍ତି ସମରେ ।
ଅଶ୍ୱପରେ ଥିଲେ ତାଙ୍କୁ କେ ଜିଣିବ ରଣେ
ତାଙ୍କ ଶସ୍ତ୍ର ବାଜି ରକ୍ତ ଉଦ୍‌ଗାରନ୍ତି ଜନେ
କନକଧାରୀ ପର୍ବତ ବନାଙ୍ଗୀର କୂଳେ
ବରଷକେ ଦଣ୍ଡେ ସ୍ୱର୍ଣ୍ଣ ବରଷେ ଆଖଣ୍ଡଳେ ।
ସେ ପର୍ବତେ ତ୍ରେତା ଯୁଗେ ରାମଚନ୍ଦ୍ର ସ୍ୱାମି
ସୀତା ଲକ୍ଷ୍ମଣ ସହିତେ ଥିଲେ ସେ ବିଶ୍ରାମି ।
ମାର୍ଗଶୀର ଶୁକ୍ଳପଞ୍ଚମୀ ଯେ ଗୁରୁବାର
ଶ୍ରବଣା ଋକ୍ଷ ମକର ଚନ୍ଦ୍ର ସେ ଦିନର ।
ସେହି ପର୍ବତ ଉପରେ ବସି ଦେବୀ ସୀତା
ବାଲୁକା ଲିଙ୍ଗ ପୂଜିଲେ ହୋଇ ହରଷିତା ।
ନର୍ମଜପୁଷ୍ପ ଗୋଟିଏ ଦେଇ ଲିଙ୍ଗପରେ
ବହୁସ୍ତୁତି କରିଲେକ ତାହାଙ୍କୁ ଭକ୍ତିରେ ।
ସୀତାଙ୍କ ଭକ୍ତିରେ ତୁଷ୍ଟ ହୋଇ ଦେବକାଶୀ
ଜାନକୀଙ୍କ ନିକଟରେ ବିଜେ କଲେ ଆସି ।
ବୋଇଲେ ତୁମ୍ଭ ଭକ୍ତିରେ ତୁଷ୍ଟ ହେଲୁ ଆମ୍ଭେ
ତୁମ୍ଭର କି ବାଞ୍ଛା ଅଛି ତାହା ମାଗ ଏବେ ।
ସୀତା ବୋଇଲେ କାହିଁରେ ଇଚ୍ଛା ନାହିଁ ମୋର
ତୁମ୍ଭେ ତ ସବୁ ଦେଇଛ ଆଉ କି ପରୁର ।
କେବଳ କଥାଏ କହେ ଶୁଣହେ ଧୂର୍ଜଟି
ବର୍ଷକେ ଥରେ ଏଠାରେ ହେବ ସ୍ୱର୍ଣ୍ଣବୃଷ୍ଟି
ଶିବ ବୋଇଲେ ସେ କଥା ନାହିଁ ଆମ୍ଭହସ୍ତେ
ତୁମ୍ଭ ଆଜ୍ଞାକୁ ପାଳିବ ବାସବ ନିଶ୍ଚିନ୍ତେ ।
ଏହା ଭଣି ବିଶ୍ୱନାଥ ଅନ୍ତର୍ଦ୍ଧାନ ହେଲେ
ସୀତା ଇନ୍ଦ୍ରଙ୍କୁ ସ୍ମରନ୍ତେ ସେଠାରେ ମିଳିଲେ ।

ତାହାଙ୍କୁ ଦେଖି ବୋଇଲେ ସୀତା ଠାକୁରାଣୀ
ବର୍ଷିକେ ରତ୍ନ ବର୍ଷିବ ଏଥେଁ ବଜ୍ରପାଣି ।
ଜାନକୀର ବଚନରେ ସେ ପାକଶାସନ
ବରଷକେ ସ୍ୱର୍ଣ୍ଣ ବର୍ଷେ ଏ ଲଙ୍କ ପଟଣ ।
ସେ ବନାଙ୍ଗୀ ନଦୀରେ ଯେ ସ୍ନାନ କରି ପାର୍ଥ
କନକଲଙ୍କ ଦେଶରେ କନକ ପର୍ବତ ।
ପାର୍ଥ ଦିନେ ମାର୍ଗଶୀର କୃଷ୍ଣ ଚତୁର୍ଥୀର
ପୁନର୍ବସୁ ନକ୍ଷତ୍ର ଯେ ଅଟେ କୁଜବାର ।
ସେହି ଦିନ ହୋଇଥିଲା ଜନ୍ମ ଯେ ହନୁମନ୍ତ
ଇନ୍ଦ୍ର ବୃଷ୍ଟିକଲେ ରତ୍ନ ସୀତା କଥା ତନ୍ତ ।
ସେ ରାଜ୍ୟ ଛଡେ ଅଛଲେ ତହିଁକ ହାଉଁଟି
ଅର୍ଜ୍ଜୁନେ ଉଦୟ ପର୍ବତେ ପାଇଲେ ଉଠି ।
ସେ ରତ୍ନକୁ ଗୁଣ୍ଡ କଲେ ଅର୍ଜ୍ଜୁନ ସଇନ
ସୁବର୍ଣ୍ଣଭଥେ ଭରିଲେ ସର୍ବ ସାର ଆଣି ।
ରତ୍ନ ନେଇ ରାଜାଆଗେ କହିଲେ ମୁନେଈ
ଗଲା ବୈଲୋଚନ ରାଜା ଅନ୍ତ କ୍ରୁଦ୍ଧ ହୋଇ
ରଥ ଗଜ ଅଶ୍ୱ ଆଉ ପଦାତି ଗହଣ
କଣ୍ଠପୁରିର ବେଢ଼ିଲେ ଯାଇ ସର୍ବ ସୈନ୍ୟ ।
ଦେଖିଲେକ ସେ ପର୍ବତ ପରେ ଉଣ୍ଡଦଣ୍ଡ
ଘୋର ବାଦ୍ୟ ସବଦରେ କମ୍ପଇ ବ୍ରହ୍ମାଣ୍ଡ ।
ଇନ୍ଦ୍ରଦେବ କଟ ଅସ୍ତ୍ର କଣପୁ ଯେ ବୃଷ୍ଟି
ବୈଲୋଚନ ସେନା ଯେତେ ପର୍ବତକୁ ଉଠି ।
ତାକନ୍ତି ସେନାଏ ଆରେ କେଉଁଦେଶ ଗାର
ପରଧନ ନଷ୍ଟ କୁଲେ କାହିଁର ସେ ଚୋର ।
ଏ ଚୋରକୁ ମାର କହି ଧାଇଁଲେ ସେ ରଥୀ
ଅଶ୍ୱ ଆରୋହି ଚୌଦିଗୁ ବାଣ ସେ ବିନ୍ଧନ୍ତି ।
ପାର୍ଥ ସୈନ୍ୟ ନ ସହନ୍ତି ରେ ରେକ ର କଥା
ଶୁଣିଲାରେ ସାମରଥ ବଢ଼ୁ ବଳବନ୍ତା ।
ପର୍ବତେ ଥାଇ ସଭଳେ କଲେ ଶରବୃଷ୍ଟି
ବୈଲୋଚନ ସୈନ୍ୟଗଣ ପଡ଼ିଲେକ ଫୁଟି ।
ହସ୍ତୀଙ୍କ ଉପରେ ଥିଲେ ଯେତେ ଯୋଦ୍ଧାମାନେ
ସେହିମା ଫୁଟନ୍ତେ ଅଜ୍ଞାନ ହେଲେ ସେହିକ୍ଷଣେ
ହାବୁଡ଼ା ଶର ପଡ଼ନ୍ତେ ଗଲେ ମହୀଲୋଟି
ଶିର ଉପରକୁ କେହି ନ ପାରିଲେ ଉଠି ।
ଲକ୍ଷିଆ କୁନ୍ତ ପରିଘ ଯାଠି ସେ ମୂଷଳ
ପର୍ବତରେ ଥାଇ ମାରନ୍ତେ ସୈନ୍ୟ ହେଲେ ଗଳ

ଗଜ ଅଶ୍ୱମାନେ ଗର୍ଜିଲେ ଅସମ୍ଭାଳେ
ଏକ ଉପରେ ଆରେକ ପଡ଼ି ମହୀସ୍ଥଳେ ।
ସଇନଙ୍କର କନ୍ଦଳ ଦେଖି ମହୀପତେ
ଦଶଲକ୍ଷ ଯୋଦ୍ଧା ଘେନି ଉଠିଲା ପର୍ବତେ ।
ଛନ୍ନଯୁଣ ଆପୁରତ ସେ କଣପୁରିର
ଦୁଇବଳ ମିଶି ହେଲେ ଉଦୁରୁ ଉବୁର ।
ବିନ୍ଧନ୍ତି ଶର ଗର୍ଜନ୍ତେ ଘୋର ଖାଣ୍ଡମୁନା
କବଚ କୁଣ୍ଡଳ ମଣି କୁଟଇ ଯେ ସେହ୍ଲା ।
ପ ଣ୍ଡବ ସଇନ କଟିଲ ବହୁ ଶସ୍ତ୍ରଘାତ
ଗର୍ଜିଲେ ସନ୍ତୁ ଯୋଦ୍ଧାଏ ବଜ୍ରେକଲେ ପାର୍ଥ
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ର ପରକାଶି
ସେମାନଙ୍କ ମଧ୍ୟେ ପାର୍ଥ ସେହିପରି ଦିଶି ।
ଆପଣେ ବାଣ ବିନ୍ଧିଲେ କୋପକରି ଅତି
ପଡ଼ିଲେ ବାତେ ଯେସନେ ରମ୍ଭା ସୈନ୍ୟ କ୍ଷିତି
ରଥକେ ଶତଶର ଯେ ଗଜେ ଶତ ଶର
ଅଶ୍ୱ ଯୋଦ୍ଧାଙ୍କୁ ଚଉଅଂଶ ସୈନ୍ୟଙ୍କୁ ପନ୍ଦର ।
ମନଭେଦ ବୋଲିକରି ଯେଉଁ ଶର ଗୋଟି
ମନେ ଯେତେ ଗୁଣ ତେତେ ହୋଏ ଶରବୃଷ୍ଟି
ଏକାବେଳକେ ମାଇଲେ ସର୍ବସୈନ୍ୟ ଘୋଟି
ଦେନପୂର୍ଣ୍ଣ ପରିଯନ୍ତ୍ରେ ପଡ଼ିଲେକ ଲୋଟି ।
ନବଲକ୍ଷ ଯୋଦ୍ଧା ଅଶୀଲକ୍ଷ ଯେ ମାତଙ୍ଗ
ସାତଖର୍ବ ସୈନ୍ୟ ତେର ଖର୍ବଣୀ ତୁରଙ୍ଗ ।
ବାସବର ମନ୍ତ୍ରମାଲୁ ଦେଖ ହେ ସମରେ
ଏକ ଶରଘାତେ ସର୍ବେ ଲୋଟିଲେ ମହୀରେ ।
ତନଶତ ଯୋଦ୍ଧା ତହୁଁ ଉବୁରି ରହିଲେ
ତା ଦେଖି ରାଜା ଅର୍ଜ୍ଜୁନେ ଶାନ୍ତି ଶାନ୍ତି ବୋଲେ
ବାତଘାତେ ଯେସନେକ କଦଳୀର ବନ
ସୈନ୍ୟ ପଡ଼ିବା ଦେଖିଣ ବ୍ୟାକୁଳ ରାଜନ ।
ବାଣେ ନିର୍ଜିତ ହୋଇଲେ ତହୁଁ ତାର ବଳ
ବାହନ ତେଜି ପ୍ରଣାମ କରେ ମହୀପାଳ ।
ପୁଣ ପୁଣ କରଯୋଡ଼ି ହୋଏ ପରଣାମି
ଅଦୋଷେ ମୋ ସୈନ୍ୟ କିପାଁ ନାଶକର ସ୍ୱାମି
ଅର୍ଜ୍ଜୁନ ବୋଇଲେ ଆରେ ନାହିଁ ତୋର ଜ୍ଞାନ
ମୁହିଁ ସେ ଅର୍ଜ୍ଜୁନ ମୋତେ କିପାଇଁ ନ ଚିହ୍ନ ।
ରାଜସୂୟ ମହାଯାଗ କରିବା ନିମିତ୍ତେ
ଉତ୍ତରେ ଆସିଛୁ ରାଜା ନମନ୍ତିବା ଅର୍ଥେ ।

ସକଳ ମହୀପତି ଯେ ହେବେ ତହିଁ ରୁଣ୍ଡ
ଯାଆନ୍ତି ରଜାଏ ଘେନ ଯେ ଯାହାର ଦଣ୍ଡ ।
ଏସନ ବଚନ ଶୁଣି ଉଜାଣର ସାଇଁ
ବିନୟେ ବାକ୍ୟ କହଇ ଅର୍ଜୁନଙ୍କୁ ଚାହିଁ ।
ଆହେ ମହାବାହୁ ତୁମ୍ଭେ ସର୍ବଙ୍କ ପଣ୍ଡିତ
ଏତେ ପ୍ରଭୁ ହୋଇ ତୁମ୍ଭେ ନ ଦେଲ ହାରତ
ଆମ୍ଭେ ବଣପଶୁ ସମ ସର୍ବ ମହୀକ୍ଷିତ
ମତ୍ତଗର୍ବେ ସଦା ଥାଉ ମୂର୍ଖ ଅପଣ୍ଡିତ ।
ମୋର ସମ ଯୋଦ୍ଧା ନାହିଁ ମନେ ମୁଁ କରଇ
ସେ ହେତୁରୁ ଧାତା ଦୁଃଖ ଦେଲାକ ଗୋସାଇଁ
ନ ଜାଣିଣ ସମର ମୁଁ କଲ ଅନମିତେ
ଏ ଯୁଦ୍ଧରେ ସଇନଙ୍କୁ ସଂହାରିଲ ହେତେ ।
କୁଟୁମ୍ବପାଳ ତାଙ୍କର ହୋଇଲେ ନିର୍ମାଷି
ଶରୀର ମୋର ଦହୁଛି ସ୍ତ୍ରୀଙ୍କ କଷ୍ଟ ଦେଖି ।
ତୋତେ ଜିଣିବାକୁ ମୁହିଁ ନୋହିଲ ସମର୍ଥ
ସ୍ତ୍ରୀଠାରୁ ମରିବା ଶ୍ରେୟ ଅଟଇ ଯଥାର୍ଥ ।
କ୍ରୋଧ ହିନୟେ କହିଲା କଣ୍ୟ ରାଜନ
ଅପରାଧୀ ହେଲୁ ମାର ଏ ଦୋଷେ ମୋ ସୈନ୍ୟ
ଏହା କହି ନରପତି ଭୂମିଷ୍ଟେ ନମିଲେ
ଦେଖିକରି ଧନଞ୍ଜୟ ରାଜାକୁ ବୋଇଲେ ।
ଉଠ ଉଠ ନରପତି ନାହିଁ ତୋର ଦୋଷ
ତୋର ପ୍ରତିଜ୍ଞା ନ ସହି ସୈନ୍ୟ କଲି ନାଶ ।
କରପଦ ଯୋଡ଼ି କହେ ବୈଳ୍ପେତନ ସାଇଁ
ନାଶକଲୁ ମୋର ସୈନ୍ୟ ଏବେ କର କ୍ଷାନ୍ତି
ଯଦ୍ୟପି ଅର୍ଜୁନ ତୁହି ବାସୁଦେବ ଆତ୍ମା
ତୋତେ କି ଉପମା ଦେବି ତୁହି ମହାତମା ।
ସ୍ୱାମି ସମସ୍ତ ରଜାଏ ଯିବେ ଯେ ହରଷେ
ମୁହିଁ ଅଳ୍ପ ସୈନ୍ୟେ ଯିବି ମନର ବରଷେ ।
ରଜାର ବଚନ ଶୁଣି ଅର୍ଜୁନ ବୋଇଲେ
ମୃତପ୍ରାଣୀ ବଞ୍ଚଇ କି କଉଣସି କାଳେ ।
ରଜାବୋଲେମୋସୈନ୍ୟଙ୍କୁ ନଜ୍ୟାଇଁବୁଯେବେ
ଖରମାର ମୋତେ ସ୍ୱାମି ନାଶକର ତେବେ
କୁଟୁମ୍ବ ମରାଇ କର ବଞ୍ଚନ୍ତି ଯେ ପ୍ରାଣୀ
ଅଲକ୍ଷଣା ମଧ୍ୟେ ସେହି ପୁରୁଷଙ୍କୁ ଗଣି ।
ପଦ୍ମାସନରେ ବସିଲା ସେ ନୃପତିମଣି
ମୋତେ ମୁକ୍ତକର କାଟ ମୋ ଶିର ଏକ୍ଷଣି ।

ଏ ଘୋରତେ ମହାମଲ୍ଲ ବିଶ୍ୱ ନାରାୟଣ
ତବହସ୍ତେ ମଲେ ମୁହିଁ ପାଇବି କାରଣ ।
ସ୍ୱାମି ତୁମ୍ଭେ ତ ହୋଇଲ ମୋ ଇଷ୍ଟଦେବତା
ଆବର ମୋହର ଅଟୁ ମାତା ଆଉ ପିତା ।
ବୈଳ୍ପେତନ ଏହିରୂପେ କହନ୍ତେ ବିନୟେ
ମାତଳ ବୋଇଲା ରକ୍ଷାକର ଧନଞ୍ଜୟେ ।
ଜୀବନ୍ୟାସ ଶର ସନ୍ଧି ଅର୍ଜୁନ ପେଷିଲେ
ଅମର ଭୁବନୁ ସୁଧା ବୃଷ୍ଟି କରାଇଲେ ।
ଚେତନା ପାଇ ଉଠିଲେ ସକଳ ସଇନ
ହାନ୍ତି ଅର୍ଜୁନ ବୋଲିଣ କଲେ ଘୋରଧ୍ୱନ ।
ନିମନ୍ତ୍ରଣ ଦ୍ରବ୍ୟ ଦେଲେ ସୁଭଦ୍ରାର ନାହା
ସମଦଣ୍ଡ ଘେନ ରଜା ରାଜସୂୟେ ଯାଆ ।
ଅନେକ ସାନନ୍ଦେ ରଜା ହେଲା ପରଣାମି
ମୋର ରାଜ୍ୟରେ ଆଜକ ରହ ଦେବ ସ୍ୱାମି ।
ମଣୋହି ଯୋଗ ତ ଦେବ ଯେତେକ ପାରଇ
ମୋର ରାଜ୍ୟକୁ ସୁଲଭ ହୋଇବ ଗୋସାଇଁ
ପାର୍ଥ ବୋଇଲେ କା ରାଜ୍ୟେ ନାହିଁମୋଭୋଜନ
ପିତାଙ୍କ କାର୍ଯ୍ୟ ହେତୁରେ ପରେ ଦେବୁ ଅଣ୍ଣ
ଆହେ ବୈଳ୍ପେତନ ତକ ତୋର ସୈନ୍ୟ ଘେନ
ଅପୂର୍ବ ଦ୍ରବ୍ୟ ନେବୃଟି ଦେଖା ଦରଶନ ।
ପାର୍ଥ ଆଜ୍ଞାରେ ସମ୍ମତ ମଦନର ବାଳ
ସେକ୍ଷଣି ଥାଟ ଚଳାଇ ତେଜିଲା ମଣ୍ଡଳ ।
ଜୟ ହେ କେଶବ କେଶୀ ବକା ତୃଣା ହରା
ଜୟ ହେ ମାଧବ ଗୋପୀ ଗୋପ ଚିତ୍ତଚୋର
ତୁମ୍ଭ ପାଦେ ନିରନ୍ତର ରହୁ ମୋର ଆଶ
ଶାରଳା ଦାସର ସଦା ଏହି ଅଭିଳାଷ ।

---

## କର୍ଣ୍ଣାଟକ ରାଜା, ବିଷ୍ଣୁକର ପଣ୍ଡା ବେଦଶ୍ରବଣପଣ୍ଡା, ଅଙ୍ଗାରପନ୍ନଗ ଓ ଦ୍ରୁପଦରାଜାଙ୍କୁ ଅର୍ଜୁନଙ୍କ ନିମନ୍ତ୍ରଣ

ଏଥୁଅନ୍ତେ ମନୁରଜା ଯୋଡ଼ି ବେନକର
ଅଗସ୍ତିଙ୍କ ଶ୍ରୀଚରଣେ କଲେ ନମସ୍କାର ।
ଉକ୍ତ ଉତରେ ପୁଚ୍ଛାକଲେ କହ ତପୋବନ୍ତ
ସେହିଠାରୁ କାହିଁ ଗଲେ ପୁଣି ବୀର ପାର୍ଥ ।
ରଜାର ଭକତି ଦେଖି କହିଲେ ଅଗସ୍ତି
ଯାହା ପୁଚ୍ଛାକଲୁ ତାହା ଶୁଣ ନରପତି ।

ଉଜାଣ ନଗ୍ର ଛେଦଣ ଘୋର ଅରଣ୍ୟ
ସମଦଣ୍ଡ ସାଜ ତହୁଁ କରିଲେ ଗମନ ।
ସ୍ୱର୍ଣ୍ଣପୁର ବୋଲିଣ ଅଛଇ ନଗର
ତହୁଁ ପ୍ରବେଶିଲେ ପାର୍ଥ ଉଦ୍ୟାନଘ ଘୋର ।
ସେ ରାଜ୍ୟର ରାଜା ବର୍ଣ୍ଣାଜ୍ଞ ଚକ୍ରବର୍ତ୍ତୀ
ତାହାର ଦୂତେ ଦେଖିଣ ଧାଇଁଗଲେ ଧାତି ।
ବିଜୟ ନରେନ୍ଦ୍ର ଚନ୍ଦ୍ରଶାଳାର ମଧ୍ୟରେ
ସ୍ତବିପାଠ ହୋଇ ପାଶେ ଜଣାଇଲେ ଗୁଡ଼େ ।
ସ୍ୱାମି ଯୁଧିଷ୍ଠିର ରାଜସୂୟ ଯଜ୍ଞର ନିମନ୍ତେ
ଅର୍ଜ୍ଜୁନ ଏଠା ବିଜୟେ ଉତ୍ତର ପ୍ରଶସ୍ତେ ।
ଏକ ଏକ ରାଜ୍ୟ ଦେଵ ଦେଉଛନ୍ତି ଉଜାଡ଼ି
ଯେତୁ ଦୁଷ୍ଟ ହୁଏ ସେହୁ ମହାକଷ୍ଟେ ପଡ଼ି ।
ସମଦଣ୍ଡ ଘେନି ବୁଲି ଯିବାହୋ ପାରୁଛନ୍ତି
ଭକ୍ତଜନେ ଅନୁଗ୍ରହ କରଇ ଜଗତି ।
ଭାଗ୍ୟବନ୍ତ ରାଜା ସେହୁ ସ୍ୱର୍ଣ୍ଣପୁର ପତି
ଶୁଣି ସାନନ୍ଦ ହୋଇଣ ଉଠିଲେ ତ୍ୱରିତି ।
ସୈନ୍ୟ ସାମନ୍ତ ଯେତେକ ତାର ଦଳ ଥିଲେ
ଆଜ୍ଞା ଦ୍ୟନ୍ତେ ସଜହୋଇ ସମସ୍ତେ ଅଇଲେ ।
ନଗ୍ରାଗ୍ରରେ ଅର୍ଜ୍ଜୁନର ଆହ୍ୱାନକ ଦେଲେ
ସମ୍ଭବେ ମିଳିଣ ସ୍ୱର୍ଣ୍ଣପୁର ମହୀପାଳେ ।
ପାର୍ଥଙ୍କୁ ପ୍ରଣାମ କଲା ତହିଁ ନରେଶ୍ୱର
ଦେଖି ପ୍ରସନ୍ନ ହୋଇଲେ ପାଣ୍ଡୁବଂଶନନ୍ଦନ ।
ଅକ୍ଷତ ଗୁଆକ ଦେଇ କଲେ ନିମନ୍ତ୍ରଣ
ବର୍ଣ୍ଣସେନ ବାହାରିଲା ରାଜା ସେହିକ୍ଷଣ ।
ନିମନ୍ତ୍ରଣ ଘେନିଣ ଯେ ଚଳେ ମହୀପତି
ତହୁଁ ଅର୍ଜ୍ଜୁନ ଚଳିଲେ ତାହାଙ୍କୁ ନିମନ୍ତି ।
ଶିବପୁର ନଗ୍ରେ ପାର୍ଥ ପ୍ରବେଶିଲେ ଯାଇ
ଘୋର ତୂର ଶବଦରେ ସିନ୍ଧୁ ଉଚ୍ଛୁଳଇ ।
ବସ୍ତ୍ରୁବର ପଣ୍ଡା ସେହି ରାଜ୍ୟ ଅଧିପତି
ବ୍ରାହ୍ମଣ ରାଜା ସେହି ଯେ ଶାସ୍ତ୍ରମତେ ବର୍ତ୍ତି ।
ମୁନେହି ବୋଇଲେ ଯାଇ ତାଙ୍କ ସନ୍ନିଧାନେ
ଉତ୍ତର ଦିଗକୁ ବିଜେକଲେ ଫାଲଗୁନେ ।
ସେ ବସ୍ତ୍ରୁବର ବ୍ରାହ୍ମଣ ବାରତା ପାଇଣ
ବୋଲେ ରାଜ୍ୟରେ ପାଏଡ଼ା ପାର ଏହିକ୍ଷଣ ।
ଶୁଣି ସକଳେ ସେ ନଗ୍ରମଣ୍ଡନ କରିଲେ
ଯେ ଯାହାର ଘର ଦ୍ୱାରେ ପାଏଡ଼ା ପାଡ଼ିଲେ

ବସ୍ତ୍ରୁବର ଭାର୍ଯ୍ୟା ନାମ ଅଟେ ସୁବ୍ରତମତି
ଅମୃତ ଯୋଗାଡ଼ କଲା ଯେହ୍ନେ ହେବ ପ୍ରୀତି
ବସ୍ତ୍ରୁଗଣ ସଙ୍ଗେ ଘେନି ଗଲା ବସ୍ତ୍ରୁବର
ଅର୍ଜ୍ଜୁନ ଯେ ରହିଥିଲେ ନଗ୍ରର ବାହାର ।
ପଞ୍ଚାଶଭାର ମୁକୁତା ଘେନିକରି ଧନ
ଯାଇ ଅର୍ଜ୍ଜୁନ ଗ୍ରାମରେ କଲା ଦରଶନ ।
ବସ୍ତ୍ରୁବର ପଣ୍ଡା ଯାଇ କରୁ ନଉଛାଳ
କୋଳ କରିଣ ପଣ୍ଡାକୁ ପାର୍ଥ ବେଗେ ତୋଳ
ସୁମରାଳଟ ଡାକନ୍ତି ତହିଁ ସର୍ବେ ମିଳି
ନଗ୍ରେ ପଶନ୍ତେ ଶୁଭଇ ଧ୍ୱନି ହୁଳହୁଳି ।
ବହୁ ଉତ୍ସବ କରନ୍ତି ତହିଁ ବହୁଜନେ
ବିଜେକଲେ ପାର୍ଥ ଇନ୍ଦ୍ରଶାଳାର ଭବନେ ।
ସର୍ବ ଅଳଙ୍କାର ପିନ୍ଧି ବସ୍ତ୍ରୁବର ରାଣୀ
ବନ୍ଦାପନା କଲା ପାର୍ଥେ ଅର୍ଘ୍ୟଥାଳି ଘେନି ।
ପାର୍ଥ ମୁଖ ଚାହିଁ ବୋଲେ ବହୁତ ପ୍ରଶଂସି
ଶୁଣ ମୁହିଁ ଏ ନଗ୍ରର ଅଟଇ ଉଦାସୀ ।
ବିଜୟ କରିଲ ଦେବ ମୋହର ଭବନେ
କୃତକୃତ୍ୟ ହେଲି ମୋର ତୁମ୍ଭ ଦରଶନେ ।
ଅପୁତ୍ରକ ଥିଲି ବହୁ ଦିବସ ପର୍ଯ୍ୟନ୍ତେ
ଅପୁତ୍ରକ ବୋଲି ଘୃଣା କରୁଥିଲେ ମୋତେ
ସ୍ୱାମି ମୋର ଘରେ ଆସି କଲ ଭିକ୍ଷାପାତ୍ର
ଧର୍ମବଳେ ମୁଁ ତୁମ୍ଭର ହୋଇଲି ଭକତ ।
ଦେଖି ଦୟାକଲେ ତୁମ୍ଭ ମାତା ମହାରାଣୀ
ବୋଇଲେ ପୁତ୍ରେ ଉପୁଜୁ ବଳବନ୍ତ ଜାଣି ।
ଏସନକ ଆଜ୍ଞା ଯହୁଁ ଦେଲେ ଦେବୀ କୁନ୍ତୀ
ସେହିମାସ ମଧ୍ୟେ ମୁହିଁ ହେଲି ଗର୍ଭବତୀ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣସି ଗୋ ମାଏ
କେମନ୍ତେ ଚହ୍ନିଲ ମୋତେ ବୋଲି ଧନଞ୍ଜୟେ
ପଣ୍ଡାଏ ବୋଇଲେ ଦେବ ଚଣ୍ଡାଳଙ୍କୁ ମାରି
ମୋତେ ଏ ରାଜ୍ୟରେ ଥାପି କଲେ ଅଧିକାରୀ
ବାହାରହୋଇ ରାଜ୍ୟରୁ ଗଲେ ଯେତେବେଳେ
ବାମଦେବ ପ୍ରୋହିତଙ୍କୁ କହିଲେ ସେକାଳେ,
ବୋଇଲେ ହେ ବସ୍ତ୍ରୁବର ନ ପାରିଲୁ ଚହ୍ନି
ପାଣ୍ଡବେ ଥିଲେ ତୋ ପୁରେ ଗୁପ୍ତରୂପ ଘେନି
ଚଣ୍ଡାଳବଳଙ୍କୁ ସେହି ସଂଗ୍ରାମେ ମାରିଲେ
ପଣ୍ଡୁପୁତ୍ର ଥାମ ଏହି ବୋଲି ସେ କହିଲେ ।

ପ୍ରୋହିତ ବାକ୍ୟେ ତୁମ୍ଭଙ୍କୁ କହୁଛି ଖୋଜିଲି
ବିକାଶର ଗିରିବନ କାହିଁ ନ ପାଇଲି ।
ତୁମ୍ଭ ଦର୍ଶନ ପାଇଲି ମୁହିଁ ଏତେକାଳେ
ଜଗନ୍ନାଥଙ୍କ କୃପାରୁ ଦେଖିଲି ଯେ ଡୋଳେ ।
ସ୍ନାନ ଆହ୍ନିକ ସାରିଣ ବୀର ଧନଞ୍ଜୟେ
ପଣ୍ଡାଘରେ ମଣୋହିକ କରିଲେ ବିଜୟେ ।
ସର୍ବ ସଇନ ଭୁଞ୍ଜିଲେ ଅତି ତୁଷ୍ଟ ମନେ
ପଣ୍ଡାଙ୍କ ଘରେ ତୃପତ ହୋଇଲେ ଅର୍ଜୁନେ ।
ଆଚମନ ସାରି ଆସି ତାମ୍ବୁଳ ଭୁଞ୍ଜନ୍ତି
ପଣ୍ଡାଙ୍କ ପୁତ୍ରଙ୍କୁ ଦେଖି ସାନନ୍ଦ ହୁଅନ୍ତି ।
ପୁତ୍ର କୋଳେ ଦେଲେ ବସ୍ତ୍ରୁ ଦାସର ଯୁବକ
ତୁମ୍ଭ ମାତାଯୋଗେ ମୁହିଁ ହେଲି ପୁତ୍ରବନ୍ତ ।
ବସ୍ତ୍ର ଅଳଙ୍କାର ତାକୁ ଦେଲେ ହରଷ ହରି
ପଣ୍ଡାଙ୍କୁ ବୋଇଲେ ଯାଅ ହସ୍ତିନା ନଗରୀ ।
ନିମନ୍ତ୍ରଣ ଯୋଗାଡ଼ିକୁ ଘେନ ବସ୍ତ୍ରୁ କର
ଶିବପୁର ନଗ୍ର ତେଜ ହୋଇଲେ ବାହାର ।
ସେଠାବରୁ ଫାଲଗୁନ ଥାଟକୁ ଚଳାଇ
ଏକଚକ୍ରା ନଗ୍ରେ ପରବେଶ ହେଲେ ଯାଇ ।
ବୀରତୂରି ବଜଘୋଷ ମର୍ଦ୍ଦଳ ଦାଉଣ୍ଡି
ବଜାଇ ଯାଆନ୍ତି ରଥେ ଅଷ୍ଟରନ୍ଧ୍ରେ ମଣ୍ଡି ।
ବଜାସୁର ପରବତେ ବଜେ ଧନଞ୍ଜୟେ
ଘୋର ବାଦ୍ୟ ଶବ୍ଦେ ଗିରି କମ୍ପମାନ ହୁଏ ।
ଏହା ଶୁଣି ଧାଇଁଗଲେ ସଭିରେ ମୁନେହିଁ
ବେଦଶ୍ରବଣ ପଣ୍ଡାଙ୍କ ଆଗେ ଯାଇ କହି ।
ସ୍ୱାମି କେବଣ ଦେଶରୁ ପ୍ରବେଶିଲା ଥାଟ
ଅପୂର୍ବ ଅଚହ୍ନା ଦେବ ପଶେ ପରରାଷ୍ଟ୍ର ।
ଶୁଣି କୋପ ହେଲା ବେଦଶ୍ରବଣ ପଣ୍ଡା
ଆସ୍ଥାନୁ ଉଠିଲା ବେଗେ ହସ୍ତେ ଘେନ ଖଣ୍ଡା ।
ସାଜ ଆହେ ଦ୍ୱିଜବର ମୋର ସୈନ୍ୟ ଥାଟ
ପରଦେଶୀ ଯୋଦ୍ଧାଙ୍କର ଶିର ବେଗେ କାଟ ।
ରାଜା ଆଜ୍ଞାରେ ଧାଇଁଲେ ବୀରେ ଗଳଗାଜ
ପଖାଉଜ ସଙ୍ଗେ ଢୋଲ ବୀରତୂରୀ ବାଜ ।
ହସ୍ତୀ ଏକ ଚଢ଼ି ବେଦଶ୍ରବଣ ପଣ୍ଡାଏ
ଦୁର୍ଭାରବଳ ଘେନଣ କରିଲା ବିଜୟେ ।
ବେନିଲକ୍ଷ ଘାଟଛଣ ଆଲମ୍ବ ଉଦଣ୍ଡ
ଡାକୁଛନ୍ତି ସମର ଯେ ମୋହଇ ବ୍ରହ୍ମାଣ୍ଡ

ଗଜ ଅଶ୍ୱ ପଦାତି ସେ ଛନ୍ତି ଅକଳନା
କହୁଛି ତଣ୍ଡ ଘେନଣ ସେ ବେଦଶର୍ମଣା ।
ଅର୍ଜୁନ ସେନାଙ୍କ ପାଶେ ହେଲେ ଯାଇ ଭେଟ
ବିହରନ୍ତି ଦ୍ୱିଜମାନେ ସେ ମହାବଳିଷ୍ଠ ।
ଶ୍ରୀବତ୍ସ ଅଙ୍କିତ ବିଶେ ସର୍ବ ଥାଟଯାକେ
ବ୍ରହ୍ମାଣ୍ଡ କମ୍ପୁଅଛି ମାର ଶବ୍ଦ ଡାକେ ।
ବସ୍ତ୍ର ପ୍ରତିଜ୍ଞା କରନ୍ତି କହିଛ କେ ପାର
ରଣେ ବିପ୍ରବଳ ଲୁଟିବେ କ ସ୍ୱର୍ଗପୁରୀ ।
ଚେଲ ଚନ୍ଦ୍ର କୁନ୍ତ ଖଡ଼୍‌ଗ ମୁଦ୍‌ଗର ଯାଠି
ବିନ୍ଧିଲେକ ବିପ୍ରମାନେ ଏକମୁଖେ ଉଠି ।
ବାଣ ପୂରାଇ ଉଠିଲେ ଏକମୁଖ କରି
ବିନ୍ଧିଲେ ନାରାଚମାନ ଅତି କୋପକରି ।
ଅରଜୁନ ସମ୍ଭାଳିଲେ ନିଜ ସଇନଙ୍କି
କଦାଚିତେ କୋପ ତୁମ୍ଭେ ନ କର ତର୍କିକ ।
ନ ଜାଣି କୋପ କରନ୍ତି ବ୍ରାହ୍ମଣେ ଯଦ୍ୟପି
ଏ ରାଜ୍ୟରେ ବ୍ରାହ୍ମଣଙ୍କୁ ଅଛୁ ଆମ୍ଭେ ସ୍ଥାପି ।
ମାତଳି ସାରଥିକ ଯେ ବୋଇଲେକ ପାର୍ଥ
ସେ ଭଦ୍ର ରାଜା ପ୍ରମ୍ଭୁକୁ ବାହା ମୋର ରଥ ।
ନ ଜାଣି ନ ଶୁଣି ସେହୁ ଥାଟ ଚଳାଇଲେ
ଅଜ୍ଞାନେ ସେ ପରଥାଟ ବୋଲିଣ ଅଇଲେ ।
ସମାଧାନ ହୋଇବ ସେ ବାରତା ପାଇଲେ
ଏ ପାଇଁ ତୁମ୍ଭେ ଯାତନା ନ କର ଯେ ତଳେ
ଅରଜୁନ ଆଜ୍ଞାରେ ଯେ ମାତଳି ସାରଥି
ପବନୁ ବେଗରେ ଅଶ୍ୱ ଚଳାଇ ସେ ଧାନ୍ତି ।
ସେହିକ୍ଷଣି ଅଶ୍ୱମାନ ଦଉଡ଼ିଲେ ବେଗେ
ପ୍ରବେଶ ହୋଇଲେ ଯାଇ ବେଦଶର୍ମା ଆଗେ
ଦେଖିକରି ବିପ୍ରରାଜା କରେ ଧନୁ ଧରି
ଅର୍ଜୁନକୁ ବିନ୍ଧିଲେକ ଶର ଯୋଡ଼ା ଘୋର ।
ପାର୍ଥ ଶରୀରେ ଭେଦିବ କାହିଁ ଯେହୁ ଶର
ବୋଇଲେ ଅର୍ଜୁନ ରହ ରହ ଦ୍ୱିଜବର ।
ପୁନଶ୍ଚ ବୋଇଲେ ତୁମ୍ଭେ ଭିକ୍ଷାମାଗୀ ଦ୍ୱିଜ
କେଉଁ ପ୍ରକାରେ ପାଇଲ ତୁମ୍ଭେ ଏହି ରାଜ୍ୟ ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ଧନୁର୍ଦ୍ଧାରି
ତୁମ୍ଭେ ଯା ପୁଚ୍ଛିଲ ଶୁଣ ଆଦିଅନ୍ତ କରି ।
ବଜ୍ରକବଚ ବୋଲିଣ ଥିଲା ଯେ ରାଜାଏ
ସ୍ଥିରପୃଷ୍ଠ ଏକଟିଅ ଉତ୍ପତ୍ତି ତା ହୋଏ ।

ବକ ହିଡ଼ମ୍ବକ ଆଉ କିର୍ମୀର ଜଟାସୁର
କିର୍ମୀର ଯେ ଜ୍ୟେଷ୍ଠପୁତ୍ର ନର୍ମ ଅଧୀଶ୍ୱର ।
ଜଟାସୁର ବୋଲି ଜଣେ ତାହାର କନିଷ୍ଠ
ତାହାର ଯେ ନିଜରାଜ୍ୟ ମଧୁବନ ଶ୍ରେଷ୍ଠ ।
ହିଡ଼ମ୍ବକ ବୋଲିଣ ଯେ ତାହାର ସାନୁଜ
ହିଡ଼ମ୍ବକ ବନେ ସେହି କରେ ନିଜ ରାଜ୍ୟ ।
ତାହାର ସଙ୍ଗତେ ଥାଏ ଭଗ୍ନୀ ହିଡ଼ମ୍ବିକା
କ୍ଷଣେ କୋପକଲେ ସେହି ପୃଥ୍ୱୀ ପାରେ ଭକ୍ଷ
ହିଡ଼ମ୍ବ ଅନୁଜ ଅଟେ ବକ ଯେ ରାକ୍ଷସ
ଯମଦଣ୍ଡ ଅବଧ୍ୟ ସେ କାରେ ନାହିଁ ତ୍ରାସ ।
ଏକଚକ୍ରା ନଗ୍ରେ ସେହି ଅଟଇ ଠାକୁର
ମହାପ୍ରତାପୀ ଅଟଇ ଜାଣ ସେ ଅସୁର ।
ସେ ରାକ୍ଷସ ଦର୍ପ ମୂର୍ତ୍ତି କପଟେ ନିବାର
ତେଣୁ ଭୁଜଦଣ୍ଡେ ଏହି ରାଜ୍ୟ ଅଧିକାର ।
ଅର୍ଜୁନ ପୁଚ୍ଛିଲେ ତୁମ୍ଭ ମାଇଲୁ କି ବକ
କିବା ଅନ୍ୟ କେ ବଧିଲା କହ କରି ଠିକ ।
ବେଦଶ୍ରବଣ କହଇ ଶୁଣ କ୍ଷତ୍ରୀ ତଥ୍ୟ
ତୁ ଯେବେ ପୁଚ୍ଛିଲୁ ତାହା କହିବା ଯଥାର୍ଥ ।
ବକ ବଳିଭ ବୋଲିଣ ଯେବଣ ରାକ୍ଷସ
ଯମକୁ ନ ଡରେ ସେହି ଆଉ କାକୁ ତ୍ରାସ ।
ଏକଚକ୍ରାନଗରେ ସେ ଅଟେ ଅଧିପତି
ତା ଭୟେ ଯମ ଏ ରାଜ୍ୟ ନ କରେ ଅମାତ
ଜଳବୃଷ୍ଟି ହେବାକୁ ସେ ଯେବେ କରେ ଇଚ୍ଛା
ଇନ୍ଦ୍ର ବୃଷ୍ଟିକଲେ ନଗ୍ରେ ପୂରେ ତାର ବାଞ୍ଛା ।
ନାନା ରୋଗ ଜରାବସ୍ଥା ତାର ଭୟ ନାହିଁ
ପରରାଷ୍ଟ୍ର ଆଇଲେ ସେ ଦୂରରୁ ସାଧଇ ।
ଅସଂଖ୍ୟ ଫଳ ଫଳଇ ବସୁନ୍ଧରା ଏଥି
ଏପରି ସୁବିଧା ଏହି ଏକଚକ୍ରା ପୃଥ୍ୱୀ ।
ଯେ ଯେତେ ଅରଜେ ଭୋଗ କରେ ଦୁଇରାଶି
ଅତନ୍ତେ ପ୍ରଜାଏ ବହୁ ଉତ୍ପୁଜାନ୍ତି କୃଷି ।
ଏଗାରସହସ୍ର ନଅଶ ଷାଠିଏ ଯେ ଘର
ଏହି ଚନ୍ଦ ନଗ୍ରେ ଅଛି ଜାଣ ଆହେ ବୀର ।
ତେହିଶ ବରଷ ଦୁଇମାସ ବଂଶଦିନେ
ପାଳି ପଡ଼ଇ ରାଜାର ଗୋଟିକ ସଦନେ ।
ଭାତ ପିଠା ଦ୍ୱିଶଗଡ଼ ପଣ୍ଡା ହଳବେନ
ନରବଳି ସଙ୍ଗ ଦ୍ରବ୍ୟ ବନେ ଯିବ ନେନ ।

ଏହି ନଗ୍ରେ ମୋର ବାସ ଶୁଣ ମହାରଥୀ
ଏଡ଼େ ବଡ଼ ରାଜ୍ୟ ମୁହିଁ କରେ ଭିକ୍ଷାବୃତ୍ତି ।
ଏମନ୍ତେ ଭିକ୍ଷା କରି ମୁଁ କାଟଇ ସମୟ
ଦିନେ ଏକମାତା ତାର ପାଞ୍ଚଟି ତନୟ ।
ଆସି ଭିକ୍ଷା କରୁଥିଲେ ଏହି ରାଜ୍ୟ ପଶି
ବେଳଶେଷେ ମୋର ଦ୍ୱାରେ ମାଗିଲେକ ଆସି
ମୋ ଘରେ ରହିଲେ ସେହି ପାଞ୍ଚପୁତ୍ର ଘେନି
ଏମନ୍ତ କଟିଲେ ସାତ ଦିବସ ରଜନୀ ।
ଯେଉଁଦିନ ମୋର ଘରେ ପଡ଼ିଲାକ ପାଳି
ପୁତ୍ର କନ୍ୟା ସହ ପତି ପତ୍ନୀ ଆମ୍ଭେ ଝୁରି ।
ଭାତ ପିଠା ଆଦି ଦୁଇଗାଡ଼ି ଭରାଇଲୁ
ନରବଳି କେହୁ ହେବ ବିକଳେ ଭାଳିଲୁ ।
ମହାପ୍ରାଣୀ ଦୟାକଲେ ଆମ୍ଭ କଷ୍ଟ ଦେଖି
ବୋଇଲେ ମୋ ପୁତ୍ରଦେବ ନୁହଁ ତୁମ୍ଭେ ଦୁଃଖୀ
ଅଜୟ ବୋଲିଣ ତାର ଏକ ପୁତ୍ର ଥିଲା
ତାକୁ ପେଷନ୍ତେ ଶକଟ ସେହି ନେଇଗଲା ।
ପ୍ରବେଶିଲା ଆସି ସେହି ଏହି ପରବତେ
ବକ ଦୈତ୍ୟକୁ ମାଇଲା ସେହି କେଉଁମତେ ।
ମାରି ତାହାକୁ ପୁଣ ସେ ଧାଉଣୋରୁ ତୋଳି
ଭେରି ଠିଆ କରିଗଲା ସେହି ମହାବଳୀ ।
ରଜନୀ ଶେଷେ ଉଠିଲେ ଦେଖି ସର୍ବଜନ
ଭୟେ ପଳାଇଲେ ଦେଖି ବିକଟ ନୟନ ।
ସର୍ବେ ବିଚାରିଲେ ଥିଲା କାଲି କାହା ପାଳି
ଠାକୁରଙ୍କର ନୋହିଲା ଅବା ନରବଳି ।
ଆସିକରି ବେଢ଼ିଲେ ଯେ ମୋତେ ସର୍ବଜନେ
ନର ନାଶଗଲା ଏବେ ତୋ ଘର ଲୋକଜନେ ।
ଅପଖ୍ୟାତି ଦେଇକରି ସମସ୍ତେ ଆମ୍ଭଙ୍କୁ
ବୋଇଲେ ଯାଅ ତୁ ଏବେ ଠାକୁର ଲକ୍ଷକୁ
ମୁହିଁ ଯାଇକରି ହେଲି ଦୈତ୍ୟ ସନ୍ନିଧାନେ
ଉପରେ କର ଧରନ୍ତେ ପଡ଼ିଲା ତକ୍ଷଣେ ।
ନଗ୍ରଲୋକ ଦେଖିକରି ପରମ ସାନନ୍ଦେ
ସାଧୁ ସାଧୁ ଧ୍ୱନି ଏକ ଦେଲେକ ଆନନ୍ଦେ ।
ସେ ମହାତ୍ମାକୁ ବସାରେ ଆସିଣ ଲୋଡ଼ିଲୁ
କେଉଁ ଆଡ଼େ ଗଲେ ତାଙ୍କୁ ଆଉ ନ ପାଇଲୁ ।
ମୋତେ ସେ ସମସ୍ତେ କଲେ ରାଜ୍ୟ ଅଧିକାରୀ
ମହତେ ଭେଟିଲୁ ସାଧୁ ଜୀବନ ତୋହର ।

ସେ ଯେବେ ଥାଆନ୍ତେ ତାଙ୍କୁ କରିଥାନ୍ତୁ ରାଜା
ଏବେ ତୋ ଚରଣେ ସର୍ବେ କରିବାକ ପୂଜା
ଶୁଣିଲୁ କହୋ ମହାତ୍ମା ମୋହର ଚରିତ
ଏହୁପର ରାଜ୍ୟ ମୋତେ ହେଲା ପରାପତ ।
ଅର୍ଜୁନ ହସିଲେ ବିପ୍ର ବାକ୍ୟ ଶୁଣି ଜର
ଯେ ଦୈତ୍ୟଙ୍କୁ ମାଇଲେ ସେ ଭାଇଟି ଆମ୍ଭର
ଆମ୍ଭେ ଚାରିଭାଇ ଯେବେ ଭିକ୍ଷା କରିଯାଉଁ
ସେହୁ ଭାଇ ଦୁଷ୍ଟ ବୋଲି ସଙ୍ଗରେ ନ ନେଉ
ଭୁଜ କୃଷ୍ଣ ଅମାବାସ୍ୟା ଦିନ ଚନ୍ଦ୍ରବାର
ସ୍ୱାତୀ ନକ୍ଷତ୍ରକୁ ଭୋଗ ଅଟେ ସେ ଦିନର ।
ସେଦିନ ହେ ବିପ୍ର ତୁମ୍ଭେ ଭିକ୍ଷାକୁ ନ ଗଲ
ପାଦବ୍ୟଥା ହୋଇବାରୁ ଗୃହରେ ରହିଲ ।
ସେ ଦିନ ରାତି ପାହାନ୍ତେ ତୁମ୍ଭ ଘରେ ପାଳି
ନରବଳି ନ ପାଇଲ ବୋଲି ମନେ ଜାଳି ।
ତୁମ୍ଭେ ଯେ ବୋଇଲ ମୁହିଁ ଯିବି ଗୋ ବ୍ରାହ୍ମଣୀ
ପିଲାଙ୍କୁ ସମ୍ଭାଳି କହି କଲ ଶୋକବାଣୀ ।
ବଚନ ଦେଖି ବୋଇଲା ତୁମ୍ଭ ଘରିଯାଏ
ଏ ପାନ୍ତ ଯିବ ମୁଁ ତୁମ୍ଭେ ଥାଅ ଗୋ ପଣ୍ଡାଏ
ତୁମ୍ଭ ପୁତ୍ର ତୁମ୍ଭ କଷ୍ଟ ଦେଖିଣ ବୋଇଲା
ଏ ପାନ୍ତିକ ପାଳି ତାତ ମୋହର ହୋଇଲା ।
ଦୁହିତା ବୋଇଲା ତୁମ୍ଭେ ନ ହୁଅ ବିମନ
ମୋତେ ତ ପରକୁ କଷ୍ଟେ କରିବ ପ୍ରଦାନ ।
ଏ ପାନ୍ତିକ ପାଳି ତାତ ମୋତେ ଦେଇ ଶୁଝ
ଏହା ହେଲେ ଭଲ ହେବ ତୁମ୍ଭେ ମନେ ବୁଝ ।
ତୁମ୍ଭର ବଚନ ଶୁଣୁଥିଲେ ଆମ୍ଭ ମାଏ
ତୁମ୍ଭପାଇଁ ଦେବ ମୋର ଏକଗୋଟି ପୋଏ ।
ରାତ୍ର ପାହିଲେ କାର୍ତ୍ତିକ ଶୁକ୍ଳ ଭୃଗୁବାର
ବିଶାଖା ନକ୍ଷତ୍ର ଜାଣ ଭୋଗ ସେ ଦିନର ।
ଭୀମସେନ ଅଇଲେ ଯେ ଏହି ପରବତେ
ଦୈତ୍ୟକୁ ମାଇଲେ ମାଲ୍ଲଯୁଦ୍ଧ ମୁଥାଘାତେ ।
ମାତା ଯେ ଆମ୍ଭର କୋନ୍ତିଭୋଜର ଦୁଲଣୀ
ଜୟନ୍ତ ନାମ ବହିଲେ ଧର୍ମ ଦଣ୍ଡଧାରୀ ।
ଅଜୟନ୍ତ ବୋଲି ନାମ ସେ ଭୀମଠାକୁର
ହିଡ଼ିମ୍ବ କହିଲି ଆଦି ଦୈତ୍ୟ କଲେ ଚୂର ।
ହିଡ଼ିମ୍ବିକା ବିଭା ହେଲେ ହିଡ଼ିମ୍ବକ ବନେ
ଘଟୋତ୍କଚ ଉପୁଜିଲା ହେଲା ସେ ଉଦ୍ୟାନେ ।

ଅଜେୟ ବୋଲିକରିଣ ଯେଉଁ ପୂର୍ବଗୋଷ୍ଟି
ମୁଁ ସେହି ଅର୍ଜୁନ ଗୁପ୍ତ ନାମ ଆମ୍ଭରଟି ।
ଜୟସେନ ଜୟବସ୍ତ୍ର ଏ ଆମ୍ଭ ସାନୁଜ
ନକୁଳ ସହଦେବ ଯେ ମାଦ୍ରୀଙ୍କ ଆତ୍ମଜ ।
ତୋହର ଘରୁ ବାହାର ହେଲୁ ଯେଉଁ ଦିନେ
ଅଙ୍ଗାରପର୍ଣ୍ଣ ଜିଣିଲୁ ସୁରଭି ବନେ ।
ଦ୍ରୁପଦର ରାଜ୍ୟେ ଯାଇ ରହିଲୁ ଗୁପତେ
ରାଧାଚକ୍ର ବିନ୍ଧିଲୁ ଯେ ରାଜାଙ୍କ ଦେଖନ୍ତେ ।
ଶୁଣିଣ ବେଦଶ୍ରବଣ ତେଜ ମତ୍ତହସ୍ତୀ
ଅର୍ଜୁନଙ୍କ ପାଦତଳେ ହୋଇଲା ଭକତ ।
ଅଜାଣାରେ ପଶିଲ ମୋ ରାଜ୍ୟେ କି ନିମନ୍ତେ
ଭଲ ହେ ଇଚ୍ଛୁ ଭର୍ତ୍ସନା ନ କରିଛୁ ତୋତେ
ବହୁଉତ୍ସବ କରାଇ ସେ ବେଦଶ୍ରବଣ
ପାର୍ଥ ଚରଣେ ଭକତ କଲା ଅନୁକ୍ଷଣ ।
ପ୍ରବେଶ ହୋଇଲେ ଯାଇ ଏକଚକ୍ର ଦେଶେ
ଆପଣା ଗୃହେ ବ୍ରାହ୍ମଣ ପ୍ରବେଶ ହରଷେ ।
ତାର ଘରିଯାର ନାମ ଅଟଇ ମାଳତୀ
ଊଷା ସମାନରେ ତାର ଦିଶେ ଜ୍ୟୋତ କାନ୍ତି
ତାହାର ନବର ଦିଶେ ସୁରପୁର ପ୍ରାୟେ
ଦେଖିଣ ସାନନ୍ଦ ହେଲେ ବୀର ଧନଞ୍ଜୟେ ।
ବେଦଶ୍ରବଣ କହଇ ଘରିଯା ଆଗରେ
ଏ ସମ୍ପଦ ପ୍ରାପ୍ତ ମୋତେ ଏହାଙ୍କ କୃପାରେ ।
ଭିକ୍ଷାଶୀ ରୂପେ ରହିଣ ଥିଲେ ଆମ୍ଭ ଗୃହେ
ବକ ରାକ୍ଷସ ବଧିଲେ ଆମ୍ଭର ସେନେହେ ।
ବେଦଶ୍ରବଣ ମୁଖରୁ ତତ୍ତ୍ୱକଥା ଶୁଣି
ପୁତ୍ରକୁ ଘେନ ପ୍ରଣାମ କଲାକ ବ୍ରାହ୍ମଣୀ ।
ମଣୋହି ଯୋଗାଡ଼ମାନ କଲା ଦ୍ୱିଜବର
ମଣୋହି କଟଲିକ ପାର୍ଥ ବେଦଶର୍ମା ବର ।
ଅନେକ ଯୋଗାଡ଼ ଦେଲା ପାର୍ଥ ସଇନଙ୍କ
ବହୁ ସମାଦର କଲା ଯୋଦ୍ଧାଙ୍କୁ ସେ ଦେଖି ।
ଆଚମନ ସାରିଣ ସେ ପାଣ୍ଡବ ସୁନ୍ଦର
ନିମନ୍ତ୍ରଣ ବିଧି ଦେଲେ ବେଦଶର୍ମା କର ।
ବୋଇଲେ ତୁହି ଯେ ଅଟୁ ଆମ୍ଭ ଉପକାରୀ
ଆପଣା ଘରରୁ ଅର୍ଦ୍ଧେ ଦେଲୁ ଖାଲିକରି ।
ପ୍ରାଣୀକି ଧର୍ମ ପ୍ରାପତ ହୋଏ ଯେତେବେଳେ
ସୁବୁଦ୍ଧି ଉଦେ ହୁଅଇ ତାର ତେତେବେଳେ ।

ସବୁବେଳେ ପ୍ରାଣୀମାନେ ନ ହୁଅନ୍ତି ଦୁଃଖୀ
କଦା ପ୍ରାଣୀଏ ସର୍ବଦା ନୁହନ୍ତି ଯେ ସୁଖୀ ।
ଏହିପୁରେ ପଡ଼ିଥିଲା ଦୁଃଖ ଯେ ସମସ୍ତେ
କର୍ମାଦର ଭଞ୍ଜିଥିଲୁ ତୋହର ଆଳସ୍ୟେ ।
ତୁ ପୁଣି ଭିକ୍ଷାର୍ଥୀ ଥିଲୁ ଆହେ ଦ୍ୱିଜବର
କର୍ମ ଫିଟନ୍ତେ ଏ ରାଜ୍ୟ ହେଲୁ ନରବର ।
ବେଦଶର୍ମା ପ୍ରଣିପାତ ପାର୍ଥଙ୍କର ପାଦେ
ଏ ସମ୍ପଦ ପାଇଲି ମୁଁ ତୁମ୍ଭର ପ୍ରସାଦେ ।
ରାଜସୂୟ ଯଜ୍ଞକୁ ପଣ୍ଡା ଚଳ ଏହିକ୍ଷଣ
ପାସୋରି ନ ପାରୁ ତୁମ୍ଭ ଅମାୟିକ ଗୁଣ ।
ଆଜ୍ଞା ପ୍ରମାଣରେ ବେଦଶର୍ମା ସୈନ୍ୟ ଘେନ
ବାରୁଣୀ ଚଳିଲା ଶୁଭ ଅନୁକୂଳେ ପୁଣି ।
ସେଠାରୁ ବିଜୟ କଲେ ପାର୍ଥ ମହାମତି
ଅନ୍ୟ ଦେଶରେ ପ୍ରବେଶ ହୋଇଲେ ସେଧାତି
ନନ୍ଦାବର୍ତ୍ତୀ ବୋଲିକରି ଅଛି ନଦୀ ଗୋଟି
ପୁଷ୍କର ତଟେ ସେହିଣ ତୀର୍ଥ ନବକୋଟି ।
ନନ୍ଦାବର୍ତ୍ତିକ ପର୍ବତୁ ବହେ ଧବଳାଙ୍ଗୀ
କୃଷ୍ଣ ଶୁକ୍ଳ ଅଙ୍ଗ ଯେ ବହଇ ବଳାଙ୍ଗୀ ।
କୃଷ୍ଣ ଶୁକ୍ଳାମ୍ବରୀ ନଦୀ ବହେ ଦୁଇ ଭିନ୍ନ
ସେ ନଦୀର ସନ୍ନିଧାନେ ପାର୍ଥ ଯାଇ ମିଳି ।
ସେହି ନଦୀରେ ସ୍ନାହାନ କଲେ ଧନଞ୍ଜୟେ
ଆଦିତ୍ୟ ଅସ୍ତ ପର୍ଯ୍ୟନ୍ତ ରହିଲେ ସେଠାଏ ।
ଧୌମ୍ୟଙ୍କର ସୁତେ ସୁରେଶ୍ୱର ପୁରୋହିତ
ବିଷ୍ଣୁପୁରାଣ ଶୁଣାନ୍ତି ସେହି ଅନୁବ୍ରତ ।
ସେ ନନ୍ଦାବର୍ତ୍ତୀ ମହାତ୍ମ୍ୟ ଅନେକ ଶୁଣାନ୍ତି
ଧର୍ମ ପୁରାଣ କହନ୍ତେ ପ୍ରବେଶିଲା ରାତି ।
ସହସ୍ର କନ୍ୟାକୁ ଘେନି ଗନ୍ଧର୍ବ ଆକାଶୁ
ଦୁହି ଡାକିଲେ ପାର୍ଥଙ୍କୁ ପଥେ ଆସୁ ଆସୁ ।
ପାର୍ଥ ଚକ୍ରୀ ପାଦ୍ୟଅର୍ଘ୍ୟେ ତାଙ୍କୁ ପୂଜାକଲେ
ବିଶ୍ୱସ୍ତ ଇନ୍ଦ୍ର ବୋଲିଣ ପ୍ରଣାମ କରିଲେ ।
ରତ୍ନ ପୁଷ୍ପରେ ଅଙ୍ଗାରପର୍ଣ୍ଣ ବିଶେଷେ
ପାର୍ଥଙ୍କୁ ପୂଜା କରିଲେ ଅତ୍ୟନ୍ତ ହରଷେ ।
ପୂଜାଯତ ହସ୍ତେ ଧରି ସାର ଅରଜୁନ
ଅଙ୍ଗାରପର୍ଣ୍ଣ ହସ୍ତେ କରିଲେ ଅର୍ପଣ ।
ରାଜସୂୟଯାଗ ବାରତା କହିଲେ ଫାଲ୍‌ଗୁନ
କଷ୍ଟ ସମ୍ଭାରେ ଚଳିବ ଦେବଗଣ ଘେନ ।

ଏସନକ କଥା ଶୁଣି ବୋଇଲେ ଗନ୍ଧର୍ବ
ବାବୁ ରେ ସର୍ବ ସହିତେ ଗଲେଣି ବାସବ ।
ବହୁ ଅଳଙ୍କାର ନେଇ ଅଛନ୍ତି ସଙ୍ଗତେ
ମୁହିଁ ଅଇଲି ରେ ତୋତେ ଦେଖିବା ନିମନ୍ତେ
ଅଙ୍ଗାରପର୍ଣ୍ଣ ବହୁ ସମାଦର କଲେ
ପାର୍ଥଙ୍କୁ ଚଳାଇ ଜଳକ୍ରୀଡ଼ାରେ ପଶିଲେ ।
ବନ ଭୁଙ୍ଗର କଣ୍ଟଣ ଚଳିଲେ ହରଷେ
ବିଜୟ କରିଲେ ପାର୍ଥ ପଞ୍ଚାଳର ଦେଶେ ।
ସେ ରାଜ୍ୟର ରାଜା ନାମ ଦ୍ରୁପଦ ନୃପତି
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ତା ବେନି ସନ୍ତତି ।
ଦ୍ରୌପଦୀର ପଥର ସେ ବିପ୍ରକୁଳେ ଜାତ
ଅପମାନ ନ ସହଇ ଅଟେ ସତ୍ୟବ୍ରତ ।
ଧାର୍ମିକ ବିବେକ ପୁଣି ଅଟେ ମହାବିଜ୍ଞ
ବେଦଶାସ୍ତ୍ର ପୁରାଣରେ ଅଟଇ ଅଭିଜ୍ଞ ।
ରଥବୃନ୍ଦ ରଥ ତାର ବଂଶବୃନ୍ଦ ହସ୍ତୀ
ନଉବୃନ୍ଦ ବାଜି ଦଶଷଉଣୀ ପଦାତି ।
ପଞ୍ଚାଶ ରାଜା ଖଟନ୍ତି ତାଙ୍କ ପାରିବନ୍ତି
ଛଅଶ ଯୋଜନ ମାଡ଼ିଅଛି ରାଜ୍ୟଖଣ୍ଡ ।
ପୁତ୍ରସମ ପ୍ରଜାପାଳେ ପୀଡ଼ା ନ ଦିଅଇ
ମାଡ଼କରି ଚଳାଏ ଯେ ଭଲ ସେ ଘେନଇ ।
ବେଦ ବ୍ରାହ୍ମଣ ଭକତି ପୂଜେ ନିରନ୍ତର
ପ୍ରତ୍ୟହ ଶାସ୍ତ୍ର ଶ୍ରବଣ କରେ ଦ୍ୱିଜବର ।
ରାଜୁତି ଗିରିରେ ଯାଇ ରହିଲେ ଫାଲ୍‌ଗୁନ
ସଇନ୍ୟ ରହିଲେ ରୁଦ୍ରବେଣୀ କୂଳ ଘେନ ।
ଆସ୍ଥାନେ ବଟେ କରଣ ଅଛଇ ଶିଖଣ୍ଡୀ
ଅର୍ଜୁନ ବାରତା ପାଇ ନିଜ ରାଜ୍ୟ ମଣ୍ଡି ।
ସ୍ୱର୍ଣ୍ଣଘର ପରେ ଅଷ୍ଟରତ୍ନର କଳସ
ନେତ ପତାକା ଉଡ଼ାଇ ତାର ସ୍ୱରପାଶ ।
ସବୁ ଦ୍ୱାରେ ରମ୍ଭ ତରୁ କୁମ୍ଭ ଯୋଡ଼ା ଯୋଡ଼ା
ଦାଣ୍ଡରେ ଛେଚା ପଡ଼ିବ ପାଡ଼ନ୍ତି ପାଏଡ଼ା ।
ଏହିବେଳେ ଦେଶାନ୍ତରେ ଯାଇକରି ବେଗେ
ଜଣାଇଲେ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀର ଆଗେ ।
ସ୍ୱାମି ଗରୁଡ଼ ପର୍ବତେ ପାର୍ଥ ବିଜେ କଲେ
ଦ୍ରୁପଦର ପୁତ୍ରେ ଶୁଣି ଆନନ୍ଦିତ ହେଲେ ।
ବଜାଇ ସେ ଗାଉଡ଼ୁର ଟମକ ଢାଉନ୍ତି
ଅନେକ ସାନନ୍ଦେ ଯାଇ ସର୍ବେ ରଥ ମଣ୍ଡି ।

 

ବେନିଲକ୍ଷ ପାଟଛତ୍ର ଆଲମ୍ବ ଉଦଣ୍ଡ
ସଜାଡ଼ିଲାଗି ହୋଇଣ ଆସନ୍ତି ଯେ ଭାଣ୍ଡ ।
ବାଜେ ତହିଁ ବଜଘୋଷ ମର୍ଦ୍ଦଳ କାହାଳୀ
ଆନନ୍ଦରେ ବଜାନ୍ତି ସେ କରି ନାଟକେଳି ।
ଭାର୍ଯ୍ୟା ପୁତ୍ର କନ୍ୟାଆଦି କୁଟୁମ୍ବ ସଙ୍ଗତେ
ଉଭା ହୋଇଲେ ସମସ୍ତେ ଅର୍ଘ୍ୟ ଘେନି ହସ୍ତେ
ବସନ୍ତ ଉତ୍ସବେ ଯେସନ୍ତେ ଭଜେ ବାସୁଦେବ
ତେସନ୍ତେ ଆନନ୍ଦିତ ହୋଇ କଲେ ଜୟରବ ।
ହସ୍ତେ ଆଲଟ ଚାମର ଯୋଦ୍ଧାମାନେ ଘେନି
ଖେଦାଇ ଅଶ୍ୱମାନଙ୍କୁ ବୁଲନ୍ତି ସଇନି ।
ଏମନ୍ତବେଳେ ଦ୍ରୁପଦ ରାଜା ବେନିପୁତ୍ରେ
ପାଛୋଟି ଚଳନ୍ତି ସର୍ବେ ସୈନ୍ୟଙ୍କ ସଙ୍ଗତେ ।
ଅର୍ଜ୍ଜୁନ ଭଜେ ଗରୁଡ଼ ନାମେ ଯେଉଁ ଗିରି
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ତହିଁ ଭଜେ କରି ।
ପର୍ବତ ପରେ ଉଠିଲେ ଯାଇ ବେନି ଭାଇ
ଅର୍ଜ୍ଜୁନର ପାଦେ ଦୁହେଁ ପ୍ରଣମିତ ହୋଇ ।
ଆସ୍ଥାନରେ ବସିଥିଲେ ବୀର ଧନଞ୍ଜୟେ
ଦୂରରେ ରହିଲେ ଧୃଷ୍ଟ ଦ୍ରୁପଦର ପୋଏ ।
ଆସ୍ଥାନର ତଳେ ଯାଇ କଲେ ନତସ୍ଥଳ
ଅନେକ ବିନୟ ଭାବେ ହୋଇ କୃତାଞ୍ଜଳି ।
ବୋଇଲେ ଆଜ ଉନତି ସୁଭାଗ୍ୟ କପାଳ
ବିଶ୍ୱକୃଷ୍ଣଙ୍କୁ ଦେଖିଲୁ ନୟନ ଯୁଗଳ ।
ଉତ୍ତର କୋଶଳେ ଛନ୍ତି ଯେତେକ ନୃପତି
ସବୁର ସାଧ କପାଳ ସାଧୁ ସେ ଶୀବତି ।
ଅନେକ କାର୍ପଣ୍ୟ ହୋଇ ଶିଖଣ୍ଡୀ ଦ୍ୟୁମ୍ନ
ସ୍ତୁତି କରଣ ଶୁଣିଲେ ପାର୍ଥଙ୍କ ଚରଣ ।
ବହୁ କାକୁସ୍ଥ ହୋଇଣ ଦ୍ରୁପଦ କୁମରେ
ପାର୍ଥେ ବିଜେ କରାଇଲେ ରାଜ୍ୟର ଭିତରେ ।
ହାଟବାଟ ବେଉଳ ଯେ ମଣ୍ଡପ ଜଗତି
ସବୁଠାରେ ଲୋକେ ରହି ପାର୍ଥଙ୍କୁ ଦେଖନ୍ତି ।
ଇନ୍ଦ୍ର ବିଜୟ କଲେକି ଆସି ମଧ୍ୟସ୍ୱର୍ଗେ
ଦେଖଣାହାରି ଦେଖିଲେ ତାଙ୍କୁ ସେହିଭାଗେ ।
ସମସ୍ତେ କରରେ ଅର୍ଘ୍ୟ ସ୍ଥାଳମାନ ଧରି
ସର୍ବ ଗଣିକା ମଙ୍ଗଳ ଧ୍ୱନିକୁ ଉଚ୍ଚାରି ।
ଖଟିଅଛନ୍ତି ତାହାଙ୍କୁ ଯେ ଅଷ୍ଟ ନାୟିକା
ସ୍ୱର୍ଗବିଳାସିନୀ ପରି ଦିଶନ୍ତି ସେ ଏକା ।

ବାଜଇ ପଖୋଜମାନ ଉବଧା ତାଳରେ
ଜଗଜ୍ଜନଙ୍କ ମାନସ ମୋହନ୍ତି ନୃତ୍ୟରେ ।
ପଞ୍ଚାଳ ଦାଣ୍ଡରେ ଚଳଯାନ୍ତି ସର୍ବକାଳୀ
ପାଟଡ଼ା ବସନମାନ ହୋଇଥାଏ ଧଳ ।
ପାଟହସ୍ତୀରେ ଚଢ଼ିଣ ଥିଲେ ଧନଞ୍ଜୟ
ଉତ୍ତର ଭବନେ ଯାଇ କରିଲେ ବିଜୟ ।
ସେବକଣି ଚାଖୁଡ଼ା ବହୁ ବୃଷ୍ଟି ହେଉଅଛି
କର୍ପୂର ଉରଜ ଧୂଳିର ପରାଏ ହୋଇଛି ।
ଅର୍ଜ୍ଜୁନଙ୍କୁ ଦେଖିକରି ପଞ୍ଚାଳର ରାଜା
ବେନି ଚରଣ ପଖାଳି କଲେ ପାଦପୂଜା ।
ବେନିଲକ୍ଷ ସୁବର୍ଣ୍ଣ ଯେ ପାଦତଳେ ଥୋଇ
ଶ୍ରୀମୁଖରେ ଉଣ୍ଡହେଲେ ନମ୍ରଭାବ ହୋଇ ।
ଦ୍ରୁପଦଙ୍କୁ ନମସ୍କାର କଲେ ଫାଲଗୁନ
ଜୟ ମଙ୍ଗଳ ଶବଦ ଶୁଭେ ଶଙ୍ଖଧ୍ୱନି ।
ପୁଣି ପାର୍ଥେ ନେଲେ ଚନ୍ଦ୍ରଶାଳାର ଭବନେ
ବସାଇଲେ ନେଇ ତାଙ୍କୁ ସ୍ୱର୍ଣ୍ଣ ସିଂହାସନେ ।
ଏମନ୍ତ ସମୟେ ଦ୍ରୁପଦର ପାଟରାଣୀ
ବ୍ରହ୍ମାବତୀ ନାମ ବ୍ରହ୍ମରାଜର ଦୁଲଣୀ ।
ଲକ୍ଷେକ ଯୁବତୀ ଧରି ଲକ୍ଷେ ଦୀପାବଳି
ଅର୍ଜ୍ଜୁନଙ୍କୁ ବନ୍ଦାଇଣ ଦେଲେ ଅର୍ଘ୍ୟ ତୋଳି ।
ଅର୍ଜ୍ଜୁନଙ୍କୁ ଭକ୍ତିଭାବେ ପୂଜନ୍ତେ ଦ୍ରୁପଦ
କୁଟୁମ୍ବଯାକ ତାହାର ହୋଇଲେ ସାନନ୍ଦ ।
ମନୋହର ଯୋଗାଡ଼ମାନ ହୋଇଲା ସମ୍ପୂର୍ଣ୍ଣ
ଆହ୍ନିକ ସାରି ବିଜୟ ବାସବ ନନ୍ଦନ ।
ସମ୍ଭବେ ସଇନଗଣ ଘେନି ବୀରପାର୍ଥ
କରନ୍ତି ମନୋହର ସେହି ନାନାଦି ପଦାର୍ଥ ।
ରାଜେଶ୍ୱର ମହାବୀର ଆବର ଜାମାତା
ଭୋଜନ ସାରି ହରଷ ହେଲେ ଅପ୍ରମିତା ।
ମନୋହର ସାରି ବିଜୟ କଲେ ଆଚମନେ
ବଟିକା ଚର୍ବଣ କଲେ ଯେ ବିଧି ବିଧାନେ ।
ଶଯ୍ୟାଭବନେ ବିଜୟ ବାସବ ନନ୍ଦନ
ପାଶରେ ଖଟି ଅଛନ୍ତି ବିଳାସିନୀ ଗଣ ।
ସେ ଦିନକ ରହାଇଲେ ତାହାଙ୍କୁ ଦ୍ରୁପଦ
ରାଜ୍ୟଯାକରେ ହୋଇଲା ଅଶେଷ ପ୍ରମୋଦ ।
ନିମନ୍ତ୍ରଣ ବିଧି ତାଙ୍କୁ ଦେଲେ ଫାଲଗୁନ
ରାଜସୂୟଯାଗକୁ ଚଳି ଆଟ ସୈନ୍ୟ ଘେନି ।

ଶୁଣିକରି ସାନନ୍ଦ ଯେ ପାଞ୍ଚାଳ ନୃପତି
ହରଷେ ବୋଇଲେ ବାପ୍ର ରେ ଯିବ ମୁଁ ଝଟତି
ଶୁଭ ଅନୁକୂଳେ ରାଜ୍ୟ ବାହାର ନୃବର
ସଙ୍ଗତରେ ନେଲା ତାର ଦୁଇଟି କୁମର ।
ସମଦଣ୍ଡ ସେନ ତହୁଁ ଚଳେ ବୀରପାର୍ଥ
ପାଞ୍ଚାଳ ଦେଶୁ ବାହାରି ଯାଇ କରୁ ପଥ ।
ବୋଇଲେ ଆହେ ଶିଖଣ୍ଡି ହେ ଧୃଷ୍ଟଦ୍ୟୁମ୍ନ
ଉତ୍ତର କୋଣକୁ ଯାଉଛନ୍ତି ରାଜାଗଣ ।
ସବୁ ମଣ୍ଡଳକୁ ମାଡ଼ିଯିବ ସେନା ଘେନି
ସାଧ୍ୟ ଅସାଧ୍ୟ ରାଜାଙ୍କୁ ଯିବ ସଙ୍ଗେ ନେଇ ।
ପୃଥି ଜିଣିଲେକ ଯାଇ ବାରୁଣାରେ ଥିବ
ମୋର ଯିବା ଯାଏ ରାଜାଗଣ ସମ୍ଭାଳିବ ।
ଅର୍ଜ୍ଜୁନଙ୍କ ଆଜ୍ଞାପାଇ କୁମାର ଶିଖଣ୍ଡୀ
ଯେ ଆଜ୍ଞା କହି ବଜାଇ ଟମକ ଦାଉଣ୍ଡି ।
ଦକ୍ଷିଣ ମୁଖ ହୋଇଣ କଲେକ ଗମନ
ତହୁଁ ପ୍ରସ୍ଥାନ କରିଲେ ବୀର ଅରଜୁନ ।
ଜୟ ଜଗନ୍ନାଥ ବାରିଧିକୂଳବାସୀ
ନୀଳଭୂଧରେ ବସିଛୁ ତୁମ୍ଭ ହୃଷୀକେଶୀ ।
ବାରିଧି ମନ୍ଥନେ ଦେବ ପାଇଲୁ ଚଞ୍ଚଳା
ପଡ଼ଦାନ୍ତୀ ହୋଇ ହେଲେ ତୋର ଗଳାମାଳା ।
ଯମେଶ୍ୱର ମହାଲିଙ୍ଗ ତୋର ପାଦ ପୂଜ
ବଟତଳେ ରହି ତୋତେ ଏକଲପ୍ୟେ ଭଜ ।
ଅତ୍ୟନ୍ତ ସୁନ୍ଦର ମୁଖ ତୋ ତଳାନୟନ
ଦେବ ହେଉ ଶଙ୍ଖାସୁର କରିଲୁ ନିଧନ ।
କୋଟି ତୀର୍ଥବାରି ଘେନି ଦେବତା ପୁଷ୍କର
ନିତି ଅଭିଷେକ କରେ ତୋହର ପଯ୍ୟର ।
ସକଳ ଅମର ତୋର ପାଶେ ଆସି ନିତି
ଭକ୍ତିଭାବେ ମଜ୍ଜି ଯୁଗ୍ମଚରଣ ପୂଜନ୍ତି ।
ଗନ୍ଧର୍ବ କିନ୍ନର ଯକ୍ଷ ସୁର ସିଦ୍ଧମୁନି
ସାଦରେ ପୂଜା କରନ୍ତି ତୋର ପାଦବେନି ।
ସ୍ୱାମି ଅଶୁଭକୁ ଶୁଭ କରୁ ଦେବ ତୁମ୍ଭ
ଯୁଗାନ୍ତରେ ତୁମ୍ଭ ଏକମାତ୍ର ଥାଉ ରହି ।
ସତ୍ୟରେ ହଳଧରଙ୍କ ହୋଇଲୁ ସାନୁଜ
ସଦା ପ୍ରସନ୍ନ ବଦନ ତୋର ଦେବରାଜ ।
ଭକ୍ତଙ୍କ ହୃଦକମଳେ ସଦା ତୋର ବାସ
ଯେ ତୋତେ ଧିଆଏ ତାର ପୂରାଅ ମାନସ ।
ରୁଦ୍ରଦେବତା ବନ୍ଦନ୍ତି ଯହୁଁ ପଞ୍ଚଶର
କାଳେ ତାକୁ ଜାତକଲୁ କରି ତୋ କୁମର ।
ତୁଳସୀ ବଲ୍ଲଭ ଯୁଗ୍ମ ପାଦକମଳରେ
ଶାରଳାଦାସର ମନ ରହୁ ନିରନ୍ତରେ ।

---

## ଅର୍ଜୁନଙ୍କର ଦରଦସେନ ରାଜା ଓ ଜମାଗୋଷ୍ଠ ରାଜାଙ୍କ ସହିତ ଯୁଦ୍ଧ ଓ ଜୟ ଏବଂ ଜମାଗୋଷ୍ଠ ରାଜାଭି ବନ୍ଦନ

ପୁନରପି ପୁଚ୍ଛାକଲେ ମନୁ ଦଣ୍ଡଧର
ଏଥିଅନ୍ତେ କିସ ହେଲା କହ ମୁନିବର ।
ଦ୍ରୁପଦ ସେନ ପୁତ୍ରଙ୍କୁ ପେଷି ଧନଞ୍ଜୟ
ପୁନଶ୍ଚ କେଉଁ ରାଜ୍ୟକୁ କରିଲେ ବିଜୟ ।
ଏହି କଥା ଶୁଣିବାକୁ ଶ୍ରଦ୍ଧା ହୁଏ ମୋର
ତୁମ୍ଭ ମୁଖରୁ ଶୁଣିଲେ ଚିତ୍ତ ହେବ ସ୍ଥିର ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ଶାଳକେ ବିଦାୟ କରି ପାର୍ଥ ଧନୁର୍ଦ୍ଧର ।
ତହୁଁ ପ୍ରସ୍ଥାନ କରିଣ ଦଣ୍ଡ ବାହିଗଲେ
ଭରତମଣ୍ଡଳେ ଯାଇ ପ୍ରବେଶ ହୋଇଲେ ।
ଭଦ୍ର ବୋଲ କରଣ ଯେ ତହିଁର ନୃପତି
ଦ୍ରୁମଦ ରାଜାର ସେହି ପୁରୁଷ ଅଟନ୍ତି ।
ପାର୍ଥ ଦରଦଜେ ଚରଗଣ ଯେ ଜଣାଇ
ଦଣ୍ଡସେନ ପାଗ୍ରେ ଟିଣ ଆସେ ନରସାଇଁ ।
ଅର୍ଜ୍ଜୁନଙ୍କୁ ଦରଶନ କଲା ବେଗେ ଆସି
ନିମନ୍ତ୍ରଣ କଲେ ପାର୍ଥ ତା ରାଜ୍ୟେ ନ ପଶି ।
ରାଜସୂୟ ଯାଗ ବୋଲିଣ ହେବ ମହାସଭା
ସମଦଣ୍ଡ ସେନକର ବହନରେ ଯିବା ।
ଯେତେ ପାରୁ ସୈନ୍ୟଆଦି ଦରଶନ ଧନ
ସେନ ଚଳ ବିଳମ୍ବ ନ କର ତୁ ରାଜନ ।
ଅର୍ଜ୍ଜୁନ ବଚନେ ଚଳିଗଲେ ଦଣ୍ଡପତି
ଦରଦଜେକୁ ଅର୍ଜ୍ଜୁନ ଚଳିଲେ ଝଟତି ।
ଶଙ୍ଖପୁର ବୋଲିକରି ନଗର ଗୋଟିଏ
ତହିଁର ନୃପତି ଅଟେ ଜମାଗୋଷ୍ଠ ରାୟେ ।
ସେହି ରାଜା ଅଟଇ ଯେ ବଡ଼ଇ ଧାର୍ମିକ
ପର୍ଶୁ ଏକ ଧରିଥାଏ ଅତ୍ୟନ୍ତ ବିବେକ ।
ହିରଣ୍ୟକ ବଂଶେ ସେହୁ ହୁଏ ଉତପତ୍ତି
ଯମ ଦେବତାଙ୍କୁ ତାର ଆନେ ନାହିଁ ଭକ୍ତି ।

ଲୁହାର ଯମ ପ୍ରତିମା ଏକ କରିଥାଇ
ମନ୍ତ୍ରପହାଡନେ ତାଙ୍କୁ ବିଶ୍ରାମ କରାଇ ।
ମନ୍ଦାର ପୁଷ୍ପ ଦେଇଣ କରଇ ସେ ପୂଜା
ରୁଧିର ପୋଡ଼ାମାଂସ ଦେଇଥାଇ ଭୋଜା ।
ବାଳକକାଳରୁ ସେହି ଯମଙ୍କର ଭକତି
ଆୟୁଷ ପାଇଲା ସେହି ଦ୍ୱାପରନ୍ତ ସ୍ଥିତି ।
ତିନିଲକ୍ଷ ନେୟାଣୋଇ ସହସ୍ର ବରଷେ
ପ୍ରସଙ୍ଗେ ଧର୍ମ ଦେବତା ମିଳିଲେ ତା ପାଶେ ।
ହୋଇଲେ ତାହାକୁ ଏହା ନରଜନ୍ମ ହୋଇ
ଯମ ଦେବତାଙ୍କ ପୂଜା ନ କରନ୍ତି କେହି ।
ତୁହି କିମ୍ପା ଆରାଧନା କଲୁ ମୋତେ ରାଜା
କେଶବ ମନ୍ତ୍ରରେ ମୋତେ କରୁଥିଲୁ ପୂଜା ।
ମହାକାଳ ଶାନ୍ତକାଳ ଏହି ବେଦ ମନ୍ତ୍ରେ
ଆପଣଙ୍କ ପୂଜା ମୁହିଁ କରୁଥାଇ ନିତ୍ୟେ ।
ମୃତ୍ତିକା ମନ୍ତ୍ର ଆବର ଗୁଣମନ୍ତ୍ର ପାଠେ
ତୁମ୍ଭଙ୍କୁ ସେବଇ ପ୍ରଭୁ ଥାଇ ମୋର ରାଷ୍ଟ୍ରେ ।
ଯମଦେବ ବୋଇଲେ ତୁ ଜନ୍ମେଣ ମାନବ
ଯମ ସେବା ପୂଜାକରି ଜନ୍ମାଇଲୁ ଭାବ ।
ଥାଅ ଏବେ ରାଜା ତୁହି ଏହି ମଧ୍ୟସ୍ୱର୍ଗ
ମୋତେ ପୂଜାକରି ଚିର ମହୀ କର ଭୋଗ ।
ତୁଷ୍ଟି ସାନନ୍ଦେ ପ୍ରସନ୍ନ ହୋଇଣ ଶମନ
ତା ଦକ୍ଷକରେ ଲେଖିଲେ କାଳଦଣ୍ଡ ଚିହ୍ନ ।
ଯେବା ମଧ୍ୟସ୍ୱର୍ଗେ ତୋତେ ହୋଇବ ଅସାଧ
ନାମ ଲେଖି ପୋଛିଲେ ସେ ନିଶ୍ଚେ ହେବ ବଧ
ଶମନ ପ୍ରସନ୍ନେ ତାର ମହିମା ଏସନ
ମହୀରେ ନୃପତି କେହି ତାକୁ ନାହିଁ ସମ ।
ଶଙ୍ଖମଣ୍ଡଳରେ ସେହୁ ଅଟେ ଅଧିପତି
ଯମଦେବଙ୍କୁ ଭକତି କରେ ଦିବାରାତି ।
ଯମ କାଳଦଣ୍ଡ ଚିହ୍ନ ବହେ ଦକ୍ଷପାଣି
ଇନ୍ଦ୍ରଲୋକ ରାଜାକୁ ସେ ନଜରେ ନ ଆଣି ।
ବଡ଼ ଧାର୍ମିକ ଅଟଇ ସେହି ରାଜା ମର୍ତ୍ତ୍ୟ
ମୃତ୍ୟୁ ଚିହ୍ନ ବହଇ ସେ ତାର ବାମହାତେ ।
ଏସନ ମହିମା ଶୁଣି ସେ ବରଦସେନ
ଶଙ୍ଖାମଣ୍ଡଳର ସେହୁ ଅଟଇ ରାଜନ ।
କର ମାଗିଲା ବରଦସେନ ନରପତି
ଦୂତ ପେଷିଲା ସେ ଜମାଗୋଷ୍ଠ ରାଜା କତି

ବରଦସେନ ଆଜ୍ଞାରେ ଚଳିଲେ ମୃଦେନ୍ଦ୍ର
ଜମାଗୋଷ୍ଠ ରାଜା ଆଗେ ବାର୍ତ୍ତା ଯାଇଁ କହି ।
ବରଦସେନ ଶ୍ରୀମୁଖ ଦେଇଅଛି ତୋତେ
କର ଦେବୁ ଦେଇଥିଲୁ ପୂର୍ବେ ତୁହି ମୋତେ
ଏହିପରି ଆଜ୍ଞାଦେଲେ ସେ ବରଦସେନ
ଆମ୍ଭର ହସ୍ତରେ ରାଜା ଦିଅ ସେହି ଧନ ।
ଜମାଗୋଷ୍ଠ ବୋଲି କରେ ତୁମ୍ଭ ଜ୍ଞାନ ନାହିଁ
କି କର ଦେବ ସେ ଆସୁ ତାର ଦଣ୍ଡ ବାହି ।
ବାହୁଡ଼ିଣ ଦେଶାନ୍ତର ଗଲେ ନିଜ ଦେଶ
ବାର୍ତ୍ତା କହିଲେ ବରଦସେନ ରାଜା ପାଶ ।
ସ୍ୱାମି ଜମାଗୋଷ୍ଠ ତୋତେ କଲା ଅପମାନ
ବୋଇଲା ନ ଦେବ କର ଆସୁ ଘେନି ସୈନ୍ୟ
ଶ୍ରୀମୁଖୁ ବାର୍ତ୍ତା ପାଇ ସେ ବରଦରାଜ
ମନ୍ତ୍ରୀକି ବୋଇଲା ବେଗେ ମୋର ଦଣ୍ଡ ସାଜ ।
ସାଜ ବୋଲିଣ କହନ୍ତେ ବାଜିଲା ଦମକ
ମଣ୍ଡିଲେ ଯେ ରଥ ଗଜ ମାହୁନ୍ତ ଯେତେକ ।
ତିନିପଦ୍ମ ରଥୀ ତାର ପାଞ୍ଚପଦ୍ମ ହସ୍ତୀ
ଦଶପଦ୍ମ ହୟ ଶତକ୍ଷଉଣୀ ପଦାତି ।
ଦଣ୍ଡ ଘେନିଣ ବାହାର ହେଲେ ମହାରାୟ
ଆକାଶ ଢାଙ୍କିଲା ଘୋର ଅନ୍ଧକାର ପ୍ରାୟ ।
ପୃଥ୍ୱୀ କମ୍ପିଲା ବରଦସେନ ସୈନ୍ୟଯାନ୍ତେ
ଜଉଇନ୍ଦ୍ରଗ ରାଜାଏ ପଳାଇଲେ ସନ୍ତ୍ରେ ।
ବନେ ପଶିଲେ ରାଜାଏ ଭୟ ପାଇକରି
କି ଜାଣି ରାଜ୍ୟ ନ ନିଏ ଆମ୍ଭଙ୍କୁ ନ ମାରି ।
ଏଥର ସକଳ ରାଜ୍ୟେ ପଡ଼ିଲା ଚମକ
ଆକାଶ ଉଠୁଛି ପଡ଼େ ଘୋର ବାଦ୍ୟ ଡାକ ।
ସମଦଣ୍ଡ ଘେନି ଶଙ୍ଖାମଣ୍ଡଳାଧିକାରୀ
ଶଙ୍ଖମଣ୍ଡଳକୁ ଆସି କରିଦେଲେ ଜୁରି ।
କାର୍ତ୍ତିକ ଶୁକ୍ଳପକ୍ଷ ଚୌଠି ରବିବାର
ଜ୍ୟେଷ୍ଠାନକ୍ଷତ୍ର ଯେ ନବଘଡ଼ି ସେ ପ୍ରହର ।
ଶଙ୍ଖନଗର ବେଢ଼ିଲା ସେ ବରଦସେନ
ଚତୁର୍ଦ୍ଦିଗେ ଭଲ କାପାତ ହେଲା ଘନ ଘନ ।
ଆସ୍ଥାନେ ବସିଣ କରନ୍ତି ନୃପ ଜମାଗୋଷ୍ଠ
ଦେଶାନ୍ତରେ ଜଣାଇଲେ ପଡ଼ିଲା ସଙ୍କଟ ।
ବଡ଼ ଆକଟେ ବାହିଲା ବରଦ ନୃପତି
ତୁମ୍ଭ ନଗର ବେଢ଼ିଲେ ଦେବ ନିଶାପତି ।

ଏକ ଏକ ଯୋଦ୍ଧା ପୃଥ୍ୱୀ ପାରନ୍ତି ସେ ଜିଣି
ସମୁଦ୍ର ପ୍ରାୟେ ଶୁଭୁଛି ତାଙ୍କ ମୁଖଧ୍ୱନି ।
ଜଗତରେ ଉଠି ରାଜା ସ୍ୱର୍ଗଁଲଗ ଥାଟ
ସ୍ୱର୍ଗଆଡ଼େ ବେଢ଼ିଛନ୍ତି ନାହିଁ ଆଉ ବାଟ ।
ଲଙ୍କାପୁରକୁ ବେଢ଼ିଥିଲେ ଯେସନେ ବାରିଧି
ସେହିପରି ରହିଛନ୍ତି ବେଢ଼ି ସର୍ବଯୋଧୀ ।
ଗଡର ବାହାରେ ଥିଲା ଯେତେ ନଗ୍ରଦେଶ
ସେ ସମସ୍ତ ଜୟକରି ନେଲା ଧନକୋଷ ।
ବନ ଜନ୍ତୁଗଣ ସବୁ ପଳାଇଲେ ମାରି
ମୁଣ୍ଡମାଳ ରୁଣ୍ଡ କଲେ ଗିରିସମ କରି ।
ତାହା ଦେଖି ବୋଲେ ମନ୍ତ୍ରୀ ଶୁଣ ଜମାଗୋଷ୍ଟି
ତୋତେ ବେଢ଼ିଲେଣି ଆସି ବରଦର ଥାଟ ।
ଅନନ୍ତ ଯୋଦ୍ଧା ସୈନ୍ୟ ତାଙ୍କୁ ନୋହିବେ ସମାନ
ପ୍ରଚଣ୍ଡ ବ୍ରହ୍ମସାହିକ ବଳ ସେ ଅଧନ ।
ଆଉ ରାଜା ତାଙ୍କୁ ସମ ନାହିଁ ଭବତଳେ
କ୍ଷତ୍ରିବର ବୋଲଇ ସେ ଉତ୍ତର କୋଟଳେ ।
ଶୁଣି ରାଜା ସହସ୍ରେକ ଚରଙ୍କୁ ଡାକିଲା
ସେମାନଙ୍କୁ ଏହିପରି ଆଦେଶ କହିଲା ।
ତୁମ୍ଭେମାନେ ଆଜରାତ୍ରେ ଗୁପ୍ତଭାବେ ଯିବ
ବରଦ ଥାଟର ମଧ୍ୟେ ପ୍ରବେଶ ହୋଇବ ।
ତାଙ୍କ ମଧ୍ୟେ ରହିଥିବ ମାୟାରୂପ ଧରି
ଅଶ୍ୱ ଗଜ ସୈନ୍ୟ କେତେ ବୁଝ ତଥ୍ୟକରି ।
ବହନ ଯାଇଣ ତାର ଦଣ୍ଡ ଜଳ ଆସ
ଲେଖିଣ ପୋତିବ ତାର ସର୍ବେ ହେବେ ନାଶ
ରଜାର ବଚନେ ଗୁପ୍ତେ ଗଲେ ଚରଗଣ
କପଟେ ହୋଇଲେ ସେହି ଭିକ୍ଷୁକ ବ୍ରାହ୍ମଣ ।
ଥାଟ ଭିତରେ ପଶିଲେ ସେ ମହା ନିଶାରେ
ଥାଟ ମଧ୍ୟେ ମାଗନ୍ତି ସେ ଭିକ୍ଷା କପଟରେ ।
ରାତ୍ର ଦିବସରେ ଘରେ ବୁଲି ଅନୁବ୍ରତେ
କଳନା ନ ପାନ୍ତି ତାର ସୈନ୍ୟ ଛନ୍ତି କେତେ
ଭିକ୍ଷୁକବେଶେ ଭ୍ରମିଣ ତଣ୍ଡୁଳ ମାଗନ୍ତି
ମନେ ମନେ ବରଦର ସୈନ୍ୟ କଳୁଥାନ୍ତି ।
ରାତ୍ର ହୁଅନ୍ତେ ସକଳେ ଯେଝା ବାସେ ଯାଇ
ଅଭ ଭୁଞ୍ଜିଣ ଆସନ୍ତି ଗୃହରେ ନ ଶୋଇ ।
କଷାବନ୍ତ ରଜା ସେହି ରହିଛି ସମ୍ଭାରେ
ସପ୍ତପୁର କଷ୍ଟ ବେଢ଼ି ଛନ୍ତି ଗଡ଼ଦ୍ୱାରେ ।

ଜମାଗୋଷ୍ଟି ରଣ ତାକୁ ନ ହୁଏ ସମ୍ମୁଖେ
ଗଡରୁ ବାହାର ନୁହେ ରହିଥାଏ ସୁଖେ ।
ସଂଗ୍ରାମ ନ ହୁଏ କମ୍ବା ନ ହୁଅଇ ଧନ
ଅସୁ ରଣ କରୁ ବୋଲି ସେ ବରଦସେନ ।
ଡଗରଙ୍କ ମୁଖୁ ବାର୍ତ୍ତା ପାଇବା ନିମନ୍ତେ
ନଗର ବେଢ଼ିଛି ରଜା ଛବର୍ଷ ପର୍ଯ୍ୟନ୍ତେ ।
ସସ୍ତ୍ରସ୍ୱର ପେଷିଛନ୍ତି ତହିଁ ଦିବାରାତ୍ର
କଳି ନ ପାରନ୍ତି କେତେ ରଥୀ ଯେ ପଦାତ ।
ସମର ନ ପାଇଲେ ନ ଫୁଟେ ନୃପମଣି
ଆପଣା ରାଜ୍ୟରୁ ଅଭ ବହନ୍ତି ପଲାଣି ।
ଜମାଗୋଷ୍ଟି ବାହାରକୁ ବାହାର ନୁହଇ
ନବବର୍ଷ ହେଲା ଗଡ଼ ବେଢ଼ି ରହିଛଇଁ ।
ଜୟ ନ ପାଇଲେ ସେହି କେବେ ନ ଫେରଇ
ବରଦସେନ ରହିଲା କୃଷି ଉପୁଜାଇ ।
ଆପଣାର ରାଜ୍ୟ ପ୍ରାୟ କଲା ତାର ରାଷ୍ଟ୍ର
ନିର୍ଭୟରେ ରହିଲା ସେ ବରଦର ଥାଟ ।
ଦ୍ୱାଦଶବର୍ଷ ବେଢ଼ିଲା ବରଦ ନୃପତି
ଗୁପ୍ତ ଚର ପେଷେ ଜମାଗୋଷ୍ଟି ନରପତି ।
ଦ୍ୱାଦଶ ବରଷ ବୁଲି ବୁଲି ଚରଗଣ
ରଜାକୁ ବୋଇଲେ କଳି ନ ପାରିଲୁ ସୈନ୍ୟ
ସାଧୁ ମହିମା ବରଦସେନ ନରପତି
ସାଧୁ ଜମାଗୋଷ୍ଟି ତାକୁ ନ କରଇ ଶାନ୍ତି ।
ଗଡ଼ର ଭିତରେ ରାଜା ସର୍ବ ଥିଲା ସଞ୍ଚି
ଦ୍ୱାଦଶବର୍ଷ ହୋଇଲା ସମ୍ଭାରେ ରହିଛି ।
ଜମାଗୋଷ୍ଟିକୁ ବରଦ ବେଢ଼ିଥିବା ଭାଳେ
ଶାଖାନଗ୍ରେ ଧନଞ୍ଜୟ ଯାଇ ହଜେ କଲେ ।
ପାର୍ଥ ଆଗେ ଜଣାଇଲେ ଯାଇଁ ବେଣ୍ଟାଉର
ଜମାଟଗୋଷ୍ଟି ବରଦର ହୋଇବ ସମର ।
ବାରବର୍ଷ ହୋଇଲାଣି ବରଦ ଯାଇଣ
ଜମାଗୋଷ୍ଟି ନଗରକୁ ରହିଛି ବେଢ଼ିଣ ।
ଜମାଗୋଷ୍ଟି ରଜା ତାକୁ ସଂଗ୍ରାମ ନ ଦିଏ
ତେଣୁକରି ଘୁଞ୍ଚିକରି ବରଦ ନ ଯାଏ ।
ଅମରଚୂଡ ପର୍ବତେ ହଜେ ଫାଲ୍ଗୁନ
ପାଶେ ଜଣାଇଲେ ଜୟ ବିଜୟ ଯେ ବେନି ।
ସ୍ୱାମି ଦୁଇ ରଜାଙ୍କର ସମର ହୋଇବ
ମଧ୍ୟେ ରହି ମିଶାଇବା ଚୁଲି ଆମ୍ଭେ ଦେବ ।

ଅର୍ଜୁନ ବୋଇଲେ ଆହେ ନୁହଇ ଏମନ୍ତ
ଅଜାଣେ ଗଲେ ପ୍ରମାଦ ହୋଇବ ବହୁତ ।
ସୁରେଶ୍ୱର ପ୍ରୋହିତଙ୍କୁ ଆଜ୍ଞା ଦେଲେ ପାର୍ଥ
ଦରବସେନ ପାଶକୁ ଲେଖ ଖଣ୍ଡେ ପତ୍ର ।
ଆଜ୍ଞା ପରମାଣେ ସେହୁ ସୁରେଶ୍ୱର ମୁନି
ଲେଖନ ଧରି ଲେଖିଲେ ତାଳପତ୍ର ଘେନି ।
ଶ୍ରୀଆଦି ଅନାଦିଙ୍କର ଚରଣେ ଶରଣ
ଶ୍ରୀମୁଖ ଲେଖୁଛୁ ଆମ୍ଭେ ବୁଝିବା କାରଣ ।
ଚନ୍ଦ୍ରଦେବଙ୍କର ବୁଧ ଅଟନ୍ତି ଯେ ସୁତ
ବୁଧପୁତ୍ର ପୁରୁରବା ଜଗତେ ବିଖ୍ୟାତ ।
ସସାଗରା ପୃଥିବୀରେ ସେହୁ ଅଧିପତି
ସପ୍ତସିନ୍ଧୁ ନବଦ୍ୱୀପ ନାମ ଦେଇଛନ୍ତି ।
ପୁରୁରବାର ନନ୍ଦନ ଆୟୁ ମହୀପାଳ
ସମସ୍ତ ପୃଥ୍ୱୀ ହୋଇଲା ଯାଙ୍କ କରତଳ
ଆୟୁର ନନ୍ଦନ ହେଲେ ନୃପତି ନହୁଷ
ଇନ୍ଦ୍ରପଦେ ବସିଲେ ଏ ଅମରଙ୍କ ପାଶ ।
ନହୁଷଙ୍କର ନନ୍ଦନ ହୋଇଲେ ଯଯାତି
ଯଯାତିଙ୍କର ନନ୍ଦନ ପ୍ରବୀର ନୃପତି ।
ପ୍ରବୀର ନନ୍ଦନ ହେଲେ ମନୁ ନାମେ ବୀର
ଅନୁପମ ଚକ୍ରବର୍ତ୍ତୀ ଏହାଙ୍କ କୁମର ।
ଅନୁପମଙ୍କ ନନ୍ଦନ ଅଟଇ ସମୀର
ଦୁଷ୍ମନ୍ତ ନାମେ କୁମର ହୋଇଲେ ତାଙ୍କର ।
ଏହାଙ୍କର ମହିମା ଯେ ନ ଯାଇ କଥନ
ସମୁଦ୍ର ଘୁଞ୍ଚାଇଦେଲେ ଅଶୀସହସ୍ର ଯୁଗ ।
ସମୁଦ୍ର ଭିତରେ ସେହୁ ଖମ୍ବେକ ପୋତିଲେ
ସେ ଖମ୍ବ ଲଙ୍ଘି ସମୁଦ୍ର ଆଉ ନ ଆଇଲେ ।
ଦୁଷ୍ମନ୍ତଙ୍କର ନନ୍ଦନ ହୋଇଲେ ଭରତ
ଆପଣାର ନାମେ ଦେଲେ ଏ ଭୂମି ଭାରତ ।
ଭୂମନ୍ୟୁ ନାମରେ ହେଲେ ଭରତ କୁମର
ଏ ରାଜା ମହାବଳିଷ୍ଠ ଆଉ ଧନୁର୍ଦ୍ଧର ।
ମହା ବୁଦ୍ଧିମନ୍ତ ହେଲେ ଏହୁ ଯେ ଭୂମନ୍ୟୁ
ସବୁଶାସ୍ତ୍ର ସାଧି ଭୂତ ଭବିଷ୍ୟତ ଜ୍ଞାନୁ ।
ଏ ପୃଥ୍ୱୀର ପୁଣି ସ୍ଥାନମାନ ଠୁଳକଲେ
ପ୍ରଜାଙ୍କୁ ବସାଇ ନବସୃଷ୍ଟି ନାମ ଦେଲେ ।
ସୁହୋତ୍ର ନାମରେ ହେଲେ ଭୂମନ୍ୟୁ କୁମର
ଏହାଙ୍କ ନନ୍ଦନ ହେଲେ ହସ୍ତୀ ନାମେ ବୀର ।

ହସ୍ତିନା ନଗରକୁ ଏହୁ ରଜା ବସାଇଲେ
ଅଜମିଢ଼ ଏହାଙ୍କର କୁମର ହୋଇଲେ ।
ଅଜମିଢ଼ଙ୍କ ନନ୍ଦନ ହେଲେ ସମ୍ବରଣ
ବଶିଷ୍ଠଙ୍କ ମାତ କର୍ଣ୍ଣ କଲେ ଏ ଭିଆଣ ।
ବିଭା ହେଲେ ଏ ସୂର୍ଯ୍ୟଙ୍କ ଦୁହିତା ତପତୀ
ସୂର୍ଯ୍ୟଙ୍କୁ ପୂଜା କରନ୍ତି ଏହୁ ନିତିପ୍ରତି ।
ସମ୍ବରଣ ବୀର୍ଯ୍ୟୁ କୁରୁ ନାମେ ହେଲେ ପୁତ୍ର
ଏହାଙ୍କର ପୁତ୍ର ହେଲେ ପୃଥୁ ନରନାଥ ।
ପୃଥୁଙ୍କ ପ୍ରତୀପ ନାମେ ଏକପୁତ୍ର ହେଲା
ପ୍ରତୀପଙ୍କ ଔରସେ ଶାନ୍ତନୁ ଜନ୍ମିଲା ।
ଏ ରଜା ଗଙ୍ଗାଦେବୀଙ୍କୁ ବିବାହ ହୋଇଲେ
ଜାହ୍ନବୀ ଦେବୀଙ୍କଠାରୁ ଭୀଷ୍ମଜାତ ହେଲେ ।
ଯୁଦ୍ଧେ ପର୍ଶୁରାମଙ୍କୁ ଏ କଲେ ପରାଜୟ
ମହୀରେ କ୍ଷତ୍ରିୟ ନାହିଁ ଏହାଙ୍କ ପରାୟ ।
ପୁନଶ୍ଚ ସତ୍ୟବତୀଙ୍କି ଶାନ୍ତନୁ ନୃବର
ବିବାହ ହୁଅନ୍ତେ ହେଲେ ଦୁଇଟି କୁମର ।
ଚିତ୍ରାଙ୍ଗଦ ଯେ ବିଚିତ୍ରବୀର୍ଯ୍ୟ ଦୁଇଗୋଟି
ଯୁବାକାଳେ ନାଶ ଗଲେ ଏ ଦୁଇଭାଇଟି ।
ଦୁଇଭାଇଙ୍କର ହେଲେ ଦୁଇଟି କୁମର
ଧୃତରାଷ୍ଟ୍ର ଆବର ଯେ ପାଣ୍ଡୁ ଧନୁର୍ଦ୍ଧର ।
ପାଣ୍ଡୁଙ୍କର ହୋଇଲେକ ପାଞ୍ଚୋଟି ନନ୍ଦନ
ଜ୍ୟେଷ୍ଠ ପୁତ୍ର ଅଟନ୍ତି ଯେ ଯୁଧିଷ୍ଠି ରାଜନ ।
ଏହାଙ୍କ ସାନୁଜ ହେଲେ ଭୀମ ମହାବଳ
ଗଦା ମଲ୍ଲଯୁଦ୍ଧେ ସମ ନାହିଁ ରଣତଳ ।
ଏହାଙ୍କ ସାନୁଜ ଆମ୍ଭେ ଆମ୍ଭ ନା ଅର୍ଜୁନ
ଶ୍ରୀକୃଷ୍ଣ ଆମ୍ଭର ସଖା ଜାଣନ୍ତି ଯେ ଜନ ।
ଭାରତବର୍ଷରେ ରାଜା ବୋଲାଉ ଯେ ଆମ୍ଭେ
ସ୍ୱର ମୁଖୁ ଆମ୍ଭକଥା ଶୁଣିଥିବ ତୁମ୍ଭେ ।
ପଶୁପତିଙ୍କୁ ସମରେ ଆମ୍ଭେ ଯେ ଜିଣିଲୁ
ତାଙ୍କଠାରୁ ପାଶୁପତ ଶର ଯେ ପାଇଲୁ ।
ଅଙ୍ଗାରପର୍ଣ୍ଣ ରଣେ ଜିଣିଅଛୁ ଆମ୍ଭେ
ନାନାବିଦ୍ୟା ଆମ୍ଭଙ୍କୁ ସେ ଦେଲେ ତୋଷମନେ
ଲୁଦୁବୁଦୁ ବ୍ୟାଧି ହେଲା ଅଗ୍ନି ଦେବତାଙ୍କୁ
ଖାଣ୍ଡବବନ ତାହାଙ୍କୁ ଦେଲୁ ଖାଇବାକୁ ।
ସେ ହେତୁରୁ ଇନ୍ଦ୍ର ଆସି ବହୁ ରଣ କଲେ
ପରାଜୟ ପାଇ ପୁଣି ବାହୁଡ଼ିଣ ଗଲେ ।

ଗୋଶିଂହ ଦୈତ୍ୟଙ୍କୁ ଆମ୍ଭେ କଲୁ ନିଧନ
ଶତଧନ୍ୱଙ୍କୁ ପାଖରେ ରଖିଲୁ ଶରଣ ।
ଆମ୍ଭେ କ୍ଷତ୍ରିୟମାନଙ୍କ ଅଟୁ ଶିରୋମଣି
ଆମ୍ଭଦ୍ୱାରା ନାଶ ଗଲା ମଗଧ ନୃମଣି ।
ଗାଣ୍ଡୀବ ଧନୁ ଯାହା ଯେ ଅଟଇ ଅମ୍ଭର
ଭରଦ୍ୱାଜଙ୍କ ନନ୍ଦନ ଅସ୍ତ୍ରଗୁରୁ ମୋର ।
ରାମକୃଷ୍ଣ ଅଟନ୍ତି ଯେ ଆମ୍ଭର ବାନ୍ଧବ
ତାଙ୍କ ଭଗ୍ନୀ ସୁଭଦ୍ରାର ମୂର୍ତ୍ତି ବଲ୍ଲଭ ।
ବଳରାମ ହାରିଛନ୍ତି ଆମ୍ଭଙ୍କୁ ସମରେ
ପାଣ୍ଡ୍ରବାସୁରଙ୍କୁ ଆମ୍ଭେ ବଧିଲୁ ରାଗରେ ।
ପାଞ୍ଚାଳ ରାଜ୍ୟରେ ହେଲା ଯେଉଁ ସ୍ୱୟମ୍ବର
ସେ ସ୍ଥାନକୁ ଯାଇଥିଲେ ଯେଉଁ ନରବର ।
ଦ୍ରୌପଦୀଙ୍କ ହେତୁ ରାଜା କରିଥିଲେ ପଣ
ଯେ ବିନ୍ଧିବ ଲକ୍ଷ ନେବ ସେ କନ୍ୟାରତନ ।
ଲକ୍ଷେରାଜା ସେ ଲକ୍ଷକୁ ନ ପାରିଲେ ବିନ୍ଧି
ଆମ୍ଭେ ସେ ଲକ୍ଷ ବିନ୍ଧିଲୁ ଗୁଣେ ଶର ସନ୍ଧି ।
ତୁମ୍ଭେ ଏହା ଦେଖିଥିବ ଅବଶ୍ୟ ନେତ୍ରରେ
କପର ଦଶା ଲଭିଲେ ତହିଁ ନରବରେ ।
ସ୍ୱସ୍ତନା ବାରୁଣୀ ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ
ଜୟନ୍ତା ଏ ପଞ୍ଚରାଜ୍ୟେ ଆମ୍ଭେ ନରନାଥ ।
ଲକ୍ଷେ ରାଜାଙ୍କ ଉପରେ ଆମ୍ଭ ଅଧିକାର
ପ୍ରାଣରେ ମାରିଲୁ ଆମ୍ଭେ ଦୁଷ୍ଟ ମୁଢ଼ାସୁର ।
ଯେ ଦୁଷ୍ଟ ନୃପ ତାହାକୁ କରୁ ନିସୂଦନ
ଅନାଥ ଜନଙ୍କୁ ଆମ୍ଭେ କରୁ ଯେ ପାଳନ ।
ଯୁଧିଷ୍ଠିର ଠାକୁର ଯେ କରୁଛନ୍ତି ଯାଗ
ସେ ହେତୁ ଆମ୍ଭେ ଆସିଲୁ ଏ ଉତ୍ତର ଦିଗ ।
ସ୍ଥଳଶସ୍ତ୍ର ରାଜାଙ୍କୁ କରିଣ ବରଣ
ଯେଠାବକୁ ଯିବ ତୁମ୍ଭେ ହେ ବରଦସେନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିବର୍ଣ୍ଣ
ଏ ରାଜାମାନଙ୍କୁ ଆମ୍ଭେ କରିବୁ ବରଣ ।
ଯୁଧିଷ୍ଠିରଠାକୁରଙ୍କ ଏହିପରି ଆଜ୍ଞା
ଏ ଆଜ୍ଞାକୁ ତୁମ୍ଭେ ଯେବେ କରିବ ଅବଜ୍ଞା ।
ତୋର ସୈନ୍ୟ ବିନାଶିଣ ତୋତେ ବାନ୍ଧିକରି
ନିଶ୍ଚେ ନେଇଯିବୁ ଏହା ଜାଣ ହେତୁକରି ।
ଯେବେ ଡରୁ ତେବେ ଏହି ଶ୍ରୀମୁଖକୁ ନେଇ
ଦେଖା ଦରଶନୀ ଘେନି ଆସ ବେଗ ହୋଇ ।
ଯେବେ ତୋହର ପ୍ରାଣକୁ ନିଶ୍ଚେଁ ଅଛି ଆଶ
ଏହା ପଢ଼ି ଆମ୍ଭ ପାଦେ ଶରଣ ଭୁ ପଶ ।
ଦୂତ ହସ୍ତେ ଏହି ପତ୍ର କରିଲୁ ପ୍ରେରଣ
ତାହା ଠାରୁ ନେଇ ତୁମ୍ଭ ବୁଝିବା କାରଣ ।
ଏମନ୍ତ ପ୍ରକାରେ ଲେଖି ସୁରେଶ୍ୱର ମନ୍ତ୍ରୀ
ଧନଞ୍ଜୟଙ୍କୁ ଶୁଣାଇ କହିଲା ସେ ଇତି ।
ଶ୍ରୀମୁଦ ସନ୍ତକ ଦେଇ ପତ୍ର କରେ ଘେନ
ଅରୁଣ ଅଞ୍ଜନ ନାମ ସେନାପତି ବେନ ।
ତାହାଙ୍କୁ ଡକାଇ ତାଙ୍କ କରେ ପତ୍ର ଦେଲେ
ବରଦସେନଙ୍କୁ ଏହା ଦେବ ଯେ ବୋଇଲେ
ଶଙ୍ଖ ମଣ୍ଡଳକୁ ସେହି ରହିଅଛି ଘେରି
ସେ ରାଜାକୁ ପତ୍ରଦେଇ ଆସ ତୁଟିକରି ।
ଶ୍ରୀମୁଖ ଘେନିଣ ତହୁଁ ଚଳଗଲେ ଦୂତେ
ଶଙ୍ଖ ମଣ୍ଡଳରେ ଯାଇ ମିଳିଲେ ତୁରିତେ ।
ଦେଖିଲେ ମହାସମ୍ଭବେ ବରଦ ନୃପତି
ବିଜୟ କରିଅଛନ୍ତି ଆସ୍ଥାନ ଜଗତି ।
ତହିଁ ଯାଇଣ ପ୍ରବେଶ ହେଲେ ଦୁଇ ଦୂତେ
ରାଜାଙ୍କୁ ସ୍ତୁତି ବଚନ କହିଲେ ଏମନ୍ତେ ।
ଏହି ଶ୍ରୀମୁଖକୁ ଘେନ ଆଜ୍ଞା ଅବଧାରି
କାହାର ଶ୍ରୀମୁଖ ବୋଲି ନୃପତି ପଚ୍ଛରି ।
ରାଜା ଏପରି ବଚନେ କହିଲେ ଡଗର
ପାର୍ଥ ଭଜେ କରିଛନ୍ତି ଉତ୍ତର ଦିଗର ।
କରିବେ ସ୍ଥୂଳଶସ୍ତ୍ର ରାଜା ନିମନ୍ତ୍ରଣ
ପାଏଡ଼ା ପାଡ଼ି ଶ୍ରୀମୁଖ ଘେନସି ବହନ ।
ଅକସ୍ମାତେ ଏ ବାରତା ପାଇଣ ବରଦ
କାହାର ଶ୍ରୀମୁଖ ବୋଲି ନ ଜନ୍ତୁ ସମ୍ବାଦ ।
ମନ୍ତ୍ରୀ ବୋଇଲା ବଚନ ଶୁଣ ସାବଧାନେ
ସ୍ତମ୍ଭୀଭୂତ ହୋଇ କର୍ଣ୍ଣ ବସିଲ ମଉନେ ।
ପାଣ୍ଡବ ସୁନ୍ଦର ସେହି ପାର୍ଥ ବୀରମଣି
ତାହାଙ୍କ ମହିମା ଦେବ ନାହୁଁ କି ତୁ ଶୁଣି ।
ସଜ୍ଜନ ପାଳକ ସେହି ଦୁଷ୍ଟ ଦର୍ପଗଞ୍ଜା
କଷ୍ଟା ଜଗଜ୍ଜେତି କଉଣପ ଦର୍ପ ଭଞ୍ଜା ।
ଘେନ ଶ୍ରୀମୁଖ ରାଜନ ନ କରିଣ ହେଳା
ଜଗଦର୍ପ ଗଞ୍ଜି ପାରେ ବାସବର ବଳା ।
ଖାଣ୍ଡବ ଦହନ ଇନ୍ଦ୍ର ସଙ୍ଗରେ ବିବାଦେ
ଅଗ୍ନି ର ବ୍ୟାଧି ଛଡ଼ିଲା ସେ ଖାର ପ୍ରସାଦେ ।

ଜଗନ୍ନାଥଠାରେ ପ୍ରୀତି ବାସବେ ବଢ଼ାଣ
ନାରାୟଣ ପ୍ରସନ୍ନେ ସେ ପାରେ ସର୍ବ ସାଧି ।
ମନ୍ତ୍ରୀର ବଚନେ ସୁଖାଖଣ୍ଡାଧିପତି
ବାମ ଆଣ୍ଠୁ ମାଡ଼ିଣ ସେ ହେଲା କୋପମୂର୍ତ୍ତି ।
ଅଧର ପୃଷ୍ଟ କରିଣ ଓଷ୍ଠେ ଦନ୍ତ ଚାପି
ହସିଲା ନଦୀଘକାଳ ତପନ ସ୍ୱରୂପୀ ।
ଉତ୍ତରକୋଶଳେ ମମ ପ୍ରତିଜ୍ଞା ଯେ ସିଦ୍ଧ
ଦୈତ୍ୟ ଦାନବ କାହାକୁ ନ କଲି ମୁଁ ବଧ
ଆଦିତ୍ୟ ଲୁଚନ୍ତିଯାଏ ଯା ସୈନ୍ୟ ଗମନେ
ସିନ୍ଧୁ ଗର୍ଜନ ନ ଶୁଭେ ଯାଙ୍କ ରଡ଼ଘାତେ ।
ଯେଉଁରାଜା ଦେବଦୈତ୍ୟେକେକେନୋହେନାଶ
ହେଲେ ନାଶିଲି ଅସୁର ନାମ ମହାଦାସ ।
କେତେ ଦୁଷ୍ଟ ଧ୍ୱଂସିଲି ମୁଁ ଏହି ମହୀସ୍ଥଳେ
ଅରୁଣଗିରି ଧ୍ୱଂସିଲି ମୋର କରତଳେ ।
ମୁଁ ଷଣ୍ଢ ପଣ୍ଡିତ ଯୁଗ୍ୟବର ପରସାଦେ
ଦ୍ୱାପରଯୁଗ ସାଧିଲି ହରିଙ୍କ ପ୍ରସାଦେ ।
ଉତ୍ତଙ୍କ ଦଗ ରଜାଙ୍କୁ ହେଲି କେତେ ଦୁଃଖ
କେବଣ ପାମର ମୋତେ ଦଅଇ ଶ୍ରୀମୁଖ ।
ଆସୁ ସେହି ତାହାର ଯେ ସମଦଣ୍ଡ ସାଜ
ପ୍ରତିଜ୍ଞା କରି ଉଠିଲା ସେହି ଗଜରାଜ ।
ଦୁଃସହ ପ୍ରତିଜ୍ଞା ରଜା କରେ ପୁଣ ପୁଣ
ଆସୁ ଦଣ୍ଡ ସାଜରେ ସେ କେତେ କରେ ଟାଣ
ସାଜ ସାଜ ବୋଲି ଆଜ୍ଞା ଦେଲେକ ଦରଦ
ତିନି ଭୁବନ କମ୍ପିଲା ସାର ତୂର ନାଦ ।
ଶ୍ରୀମୁଖ ନନ୍ଦା ଶୁଣିଣ ଗଲେ ଦେଶାନ୍ତରେ
ପ୍ରବେଶ ହୋଇଲେ ଯାଇ ଅର୍ଜୁନ ଶିବିରେ ।
ବୋଇଲେ ସେ ଦୁଷ୍ଟ ରଜା ଅଟେ ବଡ଼ ମନ୍ଦ
ନ ଘେନିଲାକ ଶ୍ରୀମୁଖ କଲା ବହୁ ନିନ୍ଦା ।
ବହୁ ପ୍ରତିଜ୍ଞା କଲାକ ହୋଇ ମହାରଗ
ରଥ ସାଜ ସାଜ ବୋଲି ଆଜ୍ଞାଦେଲା ବେଗ ।
ବଡ଼ ଅସମ୍ଭବ ଦେବ ଅସଂଖ୍ୟ ତା ଦଣ୍ଡ
ମୃଗରବ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ।
ଆଦିତ୍ୟ ଭୟ କରିଣ ଲୁଚଯାଏ ସିନ୍ଧୁ
ଉତ୍ତର କୋଶଳେ ଦେବ ତା ପ୍ରତିଜ୍ଞା ସାଧୁ
ଦେବତା ଗନ୍ଧର୍ବେ ସେହି ଅଟଇ ନିର୍ଭୟ
ଦୈତ୍ୟକନାରେ ତା ଜନ୍ମ କ୍ଷଣେ କ୍ଷଣେ ମାୟା

ମୃଦେହି ମୁଖୁ ପରି ବାର୍ତ୍ତାକୁ ଶୁଣି
କମ୍ପିଣ ଉଠିଲେ ପାର୍ଥ ନିଜ ଶିର ଧୁଣି
ଶୁରବର ସୁନ୍ଦର ଯେ ପାର୍ଥ ମହାବଳୀ
ରଥ ଉପରେ ଧଇଁଣ ବଜେ କଲେ ବେଗି ।
ଅକ୍ଷୟ ତୂଣୀର କନ୍ଧେ ଗାଣ୍ଡୀବର ଧନୁ
କରେ ଧରିଣ ବସିଲେ ସୁରନାଥ ସୁନୁ ।
ଗୁଣ ଟଙ୍କାର କରିଣ ସୁଭଦ୍ରାର ନାହା ।
ମାତଳୀକି ବୋଇଲେ ତୁ ରଥ ବେଗେ ବାହା
ଆଗୁଆଣି ସେନାପତି ଜୟ ଯେ ବିଜୟ
କ୍ଷେପନ୍ତି ତୁରଙ୍ଗମ ନ ଶ୍ୟେନପକ୍ଷୀ ପ୍ରାୟ ।
ଦେବଦତ୍ତ ଶଙ୍ଖେ ନାଦ କଲେ ସବ୍ୟସାଚୀ
ଗାଣ୍ଡୀବ ଧନୁରେ ଗୁଣ ଦେଇଣ ଆନନ୍ଦ ।
ପ୍ରତିଜ୍ଞା ସାମରଥ ସେ ପାଣ୍ଡବ କପାଟୀ
ଅଳ୍ପ ସୈନ୍ୟଙ୍କୁ ଭରଦ ବହୁସୈନ୍ୟ କୋଟି ।
ଶ୍ୱେତ ଗୋକ୍ଷୀର ଆଦି ଯେ ଏହି ସ୍ୱର ହୟ
ଉଡ଼ନ୍ତି ଗଗନେ ଯେହ୍ନେ ଶ୍ୟେନପକ୍ଷୀ ପ୍ରାୟ ।
ଆସ୍ଥାନେ ଥାଇ ଦେଖଇ ସେ ଦରଦସେନ
ସୁରସାହି ମନ୍ତ୍ରୀକି ସେ ପୁଚ୍ଛଇ ବଚନ ।
ଆହେ ମନ୍ତ୍ରୀ ରଥ ଏକ ଆସେ ଅନ୍ତରୀକ୍ଷେ
ଗଜ ଅଶ୍ୱ ସେନ୍ୟ ସଖା ନାହିଁ ତାର ପାଖେ
ରଜା ଆଗେ ଜଣାଇଲା ମନ୍ତ୍ରୀ ସୁରସାହି
ହରିକୃଷ୍ଣ ଅର୍ଜୁନ ଅଟଇଟି ଏହି ।
ବାସବ ନନ୍ଦନ ରଥେ ମାତଳି ବାହିନୀ
ସ୍ୱର ଅଶ୍ୱେ ପାଉନ୍ତି ଯେ ଭ୍ରମି ପୁର ତିନି ।
ମନ୍ତ୍ରୀବାକ୍ୟେ ସେ ଦରଦସେନ ମହାରଜ
ସୁନ୍ଦର ଦେଖି ଚଢ଼ିଲା ସେହୁ ଏକ ଗଜ ।
ତା ଉପରେ ରଖିଲାକ ଅନେକ ଆୟୁଧ
ରଣେ ନିର୍ଭୟ ନ ଘୁଞ୍ଚେ କରେ ବହୁ ଯୁଦ୍ଧ ।
ଦକ୍ଷିଣ କରେ ପରଶୁ ଖଡ୍ଗ ବାମକରେ
ଅନ୍ଧକ ବଧେ ଯେସନେ ହେଲେ କାଶୀଶ୍ୱରେ
ଲୁହାର ଲକ୍ଷେକ ଶର ତୂଣେ ଅଛି କଷି
ସେ ଶର ଗୁଡ଼ିକ ମୁନ ଜକ ଜକ ହସି ।
ଗଦା ମୁଦ୍‌ଗର ଧନୁ ଅସି କୁନ୍ତ ଶର
ବିଜୟ ଦରଦସେନ ହସ୍ତୀର ପିଠର ।
ସାର ତୂର ମର୍ଦ୍ଦଳ ଯେ ଟମକ ହିଁ ବାଜେ
ରେ ରେକାର ଶବ୍ଦ କରି ରଜା କଲା ବଜେ ।

ତିନ ସାଗର ରଥ ଦ୍ୱିଷୋଳ କ୍ଷୌଣୀ ନାଗ
ପଞ୍ଚଷଠିଶତ ଅଛୁ ଶ୍ୱେଖ୍ଆର ତୁରଙ୍ଗ ।
ଆଲଟ ପାଖର ଛତ୍ର କେଖ୍ମ ଝିଲ ଛତା
ଆକାଶେ ଅଦୃଶ୍ୟ ହେଲେ ସବିତା ଦେବତା ।
ରଜାର ଆଜ୍ଞା ପାଇଣ ଧାଇଁଲେ ତା ଦଳ
ମୁଖଗୋଳ ଶବଦରେ କମ୍ପେ ଭୂମଣ୍ଡଳ ।
ତାଳହାକ ଉଠିଲା ଯେ ଦୁଇଦଳ ସୈନ
ବାହନ୍ତ ନାରାଚ ସର୍ବେ ବାୟୁବେଗ ଘେନ ।
ଭୟଙ୍କର ଗରଜନ ଘଣ୍ଟି ର ଶବଦେ
ମଣ୍ଡି ଉଚ୍ଛୁଳିଲା କଥା ନ ଶୁଭିଲା ନାଦେ ।
ବରଦ ସୈନ୍ୟ ଆସନ୍ତେ ପାର୍ଥ ସୈନ୍ୟ ଉଠି
ଦୁଇଦଳଙ୍କର ସୈନ୍ୟ ହେଲେ ଭେଟାଭେଟି ।
ସର୍ବେ ସ୍ୱର ଅଲବ୍ରତ ପାର୍ଥର ସଇନ
ବରଦ ବେଢ଼ିଲ ତିଂଶ କ୍ଷୌଣୀ ବଳ ଘେନ ।
ସମୁଦ୍ର ମଧ୍ୟେ ପଶନ୍ତ ଯେସନ୍ତେ ମୀନଗଣ
ସେହିରୂପେ ଦେଖାଗଲେ ପାର୍ଥଙ୍କର ସୈନ୍ୟ
ବହୁ ସୈନ୍ୟ ଦେଖି ପାର୍ଥ ସୈନ୍ୟ ଗଲେ ଲୁଚି
ତା ଦେଖି ଅର୍ଜୁନଙ୍କର ନ ସ୍ଫୁରିଲା କଛୁ ।
ସେନ୍ୟଙ୍କ ଏପରି ସ୍ଥିତି ଦେଖିଣ ବିଜୟୀ
ସେମାନଙ୍କୁ ବୋଧଦେଲେ ଭୟ କରନାହିଁ ।
ତୋଣ କଷଣିରୁ କାଢ଼ି ଶର ତୀକ୍ଷ୍ଣମୁନା
ବାହନ୍ତେ ସେ ନିକଳିଲା ସେନାଙ୍କର ସେହ୍ନା ।
ଗିରିବର ଫୁଟିଯାଏ ଯାର ଶରଘାଏ
ତା ଶରକୁ କେତେମାନ ରକ୍ଷ ସେନାପତ୍ୟେ ।
ପାର୍ଥେ ବେଢ଼ିଲେ ବତିଶ ମହାଭୂତ ରଥୀ
ଷକର୍ମ ଅର୍ଜୁନ ଏକା ଜାଣେ ଆଠ ମନ୍ତ୍ର ।
ବରଦସେନର ସୈନ୍ୟ ସସ୍ତ୍ର ସସ୍ତ୍ର ବାଣ
ଦୁରଆଡ଼େ ଯେତେକର କଲେ ବରଷଣ ।
ସହସ୍ର ନାରାଚ ବାନ୍ଧି ପାର୍ଥ କୋପାନଳେ
ମନଭେଦକ ଧନୁରେ ଯୋଚି କୁତୂହଳେ ।
ଆଜ୍ଞାଦେଲେ ସେ ଶରକୁ ବେଗେ ତୁମ୍ଭ ଯିବୁ
ବରଦସେନର ସୈନ୍ୟ ବିନାଶ କରିବୁ ।
କୁତୂହଳେ ଯୁଦ୍ଧକୁ ମୋ ବେଳ ଅଛି କାହିଁ
ନନ୍ଦନରେ ନ ଗଲେ ନ ବର୍ତ୍ତିବ ମୁହିଁ ।
ଅର୍ଜୁନଙ୍କ ଆଜ୍ଞାରେ ସେ ଶର ମନଭେଦୀ
କାଳକ୍ଷିଉଣୀ ବଳ ସବୁ ହୃଦେ ଭେଦ ।

ସେ ଶର ଭେଦନ୍ତେ ଯାଇଁ ସୈନ୍ୟଙ୍କର ଦେହେ
ପଡ଼ିଲେ ସଇନଗଣ ବ୍ରହ୍ମଶର ଘାଏ ।
ପ୍ରବଳ ବତାସେ ଯଥା ଲୋଟେ ରମ୍ଭାବନ
ତିନ ଯୋଜନ ମାଡ଼ିଣ ପଡ଼ିଲେ ତା ସୈନ୍ୟ ।
ପଡ଼ନ୍ତେ ସକଳ ସୈନ୍ୟ ହୋଇଲେ ନିହତ
ତା ଦେଖି କୋପେ ବରଦସେନ ନରନାଥ ।
ସହସ୍ରେ ଶର ପୂରାଇ ଧରି ଲୋହ ଧନୁ
ଅର୍ଜୁନଙ୍କୁ ବାହିଲା ସେ ଅର୍କସ୍ୱଜ ସ୍ୱନୁ ।
ପାର୍ଥ କୋପେ ବରଦକୁ ବିନ୍ଧି ପାଞ୍ଚଶର
ତା ଶର ଧନୁ ରଥକୁ କଲେ ଶତେଚୂର ।
ରଥ ଭଙ୍ଗନ୍ତେ ରାଜନ ହେଲା ପାଦଗତ
ଧାତକାରେ ଆରୋହିଲା ଏକ ମତ୍ତହସ୍ତୀ ।
ବଜ୍ର ପରିଘ ତୁଲାଇ ହସ୍ତୀକି ଧୂଆଇଁ
ପ୍ରହାର କରିଲା ରାଜା ପାର୍ଥ ରଥେ ନେଇ ।
ବାହିଲ ଶର ପେଷିଣ ହିଂସି ବନମାଳୀ
ହସ୍ତୀ କୁମ୍ଭସ୍ଥଳେ ପଶି ସେ ଆସେ ନିକଳି ।
ସେ ଆଘାତେ ମହାନାଗ ପଡ଼ିଲା ଗରଜି
ପୁଣି ମହାକୋପେ ରାଜା ଚଢ଼ି ବେଗେ ବାଜି ।
ତାକୁ ଧୂଆଇଁଲେ ବେଗେ ବସି ତାର ପିଠି
ପାର୍ଥକୁ ମାଇଲା ନବନଶିକୁନ୍ତ ଯାଠି
ମାତଳି ସାରଥି ରଥ ନେଲାକ ବଞ୍ଚାଇ
ପାଶୁପତ ନାରାଚକୁ ବାହିଲେ ବିଜୟୀ ।
ସେ ଶର ପଡ଼ନ୍ତେ ଅଶ୍ୱ ହେଲା ବେନି ଖଣ୍ଡ
ଗୁଣଘୋଷ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ।
ପାଦଗତିରେ ପଳାଏ ସେ ବରଦରାୟ
ପଛଆଡ଼ୁ ଗୋଡ଼ାଇଲେ ବୀର ଧନଞ୍ଜୟ ।
ଏତେକ ଆରମ୍ଭ କର୍ପା କରୁଛରେ ବରଦ
କାଳେ ପୁଣି ତୁମ୍ଭ ନାଶ ହେଲୁ ଆରେ ମନ୍ଦ ।
ବହମକେଶରୀ ଆଗୁ ପଳାଇ କି ଯିବୁ
ନସତ ହେଲ ବୋଲିଣ କହ ତୁ ବର୍ତ୍ତିବୁ ।
କମ୍ପାଇ ରଥ ବାହିଲା ମାତଳି ସାରଥି
ପାର୍ଥ ବୋଲେ ନଜଧର୍ମ ହେବ ବିନଶ୍ୟତି ।
ବରଦସେନ ପଳାଇ ପଶେ ଶଙ୍ଖନଗ୍ରେ
ଦୂତ ଦେଖି ଜଣାଇଲେ ଜମାଗୋଷ୍ଠୁ ଆଗେ ।
ସ୍ୱାମି ବେଢ଼ିଥିଲେ ଆମ୍ଭ ରାଜ୍ୟ ଯେ ବରଦ
ଅଛି ତେ ଯୋଦ୍ଧାଏ ତାର ତେଜସ୍ ପ୍ରମାଦ ।

ସେନ୍ତ ଏକା ରଥୀ ତେଜ ଶର ଜାଲ ବୃଷ୍ଟି
ହାରଣି କ୍ଷତ୍ରଣୀ ବଳ ସର୍ବେ ଗଲେ ଲେଉଟି ।
ଏକ ନରପତି ତହୁଁ ପଳାଇ ଆସିଣ
ଆମ୍ଭର ରାଜ୍ୟେ ପଶିଲା ନେଇ ସେ ଶରଣ ।
ଜମାଗୋଷ୍ଠ ବୋଲେ ଯେବେ ଦରଦସେନଙ୍କୁ
ଛପତ୍ତି ପଡ଼ିଲା ଆଣ ଗୌରବେ ତାହାଙ୍କୁ ।
ଜମାଗୋଷ୍ଠ ତେଜେ କରଅଛଇ ଜଗତ
ସନ୍ନିଧେ ପ୍ରବେଶ ହେଲେ ଦରଦ ନୃପତି ।
ଅସ୍ଥାନୁ ଓହ୍ଲାଇକରି ରାଜା ଜମାଗୋଷ୍ଠ
ପ୍ରଣାମ କଲା ଦରଦସେନ ପାଦପୃଷ୍ଠ ।
କୋଳାଗତ କଲା ତହୁଁ ସେ ଦରଦସେନ
ଅନ୍ତଃପୁରେ ବିଜେକଲେ ରାଜା ଦେନିଜଣ ।
ବହୁ ବିକଳେ କହଇ ଦରଦ ନୃପତି
ଅକାରଣେ ମରାଇଲା ରଥୀ ଯେ ପଦାତି ।
ଏ ଭବମଣ୍ଡଳେ ତାର ଅସଂଖ୍ୟ ମହିମା
ପ୍ରତ୍ୟକ୍ଷେ ନାରାୟଣ କି ଅଟେ ବେଦବ୍ରହ୍ମା ।
ଅସ୍ତ୍ର ଶସ୍ତ୍ର ତା ଶରୀରେ ନ ପାରଇ ଭେଦ
ଅଲେଖ ପୁରୁଷ ସେନ୍ତ ବୃଥା ହେଲା ଯୁଦ୍ଧ ।
ଏତେ ବଡ଼ ରାଜ୍ୟ ମୋର କ୍ଷଣେ ନାଶଗଲା
ଅବଶେଷେ ଦେଖ ମୋର ଏ ଦଶା ଘଟିଲା ।
ଜଗତରେ ବସି କଥା ହ୍ରନ୍ତ ହେନ ରାୟୁ
ଋଷ୍ୟଧ୍ୱଜ ପର୍ବତରେ ବିଜେ ଧନଞ୍ଜୟ ।
ଜମାଗୋଷ୍ଠ ହକାରିଲା ଏକାନ୍ତେ ମ୍ଲେଚ୍ଛ
ଆରେ ଦେବ କି ଦାନବ ବୁଝ ଭ୍ରମେ ଯାଇ
ରଥ ଗଜ ଅଶ୍ୱ ଆଉ କେତେକ ପଦାତି
ସଂଖ୍ୟା କରିଣ କହିବ ମୋତେ ଜଣାଗତି ।
ରାଜାର ଆଜ୍ଞାରେ ଦୂତେ ଚଳିଲେ ଗୋପନେ
ରାତ୍ରକାଳେ ପଶିଲେ ସେ ଋଷ୍ୟକା କାନନେ ।
ଗୁପତେ ମିଳିଲେ ଯାଇ ଅର୍ଜୁନର ଥାଟେ
କଳିଲେ ତାଙ୍କର ସୈନ୍ୟ ବୁଲିଣ କପଟେ ।
ପାର୍ଥ ଆଜ୍ଞା ଦେଲେ ଦୂତମାନଙ୍କ ହକାର
ଶ୍ରୀମୁଖ ଘେନିଣ ଯାଅ ଶଙ୍ଖନଗ୍ରପୁରୀ ।
କହିବୁ ବରବେ ସେହି ଜମାଗୋଷ୍ଠ ରାୟୁ
ବନ୍ଧନରେ ଆସ ବୃନ୍ଦେ ଆଜ୍ଞା ଧନଞ୍ଜୟ ।
ଯେ ଆଜ୍ଞା କହିଣ ଦୂତେ ହୋଇଲେ ବିଦାୟ
ହାଲୁ ହାଲୁ ଚଢ଼ିଲେ ସେ ବେଗଗାମୀ ହୟ ।

ଶ୍ରୀମୁଖ ଘେନିଣ ବେଗେ ଗଲେ ଦୂତପତି
ହିଡ଼ିକରି କୁରଙ୍ଗମେ ଶୂନ୍ୟେ ଉଡ଼ିଯାନ୍ତି ।
ଜମାଗୋଷ୍ଠ ରାଜା ପୁର ଅଭିମୁଖେ ଗଲେ
ନଗ୍ରଠାରେ ଅଶ୍ୱରୁ ସେ ଧୀରେ ଓହ୍ଲାଇଲେ
ଦଇବଙ୍କୁ ଦେଖି ଜମାଗୋଷ୍ଠ ନରପତି
ଜଗତରେ ବସି କଥା ବାରତା ବୁଝନ୍ତି ।
ନଗରେ ଥାଇକରି ସେ ଦଇବ ଦେଖି
ବୋଲେ ଏ ଦୂତେ ଆମନ୍ତ୍ର ଦେଖ ଯେ ଜାଣିକି
ଏ ସମୟେ ତହିଁ ଯାଇଁ ପ୍ରବେଶିଲେ ଦୂତେ
ଦେଖିଣ ଆଶ୍ଚର୍ଯ୍ୟ ହେଲା ଜମାଗୋଷ୍ଠ ଚିତ୍ତେ
ଅଶ୍ୱରୁ ଓହ୍ଲାଇ ତହିଁ ବୋଇଲେ ସେ ଦୂତ
ହେ ଜମାଗୋଷ୍ଠ ପାଣ୍ଡବ ପାର୍ଥ ସେନ ପତି ।
ମନ୍ତ୍ରିବର ମହତର ଶୁଣ ଦୂତେ ବୋଲି
କାହାର ଶ୍ରୀମୁଖ ବୋଲି ରାଜାଙ୍କ ପଚାରି ।
ଦୂତଗଣ ବୋଇଲେକ ଶୁଣ ନରବର
ଅମରାଧିନାଥ ଯେହ୍ନେ ଦେବ ପୁରନ୍ଦର ।
ତାହାଙ୍କ ପୁତ୍ର ଅର୍ଜୁନ ବିଜୟ ଏଥିକି
ଖାଣ୍ଡବ ବନ ଭିକ୍ଷା ଦେଲେ ସେ ଅଗ୍ନିଙ୍କି ।
ଅଛନ୍ତି ସୋମବଂଶରେ ଏହି ଯେ ପ୍ରଧାନ
ଶରେ ସାଗର ବାନ୍ଧିଲେ ସେତୁର ସମାନ ।
ଧନୁ ତରପ ଟଙ୍କିଲେ କର ଯେହ୍ନେ ବୃଷ୍ଟି
ସାତବଂଶ ଯାଦବଙ୍କୁ ରଣେ ଛନ୍ତି ସାଧି ।
ଜଗେ କୃଷ୍ଣ ଯା ଶ୍ୱଶୁରଙ୍କ ଚରଣେ ପ୍ରଣମି
ଯେହ୍ନେ ଧର୍ମ ନିରଞ୍ଜନ ଯୁଧିଷ୍ଠିର ସ୍ୱାମୀ ।
ତାଙ୍କର ସାନୁଜ ଅଟେ ଗାଣ୍ଡିବର ପାଣି
ସେ ଭୀମଙ୍କ ଅନୁଜ ଏ ପାର୍ଥ ବୀରମଣି ।
ସୋମବଂଶ ଅଧିପତି ପଣ୍ଡୁଙ୍କର କାର୍ଯ୍ୟେ
ଉତ୍ତର ଦିଗକୁ ଏହି କରିଛନ୍ତି ବିଜେ ।
ସୁଲକ୍ଷସ୍ତ୍ର ରାଜାଙ୍କୁ ସାଧିବେ ଏ ଜଣେ
ଦୃଷ୍ଟହେଲେ ନ ବର୍ତ୍ତିବେ କେହି ରାଜଗଣେ ।
କହନ୍ତି ଶ୍ରୀମୁଖ ଘେନ ଶଙ୍ଖ ଅଧିକାରୀ
ନିଜସ୍ଥଳ କରି ଦେନ ପାଣ୍ଡବାକୁ ପାରି ।
ଶୁଣିଣ କୋପ କରିଲା ନୃପ ଜମାଗୋଷ୍ଠ
ଉତ୍ତର କୋଶଳେ ରାଜା ମୁହିଁ ମହାଶ୍ରେଷ୍ଠ ।
ମୁଁ ଆନେ ଭଏ ଶ୍ରୀମୁଖ ଉତ୍ତର ଦିଗରେ
ଏ ଦିଗେ କେ ନାହିଁ ମୋତେ ଜିଣିବ ସମରେ

ଭଲୁଁ ଭଲୁଁ ନରପତି ବୋଲେ ଅତି ରାଗେ
କେଉଁ ପାମର ପ୍ରତିଜ୍ଞା କରିବ ମୋ ଆଗେ ।
ଆସ୍ଫଳନା ମୋ ଶତ୍ରୁଙ୍କୁ ସେହୁ କେତେ ବାନ୍ତି
ଏଥରେ ଶ୍ରୀମୁଖ ତାର ଏଥୁ ବାହୁଡ଼ାଇ ।
ଅଧର କମ୍ପାଇ ରାଜା କହେ ଅତି କୋପେ
ଲତାର କୃପାଣ ଏକ ଧଇଲା ପ୍ରତାପେ ।
ଯେତେ ପ୍ରତିଜ୍ଞା ମୋ ଆଗେ କହିଲ ଦଖଣ୍ଡ
ଦୂତ ନୋହିଥିଲେ ଆଜ କାଟିଥାନ୍ତି ମୁଣ୍ଡ ।
ମୋହର ଶତ୍ରୁର ତୁମ୍ଭେ ପଠାଇଣ ଯା ଯା
କହ ସେ ସମର ଆସି ବୋଲେ ମହାରାଜା ।
ରାଜାର ଆଗେ କହଇ କାଳଞ୍ଜନ ଦୂତ
ସଞ୍ଚିତ ସମ୍ପଦ ତୋର ଏବେ ହେବ ହତ ।
ଭାଗ୍ୟକାଳେ ପ୍ରାଣୀଙ୍କ ଯେ ହୋଇଟେ ମନବୃଦ୍ଧି
କଞ୍ଚିତ ଦୋଷରେ ଯିବ ତୋର ଏତେ ଆଧି ।
ଏପରି ପ୍ରତିଜ୍ଞା କରିଥିଲା ଯେ ଦରବ
କାଞ୍ଚିତ ବୋଷେ ନାଶିଲା ତା କେତେ ସମ୍ପଦ ।
ପ୍ରତିଜ୍ଞା ସାର୍ଥକ ସେହି କଥା ଜଗତ୍କେତି
ପର ତମକ ପଟ୍ଟେ ଯାଉ ନାମଗୋଟି ।
ଦୁର୍ଭାର ପ୍ରତିଜ୍ଞା ତାର ଶୁଣି ନୃପମଣି
ପାଠଙ୍କ କହିଲା ସ୍ତୁଙ୍କୁ ପଟାଅରେ ହାଣି ।
ରାଜାଙ୍କର ଆଜ୍ଞା ପାଇ ବେଗେ କଟୁଆଳ
ଧାଇଁଭାରେ ଧଇଲା ସେ ଦୂତଙ୍କର ବାଳ ।
ନଗରୁ ବାହାର କରି ଦେଲେ ବାଳ ଧରି
ହସ୍ତେ ଘେନିଗଲେ ଏକ ସୁତୀକ୍ଷ୍ଣ କଟାରି ।
ଅନନ୍ତ ଯେ ଅବଧୂତ ମଧୁ ମଧୁବନ୍ତ
ସୁରନ ଅଞ୍ଜନକେତୁ ଏହି ସପ୍ତଦୂତ ।
ଏ ସାତ ଦୂତଙ୍କୁ ନଗ ବାହାରକୁ ଆଣି
ରାଜା ଆଜ୍ଞା ପ୍ରମାଣରେ ପକାଇଲେ ହାଣି ।
ଗୁପ୍ତଚରେ ଯାଇଥିଲା ଅର୍ଜୁନ ଥାଟକୁ
ବାର୍ତ୍ତାଦେଲେ ଆସି ଜମାଗୋଷ୍ଠ ରାଜନକୁ ।
ସ୍ୱାମୀ ସହସ୍ରେକ ରଥ ଶୂରସଙ୍ଗ ରଥୀ
ପାଞ୍ଚ ଅଇରାବତ ଅଶ୍ୱ ନ ଲକ୍ଷ ପଦାତି ।
ସାର ଚୂଳ ଯେ ବାଉଣ୍ଡି ଟମକ ନିଶାଣ
ପାଟଳନ ଡଉଣ୍ଡି ଯେ ବେନଲକ୍ଷ ଜାଣ ।
ସ୍ଥିର କହନ୍ତେ ଲେଖିଲା ରାଜା ଭୂମିତଳେ
ନାମଲେଖନ କରିଲା ଅର୍ଜୁନ ସନ୍ଧିତେ ।

କାଳନେଇ ଯିବ ଘେନି ପୋତ୍ର ଚଣ୍ଡଧାରୀ
ଚଳାଶ୍ୱ ପଦାତି ଯୋଦ୍ଧା ଗଲେ ତେଣେ ମରି
ଏକା ରଥକେ ରହିଲା ସାର ଫାଲ୍‌ଗୁନ
ପାର୍ଥର ଦେଖନ୍ତେ ଛୁଟି ପଡ଼ିଲେ ସଇନ ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ସବ୍ୟସାଚୀ
ସ୍ତମ୍ଭୀଭୂତେ ରହିଲେ ସେ ନ ସ୍ଫୁରିଲା କଛୁ ।
ସୁମରିଲେ ମନେ ପାର୍ଥ ଭୁଜସୀର ନାହା
କେବଣ ଦୋଷରୁ ସ୍ୱାମୀ ହୋଇଲେ ଅସାହା
ସବୁକାଳେ ରକ୍ଷା କରୁ ହରି ତୁ ଆମ୍ଭଙ୍କୁ
ଫସାରେ ବୋଲନ୍ତି ହରି ସାହା ପାଣ୍ଡବଙ୍କୁ ।
ଏତେ ବଡ଼ ଆଟ ମୋର ହେଲା ବନଶ୍ୟନ୍ତ
କପରି ରାଜାଗଣଙ୍କୁ ଯିବ ମୁଁ ହମନ୍ତି ।
ଶୋକକରି ବୋଲଇ ସେ ସୁଭଦ୍ରାର ନାହା
ଧିକ ପ୍ରତିଜ୍ଞା ମୋହର ଧିକ ବେନବାହା ।
କାନ୍ଦନ୍ତି ଅର୍ଜୁନଙ୍କର ସୈନ୍ୟଙ୍କର ହିତେ
ବାରୁ ଜଗନ୍ନାଥ ଏହି ଦଶା ଦେଲ ମୋତେ ।
ହେସୈନ୍ୟସୋଭରମୋରଦୁଃଖେତୁମ୍ଭେଦୁଃଖୀ
ଶରୀର ନ ତୁଟେ କପାଁ ତୁମ୍ଭ ଦଶା ଦେଖି ।
ସ୍ୱଭାବ ସୁନ୍ଦର ତୁମ୍ଭେ କ୍ଷତ୍ରୀ ଗୁଣବନ୍ତ
ବିନାଯୁଦ୍ଧେ ନାଶଗଲ ଅଥୟ ମୋ ଚିତ୍ତ ।
ମୋ ସଙ୍ଗେ ଦୁର୍ଗମ ଗିରି କାନନ ବୁଲିଣ
ମୋହପାଇଁକି ଲଭିଲ ତୁମ୍ଭେ ଏ କଷଣ ।
ତୁମ୍ଭପରି ବଳବନ୍ତ ନାହିଁ ତିନିପୁର
ତୁମ୍ଭେମାନେ ଏକେ ଏକେ ପୃଥ୍ୱୀ ଜିଣିପାର ।
ଯେ କଯୁ ବିଜୟୁ ଜୟସେନ ଚନ୍ଦ୍ରଧ୍ୱଜ
ହସ୍ତିନା ରାଜ୍ୟେ କରିଲେ ବିଚିତ୍ର ଐଶ୍ୱର୍ଯ୍ୟ ।
ବଳବନ୍ତ କରି ହରି ଦେଲେ ଯୋଦ୍ଧା ଗୁରି
ମୋ ହୀନକର୍ମକୁ ତୁମ୍ଭେ ସର୍ବେ ଗଲ ମରି ।
ଧିକ ଧିକ ମୁହିଁ ଷତ୍ରିକୁଳେ ହେଲି ଜନ୍ମ
ଉପହାସ କରିବେ ଯେ କଉରବ ରାଜ ।
ହସ୍ତିନା ରାଜ୍ୟେ ବୁହିଁବ ମୁହିଁ କାହା ମୁଖ
ଧିକ ମୋ ଜୀବନ ଥାଇ ହେବ କେଉଁ ସୁଖ ।
ସୈନ୍ୟଙ୍କର ଗୁଣମାନ ସୁମରି କିରୀଟୀ
ରଥ ତେଜି କାନ୍ଦଇ ସେ ଭୂମିପରେ ଲୋଟି ।
ଅମନାତ୍ୟ ସଖା ସୈନ୍ୟ ସର୍ବ ହତ ଦେଖି
କେଣିକି ଯିବ ମୁଁ ଏକା ହୋଇଲି ନିର୍ମକ୍ଷୀ ।

ହେ ରେ ଜମାଗୋଷ୍ଟ ତୋର ମନ୍ତ୍ରମାଟି ଧନ୍ୟ
ମୋତେ ଯହିଁ ଏକା ରଖି ନାଶିଲୁ ମୋ ସୈନ୍ୟ
ମାନହାନେ ବଞ୍ଚିବାର ମୋର କସ କାର୍ଯ୍ୟ
କ୍ଷତ୍ରିକୁଳକୁ ହୋଇଲା ଏହା ବଡ଼ଲାଜ ।
ମୋର ନାମ ନ ପୁଚ୍ଛିଲୁ କପଟୀ ଜମାଗୋଷ୍ଟ
ଜୀବନ ଥିବା ପର୍ଯ୍ୟନ୍ତେ ଦେଲୁ ମହାକଷ୍ଟ ।
ଯାଇ କସ କରିବି ମୁଁ ସଖାଙ୍କ ଅଗ୍ରତେ
ନଷ୍ଟପ୍ରାୟ ମୋର ଶରୀର ନାଶିବି ଏଠାରେ ।
ଦଶଦଗ ଅନ୍ଧକାର ମୋତେ ଦିଶୁଅଛି
ଅର୍ଜୁନ ଆତ୍ମା ମୋହର କପାଳଁ ଉଡ଼ୁଛି ।
ଏତେକ ଚିନ୍ତିଲ ପାର୍ଥ ମହାଦୁଃଖେ ବସି
ସୁମରଇ ମନ ମଧ୍ୟେ ଦେବ ହୃଷୀକେଶୀ ।
ଭକତ ବତ୍ସଳ ନାଥ ଦୟାର ସାଗର
ଦୁଃସହ ସଙ୍କଟୁ ମୋତେ ଉଦ୍ଧରଣ ଧର ।
ନୀଳେନ୍ଦୀବର ଲୋଚନ ହେ ମଧୁସୂଦନ
ତବପାଦେ ନିବେଶିଲ ମୋର ତନୁମନ ।
ସବୁବେଳେ ତୁମ୍ଭେ ମୋତେ ଥାଅ ସାହାପକ୍ଷ
ବିପଦକାଳେ ଜାଣିଣ ହେଲ କି ବିପକ୍ଷ ।
ଜଗତଜୀବନ ନାଥ ଚିତ୍ସୁଖବିଳାସୀ
ଆସି ପ୍ରଭୁ ଏ ସଙ୍କଟୁ କର ମୋତେ ପାର ।
ବଚନେ ଏହା ଚିନ୍ତନ୍ତେ ପାର୍ଥ ହୃଦଗତେ
ଆସନ କମ୍ପେ ହରିଙ୍କ ନନ୍ଦନ ବନସ୍ତେ ।
ପରବାଫଳ ବୁହାଇ ନାଳତେ ପୁରାଇ
ଗଙ୍ଗାନଦୀରେ ସ୍ନେ ଜାଳ ବଅନ୍ତ ଉଳାଇ ।
ଜାଣି ପାରିଲେ ଶ୍ରୀହରି ଅବସ୍ଥା ପାର୍ଥର
ମନଦୁଃଖେ ପ୍ରାଣତ୍ୟାଗ କରିବ ନିକର ।
ଖଗବର ପୃଷ୍ଠେ ବିଜେକରି ମଧୁହାର
ଅର୍ଜୁନ ପାଶକୁ ଗଲେ ଶଙ୍ଖଚକ୍ରଧାରୀ ।
ଆକାଶ ପଥରେ ବେଗ ବହନ ଚଳିଲେ
ଅର୍ଜୁନ ସମ୍ମୁଖେ ଯାଇ ପ୍ରବେଶ ହୋଇଲେ ।
ଜଗନ୍ନାଥଙ୍କ ଚରଣ ଅର୍ଜୁନ ବନ୍ଦିଲେ
ସୈନ୍ୟଙ୍କ ଅବସ୍ଥା କହି ବଚନେ କାନ୍ଦିଲେ ।
ଗୋବିନ୍ଦ ବୋଇଲେ ପାର୍ଥ ହେଲୁ କି ଅଜ୍ଞାନ
ସଂଗ୍ରାମେ ପଶିଣ ଯେବେ ନାଶଗଲେ ସୈନ୍ୟ
ହାରିବା ଜିଣିବା ଅଟେ କ୍ଷତ୍ରୀଙ୍କ ଧରମ
ସଂଗ୍ରାମ କଥାପାଇଁକି କରୁଛୁ କାରୁଣ୍ୟ ।

ରଣେ ପରାଜୟ କିବା ପ୍ରାପ୍ତ ହୁଏ ଜୟ
ଚିନ୍ତିବ ଭ୍ରମନା କହିଁ ହେଉ ଧନଞ୍ଜୟ ।
ଆପେ ଭଲ ଥିଲେ ଜାଣ ସକଳ ମଙ୍ଗଳ
ଜ୍ଞାନୀ ହୋଇ ଅଜ୍ଞାନୀଙ୍କ ସମ କରୁ ଖଳ ।
କରପଦ୍ମ ଯୋଡ଼ିକରି କହେ ଫାଲଗୁନ
ସ୍ୱାମି ସଂଗ୍ରାମେ ପଡ଼ିଲେ ମୋହର ସଇନ ।
ବିନାଯୁଦ୍ଧେ ନାଶଗଲେ ମୋର ସୈନ୍ୟଗଣ
ଏହା ଦେଖି ନ ସହଇ ପ୍ରଭୁ ମୋର ପ୍ରାଣ ।
ଶରୀର ମୋର ଦହୁଛି ଅତସ୍ତର ଧର୍ମେ
ଏଥିର ତତ୍ତ୍ୱ କହ ପୁରୁଷ ଉତ୍ତମେ ।
ଗୋବିନ୍ଦ ବୋଇଲେ ଜମାଗୋଷ୍ଟ ଯେଉଁ ରଜା
ଅନେକକାଳୁଁ ଯମକୁ ସେହି କରେ ପୂଜା ।
କରେ ନାଗଚକ୍ର ଅଛି ସେ ନରବରର
ପୁଣି ତାର ଚନ୍ଦ୍ରଚକ୍ର ଅଛି ତା କରର ।
ବକ୍ଷକରେ ଲିହ ଯେବେ ନାମକରେ ଯୋଛି
ଛିଡ଼ିବେ ସକଳ ପ୍ରାଣୀ ଜାଣ ହେ ବନସ୍ରି ।
ମାତଳି ସାରଥି ମଞ୍ଜରିକୁ ଅଦୃଶ୍ୟ
ତେଣୁକରି ରକ୍ଷା ହେଲ ନୋହିଲ ବିନାଶ ।
ତୋ ନାମ ଲେଖି ପୋଛିଲା ଜାଣିଣ ଗୋଟିଏ
ଦଶନାମ ନ ଜାଣିଲା ଜମାଗୋଷ୍ଟ ରାଏ ।
ଦଶନାମଯାକ ଯେବେ ତୋର ଜାଣିଥାନ୍ତା
ତେବେ ତ ଅର୍ଜୁନ ତୋର ପ୍ରାଣ ନ ରହନ୍ତା ।
ଶଙ୍ଖ ଶ୍ୱେତ ଘୋଷୀର ଯେ ଆଉ କାମପାଳ
ଏ ଆଦି ଅଶ୍ୱ ଥିବାରୁ ନ ପୁରିଲା କାଳ ।
ବେନିକର ଯୋଡ଼ି କହେ ବୀର ଫାଲଗୁନ
ତୋ ଆଜ୍ଞାକାରୀ ହୋଇ ମୁଁ ହେଲି ମାନହୀନ
ରଜା ନ ମାରିବା ବୋଲି ଦେଇଥିଲ ଆଜ୍ଞା
ତୁମ୍ଭର ବଚନ ଲଙ୍ଘେ କରନ୍ତି ଅବଜ୍ଞା ।
ତେଣୁକରି ହାସ ଦେବ ଲାଗିଲକ ମୋତେ
ନୋହିଲେ କି ଜମାଗୋଷ୍ଟ ଥାନ୍ତା ଏ ପର୍ଯ୍ୟନ୍ତେ
ମାରିବ ଜମାଗୋଷ୍ଟକୁ ତୁମ୍ଭ ଆଗସର
ସ୍ୱର୍ଣ୍ଣରଜା ଗଡ଼ାଇବ ଥାଟ ସୈନ୍ୟକର ।
ପାର୍ଥ ବଚନେ କହନ୍ତି ଦେବ ଚକ୍ରପାଣି
ଅଜ୍ଞାନରେ କରିଥାନ୍ତି ଦୋଷ ନୃପମଣି ।
ଦୋଷ ଧରି ମାରୁ ଯେବେ ସର୍ବ ନରବର
ବ୍ରହ୍ମହତ୍ୟା ଦୋଷ ଦିନ କି ପଣ୍ଡୁ କୁମାର ।

ପୁଣି କହିଲେକ ଜମାଗୋଷ୍ଠ ଗୁଡ଼ କୋପ
ନୃପଙ୍କ ହୋଇ ମାରି ଶେଷେ ଲଭିବୁ ସନ୍ତାପ ।
ଯଦି ଦୋଷ କଲା ଜମାଗୋଷ୍ଠ ନରପତି
ରାଜସୂୟଯାଗ ଶେଷରେ ତାକୁ ଦେବା ଶାସ୍ତି ।
ଗୋଟିଏ ରାଜା ମାରିଲେ ଦୋଷକୁ ଡରିବ
ସର୍ବରାଜା ପଳାଇବେ ତୋତେ ଭୟ କରି ।
କାର୍ଯ୍ୟର ନିମନ୍ତେ ପିତା ସହିଲୁ ତୁ କ୍ଲେଶ
କାର୍ଯ୍ୟ ନ ଥିଲେ କପାଁ ତୁ ଆସନ୍ତୁ ଏ ଦେଶ
ସମସ୍ତେ ମୂର୍ଖ କହିବେ ତ ଅଟୁ ରେ ପଣ୍ଡିତ
କହିବେ ପୁଣ ରାଗୀ ହେଲେ ସରବ ସୁକୃତ ।
କ୍ଷଣେକ ବିଶ୍ରାମ କରି ତୁ ହେବା ରଜନୀ
ବଦନ ପ୍ରବେଶ ହୁଅ ରାଜାଗଣ ସେନି ।
ପଶ୍ଚିମ କୋଶଳ ବିଗୁ ବଳେ ନୃପଗଣ
ଯାଇଥିଲା ବୃକୋଦର କରି ନିମନ୍ତ୍ରଣ ।
ପଡ଼ିଲା ସୈନ୍ୟଙ୍କ ପାଇଁ କପାଁ ହେଉ ରାଗୀ
ପୃଥିବୀ ଘର ଉଶ୍ୱାସ କରିବା ନା ବେଗି ।
ଜମାଗୋଷ୍ଠ ରାଜାଠାରୁ କୋପ ଶାନ୍ତ କର
ମୋହର ଶପଥ ତୋତେ ରାଣ ଯୁଧିଷ୍ଠିର ।
ତୁ ବେଗେ ଯିବୁ ଯାଉଛୁ ଆମ୍ଭେ ବର୍ତ୍ତମାନ
ଦୁଃସହ କାର୍ଯ୍ୟେ ପଶିଲୁ ଆମ୍ଭେ ଛଅଜଣ ।
ଅର୍ଜୁନ ବୋଇଲେ ସ୍ୱାମୀ ମୁଁ କି ତା ନ ଜାଣେ
ରାଜସୂୟଯଜ୍ଞ କପରି ଶୁଣି ନାହିଁ କର୍ଣ୍ଣେ ।
ତୋର ପ୍ରସାଦେ ଆମ୍ଭଙ୍କୁ ଜଗତରେ ପୂଜା
ଅଇଲେ ଆମ୍ଭଙ୍କୁ ପ୍ରାପ୍ତ ହେଲୁ ବେଦରାଜା ।
ବହୁତର ଭଣ୍ଡାରଣ ଦେବ ଜଗନ୍ନାଥେ
ଖଗପୃଷ୍ଠେ ବସି ଗଲେ ଯେ ଦ୍ୱାରୁଣାବନ୍ତେ ।
ମାତଳକୁ ଡାକ କରି ବୋଲେ ଫାଲଗୁନ
ଜମାଗୋଷ୍ଠର ଗ୍ରାମକୁ ଚଳ ରଥ ଘେନ ।
ଅର୍ଜୁନଙ୍କ ଆଜ୍ଞାପାଇ ମାତଳ ସାରଥି
ଉଡ଼ାଇଲା ତୁରଙ୍ଗମ ପବନୁଁ ଝଟତି ।
ଆସ୍ଥାନେ ବଜେ କରିଛି ଜମାଗୋଷ୍ଠ ସ୍ୱସ୍ତେ
ଅର୍ଜୁନ ରଥ ଯାଇଣ ତହିଁ ଭେଟ ହୁଏ ।
ଅକସ୍ମାତେ ଭେଟିଲେକ ଯହୁଁ ପାର୍ଥ ରଥ
ଦେଖିକରି ଅତ୍ୟାଶ୍ଚର୍ଯ୍ୟ ହେଲା ନରନାଥ ।
ଅଦଭୁତେ ପାର୍ଥ ଦେଖି ଜମାଗୋଷ୍ଠ ସ୍ୱସ୍ତେ
ଆସ୍ଥାନ ତେଜି ପଳାଇ ଗଲା ଜୀବ ଭୟେ ।

ତୁମ୍ଭ ନକୁମ୍ଭ ତା ବେଳପୁତ୍ର ଥିଲେ ଜତ
ଶୀଘ୍ର ତାଙ୍କ କେଶ ଧରେ ବାସବ ସନ୍ତତ ।
ବେଳ ପୁତ୍ରଙ୍କର କେଶ ଧରି ବାମକରେ
କଟାରି ପ୍ରହାର କଲେ ଦୁହିଙ୍କ ଗଳାରେ ।
ବେଳପୁତ୍ର ପଡ଼ିଗଲେ ତହିଁ ଶିର ଛିଡ଼ି
ପଳାଉଁ ଆସ୍ଥାନୁ ରାଜା ପଡ଼େ ମୁହଁ ମାଡ଼ି ।
ରଥରୁ ଡେଇଁ ପଡ଼ିଲେ ବାସବ ନନ୍ଦନ
ଜମାଗୋଷ୍ଠର କେଶକୁ ଧଇଲେ ବହନ ।
ବାମ କେଶ ଧଇଲେ ସେ ରାଗେ ପରଚଣ୍ଡା
ଦକ୍ଷିଣ କରେ ଧଇଲେ ଯହୁଁ ତୀକ୍ଷ୍ଣ ଖଣ୍ଡା ।
ପ୍ରହାର କରିବାକାଳେ ମାତଳ ସତ୍ୱର
ରଥରୁ ଡେଇଁ ଧଇଲା ପାର୍ଥଙ୍କର କର ।
ବୋଇଲା ହେ ଅରଜୁନ କପାଁ କୋପ କର
ଶ୍ରୀକୃଷ୍ଣଙ୍କ ଆଜ୍ଞାକୁ ଯେ ମନେ ନ ସୁମର ।
ବିଶେଷେ ତୁମ୍ଭର ପିତା ପଣ୍ଡୁଙ୍କର କାର୍ଯ୍ୟ
ଅନେକ ଛଆଳ ଥିଲେ ପରା ବେଦରାଜ
ମାତଳ ବାକ୍ୟେ ଅର୍ଜୁନ ଶାନ୍ତକୁ ଭଜଲେ ।
ଜମାଗୋଷ୍ଠ କେଶ ଧରି ରଥରେ ଉଠିଲେ
ପାଟଡୋର ଘେନ ତାକୁ ବାନ୍ଧିଲେକ ରଥେ
ତ୍ରାସେ ପଳାଇଲେ ତାର ଯାନ ଯେ ଅମାତ୍ୟେ
ନାଶକର ବାମେ ଜମାଗୋଷ୍ଠର ମନ୍ତ୍ରୀଏ
ବୋଲେ ଆମ୍ଭେ ପଳାଇବା କି ନିମନ୍ତେ ଭୟେ
ପଳାନ୍ତେ ସୈନ୍ୟ ସକଳ ରାଜା ଗୁଡ଼କରି
ସର୍ବ ପାତ୍ରବର୍ଗ ତାଙ୍କ ଏକତ୍ରିତ୍ର କରି ।
ମନ୍ତ୍ରିବର ଭଣ୍ଡାରଇ ସମ୍ମାର୍ଜ୍ଜନା କରି
ଶୁଣ ସର୍ବେ ରାଜା ବନ୍ଦୀ ପଡ଼ିଲେ ଆମ୍ଭର ।
ଆମ୍ଭର ପଳାଇବାର କେବଣ କାରଣ
ଯେବେ ବନ୍ଦୀ ହୋଇଲେଣି ଆମ୍ଭର ରାଜନ ।
ବସ୍ତ୍ରାଭରଣ ଉପୁଜାଇ ପାରିଲେ ଉଦ୍ଧାରି
ନାହିଁ ତ କୋପେ ସକଳ ଦେବ ଶେଷକରି ।
ରାଜ୍ୟକୁ କାରଣ ରାଜାପୁତ୍ର ନାଶଗଲା
ଏତେ ବଡ଼ ରାଜା ହୋଇ ଆପେ ବନ୍ଦୀ ହେଲା
ମନ୍ତ୍ରୀର ବଚନ ମାନ ପାତ୍ରବର୍ଗଗଣ
ଗଳାରେ କୁଠାର ବନ୍ଧେ ଧରିଣ ତରଣ ।
ଦଶନଖ ମୁଖେ ଭରି ସମସ୍ତ ସଇନ
ଆହି ଆହି ବୋଲି ତହିଁ ସର୍ବେ କଲେ ଧ୍ୱନି

ଏ ରାଜା ଅଟେ ଜନକ ଭୁବନାଧିକାରୀ
ମୂର୍ଖପଣେ ନ ଜାଣିଲି ତୋତେ ଦ୍ରୋହକରି ।
ହେ ଦେବ ଜଗତେଶ୍ୱର ପରଲୋକ ବନ୍ଧୁ
ଏ ତିନିଭୁବନମଧ୍ୟେ ତୋ ମହିମା ସାଧୁ ।
ଶରଣପଞ୍ଜର ନାମ କ୍ଷତ୍ରୀ ଚୂଡ଼ାମଣି
ବହୁଦ୍ରୋହ କଲୁ ତୋତେ ଆମ୍ଭେ ମୂଢ଼ପ୍ରାଣୀ
କେବଣ ଦେଶର ତୁମ୍ଭେ ଅଟ ମହାତମା
ଆମ୍ଭର ସକଳ ଦୋଷ କର ତୁମ୍ଭେ କ୍ଷମା ।
ରେବନ୍ତ ସୈନ୍ୟ ଅଙ୍ଗୁଳି ଭରିକରି ମୁଖେ
ଶରଣ ଶରଣ ବୋଲି ଫୁକାରନ୍ତି ଦୁଃଖେ ।
ଏ ଦୋଷମାନ ଆମ୍ଭଙ୍କୁ ଦାନ ଦେବା ସ୍ୱାମି
ଆଉଯାକ ଅଶ୍ୱ ନେଇ ଶୁଣିଲେ ପ୍ରଣମି ।
ସୈନ୍ୟ କଷ୍ଟ ଦେଖି ପାର୍ଥ ତିଆରେ ମାତଳି
ଶରଣ ପଞ୍ଜର ତୁମ୍ଭ ଭକ୍ତେ ପ୍ରତିପାଳି ।
ରାଗ କରଣ କିପାଇଁ ଉହରୁ ମଉନେ
ଜନଙ୍କୁ କଷ୍ଟ ଦେବାକୁ ଖରୁଛୁ କି ମନେ ।
ସାରଥି ବଚନ ଶୁଣି ବୋଲେ ଧନଞ୍ଜୟ
ସୋମବଂଶ ଅଧିପତି ପାଣ୍ଡୁ ମହାଶୟ ।
ତାଙ୍କର ପୁତ୍ର ଯୁଧିଷ୍ଠି ଦେବ ନରପତି
ରାଜସୂୟଯାଗେ ତାଙ୍କର ବଳନ୍ତ ମତି ।
ଲକ୍ଷେ ରାଜା ନିମନ୍ତ୍ରଣ କରିବା ନିମନ୍ତେ
ଜରାସନ୍ଧ ବଧକଲୁ ମଗଧ ପ୍ରଖସ୍ତେ ।
ଛୟାଣୋଇସହସ୍ର ରାଜା ଥିଲେ ବନ୍ଦୀ ହୋଇ
ଜରାସନ୍ଧ ବଧକରି ରାଜା ମୁକୁଳାଇ ।
କହିଲୁଁ କି ତୁମ୍ଭେମାନେ ଯାଗକୁ ଆସିବ
ସକଳେ କହିଲେ ତୁମ୍ଭେ ନିମନ୍ତ୍ରଣ ଦେବ ।
ନିମନ୍ତ୍ରଣ ଦେବାପାଇଁ ଆସିଲୁ ଏ ସ୍ଥାନ
ମୋର ସୈନ୍ୟ ନାଶ କଲ୍ଲ କପାଁ ଅକାରଣ ।
କି ଅବା ଆମ୍ଭେ ଏହାର ଅଟୁଁ କି ବଇରି
ପୂର୍ବେ ଏହାର କାହାକୁ ଥିଲୁଁ କିବା ମାରି ।
ଏମାନଙ୍କର ଆମ୍ଭେ ତ ନୋହୁ ଯେ ବିବାଦୀ
ଅବଭୂତେ ଯୁଦ୍ଧକରି ବୃଥା ହୁଅନ୍ତି ବନ୍ଦୀ ।
ବରଦସେନ ଯେ ମୋତେ ନ ପାରିଲା ଚହ୍ନି
ସେଦୋଷରେ ନାଶ ଗଲେ ତାର ସର୍ବସୈନ୍ୟ ।
ମୋର ସୈନ୍ୟ ଏ ମାଇଲା କପାଁ ଅନମିତ୍ରେ
ଏ ଜମାଗୋଷ୍ଠି ରାଜାକୁ ଛାଡ଼ିବ କେମନ୍ତେ ।

ବରଦସେନ ନରେଶ ଗଲକ ପଳାଇ
ତାହାକୁ ଘୁମୁକୁ ଆଣ ସେ ଲଚ୍ଛି କାହିଁ ।
ଅର୍ଜୁନ ବଚନ ଶୁଣି କହନ୍ତି ମୁନେହିଁ
ଏକ୍ଷଣି ପାଶେ ଆସିବ ଦରଶନ ଦେଇ ।
ଅର୍ଜୁନ ବୋଇଲେ ତୁମ୍ଭେ ଜାଣ ସର୍ବସିଦ୍ଧି
ଆଦ୍ୟରୁ ରାଜାକୁ କପାଁ ନ ଦେଲ ଏ ବୁଦ୍ଧି ।
ଆଜ୍ଞା ପ୍ରମାଣେ ଚଳନ୍ତି ପାଦ ଯେ ଅମାତ୍ୟେ
ଦଇବେ ବେନି ଅଇଲେ ଅର୍ଜୁନ ଅଗ୍ରତେ ।
ଶତଶିର ପାଣିଦ୍ରବ୍ୟ ରତ୍ନମାନ ଘେନ
ଘୁମୁକୁ ଆଣିଲା ରାଜା ଦେଖା ଦରଶନ ।
ବହୁ ବିନୟେ ବରଦସେନ ନରପତି
ନିଉଛାଳି କରି ପ୍ରଣିପତ୍ୟ ହେଲା ଧୀତି ।
ଦଶନଖ ମୁଖେ ଭରି ସେହି ଲଖାସାଇଁ
ବୋଲଇ ଦେବ ମୋତେ ତୁମ୍ଭେ କରଷାହ
ପାର୍ଥ ବୋଇଲେ ତୁମ୍ଭର ନାହିଁ କିଛି ଦୋଷ
ବିନା ଅପରାଧେ ତୋର ସୈନ୍ୟ କଲି ନାଶ ।
ବରଦ ବୋଇଲେ ତୁମ୍ଭ କଥା ଜଗଜ୍ଜେଠି
ତୋର ଅନୁଗ୍ରହ ଥିଲେ ମୋ ଦୁର୍ଗତି ଫିଟି
ପ୍ରତ୍ୟକ୍ଷ କଇତାଙ୍କୁ ମୁଁ ଦେଖିଲି ନେତ୍ରରେ
ସ୍ୱାମି ତୋତେ ଦ୍ରୋହ କଲି ମନ୍ଦ ପ୍ରକୃତିରେ
ତେଣୁ ଅବସ୍ଥା କରି ମୋ ସୈନ୍ୟ କଲୁ ନାଶ
ଅନୁଗ୍ରହ କରି ନାଥ କ୍ଷମା କର ଦୋଷ ।
ପାର୍ଥ ବୋଇଲେ ନିମନ୍ତ୍ର ଯୋଗାଡ଼କୁ ଦେଇ
ରାଜସୂୟଯାଗ ସହିତକୁ ଯାଅ ବେଗ ହୋଇ ।
ବରଦ ବୋଇଲା ମୁହିଁ ବିବାଦୀ ଜଗତେ
ଥାଉ ସୈନ୍ୟ ସଖା ନାହିଁ ଯିବଇଁ କେମନ୍ତେ ।
ପାର୍ଥବୋଇଲେ ତୋତେ ନ ଲଗାଇବେ ପଥେ
ସମସ୍ତେ ହାସିବେ ତୋତେ ମୋନାମ ଧରନ୍ତେ
ଯେ ଅବା ଆସି ଘେରିବ ପଥେ ଯାନ୍ତେ ସ୍ୱପ୍ନେ
ଶିରଚ୍ଛେଦ ହେବ ତାର ମୋର ଶରଘାଏ ।
ବରଦ ବୋଇଲେ ସ୍ୱାମି ମୋ ଜୀବ ସଫଳ
ଜଗତନାଥଙ୍କୁ ଭେଟି ହେଲି ମୁଁ ନିର୍ମଳ ।
ଯେତେକ ସୈନ୍ୟ ମୋହର ମାଇଲ ଅର୍ଜୁନ
ମୋ ଭକ୍ତି ଘେନିଣ ତାଙ୍କୁ ଦିଅ ଜୀବଦାନ ।
ପାର୍ଥ ବୋଇଲେ ପଢ଼ିଲେ ବହୁତ ତୋ ସୈନ୍ୟ
କାହୁଁ ତାଙ୍କୁ ଜୀଆଇବ ମହାମନ୍ତ୍ର ଘେନ ।

ବଭ୍ରୁବ ବୋଲେ ସ୍ୱାମୀ ତୁ ପରସନ୍ନ ହେଲେ
ମୋହର ସକଳସୈନ୍ୟ ବଞ୍ଚିବେ ତୋ ବୋଲେ
ମଣ୍ଡମଣ୍ଡଳେ ବୋଲିବେ ତୋତେ ଧନ୍ୟ ଧନ୍ୟ
ଅମୃତ ବୃଷ୍ଟିରେ ସ୍ୱହିଁ ବଞ୍ଚନ୍ତୁ ମୋ ସୈନ୍ୟ ।
ରାଜାର କଥନ ଦେଖି ପାଣ୍ଡବ ଅର୍ଜୁନ
ଯନ୍ତ୍ରେଁ ବୁଝିଲେ ମାତଳି ସାରଥି ବଦନ ।
ମାତଳି ବୋଇଲା ଜାଣୁ ଜୀବନ୍ୟାସ ଶର
ଖାଣ୍ଡବ ଦହନ କାଳେ ଦେଲେ ବୈଶ୍ୱାନର ।
ହାବୋଡ଼ା ଶର ବାଜିଣ ପଡ଼ିଛନ୍ତି ସୈନ୍ୟ
ଏଥିପାଇଁ ଏ ବଭ୍ରୁବ କରୁଛି ବରମ ।
ସାରଥି ବଚନେ ପାର୍ଥ ହୋଇଲେକ ଶାନ୍ତ
ଜୀବନ୍ୟାସ ଶରକୁ ଯେ ଛାଡ଼ିଲେ ଝଟତ ।
ବଭ୍ରୁବସେନ ରାଜାର ସଇନଙ୍କୁ ବନ୍ଧ
ଅଚ୍ଚକ୍ଷଣେ ସୁଧାବୃଷ୍ଟି ହେଲା ମହୌଷଧି ।
ମୋହକାଳରେ ପଡ଼ିଣ ଥିଲେ ସର୍ବସୈନ୍ୟ
ଚେତନା ପାଇଣ ନିଜ ନିଜ ପ୍ରାଣ ଘେନ ।
ଉଠିଲେକ ବାହାନାହ କରି ସର୍ବବଳ
ମୁଖରବ ଶବ୍ଦରେ ପୂରିଲା ମଣ୍ଡଳ ।
ବାଇଶି କ୍ଷଉଣୀ ବଳ ଉଠିଁ ପଡ଼ିଥିଲେ
ଚେତନା ଶରରେ ପାର୍ଥ ସର୍ବ ଜୀଆଇଁଲେ ।
ବଳରେ ତରିଣ ସେନ ସର୍ବ ପାତ୍ର ମନ୍ତ୍ରୀ
ହାହା ହାହା ବୋଲି ଦଣ୍ଡ ପ୍ରଣାମ କରନ୍ତି ।
ଭକ୍ତତାରଣ ପାଣ୍ଡବ ପକ୍ଷାଗୁରୁ ତୁ ତ
ଅଭକ୍ତ ଶରଣ ନେଲେ ରକ୍ଷା କରୁ ନାଥ ।
ଜୟ ଜୟ ବୋଲିକରି ଶୁଭିଲାକ ଧ୍ୱନି
ବରବସେନ ପ୍ରଣମେ ପାତ୍ର ମନ୍ତ୍ରୀ ଘେନ ।
ବଜନେ ହୋଇଲା ରଖା ମଣ୍ଡଳାଧିକାରୀ
ପୁଣି ବୋଲେ ନମ୍ରଭାବେ ପ୍ରଣିପାତ କରି ।
ଭକତ ବତ୍ସଳ ନାଥ ଶରଣ ସୋଦର
ମୁହିଁ ଗୁହାରି କରୁଛି ତୋହର ପୟର ।
ଜମାଗୋସ୍ତର ବନ୍ଧନ ଫେଡ଼ି କରି ରକ୍ଷା
ଏ ପୃଥ୍ୱୀ ମଧ୍ୟରେ ସ୍ୱାମି ତୁହିକ ତୋ କକ୍ଷା ।
ଅର୍ଜୁନ ବୋଇଲେ ସ୍ୱାକୁ ବନ୍ଧନରେ ନେଇ
ଯାମସେନ ଠାକୁରଙ୍କ ଗୋଚରରେ ଦେବା ।
ସେ ବତୁଳ କରି ସ୍ୱାଙ୍କୁ ଛାଡ଼ିଲୁ ସଭରେ
ଏ ବଡ଼ ଦୁଷ୍ଟ ସ୍ୱାକୁ ନ ଛାଡ଼ିବା ଏଠାରେ ।

ଜମାଗୋଷ୍ଠ ରାଜାର ଯେ ମନ୍ତ୍ରୀ ଥିଲା ରକ୍ଷ
ଅକ୍ଷତ ଦେଇ ଏଙ୍କୁ ପେଷିଲେ ତେଜସ୍ୱୀ ।
ବଭ୍ରୁବ ଘେନିଣ ଗଲା ଅନେକ ସଇନ
ସେ ନଗ୍ରୀ ତେଜିଣ ବେଗେ କଲେ ଫାଲ୍ଗୁନ ।
ଖଙ୍ଗଧ୍ୱଜ ପୁର ଜିଣି ଗଲେ ସବ୍ୟସାଚ
ହିରଣ୍ୟ ପର୍ବତେ ବାଜି ଯହିଁ ହିରଣାକ୍ଷୀ ।
ଶୁମ୍ଭ ନିଶୁମ୍ଭ ବୋଲିଣ ପର୍ବତ ଦୁଇଟି
ସେ ପର୍ବତ ମଧ୍ୟେ ଆସେ ସରସ୍ୱତୀ ଫୁଟି ।
ସେ ନଦୀରେ ପଶି ସ୍ନାନ ନିତ୍ୟକର୍ମ ସାରି
ତେଜସ୍ୱୀ କଲେ ବଚନ ଶୁମ୍ଭ ନାମେ ଗିରି ।
ସେହି ପର୍ବତ ଶିଖରେ ବଜେ ହିରଣାକ୍ଷୀ
ଦର୍ଶନ କରି ଅର୍ଜୁନ ବୋଲେ କାମାକ୍ଷୀଙ୍କି ।
ଚଣ୍ଡମୁଣ୍ଡନାଶିନୀ ଗୋ ରଣ କୁତୁହଳେ
ଶୁମ୍ଭ ନିଶୁମ୍ଭ ବଧିଲୁ ନିତ୍ୟ ରଙ୍ଗ ଖେଳେ ।
ପଡ଼ିଲେ ସେହି ଦାନବେ ତୋ କଥା ଭଙ୍ଗରେ
ମୋହିନୀ ରୂପରେ ତାଙ୍କୁ ମାଇଲୁ ରଙ୍ଗରେ ।
ଶୁମ୍ଭ ନିଶୁମ୍ଭ ଦଇତ କୁଳକୁ ବିନାଶି
ସେ ଦେନି ଦୈତ୍ୟଙ୍କ ବକ୍ଷେ ମାଡ଼ିଅଛୁ ବସି ।
ଶୁମ୍ଭ ନିଶୁମ୍ଭ ଦଇତ ଦେନି ପରବତ
ବିସ୍ତାର ଅଢ଼ଇ ସ୍ୱାର ଯୋଜନ ଯେ ସାତ ।
କାଳେ ଉଠିବ ବୋଲି ସେ ଦୈତ୍ୟ ମହାବଳୀ
ଦୁଇପାଦେ ମାଡ଼ିଅଛୁ ଦୁହିଙ୍କ ମଉଳି ।
ଆପଣେ ଦୁଃଖ ସହି ଦେବତାଙ୍କ କାର୍ଯ୍ୟେ
ତୋ ନାମ ଧରନ୍ତେ ଭୟେ ପଳାନ୍ତି ଦନୁଜେ
ଦେବଙ୍କୁ ନିର୍ଭୟ କଲୁ ଦାନବଙ୍କୁ ନାଶି
ଭକତବତ୍ସଳା ମାଗୋ ଯମଦର୍ପ ଧ୍ୱଂସି ।
ପାତକ ନାଶନ୍ତି ନରେ ଶୁମ୍ଭ ନାମ ଭଜି
ଦୁର୍ଗତି ନ ଥାଇ ଶୁମ୍ଭ ଧ୍ୟାନେ ଥିଲେ ମଜି ।
ଡିବ ଡିବ ଡମ୍ବରୁ ଗୋ ଶ୍ରୀହସ୍ତେ ବଜାଇ
ଶ୍ମଶାନେ ଖେପିଣ ମାଗୋ ସୁଖେ ଗୀତ ଗାଇ ।
କଣ୍ଠେ ମୁଣ୍ଡମାଳ ଶୁମ୍ଭ ଜବା ପୁଷ୍ପେ ପୂଜା
ରଣରଙ୍ଗେ ବିଚକ୍ଷଣା ଅଭୟା ଶୈଳଜା
ଉକ୍ରବସ୍ତ ପରଧାନ୍ନ ଏକ ପାଦ ଖେପି
ତୁ ପ୍ରବଳ ବଙ୍ଗଳା ଗୋ ଅଟୁ କାମରୂପୀ ।
କ ଯାଇ ମର୍ଦ୍ଦନ ମାଗୋ କାହାଳର ନାଦ
ଚଣ୍ଡି ପୁଟ ନାଭି ପୁଣି ମହେଶ୍ୱ ଶବଦ ।

ରୁଧିର ଲେପନ ମାଗୋ ପୋଡ଼ାମାଂସଭୋଗୀ
ପ୍ରେତ ପିଶାଚୁଣୀ ଭୂତ ସଙ୍ଗରଙ୍ଗେ ସଙ୍ଗୀ ।
ଲହ ଲହ ରସନା ଗୋ କରେ ଅସିଖଣ୍ଡ
ସ୍ୱର୍ଗ ମର୍ତ୍ତ୍ୟ ଭୁବନକୁ ଘୋଟେ ତୋର ତୁଣ୍ଡ ।
ସୁରବର ସୁନ୍ଦରୀ ଗୋ ମଧୁ ପିଙ୍ଗଳାକ୍ଷୀ
ହା ହା ନାଦରେ ହରଷ ଦନୁଜକୁ ଭକ୍ଷି ।
ରେ ରେ କାର ଶବଦ ଗୋ କୁହୁ କୁହୁ ଭାଷି
ଝମ ଝମ ଝମ୍ପାଣ ଗୋ ଝଝଙ୍କାର ପାଶି ।
ଟଳଟଳିତ ମେଦିନୀ ଟଳଇ ଅଚଳ
ଅଟ୍ଟ ଅଟ୍ଟହାସିନୀ ଗୋ ନାନାରଙ୍ଗେ ଖେଳ ।
ସ୍ୱରୂପ ଅର୍ଦ୍ଧାଙ୍ଗି ମାଗୋ କାମାକ୍ଷି ସୁଭଗି
ସୁଷୁମ୍ନା ଦେବ ସାଧିନୀ ସୁରଙ୍ଗା ମାତଙ୍ଗେ ।
ବନ୍ଦିତ କୁତୂହଳ ଗୋ ଅର୍ଦ୍ଧପାଦ ରେଖା
ଜାତକଲେ କୃପାଜଳ ମୁନି ବ୍ରହ୍ମଦେଖା ।
ଘାଘା ଥାଥା ଧାଧା ଧର ଧର ମାର ମାର
ଭକ୍ଷ ଭକ୍ଷ ଉଚ୍ଚ ବାକ୍ୟ କଳକଳା ସ୍ୱର ।
ଶଙ୍କର ସଦାନନ୍ଦହାସ ତୋର ସିଦ୍ଧ ମୁଦ୍ରା
କାମରସ ଉଦ୍ଧାରଣୀ ଘୋର ଯୋଗନିଦ୍ରା ।
ଭବାନୀ ଭୈରବୀ ମାଗୋ ଭୟଙ୍କରୀ ରୂପା
ଖିନେକଧାରିଣୀ ଘଟ ଘଣ୍ଟ ମହାତପା ।
ପଞ୍ଚେଶ ଶକତି ମାଗୋ କୃପାଣ ମୁଦ୍‌ଗର
ଛେଲ ଚନ୍ଦ କୁଳେ ବଜେ କର୍ଣ୍ଣେ ଯେ କଠାର
ଅକ୍ଷୟ ତୂଣ କପିଣ କୋଦଣ୍ଡ ପିନାକ
କ୍ଷଣେ ତ୍ରୈଲୋକ୍ୟ ମୋହନ୍ତ ବ୍ୟାପି ସୃଷ୍ଟିପାଳ
ରଣରଣେ କୁତୂହଳେ କଣ୍ଠେ ମୁଣ୍ଡ ମାଳା
ରୁଧିରରେ ସ୍ନାନ ମାଗୋ ଶବ୍ଦ କଳକଳା ।
କମଳା ଚଞ୍ଚଳା ଗୋ ଡାକିନୀ ଡାକେଶ୍ୱରୀ
ଭକତବତ୍ସଳା ମାତେ ଦୁଷ୍କୃତ ପାପ ହାରୀ ।
ମାନନ୍ଦ ମାତଙ୍ଗୀ ମାଗୋ ମାୟାବୀ କୁଣ୍ଡଳୀ
ମହାନିଶାରେ ଭ୍ରମିଣ ଦେଉ ହୁଳହୁଳି ।
ଅଭୟବରଦାୟିନୀ ଶ୍ରୀ ସର୍ବମଙ୍ଗଳେ
ଶରଣ ଉଦ୍ଧାରଣୀ ଗୋ ତାରୁ ସର୍ବକାଳେ ।
ସକଳ ସାଧକ ମାଗୋ ତୋର ଛେଦ ପୂଜା
ଭକ୍ତିଭାବ ଯେଣୁ ପୂଜା କଲେ ଦେବରାଜା ।
ମଙ୍ଗଳା ସର୍ବମଙ୍ଗଳା କରୁ ସର୍ବସିଦ୍ଧି
ମଙ୍ଗଳ ସର୍ବେଶ୍ୱରୀ ଗୋ ଭବନିଦ୍ରା ଛନ୍ଦି ।

ପ୍ରସନ୍ନ ଯୋଗେଶ୍ୱରୀ ଗୋ କପିଳାସବାସୀ
ଲୌକିକ ଲୋକେଶ୍ୱରୀ ଗୋ ଗିରିରାଜଋଷି ।
ବ୍ରହ୍ମସ୍ୱରୂପିଣୀ ତୁ ଗୋ କରୁ ସୃଷ୍ଟିଚିନ୍ତା
ଦୁଃଖୀଜନଙ୍କର ତୁହି ଅଟୁ ଉଦ୍ଧାରନ୍ତା ।
ସର୍ବ ସମ୍ପଦଦାୟିନୀ ତୁ ସର୍ବ ମଙ୍ଗଳେ
ଶ୍ରୀଚଣ୍ଡୀଙ୍କୁ ଭାବେ ସଦା ମୋର ହୃଦସ୍ଥଳେ ।
ଅପର୍ଣ୍ଣା ଅନ୍ନପୂର୍ଣ୍ଣା ଯେ ଜଗତର ଧାତ୍ରୀ
କାଳ କୃତାନ୍ତ ତାରିଣୀ ନମୋ କାଳୀମୂର୍ତ୍ତି ।
ଟହ ଟହ ହାସିନୀ ଗୋ ପୂର୍ଣ୍ଣଚନ୍ଦ୍ରାନନ
ଦୁଷ୍କୃତ ମେଣ୍ଟଣୀ ମାଗୋ ସଖୀ ତୋ କାନ୍ତାମ
ଅନିତ୍ୟ ସଂସାର ଏ ଗୋ ଲୋଭ ମୋହାନ୍ଧରୁ
ଧନହାନି ଶୋକ ଦୁଃଖ ସବୁ ପାରିକରୁ ।
ଇତି ଶ୍ରୀ ମହାଭାରତ ପବନ୍ଧ ପୁରାଣ
ସଂସାର ଜନଙ୍କ ହିତେ କଲି ମୁଁ ବଖାଣ ।
ସଦା ଭଜନ୍ତି ମୋହର ଭାରତ ମଣ୍ଡଳେ
ନରରୂପେ ଜନ୍ମି ବୃଦ୍ଧି ହେଲି ନରମେଳେ ।
କାଶୀରେ ପ୍ରସନ୍ନ ମୋତେ ହୁଅ ଗୋ ଅଭୟା
ଝଙ୍କଡ଼ପୁରବାସିନୀ କର ତୁ ସୁଦୟା
ପରଲୋକ ସାହା ତୁ ଗୋ ଅହୋ ବରଦାତ୍ରୀ
ଇହଲୋକେ ପରଲୋକେ ସର୍ବନ୍ଦ ତୋ ସ୍ତୁତି ।
ଶ୍ରୀଚଣ୍ଡୀ ଶାରଳାଦେବୀ ଚରଣେ ବନ୍ଦଏ
ଶୂଦ୍ରମୁନି ଶାରଳା ଯେ କରେ ଏକଲଏ ।

---

## ଅର୍ଜ୍ଜୁନଙ୍କର ମୃତସୈନ୍ୟ ଜୀବିତ ଓ ସଂକଳ୍ପ ଭୈରବ, ଉଦୟଗିରି ଉତ୍ତରକୋଶଳ ଓ ନନ୍ଦିଗ୍ରାମ ରାଜାମାନଙ୍କୁ ନିମନ୍ତ୍ରଣ ଓ କଳ୍ପରାଜା ସହିତ ଯୁଦ୍ଧ

କହନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ତୁମ୍ଭ ମହିମା ଅପାର ।
କ୍ଷୀରବ୍ଧି ଗଣ୍ଡୂଷ କଲ ତୁମ୍ଭେ ଅବହେଳେ
କୋଟି ପ୍ରଣିପାତ ମୋର ତୁମ୍ଭ ପାଦତଳେ ।
ତୁମ୍ଭ ପ୍ରସାଦରେ ବସ୍ତୁ ପୁରାଣକୁ ଶୁଣି
ଦୁରନ୍ତ ପାପ ନାଶନ କଲ ମୁନିମଣି ।
କଳିକାଳ ଧ୍ୱଂସିବାକୁ ସୁଧା କଲ ବୃଷ୍ଟି
ସଂସାର ସାଗରକୁ ଯେ ହେଲି ନାବକୋଟି

ଯମାର୍ଗଳ ଭଙ୍ଗିବାକୁ ତୁମ୍ଭେ କର ସଜ୍ଜା
ଖଣ୍ଡିଲ ଯମ ଅର୍ଗଳ ଯୁଗାନ୍ତର ବନ୍ଧା ।
ହେ ଅଗସ୍ତି ମୁନି ଏବେ ଶୁଣ ମୋ ବଚନ
ଏଥୁଅନ୍ତେ କେଉଁ କୃତ୍ୟ କରିଲେ ଅର୍ଜ୍ଜୁନ ।
ଏହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ସେ ଦେବୀଙ୍କୁ ସ୍ତୁତି ଯହୁଁ କରିଲା ଅର୍ଜ୍ଜୁନ
ତହୁଁ କାମାକ୍ଷୀ ହୋଇଲେ ତାହାକୁ ପ୍ରସନ୍ନ ।
ସିଂହବାହନରେ ବିଜେ ହେଲେ ଶାକମ୍ଭରୀ
ପ୍ରଣିପାତ ହେଲା ପାର୍ଥ ତାଙ୍କୁ ଦେଖିକରି ।
ବୋଇଲେ ଯେବେ ପ୍ରସନ୍ନ ହେଲଗୋ ତୁମ୍ଭଙ୍ଗୁଳେ
ତେବେ ମୋର ବାଞ୍ଛାସିଦ୍ଧି ହେଉ ତତକାଳେ
ଜମାଗୋଷ୍ଠୁ ବୋଲି ମାଗୋ ଶାଖା ଅଧିକାରୀ
ସେ ମୋହର ସଇନ୍ୟଙ୍କୁ ପକାଇଲା ମାରି ।
ଲେଖି ପୋଛନ୍ତେ ମୋହର ସୈନ୍ୟଗଲେ ନାଶ
ଏକା ବୁଲଇ ମାତ ଗୋ ହୋଇଣ ନିରାଶ ।
ବାଛିକରି ସୈନ୍ୟ ମୋତେ ବାସୁଦେବ ଦେଲେ
କେମନ୍ତେ ରକ୍ଷା ପାଇବି ଶ୍ୟାମ କୋପ କଲେ ।
ଭନଗ୍ରଇ ଆସିବେ ଯେ ଯାହା ଥାଟ ଘେନି
ମୁହିଁ ଏକା ଯିବି ମାଗୋ ମରଇ ସଇନ ।
ଯେବେ ତୁ ସର୍ବମଙ୍ଗଳା ମହିମା ତୋ ସତ
ମୃତ ସଇନ ଜୀଅନ୍ତୁ ଆଜ୍ଞା ଦିଅ ମାତ ।
ଏମନ୍ତ ଶୁଣି ସୁଦୟା ବହିଣ କାମାକ୍ଷୀ
ବୋଇଲେ ଆରେ ଅର୍ଜ୍ଜୁନ ବର ମାଗ ବାଛି ।
ଅର୍ଜ୍ଜୁନ ବୋଇଲେ ମାତା ତୁମ୍ଭେ ସିଦ୍ଧିଦାୟୀ
ମୃତସଞ୍ଜୀବନୀ କେଉଁ ବିତନ ଅଛଇ ।
ଶୁଣି ଦେବୀ ବୋଇଲେ ତୁ ଶୁଣ ଧନଞ୍ଜୟେ
ତୋ ସଇନ ସମ୍ମୁଖରେ ଲେଖ ପଟଟିଏ ।
ତହୁଁ ଶ୍ରୀକରେ ଲେଖନ ଘେନିଣ ଅର୍ଜ୍ଜୁନ
ଭୂଷପଟ ଏକଗୋଟି କରିଲେ ଲିଖନ ।
ସହସ୍ରେକ ରଥ ଦୁଇ ଅଇବୁତ ହସ୍ତୀ
ଆଠ ଅଇବୁତ ଅଶ୍ୱ ବିଲକ୍ଷ ପଦାତି ।
ଚିତ୍ରଲେଖିଣ ଦେବୀଙ୍କୁ ଦେଲା ସବ୍ୟସାଚୀ
ଚିତ୍ର ଉପରେ ଔଷଧି ଦେଲେ ପିଙ୍ଗଳାକ୍ଷୀ ।
ମନ୍ତ୍ର ପଢ଼ି ଉଠ ବୋଲି ବୋଲନ୍ତେ ଈଶ୍ୱରୀ
ଜୀବନ ପାଇ ଉଠିଲେ ବାହନାଦ କରି ।

ଧନଞ୍ଜୟଙ୍କୁ ଚହ୍ନିଲେ ସକଳେ ସଇନ
ଗୁରୁଶିଷ୍ୟ ଭାବେ ତାଙ୍କୁ କରିଲେ ଦଇନା ।
ଅର୍ଜ୍ଜୁନ ଦେଖିଲା ଯହୁଁ ଯାହାର ସ୍ୱରୂପ
ପ୍ରିୟୁସବ କୁଟୁମ୍ବିତା ପୂର୍ବ ଅନୁରୂପ ।
ଚର୍ଜ୍ଜନ୍ତି ଗର୍ଜ୍ଜନ୍ତି ଯାନ ବାହନ କମ୍ପାଇ
ଯେ ଯାହାର ଅସ୍ତ୍ର ସାରେ ଧରିଛନ୍ତି ରହି ।
ଆପଣାର ସଇନ୍ୟଙ୍କୁ ପାଇଲା ଅର୍ଜ୍ଜୁନ
ଧାଡକାରେ ତୋଷାମଣୀ ହେଲେ ଅନ୍ତର୍ଦ୍ଧାନ ।
ଆପଣା ସଇନ ଘେନି ବୀରବର ପାର୍ଥ
ବିଜୟ କରିଲେ ତହୁଁ ସଂକଳ୍ପ ବସନ୍ତ ।
ସର୍ବେଶ୍ୱର ବୋଲି ଅଛି ଏକଇ ପର୍ବତ
ଶାକଳ୍ପ ଦେଶ ସେଠାରେ ଅଛି ଅବସ୍ଥିତ ।
ସେହି ଦେଶକୁ ବିଜୟ କଲେ ଫାଲଗୁନ
ରଥ ଗଜ ଚମକାଇ ପଶିଲେ ସଇନ ।
ସେ ଦେଶର ରାଜା ଶାଲୁ ନାମେ ନରପତି
ଗଜ ଅଶ୍ୱ ନାହିଁ ତାର ସଇନ ପଦାତି ।
ଏକଗୋଟି ରଥେ ଶାଲୁ ଚଳେ ଅନ୍ତରୀକ୍ଷେ
ଗନ୍ଧର୍ବ ରାଜା ଅଟଇ ସେହି ଯେ ପ୍ରତ୍ୟକ୍ଷେ ।
ଅର୍ଜ୍ଜୁନ ବିଜୟ କଲେ ସେ ଶାଲୁର ରାଜ୍ୟେ
ବୀର ଚମକ ନିଶାଣ ଢୋଲ ଆଦି ବାଜେ ।
କାହିଁର ଶବଦ ଏହି ଭିଲ୍ କାପାତ ଜାଣି
ସାରଧ ନାମ ମନ୍ତ୍ରୀକି ପୁଛେ ନୃପମଣି ।
ସାରଧ ବୋଇଲା ରାଜସୂୟ ଯଜ୍ଞ ଅର୍ଥେ
ପାଣ୍ଡବ ଅର୍ଜ୍ଜୁନ ଆସେ ଏହି ଦିଗ ପଥେ ।
ଆଜ୍ଞା ଦେଇଛନ୍ତି ତାକୁ ଚଅଳାବଲ୍ଲଭ
ମୁଁ ଜାଣେ ପାର୍ଥ ପ୍ରତ୍ୟକ୍ଷେ ଅଟେ ବାସୁଦେବ
ମନ୍ତ୍ରୀ ବୋଲଇ ତାହାର ଅଶେଷ ମହିମା
ଧନୁର୍ଦ୍ଧର ଶିରୋମଣି ଅଭୟା ମହାତ୍ମା ।
ରାଜରାଜେଶ୍ୱର ସେହି ଭୁବନର ମଧ୍ୟେ
ଜମାଗୋଷ୍ଠକୁ ଜିଣନ୍ତା ନାହିଁ କେହି ଯୁଦ୍ଧେ ।
ତାହାକୁ ବନ୍ଦନ କରି ରଖିଅଛି ରଥେ
ଅନ୍ୟ ରାଜା କି ବର୍ତ୍ତିବେ ତାର ଅଭକତେ ।
ସମଦଣ୍ଡ ଘେନି ବେଗ ପାଛୋଟିଣ ଯିବା
ବିନୟ ଭକତି କରି ପାର୍ଥକୁ ଆଣିବା ।
ମନ୍ତ୍ରୀର ବଚନ ଶୁଣି ସାନନ୍ଦ ସେ ରାଜେ
ସମଦଣ୍ଡ ଘେନିକରି ପାଛୋଟିଣ ଯାଏ ।

ବହୁ ସମ୍ଭ୍ରମ ସହିତ ଶାଲ୍ୱ ମହାରାଜା
ଅର୍ଜୁନର ପାଦପଦ୍ମେ କଲା ଯାଇ ପୂଜା ।
ପୁଣ କୁଟୁମ୍ବ ଘେନେଣ ଶାଲ୍ୱ ନରପତି
ପୁଣି ପୁଣି ନଉଛନ୍ତି ହୋଇ ତୋଷମତି ।
ରାଜାର ଭକତି ଦେଖି ବୀରବର ପାର୍ଥ
ରଥରୁ ଓହ୍ଲାଇ ତାକୁ କଲା କୋଳାଗତ ।
ଅନେକ ସ୍ତବେ ପାର୍ଥର କରଇ ପୀରତି
ପୁରେ ଉତ୍ସବ କରଇ ଶାଲ୍ୱ ନରପତି ।
ଅର୍ଜୁନ ବିଜେ କରିଲେ ଚନ୍ଦ୍ରଶାଳା ପୁରେ
ଶାଲ୍ୱକୁ ଯେ ନିମନ୍ତ୍ରଣ କରିଲେ ସ୍ନେହରେ ।
ବୋଇଲେ ବାରୁଣାପୁରେ ଯାଅ ଥାଅ ଘେନି
ବହନ ହୋଇଣ ତଳ ଦିବସ ଉଜାନି ।
ଶାଲ୍ୱ ବୋଇଲା ଅଭୟ କୁହ ନରନାଥ
ଆଜନ୍ମ ମୋହର ରାଜ୍ୟ ତୁମ୍ଭ ବୀରବର ।
ଅର୍ଜୁନ ବୋଇଲେ ମୁହିଁ ନ ପାରିବି ରହି
ବିଳମ୍ବ ହୋଇବ ମୋତେ ଆଉ ଦିନ ନାହିଁ ।
ପଞ୍ଚାଶ ଦିବସ ମାତ୍ର ବାକି ଅଛି ଦିନ
ଦୁଷ୍ଟ ରାଜାଏ ଅଛନ୍ତି କରିବି ସାଧନ ।
ଶୁଣି ଶାଲ୍ୱ ପ୍ରଣିପାତ ହୋଇ ପାଦତଳେ
ସ୍ୱାମି ଜମାଗୋଷ୍ଠ ବନ୍ଦୀ ମନ୍ଦ-ବୁଦ୍ଧିବଳେ ।
ଯାହା ଅରଜିଲା ସେହୁ ପାଇଲା ଯୁଦ୍ଧତେ
ଏହାକୁ ବନ୍ଧନୁ ମୁକ୍ତ କର ମୋ ଅଗ୍ରତେ ।
ମୁଁ ଏହାକୁ ଘେନିଯିବି ହସ୍ତିନା ପୁରକୁ
ଏହାର ଅମାତ୍ୟ ଯେତେ ଲାଗଇ ଆମ୍ଭଙ୍କୁ ।
ପାର୍ଥ ବୋଲେ ମହାରାଜା ଅଟୁ ତୁମ୍ଭ ଶାଲ୍ୱ
ଜମାଗୋଷ୍ଠ ରାଜାପାଇଁ କପାଁ ତୁମ୍ଭ ବୋଲ ।
ଏ ମୋହର ସୈନ୍ୟଙ୍କୁ ମାଇଲା ଅନମିତେ
ଏହାର ବନ୍ଧନକୁ ମୁଁ ଫେଡ଼ିବି କେମନ୍ତେ ।
ତୁମ୍ଭ ଏବେ ଚଳଯାଅ ବାରୁଣାବନ୍ତକୁ
ଅବଶ୍ୟ ଏ ଅବସ୍ଥାରେ ନେବି ହସ୍ତିନାକୁ ।
ଶାଲ୍ୱକୁ ଚଳାଇଦେଲେ ବୀର ଧନଞ୍ଜୟେ
ବସ୍ତ୍ରଘେନି ଶାଲ୍ୱରାଜା ହସ୍ତିନାକୁ ଯାଏ ।
ତହୁଁ ବୀର ଅରଜୁନ ଅଶ୍ୱକୁ ଚଳାଇ
ଭଇରବ ଦେଶେ ବିଜେ କରିଲେକ ଯାଇ ।
ଭଇରବ ଦେଶେ ମହା ଭୈରବ ନୃପତି
ଛନ୍ଦି ଦେବତାଙ୍କୁ ପୂଜା କୋଳାଏ ସେ ସତ ।

ଯେତେ ରାଜା ବସନ୍ତି ସେ ଭଇରବ ରାଜ୍ୟ
ସଭିଙ୍କ ଏକା ପ୍ରସନ୍ନ ଦେବ ଦେବରାଜେ ।
ଶୁକ୍ଳାମ୍ବର ଶରୀର ଯେ ଶିରେ ଜଟାଭାର
ଭସ୍ମ ବିଲେପନ ଅଙ୍ଗେ ସର୍ବେ ଶୂଳଧର ।
କଟିରେ ବାନ୍ଧେଟି ତାଙ୍କ କଣ୍ଠେ ଚୀରକୁଷ୍ଟି
ସାଧନ୍ତି ଯୋଗ ଲୟରେ ରୁଦ୍ରମନ୍ତ୍ର ଗୋଟି ।
ଶିବ ସ୍ୱରୂପେ ଅଟନ୍ତି ମହାଯୋଗୀ ତେଜ
ଚତୁର୍ଭୁଜ ଡମ୍ବରୁ ଯେ ଘନ ଘନ ବାଜ ।
ଇଥ ଗଜାଶ୍ୱ ବାହନ ତାଙ୍କ ନାହିଁ କିଛି
ଏକପାଦେ ତଳନ୍ତି ସେ କନ୍ଦମୂଳ ଭକ୍ଷି ।
ଅର୍ଜୁନ ପ୍ରବେଶ ହେଲେ ସେ ଭୈରବ ଦେଶେ
ଚରଗଣ ଜଣାଇଲେ ନରପତି ପାଶେ ।
ଶୁଣ ଦେବ ସାବଧାନେ ଚଳାଅ ତୁ ରାଷ୍ଟ୍ର
କେଉଁ ଦେଶରୁ ପଶିଲା ଆସି ପରଅଶ୍ୱ ।
ଚରଗଣଙ୍କ ମୁଖରୁ ହୋଇ ଅବଗତ
ବସ୍ତ୍ରଘେନି ଭଇରବ ଅଶ୍ୱକୁ ଆଗତ ।
ଆସନ୍ତେ ପାର୍ଥ ଅଶ୍ୱକୁ ଭେଟିଲେ ଭୈରବ
ଅର୍ଜୁନ ଅଶ୍ୱ କ୍ଷେପିଲେ କରି ଘୋରରବ ।
ଭଇରବ ଡାକଦେଲା ନିଜରଥେ ବସି
ଅଦଭୁତେ ମୋ ଅଶ୍ୱକେ କପାଁ ପଶୁ ଆସି ।
ପ୍ରୀତି କି ଅପ୍ରୀତିପଣେ ଥାଅ ଘେନ ଆସୁ
ଉତପାତ କରି କପାଁ ମୋ ଅଶ୍ୱକେ ପଶୁ ।
ଆଗରେ ଜୟ ବିଜୟ ଥିଲେ ସୈନ୍ୟାଧ୍ୟକ୍ଷ
ବୋଇଲେ ଭୈରବ ତୁମ୍ଭ ଶୁଣ ହେ ପ୍ରତ୍ୟକ୍ଷ
ସୋମବଂଶରେ ପାଣ୍ଡବ ଯୁଧିଷ୍ଠିର ରାୟ
ତାଙ୍କ କନିଷ୍ଠ ସୋଦର ନାମ ଧନଞ୍ଜୟ ।
ରାଜସୂୟ ଯାଗ କରିବେ ପଣ୍ଡୁରାଜା କାର୍ଯ୍ୟେ
ରାଜା ନିମନ୍ତ୍ରଣେ ପାର୍ଥ ଉତ୍ତରକୁ ବିଜେ ।
ଶୁଣି ଭଇରବ ଯାଇ ହେଲା ପରଣାମି
ଭୟ କରିଣ ବୋଇଲା ନସ୍ତରିଲ ସ୍ୱାମି ।
ରଥରେ ଦେଖିଲା ଜମାଗୋଷ୍ଠ ରାଜା ବନ୍ଦୀ
ଦେଖିଣ ବିସ୍ମୟାପନ୍ନ ହେଲେ ସର୍ବ ଯୋଧୀ ।
ଏହୁ ଅଟେ ଜମାଗୋଷ୍ଠ ଅତି ମହାବଳୀ
ବାନ୍ଧେ ଯାକୁ କିସ ଆମ୍ଭେ ଛାର ମନେଭଳ
ତହୁଁ ରାୟ ପ୍ରଣିପାତ ପାର୍ଥ ପାଦତଳେ
ଭୈରବର ଏହି ଭକ୍ତି ଦେଖିଲେ ସକଳେ ।

ତହୁଁ ଆନନ୍ଦିତ ହୋଇ ଦୂତ ସେନାପତି
ଅର୍ଜୁନ ସ୍ତମ୍ଭରେ ନେଇ ଶୀଘ୍ରେ ଭେଟାନ୍ତି ।
ତାହା ଦେଖିଣ ବାସବୀ ସେନ ରତ୍ନମାନେ
ଲମ୍ଭାଇଲେ ଭଇରବ ନପତିର ଗଳେ ।
ନିମନ୍ତ୍ରଣର ଯୋଗାଡ଼ ଦେଇ ଧନଞ୍ଜୟ
ବୋଇଲେ ରାଜସୂୟ ଯାଗେ ଯାଅ ନୃପରାୟ ।
ଶୁଣି ଭୈରବ ବୋଇଲା ଯିବ ଏକ୍ଷଣି
ଆଜକ ମୋର କଣ୍ଠରେ ରହ ସାରମଣି ।
ମଣୋହି ଯୋଗାଡ଼ ଦେବ ଯେତେକ ପାଇବ
ବନ୍ଧୁ କୁଟୁମ୍ବ ସହିତେ ତୋ ସେବା କରିବ ।
ଅର୍ଜୁନ ବୋଇଲେ କାର୍ଯ୍ୟ ଅଛି ଗୁରୁତର
ନିମନ୍ତ୍ରଣ ଶେଷଯାଏ ନୋହିବ ଆହାର ।
ଭୁଞ୍ଜ ଏବେ ଦଣ୍ଡ ସେନ ତଳ ହସ୍ତିନାକୁ
ଦଣ୍ଡେ ହେଁ ବିଶ୍ରାମ ନାହିଁ ଏଥେ ରହିବାକୁ
ପାର୍ଥବାକ୍ୟ ନିମନ୍ତ୍ରଣ ଯୋଗାଡ଼ାଦି ସେନ
ଅଶୀସହସ୍ର ଦଳ ସହ ନେଲା ତତକ୍ଷଣ ।
ଚଳଯାଏ ନରପତି ଥାଟର ସହିତ
ସାରବାଦ୍ୟ ଶବଦରେ କମ୍ପାଇ ଜଗତ ।
ଭୈରବକୁ ଚଳାଇଣ ଚଳଲେ ଅର୍ଜୁନ
ଉଦୟମଣ୍ଡଳେ ଯାଇ ପ୍ରବେଶ ବହନ ।
ଉଦୟଗିରି ବୋଲିଣ ପର୍ବତ ଗୋଟିଏ
ସେ ପର୍ବତେ ବିଜେକଲେ ଯାଇ ଧନଞ୍ଜୟେ
ବାଜେ ସାଇତୂରି ଦେବଗଣଙ୍କ ଦୁନ୍ଦୁଭି
ଆକାଶ କମ୍ପିଲା ପୁଣି ଟଳିଲା ପୃଥିବୀ ।
ଉଦୟମଣ୍ଡଳ ରାଜା ସୁଚନ୍ଦ୍ର ନୃପତି
ବେଣ୍ଟ ବିନୋଦରେ ସେହି ବୁଲୁଥିଲା ରାତି ।
ତରଣୀ ନଦୀ ଜଳରେ ଜଗି ପାଣିଘାଟି
ଦେଖନ୍ତି ଯୋଦ୍ଧାଏ ତହିଁ ମାରେ ଜୀବଗୋଟି
ସାର ତୂର ବାଜନ୍ତି ଯେ ଶିଖଳୁ ଶୁଭଇ
ଶୁଣି ନୃପତି ରହିଲା ସ୍ତମ୍ଭୀଭୂତ ହୋଇ ।
ମନ୍ତ୍ରୀକୁ ସଇ ପଚ୍ଛରେ ତହୁଁ ନୃପମଣି
ବନସ୍ତେ କସ ଶୁଭଇ ଉଲ୍‌କାପାତ ଜାଣି ।
ନୃପ ଆଜ୍ଞାରେ ଧାଇଁଲେ ଯହୁଁ ଚରଗଣ
ଭେଟିଲେ ବନସ୍ତେ ଯାଇ ପାଣ୍ଡବ ପଞ୍ଚାଣ ।
ଚରଗଣ ପଚାରିଲେ କେଉଁ ଦେଶ ରାଜା
ପରରାଜ୍ୟ ବଜାଉଛ କପାଁ ସାରବାଜା ।

ଶୁଣ ଚରଗଣ ବୋଲି ବୋଲେ ସେନାପତି
ଏହି ରେ ପାଣ୍ଡବ ପାର୍ଥ କ୍ଷତ୍ରୀ ମହାରଥୀ ।
ଉତ୍ତର ଦିଗକୁ ବିଜେ ରାଜା ନିମନ୍ତ୍ରଣେ
ଉତ୍ତର କୋଣରେ ଯିବେ ସର୍ବ ରାଜାଗଣେ ।
ରାଜସୂୟ ଯାଗରେ ଥିବେ ଷୋଳଦିନଯାଏ
ଉତ୍ସବ ସାରି ଆସିବେ ଜାଣ ପୁନରାୟେ ।
ସେନାପତିର ମୁଖରୁ ଏସନକ ଶୁଣି
ଚର ଜଣାଇଲେ ଯାଇ ନୃପତିକୁ ପୁଣି ।
ଶୁଣ ସାବଧାନେ ହବେ ମଣ୍ଡଳାଧିକାରୀ
ପାର୍ଥ ବିଜେ ରାଜାଗଣ ନିମନ୍ତ୍ରଣ କରି ।
ସ୍ୱାମି ଜମାଗୋଷ୍ଠ ରାଜା ବନ୍ଧା ଅଛୁ ରଥେ
ରାଜା ନିମନ୍ତ୍ରଣ କରେ ରାଜସୂ ଯାଗାର୍ଥେ ।
ଏ ବଚନ ଶୁଣି ତବେ ମଣ୍ଡଳାଧିକାରୀ
ବୋଲେ ପରରାଷ୍ଟ୍ରେ ପଶେ କପାଁ ନ ବିଚାରି
ରାଜାର ବଚନ ଶୁଣି କହେ ଆନ ଚର
ସ୍ୱାମି ବିଶ୍ୱକୃଷ୍ଣ ସେହୁ ସ୍ୱୟଂ ଦାମୋଦର ।
ପ୍ରୀତି କରିବେ ତାଠାରେ ପାଇବା କାରଣ
ଦୁଷ୍ଟ ବୁଦ୍ଧି କଲେ ନିଶ୍ଚେ ହୋଇବ ମରଣ ।
ସମ୍ମାନ ଯୋଗାଡ଼ ନେଇ ଚଳ ମହୀପତେ
ରାଜ୍ୟଧ୍ୱଂସ ନ କରାଅ ଅର୍ଜୁନର ହସ୍ତେ ।
ଦର୍ଶନେ ପ୍ରସନ୍ନ ହେଲେ ପାଇବାକ ଗତି
ଅସାଧ ହେଲେ ଅବଶ୍ୟ ସାଧିବ ସବୁନ୍ତି ।
ଦୂତର ବଚନେ ରାଜା ପରମ ଆନନ୍ଦେ
ଚଳିଲେ ନୃପତି ସେନ ପାରିଷଦବୃନ୍ଦେ ।
ସହସ୍ରେକ ଚର ସଙ୍ଗେ ସେନ ପାଣିଦ୍ରବ୍ୟ
ଅର୍ଜୁନ ସ୍ତମ୍ଭକୁ ଆସେ ସେ ନୃପତି ଦେବ ।
ଦର୍ଶନ କରିଲା ଆସି ଉଦୟ ପର୍ବତ
ଆହ୍ନିକ ସାରିଲାବେଳେ ହେଲା ପ୍ରଣିପାତ ।
ଦୂତ ବରିଗଲା ଦଣ୍ଡେ ରୁହ ଦଣ୍ଡଧରେ
ଦରଶନ କର ଆସି ମଣୋହି ଉତ୍ସବରେ ।
ଅନ୍ତର ହୋଇଣ ତହୁଁ ରହେ ନୃପମଣି
ଆହ୍ନିକ ସାରି ଅର୍ଜୁନ ବିଶ୍ୱଚନ୍ଦ୍ରପାଣି ।
ମଣୋହିକୁ ବିଜେକଲେ ତହୁଁ ଅରଜୁନ
ବେଗକରି ସାରିଲେ ସେ ଅମୃତ ଭୋଜନ ।
ମଣୋହି ସାରିଣ ଆଚମନେ କଲେ ବିଜେ
ବିଜୟଘୋଷ ଦେବଦତ୍ତ ଶଙ୍ଖ ତହିଁ ବାଜେ ।

ଆଚମନ ସାରି ଯାଇ ବସେ ସିଂହାସନେ
ଜମାଗୋଷ୍ଠ ମଣୋହି ଯେ କଲା ତା ବିଧାନେ
ବାସବସ୍ଥିତ ସନ୍ନିଧେ ବସି ଜମାଗୋଷ୍ଠ
କର୍ପୂର ବଡ଼ଆ ଭୁଞ୍ଜି ହୋଇଣ ସନ୍ତୁଷ୍ଟ ।
ସିଂହାସନେ ବସେ ଦିଶି କୃଷ୍ଣ ଅବତାର
ଦେଖାପାଇଁ ସୁମନ୍ତକ ବୋଲେ ବାରମ୍ବାର ।
ସମ୍ମୁରେ ଜଣାନ୍ତି ସାଇଁ ଜପ ଯେ ବଜପେ
ଦର୍ଶନ କରୁଅଛଇ ଉଦେପୁଭି ରାଜେ ।
ଆସନରେ ବସି ଦେବ ଆଜ୍ଞା ଅବଧାରି
ରାଜସୂୟଯାଗକୁ ଚଳ ସୈନ୍ୟ ଘେନିକରି ।
ନରଧାରେ ବଚନକୁ କହେ ଫାଲଗୁନ
ରାଜସୂୟଯାଗକୁ ଚଳ ତୁ ହବା ରଜନୀ ।
ଅକ୍ଷତ ଗୁବାକ ଦେଲେ ଶ୍ରୀଗାଣ୍ଡିବଧାରୀ
ରାଜସୂୟଯାଗକୁ ଚଳ ଆଜ୍ଞା ଅବଧାରି ।
ରାଜାଙ୍କର ମେଳେ ଥିବ ଦାରୁଣା ନଗରରେ
ବାହୁଡ଼ି ରାଜାଙ୍କୁ ଘେନିଯିବା ପର୍ଯ୍ୟନ୍ତରେ ।
ସୁମନ୍ତକ ବୋଲେ ସ୍ୱାମି ମୋ ଅନେକ ଭାଗ୍ୟ
ଯେଉଁ ମହାଯଜ୍ଞ ଦେଖି ପ୍ରାପ୍ତ ହୁଏ ସ୍ୱର୍ଗ ।
ପୂର୍ବରୁ ତପ ଯାହାର ଅଛଇ ଅର୍ଜିଲା
ଦର୍ଶନେ ଇହଜନ୍ମର ପାପ ନାଶଗଲା ।
ଶୁଣନ୍ତେ ଅନେକ ଜନ୍ମ ପାପ ହୁଏ ହତ
ଦେଖନ୍ତେ ବୈକୁଣ୍ଠପୁର ହୁଏ ପଥପତ ।
ବହୁତୋଷେ ସୁମନ୍ତକ ନୃପତି ଶେଖର
ବହୁତ ସମ୍ଭ୍ରମେ ଚଳେ ଘେନି ସୈନ୍ୟବଳ ।
ସେଠାରୁ ପ୍ରସ୍ଥାଣ କଲେ ପାର୍ଥ ବୀରବର
ବଜସ୍ୱମଣ୍ଡଳ ବୋଲି ଏକଇ ନଗର ।
ସେ ରାଜ୍ୟ ଭିତରେ ଯାଇ ପଶିଲେ ସଇନ
ବାରତା ପାଇଣ ରାଜା ଆସେ ସୈନ୍ୟ ଘେନ
ବଜସ୍ୱକେତନ ବୋଲି ସେ ନୃପତି ନାମ
ଅର୍ଜୁନ ସମ୍ମୁଖରେ ଆସି କରଇ ପ୍ରଣାମ ।
ବୋଲେ ସ୍ୱାମି ଧନ୍ୟ ଧନ୍ୟ ମୋର ଦେନି ଆଖି
କର୍ଣ୍ଣେ ଶୁଣିଥିଲି ଏବେ କୃତାର୍ଥ ମୁଁ ଦେଖି ।
ଦିଶିନରଞ୍ଜନ ଆସି ବଜେ ମୋର ପୁରୀ
ଜନ୍ମାନ୍ତ ପାପ ନାଶିଲେ ଦେଖି ନରନାରୀ ।
ଆପଣେ ସ୍ୱୟମ ଧର ତାଳଇ ନୃପତି
କୃତକୃତ୍ୟ ହୋଇ ପାର୍ଥ [illegible]

ବଜସ୍ୱମଣ୍ଡଳ ରାଜ୍ୟେ ପଶନ୍ତେ ଶୋଭିଲା
ଆକାଶ ଭେଦ କି ଇନ୍ଦ୍ର ଆସି ବଜେ କଲା ।
କେଶବାସ ଅସମ୍ଭାଳେ ନାଗ୍ୱଏ ଧାମନ୍ତ
ଗୁରୁଜନଙ୍କୁ ନ ମାନି ଦେଖିଣ ଯାଆନ୍ତି ।
ମୋହବଶ ହେବେ ହିଶିକୃଷ୍ଣ ମୁଖ ଲୁହିଁ
ବୋଲନ୍ତି ଅନଙ୍ଗ ସ୍ୱାଲୁ ପଟାନ୍ତର ନାହିଁ ।
ଅର୍ଜୁନ ବଜସ୍ୱ କଲେ ଜଗନ୍ତି ଉପରେ
ଶତଗ୍ରୟ୍ୟା ଘେନି ରାଜା ଖଟଇ ପଯ୍ରରେ ।
ଆଲଟ ସ୍ୱମର ଘେନି ଡାକଇ ରାଜନ
ବୋଲେ ଅନୁଗ୍ରହ ମୋର ଆଜ ହେ ଅର୍ଜୁନ
ଶୁଦ୍ଧ ସୁବର୍ଣ୍ଣ କଳସ ପତାକାର ଚନ୍ଦ୍ର
ଉତ୍ସବ କରଏ ରାଜା ଆପଣା ଭୁବନ ।
ନିମନ୍ତ୍ରଣ କଲେ ତାକୁ ସୁଭଦ୍ରାର ନାହା
ହସ୍ତିନା ରାଜ୍ୟକୁ ରାଜା ବେଗହୋଇ ଯାଆ ।
ସେ ସ୍ୱାମୀଙ୍କର ଆଜ୍ଞାକୁ ନରଧାର ଘେନି
ଅନୁକୂଳ କରି ରାଜା ସାଜଲା ସଇନ ।
ଆପଣେ ଥାଟ ଚଳାଇ ଦେଲେକ ଅର୍ଜୁନ
ଦଣ୍ଡ ଘେନିଣ ବାହାର ବଜସ୍ୱକେତନ ।
ତହୁଁ ଚଳାଇ ଅର୍ଜୁନ ସାଜ ନଜ ଥାଟ
ପ୍ରବେଶ ହୋଇଲେ ଯାଇ ଦେଶ ସଉରାଷ୍ଟ୍ର ।
କୃତକେଶରୀ ନାମରେ ତହିଁ ନୃପବର
ବହୁଦେଶ ସାଧି ସେହୁ ରାଜ୍ୟର ଈଶ୍ୱର ।
ଅନେକ ରାଜାଙ୍କ ତୁଲେ ହୁଏ ସେ ବିବାଦୀ
ପ୍ରତାପକେଶରୀ ନାମେ ବହୁରାଜ୍ୟ ସାଧି ।
ଅବଭରରେ ପଳାଣ କରୁଥାଏ ଥାଟ
ଉତ୍ତର କୋଶଳେ ସେହି ଅଟେ ନୃପଶ୍ରେଷ୍ଠ ।
ଗଙ୍ଗା ଯମୁନା ନଦୀର ମଧ୍ୟରେ ତା ରାଜ୍ୟ
ବଡ଼ ଧର୍ମବନ୍ତ ଅଟେ ସେ ନୃପତି ଆର୍ଯ୍ୟ ।
ଧନଧାନ୍ୟେ ପରିପୂର୍ଣ୍ଣ ଅଟଇ ତା କୋଷ
ରାଜା ମଧ୍ୟ ଧନଶାଳୀ ଧାର୍ମିକ ପୁରୁଷ ।
ପନର ଅକ୍ଷଉଣୀ ସୈନ୍ୟ ତାହାକୁ ଖଟଇ
ପଞ୍ଚଧାର ପର୍ବତରେ ତା ରାଜ୍ୟ ଅଟଇ ।
ପଞ୍ଚଶତ ପାରିଦଣ୍ଡ ନୃପତି ଖଟନ୍ତି
ଉତ୍ତର କୋଶଳେ ତାର ଅଛଇ ସୁଖ୍ୟାତି ।
ଅର୍ଜୁନ ଯାଇ ପ୍ରବେଶ ହେଲେ ତାର ରାଜ୍ୟେ
[illegible]

ଦେଶାନ୍ତର ବାର୍ତ୍ତା ଦେଲ ନୃପତିଙ୍କୁ ଆଣି
ଅର୍ଜ୍ଜୁନ ତୋ ରାଜ୍ୟେ ଥାଟ କଲଣି ପଲଣି ।
ସକଳ ରାଜ୍ୟଙ୍କୁ ସେହୁ ଆସୁଅଛି ସାଧି
ଜମାଗୋଷ୍ଠ ନୃପତିଙ୍କୁ ରଥେ ଅଛି ବାନ୍ଧି ।
କ୍ଷତ୍ରିୟବର ସୁନ୍ଦର ବଡ଼ଇ ପ୍ରତାପୀ
ସଂଗ୍ରାମେ ଜଗତଜଣା ପୁଣି ମହାକୋପୀ ।
ରାଜାଠାରୁ ଶୁଣି ନୃପ ହୋଇ ପ୍ରଚଣ୍ଡ
ସନ୍ନିଧିକୁ ହକାରିଲେ ଶତେ ପାଶଦଣ୍ଡ ।
ଆରେ କିଏ ପଶିଲା ମୋ ରାଜ୍ୟେ ନ ଡରର
ବେଗଭର ମୋ ଛାମୁକୁ ଆଣ ତାକୁ ଧର ।
ପ୍ରାଣେ ତାହାକୁ ନ ମାର ବାନ୍ଧିକର ଆଣ
କେବଣ ଦେଶୁ କାହିଁକି ଆସିଛି ତା ଜାଣ ।
ନୃପତି ବଚନେ ପାଶଦଣ୍ଡ ରାଜାମାନେ
ହମଦଣ୍ଡ ସାଜ ବେଗେ ଗଲେ କୋପମନେ ।
ରଥ ଗଜ ପଦାତିଙ୍କ ନ ଯାଇ କଳନ
ବେଢ଼ିଣ ସଇନମାନେ ପ୍ରହାରିଲେ ବାଣ ।
ଆଗୁଆଣି ଥାଟେ ବାର ଅର୍ଜ୍ଜୁନକୁ ଦେଖି
ଚହୁଁ ସଇନ ରାଜିଲେ ସଂଗ୍ରାମ ଉପେକ୍ଷି ।
ଥାଟ ରାଜନ୍ତେ ବିଜୟ ଜୟ ସେନାପତି
ଧନୁ ଧରି ଓଗାଳିଲେ ହୋଇ କୋପମୂର୍ତ୍ତି ।
ଦେଖି କୋପାନଳେ କୃତକେଶୀ ସଇନ
ଆକର୍ଷି ଶର ବର୍ଷିଲେ ଶରାସନ ଘେନ ।
ଅସ୍ତ୍ରମାନ ପ୍ରହାରିଲେ ଜଳବୃଷ୍ଟି ପ୍ରାୟେ
ଶର ବରଷାରେ ଗଗନ ଅନ୍ଧକାରମୟେ ।
ଅବଚ୍ଛିନ୍ନ ନାରାଚକେ ବହୁ ପରମାଣି
ଗଗନେ ଅଦୃଶ୍ୟ ହେଲେ ଦେବ ଦିନମଣି ।
ଘୋରଯୁଦ୍ଧ ଦେଖିକରି ଉଠିଲେ ଅର୍ଜ୍ଜୁନ
ଲକ୍ଷେବଳ ଧନୁ ହସ୍ତେ ଦିଶିଲା ଶୋଭନ ।
ଅକ୍ଷୟ ତୂଣ ନାରାଚ ଧନୁରେ ଯୁବାଇ
ସର୍ବ ସୈନ୍ୟଙ୍କୁ ବାନ୍ଧିଲେ କୋପଭର ହୋଇ
ସୈନ୍ୟମାନଙ୍କ ଉପରେ ଶରମାନ ପଡ଼ି
କବଚ କୁଣ୍ଡଳ ସେନା ପଡ଼ିଲେକ ଛିଡ଼ି ।
ଗଜ କୁମ୍ଭସ୍ଥଳେ ପଡ଼ି ନାରାଚ ନକଳ
ମହାମତ୍ତଗଜମାନେ ଉଡ଼ୁଛନ୍ତି ଟଳ ।
କୃତକେଶୀ ସୈନ୍ୟ ମହାବନସ୍ତର ପ୍ରାୟେ
କାଳାନଳର ପବନ ଅଟେ ଧନଞ୍ଜୟେ ।

ପବନ ବରଷାରେ ଯେସନ୍ତେ ତରୁ ଭଙ୍ଗେ ଲୋଟି
ତେସନ୍ତେ କାଳାନଳ ଶର ପାର୍ଥ କରେ ବୃଷ୍ଟି ।
ଶରଘାତେ ସକଳଙ୍କୁ ବନ୍ଧେ ସବ୍ୟସାଚୀ
ଯେସନେ ଅଗ୍ନି ବନନ୍ତ ଦହନ କରୁଛି ।
ପଡ଼ିଲେ ସଇନ କୁଳ ପାର୍ଥ ଶରଘାତେ
ଖଜ ଚୂର୍ଣ୍ଣ ହେଲେ ରଥ ଗଜାଦି ସହିତେ ।
ନୃପତି ଆଗେ କହିଲେ ଯାଇଁ ଯୂଥପତି
ଅର୍ଜ୍ଜୁନ ଶରେ ତୋ ସୈନ୍ୟ ହେଲେ ବିନଶ୍ୟତି
ଯୂଥପତିର ବଚନେ କୃତକେଶୀ ରାୟେ
କୋପରେ ଗର୍ଜ୍ଜନ କଲା କାଳସର୍ପ ପ୍ରାୟେ ।
ଅଧର ପୁଷ୍ଟ କଷଣ ଓଷ୍ଠେ ଦନ୍ତରୁପି
ଆସ୍ଥାନ ଭୂମିକୁ ସେହୁ ପଡ଼ିଲାକ କ୍ଷେପି ।
ଲୌହସାର ବଜ୍ରଗଦା ଘେନ ରାଜାହସ୍ତେ
ଭେରେକାର କରି ଚହୁଁ ଧାଏଁ ପାଦଗତେ ।
ମହାବଳବନ୍ତ ରାଜା ପ୍ରତିଜ୍ଞା ତା ଗୁରୁ
କାଳସର୍ପ ଗର୍ଜେ ଯେସନ୍ତେ ଟେକିକରି ଫେରୁ ।
ଧାଇଁଲା ନୃପତି ଯହୁଁ ଗୋଡ଼ାଇଲେ ଯୋଧୀ
ରେରେକାର କରି ଶର ବାନ୍ଧିଲେକ ସନ୍ଧି ।
ରାଜାକୁ ଦେଖି ବିଜୟ ଜୟ ସେନାପତି
ରଥ କମ୍ପାଇ ଉଠିଲେ ହୋଇ କୋପମୂର୍ତ୍ତି ।
ସୈନ୍ୟ ଧାମନ୍ତେ ଅର୍ଜ୍ଜୁନ କରେ ସମାର୍ଜନ
ରହ ରହ ସଇନ ହୋ ବୋଲି କରେ ଧ୍ୱନ ।
ଅର୍ଜ୍ଜୁନ ବୋଲେ ଅଜ୍ଞାନୀ ଆରେ ନୃପମଣି
ସମଦଣ୍ଡ ହରାଇବୁ ବାରତା ନ ଜାଣି ।
ମାତଳକୁ ଆଜ୍ଞାକଲେ ସୁଭଦ୍ରାର ନାହା
ନୃପତି ଛାମୁକୁ ବେଗେ ରଥ ମୋର ବାହା ।
ଅର୍ଜ୍ଜୁନ ବଚନେ ରଥ ଚଳାଇ ସାରଥି
କୃତକେଶୀ ଆଗେ ରଥ କରିଲା ଝଟତି ।
ରଥ ଦେଖି ଧାଡିକାରେ ଗଦାକୁ ବୁଲାଇ
ଅର୍ଜ୍ଜୁନର ରଥେ ତାହା ପ୍ରହାର କରଇ ।
ଅର୍ଜ୍ଜୁନ ବୋଇଲେ ଆରେ ଅଜ୍ଞାନୀ ତୁ ଭୂପ
କାହା ଉପରେ ପ୍ରତିଜ୍ଞା କରୁଛୁ ଏ ରୂପ ।
କାଳସର୍ପମୁଖେ କେବେ ନ ବଞ୍ଚଇ ପ୍ରାଣୀ
ରାଜସୂୟଯାଗ ବାରତା ତୁ ନାହୁଁ କି ଜାଣି ।
ତ୍ରିସହସ୍ର ରାଜାଙ୍କୁ କରିବ କୌଶଳେ
ସକଳ ଦେଶରୁ ଜାଣ ଯିବେ ମହୀପାଳେ ।

ଆମ୍ଭେ ତ ନୋହୁ ତୋହର ବଇରି ବିବାଦୀ
କାହାର ସଙ୍ଗତେ ନୋହୁ ଆମ୍ଭେ ବନ୍ଦବାଦୀ
ନିମନ୍ତ୍ରଣ ଦେବାପାଇଁ ଆସିଅଛୁ ଆମ୍ଭେ
ଅଜ୍ଞାନେ ସୈନ୍ୟ କପାଇଁ ମରାଉଛ ତୁମ୍ଭେ ।
ଉତ୍ତର ଦିଗର ରାଜା ଏଡ଼ିକି ମୂର୍ଖ କି
ବିଷ୍ଣୁର ନ କର ଜମାଗୋଷ୍ଟ ବନ୍ଦୀ ଦେଖି ।
ଜରାସନ୍ଧ ବଧ ହେଲା ସେ ଯଜ୍ଞ ନିମନ୍ତେ
ତାହାର ବାର୍ତ୍ତାକ ତୋତେ ନ କହିଲେ ଦୂତେ
ଆମ୍ଭର ତୁଲେ ତୁ କପାଁ ସମରି କରିବୁ
ଏଡ଼େ ସମ୍ପଦ ହରାଇ ବୃଥାରେ ମରିବୁ ।
ଅର୍ଜ୍ଜୁନ ବଚନ ଶୁଣି ରାଜା କୁତକେଶୀ
ପ୍ରଣାମ କରିଲା ପାର୍ଥ ପାଦତଳେ ଆସି ।
ପୁଣିହିଁ ସେ ରାଜା ଦେଖେ ଅର୍ଜ୍ଜୁନର ତେଜ
ରଥରେ ବସିଅଛଇ ହୋଇ ଚତୁର୍ଭୁଜ ।
ଆପଣ ଇ ଉଷ ତେଜ୍ୟା କରି ନୃପମଣି
ବୋଲେ ତୁହି ନାରାୟଣ ଅଟୁ ଫାଲଗୁନ ।
ମୁଁ ହୀନ ପାମର ଦେବ ନ ପାରିଲି ଚିହ୍ନି
ମନ୍ଦପଣ କରି ତୋତେ ପୁଚ୍ଛିଲି ନ ଜାଣି ।
ସ୍ୱାମି ଅଜ୍ଞାନ ଲୋକର ଉଚିତ ଚେତନା
ଦୋଷୀ ଲୋକର ଦୋଷକୁ କ୍ଷମା କରିଦେବା ।
ଅର୍ଜ୍ଜୁନ ବୋଇଲେ ଉଠ କୁତକେଶୀ ରାୟେ
ବାଞ୍ଛା ସିଦ୍ଧ ହେଉଥାଉ ତୋର ସର୍ବଦାୟେ ।
ତୁ ଯେ ବଡ଼େ ମଣ୍ଡଳର ଅଟୁ ଅଧିପତି
ଧାର୍ମିକରାଜା ଜଗତେ ତୋ ନାମ ବିଖ୍ୟାତି ।
ଅକାରଣେ ମରାଇଲୁ ସଇନ୍ୟ ଲୋକଏ
ବସାଇଣ ଡିଆଇନ୍ତ ପାଶେ ଧନଞ୍ଜୟେ ।
କଟକେ ଉତ୍ସବ ଚହୁଁ କରାଇ ନୃପତି
ଅର୍ଜ୍ଜୁନ ବିଜୟ କଲେ ଉତ୍ତର ଜଗତି ।
ଅକ୍ଷତ ଯୋଗାଡ଼ ନେଇ ଦେଲେ ଫାଲଗୁନ
ରାଜସୂୟଯାଗକୁ ଯା ଯା ତୋର ସୈନ୍ୟଗନ ।
ନୃପ ବସ୍ତୁ ଧନ ନେଲା ଦେଖା ଉରଶମା
କଟକୁ ବାହାର ହୁଏ ଶୁଭଲଗ୍ନ ଦେଖି ।
ଚହୁଁ ଆଟ ଚଳାଇଲେ ବୀରବର ପାର୍ଥ
ପଶିଲେ ସେ ଯାଇକରି ଅସ୍ତନ ବନସ୍ତ ।
ଅସ୍ତନ ବନେ ଅଛନ୍ତି ଉଦୟ ପର୍ବତ
ନଦୀ ବୋଲି ରାମ ଛନ୍ଦି କହାର ପର୍ବତ

ବେନଶତ ଯୋଜନ ସେ ନଗ୍ର ଆୟତନ
କଟକ ମାଡ଼ ବସିନ୍ତି ଏକାଦଶ ପୂର୍ଣ୍ଣ ।
ନନ୍ଦକେଶୀ ପ୍ରସଙ୍ଗେ ସେ ରାଜା ଅଟଇ
ସେହି ରାଜ୍ୟେ ପ୍ରବେଶିଲେ ବୀର ଧନଞ୍ଜୟ ।
ରାଜାଙ୍କର ଅଟଇ ଯେ ସୁବର୍ଣ୍ଣ ଉଆସ
ସବୁ ପ୍ରଜାଙ୍କ ଗୃହରେ ସୁବର୍ଣ୍ଣ କଳଶ ।
ଅଶୀମର୍ଭୁ ତ ବସନ୍ତ କଟକ ଭିତର
ସୁବର୍ଣ୍ଣ ନିର୍ମାଣ ଅଟେ ସଭିଙ୍କର ଘର ।
ପରସ୍ତ୍ରୀର ବିବାଦୀ ନୁହେଁ ମହାରାଜା
କୁବେର ସମାନ ତାର ନନ୍ଦକେଶ ପୂଜା ।
ଶତ୍ରୁ ଉପଗତ ତାକୁ ସ୍ୱହିଁ ଚତୁର୍ଦ୍ଦିଶେ
ତାହାର ରଣକୁ ଦେବେ ବାସନ୍ତି ଆକାଶେ ।
ଦିଗବିଜେ କରିବାକୁ ବାସବ ଆତ୍ମଜ
ବଣ୍ଟ ଯୋଜନ ପଶନ୍ତେ ଯାଇ ତାହା ରାଜ୍ୟ ।
ନନ୍ଦସଦନ ବୋଲଣ ଚହ୍ନି ନଦୀଟିଏ
ସେ ନଦୀ ଦକ୍ଷିଣେ ବହେ ସ୍ୱର୍ଣ୍ଣ ରଜୋମୟେ
ସେ ନଦୀରେ ସ୍ନାନ କଲେ ବୀର ଫାଲଗୁନ
ସୁବର୍ଣ୍ଣ କାନ୍ତି ପରାୟେ ଦିଶିଲେ ସଇନ ।
ନିତ୍ୟକର୍ମ ସାରି ଯାଇ ରାଜ୍ୟରେ ପ୍ରବେଶ
ବାଜେ ଦୁନ୍ଦୁଭି ଦାଉଣ୍ଡି ପୁଣି ଜୟଘୋଷ ।
ରାଜା ଆସ୍ଥାନକୁ ଶୁଭେ ବାଦ୍ୟଘୋଷ ନାଦ
ନୃପତିକି ଜଣାଇଲେ ମନ୍ତ୍ରୀ ଶିବପାଦ ।
ସ୍ୱାମି ରଥ ଗଜ ଅଶ୍ୱ ପଦାତି ସଇନ
ଘେନି ରାଜ୍ୟ ପଶେ କେହି କାହାକୁ ନ ମାନି
ମନ୍ତ୍ରୀ ବଚନେ ବୋଇଲେ ସେ ନନ୍ଦକେଶ୍ୱର
ଆରେ କେଉଁ ଦେଶ ରାଜା ତା ତଦନ୍ତ କର ।
ପର ଥାଟ ହେଲେ ଆଣ ମୋ ସ୍ୱମୁକୁ ଧରି
ବନ୍ଧୁ ହୋଇଥିଲେ ଆଣ ଗଉରବ କରି ।
ରାଜାର ବଚନ ଶୁଣି ମନ୍ତ୍ରୀ ଶିବପାଦ
ଅର୍ଜ୍ଜୁନ ସ୍ୱମୁକୁ ଚଳେ ଘେନିଣ ସମ୍ବାଦ ।
ଅର୍ଜ୍ଜୁନ ପଶିଲେ ନନ୍ଦକେଶ୍ୱର ଦେଉଳେ
ବିନୟ ଭାବେ ସେବଇ ତାଙ୍କୁ ପାଦତଳେ ।
ଶୁଦ୍ଧସ୍ଫଟିକର ପ୍ରାୟ ତାଙ୍କର ମୂରତି
ମର୍କତ ରସାଣ ପ୍ରାୟ ଦିଶେ ଲିଙ୍ଗ ମୂର୍ତ୍ତି ।
ଜୟ ଜୟ ବିଶ୍ୱରୁଦ୍ର ନନ୍ଦକେଶ ସ୍ୱାମି
[illegible]

କର୍ମାଙ୍ଗ ସ୍ୱରୁପ ତୁମ୍ଭ ଜମ୍ବୁ ଭୂ ଧବଳା
ସର୍ବଦା ପ୍ରସନ୍ନ ମୋତେ ହୁଅ ଆହେ ଭୋଳା
ଡାହାଣେ କର୍ଣ୍ଣ କଟାଇ ବାମରେ ଉଦଣ୍ଡ
ଲଲାଟ ପାଟି ତୋହର ଚନ୍ଦନେ ତ୍ରିପୁଣ୍ଡ୍ର ।
ଦୁଃସହ ଦୁରନ୍ତଇଳୁ ହର ମୋର ଶୂଳ
ନୃତ୍ୟରଙ୍ଗେ ଭୋଳାଭୋଳେହୋଇଲେକପାଳୀ
ପିତା କୁଣ୍ଡଳୀ ତୋହର ଶ୍ରୀକରେ ଅଧାଟି
ସପତ ସ୍ୱରରେ ବୀଣା ତାନ ତୋତେ ଝଟି ।
କ୍ଷଣକରେ ନୃତ୍ୟକରି କ୍ଷଣେ ଗୀତ ଗାଇ
ପାଇଲୁ ଅଭୟ ପଦ ଶିବଙ୍କୁ ମନାଇ ।
ବିଘ୍ନ ବିନାଶନ ନାଥ ଯୋଗଧ୍ୟାନମଗ୍ନ
ଭକତବତ୍ସଳ ତୁମ୍ଭ ପରଲୋକ ଚିନ୍ତା ।
କଇଳାସ ସ୍ୱର୍ଗ ତୁମ୍ଭ ସିଂହଦ୍ୱାର ପାଳ
ତୋର ଭୟେ ନ ପଶନ୍ତି ଦୈତ୍ୟ ଦିଗପାଳ ।
ଦଣ୍ଡେକ ରହି ବୋଲିଣ ବୋଲି ଦେବତାଙ୍କୁ
ସତ୍ୟରେ ସତର ଲକ୍ଷ ହୋଇଲି ତୁମ୍ଭଙ୍କୁ ।
ତୁ ଦେବ ପରମାନନ୍ଦ ଅଟୁ ମହାଯୋଗୀ
ଯାହାର ନାମ ଧରନ୍ତେ ଯମଦର୍ପ ଭଙ୍ଗୀ ।
ତବ ଚରଣେ ମୋହର ସଦା ଭକ୍ତି ସେବା
ଭଇରବ ନାଥ ମୋତେ ପ୍ରସନ୍ନ ହୋଇବା ।
ଶରଣ ଉଦ୍ଧାରଣ ତୁ ଦେବ ସର୍ବକାଳେ
ଜନ୍ମେ ଜନ୍ମେ ସେବା ଥାଉ ତୁମ୍ଭ ପାଦତଳେ
ସଦାନନ୍ଦର ନନ୍ଦନ କଳ୍ପେ କଳ୍ପଜାତ
ଏ ଭବସାଗରୁ ମୋତେ ଉଦ୍ଧର ତୁରିତ ।
ଶ୍ରୀ ନନ୍ଦିକେଶ୍ୱର ସ୍ୱାମି ନମସ୍ତେ ନମସ୍ତେ
ଶାରଳା ଦାସ ତୁମ୍ଭଙ୍କୁ ଚିନ୍ତଇ ନିରତେ ।
ଅନେକ ବିନୟ ଯତ୍ନ ହେଲେ ଫାଲଗୁନି
ଭକତେ ପ୍ରସନ୍ନ ହେଲେ ତହୁଁ ମହାତ୍ମା ।
ବଜେ ରୁଦ୍ରଦେବ ଯେନ ଶ୍ରୀ ରୁଦ୍ରଦେବତା
ଦେଖି ପାର୍ଥ ତାଙ୍କ ପାଦେ ହେଲା ପ୍ରଣମିତା ।
ହସ୍ତେ ଏକ ମାଳା ଧରି ଗିରିଜାର ବଳା
ଅର୍ଜୁନର କଣ୍ଠେ ନେଇ ଦେଲେ ଜୟମାଳା ।
ପ୍ରସନ୍ନରେ ଆଜ୍ଞା ଦେଲେ ହେଷ ବିଶ୍ୱବାସୀ
ବାଞ୍ଛା ସିଦ୍ଧ ହେଉ ତୋର କଲ୍ୟାଣ ପାଆସି ।
ଏ ନନ୍ଦଗ୍ରାମରେ ରଜା ନନ୍ଦନ ନୃପତି
ତୋହର ପାଦପଦ୍ମରେ କରୁ ସେ ଭକତି

ନନ୍ଦିକେଶ୍ୱର ପ୍ରସନ୍ନେ ନନ୍ଦିକେଶ ରଜା
ଅର୍ଜୁନ ପାଦ ପଦ୍ମରେ ଯାଇ କଲା ପୂଜା ।
ଦେଖି ସାନନ୍ଦ ହୋଇଲା ତହୁଁ ଫାଲଗୁନ
ନିମନ୍ତ୍ରଣ କଲା ତାକୁ କରେ ଅର୍ଘ୍ୟଦେନ ।
ବାବୁ ଦଣ୍ଡ ଭୋଜନଯାଅ ତୁ ପରମ ଯୋଗୀ
ବରୁଣାବନ୍ତ ସଙ୍ଗକୁ ଚଳ ବେଗି ବେଗି ।
ଅର୍ଜୁନର ପାଦତଳେ ତହୁଁ ସେ ପ୍ରଣମି
ବୋଲେ ଆଜ୍ଞା ପରମାଣେ ଯିବ ଦେବସ୍ୱାମି ।
ଯେବେ ଅନୁଗ୍ରହ କଲୁ ଦେବ ଫାଲଗୁନ
ଭକ୍ତିଭାବରେ ମାଗିବ ଦେଜବୁ ବଇମା ।
ଅର୍ଜୁନ ବୋଇଲା ମାଗ ଯେମନ୍ତ ତୋ ଇଚ୍ଛା
ଉମାଗୋଷ୍ଠୁ ଘୁଡ଼ି ମାଗ ଯେମନ୍ତ ତୋ ବାଞ୍ଛା ।
ଶୁଣିଣ ନୃପତି ତହୁଁ ହେଲା ମୌନବ୍ରତ
ଦନ୍ତେ ଲୋଡ଼ି ଚାହାରିଲା ଶିରେ ଦେଇ ହାତ ।
ଅର୍ଜୁନ ବୋଲଇ ତୁମ୍ଭ ଚଳ ଦ୍ୱାରାବେ
ମୋର ଯିବାଯାଏ ଥିବୁ ସେ ବାରୁଣାବନ୍ତେ ।
ତହୁଁ ଅର୍ଜୁନ ଚଳିଲେ ନନ୍ଦଗ୍ରାମ ଜିଣି
କଳପ ରାଜ୍ୟେ ପ୍ରବେଶ ହୋଇଲେ ତକ୍ଷଣି ।
ଷଣ୍ଢୁରସେନ ବୋଲିଣ ତହିଁ ନରପତି
ସମ୍ମୁଖେ ଡଗର ଯାଇ କହିଲା ଝଟତି ।
କେବଣ ଦେଶର ରଜା ଆସେ ଦଣ୍ଡଦେନ
ରଥ ଗଜ ସଙ୍ଗ ଅଛି ପଦାତି ସଇନ ।
ଦେବଗଣଙ୍କ ଦୁନ୍ଦୁଭି ବାଜେ ଅପ୍ରମିତ
ବହୁ ରାଜ୍ୟ ଜିଣିଛି ସେ ପ୍ରତିଜ୍ଞା ବହୁତ ।
ଏମନ୍ତେ ପ୍ରତିଜ୍ଞା କରି କହନ୍ତେ ଡଗର
ଶୁଣିକରି କୋପାନଳ ହୋଇଲା ଷଣ୍ଢୁର ।
ଯମ ଅର୍ଗଳକୁ ଭଙ୍ଗି ପାରେ ମୁହିଁ ରଣେ
ଆଦିତ୍ୟ ଲୁଚିଯାଏ ମୋ ଥାଟର ପଲ୍ଲଣେ ।
କୁବେର ଠାବରୁ ମୁହିଁ ପାଇଛି ସମ୍ମାନ
ଭୟେ ନାଗଲୋକ ଦିଅନ୍ତି ଶତଭାର ଧନ ।
ଉତ୍ତର କୋଶଳେ ରହି ଅଟେ ରଣଜିତା
ସଂଗ୍ରାମେ ସ୍ଥିରେଁ ନାହିଁ ମୋତେ ଯେ ଜିଣନ୍ତା ।
ରଜାର ପ୍ରତିଜ୍ଞା କରି ଅର୍ଜୁନ ସଇନ
କଟକେ ପଶିଲେ ଯାଇ କରି ଘୋରଧ୍ୱନ ।
ଜଗଘରେ ଥାଇ ରଜା ଦେଖେ ସମଦଣ୍ଡ
କୋପରେ ନୃପତି କରେ ଧଇଲା କୋଦଣ୍ଡ ।

ଦଶ ଅଇରାବତ ମାଲ ଯେହ୍ନ ମହାବୀର
ଜଗତ୍ତ ଉପନ୍ନ ସେହ୍ନ ମାଇଲକ ତୀର ।
ଧାମନ୍ତ ଦୁର୍ଦ୍ଧଣ୍ଡ ବଳ ବାହାନାଦ ତେଜ
ରେ ରେ ଶବଦେ ଉଠିଲେ ସର୍ବେ ଗଜରାଜ
ଯେସନେ ପର୍ବତ ଆସେ ସ୍ଥାନ ତେଜ୍ୟାକରି
ଗିରି ସଦୃଶ ଶରୀର ଦଶଇ ତାଙ୍କର ।
କରେ ଯେହ୍ନଛନ୍ତି ଲୁହା ବେଢ଼ ଗଦାବର
ସେହ୍ନ ଏକ ଏକ ଗଦା ଅଶୀ ଅଶୀ ଭାର ।
ସୈନ୍ୟ ମଣ୍ଡଳ ଯେହ୍ନଣ ବାହେ ବୀରବାହୁ
ଅଧରକୁ ବଳାଶନ୍ତି ଯେହ୍ନେ ଦଶେ ରାହୁ ।
ବଜସ୍ବ ଘୋଷ ମର୍ଦ୍ଦଳ ଦାଉଣ୍ଡି ବଜାଇ
ବୀରନାଦ ଘୋରଘଣ୍ଟ କାହାଳ ବଜାଇ ।
ଆରେରେ ବୋଲି ଧାଇଁଲେ ସକଳ ସେ ବୀରେ
ପାର୍ଥ ଥାଟ ଓଗାଳିଲେ କଟକ ବାହାରେ ।
ଗଦା ବୁଲାଇ ପ୍ରହାର କଲେ ବଜ୍ରପାଣି
ଶବଦେ ଉଲ୍କାପାତ କମ୍ପିଲା ଧରଣୀ ।
ଦୁର୍ବାର ସଇନ ଦେଖି ପାର୍ଥ ସେନାପତି
ଆଗେ ଓଗାଳିଲେ ଯାଇ ହୋଇ କୋପମୂର୍ତ୍ତି
ମହାକ୍ଷତ୍ରୀ ବଳବନ୍ତା ଅଟେ ଦର୍ପୀରାଜା
ସମରେ ଅଭୟ ଅଟେ ଯମଦର୍ପ ଗଞ୍ଜା ।
ସମରେ ସର୍ବେ ଦୁଇବଳ ହେଲେ କନ୍ଧ
ଦୁହେଁ ସମ୍ଭାଳି ନୋହିଲେ ରହିବାକୁ ପଛ ।
ଧାଇଁ ଉପରେ ପଡ଼ିଲେ ଶ୍ରୁଣୁଭ ସଇନ୍ୟ
ପାର୍ଥସୈନ୍ୟ ନ ରହିଲେ ରହି ସେହି ସ୍ଥାନେ
କାମ୍ୱ କମାନ ତାଙ୍କର ଶରୀରରେ ପଡ଼ି
ନ କାଟଇ ତାଙ୍କ ଅଙ୍ଗେ ପଡ଼ଇ ଉପୁଡ଼ି ।
ଯେତେ ଶର ନ ଭେଦିଲା ତାହାଙ୍କର ସେହ୍ନା
କୋପେ ବାସବ ବହିଲା ଧରି ତୀକ୍ଷଣ ମୂନା ।
ହୁଦେ ନାରାଚ ବହୁତ ଯେତେ ଗଲା ଫୁଟି
ଲୋମେ ଲୋମେ ଶରବାଜ ହେଲା ରକ୍ତବୃଷ୍ଟି
ଛଧିରେ ବିପୁଣ୍ଡ୍ର ହେଲା ସମସ୍ତଙ୍କ କାୟ
ସ୍ବଭାବେ ଦିଶନ୍ତି ଯେସନେ ଅଗ୍ନି ବଳ ପ୍ରାୟ ।
ଏକ ଉପରେ ଆରେକ ପଡ଼ଇ ଗରଜି
କେତେ ନ ସତ ହୋଇଣ ରଣୁ ଯାଏ ଭାଜି ।
ଏରୂପେ ବଧନ୍ତେ ପାର୍ଥ ନାରାଚ ଅନେକ
ବଳେ ତରୁଣ ଧାଇଣ ବୋଲନ୍ତ ପୃଥ ଲୋକ ।

ପ୍ରଚଣ୍ଡ ମାଳ ବୋଲିଣ ଏକ ମହାବୀର
ପୃଥ୍ୱୀ ନ ସହଇ ସେହ୍ନ ଦୁଷ୍ଟ ମଲ୍ଲବୀର ।
ବଜ୍ରାବଳ ବେଢ଼ ଗଦା ବୁଲାଇ ସେ ଉଠି
ପାର୍ଥଶରେ ତା ମସ୍ତକୁ ରକ୍ତ ହୁଏ ବୃଷ୍ଟି ।
ଲୋମ ଲୋମକେ ନାରାଚ ପଡ଼ଇ ତା କାୟେ
ଶରବୃଷ୍ଟି ହୁଏ ଯେହ୍ନେ ଝିଙ୍କପକ୍ଷୀ ପ୍ରାୟେ ।
ଲକ୍ଷ ଲକ୍ଷ ବାଣ ଯେହ୍ନ ବନ୍ଧେ ଫାଲଗୁନ
ତଥାପିହିଁ ନ କମ୍ପଇ ସେ ବୀର ଅମାନ ।
କରେ ତହିଁ ଯେହ୍ନ ପାର୍ଥ ମାରନ୍ତେ କ୍ଷୁରରେ
ମୁଣ୍ଡ ଛିଣ୍ଡିପଡ଼େ ଯାଇ ଶ୍ରୁଣୁଭ ଅଗ୍ରତେ ।
ଦେଖି ମୂର୍ଚ୍ଛାଗତ ହୋଇ ରାଜା ମହାମଲ୍ଲ
ଅସାଷ୍ଟମ ହୋଇ ତହୁଁ ପଡ଼େ ଭୂମିତଳ ।
ତା ଦେଖି ରଥୁ ଓହ୍ଲାଇ ବାସବ ଦୁଲାଳ
ପାଦଗତ୍ତ କରି ଧରେ ଶ୍ରୁଣୁରର ବାଳ ।
ଆକର୍ଷି ଧଇଲ୍ଲ ଖଣ୍ଡା ମାରିବ ବଜସ୍ର
ଏକାଳେ ମୁଖେ ଭରିଲା ସେହ୍ନ ଦଶନଖ ।
ଅର୍ଜ୍ଜୁନ ଦୟା କରିଲେ ତା ଅବସ୍ଥା ଦେଖି
ଛାଡ଼ିଦେଲେ ତାର କେଶ କୋପକୁ ଉପେକ୍ଷି
ଶରଣ ରକ୍ଷଣ ପାର୍ଥ ପରଦୁଃଖେ ଦୁଃଖୀ
ଶରଣ ବୋଇଲେ ତାକୁ ନ ମାରେ ଉପେକ୍ଷି
ବୀରଥୀ ବଅସ୍ୱ ଯେହ୍ନ ନକରେ ସଂହାର
ଛାଡ଼ି କେଶ ସଂହାରିଲା ତେଣୁ ଅସିବର ।
ପ୍ରଣିପାତ କରି ଶୁଏ ପାର୍ଥ ପାଦତଳେ
ଅନେକ ବିନୟ ହୋଇ କହଇ ବିକଳେ ।
ଅର୍ଜ୍ଜୁନଙ୍କୁ ପ୍ରଣିପତ୍ୟ ହେଲେ ଯୋଦ୍ଧାଗଣେ
ପାଞ୍ଚ ଅଇରାବତ ଗଲେ ସମର ପ୍ରାଙ୍ଗଣେ ।
ଅର୍ଜ୍ଜୁନ ବୋଇଲା ମନ୍ତ୍ରୀ ନ କହିଲା ତୋତେ
ଏତେ ଉପଦ୍ରବ ରାଜା କରିଲୁ କେମନ୍ତେ ।
ଶ୍ରୁଣୁର ବୋଲେ ଉତ୍ତରେ ମୁହିଁ ମହାବୀର
ଯୁଦ୍ଧ ମର୍ଦ୍ଦନ କରିଲୁ ଦର୍ପକୁ ମୋହର ।
ମନ୍ତ୍ରୀ ତଗର କହିଲେ ସବୁକଥା ଶୁଣି
ଏତେ ମହିମା ତୋହର ନ ପାରିଲି ଜାଣି ।
ମୁଁ ହୀନ ପାମରପଣେ ହରାଇଲି ବୁଦ୍ଧି
ଆଗେ ହରାଇଲି ଦେବ ଅର୍ଜ୍ଜିଲା ସମୃଦ୍ଧି ।
ସ୍ବାମି କ୍ଷମାଗୋଷ୍ଠ ରାଜା ବାନ୍ଧଅଛ ରଥେ
ଅଶ୍ୱ ଗଜମାନଙ୍କେ ଆଉ ଛାଡ଼ିବେ କେମନ୍ତେ ।

ଅର୍ଜ୍ଜୁନ ବୋଇଲେ ତୁହି ମୋର ହିତକାରୀ
ନାଶଗଲା ସଇନଙ୍କୁ ଦେଲୁ ତ ନ ପାରି ।
ପ୍ରତିଷ୍ଠ କରିବି ମୁଁ ତୋତେ ମହାଯାଗେ
ତୋର ମହିମା କହିବି ଋଷିମଙ୍କର ଆଗେ ।
ଆହୋ ବ୍ଣୁରମଲ୍ଲ ତୋ ଯେତେକ ସଇନ
ବାରୁଣାବନ୍ତକୁ ଚଳ ପାବିଦଣ୍ଡ ଘେନ ।
ସେ ବ୍ଣୁରମଲ୍ଲ କର ବହୁତର ସେବା
ଆଜକ ସ୍ୱାମି ମୋହର ଭୁବନେ ରହିବା ।
ଏ ମୋର ରାଜ୍ୟରେ ଷାଟେ କେତେ ମହାଯୋଧି
ଆବର ଦେଖ ମୋ ରାଜ୍ୟ ଭୁବନ ପ୍ରସିଦ୍ଧେ ।
ଅର୍ଜ୍ଜୁନ ବୋଇଲେ ବାବୁ ଦେଖିଲା ତୋରାଜ୍ୟ
ଅଳକା ଭୁବନ ଜଣି କରଇ ବରଜ ।
ଉତ୍ତର କୋଶଳେ ମହାପ୍ରସିଦ୍ଧ ତୁ ରାଜା
ଏବେ ବହନ ହୋଇ ତୁ ବାରୁଣାକୁ ଯା ଯା
ଏହା କହି ନିମନ୍ତ୍ରଣ ଦେଲେ ସବ୍ୟସାଚି
ବୋଇଲେ ତୋ ଧନଦ୍ରବ୍ୟ ଘେନ ଯାହା ବାଞ୍ଛ
ଘଣ୍ଟ ଶଙ୍ଖର ଘେନିଣ ବାଞ୍ଛ ପାଣିଦ୍ରବ୍ୟ
ଜନପଦ୍ମ ମାଲ ସହ ଚଳେ ରାଜଦେବ ।
ଜୟ ଗୋ ମାତ ଶାରଳା ଝଙ୍କଡ଼ବାସିନୀ
ତୋ ପାଦପଦ୍ମେ ସର୍ବଦା ମୋହର ଦଇମ ।
ତୁହି ଶୈଳରାଜସୁତା ଶମ୍ଭୁ ମନୋହାରୀ
ଅସୁର ଧ୍ୱଂସକାରିଣୀ ଜୟ ଶାକମ୍ଭରୀ ।
ମାଗୋ କଳିକାଳେ ତୁହି ପ୍ରତ୍ୟକ୍ଷ ରୂପିଣୀ
ତୋତେ ଦୃଢ଼ମନେ ଲୟ କରେ ଯେଉଁପ୍ରାଣୀ
ମନୋରଥ ସିଦ୍ଧକର ଦେଉ ତୁ ଅଭୟ
ଶାରଳା ଦାସ ତୋ ପାଦେ କରିଛି ଆଶ୍ରୟ ।

---

## ରୁଦ୍ରପୁର, ନଶ୍ଚଲପୁର, ସିନ୍ଧୁ ମହାଦେଶ ପ୍ରଭୃତି ରାଜାମାନଙ୍କୁ ନିମନ୍ତ୍ରଣ ଏବଂ ପଶୁପାଳ ରାଜ୍ୟେ ଅର୍ଜ୍ଜୁନଙ୍କର ଶବଦର୍ଶନ

ପୁଣିହିଁ ପୃଚ୍ଛାକରିଲେ ମନୁ ମହାରାୟ
ଏଥୁଅନ୍ତେ କେଉଁଦିଗେ ଗଲେ ଧନଞ୍ଜୟ ।
ସେ କଥା କହ ହେ ମୁନି ମନ କରି ତୋଷ
କହନ୍ତି ଅଗସ୍ତି ତୁମ୍ଭେ ଶୁଣହେ ନରେଶ ।
ଚଳିଗଲେ ଧନଞ୍ଜୟ କଳି ରାଜ୍ୟ ଜିଣି
ରୁଦ୍ରପୁରରେ ପ୍ରବେଶ ହେଲେ ଫାଲଗୁନ ।
ବୈତରଣୀ ନଦୀକୂଳେ ସେ ରାଜ୍ୟର ରାଜ୍ୟେ
ମହାବାତ ନାମେ ତହିଁ ପର୍ବତ ବସନ୍ତେ ।
ସେ ପର୍ବତୁ ବହୁଅଛି ମଳୟର ବାତ
ସଧୀରେ ସଧୀରେ ବହେ ହୋଇ ଅପ୍ରମିତ ।
ଅର୍ଜ୍ଜୁନ ବିଜେ କରିଲେ ସେହି ପର୍ବତେ
ବାଜିଲା ଦେବ ଦୁନ୍ଦୁଭି ତହିଁ ଅପ୍ରମିତେ ।
ସେ ରୁଦ୍ରପୁରର ରାଜା ଅଟେ କର୍ଣ୍ଣକେଶୀ
ଧୃଷ୍ଟଦ୍ୟୁମ୍ନର ଶ୍ୱଶୁର ଜଙ୍ଗମ ତପସ୍ୱୀ ।
ପରବସ୍ତ୍ର ଷାଉଡୁର ବାଦ୍ୟଘୋଷ ଶୁଣି
ଧାଇଁଲେ ସଇନ ତାର ବାହାର ପଲ୍ଲଣି ।
ସ୍ୱେଛାର ତୁରଙ୍ଗମାନ ଚଳାଇଲେ ବେଗେ
ସଇନ ଭେଟିଲେ ଆସି ଅର୍ଜ୍ଜୁନର ଆଗେ ।
କାହାର ଥାଟ ଆସିଣ ପଶେ ଆମ୍ଭ ଦେଶେ
ନ ପୁଚ୍ଛି ନ ବିଚାରିଣ ପରବସ୍ତ୍ର ପାଶେ ।
ପ୍ରାଣୀକୁ ଦୁବୁଦ୍ଧି ଘଟେ ମରିବାର କାଳେ
ମରଣ କଡ଼ାଇ ଆଣେ ତାହାକୁ କୌଶଳେ ।
ଅଜ୍ଞାନ ଶ୍ୱବରେ କାଳସର୍ପ ଖେଳୁଆଳ
କାଟିଣ ମାଂସ ତୁମ୍ଭର ଦେବୁ ଉପାବଳ ।
ଶୁଣି ନାହିଁ କ କାଏ ସେ ଶ୍ରୀକର୍ଣ୍ଣ କେଶରୀ
ବିରୂପାକ୍ଷ ପ୍ରସନ୍ନେ ଅଭୟ ବ୍ରହ୍ମବରୀ ।
ଅର୍ଜ୍ଜୁନ ବୋଇଲେ ସୁରେଶ୍ୱର ପ୍ରୋହିତଙ୍କୁ
ଦ୍ରୌପଦୀ ବିଭାହେ ଦେଲେ ଯୌତୁକ ଆମ୍ଭଙ୍କୁ
ଦ୍ରୁପଦ ରାଜାଙ୍କର ଏ ଅଟନ୍ତି ସମ୍ମୁଖି
ଯାଅ ପୁରୋହିତ ତାଙ୍କୁ କହିବ ସମ୍ବୋଧି ।
ପାର୍ଥ ବଚନ ଶୁଣିଣ ଗଲେ ପୁରୋହିତେ
ଯାଇ ଥାଟ ଆଶ୍ୱାସନା କରିଲେ ତୁରିତେ
ରହ ରହ ସୈନ୍ୟ ବୋଲି କଲେ ସମ୍ବୋଧନେ
ପାଞ୍ଚଙ୍କୁ ହକାର ଆଣ ଆମ୍ଭ ସନ୍ନିଧାନେ ।
ନୋହୁ ଯେ ଅପରବସ୍ତ୍ର ନୋହୁ ଦ୍ୱନ୍ଦ୍ୱକାରୀ
ବାନ୍ଧବ ଗୁଣ ଅଟଇ ତୁମ୍ଭର ଆମ୍ଭରି ।
ପ୍ରୋହିତ କହିଲେ ଯହୁଁ ପୀରତି ହିତା
ପାଞ୍ଚ ଆଗେ ବେଶାଉରେ କହିଲେ ବାରତା
ପାଞ୍ଚ ପ୍ରବେଶ ହୋଇଲା ପ୍ରୋହିତଙ୍କ ଆଗେ
ପ୍ରୋହିତ ବୋଲେ ରାଜାଙ୍କୁ ବାର୍ତ୍ତା କହିବେଗେ

ସୋମବଂଶେ ହସ୍ତିନାର ରାଜଚକ୍ରବର୍ତ୍ତୀ
ପଣ୍ଡୁରାଜାର ନନ୍ଦନ ଯୁଧିଷ୍ଠି ନୃପତି ।
ତାହାଙ୍କ ସାନୁଜ ଅଟେ ବୀର ବୃକୋଦର
ରାଜସୂୟଯାଗାର୍ଥେ ଜୟ କରିଲେ ସଂହାରି ।
ଭୀମସେନ ଠାକୁରଙ୍କ ଏ ଅଟେ ସାନୁଜ
ଏହୁ ଅର୍ଜ୍ଜୁନ ବୋଲନ୍ତି ଦେବୀଙ୍କ ଆତ୍ମଜ ।
ଉତ୍ତର ଦିଗକୁ ବିଜେ ପଣ୍ଡୁଙ୍କର କାର୍ଯ୍ୟେ
ରାଜା ନିମନ୍ତ୍ରଣ ପାଇଁ ଉତ୍ତରକୁ ବିଜେ ।
ସୁଧା ଚନ୍ଦ୍ର ବିନ୍ଧିଲେ ଏ ପଞ୍ଚାଳ ନଗରେ
ଲକ୍ଷେ ରାଜା ଜିଣିଲେ ଦ୍ରୌପଦୀ ସ୍ୱୟମ୍ବରେ ।
ପୁରେଶ୍ୱରଙ୍କ ବଚନେ ମନ୍ତ୍ରୀ ଯାଇ ମିଳି
ଅର୍ଜ୍ଜୁନ ଅଗ୍ରତେ ଯାଇ ଭକ୍ତିଭାବ ପାଳି ।
ବୋଲେ ଲକ୍ଷ ବିନ୍ଧ ବଶହେଲେ ଯାଜ୍ଞସେନୀ ।
ଆମ୍ଭେ ଗଲୁ ଯଜ୍ଞଭୁକ ଯୋଗାଡ଼ାଦି ଘେନି ।
ବାହୁଡ଼ି ଯାଇଣ ମନ୍ତ୍ରୀ କହିଲା ରାଜାଙ୍କୁ
ବିଜୟେ କରି ନରେନ୍ଦ୍ର ନୂଏ କଟକକୁ ।
ବହୁ ଉତ୍ସବ କରାଇ କର୍ଣ୍ଣକେଶୀ ବୀର
ରାଜ୍ୟେ ଧନଞ୍ଜୟ ବିଜେ ଭଣିହାରୁ ତାର ।
ଧନଞ୍ଜୟଙ୍କୁ ଭକତ ହୋଇଲା ନୃପତି
ବହୁତ ସାନନ୍ଦ ରାଜା ଅନେକ ଭୂପତି ।
ମୋହର ଦୁହିତା ନାମ ଅଟଇ କମଳା
ଧୃଷ୍ଟଦ୍ୟୁମ୍ନଙ୍କୁ ପ୍ରଦାନ କଲି ସେ ଅବଳା ।
ସ୍ୱାମି ଧୃଷ୍ଟଦ୍ୟୁମ୍ନନ ଯେ ମୋହର ଜୁଆଇଁ
ବନ୍ଧୁପଣେ ପାଳି ରାଜା ଅନେକ ଜନସ୍ତୀ ।
ନିମନ୍ତ୍ରଣର ଯୋଗାଡ଼ ଦେଲେ ଫାଲଗୁନ
ବୋଲେ ବାରୁଣକୁ ଯାଅ କୁମ୍ଭ ସୈନ୍ୟ ଘେନି
କର୍ଣ୍ଣକେଶରୀ ବୋଇଲା ମୋର ପୁରେ ରହି
ମୋ ରାଜ୍ୟ ପ୍ରତିଷ୍ଠା ହେଉ କରିବା ମଣୋହି ।
ଅର୍ଜ୍ଜୁନ ବୋଇଲା ପିତା ପାତକ ନିମନ୍ତେ
ଆମ୍ଭେ ଅଗ୍ନିଦାନ ଦେବୁ ତାହାଙ୍କର ଅର୍ଥେ ।
ତୁମ୍ଭର ରାଜ୍ୟରେ ମୋର ନୋହିବ ଭୋଜନ
ଥାଟ ସୈନ୍ୟ ଘେନି ତୁମ୍ଭେ ଯାଅ ଯା ବହନ
ନିମନ୍ତ୍ରଣ ପାଇକରି ବୀର ଚକ୍ରବର୍ତ୍ତୀ
ଦଣ୍ଡ ପଲାଣି କରିଣ ଚଳେ ହିବାରାତି ।
ଚତୁରଙ୍ଗ ଛତ୍ର ପୂରୁ ଚଳି ବୀର ଅରଜୁନ
ଅନ୍ୟ ଏକରାଜ୍ୟେ ଯାଇ ପ୍ରବେଶ ହୁଅନ୍ତ ।

ମାଳଚନ୍ଦ୍ରପୁର ବୋଲି ନାମ ଯେ ନଗର
ବସଇ ଯେ ମହାନଗ୍ର ପୁଣ୍ୟନଦୀ ତୀର ।
ନବଲକ୍ଷ ଘର ଏକା ନଗରେ ବସଇ
ସୁରବ୍ରହ୍ମା ବୋଲି ରାଜା ନାମ ଯେ ଅଟଇ ।
ଅର୍ଜ୍ଜୁନ ବିଜୟ କଲେ ସେହି ନଦୀକୂଳେ
ପ୍ରାତଃସ୍ନାନ ସାରିଲେ ସେ ସମସ୍ତଙ୍କ ମେଳେ ।
ଦୁନ୍ଦୁଭିବେଦବାଦ୍ୟ ଯେ ବାଜେ ଘୋରନାଦେ
ପୃଥ୍ୱୀ ଉଲ୍ଲସି ପଡ଼େ ମଧୁର ସୁଶବ୍ଦେ ।
ମାର୍ଗଶିର ଶୁକ୍ଳ ଦ୍ୱିତୀୟା ଯେ ଚନ୍ଦ୍ରବାର
ଉତ୍ତରାଷାଢ଼ା ନକ୍ଷତ୍ର ଯୋଗ ସେ ଦିନର ।
ବାଳବ ନାମେ କରଣ ଶୁକ୍ଳ ନାମେ ଯୋଗ
ବୃଷ ସଂକ୍ରାନ୍ତିକ ଚଉଦଦନ ଭୋଗ ।
ଅର୍ଜ୍ଜୁନ ବିଜୟ କଲେ ମାଳଚନ୍ଦ୍ର ଦେଶେ
ଜଳକ୍ରୀଡ଼ା କରନ୍ତି ଯେ ପରମ ହରଷେ ।
ସମଦଣ୍ଡ ଘେନି ସୁରବ୍ରହ୍ମା ନରପତି
ସେ ମଧ୍ୟ ଜଳେ କ୍ରୀଡ଼ଇ ଆସି ନିତିପ୍ରତି ।
ଅର୍ଜ୍ଜୁନ ସ୍ନାହାନଠାରୁ ତହିଁ ଆସେ ପାଣି
ବୋଇଲା ପାଣି ବାସଇ କସ୍ତୁରୀକୁ ଜିଣି ।
ମନ୍ତ୍ରିକୁ ପୁଚ୍ଛଇ ତହିଁ ବ୍ରହ୍ମା ନୃପମଣି
ସୁବାସ ହୁଅଇ ଆଜ ପୁଣ୍ୟନଦୀ ପାଣି ।
କେବଣ ଆଶ୍ଚର୍ଯ୍ୟ କଥା ବଡ଼ଇ ଦୁର୍ଲ୍ଲଭ
ଆନ ଦିନମାନଙ୍କରେ ନ ଥାଏ ଏ ଭାବ ।
ଏସନ ସମୟେ ଆସି ଜଣାଏ ଡଗର
ଉତ୍ତର ଦିଗେ ବିଜୟେ ପାଣ୍ଡବ ସୁନ୍ଦର ।
ଦ୍ୱିତୀକୃଷ୍ଣ ଅବତାର ଅଟେ ଫାଲଗୁନ
ଜମାଗୋଷ୍ଠୀକୁ ବାନ୍ଧିଛି ପାଟଡ଼ୋର ଘେନି ।
ନ ଜାଣି ଯୁଦ୍ଧ କରନ୍ତି ଯେଉଁ ରାଜାଗଣେ
ବହୁରାଜ୍ୟ ଧ୍ୱଂସ ହେଲା ଉତ୍ତର ଦିଗଣେ ।
ସବୁ ରାଜା ଯାଉଛନ୍ତି ଦରଶନୀ ଘେନି
ପ୍ରତାପୀ ପାଣ୍ଡବ ସେହୁ ଷଣ୍ଢୀ ମହାତ୍ମାନୀ ।
ଡଗର ମୁଖରୁ ରାଜା ପାଇଣ ଉଦନ୍ତ
ବୋଇଲକ ଦଣ୍ଡ ସାଜ ସଇନ ସମସ୍ତ ।
ପ୍ରସନ୍ନ ନାରାୟଣ ସେ ବାସବ ତନୟ
ଦରଶନେ ପାପ କଳୁଷ ଯାଉ ମୋର କ୍ଷୟ ।
ନଗରେ ଉତ୍ସବମାନ କଲେ ଦଣ୍ଡଧାରୀ
ଭାଣ୍ଡେ ପାଏଣା ପଢ଼ନ୍ତ ନଡ଼କରୁ ଶାଢ଼ୀ ।

ତହିଁ ସେ ଶତେକ ଗାର ହୀରା ରତ୍ନ ଘେନ
ଶାସ୍ତା ଗୌରୀ ନାମ ଘେନ ଦୁଇ ପାଟରାଣୀ ।
ଆପଣେ ପାଟଛତ୍ରକୁ ଧରେ ନୃପମଣି
ଦୁଇ ଭାରିଯା ଚାମର ଢାଳନ୍ତି ପୁଣି ।
ଉତ୍କଣ୍ଠ ଆଳମ୍ବ ଘେନ ପାଦ୍ୟ ଅମନାଦ୍ୟେ
ଦର୍ଶନ କରିଲେ ତପୋଧନ ପଦତଳେ ।
ପାଦେ ନଉଛ୍ଳ ଜଳେ ସେ ନୃପତି ଯାଇ
ସାଷ୍ଟାଙ୍ଗରେ ଗଡଖାଲ ଶୋଇଲେକ ଭୂଇଁ ।
ଅର୍ଜୁନଙ୍କୁ ଜଣାଇଲେ ଦୁଇ ସେନାପତି
ଦର୍ଶନ କରୁଛି ସୁରବ୍ରହ୍ମା ନରପତି ।
ଆଜ୍ଞା କରିଲେ ପାଣ୍ଡବ ପାର୍ଥ ବୀରମଣି
ଆପଣାଭୁଜେ ରାଜାକୁ ତୋଳିଲେ ଆଣି ।
କଟକେ ବିଜୟ କଲେ ତହିଁ ବୀର ପାର୍ଥ
ଅକ୍ଷତ ନମନ୍ତ୍ରଣ ଯେ ଦେଲେ ରାଜା ହସ୍ତ ।
ବୋଇଲେ ରାଜସିଯାଗ ହେଉଛି ଆମ୍ଭର
ଚୋର ଦଣ୍ଡ ଘେନଯାଅ ବାରୁଣାବନ୍ତର ।
ପାର୍ଥ ବଚନେ ସାନନ୍ଦ ହେଲା ନୃପମଣି
ବୋଲେ ସମଦଣ୍ଡ ଦେବିଯିବ ଏକ୍ଷଣି ।
ସାଜିଲେ ସକଳ ସୈନ୍ୟ ରଥ ଅଶ୍ୱ ଗଜ
ସାତକ୍ଷୌଣୀ ଦଳ ଘେନ ଚଳେ ମହାରାଜ ।
ବାଜଇ ଯେ ବୀରତୂର ଟମକ ନିଶାଣ
ସବୁ ରଥ ନାନା ରତ୍ନେ ହୋଇଛି ମଣ୍ଡନ ।
ରଥ ଉପରେ ତାଳମ୍ବା ନେତ ଶୋଭାପାଏ
ଚଳନ୍ତି ଯେ ତୁରଙ୍ଗମ ହଂସପନ୍ତି ପ୍ରାୟେ ।
ସୁରବ୍ରହ୍ମକୁ ଚଳାଇ ଅର୍ଜୁନ ହରଷେ
ବିଜୟ କରିଲେ ସିନ୍ଧୁ ମଳୟର ଦେଶେ ।
ମହାଗ୍ନି ବୋଲଣ ତହିଁ ଅଛି ନଗ୍ରାଟିଏ
ମନ୍ଦର ପର୍ବତୁ ଆସି ଉତ୍ତରକୁ ବହେ ।
ଅନନ୍ତ ବିଜୟ ନେଧାଇ ପଶ୍ଚିମେ
ଉତ୍ତରପୂର୍ବ ବହଇ ସାଗର ସଙ୍ଗମେ ।
ଅର୍ଜୁନ ବିଜୟ ସେନ୍ଥ ତ୍ରିବେଣୀର କୂଳେ
କଇସୁର ପର୍ବତ ଉତ୍ତମ କଟ ତଳେ ।
ସେ ସିନ୍ଧୁ ମନ୍ଦାରେ ଜାନୁଘଣ୍ଟ ନରପତି
ପାଞ୍ଚଶତ ପାରିବନ୍ତ ରାଜାଙ୍କୁ ଖଟନ୍ତି ।
ପନ୍ଦର କ୍ଷଉଣୀ ତାର ସଇନ ଅଟଇ
ସିନ୍ଧୁ ମନ୍ଦାର ଦେଶର ଠାକୁର ବୋଲଇ ।

ଦ୍ୱାପର ଯୁଗରେ ସେବା କଲା ଆଦିତ୍ୟଙ୍କୁ
ନବବସ୍ତ୍ର ବର୍ଷେ ତପସ୍ୟା କରିଲେ ତାହାଙ୍କୁ ।
ବର ମାଗ ସିନ୍ଧୁ ରାଜା ସତ୍ୟଟି ମୋହର
ଯେବଣ କାମନା କଲୁ ପ୍ରାପ୍ତ ହେବ ତୋର ।
ଶୁଣିପାତ ହୋଇ ପୁଚ୍ଛା କରଇ ନୃପତି
ସତ୍ୟଯୁଗେ ଥିଲା ଜାନୁଘଣ୍ଟ ନରପତି ।
ଧର୍ମରେ ପାଳନ କଲା ସେ ପରମ ଯୋଗୀ
ଧାର୍ମିକ ପଣରେ ସତ୍ୟଯୁଗ ହେଲା ଭୋଗୀ ।
ମୋତେ ସୁପ୍ରସନ୍ନ ହୋଇ ଦେବ କି ଅଭୟ
ଦ୍ୱାପର ଭୋଗ କରିବ ଏ ମୋହର କାୟ ।
ଶ୍ରୀବତ୍ସ ନାରାୟଣ ହୋଇଲେ ପ୍ରସନ୍ନ
ସୁଖେ ଦ୍ୱାପର ଭୁ ଭୋଗ ନ ପଡ଼ିବ ବିଘ୍ନ ।
ଜାନୁଘଣ୍ଟ ପଦ କରୁ ଯେବେ ତୁମ୍ଭ ଇଚ୍ଛା
ତୋର ନାମ ଜାନୁଘଣ୍ଟ ଖାଅ କରି ଭିକ୍ଷା ।
ଦିନକର ବଚନରେ ସିନ୍ଧୁରାଜ ତନୁ
ସେ ଦିନୁ ଘଣ୍ଟ ବାନ୍ଧିଲା ଆପଣାର ଜାନୁ ।
ମହାକ୍ଷତ୍ରୀ ତଦ୍ୟାରେ ସେ ରାଜ୍ୟ କରେ ରକ୍ଷା
ଜନ ପ୍ରଜା ପ୍ରତି ସେହୁ ମାଗିଯାଏ ଭିକ୍ଷା ।
ଘଣ୍ଟିର ଶବଦ କରି କରେ ଖଡ୍ଗ ଧରି
ପ୍ରଜାଙ୍କ ଦ୍ୱାରେ ବୁଲଇ ହୋଇ ଦିଗମ୍ବରୀ ।
ସେ ସିନ୍ଧୁମନ୍ଦାର ଦେଶେ ଅର୍ଜୁନ ପ୍ରବେଶ
କଟକେ ପଶି କରିଲା ବୀରବାଦ୍ୟ ଘୋଷ ।
ନିଜେ ବଜେଇଲା ନୃପ ବୀରବାଦ୍ୟ ଶୁଣି
ଆସେ ଉଗାଳିଲା ଯାଇକରି ଘଣ୍ଟଧ୍ୱନି ।
ମାନବ ଜନମ ପାଇ ଏତେକ ଭରସୁ
କେଉଁଣ ଦର୍ପରେ ତୁମ୍ଭ ମୋ ରାଜ୍ୟରେ ପଶୁ ।
ଦିବାକର ପ୍ରସନ୍ନରେ ହେଲେ ରାଜ୍ୟେ କଲି
ନ ଜାଣୁ କି ତୁମ୍ଭ ମୋତେ ଜାନୁଘଣ୍ଟ ବୋଲି
ସିନ୍ଧୁ କୂଳ ଛଡ଼ାଇଲି ମୋର ବାହୁ ବଳେ
ମନ୍ଦର ଉପାଡ଼ି ଆଣି ରଖେ ସିନ୍ଧୁ କୂଳେ ।
ସିନ୍ଧୁ ମନ୍ଦରକୁ ଜିଣି ଏ ମୋହର ରାଜ୍ୟ
ତ୍ରୈଲୋକ୍ୟ ଯାକରେ ମୋର ବିସ୍ତରୁଛି ତେଜ
ପରହତ୍ୟାକାରୀ ନୁହେଁ ନୁହେଁ ପରବାଦୀ
ଦ୍ୱାପର ଭୋଗ କରୁଛି ମହାଯୋଗ ସାଧି ।
ଧାର୍ମିକେ ଧାର୍ମିକ ମୁହିଁ ଦୁଷ୍ଟେ ଅନର୍ଗଳା
ପ୍ରାଣେ ତୋର ଆଶା ଥିଲେ ଏଥୁ ବେଗେ ପଳା

ଅନେକ ପ୍ରତିଜ୍ଞା କରି କହେ ଜାନୁସଣ୍ଢ
ଶୁଣିକରି ଅର୍ଜୁନର କମ୍ପିଲା ମୁକୁଟ ।
ଶିରେ ପ୍ରଚଣ୍ଡ ଗାଣ୍ଡିବ ଧନୁ ସାକ୍ଷାଗୁରୁ
ଯେଉଁରୂପେ କାଳସର୍ପ ଗର୍ଜେ ଟେକି ଫେଣ ।
ଅର୍ଜୁନ ବୋଲେ କ୍ରୋଧ କମ୍ପା ଜାନୁସଣ୍ଢ
ମୋହର ଭ୍ରମେ କି କେବେ ବୈଶ୍ୟପକ୍ଷ ଅଟ
ପ୍ରତିଜ୍ଞା ସାମରଥ ତୁ ଅଟୁ ମହାଯୋଦ୍ଧା
ତୋର ପଦ ସେବିବାକୁ ଆସିଛାନ୍ତି ସାଧୁ ।
ରାଜସୂୟ ଯାଗ କରିବେ ଦେବ ଯୁଧିଷ୍ଠିର
ରାଜା ନିମନ୍ତ୍ରଣେ ସିନା ଆଗମନ ମୋର ।
ସଞ୍ଚଉଣା ଲକ୍ଷେ ରାଜା ତହିଁ ହେବେ ଭୁଣ୍ଡି
ଦେବତାମାନେ ଆସିବେ ଟେକି ସ୍ୱର୍ଗଦାଣ୍ଡି ।
ଯେ ଯାହାର ଭେଟିଦ୍ରବ୍ୟ ନେବେ ରାଜାମାନେ
ଷୋଳଦିନ ପରିଯନ୍ତେ ଥିବେ ଯାଗସ୍ଥାନେ ।
ଯେତେ ତୋର ସାରଦଣ୍ଡ ଅଛଇ ସଇନ
ବାରୁଣାବନ୍ତକୁ ଚଳ ଅନୁକୂଳ ସେନ ।
ବାସବ ବଚନେ ସିନ୍ଧୁ ମନ୍ଦରାଧିପତି
ବୋଲେ ଭୂମି କି ଅର୍ଜୁନ ପଣ୍ଡୁର ସନ୍ତତି ।
ତୋର ପିତା ଏହି ଶତଶୃଙ୍ଗ ପର୍ବତେ
ତାର ମୋର ଏକତ୍ରରେ ଥିଲୁ ବିହାରତେ ।
ଯେଉଁଦିନ ଶରବନ୍ଧେ ଅଗ୍ନିକା ଋଷିଙ୍କି
ଶବ୍ଦଭେଦୀକ ବିନ୍ଧିଲା ନ ଜାଣି ନ ଦେଖି ।
ଦୁହେଁ ସାଙ୍ଗ ଧାଇଁଗଲୁ ଗଣ୍ଡାଘାତ ଦେଖି
ଅଗ୍ନିକା ଋଷିକୁ ଯାଇ ସେ ସ୍ଥାନେ ଦେଖିଲୁ
ଋଷି ନାଶଗଲା ଶର ତାଠାରୁ କାଢିଲେ
ପଣ୍ଡୁକୁ ଘୋଟିଲା ଯହୁଁ ବ୍ରହ୍ମହତ୍ୟା କଲେ ।
ସରଗରେ ମହାମୁନି ତାଙ୍କୁ ଦେଲେ ଶାପ
ଶୋଚନା ନ କଲେ ସେହୁ ବ୍ରହ୍ମହତ୍ୟା ପାପ
ବହୁ କାଳରେ ଅର୍ଜୁନ ମୁଁ ତୋତେ ଦେଖିଲି
ଭୁଜେ ଅର୍ଜୁନକୁ କୋଳ କଲା ଏତେ ବୋଲି
ତହୁଁ ଅର୍ଜୁନକୁ ନେଲେ ମହାରାଜ
ଆପଣାର ଜଗତରେ କଲେକ ବିଜୟ ।
ମଣୋହି ନିମନ୍ତେ କଲା ବହୁତ ଆଦର
ପାର୍ଥ ବୋଲେ ଯଜ୍ଞ ମୋର ହୋଇଲା ନିକଟ
ସ୍ୱଜନ ଶତ୍ରୁନକୁ ଯେ ନାହିଁ ମୋର ଇଚ୍ଛା
ସଜାଏ ଗଲେ ଯଦିକ [illegible] ।

ଭୁବି ତ ବଳ୍ପ ପଣ୍ଡିତ ଅଟୁ ମହାରାଜା
ସମଦଣ୍ଡ ସେନ ଏବେ ବହନ କୁ ଯା ଯା ।
ଅର୍ଜୁନ ବଚନ ଶୁଣି ରାସେ ଜାନୁସଣ୍ଢ
କଟକୁ ବାହାର ହେଲା ସେନ ତାର ଥାଟ ।
ତହୁଁ ସେଠାରୁ ଚଳିଲେ ବୀର ଫାଲଗୁନ
ବିଜୟ ବଳେ ପଶିଲେ ଦିବସ ରଜନୀ ।
ଯହିଁ ବଳାଙ୍ଗୀ ବୋଲିଣ ଅଛି ନଗ୍ରୀଟିଏ
ମହୀଦାସ ପର୍ବତୁ ସେ ଉତ୍ତରକୁ ଯାଏ ।
ରତ୍ନମଣ୍ଡଳ ବୋଲିଣ ଅଛି ରାଜ୍ୟଟିଏ
କୃଣ୍ଡଳୀବ୍ରହ୍ମ ବୋଲିଣ ତହିଁର ସେ ରାସ୍ୱେ ।
ପାର୍ଥ ବିଜୟରେ ବାର୍ତ୍ତା କହିଲେ ଡଗରେ
କଣ୍ଟସେନ ଯାଉଅଛି ତାର ପଟୁଆରେ ।
କଟକ ଛାଡିଲାଣି ସେ ଚତୁର୍ଦ୍ଦଶ ଦିନ
ମହୀଦାସରେ ସେ ପାର୍ଥ କଲା ଦରଶନ ।
ଶତଭାର ସାଣିଦ୍ରବ୍ୟ ନେଇ ଦରଶନ
ତଇଦ ଭାର୍ଯ୍ୟା ଭଟଲ୍ଲ ବତିଶ ସୁତ ସେନ ।
ଦର୍ଶନ କରିଲା ଆସି ଅର୍ଜୁନ ଅଗ୍ରତ
ଶତଦଣ୍ଡ ପ୍ରଣିପାତ ହୁଏ ନରନାଥ ।
ବୋଲେ ସାଧୁ ମୋର ପୁତ୍ର ସାଧୁ ମୋରତୋଳ
ପ୍ରତ୍ୟକ୍ଷେ ନାରାୟଣଙ୍କୁ ଦେଖି ମୁଁ ସଫଳ ।
ଶ୍ରବଣେ ଯା ଶୁଣିଥିଲି ଦେଖିଲି ପ୍ରତ୍ୟକ୍ଷେ
ତୁ ଯା ଖାଣ୍ଡବ ଦହିଲୁ ଜିଣି ସହସ୍ରାକ୍ଷେ ।
କହୁ ସ୍ତୁତି କରେ ସେ କୁଣ୍ଡଳୀ ବ୍ରହ୍ମରାସ୍ୱ
ପୁଣ ପୁଣ କାଉଁଣ୍ଡନି କରେ ସେ ବିନୟ ।
ଶ୍ରୀ କରେ ଖାଣ୍ଡୀ ଘେନଇ ବାସବ ନନ୍ଦନ
ବୋଲେ ରାଜସୂୟଯାଗକୁ ଯାଅ ଯା ବହନ ।
ଅର୍ଜୁନ ବଚନେ ହସ୍ତ ନିବେଶିଲେ ଶିରେ
ଶୁଭ ଅନୁକୂଳ ସେନ ନବରୁ ବାହାରେ ।
ଶତେ ପାଭଦଣ୍ଡ ତିନିସଉଣୀ ପଦାତି
ନାନା ଭେଟିଦ୍ରବ୍ୟ ଘେନ ଚଳେ ନରପତି ।
ତହୁଁ ଧନଞ୍ଜୟ କଲେ ଉତ୍ତରକୁ ବଳେ
ବିହାରରେ ପ୍ରବେଶିଲେ କାଳଞ୍ଜନ ରାଜ୍ୟେ ।
କମଳସେନ ବୋଲିଣ ଏକ ନରପତି
ତିନିଶତ ଦଣ୍ଡ ତାର ବ ଲକ୍ଷ ପଦାତି ।
ଚର ଜଣାଇଲେ ଦେବ ଶୁଣ ସାବଧାନେ
ଜେଉଁ [illegible] ।

ଦୂତର ମୁଖରୁ ଏହି ବାରତାକୁ ଶୁଣି
ମନ୍ତ୍ରୀବର ବଦନକୁ ଚାହିଁ ନୃପମଣି ।
ମନ୍ତ୍ରୀ ବୋଇଲେ ଗୋଟେକ ଶୁଣ ରାଜେଶ୍ୱର
ଯାଗ କରଇ ପାଣ୍ଡବ ଶ୍ରେଷ୍ଠ ଯୁଧିଷ୍ଠିର ।
ଚତୁର୍ଦ୍ଦିଗ ରାଜାଙ୍କୁ ସେ କରେ ଆମନ୍ତ୍ରଣ
ପାର୍ଥ ଆସିଛନ୍ତି ଉତ୍ତରେ ଜିଣିବ ବହଣ ।
ସ୍ୱାମି ଯଜ୍ଞର ଜମନ୍ତେ ନାଶକଲା ଜଗ
ଜମାଗୋଷ୍ଠିକୁ ବାନ୍ଧିଲା ଯେହ୍ନେ ମହାବାଘ ।
ବହୁରାଜ୍ୟ ନାଶଗଲା ହୋଇଣ ଚଡାଘ
ଶରଣ ପଶିଲେ ହୁଏ ସର୍ବକାର୍ଯ୍ୟ ସିଦ୍ଧି ।
କହନ ଉତ୍ତ୍ରବମାନ ଜଗାଇବା ରାଜ୍ୟ
କଟକରେ ପ୍ରବେଶିବ ଶାଉତର ବାଜେ ।
ମନ୍ତ୍ରୀର ବଚନେ ରାଜା ହୋଇଲେ ତୃପତ
ବଣ୍ଡସାଜ ବୋଲି ତହୁଁ ଦେଲେ ଅନୁମତ ।
କଟକେ ପାଏଡ଼ା ରାଜା ପାଡ଼ିଲା ହରଷେ
ପୁତ୍ର ବନ୍ଧୁ ଅମାତ୍ୟ ସେନ ସଙ୍ଗେ ଆସେ ।
ଅର୍ଜ୍ଜୁନ ଦର୍ଶନ କଲା ବଲାଙ୍ଗୀର କୂଳେ
ବହୁ ଧନରତ୍ନେ ଭେଟେ ପାର୍ଥ ପାଦତଳେ ।
ଦର୍ଶନ କରେ ନୃପତି ବହୁତ ସମ୍ଭାରେ
ନଉଗ୍ରାଳ କରି ପାଦେ ଶ୍ରଦ୍ଧାଲ ଅନ୍ତରେ ।
ଆଜ୍ଞା ହୋଇଲାକ ଉଠ ଉଠ ମହାରାଜେ
କୋଳାଗ୍ରତ କରି ତାକୁ ନେଲେ ଧନଞ୍ଜୟେ
ଅକ୍ଷତ ଗୁବାକ ନେଇ ଦେଲେକ ଶ୍ରୀହସ୍ତେ
ବୋଲେ ସୈନ୍ୟସହ ଚଳ ବାରୁଣାର ପ୍ରସ୍ଥେ
ଅର୍ଜ୍ଜୁନ ବଚନ ଶୁଣି ବୋଲେ ଲଭ୍ରବର
ଜାଲେବର ବନେ ଦେବ ରାଜ୍ୟଟି ମୋହର
ଅନେକ ଦନସ୍ତ ହୋଇ କରଇ ସେ ସେବା
ବୋଲେ ମୋର ପୁରେ ଆଜ ମଣୋଛି କରନ୍ତ ।
ଅର୍ଜ୍ଜୁନ ବୋଇଲେ ମୋତେ କାହୁଁ ଦେବୁ ଭୋଜ
ଅନେକ ନୃପତି ଯିବେ ନଉଦନ ମଝି ।
ଭୋଜନ ଶୟନ ସୁଖଭୋଗେ ନାହିଁ ଇଚ୍ଛା
କେମନ୍ତେ ପୂରିବ ପଣ୍ଡୁ ରାଜାଙ୍କର ବାଞ୍ଛା ।
ନମନ୍ତ୍ରଣ କରି ସେହି ନୃପକୁ ପଠାଇ
ତହୁଁ ଅର୍ଜ୍ଜୁନ ଉତ୍ତର କୋଶଳକୁ ଯାଇ ।
ଉତ୍ତର ପଶ୍ଚିମ କୋଣେ ଅଛି ଲକ୍ଷ୍ମୀପୁର
କମଳାସମା ବୋଲିଣ ନଗ୍ରୀ ସୁବର୍ଣ୍ଣର ।

ଲକ୍ଷ୍ମୀପୁର ବୋଲି ଯେଉଁ ନଗର ଅଟଇ
ପଞ୍ଚାଶ ଲକ୍ଷ ବସନ୍ତ ସେଠାରେ ବସଇ ।
ଅଷ୍ଟଶତ୍ର ପଞ୍ଚମଇ ଅଟଇ ଭୁବନ
ଘରେ ଘରେ ସୁବର୍ଣ୍ଣର ପାଚେରୀ ଶୋଭନ ।
ବଡ଼ ପ୍ରସନ୍ନ ହୋଇଣ ରହନ୍ତନ୍ତି ପ୍ରଜା
ଭାଗ୍ୟବନ୍ତ ଗଣେ ସମ ନୁହେଁ ମହାରାଜା ।
ସେ ଯାତାର ତଷିଲର ଉପୁଜନ୍ତି କୃଷି
ସ୍ୱଳେଖ ଆମ୍ଭଙ୍କର ବ୍ୟନ୍ତ ତହିଁ ଦୁଇରାଶି ।
ଏମନ୍ତ ସମ୍ପଦେ ପଣ୍ଟି ସେହି ଲକ୍ଷ୍ମୀଗ୍ରାମ
ଦେବତା ପ୍ରାୟେ ଦିଶନ୍ତି ରୂପେ ଯେହ୍ନେ କାମ
ପର ରାଜ୍ୟକୁ ନୃପତି ନୁହଇ ବିବାଦୀ
ଯାହା ସବଧାରେ ରାଜା ଧର୍ମ କର୍ମ ସାଧି ।
ନ ଯାଏ ପର ରାଜ୍ୟକୁ ନ କରଇ ହତ୍ୟା
ସର୍ବେ ପୂଜନ୍ତି ବଧିବାମନ ଦେବତା ।
ଶାସ୍ତ୍ର ପୁରାଣ ପଢନ୍ତି ଜନେ ଘନେ ଘନେ
ନ ଗ୍ରାଡନ୍ତି ଲକ୍ଷ୍ମୀଦେବୀ ଥାନ୍ତି ଅନୁକ୍ଷଣେ ।
ସେ ରାଜା ରାଜ୍ୟ ଶାସନ୍ତ କରିଲେ ଅର୍ଜ୍ଜୁନ
ଲକ୍ଷ୍ମୀଦେଶୀ ନଗ୍ରୀଜନେ କରିଣ ସ୍ନାହାନ ।
ଭେରିବାଦ୍ୟ ଦୁନ୍ଦୁଭିର ଶବ୍ଦ ଘୋଷଣେ
କମ୍ପଇ ବ୍ରହ୍ମାଣ୍ଡ ଘୋରବାଦ୍ୟ ଅତି ଠାଣେ ।
ବଡ଼ ସମ୍ପଦେ ବଞ୍ଚଇ ସେହି ମହାରାଜ
ତାହାର ନାମ ଅଟଇ ରାଜା ଚନ୍ଦ୍ରଧ୍ୱଜ ।
ମନ୍ତ୍ରୀ କହିଲା ବହୁତ ମହିମା ତା ଆଗେ
ଆପନ ଗ୍ରାଡ଼ ନୃପତି ଆସେ ବେଗେ ବେଗେ ।
ଲକ୍ଷେଶ୍ୱର ଶାଗସଢ ଘେନି ସୁଧାରସ
ଅର୍ଜ୍ଜୁନ ଗ୍ରାମରେ ରାଜା ହୋଇଲା ପ୍ରବେଶ ।
ପାଦେ ପଡ଼ି ନରପତି କରି ନଉଗ୍ରାଳ
ଗ୍ରାମରେ ଉଭା ହୋଇଲା ହୋଇ କୃତାଞ୍ଜଳି ।
ଅର୍ଜ୍ଜୁନ ପାଦପଖାଳ କରେ ମହାରାଜା
ବହୁତ ରତନ ଘେନି କରେ ପାଦପୂଜା ।
ସନ୍ନିଧେ ନୃପତି କରେ କଣସୁର ବୃଷ୍ଟି
ଚନ୍ଦ୍ରଧ୍ୱଜେ ବୋଲକଲେ ଆପଣେ କର୍ପଟୀ ।
ବହୁ କୃତ୍ୟ କୃତ୍ୟ ହୋଇ ଜନ୍ମମାନ ବଳା
ଅର୍ଜ୍ଜୁନର ସଇନଙ୍କୁ ଦେଲା ରତ୍ନମାଳା ।
ଦେବାଙ୍ଗ ବସନ ଦିଏ ଝୀନ ଯେ ପଟନ
ବହୁ ସମାର୍ଜନ କରି କରଇ ଦାଇମା ।

ବୋଇଲେ ବହୁ ପ୍ରକାରେ ଅଟଇ ମୁଁ ଦୋଷୀ
ଗୁଣସାର ନାଥ ହେ ଉଦ୍ଧାର କରସି ।
ଯହିଁ ଯାହା ଲେଉଡ଼ୁଥିଲ ଦେଖିଲ ନୟନେ
ଖଣ୍ଡିଲ ପାତକ ମୋର ମୁକ୍ତ ପିତୃମାନେ ।
ସ୍ୱାମି ମୋ ଉପରବଂଶେ ଶ୍ୱେତ ମହାରାଜ
ସତ୍ୟ ସୁରନ୍ଥଙ୍କର ସେ ଅଟଇ ତନୁଜ ।
ସେହି ଶ୍ୱେତ ସତ୍ୟଯୁଗେ ଏହି ରାଜ୍ୟ କଲା
ଏ କମଳ ନଦୀକୂଳେ ଯଜ୍ଞ ଆରମ୍ଭିଲା ।
ସ୍ୱାମି ବ୍ରହ୍ମାଙ୍କୁ ମାଗିଲା ପୁରୋହିତ ଜଣେ
ପିତାମହ ଆଜ୍ଞା ଦେଲେ ବଶିଷ୍ଠ ବ୍ରାହ୍ମଣେ ।
ଯାଜକ ହୁଅ ତୁହି ଶ୍ୱେତରାଜା ଯାଚେ
ବ୍ରହ୍ମା ବଚନେ ବଶିଷ୍ଠ ଚଳିଗଲେ ବେଗେ ।
ଶ୍ୱେତକୁ ବସାଇଲେ ସେ ଗଙ୍ଗାନଦୀ ତଟେ
କହନ୍ତି ଯଜ୍ଞ କରିବୁ ଏହି ବାଞ୍ଛାବଟେ ।
ତୁ ଆମ୍ଭଙ୍କୁ ଯାଜନକେ କରିଲୁ ବରଣ
ଯାଗକୁଣ୍ଡ ଆୟତନ ମୋର ବାରଯୂଣ ।
ସ୍ୱରମେଧେ ମୋର ମନ୍ତ୍ର ପାବକର ସୁଗ
ଯାଗ ପରୀକ୍ଷା ମୋହର ପିଙ୍ଗଳ ହୋଇଲା ।
ମୋତେ ବରଣ କଲୁ ହେ ମହାରାଜା ଶ୍ୱେତ
ଉପାସ୍ୟ କର ନୃପତି ସଞ୍ଚ ଯାଇ ଘୃତ ।
ଯେତେ ଦିନଯାଏ ଯଜ୍ଞ କରିବୁ ନୃମଣି
ସମ୍ବର୍ତ୍ତକ ବୃଷ୍ଟି ପ୍ରାପ୍ୟ ଘୃତ ଦେବୁ ଆଣି ।
ଏତେ ଘୃତ ଆଣିପାରୁ ଯେବେ ତୁହି ରାଜା
ଯଜ୍ଞ ତୁହି ବାଞ୍ଛା କର ବଚନରେ ଯା ଯା ।
ଶୁଣ ଦେବ ଧନଞ୍ଜୟ ବୋଲେ ତାମ୍ରଧ୍ୱଜ
ଘୃତ ସିନ୍ଧୁକୁ ବହିଶ ବର୍ଷ ନସହେ ରାଜ ।
ଘୃତ ସମୁଦ୍ର ବୋଇଲା ମୋତେ କପାଁ ସେବୁ
ରାଜା ବୋଲେ ମୋ ଯଜ୍ଞକୁ ଘୃତ ତୁହି ଦେବୁ
ନ ଜାଣି ମୁଁ ବଶିଷ୍ଠଙ୍କୁ କରିଲି ସ୍ୱୀକୃତେ
ଘୃତ ତୁ ଦେବୁ ଚଉଦ ବର୍ଷ ପରିଯନ୍ତେ ।
ରାଜା ବଚନରେ ଘୃତସିନ୍ଧୁ ବୋଲେ ଦେବା
ଯେତେକାଳଯାଏ ଯଜ୍ଞ କରିବୁରେ ବାବା ।
ମହାଯାଗ ରଚିଲେ ସେ ଏହି ନଦୀକୂଳେ
ହିରଣ୍ୟଗର୍ଭ ପର୍ବତ ବାଞ୍ଛାବଟ ତଳେ ।
ଦେଖ ଏହି ଯଜ୍ଞକୁଣ୍ଡ ବାରଯୂଣ ସ୍ଥଳୀ
ଯଜ୍ଞଶାଳ ବଂଶପଣ ଦେଖଇ ଆଗଳ ।

ଚଉଦଶ ଯୋଜନ ଅଟେ ଗୃହର ଉତ୍ସର୍ଗ
ଅଗ୍ନିର ତେଜ ଲାଗିଲା ଯାଇ ଅଧାସ୍ୱର୍ଗ ।
ସମ୍ବର୍ତ୍ତକ ମେଘ ସୁରା ହୋଇଣ ପ୍ରୋକ୍ଷଣି
ମୁଷଳଧାର ପ୍ରମାଣେ ଘୃତ ବର୍ଷେ ଆଣି ।
ଚଉଦଶ ବରଷଯାଏ ବରଷିଲା ଘୃତ
ଲୋଭଗ୍ରସ୍ତରେ ଭକ୍ଷିଲେ ପିଙ୍ଗଳ ଦୈବତ ।
ଲୋଭରେ ବହୁତ ଘୃତ ଖାଆନ୍ତେ ବହନ
ଲୁଦୁବୁଦୁ ବ୍ୟାଧିଗ୍ରସ୍ତ ହେଲା ଜ୍ୱାଳାଅଗ୍ନି ।
ଅଗ୍ନି ଦେବତା ନିମନ୍ତେ ସିନା ଚରାଚର
ନିସ୍ତେଜ ହୋଇ ରହିଲା ଜଗତ ସଂସାର ।
ଯାଇଥିଲି ସ୍ରଷ୍ଟାଙ୍କୁ ମୁହିଁ ଖର୍ଥକର
କହିଲେ ସିନା ବଶିଷ୍ଠ ମୁନି ତପସ୍ୱୀ ।
ଗାଣ୍ଡିବର ଦୀକ୍ଷାଗୁରୁ ଋଷି ଚୂଡ଼ାମଣି
ଖାଣ୍ଡବ ଦହି ଅଗ୍ନିକୁ ରଖିଲୁ ତୁ ଜାଣି ।
ଖାଣ୍ଡବ ଦହନେ ହେଲା ବାସବ ବିବାଦୀ
ଅଗ୍ନିକୁ ନିରୋଗୀ କଲୁ ଦେଇ ମହୌଷଧି ।
ସ୍ୱାମି ଶ୍ୱେତରାଜାର ଯେ ହେଲା ଏକ ସୁତ
ଜଳନିଧି ନାମେ ସେହି ହୋଇଲା ବିଖ୍ୟାତ ।
ସେ ଜଳନିଧିର ହେଲା ଗୋଟିଏ କୁମର
ମଳୟ ବସନ୍ତ ନାମ ଜାଣନ୍ତି ତାହାର ।
ସେହୁ ହୋଇଲା ପ୍ରତାପଶାଳୀ ମହାରାଜା
କାଳେ ରକ୍ଷାକରି ସ୍ୱର୍ଗେ ହୋଇଲା ବଡ଼ରାଜା
ମଳୟବସନ୍ତ ପୁତ୍ର ନାମ ବିଶ୍ୱାବସୁ
ବିଶ୍ୱାବସୁ ପୁତ୍ର ହେଲା କୃତପରବସୁ ।
ପରବସୁ ସୁତ ଅଟେ ସୁଜାଣ ନୃପତି
ତାହାର ପୁତ୍ର ହୋଇଲା ନୃପତି ଅତିଥି ।
ଅତିଥିର ପୁତ୍ର ପୁଣି କଣସ୍ୱ କେଶରୀ
ମହେନ୍ଦ୍ର ସେନ ବୋଲିଣ ପୁତ୍ରେକ ତାହାର ।
ମହେନ୍ଦ୍ର ସେନର ପୁତ୍ର ନୃପ ବଳୁପାକ୍ଷ
ଏହାର ପୁତ୍ର ହୋଇଲା ରାଜା ଦଧିମୁଖ ।
ଦଧିମୁଖ ପୂଜେ ଦଧିବାମନ ପ୍ରତିମା
ମମଲଗି ହୋଲକର ତାହାର ଯେ ବାମା ।
ଦଧିମୁଖର ହୋଇଲା ଯେବଣ ଆତ୍ମଜ
ସେ ପୁତ୍ର ମୁହିଁ ମୋ ନାମ ଅଟେ ତାମ୍ରଧ୍ୱଜ ।
ବଂଶାବଳୀ କହିଲାକ ଦଧିସୁତ ବଳା
ରତ୍ନସିଂହାସ ଦେଖିଲା ଏତେ ସଭାଖଳା ।

ଦେବଙ୍କୁ ଦୁର୍ଲ୍ଲଭ ଏହୁ ନଗରେ ଅଚୋଚର
ଏ ରାଜସି ଯାଗ ଦେବ ପୂଣ୍ୟର ସାଗର ।
ଅର୍ଜ୍ଜୁନ କୋଳ କରିଲା ତହୁଁ ସେ ରଜାକୁ
ବୋଲେ ସମଦଣ୍ଡ ହେନ ଯାଅ ବାରୁଣାକୁ ।
ତୁ ମହାବଂଶିକ ନୃପ ଅଟୁ ମହାବେଗ୍ର
କୋଟିବଂଶ ଅଣପାପୀ ଗତି ମୁକ୍ତି ତାହା ।
କରପତ୍ର ଯୋଡ଼ି ଚନ୍ଦ୍ରଧ୍ୱଜ ଯେ ବୋଇଲା
ନାଥ ଯେବେ ଅନୁଗ୍ରହ ତୋହର ହୋଇଲା ।
ଆଜକ ରାଜ୍ୟରେ ରହି କର ମଡ଼ିଫୁଲ
ଭକତବତ୍ସଳ ନାଥ ପ୍ରସାଦ ମାଗିଲା ।
ଗୋଟିଏ ଦିବସ ମାତ୍ର ମୋ ରାଜ୍ୟରେ ରହି
ପୁରକୁ ପ୍ରତିଷ୍ଠା କର କରଣ ମଣୋହି ।
ଅର୍ଜ୍ଜୁନ ବୋଇଲେ ଏହୁ ପୂର୍ବ ଯଜ୍ଞସ୍ଥାନ
ବହିଲ ଏ ଲକ୍ଷ୍ମୀକେଣୀ ଅନ୍ତର୍ଦ୍ଧାନବନ ।
ଏହି ବିଗ୍ଭର କରଣ ସେ ରାଜ୍ୟରେ ରହି
ସୂପକାର ପରଯୋଗେ କରିବା ମଣୋହି ।
ତହୁଁ ସ୍ନାହାନ ଆହ୍ନିକ ସାରି ସବ୍ୟସାଚୀ
ସୂର୍ଯ୍ୟବେଳର ମଣୋହି ମତି ଯାହା ଅଛି ।
ପାଦୋଚନ ଆଚମନ ସାରି ଫାଲଗୁନ
ବିଜଘୋଷ ଶଙ୍ଖ ଆଦି ବାଦ୍ୟ କରି ଧ୍ୱନି ।
ପରଷନ୍ତି ସୂପକାର ସୁଲଭ ବ୍ରାହ୍ମଣ
ସୁରେଶ୍ୱର ହେଜ କରେ ଗ୍ରାମ୍ଭରେ ପ୍ରସାଣ ।
ଷଡ଼ରସରେ ଭୋଜନ କରଣ ଅର୍ଜ୍ଜୁନ
ନୃପତି ଭୋଜନ ସାରି କଲେ ଆଚମନ ।
କର୍ପୂର ତାମ୍ବୁଳ ଭୁଞ୍ଜି ବସେ ସିଂହାସନେ
ଅମୃତ ପାନ ଭୋଜନ କଲେ ସୈନ୍ୟମାନେ ।
ତୃପ୍ତେ ଭୁଞ୍ଜନ୍ତି ସଇନ ଯେତେ ଯାର ଇଛା
ଷଡ଼ରସରେ ଭୋଜନେ ତୃପ୍ତ ମନୋବାଞ୍ଛା ।
ତାଣ୍ଡବରସେ ଗାବନ୍ତି ସପ୍ତସ୍ୱର ହେନ
ତାଳ ମର୍ଦ୍ଦନ ଢେନଣ ଖଟନ୍ତି ଗାଏଣି ।
ଅମର ବିଳାସିନୀଙ୍କ ତାଣ୍ଡବର ନୃତ୍ୟ
ଦେଖନ୍ତି ଯେ ଧୃରଜନ ହୋଇ ତୋଷଚିତ୍ତ ।
ଦିନକର ନାଥ ଗଲେ ମେରୁର ପ୍ରଦେଶ
ବଣ୍ଡି ସାଜ ସାଜ ବୋଲି ବାଜେ ବିଜଘୋଷ
ଲଗିଲ ବିଦ୍ଧମାନ ଜଳନ୍ଦ୍ର ତୁଳା
ରଥେ ବସେ କଲେ ଯାଇ ବାସବର ବଳା ।

ଚନ୍ଦ୍ରଧ୍ୱଜ ନୃପତିକୁ ଚଳାଇ ଅର୍ଜ୍ଜୁନ
ଚଳଇ ସେ ରାଜେଶ୍ୱର ଘେନଣ ସଇନ୍ୟ ।
ସେ ରାଜ୍ୟରେ ଥାଇ ପାର୍ଥ ବଇଗଲା ଦୁତ
ଚଉବିଂଶ ରାଜ୍ୟ ଅଛି କଟକ ହେମନ୍ତ ।
ନେପାଳ ପଶୁପାଳକ ବେନି ରାଜ୍ୟ ଅଛି
ସେହି ରାଜ୍ୟକୁ ବିଜୟ କଲେ ସବ୍ୟସାଚୀ ।
ପଶୁପାଳ ବୋଲିକରି ଯେଉଁ ରାଜ୍ୟ ଗୋଟି
ପଶୁଜଗନ୍ନାଥ ନାମେ ବିଜୟ ଧୂର୍ଜ୍ଜଟୀ ।
ସେ ରାଜ୍ୟ ରାଜାର ନାମ ଅଟେ ପଶୁପତି
ରୁଦ୍ର ଚିହ୍ନ ବହଇ ସେ ଶାନ୍ତ ମହାଯତି ।
ମଥାରେ ଜଟାଭାର ଚର୍ମ ପରିହରି
ବୃଷଭ ବାହନେ ରାଜା ବିଚରଣ କରି ।
ବାମ କରରେ ଖର୍ପର ଦକ୍ଷେ ଶୂଳପାଣି
କଣ୍ଠେ ଡମ୍ବାମ୍ବୁଦ୍ରା ତାର ନାଶାରେ ଭ୍ରମଣି ।
ଚଉଦକୋଟି ସଇନ୍ୟ ସଙ୍ଗେ ଥାନ୍ତି ନିତ୍ୟ
ତାଙ୍କ ସଙ୍ଗେ ବିହରନ୍ତି ଦେବ ବିଶ୍ୱନାଥ ।
ଅଙ୍ଗେ ଆଭରଣ ଅଟେ ଉରଗର ଫେରୁ
ଅନ୍ତରୀକ୍ଷରେ ବଜାଇ ଲକ୍ଷେକ ଡମ୍ବରୁ ।
ମାନବ ରୂପରେ ତହିଁ ଖେଳୁଥାନ୍ତି କାଶୀ
ସେହି ପଶୁପତି ରାଜ୍ୟେ ପାର୍ଥ ଯାଇ ପଶି ।
ରାଜାନ୍ତେ ଦେବ ଦୁନ୍ଦୁଭି ଆବର ଡାଉଣ୍ଡି
ବାଳ ଆଦିତ୍ୟ ପରାୟେ ରଥ ସଦା ମଣ୍ଡି ।
ଅର୍ଜ୍ଜୁନ ଗମନ୍ତେ ଗଣନାୟକ ବହନେ
ଶୂଳ ବୁଲଇ ଆକଟ କଲେ ସନ୍ନିଧାନେ ।
କାହିଁର ତୁହି ବୋଲିଣ ଉର୍ଦ୍ଧ୍ୱମୁଖେ ହାକ
ସିଂହରଡ଼ି ପରାୟେକ ଶୁଭେ ସେହି ଡାକ ।
ଆରେ ତୁ ମାନବ ହୋଇ କାହିଁର ଭରସୁ
କାଳସର୍ପର ବିବରେ କପା ଆସି ପଶୁ ।
ରୁଦ୍ରବଳହିଁ କେବଳ ପାର୍ଥ ଦେଖି ତୋଳେ
ରୁଦ୍ର କୋପ ନ କରନ୍ତି ମନେ ମନେ ଭାଳେ
ସ୍ୱାମୀଙ୍କର ଚିହ୍ନ ସବୁ ବହିଛନ୍ତି କାଯ୍ୟେ
ସର୍ବେ ଚଢ଼ିଛନ୍ତି ବୃଷ ଗୋଟିଏ ଗୋଟିଏ ।
ଗୋହତ୍ୟା ହୋଇବ ତଳେ ଯେବେ ମାରେ ଶର
ବ୍ରହ୍ମହତ୍ୟା ହେବ ଉର୍ଦ୍ଧ୍ୱେ କରିଲେ ପ୍ରହାର
କଳକଳା ନାଦ କରି ସର୍ବ ଶିବଗଣ
ପାର୍ଥେ ସୈନ୍ୟଙ୍କ ଉପରେ ପ୍ରହାରିଲେ ବାଣ ।

ଅନ୍ୟେ ଅନ୍ୟେ ଘୋରରଣ ଲାଗିଲାକ ଯହୁଁ
ଅର୍ଜ୍ଜୁନ ତାଙ୍କ ସ୍ଥିତରେ ଲଢ଼ ରହ ତହୁଁ ।
ଅର୍ଜ୍ଜୁନ ତାଙ୍କର ସମ୍ମୁଖିତ ସୈନ୍ୟମାନେ
ନାଗଚଲୁ ସଂହରିଲେ ବିଷାଦ ତ ମନେ ।
ତହୁଁ ଶିବଗଣ ଦେଖି ଏମନ୍ତ ବିଧାନ
ଶୂଳ ବୁଲାଇ ପିଟିଲେ ହୋଇ କୋପମନ ।
ଦେଖି ପ୍ରକୋପ ହୋଇଲେ ବାସବ କୁମର
ଧନୁମଧ୍ୟେ ପୂରାଇଲେ ହାଟକୋଡ଼ାର ଶର ।
କୋଦଣ୍ଡରେ ପେଷିଲେ ପଣ୍ଡୁର ଦୁଲାଳେ
ଶିବଗଣ ଲୋଟିଗଲେ ବାସ ଅସ୍ତ୍ରମାନେ ।
ଯେସନେ କଦଳୀବନ ପଡ଼େ ବାତଘାତେ
ଏକ ଉପରେ ଆରେକ ପଡ଼ିଗଲେ ଘାଏ ।
ଯେତେ ଉବୁରିଲେ ଗଲେ ପଳାଇ ବନକେ
ପଶୁପତିଙ୍କ ସମ୍ମୁଖରେ କହିଲେ ଆକୁଳେ ।
ପ୍ରସନ୍ନ ପଶୁପତି ତୁ ସ୍ୱାମି ଦେବରାଜ
ତୋହର ପ୍ରସନ୍ନେ ସିନା ଆମ୍ଭର ଏ ରାଜ୍ୟ ।
ଗଣନାୟକ ବଚନେ ବେଗେ ପଶୁପତି
ବୃଷ ଚଢ଼ି ବିଜେକଲେ ଧରଣ ଶକତି ।
ଅର୍ଜ୍ଜୁନ ସମ୍ମୁଖେ ଯାଇ ବିଜୟ କପାଳୀ
ନାଚନ୍ତି ଯେ ଶିବଗଣ ଡମ୍ବରୁ ହାମ୍ବୋଲି ।
ପଶୁପତି ନରପତି କରନ୍ତେ ଯେ ଜୟେ
ଚଳି ନ ପାରିଲେ ତାଙ୍କୁ ବୀର ଧନଞ୍ଜୟେ ।
ସମସ୍ତଙ୍କ ଶିରେ ଜଟା ସର୍ବେ ଧଳ କାୟ
ଶରୀର ଦିଶଇ ରୁଦ୍ର ଦେବତାର ପ୍ରାୟ ।
ଗଣନାୟକ ବଚନେ କୋପେ ଫାଲ୍ଗୁନ
ସଦାଶିବଙ୍କୁ ବିନ୍ଧିଲେ ଶରଗୋଟି ତିନ ।
ଶରମାନ ପଡ଼ିବାର ଦେଖିଣ କପାଳୀ
ରହ ରହ ବୋଲିକରି ପାଡ଼ିଲେ କୋହାଳି ।
ମୂର୍ଖ ଅଟେ ପଶୁପତି ଶୈଳରାଜ ବନ୍ଧୁ
ରହ ରହ ଅର୍ଜ୍ଜୁନ ତୁ ଶର କାହିଁ ବିନ୍ଧୁ ।
ଏହା ଶୁଣି ସଂହାରିଲ ଶର ଧନଞ୍ଜୟ
ବୋଲେ ଯେବେ ପଶୁପତି ଦେଖା ନିଜ କାୟ
ଅର୍ଜ୍ଜୁନ ବଚନେ ନିଜ କାୟା ତ୍ରିଲୋଚନ
ପ୍ରତ୍ୟକ୍ଷେ ଦିଶିଲ ତାଙ୍କ ପାଞ୍ଚଟି ବଦନ ।
ସାକ୍ଷାତ ଈଶ୍ୱର ଦେବ ଶାନ୍ତ ପୁରୁଷେ
ମସ୍ତକରେ ପଞ୍ଚଜଟା ଶୋଭଇ ଅଳକେ ।

ଆରକ୍ତ କୁମୁଦ ଜିଣି ପଞ୍ଚଦଶ ନେତ୍ର
ଜଳଦ ମଳୟ ଅଗ୍ନି ଆଉ ସ୍ୱୟମ୍ଭୁନାଥ ।
ଶ୍ରୀଖଣ୍ଡ ଘଷିଲେ ଶୋଭଇ ଲଲାଟରେ ଚିତା
ଦର୍ଜନମାନ ହୋଇଣ ଦିଶୁଛି ଶୋଭିତା ।
ଶିରେ ସୀମନ୍ତକ କର୍ଣ୍ଣେ କୁଣ୍ଡଳର ହାର
କଣ୍ଠେ ସ୍ଫଟିକର ମୁଦ୍ରା ଦିଶଇ ସୁନ୍ଦର ।
ଶୁକ୍ଳାମ୍ବର ଶରୀର ଯେ କଣ୍ଠେ ମଳକଣ୍ଠ
ଗଙ୍ଗା ବହଇ ଅମଳ ପିଙ୍ଗଳ ଯେ ଜଟ ।
ହୃଦେ ଶୋଭଇ ବାସୁକୀ ବଳା ମହାନାଗ
କଟି ପରିଧାନ ପୁଣି ହୋଇଛି ଉରଗ ।
ତ୍ରିଶୂଳ ଯେ ପାଶୁପତ ନାମରେ ପିନାକୀ
ଅନ୍ତରୀକ୍ଷରେ ବାଜୁଛି ନବଲକ୍ଷ ତାଳ ।
ରୁଦ୍ରଙ୍କର ଅସ୍ତ୍ର ସବୁ ନିଜ କରେ ଧରି
ନିଜ ରୂପ ଦେଖାଇଲେ ଦେବ ତ୍ରିପୁରାରି ।
ସଂସାର ସୁନ୍ଦର ଯେତେ ଯୋଡ଼ିଲା ମଦନ
ତାର ତହୁଁ ସୁନ୍ଦର ଏ ସହସ୍ରେକ ଗୁଣ ।
ଶିରେ ଗଙ୍ଗା ବହୁଛନ୍ତି ହୃଦେ ଦେବୀ ଉମା
ନାଭିରେ ବାରଣ୍ଡି ପାଦେ ବସୁଧା ବାମା ।
କିଂକିଣୀ କୁଳିକ ପୁଣ ମହାପଦ୍ମ ଶଙ୍ଖ
ବାହୁଟି ନୂପୁରବଦ୍ଧେ ଶୋଭେ ତ୍ରିଅମ୍ବକ ।
ଡିଣ୍ଡି ଡିଣ୍ଡି ଡମ୍ବରୁ ଯେ ବଜାଇ ହାମ୍ବୋଲି
ତାଣ୍ଡବ ନୃତ୍ୟ କରନ୍ତି ହରଷେ କପାଳୀ ।
ଜଗତ ଜନମୋହନ ରୂପରେ କନ୍ଦର୍ପ
ବୃଷଭ ଆରୋହୀ ଦେବ ଦେଖାଇଲେ ରୂପ ।
କୁଣ୍ଡଳ କମଣ୍ଡଳାଦି ଜଟାଜୁଟ ଲୋଟି
ଖର୍ପର ଧରିଛନ୍ତି ଯେ ବ୍ରହ୍ମାଶିର ଖୋଟି ।
କୁଶ ଭକ୍ଷଣ କରନ୍ତେ ହୋଇ ମହାରାଗୀ
କପିଳାର ଗଣ୍ଡସ୍ଥଳ ମୋଡ଼ିଲେକ ବେଗି ।
ତହୁଁ ସେ କପିଳା ଅଙ୍ଗ ଭୈରବ ରୂପରେ
ଲାଗି ରହିଅଛି ସେହି ଖର୍ପର ଉପରେ ।
ଉମା ଶୋକେ ଦକ୍ଷଯଜ୍ଞ କୋପେ ହେଲେ ନାଶି
ପୁଣି ପ୍ରସନ୍ନେ ଅଭୟ ଦେଲେ ଦେବକାଶୀ ।
ନୂପୁର କଙ୍କଣ ମଣି ଉଡ଼ଙ୍ଗାଦି ହାର
ଗଚ୍ଛିତ ରୋମାବଳି ଯା କୋଟି କୋଟି ତାର
ତାଜସ୍ୱ ରୁଦ୍ରସ୍ୱରୂପ ବହୁଜନ ଜଯା
ଶ୍ରୀଚନ୍ଦ୍ରଧାର ପଶୁପତି ଜଳରେ ପ୍ରତ୍ୟକ୍ଷା ।

ଶ୍ରୀନେପାଳ ପଶୁପତି ଚରଣରେ ସେବ
ସଜ୍ଜନଜନଙ୍କ ହିତ ହୃଦଗତେ ଭାବ ।
ସ୍ୱୟଇ ବିଶ୍ୱବାସୀ ଯା ଦେଖିଲ ପ୍ରତ୍ୟକ୍ଷେ
ଗିରିଜା ପ୍ରସଙ୍ଗେ ମୁହିଁ ରଖେ ବ୍ୟାସମୁଖେ ।
ଅନୁଗ୍ରହ ପଶୁପତି ନେପାଳ ଭବାନୀ
ବଚନେ ବୋଲେ ଶାରଳା ଦାସ ଶୁଦ୍ରମୁନି ।

## ପଶୁପତି ରାଜାଙ୍କ ସୈନ୍ୟମାନଙ୍କର ପୁନର୍ଜୀବନ ଓ ରଣସ୍ତମ୍ଭ ରାଜ୍ୟରେ ବୀରବର ରାଜା ସହିତ ଯୁଦ୍ଧ ଏବଂ ଅର୍ଜୁନଙ୍କର ହରିଙ୍ଗାଙ୍କଠାରୁ ବରପ୍ରାପ୍ତି

ବଦନ୍ତି ଯେ ବୈବସ୍ୱତ ମନୁ ନୃପବର
ଯୀବକ୍ଷ୍ମ ଗଣ୍ଡୁଷ କଲ ହେ କୁମ୍ଭ କୁମର ।
କୁମ୍ଭ ମୁଖରୁ ଗଳିତ ଯେଉଁ ସୁଧାରସ
ପାନ କରୁଛନ୍ତି ଜନ୍ମ ନଭେ ହୋଇ ତୋଷ
ଏହି ସତ୍ୟପର୍ବ ବାଣୀ ଅତିବ ମଧୁର
ଯାହା ଶୁଣିବାକୁ ସଦା ଅଭିଳାଷ ମୋର ।
ଅର୍ଜୁନ ତ ଶିବଙ୍କର ପାଇଲେ ଦର୍ଶନ
ଏଥିଅନ୍ତେ କିସ ପୁଣି ହୋଇଲା ବିଧାନ ।
ସେହି ସବୁ କଥା କହି ତୋଷ ମୋର ମତି
କହନ୍ତି ଅଗସ୍ତି ମୁନି ଶୁଣ ନରପତି ।
ମୁଁ ଏହାକୁ ବଖାଣିଲି ସୁଜନଙ୍କ ହିତେ
ମୁକତି ଇଚ୍ଛା କରନ୍ତି ପରମ ପଣ୍ଡିତେ ।
ରୁଦ୍ରଗଣ ଭେନ ଦେବ ବୃଷଭରେ ବିଜେ
ସ୍ୱରୂପ ଦେଖି ଅର୍ଜୁନ ରଥ ବେଗେ ତେଜେ
ଶ୍ରୀପଶୁପତି ଦେବଙ୍କ ଚରଣେ ନମାମି
ଶ୍ରୀଦୁର୍ଗା ଦେବୀଙ୍କ ପାଦେ ସହସ୍ରେ ପ୍ରଣାମି ।
ଭକତବତ୍ସଳ ନାଥ ପ୍ରସନ୍ନ ଧୂର୍ଜଟି
ଭକ୍ତେ ନିସ୍ତାର ନୁହନ୍ତି ତୋ ପାଦରେ ଖଟି ।
ଶ୍ରୀସଦାନନ୍ଦ ବୋଇଲେ ଉଠ ଫାଲଗୁନ
କିପାଇଁ ମାଇଲୁ ମୋର ଶିବଗଣ ସୈନ ।
ଜାଣୁନା କି ନେପାଳର ପଶୁପତି ଛାମେ
ସବଣ ଭସ୍ମରେ ଗୋପ୍ୟ ହୋଇଥିଲୁ ଏଥେ ।
ଅର୍ଜୁନ ବୋଇଲେ ସ୍ୱାମି ମୋର ନାହିଁ ଜ୍ଞାନ
ଶିବ ବୋଇଲେ ଏ ଅର୍ଥେ କର ଆସି ସ୍ନାନ ।

ପ୍ରତ୍ୟକ୍ଷରେ ଶିବପୁର ପ୍ରାପ୍ତ ହେବୁ ବାବୁ
କଳିକାଳ ଧ୍ୱଂସିବାକୁ ମୁକ୍ତି ଏଥି ସବୁ ।
ବିଶ୍ୱନାଥ ଦେଖାଇଲେ ସେହି ଶିବପୁରୀ
ଗୋପନରେ ଧନଞ୍ଜୟ ତହିଁ ସ୍ନାନକରି ।
ନିତ୍ୟକର୍ମ ସାରି ରୁଦ୍ରକୁଣ୍ଡେ ଶ୍ରାଦ୍ଧ କଲେ
ବାଳ୍ୟକାଳେ ପିତୃଗଣ ଆସି ଦୃଶ୍ୟ ହେଲେ ।
ଅର୍ଜୁନ ପିଣ୍ଡ ଦିଅନ୍ତେ ପାତିଲେ ସେ ହସ୍ତ
ସମସ୍ତଙ୍କ ହସ୍ତେ ଯାଇ ହେଲା ଉପଗତ ।
ଯେବଣ ଅକ୍ଷୟ ପିଣ୍ଡ ଦେଲେ ସବ୍ୟସାଚୀ
ପଞ୍ଚିଶତ ପୁରୁଷ ବାନ୍ଧି ତାହା ଭକ୍ଷି ।
ପୂର୍ବର ପାତକମାନ ସର୍ବ ହେଲା ଧ୍ୱଂସ
ଲଭିଲେ ଅକ୍ଷୟ ଭାବେ ତହୁଁ ସ୍ୱର୍ଗବାସ ।
ତହୁଁ ବିଶ୍ୱମ୍ଭର ଦେବ ହେଲେ ଅନ୍ତର୍ଦ୍ଧାନ
ନିମନ୍ତ୍ରଣ କଲେ ପଶୁପତିଙ୍କୁ ଅର୍ଜୁନ ।
ଅକ୍ଷତ ଗୁଆକ ଦେଇ କଲେ ନିମନ୍ତ୍ରଣ
ବୋଇଲେ ଯାଅ ତୁ ବେଗେ ଘେନିଣ ସୈନ୍ୟ
କାରୁଣାବନରେ ଯାଇ ପ୍ରବେଶ ହୋଇବୁ
ପାରିବଣ୍ଡ ସବୁ ରଜା ସଙ୍ଗେ ଘେନିଯିବୁ ।
ପାର୍ଥ ହାକୋଡ଼ା ଖରରେ ସୈନ୍ୟଥିଲେ ଲେଟି
ଜୀବନ୍ୟାସ ଶର ଯେନ କରିବାରୁ ବୃଷ୍ଟି ।
ଉଠିଲେ ଗଣମାନଙ୍କେ ନିଜ ପ୍ରାଣ ପାଇ
ଅର୍ଜୁନଙ୍କୁ ପ୍ରଣିପାତ ହୁଏ ନରସାଇଁ ।
ସମଦଣ୍ଡ ସଇନ୍ୟଙ୍କୁ ସାଜିଲା ହରଷେ
କରଇ ପ୍ରୟାଣ ତହୁ କାରୁଣା ପ୍ରଦେଶେ ।
ତହୁଁ ପାର୍ଥ ଗାରଡ଼ୁର ବାଦ୍ୟନାଦ କରି
ପଶ୍ଚିମ ମୁରତି ହେଲେ ସୈନ୍ୟଙ୍କୁ ସେ ଧରି ।
ରୁଦ୍ରପତି ଗଙ୍ଗାଭରେ ଶୁକନ ନଗରୀ
ବିରଞ୍ଚିରୁଦ୍ର ବୋଲିଣ ତହିଁ ଦଣ୍ଡଧାରୀ ।
ବାଇଶ ଅର୍ବୁଦ ହସ୍ତୀ ସପ୍ତକୋଟି ରଥୀ
ଏଗାର ମେଦଛ ଅଶ୍ୱ ଷଉଣୀ ପଦାତି ।
ଅର୍ଜୁନ ପ୍ରବେଶ ଭୁଜମଣ୍ଡଳର ରାଜ୍ୟେ
ସ୍ନାନପାଇଁ ରୁଦ୍ରଗଙ୍ଗା ପାଶେ ହେଲେ ବିଜେ
ନିତ୍ୟକର୍ମ ସାରି ତହୁଁ କଟକେ ପ୍ରବେଶ
ବେଶାରରେ ଜଣାଇଲେ ଯାଇ ରଜା ପାଶ ।
ସ୍ୱାମି କେବଣ ଦେଶର ଏକ ମହାଯୋଧ
ଉତ୍ତର ଦିଗ ଗଙ୍ଗାନ୍ତୁ ଆସୁଅଛି ପାର୍ଥ ।

ଦୁର୍ଦ୍ଧାର ହୋଇଲେ ତେବେ ନ କରନ୍ତି କେହି
ଶ୍ରବଣ ପଶିଲେ ଶବ୍ଦ ରକ୍ଷା ସେ କରଇ ।
କ୍ଷତ୍ରିୟ ଅନର୍ଗଳ ସେ ଅଟେ ମହାଯୋଗୀ
ଦମଘୋଷ ରାଜାକୁ ସେ ଭଟେ ଅଛୁ ବାନ୍ଧ ।
ଦମଘୋଷର ବଚନ ଶୁଣିକରି ରାଜେ
ସମସ୍ତ ଘେନିଣ ସେ ପାଚେନ୍ତିଣ ଯାଏ ।
ଛତ୍ରସା ପନ୍ଦ ଜନ୍ଦ୍ ସେ ଦେଲ ଲକ୍ଷ୍ମକଣ
ସକଳେ ଧରିଅଛନ୍ତି ପାଟନ୍ତସମାନ ।
ନଗରେ ପାଏଡ଼ା ପାଣ ନୃପ ମନ୍ତ୍ରଜାଧି
ଅର୍ଜ୍ଜୁନକୁ ପ୍ରଣିପାତ କରେ କର ବନ୍ଧି ।
ବହୁତ ରତନ ଘେନେ ବସ୍ତ୍ର ସୂତ୍ର ଭର
ଶତସହସ୍ର ପ୍ରଣାମ କରେ ଦଣ୍ଡଧାରୀ ।
ରାଜାର ରତନ ଦେଖି ବୀର ଅର୍ଜୁନ
ରଥରୁ ଓହ୍ଲାଇ ତାକୁ କଲେ ସମାଧାନ ।
ଅର୍ଜ୍ଜୁନ ବୋଇଲେ ତୁହେ ଜାଣିଲୁ ସନ୍ଦେହ
ନିଶ୍ଚିନ୍ତ ହୋଇଣ ଏବେ ତୋ ରାଜ୍ୟରେ ରହ
ଏହା କହି ନିମନ୍ତ୍ରଣ ଦେଇ ସବ୍ୟସାଚୀ
ରାଜସୂୟଯାଗକୁ ଚଳ ସବୁ ସୈନ୍ୟ ବାଛି ।
ଆଜ୍ଞାପ୍ରମାଣେ ବହୁଅ ରୁଦ୍ର ଦେବରାଜେ
ସମସ୍ତେ ବାରୁଣୀକୁ ବେଗେ ଚଳଯାଏ ।
ତହୁଁ ଚଳେ ଧନଞ୍ଜୟ ଗଙ୍ଗା ତୀରେ ତୀରେ
ପ୍ରବେଶିଲେ ଯାଇ ରଣସ୍ତମ୍ଭର ରାଜ୍ୟରେ ।
ଶୀଘ୍ରତର ବାଦ୍ୟ ବାଇ ବୀର ଫାଲ୍ଗୁନ
ରଣସ୍ତମ୍ଭ ଦେଶଖଣ୍ଡେ ବିଜୟ ଭଜମୀ ।
ସେ ରାଜାର ନାମ ବୀରବନ୍ତ ଚକ୍ରବର୍ତ୍ତୀ
ବଡ଼ ପ୍ରତାପୀ ଉତ୍ତର କୋଶଳ ସେ ଛତ୍ରୀ ।
ସେହି ଗଡ଼ର ଭିତରେ ବିଜୟ ଝଙ୍ଗୁଳା
ଯୋଗମାତଙ୍ଗିନୀ ସେହୁ ସିଦ୍ଧି ମହାଖଳା ।
ମାନସୀ ରୂପରେ ତହିଁ ବିଜେ ଜଗନ୍ମାତା
ତାହାର ପ୍ରସାଦେ ରାଜ୍ୟ ନାହିଁ କିଛି ଚିନ୍ତା ।
ଜ୍ୱାଳାମୁଖୀ ଅଭୟା ଯେ ଅଗ୍ନି ଝଙ୍ଗୁଳାକ୍ଷୀ
କୌଣପକୁଳ ଧ୍ୱଂସିନୀ ମାତା ବିରୂପାକ୍ଷୀ ।
ଅର୍ଜ୍ଜୁନ ବିଜୟ ରଣଘାଟି ପରବତେ
ବହିଲ କୌଶିକ ନଦୀ ଗିରି ହେମବନ୍ତେ ।
ପୌଷମାସ କୃଷ୍ଣପକ୍ଷ ଷଷ୍ଠୀ ଶୁକ୍ରବାର
ପୂର୍ବାଫାଲ୍ଗୁନୀ ନକ୍ଷତ୍ର ଯୋଗ ସେ ଉଜର ।

ବାଣିଜ୍ୟ ନାମେ କରଣ ଆୟୁଷ୍ମାନ୍ ଯୋଗ
ଧନୁ ସଂକ୍ରାନ୍ତ ଯାଇ ବୃଷଭନ ଭୋଗ ।
ପଶ୍ଚିମ ଦିଗରେ ଯୋଗିନୀ ଥିଲା ସୁଖଧାନେ
ସକଳ ଶୁଭ ମାହେନ୍ଦ୍ର ବେଳ ଉଦୟମାନେ ।
ଅମୃତ ଯୋଗକରଣ ମାହେନ୍ଦ୍ରକୁ ଘେନି
କଉଶିକୀ ଗଙ୍ଗାତୀରେ ବିଜେ ଫାଲ୍ଗୁନ ।
ସେ ନଦୀ ରକ୍ଷା କରନ୍ତି ଯୋଦ୍ଧା ପାଞ୍ଚଲକ୍ଷ
ଅର୍ଜ୍ଜୁନଙ୍କୁ ଓଗାଳିଲେ ହୋଇଣ ବିପକ୍ଷ ।
କେବଣ ଦେଶର ରାଜା ଚଳାଉଛୁ ଧାଟ
ଏ ଘାଟେ ଅଟଇ କ୍ଷେତ୍ର ମହାତୀର୍ଥ ଶ୍ରେଷ୍ଠ ।
ବିଜେ କାତ୍ୟାୟିନୀ ମାତା ପ୍ରତ୍ୟକ୍ଷେ ଝଙ୍ଗୁଳା
ଜନ୍ମାନ୍ତର ବରଦାତା ଫିଟେ ଏକବେଳା ।
ଜ୍ୱାଳା ମାହେଶ୍ୱରୀ ଦେବୀ ରାଜା କରେ ଷୋ
ଅଭୟ ଝଙ୍ଗୁଳା ତାର ପୂର୍ଣ୍ଣକର ବାଞ୍ଛା ।
ତେଣୁ ଏଠାକୁ ଆସନ୍ତି ପିଶାଚବୃନ୍ଦମାନେ
ଶୁଭଲଗ୍ନବେଳ ଜାଣି ମାହେନ୍ଦ୍ର ବିଧାନେ ।
ଆମ୍ଭେ ରକ୍ଷାକାରୀ ଅଟୁ ଏ ଜଳଉଦ୍ୟାନେ
କେଉଁ ରାଜେଶ୍ୱର ରାଜା ଆସୁ ତୁ ଏ ସ୍ଥାନେ ।
ପ୍ରମାଦରେ ନ ପଶି ତୁ ବାହୁଡ଼ିଣ ଯା ଯା
ଶୁଣିଲେ କୋପ କରିବେ ତୋତେ ମହାରାଜା
ଯକ୍ଷ ଆସନ୍ତି ଦେବତା କି ଅବା ଗନ୍ଧର୍ବେ
ଜଳେ ପଶି ନ ପାରନ୍ତି ଆମ୍ଭର ପ୍ରଭାବେ ।
ପାର୍ଥ ବୋଇଲେ ଆମ୍ଭର ହେବ ମହାଯୋଗ
ରାଜା ନିମନ୍ତ୍ରଣ କରି ଆମ୍ଭେ ନେବୁ ବେଗ ।
ଏହି ଭଉଇ ଦିଗରେ ଯେତେକ ନୃପତି
ଦଣ୍ଡ ଘେନିଣ ସମସ୍ତେ ତହିଁ ଯାଇଛନ୍ତି ।
ତୁମ୍ଭର ରାଜା ଆଗରେ କହ ଯାଇ ବେଗ
ଦଣ୍ଡ ଘେନିଣ ବାରୁଣୀ ଯାଉ ଆମ୍ଭ ଯାଗ ।
ଅର୍ଜ୍ଜୁନ ବଚନ ଶୁଣି କଲେ ଉପହାସି
ଜୀବନ ଘେନିଣ ଏଥୁଁ ବେଗେ ତୁ ଯାଆସି ।
ମହା ମହା ରାଜାଏ ଯେ ଆସି ରଣ ସୈନ
ପାର ହୋଇ ନ ପାରନ୍ତି ତାଙ୍କର ସଇନ ।
ଆଗୁଆଣି ଥିଲେ ଜୟ ବିଜୟ ଯେ ବୀରେ
ଗୋଳ କରିଣ ପଶିଲେ ରାଜାର ଆଟରେ ।
କୁରୁଳ ନାଦ କରିଣ ପଶିଲେ ସେ ମାଡ଼
ଅର୍ଜ୍ଜୁନ ଶର ବିନ୍ଧିଲେ ଉପରୋଧ ଛାଡ଼ି ।

ପାଞ୍ଚଲକ୍ଷ ଯୋଦ୍ଧା ପାର ସେ ରାଜାର ଥିଲେ
ଲୀଳା ଧନୁ ଧରି ପାର୍ଥ ସୈନ୍ୟଙ୍କୁ ହଣିଲେ
ହାସବର ସୈନ୍ୟମାନେ ପ୍ରତିଜ୍ଞା ସାମର୍ଥ
ପରରାଷ୍ଟ୍ର ଜିଣିବାକୁ ଯେହ୍ନେ ବଳବନ୍ତ
ଧନୁରେ ପୂରାଇ ଶର ହାଣିଲେ ଆକର୍ଷି
ଶତ୍ରୁ ସଇନ୍ୟରେ ଯାଇ ନାରାଚ ବରଷି ।
ପଙ୍କଙ୍କୁ ମାଇଲେ ଯେହ୍ନେ ପକ୍ଷିରାଏ କଳା
ଛେଦନେ ପଡେ ଛିନ୍ନମୁଣ୍ଡ ଶର ଅନର୍ଗଳା ।
ଅଶ୍ୱ ଯୋଦ୍ଧାଙ୍କର ଦେହା ଭେଦ ହୋଇ ଫୁଟି
ପଦାତିକ ସୈନ୍ୟ ହେଲେ ରୁଧିରରେ ସାଣ୍ଟି
ନଦୀ ଭିତରେ ଅଛନ୍ତି ରାଜା ଅମାଜନା
ଉଟରେ ଥାଇ ହାଣନ୍ତି ଅର୍ଜୁନ ସଇନ ।
ରାଜାର ସୈନ୍ୟ ଉପରେ ହୁଏ ଶର ବୃଷ୍ଟି
ନର୍ମଦାତେ ବନ ପୋଡ଼ିଲେ ଯେହ୍ନେ ମହାଁଶୋଭି
ରୁଧିରରେ ହଲେପନ ହେଲା ସବ ସଙ୍ଗ୍ରାମସ୍ଥ
ଭଉଟିକା ନଦୀପାଣି ବହେ ରକ୍ତସ୍ରାପ୍ତ ।
ଅଞ୍ଜନର ରୂପେ ଶର ହାଣେ ଫାଲଗୁନ
ବେନବଳ ସଇନ ଯେ ହେଲେ ଅନ୍ୟୋଅନ
ପାଣ୍ଡବବଳ ଅଟନ୍ତି ନାରାୟଣ ଭକ୍ତ
ସଙ୍ଗ୍ରାମେ ପଶନ୍ତି ହସ୍ତୁ ବଳ ଅପ୍ରମିତ ।
ନାରାୟଣଙ୍କର ନାମ ଅଭୁଟ ଆରଣି
ଅସୁରବଳ ଖଦ୍ୟୋତ ଅଟେ କୃଷ୍ଣଶଶୀ ।
ଯେତେ ଅର୍ଜୁନ ନାରାଚ ଥାଟେ ଆସି ପଡ଼
ସେହ୍ନ ସମସ୍ତେ ପଡନ୍ତି ଭୂମିରେ ଉପୁଡ଼ ।
ଅର୍ଜୁନର ସୈନ୍ୟମାନେ ଆକର୍ଷିଣ ହାଣି
ଶର ଗୋଟିକେ କୋଟିଏ ପକାବନ୍ତି ଛେଦ ।
ପଡ଼ିଲେ ସେ ବୀରବର ରାଜାସୈନ୍ୟ ଯେତେ
ପାଞ୍ଚଲକ୍ଷ ଯୋଦ୍ଧା କେହ୍ନ ନ ଗଲେ ଜୀବନ୍ତେ ।
ତହୁଁ କୌଶିକୀ ନଦୀରେ ପଡ଼ିଲେ ସେ ଝାସି
କରନ୍ତି ସ୍ନାନଦାନ ସର୍ବେ ପୁଣ୍ୟଜନେ ପଶି ।
ଦେବଗଣେ ପିତୃଗଣେ ଦେଲେ ପିଣ୍ଡଦାନ
ଇଚ୍ଛାରେ ପାଣ୍ଡବ ଦଳ ରହିଲେ ସେ ସ୍ଥାନ ।
ହାଲ ମାଡ଼ ମାଡ଼ ତହୁଁ ଚଳିଲେ ସଇନ
ରଣସ୍ତମ୍ଭ ଗଡ଼କୁ ସେ ଯୋଜନ ଯେ ତିନ ।
ଆସ୍ଥାନେ ବଜେ କରନ୍ତି ବୀର ଚକ୍ରବର୍ତ୍ତୀ
ଜ୍ୟୋତିରେ ଉଭାରଛନ୍ତି ବି ଲକ୍ଷ ପଦାତି ।

ପୁଣ୍ୟତୋୟା ଖାଟେ ପାଞ୍ଚଲକ୍ଷ ଯୋଦ୍ଧା ଥିଲେ
ତଉବଂଶ ସୂଣ ତହୁଁ ପଳାଇଣ ଗଲେ ।
ପଞ୍ଚାରମାନଙ୍କରେ ସେ ଶର ଅଛୁ ଫୁଟି
ଶରୀରସାକ ତାଙ୍କର ରୁଧିରରେ ବୃଷ୍ଟି ।
ଜୀବନ ଘେନି ସେମାନେ ପଳାଇଲେ ବେଗେ
ଯାଇ ଜଣାଇଲେ ବୀରବର ରାଜା ଆଗେ ।
ସ୍ୱାମୀ ମହେଶ୍ୱର ଦେବ ଆମ୍ଭ ଦୁଃଖ ଦେଖ
ପାଞ୍ଚଲକ୍ଷ ଯୋଦ୍ଧା ମଲେ ଆମ୍ଭ ରାଜ୍ୟ ରଖ ।
ଅଦଭୁତ ଯୋଦ୍ଧା ଏକ ଅଇଲେ କାହୁଁ
ମାଇଲେ ସମସ୍ତ ଯୋଦ୍ଧା କଥା କହୁଁ କହୁଁ ।
ହସ୍ୱଇଣ ଆଜ୍ଞା ଦେବା ମାହେଶ୍ୱରୀ ବଳା
ପଡ଼ିଲଣି ଅପଚୟ ଦେବଦୋଇ ପଳା ।
ମହାସଙ୍ଗ୍ରାମଜିତା ସେ ଅଟେ ଧନୁର୍ଦ୍ଧର
ଅକ୍ଷୟ ଟେଡ଼ ଭିତରୁ ନୃହ କୁ ବାହାର ।
ସ୍ଥତଗଣଙ୍କ ମୁଖରୁ ଏ ବାରତା ପାଇ
ରାଗରେ ଉଠିଲା ରାଜା ନୟନ ବୁଲାଇ ॥
ସାଜରେ ସାଜରେ ବୋଲି ପଡେ ଘୋରଡାକ
ବଜେ ତୁରୀ ବାଇ ଗଡୁ ବାହାର ହେଲକ ।
ଅଇଲେ ତାହାର ବଳ କାହାର ପଲ୍ଲଣି
କାହାଳର ଉଦବେଗ ଶବଦକୁ ଶୁଣି ।
ପାଣ୍ଡବଗଣମାନେ ଉଦବେଗ ନାଦ ଶୁଣି
କସ ହପଦ ବୋଲିଣ ଡଉଡ଼ିଲେ ପୁଣି ।
ଗଡ଼ଦ୍ୱାରେ ଉଭାହେଲେ ଆସିଣ ରାଉତ
ଅଶ୍ୱ ଚଢ଼ି କରି ଯେହ୍ନ ବୁଲାବନ୍ତି କୁନ୍ତ ।
ହାଣନ୍ତି ସେ ବଜ୍ରବାଣ ଦୃଢ଼ ବଜ୍ରସୂଚୀ
ପୁଣ୍ୟତୋୟା ଖରେ ଥାଇ ଟୁଣେ ସବ୍ୟସାଚୀ
ମଣୋହ୍ର ସାରଣ ନାଦେ ହଜେ ଫାଲଗୁନ
ନାବେ ପାର ହେଉଛନ୍ତି ପାଣ୍ଡବ ସଇନ ।
ରଣସ୍ତମ୍ଭ ରାଜ୍ୟେ ପଶିଥାଟ ବାର୍ତ୍ତା ପାଇ
ଅନେକ ଦେଶର ରାଜା ଆସୁଛନ୍ତି ଧାଇଁ ।
ପ୍ରବେଶ ହୁଅନ୍ତି ରଣସ୍ତମ୍ଭର ଗଡ଼ରେ
ମହାଯୋଦ୍ଧାଏ ମିଳିଲେ ମହାସନ୍ତୋଷରେ ।
ବାଜେ ବୀରତୂର ବାଜା ନିଶାଣ ବାଜନ୍ତି
ଦାଣ୍ଡେ ହଣୁଛନ୍ତି ପୁଷ୍ପ କର୍ପୂରର ଗୁଣ୍ଡି ।
ରହିଛନ୍ତି ଯେତେ ସୈନ୍ୟ ଆଡ଼ମ୍ବର କରି
ପୁଣ୍ୟତୋୟାକୁ ଅର୍ଜୁନ ସୈନ୍ୟ ହେଲେ ପାରି

ଚାହାନ୍ତି ଯେ କୁରଙ୍ଗମ ମାତଳି ସାରଥି
ଶଙ୍ଖ ଶ୍ୱେତ ଚାମରାଳି ଗୋଷ୍ଠୀର ଉଡନ୍ତି
ନେତର ଚପଳ ଉଡେ ରଥର ଉପରେ
ସ୍ୱସ୍ତମଣି ଝଟକଇ ସୂର୍ଯ୍ୟର ତେଜରେ ।
ସିଂହଦ୍ୱାରେ ନବତାଳ ଉଗ୍ରସେନ ଜଗନ୍ତି
ଚର୍ହିଁ ପାଶ ମନ୍ତ୍ରୀ ଛନ୍ତି ଆଦର ନୃପନ୍ତି ।
ଅଦଭୁତେ ରଥ ଏକ ଦେଖିଲେ ଆକାଶେ
ବିସ୍ମରନ୍ତି ଇନ୍ଦ୍ରଦେବ ଯାନ୍ତି ଶୂନ୍ୟବାସେ ।
ମନ୍ତ୍ରୀବର ବୋଇଲା ଏ ନୁହେଁ ସୁରନାଥ
ଇନ୍ଦ୍ରଦେବ ହୋଇଥିଲେ ଥାନ୍ତା ଐରାବତ ।
କେ ବୋଲେ ଅଳକାନାଥ କୁବେର ଏ ଅବା
କିବା ଅଶ୍ୱିନୀକୁମାର କିବା ମହାଦେବା ।
ଆନ କାହାର ରଥ କି ଚଳେ ଅନ୍ତରୀକ୍ଷ
ଦେବବଂଶ ପୁରୁଷ ବା ହେବେ ଚତୁର୍ମୁଖ ।
ଏସନକ ବିସ୍ମରନ୍ତି ପାଶ ଅମାତ୍ୟେ
ବାସବ ଅଗ୍ରତେ ଯାଇ ପ୍ରବେଶ ସମସ୍ତେ ।
ଗଡ଼ର ସ୍ୱରକଣ୍ଡରେ ବେଢ଼ିର ପାଚେରି
ତିନ କୋଶ ବହଳ ଉଚ୍ଚତ ପୂର୍ଣ୍ଣ ଗିରି ।
ପାଚେରି ଉପରେ ଅଶ୍ୱ ଚଢ଼ି ସର୍ବ ଯୋଧୀ
କୁନ୍ତ ଅଶୀ ବୁଲାଇଣ କାଣ୍ଡମାନ ବାନ୍ଧି ।
ମେଡ଼ ମଣ୍ଡପ ବେଢ଼ିଣ ଅଟାଳି ଜଗନ୍ତି
ପାଚେରି ଉପରେ ଚଢ଼ି ସମସ୍ତେ ବୁଲନ୍ତି ।
ଅର୍ଜ୍ଜୁନ ଚଳାଉଛନ୍ତି ଆପଣାର ଥାଟ
ସଇନ ହୋଇଲେ ଯାଇ ଗଡ଼ର ନିକଟ ।
ନ ଧରନ୍ତି ନ ମାରନ୍ତି କିଛି ନ ବିସ୍ମର
ଯେ ଯାହାର ସ୍ଥାନେ ଥାନ୍ତି ଆଜ୍ଞା ଅବଧାରି ।
ଦେଖନ୍ତି ଇନ୍ଦ୍ର ସକଳେ ଅପୂର୍ବ ପରାସ୍ତେ
ଆକାଶ ତେଜ କି ବିଜେ କଲେ ସୁରରାସ୍ତେ ।
ନାସ୍ତିପୁଣି କରିଛନ୍ତି ବିଜେ ଯେଉଁଠାର
ବଦ୍ୟପୁର ଅଟେ ନରେ ଅତ୍ୟନ୍ତ ସୁନ୍ଦର ।
ଏସନକ ସୁନ୍ଦର ସେ ରଣସ୍ତମ୍ଭ ଦେଶ
ସୈନ୍ୟ ଧାବୋଡ଼ିଲେ ଯାଇ ଗଡ଼ଦ୍ୱାର ପାଶ
ଦ୍ୱିକୋଶ ଓସାର କୋଣେ ଅଟଇ ଗଞ୍ଜାର
ଖଣା ବେଢ଼ିଛି ଗଡ଼କୁ ନବପୂର୍ଣ୍ଣ ଦୂର ।
ଅର୍ଜ୍ଜୁନର ରଥ ଗଲା ଅନ୍ତରୀକ୍ଷ ପଥେ
ବାହାର ଗଡ଼ ଜଗନ୍ତି ପ୍ରବେଶ ଉଚିତେ ।

ସୈନ୍ୟଙ୍କୁ ସେ ଆଜ୍ଞା ଦେଲା ରଣସ୍ତମ୍ଭ ପତି
ତେଜ୍ୟାକର ବେଗେ ଆସ ବାହାର ଜଗନ୍ତି ।
ଜାଣିବା କେଉଁ ଦେଶର ଅଟଇ ଏ ଥାଟ
କାହିଁକି ଆସିଛି କେଉଁ ଦେଶର ଏ ରାଟ ।
ବାହାର ଗଡ଼ ପାଚେରି ବେଢ଼ିଥିଲେ ଯାରେ
ଘୁଞ୍ଚି ଅଇଲେ ସେଠାରୁ ଗଡ଼ର ଭିତରେ ।
ଏଣୁ ରୂପେ ତିନଖଞ୍ଜା ତିନୋଟି ପାଚେରି
କୋଶେ ବହଳ ଉଚ୍ଚର୍ଗ ଅଟେ ନୋଶ ଗିରି ।
ତହିଁର ତଳେ ଖଣାଏ ଅତ୍ୟନ୍ତ ବିସ୍ତାର
ମହାଜଳ ପ୍ରାୟେ ସେହି ଅଟଇ ଗଭୀର ।
ରହିଲେ ଯେ ସୈନ୍ୟ ଦୁଇଗଡ଼କୁ ଆବୋରି
ଅର୍ଜ୍ଜୁନ ସୈନ୍ୟ ଉଠିଲେ ବାହାନାଦ କରି ।
ବାହାର ଗଡ଼ ଖଣାଇ ପ୍ରସ୍ଥ କୋଶ ତିନ
ପାଦଗଣ୍ଡରେ ସଇତେ ନାନ୍ତି ଅଶ୍ୱ ଯାନ ।
ବାହାର ଗଡ଼ ପ୍ରାଚୀରେ ବିଜେ ସବ୍ୟସାଚୀ
ସ୍ୱରଗଣ ମୁଖେ ଯାଇ କହଇ ଯେ ବାଚି ।
ପାର୍ଥ ବୋଇଲେ ପୁରୋଧା ବ୍ରାହ୍ମଣ ହକାରି
ତୁମ୍ଭେ ପୁଷ୍ପକ-ବିମାନେ ଯାଅ ଚଢ଼ିକରି ।
ବୀରବରଙ୍କୁ ତିଆର ଯାଇ କହିମତେ
ଆମ୍ଭେ ଆସିଅଛୁ ରାଜା ନିମନ୍ତ୍ରଣ ଅର୍ଥେ ।
ତାର ଆମ୍ଭର ବିବାଦ ନାହିଁ କରୁ ପୂର୍ବେ
ଆମ୍ଭର କୁଳେ ପୀରତି ସେହ କରୁ ଏବେ ।
ଆମ୍ଭେ ଯେ ଅନେକ ଦୂରୁ ଅଇଲୁ ଦୂତରୁ
ବଙ୍ଗାଳା ପ୍ରତ୍ୟକ୍ଷ କରି ବିରୋଧ ନ କରୁ ।
ଅର୍ଜ୍ଜୁନ ବଚନ ଶୁଣି ଗଲେ ପୁରୋହିତ
ପୁଷ୍ପକ ରଥରେ ଯାଇ ବସିଲେ ତ୍ୱରିତ ।
ଚଳିଗଲେ ଆକାଶେ ରଣସ୍ତମ୍ଭର ଗଡ଼ରେ
ପ୍ରବେଶ ହୋଇଲେ ବୀରବର ଆସ୍ଥାନରେ ।
ରାଜାର ଅଗ୍ରତେ ଉଭା ହୋଇ ଦ୍ୱିଜବର
କଲ୍ୟାଣ କଲେ ରାଜାକୁ ଉଚିତ ପ୍ରକାର ।
ଆସନରେ ବସିବାକୁ ରାଜା ନ କହିଲେ
କୁଶହସ୍ତେ ପୁରୋହିତ ତାହାଙ୍କୁ ବୋଇଲେ ।
ହେ ମହାରାଜ ଯୁଧିଷ୍ଠିରଦେବ ନରସ୍ୱାମୀ
ଅଷ୍ଟାଦଶ ବଂଶ ରାଜାମାନଙ୍କ ଉତ୍ତମୀ ।
ରାଜସୂୟ ଯାଗେ ତହିଁ ହେବ ମହାସଙ୍ଗ
ସମସ୍ତ ... ।

ପ୍ରସେନଜିତ ବାକ୍ୟେ ମଧ୍ୟମସ୍ତ ମହାମନ୍ତ୍ରୀ
ସୁରେଶ୍ୱରଙ୍କୁ କହିଲା କଥା ଏହିମତ ।
ଆହେ ଷଡ଼ବର ତୁମ୍ଭେ ବୋଲୁଛ ଏମନ୍ତ
ରାଜାଧିରାଜ ଉତ୍ତରଦିଗେ ଏକଛତ୍ର ।
ଦେଖ ଦେଖ ମହାଦେବୀ ପ୍ରତ୍ୟକ୍ଷେ ତୁଙ୍ଗଜ୍ଞା
ଅକ୍ଷୟ ପ୍ରସନ୍ନ ଦେବୀ ଅଟେ ମହାଖଳା ।
ଆକାଶରେ ଲଗ୍ନଅଛି ଯାହାଙ୍କର ମାଥ
ପାଦୁକା ନନ୍ଦେ ଗମନ୍ତି ଯେତେ ବଡ଼ ତୀର୍ଥ ।
ଏ ରଣସ୍ତମ୍ଭ ଗଡ଼ ସେ ଦେବୀ ଛନ୍ତି ସଙ୍ଗ
ଆମ୍ଭ କ୍ଷେତ୍ର ଅଧିପତି ତୀର୍ଥ ଅଛି ରକ୍ଷି ।
ଏ ତୀର୍ଥକୁ ଛାଡ଼ି କହିଁ ଚଳି ଯିବୁ ଆମ୍ଭେ
ଆମ୍ଭର ରାଜାଙ୍କୁ ଘେନି ଚଳଯାଅ ତୁମ୍ଭେ ।
ପ୍ରସେନଜିତ ବୋଲେ ଆମ୍ଭେ ଅଇଲୁ ଏ ସ୍ଥାନେ
ତୁମ୍ଭେ ନ ଗଲେ କି ଯିବେ ଅନ୍ୟ ରାଜାମାନେ
ରାଜାର ଅଗ୍ରତେ କହେ ମନ୍ତ୍ରୀ ଚୂଡ଼ାମଣି
ଅର୍ଜୁନ ସ୍ୱାମୀକୁ କହୋ ଆସ ଏହିକ୍ଷଣି ।
ପ୍ରସେନଜିତଙ୍କ ବଚନେ ନୃପ ବୀରବର
ବୋଇଲେ ମୂର୍ଖ ତ ବଶ ନୁହଇ କାହାର ।
ସେହି ନ ଜାଣେ କି ରଣସ୍ତମ୍ଭ ଗଡ଼ ବୋଲି
ଏ ମହୀମଣ୍ଡଳେ ଥାଇ କରେ ନ ସାଧିଲି ।
ଆମ୍ଭେ ନ ଯାଉ କା ପୁରେ କେବଣ ପ୍ରତ୍ୟକ୍ଷେ
ମୋ ପୁରରେ ନ ପଶନ୍ତି ବାସରେ ଦିବସେ ।
ଆକାଶରେ ଗଡ଼ ତାର ନୟନେ ଦେଖିଲି
ଇନ୍ଦ୍ରମଣି ବାହାରର ଜଗତୀ ଗ୍ରଥିଲି ।
କିଏ ଜାଣଇ ଅର୍ଜୁନ ଅଥବା ଯୁଧିଷ୍ଠି
କିଏ ସେ କେଶବ କିଏ ଅଟଇ ଧୂର୍ଜଟୀ ।
କିଏ ଜାଣଇ ତାହାର ବ୍ରହ୍ମ ବଜ୍ରପାଣି
ଏକମାତ୍ରକ ତୁଙ୍ଗଜ୍ଞା ମୋର ଗୋସାମଣୀ ।
କେଉଁ ଦେବତା ତୁମ୍ଭର କିସ କରେ କାମ
ଈଶ୍ୱରର ଅର୍ଦ୍ଧାଙ୍ଗୀ ଅଟେ ତୁଙ୍ଗଜ୍ଞା ଯା ନାମ
ତପୋଧନ ହେଲେ ମାଡ଼ପାର ସେହି ତୀର୍ଥ
ବଳାତ୍କାରେ ପଶିବାକୁ କାର ଶକ୍ତିବୃତ୍ତ ।
ତାହାର ଯାଗ ଯଜ୍ଞରେ ମୋର କିସ କାର୍ଯ୍ୟ
ଯାବନ ସେନ ବାହୁଡ଼ ପଶୁ ଅନ୍ୟ ରାଜ୍ୟ ।
ପ୍ରବୋଧ କହିଲେ ବୁଦ୍ଧି କହିଲୁ ନା ଦର୍ପେ
ତିନିଲୋକ କମ୍ପଅଛି ଯାହାର ପ୍ରତାପେ ।
ଖାଣ୍ଡବବନ ଦହନେ ବାସବ ଉଦାସ
ଅଗ୍ନିର ନାଶ କଲା ଲଦବଦ ବ୍ୟାଧ ।
ଭଗତ ଦେଶରେ ଯାଇ ଈଶ୍ୱରଙ୍କ ଜିଣି
ଅକ୍ଷତଣ ପାଶୁପତ ନେଲେ ଶୂଳପାଣି ।
ଦ୍ୱାରକା ପଶି ସୁଭଦ୍ରା କଲେ ହରଣ
ବହନ୍ତ ସମର ଭଲେ ହଳ ଶଙ୍କର୍ଷଣ ।
ଏତେ ବନ୍ତ ରାଜ୍ୟ ନାଶ ନ କର ତ ହାତେ
ଲୋକେ କେବଳ ଉପ୍ରୋଧ ତୁଙ୍ଗଜ୍ଞା ପ୍ରସାଦେ
ସୈନ୍ୟ ନାଶଯିବେ ତୋର ଅକାରଣ ଯୁଦ୍ଧେ
ଏତେକ ପ୍ରମାଦ ଚିନ୍ତା କରୁଅଛୁ ହାତେ ।
ସମାନ ରାଜ୍ୟଟି ତୋର ବଢ଼ଇ ସସଖ୍ୟ
ସର୍ଗହବନ ଭ ଆସି ରହିଅଛି ମଞ୍ଚ ।
ଶୁଦ୍ଧ ମହାରାଜା ତୋର କଣ୍ଟ ନାହିଁ ଦୋଷ
ଏ ବଡ଼ ରାଜ୍ୟ ନଷ୍ଟରେ ନ କର ତୁ ନାଶ ।
ଶାଶିଣ ନୃପତି କହେ ଗରଜନ କରି
ଦ୍ୱିଜପତ୍ନ ନୋହିଥିଲେ ପକାନ୍ତି ମୁଁ ମାରି ।
ଆରେ ବ୍ରାହ୍ମଣ କପାଇଁ ପାଉନାହୁଁ ଲଜ୍ଜା
ଏହିକ୍ଷଣି ନାଶଯିବ ବହନ ତୁ ଯା ଯା ।
ତୁଙ୍ଗଜ୍ଞା ଗୋସାମଣୀ ମୋ ସବୁବେଳେ ସାହା
ଆଉ ତୋହର ଅର୍ଜୁନ କେ ଲେଖଇ ତାହା ।
ବୀରବର ପ୍ରତିଜ୍ଞା ସେ ଭଲ ଅପ୍ରମିତେ
ତାର ଦୃଷ୍ଟପଣ ଦେଖି ଉଠିଲେ କ୍ରୋଧିତେ ।
ଦଣ୍ଡ ସାଜ ବୋଲି ବୋଲେ ବୀର ଚକ୍ରବର୍ତ୍ତୀ
ସାଜିଲେ ସକଳ ଯୋଦ୍ଧା ମହା ମହା କ୍ଷତ୍ରୀ ।
ରଥେ କେହି ଗଜେ କେହୁ ଚଢ଼ି ଅଶ୍ୱପିଠି
ସାଜ ସର୍ବ ସୈନ୍ୟ ଚହୁଁ ଗଳଗାଜ ଉଠି ।
ପ୍ରସେନଜିତ ପଛେ ପଛେ ରାଜାର ପଲଣି
ଯାବନ୍ତେ ଉଠିଲେ ସିନ୍ଧୁ ଲହରୀକ ଜିଣି ।
ଫରହର ନେତ ଉଡ଼େ ଶୁକଳ ପତଙ୍ଗ
ବୁଲନ୍ତି ଲଙ୍କିଆ ଛେଲ ପୁଣି ଚନ୍ଦ ଘେନ ।
ପ୍ରସେନଜିତ ପ୍ରବେଶିଲେ ଅର୍ଜୁନ ଅଗ୍ରତ
ସ୍ୱାମୀରେ କହନ୍ତି ଯାଇ ସମସ୍ତ ବୃତ୍ତାନ୍ତ ।
ବାବୁ ବହୁତ କହିଲୁଁ ବୀରବର ଆଗେ
ଅନେକ ପ୍ରତିଜ୍ଞା କରି କହିଲକ ରାଗେ ।
ବୋଇଲା ତୁଙ୍ଗଜ୍ଞା ଯେବେ ଅଛନ୍ତି ସଦୟେ
ଆମ୍ଭ ସେହି କେଉଁ ବୀର ତାକୁ ନାହିଁ ଭୟେ

ଦେଖ ଆହେ ପାର୍ଥ କେଡ଼େ ଦୁଷ୍ଟ ମହାବୀର
ସମରକୁ ସଜ ହୋଇ ଆସନ୍ତି ଯାମର ।
ଏଥାଇଁ ଶୁଣନ୍ତି ତାହା ପାର୍ଥ ମହାତମା
ମନବୁଦ୍ଧିରେ କଲେ ବହୁତ ଗାରିମା ।
ଏହିପରି ହେଉଥିଲେ କଥୋପକଥନ
ପ୍ରବେଶ ହୋଇଲେ ଆସି ବୀରବର ସୈନ୍ୟ ।
ରେରେକାର ଶବ୍ଦରେ କରି ଘୋରନାଦ
ସମୁଦ୍ରେ ଉଚ୍ଛୁଳେ କିବା ଗରଜେ ଜଳଦ ।
ଦୁର୍ବହ ସୈନ୍ୟ ପଛରେ ଆସୁଛନ୍ତି ଉଠି
ରଥର ଉପରେ ଥାଇ ଦେଖିଲେ କିରୀଟି ।
ସୈନ୍ୟଙ୍କର ଗର୍ବ ଦେଖି ଇନ୍ଦ୍ରଙ୍କର ବଳା
ବସ୍ତୁରଇ ଆଜ ରକ୍ତ ଖାଇବ ହୁଙ୍ଗୁଳା ।
ଆଗୁଆଣି ଥାଟେ ଥିଲେ ଜୟ ଯେ ବିଜୟ
ଗଦା ବୁଲାଇ ଉଠନ୍ତି ସିଂହଗତି ପ୍ରାୟ ।
ବିଶେଷ ଅନଳ ପ୍ରାୟ ପାଣ୍ଡବ ସଇନ
ତର୍ହିକି ପବନ ଅଟେ ବୀର ଫାଲଗୁନ ।
ପବନ ବହନ୍ତେ ଯେହ୍ନେ ଉଠଇ ଅନଳ
ତେହ୍ନେ ବିଷ୍ଟପ ଦ୍ୱାରକୁ ଆଂବୋରିଲେ ବଳ
ତମ୍ବା କବାଟ ଉପରେ ସୁବର୍ଣ୍ଣ ରସାଣି
ଆଚ୍ଛାଦ୍ୟ କରଣେ ତାହା ଝଳକଇ ପୁଣି ।
ଜୟ ବିଜୟ କରିଲେ ଗଦାର ପ୍ରହାର
ଭଜାଣ ସେହି କବାଟ ହେଲା ଖଚେଚୁର ।
ପୁଣି ପ୍ରହାର କରିଲେ କରି ଗଳଗାଜ
ନଗରର ବାଡ଼ଆଡ଼ ପକାଇଲେ ଭାଙ୍ଗି ।
ବୀରବରର ସଇନ ଉଠି ନଗରରେ
ବିହନ୍ତି ନାଗରମାନ ଫୁଟାନ୍ତି କୁନ୍ତରେ ।
ପାର୍ଥ ସଇନ ବିନ୍ଧନ୍ତି ଧରି ତୀକ୍ଷ୍ଣ ମୁନା
ନିକଳ ନାଗରମାନ ଫୁଟେ ବଜ୍ରସେହ୍ନା ।
ମାତଳକୁ ଆଜ୍ଞାକଲେ ସୁଭଦ୍ରାର ନାହା
ଭୃଗୁପ୍ରସ୍ଥ ନଗରକୁ ମୋ ରଥ ବେଗେ ବାହା ।
ଆଜ୍ଞା ପରମାଣେ ସେହୁ ଅମର ସାରଥି
ଉଡ଼ାଏ ରଥକୁ ନେଇ ପବନର ଗତି ।
ଭୃଗୁପ୍ରସ୍ଥ ଗଡ଼କୁ ରଥ କରେ ଆଗସର
ଦେବଦତ୍ତ ଶଙ୍ଖ ପାର୍ଥ ଘନ ଘନ ପୂରି ।
ଶଙ୍ଖର ଶବଦ ହୁଏ ଉଲ୍‌କାପାତ ଜାଣି
ଯଥା ଦୁର୍ଦ୍ଦ... ...

ଅଦଭୁତେ ଶସ୍ତ୍ର ଝିଙ୍କି ପଡ଼ଇ ହସ୍ତରୁ
ନିଶସ୍ତ୍ର ହୋଇ ସଇନ ପଳାନ୍ତି ସେଠାରୁ ।
ହୁଙ୍ଗୁଳା ରଖି ବୋଲଇ ସୈନ୍ୟ ଦେଲେ ଡାକ
ତୋହର ଥାଆନ୍ତେ ମାଗୋ ହୋଇଲୁ ନିରେଖ
କରେ ଧନୁକୁ ଧରିଣ କଲେ ଶରବୃଷ୍ଟି
ପାର୍ଥ ନାସ୍ତିତ ମାରନ୍ତେ ଶର ଯାଏ ଫୁଟି ।
ନଗରକୁ ଘୁଞ୍ଚିକରି ପଳାଇଲେ ବୀରେ
ଧାଇଁ ଉଠିଲେ ଯାଇଣ ଅନ୍ୟ ନଗରରେ ।
ଆକର୍ଷ ଶର ବିନ୍ଧିଲେ ସକଳ ସଇନ
ଶରଜାଳେ ଢନକର ନ ଦିଶେ ଧରଣୀ ।
ନର୍ଦ୍ଧାତ ଅଗ୍ନିର ବାଣ ବଜ୍ରମୁନା ଶର
ଆପଣେ ଦଣ୍ଡ ସାଜିଣ ବିନ୍ଧେ ବୀରବର ।
ବହେ ରକ୍ତ ଝରଝର ଦେହୁଁ ଅବିଛିନ୍ନ
ଜୁଳୁଜୁଳା ପୋକ ଯେହ୍ନେ ଉଡ଼ନ୍ତି ଗଗନ ।
ପାଚେରୀ ଉପରେ ଥାଇ ଶର ଉହାଡ଼ଇ
ବାସବୀ ସୈନ୍ୟ ବିନ୍ଧିଲେ ତହିଁ ବେଗେ ଯାଇ
ଅର୍ଜ୍ଜୁନ ବିନ୍ଧନ୍ତି ଶର ବେଗେ ଆଗବଢ଼ି
କନ୍ଧରୁ ମସ୍ତକ ଛୁଡ଼ି ପଡ଼ୁଛନ୍ତି ଝଡ଼ି ।
କାହାର ଭୁଜ ଛୁଡ଼ଇ କାର ବକ୍ଷସ୍ଥଳ
ରୁଧିରରେ ବିଲେପନ ହେଲେ ସର୍ବବଳ ।
ନିଜ ଗଡ଼ରେ ସମର ହୁଏ ଅପ୍ରମିତ
ନିଲକ୍ଷ ମୁକୁଟଯୋଦ୍ଧା ପଡ଼ି ହେଲେ ହତ ।
ବାତ ବିଘାତେ କଦଳୀବନ ଯେହ୍ନେ ଭଙ୍ଗି
ଏକ ଉପରେ ଆରେକ ପଡ଼ନ୍ତି ନମଙ୍କି ।
ରକ୍ତ ସ୍ରୋତରେ କର୍ଦ୍ଦମ ହେଲା ବସୁନ୍ଧରା
ଦିଶେନ୍ତି ମଣି ମାଣିକ୍ୟ ମୁକୁତାର ଝରା ।
ନଗରରେ ଥାଇ ଡାକନ୍ତି ପଣ୍ଡୁ ବଳା
ସୁଖରେ ବଳ ଭକ୍ଷଣ କର ଗୋ ହୁଙ୍ଗୁଳା ।
ବଜ୍ରବିଘାତ ପରାୟେ ପାର୍ଥ ଶର ପଡ଼ି
ବକ୍ଷସ୍ଥଳ ଭେଦ କରେ ସ୍ନେହାମାନ ଛୁଡ଼ି ।
ସିଂହରଡ଼ି ଶବଦରେ ଧାମନ୍ତି ସଇନ
ବାଡ଼ ଲଙ୍ଘିଣ ଭୃଗୁପ୍ରସ୍ଥ ଗଡ଼େ ଫାଲଗୁନ ।
ଅର୍ଜ୍ଜୁନ ପ୍ରବେଶ ଯହୁଁ ଭୃଗୁପ୍ରସ୍ଥ ନଗରୀ
ସେନ୍ୟ ସେନ ପଳାଇଲେ ବୀର ଚକ୍ରବର୍ତ୍ତୀ ।
ଯହିଁ ବଳେ କରିଛନ୍ତି ପ୍ରସନ୍ନ ହୁଙ୍ଗୁଳେ

ସହସ୍ର ପ୍ରଣାମ କରି ଜ୍ୱାଳାଙ୍କ ବନ୍ଦ
ଦୁଃଖୀଜନକୁ ଘୃଡ଼ିଲୁ କୋଳେ ଶୋକେ କାନ୍ଦ
ତୋ ପାଦେ ମୋ ଭକ୍ତିରୁ ପ୍ରସନ୍ନ ଜ୍ୱଳନେ
ଗଡ଼ ରକ୍ଷା କରିଥାଉ ତୁମ୍ଭ ସର୍ବକାଳେ ।
ତୋହର ପ୍ରସଙ୍ଗେ ମାଗୋ ନ ହିଁ ପରଗସ୍ତ
ଅଦ୍ଭୁତରେ ମାତ ଗୋ ମଡ଼ନ୍ତି ଏ ଜସ୍ତ ।
ରଥ ଗଜ ଅଶ୍ୱ ମୋର ନାହାନ୍ତି ପଦାତି
ସିଂହଘରେ ଶୃଗାଳ ଯେ ପଶି ଗଲା ଜତ ।
ମୁହିଁ ଅବା ତୋହଠାରେ ହେଲି ଦୋଷକାରୀ
କେଉଁ ଅଭକତେ ମୋତେ କଲୁ ଏହିପରି ।
ମାତ ଗୋ ଅକ୍ଷୟଗଡ଼ ହେବେ ଜପ୍ତ କଲେ
ବଳୀ ବେଣୁ ମାନ୍ଧାତା ଜାନୁଘଣ୍ଟ ଭୂଲେ ।
ପଣ୍ଡୁ ରାମ ପୁରୁରବା ଥିଲେ ଚକ୍ରବର୍ତ୍ତୀ
ଏମାନେ ପାରି ନାହାନ୍ତି ଏ ଗଡ଼କୁ ଜିତି ।
ମୁହିଁ ହୀନ ପାମର ଗୋ ନ ଜାଣିଲି ସେବା
ଅଭକତ ଦେଖି ମୋତେ କୋପ କଲୁ ଅବା
କି ଅବା ଚହଳ ହେଲା ବନ୍ଧୁବର୍ଗ ମୋର
ସେଥିପାଇଁକି ମାତ ଗୋ କଲୁ ଏ ପ୍ରକାର ।
କି ଅବା କୌତୁକରର ତୋର ମହାସ୍ଥଳ
କୁତୁହଳେ ଭଲ୍‌କାପାତେ କଲୁ ଉକ୍ତକେଳ
ବନ୍ଧୁବର୍ଗାଦି କୁଟୁମ୍ବ ସର୍ବେ ଗଲେ ନାଶ
ନସତେ ପଳାଇ ଆସି କରିବଇଁ ବାସ ।
କେଉଁ ଭୁବନେ ମାତ ଗୋ ପଶିବି ମୁଁ ଯାଇ
ତୋର ଥାନ୍ତେ କହିବାକୁ ମୋର ଠାବ ନାହିଁ
ବନ୍ତରେ ଚରଣ ଧରି ଶେବଇ ତକନେ
ଶୋକେ ପ୍ରଣିପାତ କଲା ଦେବୀ ପାଦତଳେ ।
ମୁଖେ ତୃଣକଷ ଭରି ଦନ୍ତେ କୁଟା ଧରି
ତ୍ରାହି ତ୍ରାହି ବୋଲି ଡାକେ ମୁଖରବ କରି ।
ପୁତ୍ରଜନେ ମିଶି ସର୍ବେ କାନ୍ଦିଲେ ତକନେ
ସ୍ୱାହାକୁ ପ୍ରତ୍ୟାଦେଶ ଦେଲେକ ଜ୍ୱଳନେ ।
ଉଦୟ କଲେ କାନ୍ତାମା ଦେବୀ ମାହେଶ୍ୱରୀ
ପାଷାଣୁ ବାହାର ହେଲେ ତେଜକୁ ବିସ୍ତାରି
ଜ୍ୱାଳା ବୋଇଲେ ଏବେ କପାଁ କରୁ କ୍ରୋଧ
ଆଗହୁଁ ତୁ ନ କହିଲୁ ପଢ଼ିଲ ବିରୋଧ ।
ନିଶ୍ଚିନ୍ତରେ ରହିଥାଅ ଏବେ ମୋର ଆଗେ
ସମାଧାନ କରିବି ମୁଁ ତୋହାର ସକଳେ ।

ଏତେକ ବୋଲିଣ ତହୁଁ ଜଗତର ମାୟେ
ଖେଚରୀ ସମାନେ ଦେବୀ କରିଲେ ବିଜୟେ ।
ହସ୍ତରେ ଅମ୍ଳାନପୁଷ୍ପ ଏକ ଗୋଟି ଘେନି
କଟକ ଉପରେ ବିଜେ କରିଲେ କାନ୍ତାମା ।
ନିର୍ଧୂମ ବହ୍ନି ଜିଣି ତେଜକୁ ପ୍ରକାଶି
ମହାତେଜୋମୟ ରୂପୀ ଶୂନ୍ୟପୁରବାସୀ ।
ରଙ୍ଗବସ୍ତ୍ର ପରିଧାନ ରଙ୍ଗବର୍ଣ୍ଣ କାୟେ
ଆସ୍ଥାନ ଉପରେ ଥାଇ ଦେଖେ ଧନଞ୍ଜୟେ ।
ବାସବ ନନ୍ଦନ ଦେଖି ପଚାରଇ ବାଣୀ
କେବଣ ଦେଶରୁ ବିଜେ କଲୁ ଗୋସାମଣି ।
ମାନିନୀ କାମିନୀ ଜିଣି ଦିଶଇ ମୂରତି
ବିପୁଳପୁର ଅଭୟ ମାଗୋ ବରଦାତ୍ରୀ ।
ଜାଳନ୍ଧ ପୁଷ୍ପକୁ ଜିଣି ଦିଶେ ତୋର କାୟେ
ସ୍ୱରୂପ ଦିଶଇ ମଧ୍ୟ ସ୍ୱର୍ଗପୁର ପ୍ରାୟେ ।
ଅର୍ଜୁନ ବଚନେ ଦେବୀ କହନ୍ତି ସମ୍ଭାଷି
ତୁରେ ଅର୍ଜୁନ ଭଲରେ ବିଜେ କଲୁ ଆସି ।
ଅନେକ ରାଜ୍ୟକୁ ସାଧି କରିଲୁ ଉତ୍ତରେ
ଏଡ଼େ ଉପଦର୍ପ କଲୁ କେବଣ ଦେଶରେ ।
ମୁହିଁ ବିଜେ କରିଅଛି ଏଥେ ଦୟାଶୀଳା
ଅଭୟା ମାହେଶ୍ୱରୀ ମୁଁ ମୋ ନାମ ଜ୍ୱାଳା
ଖଡ଼୍‌ଗବଂଶୀ ରାଜା ମୋତେ ଜନ୍ମେ ଜନ୍ମେ ଖଟି
ମୋହର ସଞ୍ଚିଲ ରଣସ୍ତମ୍ଭ ଗଡ଼ଗୋଟି ।
ବନ୍ଧୁ କୁଟୁମ୍ବ ଯେଉଁଜଣ ମୋତେ କରେ ସେବା
ଅଜ୍ଞାନେ ଅର୍ଜୁନ ତୋତେ ଦୋଷ କଲା ଅବା
ଏହା ସୈନ୍ୟ ନାଶକଲୁ ତୁମ୍ଭ ଅନମତେ
ରକ୍ଷା କର ବାବୁ ତୁମ୍ଭ (ମୋହର) ଦେଖନ୍ତେ ।
ତୁମ୍ଭ ଗୋଟିଏକ ଗଣ୍ଡା ମାଇଲୁ ଯେକାଳେ
ଶିବ ଶୋଇଥିଲେ ବରୁଷାକ୍ଷ ବଟତଳେ ।
ଗଣ୍ଡା ବଧେ ସଦାନନ୍ଦ ହୋଇ ବଇରାଗୀ
ତୋ ସଙ୍ଗେ ସମର କଲେ ସେ ପରମଯୋଗୀ
ଶିବଙ୍କ ଚଳେ ପୂରାଇ ଏ ଗାଣ୍ଡୀବ ଧନୁ
ଶୂନ୍ୟେ କୁଳନ୍ତେ ପ୍ରସନ୍ନ ହେଲେ ପଞ୍ଚମନୁ ।
ବିଷମଯୁଦ୍ଧ ଦେଖିଣ ଶିବ ବର ଯାଚି
ମୁହିଁ ଯେ ବାରତା ତୋତେ ଦେଲି ସତ୍ୟସାଚି
ଈଶ୍ୱରଙ୍କୁ ମାଗିଲୁ ତୁ ପାଶୁପତ ବାଣ
ମୋତେ ମାଗନ୍ତେ ମୁଁ ଦେଲି ଅକ୍ଷୟ ଯେ ତୂଣ

ସଦାନନ୍ଦଙ୍କ ବଚନେ ହେଲି ମୁଁ ବିରାଗୀ
ହୋଇଲି କୋଟି ଈଶ୍ୱର ନ ହୋଇବେ ଯୋଗୀ
ସଂଗ୍ରାମେ ସର ନୋହିଲେ ଯାକୁ ତ୍ରିଲୋଚନ
ଇନ୍ଦ୍ରଲୋକେ କେଉଁ ରଜା ହୋଇବ ସମାନ ।
ଜଗତ୍ର ତା ପ୍ରତ୍ୟକ୍ଷ ତୁ ଏତେ କପାଁ ରାଗୀ
ଜନ୍ମିତ ଦୋଷେ ରଜାଙ୍କୁ ଦେଉଅଛୁ ଭଙ୍ଗି ।
ହିଙ୍ଗୁଳା ବଚନ ଶୁଣି ଦାସବସନ୍ତ
ଦେବୀଙ୍କର ପାଦତଳେ ପ୍ରଣାମ କରନ୍ତି ।
ଅର୍ଜୁନଙ୍କୁ କୋଳକରି ଦେବୀ ମାହେଶ୍ୱରୀ
ଖେଚରୀ ବିମାନେ ନେଇ ବସାଇଲେ ଧରି ।
ତହୁଁ ବିଜୟ କରିଲେ ନିଜ ଭୁବନକୁ
ଅର୍ଜୁନଙ୍କୁ ନେଲେ ତ୍ରିପୁରାନ୍ତ ପର୍ବତକୁ ।
ଅର୍ଜୁନଙ୍କୁ ଘେନି ଦେବୀ ବିଜୟ ଆସ୍ଥାନେ
ଶତ ଶତ ପ୍ରଣିପାତ ହେଲେ ସର୍ବଜନେ ।
କରେ ଅର୍ଘ୍ୟ ଘେନି ସାରବର ଚନ୍ଦ୍ରବର୍ତ୍ତୀ
ଅର୍ଜୁନର ପାଦତଳେ ଜଣାଇ ଭକତି ।
ହିଙ୍ଗୁଳା ବୋଇଲେ ବାବୁ ଶୁଣ ଧନଞ୍ଜୟେ
ଦଣ୍ଡ ମଣ୍ଡଳ ନୃପତି ହେଉଅଛି ବିନୟେ ।
ଏହାକୁ ପ୍ରସନ୍ନ ତୁମ୍ଭେ ହୁଅ ଫାଲଗୁନ
ମୋର ପୁତ୍ର ତୋରଠାରେ କରଇ ଦଇନ୍ୟ ।
ତୋର ପ୍ରସାଦରେ ଏହୁ ପାଇବ କାରଣ
ଏବେ ଉପଗତ ହେଲା ତୋହର ଚରଣ ।
ହିଙ୍ଗୁଳାଙ୍କୁ ପ୍ରଣିପାତ କରୁଣ କିରୀଟୀ
ବୋଇଲେ ତ୍ରିଲୋକରେଖ୍ୟାତ ତୋରନାମଗୋଟି
ତୁ ପରମ ଯୋଗେଶ୍ୱରୀ ଅଟୁ ଲୋହିତାକ୍ଷି
ଅଭୟା ସ୍ୱରୂପିଣୀ ଗୋ ତୁମ୍ଭେ ପିଙ୍ଗଳାକ୍ଷି ।
ତୁମ୍ଭେ ମାହେଶ୍ୱରୀ ମାଗୋ ଅଟୁ ପୀତବର୍ଣ୍ଣା
କୋଟି କଳ୍ପ ଅସନ୍ତ ଗୋ ଭବାନୀ ଅପର୍ଣ୍ଣା ।
ମାତଃ ହିଙ୍ଗୁଳା ବୋଲଣ ଯେଉଁ ନାମ ଛପି
କଳ୍ପିତ ଯୋଗଲୟେ ତୁ ତେଜ ପରକାଶି ।
କାଳାନଳ ବୈଶ୍ୱାନର ଜ୍ୱାଳା ଯେ ପିଙ୍ଗଳା
ଜାତ ଅନଳ ତୋ ନାମ ଶୟନେ ମେଖଳା ।
ଶରୀର ସମ୍ଭାଷିଣୀ ଗୋ ତୋ ନାମ ଦହତ
ତୁମ୍ଭେ ଅନ୍ତ କରଇ ଗୋ ସର୍ବ ଦେବମୂର୍ତ୍ତି ।
ଜାତବେଳେ ମାତା ତୁମ୍ଭେ ଉର୍ଯ୍ୟା ରତିକାଳେ
ଅନ୍ତକାଳେ କାଳିକା ଗୋ ଶେଷରୁ ଅଙ୍ଗ କେ

ଅଭୟା ବ୍ରହ୍ମରୂପିଣୀ ନାମ ତୋର ସତ୍ୟ
ଚର୍ଚ୍ଚିକା ରୂପକୁ ଧରି ଅନ୍ତ କରୁ ପୃଥ୍ୱୀ ।
ଆଦ୍ୟ ଅନ୍ତକାଳରେ ଗୋ ଅବସାନ ତୁମ୍ଭେ
ଜାତ ଅନ୍ତସ୍ଥିତ ତୋର ବିନା ଆନ ନାହିଁ ।
ତପନ ତପତି ମାଗୋ ବଇଷ୍ଣ ଭବାନୀ
ତୋ ପାଦେ ଲୟ କରନ୍ତି ସୁର ସିଦ୍ଧ ମୁନି ।
ଯୁଗାନ୍ତକ ବେଗ ମାଗୋ ପ୍ରଳୟ ଗର୍ଭ ସୃଷ୍ଟି
ତୁ ମାହେଶ୍ୱରୀ ହିଙ୍ଗୁଳା ତୋର ନାମକୋଟି ।
ପରମ ବୈଷ୍ଣବୀ ଅଟୁ ତୋର ସିଦ୍ଧ ମୁଦ୍ରା
ଅଷ୍ଟାଙ୍ଗ ସାଧନୀ ମାଗୋ ହୃଦେ ଯୋଗନିଦ୍ରା ।
ଭକ୍ତଜନ ବତ୍ସଳା ଗୋ ପୃଥ୍ୱୀଜନ ଚିନ୍ତା
ଦୁଃଖୀଜନୋଦ୍ଧାରିଣୀ ଗୋ ଭକ୍ତ ଉଦ୍ଧାରନ୍ତା
ଦୁସ୍ତର ତାରିଣୀ ତୁମ୍ଭେ ସର୍ବ ଦୁଃଖ ମେଣ୍ଟି
ସର୍ବତ୍ର ପ୍ରତିଷ୍ଠା ତୋର ହିଙ୍ଗୁଳା ନାମଟି ।
ଅଗତି ଜନଙ୍କ ତୁ ଗୋ ତାରିଣୀ ଧାରିଣୀ
ବୁଦ୍ଧି ସିଦ୍ଧି ବିଧି ତୁ ପ୍ରସନ୍ନ ଗୋସାମଣୀ ।
ସର୍ବଦା ହୃଦୟେ ତୋର ରୁଦ୍ରର ପାଦୁକା
ଡାକ ଶବଦ ମାତା ଗୋ ତୋର ଶୁଭେ ଏକା
ଡାକିନୀ ଶବଦେ ମାଗୋ ଡମ୍ବରୁର ବାଦ୍ୟେ
ନାଚ ତୁ ଆନନ୍ଦମୟୀ କଳକଳା ନାଦେ ।
ମାଗୋ ଯାବତ ଜୀବଙ୍କ ଅଟୁ ଜନ୍ମକର୍ତ୍ତ୍ରୀ
ଏ ତୋର ଷୋହଳ ରୂପ ଜାତ ରୂପବତୀ ।
ସ୍ୱାହା ସ୍ୱଧା ତୋହର ଗୋ ଅଟେ ରୂପଶାଖା
ଡାକ ଶବ୍ଦେ ଶୁଭେ ତୋର ଉର୍ଦ୍ଧ୍ୱେ ସ୍ୱର୍ଗେ ଏକା
ପାତାଳ ତୁ ସ୍ୱର୍ଗ ତୁମ୍ଭେ ପୃଥ୍ୱୀ ଆପ ତୁ
ତେଜ ତୁମ୍ଭେ ବାୟୁ ଶୂନ୍ୟେ ତୁମ୍ଭେ ପଞ୍ଚଧାତୁ ।
ଅଦୃଶ୍ୟ ଦୃଶ୍ୟ ତୁମ୍ଭେ ତୋ ନାହିଁ ବର୍ଣ୍ଣ ଚିହ୍ନ
ସାତଗୋଟି ଅବତାରେ ରୂପ ଭିନ୍ନ ଭିନ୍ନ ।
ଭକ୍ତଜନ ଉଦ୍ଧାରିଣୀ ଶାପ ବିମୋକ୍ଷଣୀ
ଦୁର୍ଗତି ନାଶିନୀ ମାଗୋ ଶରଣରକ୍ଷଣୀ ।
ରୁଦ୍ର ଅବତାରେ ତୁମ୍ଭେ ମହା ବ୍ରହ୍ମ ସାଧି
ଏମନ୍ତ ମହିମା ତୋର ଅଛଇ ଯେ ବିଧି ।
ଅଷ୍ଟୋତ୍ତର ଶତବର୍ଷ ମନୁଷ୍ୟ ଆୟୁଷ
ସନକାଦିଙ୍କୁ ହୁଅଇ ଗୋଟିଏ ଦିବସ ।
ଏହିରୂପେ ଶତେ ଅଷ୍ଟଉତ୍ତର ବର୍ଷରେ
ସନକ ନାଶ ହୁଅନ୍ତି ସର୍ବ ଶୁଣ ରୂପରେ ।

ଏହି ଅନୁକ୍ରମେ ବିଶ୍ୱଦେବଙ୍କୁ ବରଷେ
ଅଷ୍ଟୋତ୍ତର ଶତବର୍ଷେ ମରଣ ପ୍ରବେଶେ ।
ଯହିଁ ବିଶ୍ୱଦେବମାନେ ହୋଇଗଲେ ଲୀନ
ବିଦ୍ୟା ପୁରୁଷଙ୍କ ତହିଁ ହେଲା ଏକଦିନ ।
ଅଷ୍ଟୋତ୍ତର ଶତବର୍ଷେ ସେ ହୁଅଇ ନାଶ
ଯକ୍ଷଙ୍କୁ ହୁଅଇ ତହିଁ ଗୋଟିଏ ଦିବସ ।
ଅଷ୍ଟୋତ୍ତର ଶତବର୍ଷେ ସେ ହେଲେ ନିଧନ
ଚନ୍ଦ୍ରଙ୍କୁ ହୁଅଇ ତେଣେ ଜାଣ ଏକଦିନ ।
ନିଧନ ହେଲେ ରୋହିଣୀନାଥ ପ୍ରାଣଗୁରୁ
ନଷ୍ଟ ଅମାବାସ୍ୟା ଏକ ଦିନକ ପୂର୍ବରୁ ।
ତିଥିଖଣ୍ଡି କାଳକ୍ରମେ ଏହି ସେ ଉଦୟେ
ନକ୍ଷତ୍ର ପର୍ଯ୍ୟେ ହୋଇ ବିକାଶଇ କାୟେ ।
ଏରୂପେ ଚନ୍ଦ୍ରର ଶତଅଷ୍ଟୋତ୍ତର ବର୍ଷ
ବ୍ରହ୍ମାଙ୍କୁ ହୁଅଇ ତହିଁ ଏକଇ ଦିବସ ।
ଏତେକ ସମ୍ପୂର୍ଣ୍ଣେ ସେହି ହୁଅଇ ନିଧନ
ତହିଁ ଜାଣ ବିଷ୍ଣୁଙ୍କର ହୁଏ ଏକଦିନ ।
ବିଷ୍ଣୁଙ୍କର ଅଷ୍ଟୋତ୍ତର ଶତବର୍ଷ ପୂର୍ଣ୍ଣେ
ରୁଦ୍ରଙ୍କୁ ହୁଅଇ ଜାଣ ତେବେ ଯାଇ ଦିନେ ।
ରୁଦ୍ରଙ୍କର ଅଷ୍ଟୋତ୍ତର ଶତ ହେଲେ ଶେଷ
ପୂର୍ଣ୍ଣ ହିଂସ୍ରେ ବରଷ ସେ ହୁଏ ବିନାଶ ।
ରୁଦ୍ର ଯହିଁ ପ୍ରାଣନାଶ ହେଲେ ତୋରକାଳେ
ଲୁ ତାଙ୍କର ପିଣ୍ଡଗୋଟି ଧରିଥାଉ କୋଳେ ।
ଯେତେ କାଳରେ ଆୟୁଷ ପାଆନ୍ତି ଧୂର୍ଜଟି
ତେତେକାଳ ଧରିଥାଉ ମୃତପିଣ୍ଡ ଗୋଟି ।
ନିଜ ଦେହରୁ ଆୟୁଷ ତାଙ୍କୁ କାଢ଼ିଦେଇ
ତୋର ତହିଁ ପ୍ରାଣ ଦେଇ ରୁଦ୍ରଙ୍କୁ ବଞ୍ଚାଉ ।
ଶୟନ ଉଠାଇ ଯନ୍ତ୍ରେ ବଞ୍ଚେ ଶମ୍ଭୁବର
ତେଣୁ ଈଶ୍ୱରର ନାମ ଅଟେ ଅର୍ଦ୍ଧନାରୀ ।
ମାଗୋ ଯୁଗ ଯୁଗାନ୍ତରେ ଯୁବା ନିରନ୍ତର
ଶତବର୍ଷେ ନ ଜଟିଲ ବାଲ୍ୟାବସ୍ଥା ତୋର ।
ମାତ ଗୋ ଏକଲୟକୁ ମୁହୂର୍ତ୍ତେକ ବୋଲି
ଷାଠିଏ ନିଃଶ୍ୱାସରେ ଯେ ମୁହୂର୍ତ୍ତେ କହିଲି ।
ଷାଠିଏ ଲିତାରେ ଜାଣ ଦଣ୍ଡ ଏକ ବୋଲି
ବିଶାଶଏ ଲିତାରେ ଯେ ଘଡ଼ିଏ କହିଲି ।
ନିଅଣ ଷାଠି ଲିତାରେ ହୁଏ ଅର୍ଦ୍ଧଦିନ
ସୂର୍ଯ୍ୟଦେବ ମଧ୍ୟେ ଥିଲେ, ବୋଲନ୍ତି ମଧ୍ୟାହ୍ନ ।

ଚଉଦଲକ୍ଷ ଲିତା ବାରଘଡ଼ି ଲେଖା
ଆଦ୍ଧି କଳାନେ ପୁରୁଷେ ବେଲୁ ଖାଦ୍ୟଖାଷା ।
ନବସହସ୍ର ନବଶତ କୋଟିଏ ଲିତାରେ
ଚତୁର୍ଥ ପ୍ରହର ଦିନ ସୂର୍ଯ୍ୟାସ୍ତ ମେରୁରେ ।
ଦିବସ ହରଣ କଲା ଯେ କାଳପୁରୁଷ
ଅନ୍ଧକାର ହୋଇଲା ଗୋ ରଜନୀ ପ୍ରବେଶ ।
ମାଗୋ ରଜନୀ ଦିବସେ ଏହି ପରିମାଣେ
ଏହା ତ ନ ଜାଣୁ ଦିନ ଏବେ ଗଲା କେଣେ
ମାଗୋ ଅନାଦି ଅପର୍ଣ୍ଣା ପ୍ରତ୍ୟକ୍ଷେ ହିଙ୍ଗୁଳା
ସିଦ୍ଧ କାତ୍ୟାୟନୀ ତୁ ଗୋ ଅଟୁ ଦିଗପାଳା ।
ମାତ ଗୋ ଉଦ୍ଧର ଧରୁ ତୁହି ଜନ୍ମେ ଜନ୍ମେ
କଳିକାଳ ଧ୍ୱଂସିନୀ ଗୋ ମୁକ୍ତି ପୂର୍ବଜନ୍ମେ ।
ନମୋ ହିଙ୍ଗୁଳା କାମାକ୍ଷୀ ନମଃ ହିରଣାକ୍ଷି
ଜାତ ଅନ୍ତକାଳକୁ ଗୋ ତୁହି ରକ୍ଷ ରକ୍ଷି ।
ବାହାରବାହିନୀ ମାଗୋ ଗର୍ଭ ମଧ୍ୟ ସ୍ଥାପି
ଅପ୍ରାଧଭଞ୍ଜିନୀ ମାଗୋ କଉତୁକ ରୂପୀ ।
ମାତ ଗୋ ଅଚ୍ଛେଦ୍ୟ ଜ୍ୟୋତି ସୁଷୁମ୍ନାଯନ୍ତ୍ରେ
ଉଜାଣ ଉଜାଇଲୁ ଅଜପା କୂଟମନ୍ତ୍ରେ ।
ବାହ୍ୟରନାଡ଼ୀ ନ କୋଟି ପ୍ରାଣ ପୁରୁଷକୁ
ସୁଷୁମ୍ନା ସାଧିବାକୁ ମା ବହନ୍ତି ମନ୍ତ୍ରକୁ ।
ବ୍ରହ୍ମ କର୍ମ ମଧ୍ୟ ଅଠବଳିଶ ସଙ୍ଗତେ
ଘରିଖାନ ନଯ ଉଦୟ ତୋର ମନ୍ତ୍ରମତେ ।
ବାହ୍ୟାଭ୍ୟନ୍ତରେ ମାତୃକା ତୁହି ଆଦିମୂଳ
ପାଇ ସାଧି କାଳକୁ ଗୋ ତୋର ସର୍ବଠୂଳ ।
ହେ ବୁଧଜନେ ହିଙ୍ଗୁଳା ନାମ ସଦା ଧର
ପ୍ରସନ୍ନ ହିଙ୍ଗୁଳା ବୋଲି ପଞ୍ଚମନେ ସ୍ମର ।
ବ୍ରହ୍ମରାକ୍ଷସ ନାମରେ ଆତାପି ବାତାପି
ଅନେକ ବ୍ରହ୍ମହତ୍ୟା ସେ କଲେ ମହାପାପୀ ।
ତାଙ୍କ ମାଂସକୁ ଅଗସ୍ତି କରି ଗର୍ଭଗତ
ହିଙ୍ଗୁଳା ନାମେ ସେ ମାଂସ ହେଲା ଭସ୍ମୀଭୂତ
ହିଙ୍ଗୁଳା ନାମକୁ ସଦା ହୃଦୟରେ ଘୋଷ
ବଂଶ ଦାରିଦ୍ର୍ୟ ତୁଟଇ ହେବ ପଉରୁଷ ।
ହିଙ୍ଗୁଳା ନାମ ଧରନ୍ତି ଯେହୁ ହୃଦଗତେ
ଧନ ସନ୍ତାନ ବର୍ଦ୍ଧିତ ହୁଏ ତାର ନିତ୍ୟେ ।
ଆୟୁଷ କ୍ଷୀଣ ନୁହଇ ନ ଛୁଅଇ ବ୍ୟାଧି
ହିଙ୍ଗୁଳା ନାମ ଧରନ୍ତେ ହୁଏ ସର୍ବ ସିଦ୍ଧି ।

ମାତଃ ତ୍ରିଙ୍ଗୁଳା ପ୍ରସନ୍ନ ହୁଅ ଜନନୀ ମୋତେ
ଶାରଳା ଦାସର ବାଞ୍ଛା ପୂରଅ ଭବତେ ।
ଅଗସ୍ତି ମୁନି ଯେ କୁମ୍ଭଋଷିଙ୍କ ସନ୍ତତି
ଯାହାଙ୍କ ମନ୍ତ୍ରେ ଉତ୍ପତ୍ତି ସପ୍ତଦ୍ୱୀପା ପୃଥ୍ୱୀ ।
ଭୂତ ଭବିଷ୍ୟତ କଥା ଯାକୁ ହୁଏ ଦୃଶ୍ୟ
ସେ ବ୍ରହ୍ମଋଷିର ପାଦେ ସଦା ମୋର ଆଶ ।
ଶ୍ରୀ ମହାଭାରତ ଭକ୍ଷ ପ୍ରବଣ କଥନେ
ସଦା ତୃପତ ହୁଏ ମୁଁ ସେ ଅମୃତ ପାନେ ।
ତ୍ରିଙ୍ଗୁଳାଙ୍କ ତପସ୍ୱୀ ଯେ କଲେ ଫାଲଗୁନ
ପ୍ରସନ୍ନରେ ବର ଦେଲେ ତାଙ୍କୁ ଗୋସାମଣୀ ।
ମହାମାୟା ଘେନଲେ ହେ ଅର୍ଜ୍ଜୁନ ଭକତ
ପ୍ରସନ୍ନରେ ବର ଦେଲେ ହୋଇ ଶାନ୍ତମୂର୍ତ୍ତି ।
ହୋଇଲେ ରାଜସୂୟଯାଗ ଆରମ୍ଭ ବରିଲ
ପୃଥ୍ୱୀରେ ସମସ୍ତ ରାଜା ନିମନ୍ତ୍ରଣ କଲ ।
ଅନ୍ନ କେମନ୍ତେ ମିଳବ ଏତେ ସଇନଙ୍କି
ଆମ୍ଭେ ବଳେ କରୁଅଛୁଁ ତୁମ୍ଭର ଚର୍ଚ୍ଚିକ ।
ରନ୍ଧଣା ଖନ୍ଦା ତୁମ୍ଭର ହେବ ଯେତେବେଳେ
ଆମ୍ଭ ନାମରେ ରାନ୍ଧଲେ ସୁପଭାରକୂଳେ ।
ନାନାପ୍ରକାରେ ରନ୍ଧଣା କରିଲେ କାଞ୍ଚିତେ
ଅମୃତ ପାକ ରନ୍ଧଣା ହେବ ଅନୁକ୍ରମେ ।
ସୁପକ୍ୱ ଅନ୍ନ ସର୍ବଦା ହେଉଥିବ ପାକ
ଭୁଞ୍ଜି ମନେ କରୁଥିବେ ଜୀବ ଥିବାଯାକ ।
ରଜସୀ ଶାଉଷୀ ନଳଡଧି ଛାନ ପ୍ରଭ
ଅବଳ୍ପତରେ ରନ୍ଧଣା ହେଉଥିବ ନିତ ।
ପ୍ରସନ୍ନେ ଅଭୟ ବର ଦେଲେକ ତ୍ରିଙ୍ଗୁଳା
ଲୁଚେଇ ଅନ୍ନ ଭୁଞ୍ଜିବେ ଗୋଟି ଅନର୍ଗଳା ।
ଆନନ୍ଦେ ଅନ୍ନ ଭୁଞ୍ଜିବେ ଯାର ଯେତେ ଇଚ୍ଛା
ନିଶ୍ଚୟ ସ୍ଥାପତ ହେବ ଜାଣ ମନୋବାଞ୍ଛା ।
ଏହି ସାରଦର ଚକ୍ରବର୍ତ୍ତୀ ମହାତମା
ଏହାର ଯେ ଦୋଷାଦୋଷ ଏବେ କର କ୍ଷମା
ବହୁତ ଉକଣ୍ଠ କରେ ସାର ଚକ୍ରବର୍ତ୍ତୀ
ପ୍ରସନ୍ନ ନାରାୟଣ ତୁ ଫେଡ଼ ମୋ ଦୁର୍ଗତି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭ ହେଲୁ ମତିଭ୍ରଷ୍ଟ
କାହିଁତ ଦୋଷରେ ତୋତେ ହେଲା ବଡ଼ କଷ୍ଟ
ଅନେକ ଗଡ଼କୁ ଧ୍ୱଂସି ମାଇଲ ସଇନ
ଏବେ କ୍ଷମା କଲୁ ତୋତେ କରିଲୁ ଦମନ ।

ତୁଟେହୋ ବାଛତ ମୋହର ହେଲ୍ ସର୍ବକାଳେ
ତ୍ରିଙ୍ଗୁଳାଙ୍କୁ ଭେଟିଲି ମୁଁ ତୋର ପୁଣ୍ୟବଳେ ।
ଏ ମହୀରେ ଥିବ ଯେତେକାଳ ପରିଯନ୍ତ
ତୁମ୍ଭ ମୋହର ବାନ୍ଧବ ହେଲୁ ଅନୁଭତେ ।
ଏହା କହିଣ ଅକ୍ଷତ ଦେଲେ ଫାଲଗୁନ
ରାଜସୂୟ ଯାଗକୁ ଯାଅ ତୋର ଥାଟ ଘେନ ।
ବହୁ ସମ୍ଭଟରେ ବାନ୍ଧି ବିବୁଧି ସଇନ୍
ରାଜାମାନଙ୍କର ସଖ୍ୟ ତୋତେ ଦେଖିବାକୁ ।
ମହାକ୍ଷତ୍ରୀ ମଣ୍ଡଳକୁ ଘେନ ଅଧିକାରୀ
ମହାଭୁବନକୁ ଅଟୁ ତୁ ଦେବତା ପରି ।
ଧନଞ୍ଜୟର ଶ୍ରମୁରେ କହେ ସାରଦର
ସ୍ୱାମୀ ଜୀବନ ସଫଳ ହୋଇଲା ମୋହର ।
ତ୍ରି ମହାକ୍ଷତ୍ରିୟ ସୋମବଂଶେ ଅବତଂଶ
ପ୍ରତ୍ୟକ୍ଷେ ନାରାୟଣ ତୁ ଅଟୁ ହୃଷୀକେଶ ।
ଅନେକ ତପସ୍ୱୀ ହୋଇ କଲୁ ନୃପସାଇଁ
ମାହେନ୍ଦ୍ର ବେଳରେ ରାଜା ଗଡ଼ ବାହାରଇ ।
ପୁଣ୍ୟତୋୟା ଜଳି ପାର୍ଥ ପଶି ଘୋରବନେ
ପ୍ରବେଶିଲେ ହେମଗିରି କେଦାର ଭୁବନେ ।
ହେମବନ୍ତ ନିକଟରେ ମହେନ୍ଦ୍ରର ଗିରି
ଗିରିରାଜା ହେମବନ୍ତ ଛନ୍ତି ବଳେ କରି ।
ଅନେକ ପର୍ବତ ଗିରିରାଜ ଛନ୍ତି ଘେରି
ସେ ଗିରି ସବୁରେ ହେମବନ୍ତ ଅଧିକାରୀ ।
ମଇନାବତୀ ବୋଲିଣ ହେମବନ୍ତ ଭାର୍ଯ୍ୟା
ତାର ଗର୍ଭୁଁ ଉତପତ୍ତି ହୋଇଲେ ଗିରିଜା ।
ଗର୍ଭୁଁ ଶୋହେ ଗିରିଜାଙ୍କ ଉତପତ୍ତି ସ୍ଥାନ
ରଜସଙ୍କୁ ବରହେବେ ଚନ୍ଦ୍ର ତ୍ରିଲୋଚନ ।
ଦିଶାପ୍ତ ସ୍ୱୟମ୍ବର ଯେ ହେମବନ୍ତ ସ୍ଥାନେ
ଉକଣ୍ଠାରେ ରହିଲେ ଚନ୍ଦ୍ର ତ୍ରିଲୋଚନେ ।
ହେମକେଦାର ବୋଲିଣ ଅଛି ତା ଉତ୍ତରେ
ଚଳି ନ ପାରନ୍ତି ସୈନ୍ୟ ସେ ମହାହେମରେ
ତହିଁ ଅର୍ଜ୍ଜୁନ ବୋଲିଣ ସୈନ୍ୟମାନେ ବୋଲି
ଅତି ଆକୁଳେ ସେ ସ୍ଥାନେ ହେଲେ ପେଲପେଲି
ସୈନ୍ୟମାନଙ୍କ ବିକଳ ଦେଖି ସବ୍ୟସାଚୀ
ଅଗ୍ନି ଶରକୁ ଘେନିଣ ବନ୍ଧିଲା ଆମଞ୍ଚ ।
ଆଗେ ଅଗ୍ନି ଶର ଚଳେ ଜ୍ୱଳନ୍ତ ସଇନ
ନହିଘୋଷେ ଅଗ୍ରସର ହେଲେ ଫାଲଗୁନ ।

ମହାଅଗ୍ନି ତେଜେ ମହାଦ୍ରୁମ ବନ ଘାଣ୍ଟି
ମହେନ୍ଦ୍ରମାନ ପର୍ବତେ ପାର୍ଥ ଯାଇ ଉଠି ।
ବହଇ କୃଶାଙ୍ଗୀ ହେମକେତାର ଭାବେଶି
ତହିଁ ମଧ୍ୟରେ ତପସ୍ୟ କେବ ବିପ୍ରଗଣ ।
ପ୍ରସନ୍ନ ଲିଙ୍ଗ ଜେତାର ସର୍ବଜନ ଶନ୍ତା
ଭକତ ବତ୍ସଳ ଦେବ ହସ୍ତେ ବରଦାତା ।
ଏହି ପରକାରେ ସ୍ତୁତି କଲେ ଧନଞ୍ଜୟ
ପ୍ରଣିପାତ ହେଲ ଭଣ ବହୁତ ବିଜୟ ।
ଅର୍ଜୁନ ଭକତି ଦେଖି ଦେବ ତ୍ରିପୁରାରି
ତପ୍ୟ କୁ ଭକ୍ତବତ୍ସଳ ତେଜ କାମ ଅରି ।
ଅଭୟ ପରମାନନ୍ଦ ଦ୍ଵି ପରମ ଯୋଗୀ
ଆପଣେ ଦୁଃଖରେ ଚଉ ଘରେ କରୁ ଲୋଗୀ
ପାର୍ଥ ପ୍ରସନ୍ନେ କହନ୍ତି ଦେବ ତ୍ରିପୁରାରି
ବେଦେ ନମନ୍ତ୍ରଣ କର ଯାଇ ସ୍ୱର୍ଗପୁରୀ ।
ତେତିଶକୋଟି ଦେବତା ଯିବେଟି ସଙ୍ଗକୁ
ସକଳେ ଅଭୟ ବର ଦେବେଟି ତୁମ୍ଭଙ୍କୁ ।
ପାର୍ଥଙ୍କୁ ଅଭୟ ବର ଦେଲେ ପଞ୍ଚମୁଖେ
ବୃଷରେ ଚଢ଼ି ବିଜୟ କଲେ ଅନ୍ତରୀକ୍ଷେ ।
ଅନ୍ତରୀକ୍ଷରେ ଦୁନ୍ଦୁଭି ବାଜେ ଘନଘନ
ଆକାଶ ପଥେ ବିଜୟ କରିଲେ ଅର୍ଜୁନ ।
ଜୟ ନରନାରାୟଣ ଜୟ କୃଷ୍ଣାର୍ଜୁନ
ଶାରଳାଦାସ ପଶିଲ ଚରଣେ ଶରଣ ।

---

## ସଭାଗୃହ ନିର୍ମାଣ ଓ ଦୁର୍ଯ୍ୟୋଧନର ମନୋଦୁଃଖ

ଅଗସ୍ତିଙ୍କି ପଚାରିଲେ ମନୁ ନୃପମଣି
କହ ମହାମୁନି ମୋତେ ଏ ଅମୃତ ବାଣୀ ।
ପୃଥିବୀର ରାଜାମାନେ କରନ୍ତି ଗମନ
କେବଣ ଠାରେ ରହିବେ ସମସ୍ତ ରାଜନ ।
ଏଥିର ଚରିତ ମୋତେ କହ ତପୋନିଧି
ଏ ବସ୍ତୁ ପୁରାଣ ଶୁଣି ଖଣ୍ଡିବ ଅରିଷ୍ଟି ।
କହନ୍ତି ଅଗସ୍ତି ଶୁଣ ମୁନିଙ୍କର ବହ୍ରି
ଶୁଣ ସାବଧାନେ ରାଜା ତା ବସ୍ତୁରେ ଅଛୁ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି ଦିଗ
ବୃତଉଣା ଲକ୍ଷେ ରାଜା ବସେ ପୃଥ୍ୱୀଭାଗ ।
ଜମ୍ବୁଦ୍ୱୀପ ଏକ ଲକ୍ଷ ଯୋଜନର ସ୍ଥଳୀ
ବୃତଉଣା ଲକ୍ଷେ ରାଜା ଛନ୍ତି ମହାବଳୀ ।
ପାତ୍ର ଅମାତ୍ୟ ମୁକୁଟବନ୍ଧା ଯୋଦ୍ଧାମାନ
କଳି ନୁହଇ ଏ ସର୍ବ ଅକଳନ୍ତ ସୈନ୍ୟ ।
ବାଦ୍ୟ ଘୋଷର ଶବଦ ସିନ୍ଧୁଘୋଷ ଜିଣି
କାରୁଣାବନ୍ତେ ରହିବେ କେଉଁର ସଇନ ।
କାରୁଣାବନ୍ତ ବୋଲନ୍ତି ଯେବଣ ବନସ୍ତ
ଅଟଇ କୋଶେ ଅଦ୍ଭୁତ ପୁଣ ବେଢ଼ଶତ ।
ତହିଁ ଆସି ପ୍ରବେଶିଲେ ସର୍ବ ରାଜାମାନେ
ରଥ ଗଜ ଅଶ୍ୱ ପୁଣି ପଦାତି ଗହଣେ ।
ପଶ୍ଚିମରେ ଯେତେ ରାଜା ଭଜେ ଦଣ୍ଡ ଚଢ଼ି
ଇନ୍ଦ୍ରପ୍ରସ୍ଥେ ରହିଲେ ଯମୁନାକୂଳେ ମାଡ଼ି ।
ଗଙ୍ଗା ଯମୁନା ଏ ନଦୀ ବେନିଙ୍କର କୂଳେ
ଶ୍ରୀକୁ ତୁକ୍ଷେନ ମଣ୍ଡନ ଅଟେ ମଧ୍ୟସ୍ଥଳେ ।
ଶୂନ୍ୟ ମଣ୍ଡପ ସୁଧର୍ମା ହେବ ସଭାସ୍ଥଳୀ
ସ୍ୱର୍ଗୁ ଆଣିଲେ ତାହାଙ୍କୁ ଦେବ ବନମାଳୀ ।
ଦଶ ଆୟତନ ଅଟେ ଦ୍ୱାଦଶ ଯୋଜନ
ଅମର ଯେନ ବଜଏ ତହିଁ ମଣ୍ଡବାନ ।
ସେହି ସଭା ରଚନ୍ତି ଦେବ ନଗଧର
କନକ ଘଟଣ ଅଟେ ବେଢ଼ାର ପାଟେଶ୍ୱ ।
ସୁବର୍ଣ୍ଣର ଲକ୍ଷେ ସ୍ତମ୍ଭ ସଭାର ମଧ୍ୟରେ
ଲକ୍ଷେ ସିଂହାସନ ତହିଁ ଅତି ଶୋଭାକରେ ।
ସ୍ତମ୍ଭକେ ସୁବର୍ଣ୍ଣ ଝୁଣା ଏକ ଏକ ଟାଣି
ଯହିଁ ଲମ୍ବାଇଲେ ମୁକ୍ତା ନାନା ରତ୍ନମଣି ।
ନେତର ଚନ୍ଦ୍ରାତପ ଯେ ଗୋଟିଏ ଗୋଟିଏ
ଲମ୍ବନ୍ତି ମଣି ରତନ ଅର୍କଜ୍ୟୋତି ପ୍ରାୟେ ।
ଏସନକ ଶୋଭାବନ ଲକ୍ଷେକ ରାଜାଙ୍କୁ
ସୁବର୍ଣ୍ଣ ପାବଚ୍ଛ ଅଛୁ ଊର୍ଦ୍ଧ୍ୱେ ଉଠିବାକୁ ।
ଏହି ରୂପରେ ନିର୍ମିତ ସଭା ଆୟତନ
ବାଳ ଆଦିତ୍ୟଙ୍କୁ ଜିଣି ଦିଶେ ଶୋଭାବନ ।
ସଭାର ପଛ ଭାଗରେ ତୋଳ ଯଜ୍ଞଶାଳ
କୋଶେ ଲମ୍ବ ଓସାର ସେ ଉଚ ବେନିତାଳ ।
ନବତଳ ଉଚ ପୁଣି ଅଟଇ ଜଗତୀ
ସେ ଜଗତୀ ମଣି ରତ୍ନ ଝଟକଇ ଅତି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି ଦ୍ୱାର
ସ୍ଥିର ତାଳ ଉଚ ଦୁଇ ତାଳ ତା ଓସାର ।

ସୁନା କଳସରେ ମୁକ୍ତାହାର ଫେରେ ଫେରେ
କେତେ ପତାକାଙ୍ଗ ପୁଣି ଉଡେ ତା ଉପରେ ।
ସହସ୍ରେ କଳସ କେତେ ଉଡେ ଫରହରେ
ଲାଳମ୍ବା ଚାମର ଉଡେ ତହିଁର ପାଶରେ ।
ଜଗତର ଆସ୍ଥାନ ମୁଁ ବର୍ଣ୍ଣିବଇଁ କିସ
ସହସ୍ରେ ଖାବଛ ତହିଁ ଉଠିବାକୁ ଖାସ ।
ଜଗସ୍ଥଳର ପ୍ରସାର ଚଉଷଠି ହାତ
ସହସ୍ର ସହସ୍ର ଅଛୁ କମଳର ଶିଗ ।
ଲମ୍ବିଅଛି ରତ୍ନସବ ଗଜର ମୁକୁତା
ମାଣିକ୍ୟର ପୁଞ୍ଜି ପୁଞ୍ଜି ଗୁନ୍ଥି ପାଟସୂତା ।
ସ୍ଫଟିକ କଣପ୍ପ ଉପରେ ମାନାର ବୈଦୂର୍ଯ୍ୟ
ଖାବଛରେ ଶତପନ୍ତି ଝଟକେ ବଗଜ ।
ଲକ୍ଷେ ଶକଟେ ଆସଇ ଯେତେ ଧନ ରତ୍ନ
ଏକା ଜଗତେ ଲାଗେ ତାହାର ସମାନ ।
ଏରୂପେ ବାହାରେ ଅଛି ଚଉଦ ଜଗତ
ଅନ୍ତରରେ ମଣ୍ଡିଣି ହୁଏ ଯନ୍ତ୍ର ଯନ୍ତ୍ର ।
ଦେଖି ହୃଦ ନ ଅଣ୍ଟିବ ନ ଲାଗିବ କ୍ଷୁଧା
ରୋଗ ପୀଡ଼ା ଆଦିକର ନ ଲାଗିବ ବାଧା ।
ଦେଖନ୍ତେ ନିର୍ମଳ ହେବ ତହିଁ ବେନି ନେତ୍ର
ବସନ୍ତେ ଶରୀରେ ଜାଣ ହୋଇବ ପବିତ୍ର ।
ମଳୟବସନ୍ତ ଧାତୁ ବାଦ୍ୟ ଗୀତନ୍ୟାସ
ବହେ ସମୀର ସୁଗନ୍ଧେ ଆମୋଦ ତୋଷଣ ।
ସଭାର ଆସ୍ଥାନ ଯେ କହିବ ନ ପାରି
ଆକାଶରୁ ଆଣିଥିଲେ ଯାହା ଦେବଋଷି ।
ନଭେ ବିଶ୍ୱକର୍ମା ରୂପ ଧରି ମାୟପୁଣ
ପାଣ୍ଡବଙ୍କ ସଭାଗୃହ କରିଲେ ନିର୍ମାଣ ।
ପନ୍ଦର ହାତରେ ଯେଉଁ ଏକକାଠି ବୋଲ
ଏମନ୍ତ ବଖଗନ୍ଧରେ ଗୃହ ଗୃହ ଚୁଲ୍ଲି ।
ସେହି ଚୁଲ୍ଲୀର ଆକାର ଅତ୍ୟନ୍ତ ବୃହତ
ଏକ ଚୁଲ୍ଲୀପଖା ଅଟେ ଅଷ୍ଟୋତ୍ତର ଶତ ।
ଏରୂପେ ଶତଚୁଲ୍ଲୀରେ ବଖରାଏ ଗୋଟି
ଚୁଲ୍ଲୀ ପାଞ୍ଚ ମରବୃଦ ଚଉଦ ଯେ କୋଟି ।
ଏମନ ପ୍ରକାରେ ନବଘରକୁ ନିର୍ମାଣି
ଅନ୍ତରରେ ମଣ୍ଡିଲେ ପୁଣ ଚକ୍ରପାଣି ।
ଲକ୍ଷେ ରାଜାଙ୍କ ନିମନ୍ତେ ଲକ୍ଷେକ ଭୁବନ
ତାଙ୍କଲେ ନିର୍ମାଣ କଲେ ଖଞ୍ଜି ଅନୁକ୍ରମ ।

ତହିଁକି ସୁବର୍ଣ୍ଣ ବେଢ଼ା ଆବର ପାଚେରି
ପାଚେରିର ଚଉଦ୍ୱାରେ ଜଗନ୍ତି ଯେ ଦ୍ୱାରୀ ।
ଚନ୍ଦ୍ରଶାଳ ପୁର କ୍ରୀଡ଼ାରଙ୍ଗର ଭୁବନ
ଏରୂପେ ଲକ୍ଷେ ରାଜାଙ୍କ ଗୃହ ଶୋଭାବନ ।
ଏସବକ କଥା କଲେ ଦେବ ଜଗନ୍ନାଥ
ମୁହିଁ ତାହା କହିବାକୁ ଅଟେ ଅସମର୍ଥ ।
ଗଜ ଅଶ୍ୱଶାଳ ଉଠେ ବାରୁଣୀ ଭୁବନ
ଏକା ଗଜଶାଳ ଶଏକାଠି ଆୟତନ ।
ଗଜଶାଳମାନଙ୍କର କେ କରେ ଗଣିତା
ତିନିଶ ପଚାଶ ଘର ଘଡ଼କେ ନିର୍ମିତା ।
ଏହିରୂପେ ଲକ୍ଷପନ୍ତି ଉଠେ ଗଜଶାଳ
ବାରୁଣୀବନକୁ ଯାଇ ଲାଗେ ଗଙ୍ଗାକୂଳ ।
ଏକପନ୍ତି ଅଶ୍ୱଶାଳ ନବକୋଟି ଘର
ବତିଶ ମର୍ଦ୍ଦବ ଅଶୀସହସ୍ର ସୈନ୍ୟଙ୍କର ।
ବାଦ୍ୟକାରଙ୍କର ଘର ପଞ୍ଚାବନ କୋଟି
ତମ୍ବା ଉପରେ ଉଡ଼ାନ୍ତି ନେଇ ରତ୍ନଘାଟି ।
ଓଟଶାଳାମାନ ଗୃହ ମେଦଛ ଯେ ଲକ୍ଷ
ପୁଣିହିଁ ଗୃହଶଏକୋଟି ଅଛୁ ଅଶୀଲକ୍ଷ ।
ସମସ୍ତ ଗୃହ ସୁସଜ୍ଜ ସୁବର୍ଣ୍ଣେ ନିର୍ମାଣି
ଏକଗୃହ ନାହିଁ ତହିଁ ତିରଣ ଗୁହଣି ।
ସଭା ଆସ୍ଥାନ ଦେଖି ଶ୍ରୀମାନଗୋବିନ୍ଦ
ଭକତ ମନେ ହରଷ ବାହାରେ ଆନନ୍ଦ ।
ପାପବୁଦ୍ଧିକୁ ନୃପତି ଧରେ ହୃଦପଟେ
ଶତ୍ରୁର ସମ୍ପଦ ମୁହିଁ ଦେଖିବି କେମନ୍ତେ ।
ଏମନ୍ତ ଚିନ୍ତଇ କମ୍ପ ପାଣ୍ଡବେ ବୈରତା
ଦୁଷ୍ଟ ରାଜାଙ୍କର ବଳେ ନୋହିବ ଭଗନ୍ତା! ।
ଶକୁନିକୁ ଘେନ ରାଜା ରହିଲେ ଏକାନ୍ତେ
ମନ୍ତ୍ରୀ ବୋଲେ ସବୁ ସାଧ କରିବ ମରନ୍ତେ ।
ଗୁରୁଭାଇ ଗଲେ ସ୍ୱବନ୍ଧୁଙ୍କୁ ବରଣେ
ଲକ୍ଷେ ରାଜାଙ୍କୁ ସେ ସାଧ କଲେ ଜଣେ ଜଣେ
ଧର୍ମିଷ୍ଠ ତପେବକୀ ପୁଣି କ୍ଷମି ବଳବନ୍ତା
ବେଦଶାସ୍ତ୍ର ମନ୍ତ୍ରେ ସେହୁ ହୋଇଲେ ନିର୍ଜିତା ।
ପୁଣ ସଖା ପାଇଛନ୍ତି ସେହୁ ଜଗନ୍ନାଥେ
ଆବର ଯେ ଏକଆତ୍ମା ଅଟେ ଧନଞ୍ଜୟେ ।
ତାର ଜନକଙ୍କ ନ ଧରି ଆହେ କୁରୁପତି
ପାଣ୍ଡବେ ଅଜେୟ ହେବେ ସକଳ ଜଗତ ।

ଦେଖ ଭକ୍ତ ଦ୍ୱାରେ ଥାଇ ସର୍ବ ବୃନ୍ଦାବନେ
ଅଳକାପୁର ବୃତ୍ତାନ୍ତ ଭବ୍ୟ ମର୍ତ୍ତ୍ୟଲୋକେ ।
ଦେଖ ନ ତରୁଣ ନଧି ଅଣି ଛଏ କୂଳେ
ଛଦ୍ମ ଘଟେ ଆଣିଚନ୍ତି ଦେବତା ସକଳେ ।
ସ୍ୱଗତ ଆସ୍ୱନନରେ ଦେଖ ଏବ୍ର ଦଣ୍ଡ
ଭୃତ୍ୟଗଣେ ଖଟିନନ୍ତି ସର୍ବ ଗଜଦେତା ।
ଶ୍ରୀବଣେ କେବଳ ମାତ୍ର କଥା ଥିଲ୍ ଶୁଣି
ପ୍ରତ୍ୟକ୍ଷେ ଦେଖିଲ ତାହା ଏବେ ନୃପମଣି ।
ତୁମ୍ଭ ଦ୍ୱୈର୍ଯ୍ୟାଧନ କର୍ତ୍ତୁ ଶୋଭା ଚିତ୍ତ ଉକ୍ତ
ପୁଣ୍ୟ ଥିଲେ ପ୍ରାଣୀଙ୍କ ହୁଏ ଉପଚର ।
ସ୍ୱର୍ଗ ମୋତ ଅଡଙ୍ଗାର ସର୍ବ ମଣ୍ଡଳ
ଖଟିଥିବ ଯୁଧିଷ୍ଠିରଙ୍କ ମାନ୍ୟ ଧର୍ମ ଭକ୍ତ ।
ତାଙ୍କର ସଞ୍ଚିତ ପାଦ ଲୋଚ ଛତ୍ର ଭଗ
ସୋଦର ଶ୍ରୀଭଙ୍କ ତୁମ୍ଭ ହେଉ ଜ ଉଦ୍ଭଗ ।
ଅନେକ ଭାଗେ ମଣାଇ କହିବ ଶକ୍ତ
ଶ୍ରୀଶିଣ ମାନଗୋବିନ୍ଦ ଦୋଳଳକ ଚନ ।
ଶ୍ରୀଦେବୀ ଶାରଦା ମାଗୋ ଝଙ୍କଡବାସିନୀ
ତୋ ପାଦେ ସର୍ବଦା ମୁହିଁ ଭରୁଛି ତଳମା ।
ଏହି ସଙ୍କଟ କଥା ଅଟେ ଅକପାର
ତୋତ କୃପାରୁ କେବଳ ବୃଦ୍ଧିବନ ମୋର ।
ଏହାକୁ କରବ ଶେଷ ମୁହିଁ କ ପ୍ରକାରେ
ସ୍ତବମାନ କଣ୍ଠଦେଶ ବସି ମୋ ଜିଣ୍ଡରେ ।
ଏହି ଚିନ୍ତା ସବୁବେଳେ ମନରେ ରହିଛି
ଶାରଳାଦାସ ସର୍ବଦା ଏ ଭିକ୍ଷା ମାଗୁଛି ।

---

## ନକୁଳଙ୍କର ଦକ୍ଷିଣକୋଶଳ ରାଜା ମାନଙ୍କୁ ନିମନ୍ତ୍ରଣ ନିମନ୍ତେ ଗମନ, କଳିଙ୍ଗସେନ, ଯମନିକ ରାଜା ପ୍ରଭୃତିଙ୍କ ସହିତ ଖଣ୍ଡଯୁଦ୍ଧ

ଅଗସ୍ତିଙ୍କୁ ପଚାରିଲେ ବୈବସ୍ୱତ ମନୁ
ଦକ୍ଷିଣ ଦିଗେ ବିଜୟ ମାଦ୍ରୀଦେବୀ ସୂନୁ ।
ରାଜାଙ୍କୁ ସାଧି କରିଲେ କେମନ୍ତେ ସେ ସ୍ଥଳେ
ଏହି କଥା କୁହ ମୋତେ ଆହେ ଦେବପାଳେ
କହନ୍ତି ଅଗସ୍ତି କୁମ୍ଭଋଷିଙ୍କର ବଳା
ନକୁଳ ମହିମା ସବୁ ଅଟେ ଅନର୍ଗଳା ।
ରାଜା ନିମନ୍ତ୍ରଣ କରି ଗମିଲ କୁମର
ଅଶୀସହସ୍ର ରାଉତ ସେନା କୋଳାକାର ।
ଗନ୍ଧମାଦନ ନାମରେ ଏକ ପର୍ବତ
ତହିଁ ଯାଇଁ ଉଚେ କଲ ମାଦ୍ରୀଦେବୀ ସୁତ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଦଶମୀର ଦିନ
କୁଜବାର ଅଶ୍ଳେଷା ନକ୍ଷତ୍ର ଉଦ୍ୟମାନ ।
ବାଣିଜ୍ୟ ନାମେ କରଣ ଶୁକ୍ଳନାମେ ଯୋଗ
ଲଗ୍ନ ସଙ୍କରାନ୍ତି ନିଅଦନ ହେଲ ଯୋଗ ।
ଅମୃତଯୋଗ ବେଳରେ ଶୁଭ ଅନୁକୂଳ
ଦକ୍ଷିଣ ଦିଗକୁ ବିଜେ କୁମାର ନକୁଳ ।
ଗନ୍ଧମାଦନ ପର୍ବତ ଚଢ଼େ ସର୍ବରଥୀ
ମଙ୍ଗଳ ବାଦ୍ୟଧ୍ୱନିରେ ଦକ୍ଷିଣ ମୂରତ ।
ଆକାଶରେ ଉତ୍କଳ ଜୟ ଶଙ୍ଖଧ୍ୱନି
ମର୍ତ୍ତ୍ୟ ରଥେ ଥାଇ ଦେଖେ କୁମାର ଅଶ୍ୱିନୀ ।
ସେହନ୍ତ ନାମକ ଅଟେ ତାଙ୍କର ଅନୁଜ
ତାଙ୍କ ଆଜ୍ଞାଦେଲେ ସନ୍ଧ୍ୟାଦେବୀର ଆତ୍ମଜ ।
ନକୁଳ ତହିଁକି କୁହ ଯାଅ ରେ ଭରତ
ସାରଥି ହୋଇଣ ତାହା ସେ କୁମାର ରଥ ।
ଦକ୍ଷିଣ ଦିଗରୁ ସେହି ଅଇଲ ବରଣେ
ସାତସହସ୍ର ରାଜାଙ୍କୁ ସାଧିବାକୁ ଜଣେ ।
ତାହାର ସାରଥି ହୋଇ ଦେଉଥିବୁ ବୁଦ୍ଧି
ଯେମନ୍ତେ ରାଜାମାନଙ୍କୁ ପାରିବ ସେ ସାଧି ।
ଆଜ୍ଞା ପ୍ରମାଣେ ଅଇଲେ ସେହନ୍ତ ସାରଥି
ସ୍ୱର୍ଗ ଅଶ୍ୱକୁ ଆଣିଲେ ଅନଳର ଜ୍ୟୋତି ।
ଧନୁ ଚକ୍ର ବାଣ ଗଦା ପୁଣି ମୁଦ୍ଗର
ପଞ୍ଚଶ ଭୁଷଣ୍ଡୀ ଆଜ୍ଞ ଦେଲ ଅସିବର ।
ଅମର ବିମାନ ପୁଣି ଆଣିଲେ ଆକାଶୁ
କୁମାର ଭଣିଲେ ଆଜ୍ଞା ସୁତ ଏଥେ ବସୁ ।
ଆଜ୍ଞା ପ୍ରମାଣେ ଅଇଲେ ସାରଥି ସେହନ୍ତ
ନକୁଳ ଭେଟିଲେ ଗନ୍ଧମାଦନ ପର୍ବତ ।
ସେହନ୍ତେ ଦେଖି କୁମାର ହୋଇ ପରଣାମି
ବୋଲେ କିମର୍ଥେ ଆକାଶୁ ବିଜେକଲ ସ୍ୱାମୀ ।
ନକୁଳଙ୍କୁ ବୋଲକର ବୋଲନ୍ତି ସେହନ୍ତ
ଅଶ୍ୱିନୀକୁମାର ଦେଲେ ଅସ୍ତ୍ରସହ ରଥ ।
ଆମ୍ଭେ ତୋହର ରଥରେ ସାରଥି ହୋଇବୁ
ଯେବଣ ଭୁବନେ ଯିବୁ ଧାଡକାରେ ନେବୁ ।

ଅନେକ କରିଲେ ପୂଜା ସେ ସ୍ୱର ଅଶ୍ୱକୁ
ସ୍ୱର୍ଗୀୟ ଅଳଙ୍କାରାଦି ଦେଲେ ନକୁଳଙ୍କୁ ।
ଶିରରେ ମୁକୁଟ ଦେଲେ ପୁଣି ସୀମନ୍ତିନୀ
ଭୁଜରେ ଭୂଷଣ ଦେଲେ ନେଇ ରତ୍ନମଣି ।
ସର୍ବ ଅଳଂକୃତ ହୋଇ ମାଦ୍ରୀର କୁମର
ମଙ୍ଗଳ ଧ୍ୱନି କରଣ ବସିଲା ରଥର ।
ବାଜେ ବାଜଘୋଷ ଶଙ୍ଖ ମଙ୍ଗଳ ମଧୁର
କଳଙ୍ଗ ଦେଶେ ବିଜୟ କଲେ ଦଣ୍ଡଧାରୀ ।
ସେ ଦେଶ ରାଜା କଳଙ୍ଗ ଦେଶ ନରପତି
ନବଲକ୍ଷ କୁଞ୍ଜର ତା କୋଟିଏକ ରଥୀ ।
ସାଗର ପ୍ରମାଣ ତାର ସ୍ୱେଖାର ତୁରଙ୍ଗ
ସାତକ୍ଷୌଣୀ ଦଳ ଛନଶତ ପାଇଦଣ୍ଡ ।
ମହା ଧନବନ୍ତ ସେହୁ କୁବେରଙ୍କୁ ଜିଣି
ସେ ରାଜ୍ୟ ପ୍ରବେଶ ହୁଏ ବୀର ଚୂଡ଼ାମଣି ।
ସମଦଣ୍ଡ ସେନ ରାଜା ବିଜୟେ ଆସ୍ଥାନେ
ଉଗର ବାରତା ନେଇ କହେ ସନ୍ନିଧାନେ ।
ସ୍ୱାମି ସାବଧାନେ ଶୁଣ ଆହେ ଦଣ୍ଡଧାରୀ
ରାଜ୍ୟ ପଶିବଟି କେଉଁ ରାଜା ଦଣ୍ଡ ଧରି ।
ଅଯୁତେକ ରଥ ସ୍ୱର ଅଇରାବତ ନାଗ
ବଖଲକ୍ଷ ସ୍ୱେଖାର ତା ଅଟଇ ତୁରଙ୍ଗ ।
ରୂପ ଗୁଣେ ସୁନ୍ଦର ସେ ଅତି ପରାକ୍ରମୀ
ସ୍ୱବସ୍ତୁ ପରାସ୍ତେ ମଣ ଆସେ ଭ୍ରମି ଭ୍ରମି ।
ଚରର ମୁଖରୁ ଏହି ବାରତାକୁ ଶୁଣି
ଧାଇଲା କଳଙ୍ଗ ଆଠ କରଣ ପଲଣ ।
ପ୍ରଥମେ ବାହାର ହେଲେ ସର୍ବ ପାରିଦଣ୍ଡେ
ଅରେ ରହ ରହ ବୋଲି ଡାକନ୍ତି ପ୍ରଚଣ୍ଡେ ।
କହେ ଭୂମମାନଙ୍କର ପୁରିଲା ଆୟୁତ
ମୋ ରାଜ୍ୟ ପଶିଲ ମୃତ୍ୟୁ ନ କର କି ଭୀତ
ପାରିବଣ୍ଡ ରାଜା କଲେ ବହୁତ ପ୍ରତିଜ୍ଞା
ବୋଇଲେ ଭୂମ୍ବର ବୋଲେ ହେବ କା ଅବଜ୍ଞା
ଜୟନ୍ତକ ବଳାନକ ଦୁଇ ସେନାପତି
ଧାଇଁଲେ ନାରଚ ହୋଇ କାଳାନଳ ମୂର୍ତ୍ତି ।
ବଜ୍ରଧାର ବର୍ଷା ପ୍ରାୟେ ଶର କଲେ ବୃଷ୍ଟି
ସେହୁ ଭେଦ ରାଜାଙ୍କର ଅଙ୍ଗେ ବାଣ ଫୁଟି ।
ରକ୍ତରେ କର୍ଦ୍ଦମ ହେଲା ସମସ୍ତଙ୍କ ଅଙ୍ଗ
ପଳାଇଲା ବସନ ଭେଦ ଦରଶ ପାରବଙ୍ଗ ।

ନକୁଳ ସୈନ୍ୟ ଉଠିଲେ କ୍ରୋଧେ ଗଳଗାଜ
କଳଙ୍ଗସେନର ସୈନ୍ୟ ପଳାଇଲେ ଭାଜ ।
ଦଣ୍ଡଭଗ୍ନ ଦେଖିକରି ସେ କଳଙ୍ଗ ବୀର
ଆପଣେ ଉଠିଲା ରାଜା ହୋଇ ଅତି ଉଗ୍ର ।
ପଞ୍ଚାଶ କୋଟି ସଙ୍ଗତେ ଘେନିଣ ଯେ ଯୋଧୀ
ସହସ୍ରେ ସହସ୍ରେ ଶର ଆକ୍ଷୋଶିଣ ବନ୍ଧ ।
ରାଜାକୁ ଦେଖି ନକୁଳ ବୀର ମହାରଥୀ
କୁନ୍ତ ବୁଲାଇଣ ନେଇ ଚଢ଼ିଁ ବଳବନ୍ତା ।
ରେରେକାରରେ ଉଠିଲେ କଳଙ୍ଗର ବଳ
ହିନ୍ଦୁଘୋଷ ପରସ୍ପରେ କ୍ଷୁଭିଲା ଚହଳ ।
କୁନ୍ତ ବୁଲାଇ ନକୁଳ ପ୍ରହାର କରନ୍ତେ
ହସ୍ତୀ ଗଣ୍ଡସ୍ଥଳ ଫୁଟି ପଡ଼ିଲେ ମାହୁନ୍ତେ ।
ସେହୁ ଟୋପର ମୁକୁଟ ପୁଣି ଶିରଭୂଷା
ରକ୍ତରେ କର୍ଦ୍ଦମ ହୋଇ ହେଲେ ଧୂଳିମିଶା ।
ପର ଆପଣା ବୋଲିଣ ନ ପାରିଲେ ଚହ୍ନି
ସମସ୍ତ ସମ୍ମୁଖରେ ଯେ ହୋଇଲା ରଜନୀ ।
ଅନ୍ଧାର ଦେଖିଣ ରାଜା ଚହୁଁ ଘୁଞ୍ଚିଗଲା
ନିଜ କଟକେ ବିମର୍ଷେ ପ୍ରବେଶ ହୋଇଲା ।
ଦିବସ ଘାଳଇ ରାଜା ଭଗ୍ନବଳ ଘେନି
ଶ୍ରୀନରସିଂହଙ୍କୁ ଯାଇ କରଇ ଦଇମା ।
ନମସ୍ତେ ନୃସିଂହ ଦେବ ନମୋ ନରହରି
ପ୍ରହ୍ଲାଦ ପାଇଁ ଦୈତ୍ୟ ହିରଣ୍ୟ ବିଦାରି ।
ଆକାଶେ ଲାଗଇ ଚୂଡ଼ା ଲୋହିତ ନୟନ
ଦୁଷ୍ଟଙ୍କୁ ସଂହାର କରି ରଖୁ ଭକ୍ତଜନ ।
ଜୟ ଜୟ ମହାବାହୁ ଚତୁର୍ଦ୍ଧା ମୂରତି
ପ୍ରହ୍ଲାଦଙ୍କୁ ଦେଖାଇ କଲୁ ମୁକ୍ତିଗତି ।
ନମୋ ନମୋ ନରସିଂହ ଭୟ ବହ ମୂର୍ତ୍ତି
ଶାନ୍ତ ହେଲୁ ପ୍ରହ୍ଲାଦ କରିବାକୁ ସ୍ତୁତି ।
ନମୋ ନରସିଂହ ମୂର୍ତ୍ତି ତୋ ପାଦେ ମୁଁ ଭୃତ୍ୟ
ନମୋ ନରସିଂହ ଦୈତ୍ୟ କୁଳୁ ନିପାତ ।
ସ୍ୱାମି ତୋହର ଆଜ୍ଞାରେ କରେଁ ସବୁକାଳେ
କେଉଁ ଅନ୍ୟାୟରେ ମୋତେ ଛାଡ଼ିଲୁ କୁହେଳେ
ଶ୍ରୀନୃସିଂହଦେବଙ୍କର ଚରଣରେ ଭୃତ୍ୟ
କହନ୍ତି ଶାରଳା ଦାସ ମୂର୍ଖ ଅପଣ୍ଡିତ ।
ଅନେକ ଭକତି ଯତ୍ନ କରିଲା କଳଙ୍ଗ
ପ୍ରସନ୍ନେ ଅଭୟ କର ଦେଲେ ନରସିଂହ

ଚନ୍ଦ୍ରାମଣି ନାଥ ଚନ୍ଦ୍ର ବଚନ ପ୍ରକାଶି
ଅଜ୍ଞାନେ ନୃପତି କୁହି ସମ୍ବନ୍ଧ ଦେ ପଶି ।
ନ ଜାଣୁ କି ସୋମବଂଶେ ନୃପତି ଯୁଧିଷ୍ଠି
ତାଙ୍କ ପିତା ପାଣ୍ଡୁ ବ୍ରହ୍ମହତ୍ୟା ଦୋଷେ କଷ୍ଟୀ
ରାଜସୂୟ ଯାଗ କରନ୍ତି ତାହାଁର ନିମନ୍ତେ
ଲକ୍ଷେ ରାଜା ଛନ୍ତି ଷୋଳ ଦିବସ ପର୍ଯ୍ୟନ୍ତେ ।
ପଶ୍ଚିମକୁ ଭୀମସେନ ଉତ୍ତରେ ଅର୍ଜୁନ
ଦକ୍ଷିଣେ ନକୁଳ ସହଦେବ ଈଶାନ୍ୟ ।
ଏ ନକୁଳ ବିଜୟକଲେ ଦକ୍ଷିଣ ଦିଗକୁ
ସାତସହସ୍ର ରାଜା ବାଧ୍ୟ କରିଣ ନେବାକୁ ।
ସଚରାଚରର ରାଜା ଯା ଚରଣ ବନ୍ଦି
ଜମ୍ବୁରେ କଳିଙ୍ଗସେନ ତାରେ ହେଲୁ ବନ୍ଦି
ମନ୍ତ୍ରୀ ପଠାଇଣ ଏକେ କରି ସମାଧାନ
ବିବାଦରେ ଆସିନାହିଁ ମାଦ୍ରୀର ନନ୍ଦନ ।
ଶ୍ରୀନୃସିଂହ ବଚନରେ କଳିଙ୍ଗ ନୃପତି
ମନ୍ତ୍ରୀ ଅମାତ୍ୟେ ଘେନି ଆସଇ ଯେ ରାତି ।
ଯହିଁ ବିଜେ କରିଛନ୍ତି ନକୁଳ କୁମର
ସମଦଣ୍ଡ ସେନ ରାଜା କଲା ପଟୁଆର ।
ଆଗେ ମନ୍ତ୍ରୀକି ବୁଝିଲା ନକୁଳ ସ୍ୱାମୀକୁ
ଅନେକ ଉପହାର ଯେ ଦେଲେ କୁମରଙ୍କୁ ।
ଅନେକ ବିନୟେ କଲେ ସ୍ୱାମୀରେ ପ୍ରଣମି
ନ ଜାଣିଣ ତୋର ଦ୍ରୋହ କଲି ଦେବସ୍ୱାମି ।
ଏମନ୍ତ ସମୟରେ ଯେ କଳିଙ୍ଗ ନୃପତି
ଆସି ପାଦଅର୍ଘ୍ୟ ଦେଇ କରଇ ଭକତି ।
ଅକ୍ଷତ ଗୁଆ ନେଇଣ ଦେଲେକ ନକୁଳ
ବୋଇଲେ ସେ ଦଣ୍ଡସେନ ଯମପୁରେ ଗଲ ।
ଅନେକ ଭକ୍ତି କରଣ କଳିଙ୍ଗ ନୃପତି
ଦଣ୍ଡ ଘେନିଣ ଚଳିଲା ସେ ଅତି ପାହାନ୍ତି ।
ତହୁଁ ଦଣ୍ଡ ଘେନିଣ ଯେ ଚଳେ ବୀରମଣି
ଭେଟିଲେ ଯାଇ ନିର୍ମଳନାଥ ଶୂଳପାଣି ।
କାଶୀକୁଣ୍ଡେ ସ୍ନାନକରି ନିତ୍ୟକର୍ମ ସାରି
ନିର୍ମଳନାଥଙ୍କୁ ଯାଇ ଦରଶନ କରି ।
ସକେଶ୍ୱର ବୋଲିକରି ତହିଁ ନୃପବର୍ଯ୍ୟେ
ଭକ୍ତିରେ ଖଟେ ନିର୍ମଳନାଥଙ୍କର ପାଦେ ।
ସିକେଶ୍ୱର ଅଶୀଲକ୍ଷ ସଙ୍ଗେ ଘେନ ଯୋଧୀ
ଯାଇ ଓଗାଳିଲା ସେହି ପଥକୁ ନିରୋଧି ।

ବୋଲେ ଭେଉଁ ଗର୍ବେ ତୋର ଏଡେକ ସାହସ
ନ ଜାଣ କି ସିଅମ୍ବକ ତୀର୍ଥ ଏଥେ ପଶ ।
ସିଅମ୍ବକ ନାଥ ଯେହୁ ଶୁଦ୍ଧ ମହାଦେବ ।
ପୃଥ୍ୱୀ ଧରନ୍ତି ଯା କେନେ କରିଥାନ୍ତି ସେବା ।
ଯାହାର ନାମ ଧରନ୍ତେ ଛୁଟେ ମୋହମାୟା
ସେ ଭୁବନେ ପଶିବାକୁ କେତେ ଭୁ ନିର୍ଭୟା
ରେ ରେକାର ଶବ୍ଦରେ ପର୍ବତରେ ଉଠି
ନକୁଳଙ୍କର ଆଟକୁ କଲା ଶରବୃଷ୍ଟି ।
ଉପରେ ଆଇଣ ରାଜା ବନ୍ଦେ ଚକ୍ଷୁଣମୁନା
ତାହାର ନିକଳ ଶର ଫୁଟି ବଜ୍ରସେହ୍ନା ।
ଘାଏ ଘୁମାଇ ପଡ଼ିଲେ ପାଣ୍ଡବଙ୍କ ବଳ
ରେହନ୍ତ ସାରଥି ବୁଝିଁ ବୋଲନ୍ତି ନକୁଳ ।
ବଡ଼ ଦୁର୍ଘଟ ମୋତେ ପଡ଼ିଲାକ ସ୍ୱାମି
ବାହା ମୋର ତୁରଙ୍ଗମ କରି ଶୂନ୍ୟଗାମୀ ।
ନକୁଳ ବଚନେ ରଥ ଚଳାଏ ରେହନ୍ତ
ପର୍ବତ ଉପରେ ନେଇ ଟେକିଲାକ ରଥ ।
କରେ ବଜ୍ରକୋଣ୍ଡ ଧରି ନକୁଳ କୁମର
ଆକ୍ଷେପି ମାଇଲା କୋପେ ସୈନ୍ୟଙ୍କ ଉପର
ରେହନ୍ତ କମ୍ପାଇ ପୁଣ ରଥ ଗଲା ବାହୁ
ଗଡ଼ ଭିତରେ ପ୍ରବେଶ ହୋଇଲାକ ଯାଇ ।
ଦେଖିଣ ପ୍ରତିଜ୍ଞା ତହୁଁ କରେ ସିକେଶ୍ୱ
ଧାଇଁଲକ୍ଷ ଯୋଦ୍ଧା ଘେନି ହେଲା ଆଗସର ।
କୋପେ କାଳାନଳ ସମ ମାଦ୍ରୀଦେବୀ ବଳା
ଯେସନେକ ମତ୍ତଗଜ ଧାଇଁଲା ମୁକୁଳା ।
ସମରୁ ସମ୍ମୁଖେ ପରେ କରି ରଣରଙ୍ଗ
ତିନ ଅଇବୃତ ଯୋଦ୍ଧା ଓଗାଳିଲେ ଆଗ ।
ସିକେଶ୍ୱର ବୁଲାଇଣ କୋନ୍ତ ଆଉ ଜାଠି
କରନ୍ତେ ପ୍ରହାର ସୈନ୍ୟ ସେହ୍ନା ଯାଏ ଫାଟି
ଅନେକ ସୈନ୍ୟ ପଡ଼ିଲେ ସେହି ରଣ ମଧ୍ୟେ
ରଣ ଛାଡ଼ି ପଳାଇଲେ ମହା ମହା ଯୋଧେ ।
ଗୋଡ଼ାଇ ନକୁଳ ମାରେ ତହିଁ ଆଉ କୋନ୍ତ
ଘାଏ ତଳପଡ଼ି ରଥୀ ହରାଇ ସହିତ ।
ବିରଥୀ ହୋଇ ନୃପତି ପଳାଏ ଚଞ୍ଚଳ
ଗୋଡ଼ାଇ ନକୁଳ ଯାଇ ଧରି ତାର ବାଳ ।
ଭୁଜ ଧରି ନିଜ ରଥେ ବସାଇଲେ ନେଇ
କୋନ୍ତ ଧରି ମାରିବାକୁ ଗର୍ଜ୍ଜନ କରଇ ।

ନୃପତିର ବନ୍ଦୀ ଦେଖି ସକଳ ସଇନ
ଚନ୍ଦ୍ରରେ ଚରଣ ଧରି କରନ୍ତି ବଇରୀ ।
ନ ଜାଣି ଆମ୍ଭ ଭୂପତି କରିଲେକ ଦୋଷ
ତୁମ୍ଭ ରକ୍ଷାକର ଦେବ ଧରମ ପୁରୁଷ ।
ନକୁଳ ହୋଇଲେ ଶାନ୍ତ ମଧୁର ବଚନେ
ଏତେ ସୈନ୍ୟ ନ ଟକିଲୁ ତୋହର ଅଜ୍ଞାନେ ।
ମୁହିଁ କେବେ ନୁହେ ତାଙ୍କମାନଙ୍କର ବଇରୀ
ରାଜସୂ ଯାତାର୍ଥେ ମୁହିଁ ଆସିଥିଲି କରି ।
ଏ ବୋଲି ସଙ୍ଗ କରିବା ଯହୁଁ ସ୍ଥିର ହେଲା
ତହିଁପାଇଁ ରଣସଜ ଆଗେ ନାଶଗଲା ।
ନକୁଳ ବଚନେ ରାଜା ହୋଇ ପରଣାମି
ବୋଇଲା ମୋ ଅପରାଧ କ୍ଷମାକର ସ୍ୱାମି ।
ଦକ୍ଷିଣ ଦିଗକୁ ଯିବେ ନ ପାରିଲି ଜାଣି
ସମର କରିଲି ମୁହିଁ ପରବସ୍ତୁ ମଣି ।
ନିମନ୍ତ୍ରଣ ଯୋଗାଡ଼ ସେ ହେଲେକ ନକୁଳ
ସମଦଣ୍ଡ ଯେଣୁ ନଳ ଯମପ୍ରସ୍ଥ ସ୍ଥଳ ।
ରାଜା ନିମନ୍ତ୍ରଣ କରି ଆସିବା ପର୍ଯ୍ୟନ୍ତେ
ଦକ୍ଷିଣର ରାଜା ଥିବ ଦକ୍ଷିଣର ପ୍ରାନ୍ତେ ।
ନରଧାର ଆଜ୍ଞାପାଇ ରାଜା ହିଡ଼ଙ୍ଗଶଶୀ
ଅମୃତ ଯୋଗେ ବାହାର ହେଲା ଦଣ୍ଡଧାରୀ ।
ସେ ନଗରେ ସ୍ନାନକରି ମାଦ୍ରୀର ନନ୍ଦନ
ତ୍ରିଅମ୍ବକ ନାଥଙ୍କୁ ସେ କଲେ ଦରଶନ ।
ଜୟ ହୁ ଜୟ ହୁ ଦେବ ଜଗଜ୍ଜନ ପାଳି
ହରିଜନଙ୍କ ରଞ୍ଜନ ଜୟ ହୁ କପାଳୀ ।
ତ୍ରେତୟା ଯୁଗେ ଶ୍ରୀରାମ କଲେ ତୋତେ ପୂଜା
ସେଠାରେ ଅଭୟବର ଦେଲ୍ ଦେବରାଜା ।
ରାମ ଆଜ୍ଞାରେ ଲକ୍ଷ୍ମଣ କଲା ପର୍ଣ୍ଣକୁଟୀ
ଶ୍ରୀରାମଙ୍କୁ ଭକ୍ତି ଲେ ସେ ପୋଡ଼ି ଶିଳାଗୋଟି ।
ଅନେକମତେ ସ୍ଥାପିଲା କରଣ ଯତନ
ଶ୍ରୀରାମ ଜାଣିଲେ ତାହା କରଣ ଦର୍ଶନ ।
ରାମ ପ୍ରତିପତ୍ୟ ହେଲେ କରି ବହୁସ୍ତୁତି
ତହୁଁ ତହିଁ ରଲୁ ହୋଇ ତ୍ରିଅମ୍ବକ ମୂର୍ତ୍ତି ।
ମହାଶମ୍ଭୁ ହେଲ ନାଥ ଟହକୁଟ ପୁଟି
ପାତାଳପୁରକୁ ଗଲ ଲକ୍ଷେଯୁନ୍ତ କାଟି ।
ମହାଶମ୍ଭୁ ପରସନ୍ନ ନାଥ ହେ ଅମ୍ଭକ
ତ୍ରିଅମ୍ବକ ନାଥ ସ୍ୱାମି ମୋତେ ହେବା ରକ୍ଷା ।

ଆପଣେ ମୃଗସ୍ୱାଲେ ତ ସଦା କୁତୂହଳ
ବନଜନ୍ତୁ ମାରି ହେଉ ଆନନ୍ଦରେ ଖେଳ ।
ମାଦ୍ରୀର ନନ୍ଦନ ବହୁ କରନ୍ତେ ବିନୟ
ଭକତି ଦେଖି ବିଜୟ କଲେ ଦେବରାୟ ।
ବାମକରରେ କମାଣ ଦକ୍ଷେ ଶରଗୋଟି
ପାଦରେ ନୂପୁର କଠାଣ୍ଡି ଶିରେ ଏକଜଟି ।
ଶିରେ ସୀମନ୍ତମଣି ହୃଦେ ଲମ୍ବେ ରତ୍ନମାଳ
କରରେ କଙ୍କଣ ବାହେ ବାହୁଟି ସୁଢ଼ଳ ।
ଏସନକ ଶୋଭବନ ଦେବ ଶୂଳଧାରୀ
ସନ୍ନିଧେ କାନ୍ତାମଣି ବାମ ଜାନୁରେ ଗଉରୀ ।
ନକୁଳ ଦେଖିଲେ ଯହୁଁ ଏ ସ୍ୱରୂପ ଗୋଟି
ଅନେକ ବିନୟୀହୋଇ ପାଦତଳେ ଲେଟି ।
ଶିବ ବୋଇଲେ ନକୁଳ ତୋ ଜୀବକ ଧନ
ବହୁତଳେ ଜାତ ତୋତେ କଲା ତୋ ଜନନୀ
ସମରେ ନିର୍ଭର ତୁମ୍ଭ ଠିକେ ନାହିଁ ଶଙ୍କା
ଏତେବଡ଼ ବନକୁ କୁ ସାଧୁଅଛୁ ଏକା ।
ଅମ୍ଭଙ୍କୁ ଦେଖିଲୁ ହେଲା ତୋ ଜୀବ ସଫଳ
ଏକ ମହାମନ୍ତ୍ର ତୋତେ ଦେଉଛେ ନକୁଳ ।
ସେ ମନ୍ତ୍ରକୁ ସୁମରିବୁ ତୁମ୍ଭ ଯିବାକାଳେ
ଆହାର ମୈଥୁନ ନିଦ୍ରା ନ ମାଡ଼ିବ ହେଲେ ।
ଏ ରାଜାମାନଙ୍କୁ ସାଧି କରିବା ପର୍ଯ୍ୟନ୍ତେ
କ୍ଷୁଧା ତୃଷା ନିଦ୍ରାଆଦି ନ ମାଡ଼ିବ ତୋତେ ।
ଆବର ଦେଉଛୁ ଯେନ ଏହି ଶରଟିଏ
ଏ ଶର ଯୋଡ଼ିଲେ ସାଧ୍ୟ ହେବେ ସର୍ବସ୍ୱୟେ
ବାବୁ ଯେବେ ହୋଇଥିବ ଗିରି ବଜ୍ରଗୋଟି
ଏ ଶର ବାଜିଲକ୍ଷଣେ ତାହା ଯିବ ଫୁଟି ।
ଏମନ୍ତ ଆଜ୍ଞା ପ୍ରସନ୍ନେ ଦେବ ଅହିଧାରୀ
ବରଦେଇ ଅନ୍ତର୍ଦ୍ଧାନେ ଗଲେ ତ୍ରିପୁରାରି ।
ତହୁଁ ସେ ନକୁଳ ସାରଥିର ବାଦ୍ୟ ବାଇ
ଚୂଡ଼ଙ୍ଗ ଦେଶେ ପ୍ରବେଶ ହୋଇଲେକ ଯାଇ
ସେ ରାଜ୍ୟ ରାଜା ଚୂଡ଼ଙ୍ଗ ଚକ୍ରବର୍ତ୍ତୀ ରାୟେ
ନକୁଳ ତାର ରାଜ୍ୟରେ କରିଲେ ବିଜୟେ ।
ଦୂତ ଜଣାଇଲେ ଯାଇ ରାଜାର ଅଗ୍ରତ
ସ୍ୱାମି କଟକରେ କିଏ ପଶେ ଅଦ୍ଭୁତେ ।
ଉଲ୍କାପାତ ପରାୟେ ଦଶନ୍ତି ସଇନ
ଭୁଲଉ ଛନ୍ତି ଲଙ୍କିଆ ଅସ୍ତ୍ରମାନ ଘେନ ।

ଶୁଣି କୋପିଲ୍ ଚୂଡଙ୍ଗ ବୀର ଚକ୍ରବର୍ତ୍ତୀ
କୁଚାଳକବଂଶୀ ମୁହିଁ ପ୍ରତାପ ନୃପତି ।
ମୁହିଁ ଅନୁବ୍ରତେ ପରରାଜ୍ୟେ ବାନ୍ଧେ ଥାଟ
ମୋର ଉପରକୁ ପୁଣି ଆସେ କେଉଁ ଦୁଷ୍ଟ ।
ଦକ୍ଷିଣ କୋଣରେ ମୁହିଁ ଅଟେ ଏକଯୋଧି
ଜରାସନ୍ଧ ରାଜା ମୋତେ ନ ପାରିଲ୍ ସାଧି ।
ମୁହିଁ ସର୍ବ ଯୋଦ୍ଧାଙ୍କର ଅଟେ ଅଗ୍ରଶୂଳ
ମୋହର ଉପରେ ପୁଣି କଏ ମହାମଲ୍ଲ ।
ଶତେ ପାରଦଣ୍ଡ ରାଜା ପାଶେ ଥିଲେ ରହି
ରାଜ୍ୟରେ ପଶି ନ ଦଅ ଆଜ୍ଞା ସେ ଦଅଇ ।
ରାଜା ବଚନେ ଧାଇଁଲେ ଯୋଦ୍ଧା ପାରଦଣ୍ଡ
ଲୌହ ଧନୁଗ୍ରର ଧରି ଡାକଲେ ପ୍ରଚଣ୍ଡ ।
ଗର୍ଜ୍ଜନ ନାଦେ କମ୍ପିଲ୍ ଚରାଚର ପୃଥ୍ୱୀ
ଦଲଦଲ ହୋଇକରି କମ୍ପେ ବସୁମତୀ ।
ପାରଦଣ୍ଡ ରାଜା ସର୍ବେ ଅସ୍ତ୍ରକୁ ସଜାଡ଼ି
ରହ ରହ ବୋଲି ଚକ୍ରବର୍ତ୍ତୀ ରଣପାଡ଼ି ।
ଇତର ଲୋକ ହୋଇଣ ଏଡ଼େ ଭରସୁ
ମରିବା ପାଇଁ ଚୂଡ଼ଙ୍ଗ ଦେଶେ କପାଁ ପଶୁ ।
ନିଜ ଥାଟ ପଛକରି ଆଗ କଲେ ରଥ
ବୋଇଲେ କଏ ସେ ଅଛ ଏଡ଼ିକ ସମର୍ଥ ।
ବାହୁଡ଼ିଣ କହ ଯାଇ ତୁମ୍ଭ ନୃପ ଆଗେ
ବୋଲିବୁ ନକୁଳ ବଂଜ ଏ ଦକ୍ଷିଣ ଭଗେ ।
କଳହରେ ପ୍ରୟୋଜନ ମୋର ନାହିଁ କିଛି
ହସ୍ତିନା ରାଜ୍ୟକୁ ଯିବ ବହୁକାର୍ଯ୍ୟ ଅଛି ।
ସୈନ୍ୟଂବୋଇଲେ ପାଣ୍ଡବବୋଲି କେ ଜାଣଇ
କର୍ତ୍ତି କର୍ତ୍ତି ବାନ୍ଧିଲେ ସେ ବହୁଶର ନେଇ ।
ଅବଛୁଲି ବାନ୍ଧିଲେ ଯେ କିଛି ନ ବାସ୍ତର
ନକୁଳ ସ୍ମରଣ କଲେ ଦେବ ଚକ୍ରଧାରୀ ।
କି ଯେ ତଆର କହିଲୁ ଆମ୍ଭକୁ ଯତନେ
ବନ୍ଦୀ ନୃପନ୍ତ ଦକ୍ଷିଣଦିଗ ରାଜାମାନେ ।
ଏତେ ବତ୍ତୁରଣ ବୀର ବନ୍ଧେ ତୀକ୍ଷ୍ଣ ବାଣ
ତୀକ୍ଷ୍ଣ ମୁନା ଶର ବନ୍ଧେ ପାଣ୍ଡବ ପଞ୍ଚାଣ ।
ଶରବୃଷ୍ଟି କଲେ ସେହୁ ବଜ୍ରନାଦ କରି
ହସ୍ତୀ କୁମ୍ଭସ୍ଥଳ କୁଟେ ଶର ପଡ଼ିକରି ।
ନବାଗ୍ରାସ୍ତେ ରକ୍ତ ବହେ ଶରୀରରୁ ଗଳି
ମହା ମହା ନାଗମାନେ ପଡ଼ୁଛନ୍ତି ଢଳି ।

ମାଦ୍ରୀର ନନ୍ଦନ ଅଟେ ବଡ଼ ବଳବନ୍ତା
ପବନୁ ବେଗେ ବହଇ ନ ଯାଇ ଗଣିତା ।
ସହସ୍ରେ ମୁକୁଟଯୋଦ୍ଧ ଥିଲେ ଆଗୁଆଣି
ଗର୍ଜି ଭୂମିରେ ପଡ଼ିଲେ ଗଣ୍ଡି ମୁଣ୍ଡ ବେନି ।
ଧାଇଁଲେ ସେ ସୈନ୍ୟହତ ଦେଖି ପାରଦଣ୍ଡେ
ଧରିଅଛନ୍ତି ପଥର ସର୍ବେ ଖଣ୍ଡେ ଖଣ୍ଡେ ।
ବାମକରେ ଧରିଛନ୍ତି ପୁଣି ବୃକ୍ଷେ ବୃକ୍ଷେ
ବାନରବଳ ପରାଯେ ହଣନ୍ତି ପ୍ରତ୍ୟକ୍ଷେ ।
ଦେଖିଣ ନକୁଳବୀର କୁନ୍ତ ବୁଲାଇଲ
କ୍ରମେ କ୍ରମେ ତେଜ ତାର ଉଦିତ ହୋଇଲ ।
କୁମାର ନକୁଳ ଅଟେ ମହାବଳ କ୍ଷତ୍ରୀ
ହସ୍ତୀଙ୍କ ଉପରେ କୁନ୍ତ ମାଇଲକ ଧାଡି ।
ହସ୍ତୀ ମାହୁନ୍ତ ଦୁହିଙ୍କୁ ବୁଲାଇ ବୁଲାଇ
ଆକାଶେ ଫିଙ୍ଗନ୍ତେ ଗଡ଼େ ପଡ଼ନ୍ତି ସେ ଯାଇ
ପଡ଼ିଗଲେ ମହାବୀର ଉଲ୍‌କାପାତ ଜାଣି
ଜଗତିରେ ଥାଇ ଦେଖେ ଚୂଡ଼ଙ୍ଗ ନୃମଣି ।
ସ୍ୱରୂପେ ଦେଖିଲ ରାଜା ସୈନ୍ୟବଳ ଭଙ୍ଗେ
ରଥକୁ ସାଜ ତତକ୍ଷଣେ ଆପେ କଲ ରଙ୍ଗେ ।
ବାମ ଡାହାଣ ପଶ୍ଚାତ ପୁଣି ଆଗୁଆଣି
ସୈନ୍ୟଙ୍କୁ ରଖି ଚଳଇ ଚୂଡ଼ଙ୍ଗ ନୃମଣି ।
ଆପଣା ରାଜାଙ୍କୁ ଦେଖି ଉଠିଲେ ସଇନ୍ୟ
ନକୁଳଙ୍କୁ ପ୍ରହାରିଲେ ଶାଳ ଶିଳ ଘେନି ।
ମାର ମାର ଶବଦରେ ପୂରେ ଦଶଦିଗ
ସୈନ୍ୟମାନେ ଦଉଡ଼ିଲେ ହୋଇ ମହାବେଗ
ସୈନ୍ୟମାନଙ୍କ କଟାଳ ନକୁଳ ଯେ ଦେଖି
ଟେରିଲେ ସେ ବେହଲ ସାରଥିକୁ ଡାକି ।
ପ୍ରତିଜ୍ଞା କରି ମୋ ତାଏ କରନ୍ତି ସମର
ରାଜାଙ୍କ ସମ୍ମୁଖକୁ ବାହା ରଥକୁ ମୋହର ।
ନକୁଳ ବଚନ ଶୁଣି ମରୁତର ସୁତ
ପବନ ଗତି କରିଣ ବାହେ ବେଗେ ରଥ ।
ଶ୍ୟେନପକ୍ଷୀ ଧରିକାରେ ଉଡ଼ନ୍ତି ତରଙ୍ଗେ
ଧାଇକାରେ ରଥ ଗଲ ଚୂଡ଼ଙ୍ଗର ଆଗେ ।
ଅଦଭୁତେ ରଥ ଦେଖି ସେ ପ୍ରତାପବଂଶୀ
କରେ କୃପାଣ ଘେନିଣ ନକୁଳେ ଆହୋଶି ।
ତା ଦେଖି ନକୁଳ ବୀର ବୁଲାଇଣ କୋନ୍ତେ
ଆହୋଷି ପ୍ରହାର କଲ ଚକ୍ରବର୍ତ୍ତୀ ରୂପେ ।

ନକୁଳର କୁନ୍ତ ପଡ଼ି ରଥ ଭଗ୍ନ ହେଲା
ମତ୍ତହସ୍ତୀ ଏକ ଚଢ଼ି ପୁଣି ସେ ମିଳିଲା ।
ଲୁହାର ଦୁଇଟି ଗଦା ଧରି ବେନିହସ୍ତେ
ବୁଲାଇ ପ୍ରହାର କଲା ନକୁଳର ମାଥେ ।
ରେହନ୍ତ ସାରଥି ତାହା ଲୁହାଇଲା ଶୂନ୍ୟେ
ନକୁଳ ପୁଣି କୁନ୍ତେକ ମାରେ କୋପମନେ ।
ସେ କୁନ୍ତ ଆଘାତେ ହସ୍ତୀ କୁମ୍ଭ ଗଲା ଫୁଟି
ଚିତ୍କାର କରିଣ ହସ୍ତୀ ପଡେ ଭୂମି ଲୋଟି ।
ବିରଥୀ ହୋଇଣ ତହୁଁ ପଳାଇ ସେ ରାୟ
ପଛେ ପଛେ ଗୋଡ଼ାଇଲେ ମାଦ୍ରୀର ତନୟ
କୁନ୍ତ ଉଞ୍ଚାଇ ପ୍ରହାର କରିବାର ବେଳେ
ମନ୍ତ୍ରୀବର ପ୍ରଣିପାତ ହେଲା ପାଦତଳେ ।
ରେହନ୍ତ ବୋଇଲେ ଏବେ ଛାଡ଼ କୋପମନ
ମନ୍ତ୍ରୀର ବାକ୍ୟରେ କୋପ କଲା ସମାଧାନ ।
କଷ୍ଟତ ଦୋଷରେ ତୁମ୍ଭ ରାଜାଙ୍କୁ ନାଶିଲେ
ରାଜସୂୟଯାଗ ନୋହିବ ରାଜାଏ ନ ଥିଲେ ।
ରେହନ୍ତ ବଚନ ଶୁଣି କୋପ କରି ଶାନ୍ତ
ବୋଲେ ରାଜାଙ୍କୁ ଫେରାଇ ଆଣ ଆହେ ମନ୍ତ୍ରି
ନକୁଳ ବଚନ ଶୁଣି ଚଳେ ତତ୍‌କ୍ଷଣାନ୍ତ
ବେଗେ ରାଜାକୁ ଯାଇଣ ବାହୁଡ଼ାଏ ମନ୍ତ୍ରୀ ।
ଦନ୍ତେ ତୃଣ ମୁଖରେ ବଞ୍ଚନଖ ଭରି
ଉଦର ଧରି ଦୋଳିଣ ଡାକଇ ଫୁକାରି ।
ରାଜାର ବଚନ ଦେଖି ମାଦ୍ରୀଦେବୀ ବଳା
ଚୂଡ଼ଙ୍ଗ ରାଜାର ଗଳେ ଦେଲା ରତ୍ନମାଳା ।
ଅକାରଣରେ ସୈନ୍ୟଙ୍କୁ ମରାଇଲୁ ଜାଣି
ଏବେ ଦଣ୍ଡ ଘେନ ଯାଅ ରାଜ୍ୟକୁ ଏକ୍ଷଣି ।
ଏହା କହି ନମନ୍ତ୍ରଣ ଦେଲାକ ନକୁଳ
ଚୂଡ଼ଙ୍ଗ ବୋଇଲା ଆଜ ଉଦ୍ଧ ମୋର ଆଳ ।
ନକୁଳ ବୋଲେ ହେଜନେ ନାହିଁ ମୋର ଇଚ୍ଛା
ତୁମ୍ଭେ ଚଳିଲେ ମୋହର ପୂରବ ଯେ ବାଞ୍ଛା
ତୁମ୍ଭ ଏବେ ଦଣ୍ଡ ଚଢ଼ି ବେଗେ ଯାଅ ବାହୁ
ତୋ ଥାଟ ସହିତେ ଥିବୁ ଯମପ୍ରସ୍ଥେ ରହି ।
ନକୁଳର ଆଜ୍ଞାରେ ଯେ ଚୂଡ଼ଙ୍ଗ ନୃପତି
ବାନପ୍ରସ୍ଥ-ଯୁକତେ କଲା ବହୁତ ଭକତି ।
ଅଯଥା ବିଳମ୍ବ ହେଲେ ନ ବର୍ତ୍ତିବେ କେହି
ଜଗନ୍ନାଥ କୋପେ ପ୍ରାଣ ନ ପାରିବ ରହି ।

ବାଜିଲା ଯେ ବଜ୍ରଘୋଷ ଚମକ ବାଜଣ୍ଡି
ପ୍ରବାଳ ରଙ୍ଗକୁ ଜିଣି ରଥ ଦେଲେ ମଣ୍ଡି ।
ସେ ନଗ୍ରକୁ ଜୟ କରି ନକୁଳ ବାହାରି
ଦ୍ଵିଜ ନଗରେ ପ୍ରବେଶ ପାଣ୍ଡବ ସୁନ୍ଦର ।
ପରଥାଟ ଆସିବାର ରାଜ୍ୟେ ବାର୍ତ୍ତା ଶୁଣି
ଯମନ୍ତକ ରାଜା କରେ ଥାଟର ଗଣଣି ।
ଅଇବୃତ ରଥ ଦଶ ଅଇବୃତ ହସ୍ତୀ
ସ୍ଵରଲକ୍ଷ ଅଶ୍ଵ ପାଞ୍ଚଯଉଣୀ ପଦାତି ।
ଯମନ୍ତକ ବୋଲିକରି ଯେଉଁ ନୃପବର
ତେଲଙ୍ଗୀ ଲକ୍ଷ୍ମୀ ଅଟଇ ଜାତି ଦ୍ଵିଜବର ।
ବାନପ୍ରସ୍ଥ ଉତରେ ଅଟେ ତା ନଗର ଗୋଟି
କାହାର ସେ ବଶ ନୁହେଁ ମହତ ସ୍ଵଜାତି ।
ନକୁଳ ପ୍ରବେଶ ହେଲେ ତାହାର ନଗ୍ରରେ
ବୀର ତୂର ବାଦ୍ୟ ନାଦେ ଦଶଦିଗ ପୂରେ ।
ସାଜ ସାଜ ରତ୍ନବର ବୀର ମଧ୍ୟମନ୍ତ୍ରୀ
ଯମନ୍ତକ ରାଜା ଉଣେ ବିଷମ ଶକତା ।
ତାହାକୁ ପ୍ରସନ୍ନ ଏକବଳା ଯେ ପାର୍ବତୀ
ପରଥାଟ ବାର୍ତ୍ତା ଶୁଣି ଦେବୀଙ୍କୁ ଜଣାନ୍ତି ।
ବସ୍ତ୍ରବଳି ଦେଇ ପାଦେ ପଡ଼ିଣ ବିନୟେ
ବୋଲେ ବିଦେଶୀ ରାଜାକୁ କି କରିବା ମାୟେ
ପ୍ରସନ୍ନ ହୋଇ ବୋଇଲେ ଏକବଳା ଦେବୀ
ପରଥାଟ ହେଲେ ଚିନ୍ତା ତାକୁ କି ବାରିବ ।
ପାଣ୍ଡବ ପଞ୍ଚାଣ ସେହୁ ନକୁଳ କୁମାର
ଉଗ୍ରକ ନିମନ୍ତେ ସେହୁ ଆସେ ତୋର ପୁର ।
ପୃଥିବୀରେ ସ୍ଵରଉଣା ଲକ୍ଷେକ ରାଜନ
ସର୍ବେ ପାଣ୍ଡବମାନଙ୍କ ହେବେ ସମାଧାନ ।
ଯାହାକୁ ସହାୟ ସଦା ଅଟନ୍ତି ଶ୍ରୀପତି
ମୁହିଁ ବା ଅବଜ୍ଞା କଲେ କିସ ଭଲ ଅଛି ।
ପୃଷ ବନ୍ଧୁ କୁଟୁମ୍ବାଦି ଘେନିଣ ନୃପତି
ନକୁଳ ପ୍ରାପ୍ତକୁ ଯାଇ କରିବୁ ଭକତି ।
ଦେବୀଙ୍କର ଆଜ୍ଞାମାତ୍ରେ ସେହି ନୃପବର
କୁଟୁମ୍ବାଦି ଘେନି ସଙ୍ଗେ ହୋଇଲା ବାହାର ।
ଯମନ୍ତକ ଦରଶନ କରିଲାକ ବାଟେ
ଯଦ୍ୟପି ନିକଟରେ ଯାଇକରି ଭେଟେ ।
ପୃଷ କୁଟୁମ୍ବାଦି ଘେନି ଦ୍ଵିଜନଗ୍ର ସ୍ଵାମୀ
ନକୁଳର ପାଦେ ଯାଇ ହେଲା ପ୍ରଣାମି ।

ଶ୍ରୀହସ୍ତେ ନକୁଳ ଦେଲେ ଅକ୍ଷତ ଯେ ଗୁଆ
ବୋଇଲେ ତୁ ଯମପ୍ରସ୍ଥେ ବେଗେହୋଇ ଯାଆ
ନକୁଳର ଆଜ୍ଞା ରାଜା ନବେଶିଣ ଶିରେ
ସମଦଣ୍ଡ ଘେନି ବେଗେ ନଗରୁ ବାହାରେ ।
ଚଳନ୍ତି ସେ ନକୁଳଙ୍କର ଥାଟକୁ ଚଳାଇ
ପଦ୍ମନାଭ ପର୍ବତରେ ବିଜେକଲେ ଯାଇ ।
ସୈନ୍ୟ ଘେନିଣ ଉଠିଲେ ଚଢ଼ିର ଉପରେ
ଦେଖେ ଏକ ନାରାୟଣ ମନ୍ଦିର ସେଠାରେ ।
ଶିରେ ସପ୍ତଫଣା ହୃଦେ କଉସ୍ତୁଭ ମଣି
ଅନନ୍ତ ଶଯ୍ୟାରେ ନିଦ୍ରା ଦେବ ମାନ ଜିଣି
ସୀମସ୍ଥାନେ ବସିଛନ୍ତି ଦେଖି ସନ୍ତୁଷ୍ଟି
ସପ୍ତସ୍ୱର ବୀଣା ଘେନି ରାଗିଣୀ କରନ୍ତି ।
ନିଦ୍ରା ଯାଇଛନ୍ତି ପ୍ରଭୁ ବ୍ରହ୍ମଯୋଗ ଲୟେ
ଚରଣ ତଳେ ଖଟନ୍ତି ସର୍ବ ଦେବତାଏ ।
ପାଦ ନଖରୁ ବହଇ ନଦୀ କୃଷ୍ଣାବେଣୀ
ପାଦ ମଞ୍ଜି ଲକ୍ଷ୍ମୀ ବସି ଦେଖି କମଳିନୀ ।
ସେ ଅନାଦିନାଥ ଯୋଗନିଦ୍ରାରେ ନିଦ୍ରିତ
ନାନା ବିଭୂଷଣ ଦେହେ ଦିଶନ୍ତି ଶୋଭିତ ।
ସ୍ୱାମି ଶ୍ରୀଜନ ଶୟନ ତୋର ହୃଦଗତେ
ବିଷାଦ ଖଣ୍ଡଇ ପଦ୍ମନାଭ ସୁମରନ୍ତେ ।
ଜରାବସ୍ଥାରୁ ଉତ୍ପତ୍ତି ହୁଏ ସର୍ବ ବ୍ୟାଧି
ପଦ୍ମନାଭଙ୍କର ନାମ ଚର୍ଚ୍ଚି ମହୌଷଧି ।
ସମସ୍ତ ରୋଗ ଖଣ୍ଡଇ ଯା ଅମୃତ ଦୃଷ୍ଟି
ଯମଦଣ୍ଡ ନିବାରଣ ତାଙ୍କ ନାମଗୋଟି ।
ନମସ୍ତେ ନମସ୍ତେ ଦେବ ଜୟ ପଦ୍ମନାଭ
ନମସ୍ତେ ନମସ୍ତେ ଦେବ ଜୟ ବାସୁଦେବ ।
ଶ୍ରୀପଦ୍ମନାଭ ଚରଣେ ସଦା ମୋର ଆଶ
ଶାରଳାଦାସ କରଇ ନିରତେ ଅଭ୍ୟାସ ।

---

## ଶ୍ରୀଗିରି ପର୍ବତେ ତ୍ରେତୟା ଯୁଗର ସୁଷେଣଙ୍କ ବିବରଣ ଓ ନକୁଳର ଇଚ୍ଛାପୁର ରାଜା ସହିତ ଯୁଦ୍ଧ ଓ ତାହାର ପଳାୟନ ଏବଂ ଅନ୍ୟାନ୍ୟ ରାଜାଙ୍କ ନିମନ୍ତ୍ରଣ

କୁମ୍ଭ ଋଷିର ନନ୍ଦନ ବଦନ୍ତି ଅଗସ୍ତି
ପଦ୍ମନାଭ ପର୍ବତରେ ପ୍ରବେଶ ହୁଅନ୍ତି ।
ସୁରଶତ ରାଜା ଚର୍ଚ୍ଚି କଲେ ଦରଶନ
ସେ ପର୍ବତରେ ରହିଲେ ସର୍ବେ ଏକଦିନ ।
ସୁରଶତ ନରପତି ନିମନ୍ତ୍ରଣ କରି
ଚଳିଲେ ସେ ରାଜାମାନେ ଯମପ୍ରସ୍ଥ ପୁରୀ ।
ବଦନ୍ତି ଅଗସ୍ତି ଭୂମନ୍ଥ ଶୁଣ ମହାତ୍ମା
ସେ ପର୍ବତରୁ ନକୁଳ ଗଲେ ଦଣ୍ଡ ଘେନି ।
ଭୁଜଙ୍ଗ ସ କୃଷ୍ଣପକ୍ଷ ପୁଣି ରବିବାର
ସ୍ୱାତୀ ତୁଳାରାଶି ଯୋଗ ଥିଲା ସେ ଦିନର ।
ଚତୁର୍ଥୀର କରଣ ଯେ ପ୍ରୀତିନାମେ ଯୋଗ
କୁଳ ସନ୍ଧ୍ୟାନ୍ତକ ଏଗାର ଦିବସ ଭୋଗ ।
ସେହିଦିନ ନକୁଳଙ୍କର ଦଣ୍ଡକୁ ଚଳାଇ
ରୁଦ୍ରଗିରି ପର୍ବତରେ ପ୍ରବେଶିଲେ ଯାଇ ।
ବାଜଇ ଯେ ବାଦ୍ୟତୂର ଟମକ ନିଶାଣ
ମହୀ ହେଲା ଯେ ଘେନଇ ଯେସନ୍ତେ ବଜ୍ରବାଣ
ମାନଧାତା ବୋଲିକରି ନଦୀ ଏକଗୋଟି
କୃଷ୍ଣନଦୀର ଦକ୍ଷିଣଦିଗେଁ ସେହି ଫୁଟି ।
ସାଗର ସଙ୍ଗମ ସେତୁ ଦୁଇ ଧବଳାଙ୍ଗୀ
ସ୍ୱଚ୍ଛ ଗମ୍ଭୀର ନୀର ତା ନୁହଇ କୃଶାଙ୍ଗୀ ।
ସେ ନଦୀରେ ସ୍ନାନକରି ମାଦ୍ରୀର ନନ୍ଦନ
କାବେରୀ ରାଜ୍ୟରେ ଯାଇ ପ୍ରବେଶ ବହନ ।
ବେଗବନ୍ତ ସାରଥି ବାହେ ବେଗକର ରଥ
ବିଜେ ମାଦ୍ରୀର ନନ୍ଦନ ସେ କାବେରୀ ପ୍ରସ୍ଥ ।
କାବେରୀ ନଦୀ ହୋଇଛି ଶୀଘ୍ରଗାମିନୀ
ସେ ନଦୀରେ ସ୍ନାନକଲେ ନକୁଳ ସଇନ ।
ବାଦ୍ୟତୂର ବାଦ୍ୟ ବାଜେ ଜରଣ ଶବଦ
ନାନା ରାଜ୍ୟକୁ ଶୁଭିଲା ତାହାର ସେ ନାଦ ।
ବିଜୟ ନଗରବାସୀ ସମସ୍ତେ ଜାଣିଲେ
ସମଦଣ୍ଡ ଘେନ ସର୍ବ ଯୋଦ୍ଧା ଉଜଡ଼ିଲେ ।
ନକୁଳ ପ୍ରବେଶ ହେଲେ ଶ୍ରୀଗିରି ପର୍ବତେ
ରାଜାଏ ଦର୍ଶନ କଲେ ଆସିଣ ସମସ୍ତେ ।
କାଞ୍ଚି ନଗର ଆଜାନୁ ରାଜା ଚକ୍ରବର୍ତ୍ତୀ
ତାକୁ ଖଟଇ ପଞ୍ଚାଶ ସହସ୍ର ଯେ ହାତୀ
ଲକ୍ଷର ଅଟ ଦ ଅଟଇ ତାର ଅଶ୍ୱବଳ
ପାଞ୍ଚ ଅକ୍ଷୌହିଣୀ ଛନ୍ତି ପଦାତି କେବଳ ।
ବଡ଼ ପୁଣ୍ୟବନ୍ତ ରାଜା କାବେରୀ କୂଳରେ
ମହା ବିସ୍ତାର ରାଜ୍ୟ ତା କିଏ କହିପାରେ ।

କାଞ୍ଚି ନଗର ବୋଲିଣ ଜଗତରେ ଜାଣି
ବହଇ କାବେରୀ ନଦୀ ସମ୍ମୁଖରେ ପୁଣି ।
କେଶାଙ୍କର ଜଣାଇଲା ରାଜାର ଅଗ୍ରତେ
ସ୍ୱାମି ଶୁଣ ପରରାଷ୍ଟ୍ର ବାରତା ଏମନ୍ତେ ।
ସୋମବଂଶୀକ ଅଟନ୍ତି ଯୁଧିଷ୍ଠି ନୃପତି
ତାଙ୍କ ପିତା ବ୍ରହ୍ମହତ୍ୟା ପାପ କରିଛନ୍ତି ।
ତହିଁପାଇଁ କରୁଛନ୍ତି ରାଜସୂୟ ସତ୍ର
ଲକ୍ଷେ ନୃପତି କରନ୍ତେ ଯାଇଁ ତାଙ୍କ ସେବା ।
ଆକାଶୁ ଆସିବେ ମଧ୍ୟ ସର୍ବ ବୃନ୍ଦାରକେ
ପାତାଳପୁରୁ ଆସିବେ ଦେବତା ଏ ଲୋକେ ।
ନନେ ଯଜ୍ଞ ରଚନ୍ତି ଦେବ ଜଗନ୍ନାଥେ
ଯେ ରାଜା ନ ଯିବ ନାଶହେବ ଶରଘାତେ ।
ପଶ୍ଚିମକୁ ଭୀମସେନ ଉତ୍ତରେ ଅର୍ଜୁନ
ଦକ୍ଷିଣେ ନକୁଳ ପୂର୍ବେ ସହଦେବ ଜାଣ ।
ସ୍ୱରଦଗକୁ ଗମିଲେ ସେହି ଚାରିଭାଇ
ରାଜାମାନଙ୍କୁ ନିମନ୍ତ୍ରି ଆଣିବାର ପାଇଁ ।
ସ୍ୱରଭୁଣା ଲକ୍ଷେ ରାଜା ନେବେ ସେ ନିମନ୍ତ୍ରି
ଯେ ରାଜା ଅସାଧ୍ୟ ହୁଏ ତାହାକୁ ମାରନ୍ତି ।
ସ୍ୱାମି ଦଣ୍ଡ ସାଜ ବେଗେ ଯଜ୍ଞସ୍ଥଳେ ଯିବା
ଭୁଜଙ୍ଗ ଭଦ୍ରା ନଦୀକୂଳେ ଦର୍ଶନ କରିବା ।
ସ୍ୱରଙ୍କ ବଚନେ ରାଜା ମନ୍ତ୍ରୀଙ୍କ ପଚାର
ବହୁତ ଭାବିଲା ମନ୍ତ୍ରୀ ରାଜାଙ୍କ ଛାଆର ।
ସ୍ୱାମି ସୈନ୍ୟ ସେନା ତରି ଶ୍ରୀଗିରି ପର୍ବତ
ରାଜ୍ୟେ ଆଣିବା ନକୁଳ କରି ପୁରୁଷାର୍ଥ ।
ଦର୍ଶନେ ପୁଣ୍ୟ ପ୍ରସନ୍ନେ ହେବ କାର୍ଯ୍ୟସିଦ୍ଧି
ଯୁଦ୍ଧରେ ନ ଗଲେ ସ୍ୱାମି ହେବ ମନ୍ଦବୁଦ୍ଧି ।
ମନ୍ତ୍ରୀର ବଚନେ ରାଜ୍ୟ ସାଜନ୍ତକ ଦଣ୍ଡ
ବାଦ୍ୟ ନାଦରେ କମ୍ପିଲା ସେ ଭୁବନଖଣ୍ଡ ।
ଦୁଇଶତ ରାଣୀ ଭୂଲେ ଗୃହପ୍ରଜ ଧରି
ଶ୍ୱେତ ଅଶ୍ୱ ଆରୋହଣ କଲେ ଦଣ୍ଡଧାରୀ ।
ନୃପତି ବଜାଏ ଯାଇ ଶ୍ରୀଗିରି ପର୍ବତେ
ଆଗେ କରିଲା ଦର୍ଶନ ଶ୍ରୀମଲ୍ଲିକାନାଥେ ।
ଏହି ପରକାରେ କରି କାବେରୀର ସାଇଁ
ନକୁଳ ସମ୍ମୁଖରେ ଆସି ଦର୍ଶନ କରଇ ।
ନକୁଳ ବସିଅଛନ୍ତି ସୁବର୍ଣ୍ଣ ଆସନେ
ପର୍ବତ ତଳେ ଭେଟିଲ ରାଜା ତତକ୍ଷଣେ ।

ରୋହନ୍ତ ସାରଥି ଯାଇ କହେ ନକୁଳଙ୍କୁ
କାଞ୍ଚିରାଜା ଦରଶନ କରଇ ତୁମ୍ଭଙ୍କୁ ।
ବଡ଼ ପୁଣ୍ୟବନ୍ତ ରାଜା ଦକ୍ଷିଣ ପ୍ରଦେଶେ
ଲକ୍ଷ୍ମୀ ଭଜେ କରନ୍ତି ପ୍ରତି ପ୍ରଜାବାସେ ।
ପୂର୍ବେ ରାଜ୍ୟ କରୁଥିଲେ ମହୀନ୍ଦ୍ର ନୃପତି
ବିଷ୍ଣୁ ବଲ୍ଲଭଙ୍କୁ ସେବା କରଇ ଭକତି ।
କମଳାଙ୍କ ପ୍ରସାଦରେ ଅଭୁଟ ଏ ରାଜ୍ୟ
ତେଣୁ ସର୍ବଦେଳେ ଥାଏ ସେ ରାଜ୍ୟେ ଐଶ୍ୱର୍ଯ୍ୟ
ଘରେ ଘରେ କମଳମା ଥାନ୍ତି ବିଜେକରି
ଅଳକା ଭୁବନ ସରି କାଞ୍ଚିନଗ୍ର ପୁରୀ ।
କନକ ରଚଣ ଅଟେ ସମସ୍ତଙ୍କ ବାସ
ସର୍ବ ଗୃହ ଶିଖେ ପୁଣି ସୁବର୍ଣ୍ଣ କଳସ ।
କେତେର ପତାକା ଉଡେ ହୋଇ ଫରହର
ବିଷ୍ଣୁ ଭବନ ପରାଏ ରାଜ୍ୟଟି ସୁନ୍ଦର ।
ସେ ନଗରେ ନବଲକ୍ଷ ଗୃହ ଅଛି ରହି
ରଞ୍ଜବଂଶ ମୁଣ ସିନା ପାଟେଶ୍ୱ ଦେଉଳ ।
ଏମନ୍ତ ଭୁବନ ମଧ୍ୟେ ମହା ପୁଣ୍ୟଭୂମି
ସତ୍ୟଯୁଗେ ଯାଗକଲା ସେ ମହୀନ୍ଦ୍ର ସ୍ୱାମୀ ।
ପ୍ରସନ୍ନେ କାବେରୀ ନଦୀ ରାଜ୍ୟକୁ ବେଢିଛି
ଧନ ଧାନ୍ୟେ ସେ ରାଜାଙ୍କୁ କୁବେର କରିଛି ।
ରୋହନ୍ତ ବାକ୍ୟେ ନକୁଳ ହେଲା ତୋଷମନ
ତେଣୁକରି ରାଜା ପ୍ରତି ପକାଏ ନୟନ ।
ଉଠ ବୋଲି ଆଜ୍ଞା ଦେଲା ମାଦ୍ରୀ ଦେବୀ ବାଳ
ପୁଣ ପୁଣ ପ୍ରଣମଇ ରାଜା ପାଦତଳ ।
ସର୍ବ ରାଜା ଏକ ଏକ ମୁକ୍ତାମାଳା ଘେନ
ଦେଇଥିଲେ ନକୁଳର ଯେ ପ୍ରଧାନ ସୈନ ।
ସପ୍ତସର ମାଳା ଘେନ ଆଜାନୁ ନୃପତି
ନକୁଳ କଣ୍ଠେ ଲମ୍ବାଏ ହୋଇ ଶାନ୍ତମୂର୍ତ୍ତି ।
ମୁକୁଟ ସିନ୍ଥା ବାହୁଟି ପୁଣ ଜଗଦ୍‌ବଳା
ତାଡ଼ କୁମ୍ଭା ସଇନ ଯେ କଣ୍ଠେ ରତ୍ନମାଳା ।
ଅନେକ ରତନ ଘେନ କାଞ୍ଚୀନଗ୍ର ରାଜା
ନକୁଳ କୁମରକୁ ସେ କଲା ଦ୍ରବ୍ୟ ପୂଜା ।
ଶ୍ରୀମଲ୍ଲିକା ଅର୍ଜୁନ ଦର୍ଶନ ନିମନ୍ତେ
ଶ୍ରୀରାମ ଜଙ୍ଗମ ବୋଲି ତହିଁରେ ନୃପତେ ।
ରୁଦ୍ରଚିହ୍ନ ବହଇ ସେ ଜଟା କଷାଧାରୀ
ଶ୍ରୀହରି ପର୍ବତେ ସେବୁ ଶେଷ ଅଧିକାରୀ ।

ସେ ଶ୍ରୀମଲ୍ଲିକା ସ୍ୱାମୀଙ୍କ କରଇ ଯେ ପୂଜା
ଶତଲକ୍ଷ ଜଙ୍ଗମ ସେ ଅଟନ୍ତି ରାମରାଜା ।
ରାମ ଜଙ୍ଗମ ଦେଖାଇ ଶ୍ରୀମଲ୍ଲିକା ନାଥ
ପ୍ରତ୍ୟକ୍ଷ ହୋଇ ସେ ସ୍ୱାମି ବୋଇଲେ ଗୁପତ ।
ସେହି ମର୍କଟ କଣ୍ଠରେ ବୈଦୂର୍ଯ୍ୟ ତାଙ୍କୁଣୀ
ଶୁଦ୍ଧ ସ୍ୱର୍ଣ୍ଣ ଉପରେ ହୋଇଛି ରଖାଣି ।
ରାମଜଙ୍ଗମଙ୍କୁ ତହିଁ ପୂଜିଲେ ନକୁଳ
ଭବ ଏହାଙ୍କ ବଂଶସ୍ଥ ଜଣ ଆଦ୍ୟମୂଳ ।
ଶୁଣି ନକୁଳ ଅଗ୍ରତେ କହଇ ଜଙ୍ଗମ
ଦଶଶିର ରାବଣଙ୍କୁ ବଧିଣ ଶ୍ରୀରାମ ।
ଏହି ଶ୍ରୀଗିରି ପର୍ବତେ ଭଜେ କଲେ ଆସି
ଏ ନଦୀକୂଳେ ଲିଙ୍ଗକ କରିଲେ ସେ ବଂଶୀ ।
ଶ୍ରୀରାମଚନ୍ଦ୍ର ସୁଷେଣ ଅଛିଲେ ଡକାଇ
ବୋଇଲେ ଏଥିରେ ତୋତେ ରଜା କରିବଇଁ
ସୁଷେଣ ବୋଲେ ନହୁଏ ମୋତେ ଅନ୍ୟଭୂମି
ଅନୁବ୍ରତେ ତୋର ପାଦେ ଘଟିଥିବ ସ୍ୱାମି ।
ସୁଷେଣଙ୍କୁ ଆଜ୍ଞା ଦେଲେ ରଘୁ ବନ୍ଧୁ ଏଥେ
ଅଭିଷେକ କରାଇବ କାଲି ମୁହିଁ ତୋତେ ।
ଶ୍ରୀଗିରି ପର୍ବତରେ ସେ ରହିଲା ସୁଷେଣ
ଶ୍ରୀରାମ ଭଜେ କରିଲେ ଭବସ୍ଥ ନରେଶ ।
ସ୍ୱାମି ହେ ଜନପଦଗ୍ରୀ ବୋଲି ନଦୀଟିଏ
ଏଥେ ସ୍ନାନ କଲେ କଲ୍ପେ ନ ଛୁଟଇ ପାପେ
ସୀତାଦେବୀ ଶୁଣିଲେ ସେ କଲ୍ପ ମହାତମ
ନଗ୍ନସ୍ନାନେ ବାହାରିଲେ ସୀତସ୍ଥା ଶ୍ରୀରାମ ।
ବ୍ରହ୍ମା ଦେଖିଣ ବୋଇଲେ ନଗ୍ନକ ହକାର
ରାମ ସୀତା ଆସୁଛନ୍ତି ଏବେ ସ୍ନାନ କର ।
ତୋ ତହିଁ ସ୍ନାନ ସେ କଲେ ହେବେ କଳ୍ପଗାମୀ
ପାପ ହରଣ କେମନ୍ତେ ହୋଇବ ପୃଥିବୀ ।
ଲକ୍ଷ୍ମୀ ନାରାୟଣ ଜନ୍ମ ହୋନ୍ତି ପୁନଃ ପୁନଃ
ତେବେ ଯାଇ ବାନରଙ୍କ ହୁଅଇ ନିଧନ ।
ଏମନ୍ତ ଅନୁଜ୍ଞା ଯହୁଁ ଦେଲା ଧାତା ସ୍ୱାମୀ
ଏ କଳ୍ପନଗ୍ନୀ ହୋଇଲା ରସାତଳଗାମୀ ।
ଶ୍ରୀରାମ ଜଙ୍ଗମ କହେ ବୀର ନକୁଳକୁ
ତେଣୁକରି ଗଙ୍ଗା ହୋଇ ଗଲା ପାତାଳକୁ ।
ଯାଇ ଭୂତଳରେ ଗୋପ୍ୟ ହୋଇଲା ଜାହ୍ନବୀ
ତହୁଁ ରାଗେ ଶାପ ଦେଲେ ମା ଜାନକୀ ଦେବୀ ।
ମୋତେ ଦେଖି ଲୁଚି ଯେବେ ପଶିଲୁ ପାତାଳେ
ଗୋପନଗାମୀ ତୁ ହୋଇଥାଅ ସର୍ବକାଳେ ।
ଜାନକୀ ଶାପରେ ତେଣୁ ହୋଇଲା ଅଗତ
ସୁଷେଣେ ପାଟ ଦେବାକୁ ଲୋଡିଲେକ ଏଥି ।
କୃଷ୍ଣମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ
ଗୁରୁବାର ପୁନର୍ବସୁ ନକ୍ଷତ୍ର ଯେ ଜାଣ ।
କୌଳବ ନାମେ କରଣ ବେଳ ଅସ୍ତଗତେ
ସୁଷେଣର ପ୍ରାଣତ୍ୟାଗ ହେଲା ଏ ପର୍ବତେ ।
ହନୁଙ୍କ ଡାକି ବୋଇଲେ ଦେବ ଦାଶରଥି
ଅଭିଷେକର ଯୋଗାଡ଼ କର ଯା ଚଉଡ଼ଶ ।
ସ୍ୱାମୀ ଆଜ୍ଞା ଶିରେ ଧରି ଚଳଇ ପାବନ
ଶ୍ରୀଗିରି ପର୍ବତେ ହନୁ ପ୍ରବେଶ ରଜନୀ ।
ସୁଷେଣ ସେ ଭକ୍ତିରଇ ପର୍ବତରେ ବସି
ଶ୍ରୀରାମ ହୃଦୟ ମୋତେ ସର୍ବ ଗୁଣରାଶି ।
ମୁହିଁ ଭକ୍ତି ବିଦ୍ୟା ନଗରୁ ଗୋଡାଇ ଅଇଲ
ଶ୍ରୀଚରଣେ ଘଟିବାକୁ ଭଜନ ନୋହିଲ ।
ମୋତେ ଆଜ୍ଞା ଦେଲେ ଭୂତ ରଜା ହୁଅ ଏଥେ
ସ୍ୱାମୀ ପାଦ ନ ଦେଖି ମୁଁ ବର୍ତ୍ତିବି କେମନ୍ତେ
ଶରୀର ଛାଡ଼ି ମୋହର ପଞ୍ଚଭୂତ ଆତ୍ମା
ଏତେ ବୋଲି ନାସିକରେ ହସିଲା ମହାତ୍ମା ।
ଶ୍ରୀରାମ ବୋଲି ଶବଦେ ଏକ ଡାକଦେଲା
ପଞ୍ଚଭୂତ ଆତ୍ମାରୁ ସେ ପରାଣ ଛାଡ଼ିଲା ।
ଏହି ପର୍ବତେ ଛାଡ଼ିଲା ତାର କାୟ ଗୋଟି
ଶ୍ରୀରାମଙ୍କୁ ସୁମରି ସେ ପଡ଼େ ମହୀଲୋଟି ।
ଏମନ୍ତ ସମୟେ ହନୁ ହେଲା ଉପସ୍ଥିତ
ଦେଖିଲେ ସୁଷେଣ ମନ୍ତ୍ରୀ ହୋଇଅଛି ହତ ।
ହନୁ ଡାକଇ କାଞ୍ଚନ ରାଜବଳା ଉଠ
କେତେ ନିଦ୍ରାଯାଉ ରାତ ପାହିବା ନିକଟ ।
ରାବଣ ଯୁଦ୍ଧରେ ତୁମ୍ଭ ଅନିଦ୍ରାରେ ଥିଲୁ
ସୁଖ ପାଇ ଅଚିନ୍ତାରେ ଏବେ ନିଦ୍ରା ଗଲୁ ।
ପୁଣି ପଚାରଇ ହନୁ ସନ୍ନିଧିକୁ ଆସି
ନ ଚଳେ ନାସିକା ବାୟୁ ନ ବଏ ସନ୍ତାପି ।
କୋଳକରି ସୁଷେଣକୁ ତୋଳେ ହନୁମନ୍ତ
ଦେଖେ ଆତ୍ମା ନାହିଁ ଯହୁଁ ରଖେ ସେ ପର୍ବତ
ଆହା ସୁଷେଣ ବୋଲିଣ କାନ୍ଦେ ହନୁମନ୍ତ
ବାବୁ କେଉଁ ପାପେ ହେଲୁ ତୁମ୍ଭ ମୃତ୍ୟୁଗତ ।

ତାକୁ ସ୍ନାନ କରିଥାନ୍ତେ ତୋତେ ଅଭିଷେକ
ଏ ରାଜ୍ୟରେ ହୋଇଥାନ୍ତୁ ନୃପତି ନାୟକ ।
ଅନେକ ଜନ ମାନଙ୍କେ କରୁଥାନ୍ତେ ପୂଜା
ଏବେ କାହିଁପାଇଁ ତାହା କରିଲୁ ତୁ ତେଜ୍ୟା
ଅନେକ ବକଳ ଗର୍ବେ କାନ୍ଧ ହନୁମାନ
ରାମତାରକ ମନ୍ତ୍ରକୁ କହେ ତାର କର୍ଣ୍ଣ ।
ପର୍ବତେ ଗୋଇଠା ଏକ ପ୍ରହାରିଲା ହନୁ
ତନତାଳ ଗମ୍ଭୀରରେ ପୋତିଲା ତା ତନୁ ।
ମଲ୍ଲିକା ପୁଷ୍ପଗୁଡ଼ିଏ ଘୋଡ଼ାଇ ଉପରେ
କୃଷ୍ଣାଜିନ ସ୍ଥଳ ପୁଣ ଘୋଡାଇ ଯତ୍ନରେ ।
ଏହି ପ୍ରକାରେ ତହିଁ କରାଇ ପାବନ
ଶ୍ରୀରାମ ବଜେ କରିଲେ ସମଦନ୍ତ ଭୋଜନ ।
ଧାଡକାରେ ଉଠିଲେ ସେ ପର୍ବତ ଉପରେ
ପଦ୍ମାସନେ ବଜେ ହେଲେ ଯାଇ ସେ ସ୍ଥଳରେ
ହନୁଙ୍କୁ ଆଜ୍ଞା କରିଲେ ସୁଷେଣକୁ ଆଣ
ଏ ପର୍ବତେ ଅଭିଷେକ କରିବା ଏକ୍ଷଣ ।
ବୀର ହନୁମନ୍ତ କହେ ଶ୍ରୀରାମ ଅଗ୍ରତ
ସୁଷେଣ ଯେ ପ୍ରାଣତ୍ୟାଗୀ ହେଲା ଏ ପର୍ବତେ
ଲକ୍ଷ୍ମଣ ବୋଇଲେ ତାର କାହିଁ ଅଛି ଶବ
ଏହି ପର୍ବତରେ ମୁହିଁ ପୋତିଅଛି ଦେବ ।
ସୁଷେଣକୁ ଆଣ ବୋଲି ଆଜ୍ଞା ଅବଧାରି
ଲକ୍ଷ୍ମଣ ସମ୍ମୁଖରେ କହେ କର ଯୋଡ଼ିକରି ।
ସ୍ୱାମୀ ରଜା ହୋଇବାକୁ ସୁଷେଣ ଅନିଚ୍ଛା
ତୋ ଚରଣ ସେବିବାକୁ ସର୍ବଦା ତା ବାଞ୍ଛା
ଏ ଗିରି ପର୍ବତେ ଅଭିଷେକ କଥା ଶୁଣି
ପ୍ରାଣ ବିସର୍ଜନ କଲା ଆଜର ରଜନୀ ।
ଶ୍ରୀରାମ ସ୍ତମ୍ଭିତ ହେଲେ ଏହି କଥା ଶୁଣି
ହା ହା ସୁଷେଣ ତୁ ମୋର ଥିଲୁ ପ୍ରାଣମଣି ।
ଲଙ୍କା ଭୁବନ କରିଲୁ ତୋର ଯେନ ବୁଦ୍ଧି
ଲକ୍ଷ୍ମଣର ପ୍ରାଣ ଦେଲୁ ଜଡ଼ି ମହୌଷଧି ।
ହନୁ ହକାରି କହନ୍ତି ରଘୁକୁଳପତି
ସୁଷେଣର ମୃତପଣ୍ଡ ଆଣ କାହିଁ ଅଛି ।
ହନୁମନ୍ତ ବୋଲେ ଦେବ ତୋ ଆସନ ତଳେ
ପ୍ରାଣ ବିସର୍ଜନ୍ତେ ତାକୁ ପୋତେ ଗନତାଳେ
ହନୁମନ୍ତର ବଚନେ ରାମଚନ୍ଦ୍ର ଉଠି
ଲକ୍ଷ୍ମଣ କାଢ଼ିଲେ କୃଷ୍ଣାଜିନ [illegible] ।

ମଲ୍ଲିକା ପୁଷ୍ପଗୁଡ଼ିକ କାଢ଼େ ହନୁମାନ
ତାରକା ମନ୍ତ୍ର ପଢ଼ିଲେ ପୁଣ ରଘୁନାଥ ।
ଶ୍ରୀରାମ ଚାହିଁଲେ କରି ଅମୃତର ଦୃଷ୍ଟି
ଲିଙ୍ଗେକ ବାହାରି ହେଲା ପର୍ବତକୁ ଫୁଟି ।
ଦେଖିଲେ ଯେ ରଘୁନାଥ ବଡେ ମହାଶମ୍ଭୁ
ହନୁକୁ ବୋଇଲେ ଗିରି ବେଗେ ଖୋଳିବାକୁ
ଶ୍ରୀରାମ ଆଜ୍ଞାରେ ଲିଙ୍ଗ ବେଢ଼ାଇଣ କାଟି
ଲକ୍ଷ ଯୋଜନ ପାତାଳେ ଅଛି ସେହି କଣ୍ଠି
ଦେଖିଣ ସାନନ୍ଦ ହେଲେ ରଘୁକୁଳ ନାଥ
ଶ୍ରୀରାମ ପୂଜିଲେ ତହିଁ ସେହି ବିଶ୍ୱନାଥ ।
ହନୁ ଘୋଡ଼ାଇଣ ଥିଲା ମଲ୍ଲୀରୁ ଗୁଡ଼ାଏ
ଉପରେରେ ଥିଲା କୃଷ୍ଣାଜିନ ସ୍ଥଳଟିଏ ।
ମଲ୍ଲିକାର୍ଜୁନ ଲିଙ୍ଗେକ ହେଲା ଉତପତ୍ତି
ଶ୍ରୀରାମ ନାମରେ ସେହି ଜଙ୍ଗମ ନୃପତି ।
ନକୁଳ ଆଗେ କହିଲା ଶାମ୍ବର ସଙ୍ଗତି,
ପାଣ୍ଡବ ସୁନ୍ଦର ଶୁଣ ହେଲା ତୋଷମତି ।
ଆବର ପୁଣ ଅଶ୍ୱିନୀକୁମାରଙ୍କ ନାମ
ଏ ମହାଲିଙ୍ଗର ନାମ ମଲ୍ଲିକାର୍ଜୁନ ।
ଶ୍ରୀରାମ ଜଙ୍ଗମ କହେ ନକୁଳ ଅଗ୍ରତ
ଖଣ୍ଡଇ ମହାପାତକ ଦୋଷ ଥାଇ ଯେତେ ।
ଜଙ୍ଗମର ବଚନରେ ସେ ନକୁଳ ଯଶୀ
ମଲ୍ଲିକାର୍ଜୁନଙ୍କୁ ବୋଲେ ଫେଡ଼ ମୋ ଦୁର୍ଗତି
କହନ୍ତି ଅଗସ୍ତ ମୁନି ଶୁଣ ଯୋଗେଶ୍ୱର
ନକୁଳ ପ୍ରସନ୍ନେ ନାଥ ଦେଲେ ଆସି ବର ।
ଶୁଣିଲା ଶବଦ ଥାଇ ଅଦୃଶ୍ୟ ଗଗନେ
ସମ୍ଭବନେ ବଳୀ ପୃଥ ଅଶ୍ୱିନୀର ନାମେ ।
ଯେ ଅବା ପାତକ ଥିଲା ତୋହର ଯେ ବଂଶ
ଆଜି ସେ ପାତକ ଯେତେ ସବୁ ଗଲା ଧ୍ୱଂସ ।
ଏଥୁ ଅନନ୍ତରେ ଶୁଣ ନକୁଳକୁମାର
କାନ୍ଦନ୍ତା ଏସ ମଲ୍ଲିକାର୍ଜୁନ ସମ୍ମୁଖ ।
ନୃପତିଙ୍କୁ ବିନନ୍ତି ଅର୍ଘ ସେ କରିଲ
ଦୁଇଜଣ ପଦ୍ମାସନେ ବଜା ଥିଲ ହୋଇ ।
ସମସ୍ତଙ୍କୁ ବିନ୍ତିଲେ ରତ୍ନମାଳା ଦେଇ
ପୁଣ ତାହାଙ୍କୁ କହିଲେ ହୋଇଣ ବିନମ୍ରୀ ।
ରଥ ଗଜ ଅଶ୍ୱ, ଆଦି ଯାଇ ଅଛି ଯେତେ
[illegible] ।

ଦେଖା ଦରଶନା ଧନ ଯେତେ ହୋଇପାରେ
ଯେଉଁ ରୂପେ ପୁରୁଷାର୍ଥ ପାଇବ ସଙ୍ଗରେ ।
ନକୁଳ ବଚନ ଶୁଣି ସର୍ବରାଜା ତୁଷ୍ଟ
ସାଜନ୍ତି ସେ ସମଦଣ୍ଡ ଯେ ଯାହାର ଥାଟ ।
ବାଜନ୍ତି ବାଇତୂର ଟମକର ବାଦ୍ୟ
ଆକାଶ ଉଛୁଳି ପଡ଼େ ସେ ବାଦ୍ୟର ନାଦ ।
ଯେ ଯାହାର ଯେତେ ଥିଲ ଥାଟର ପଲ୍ଲଣି
ଯମପ୍ରସ୍ଥକୁ ଚଳିଲେ ସର୍ବ ନୃପମଣି ।
ରାଜାମାନଙ୍କୁ ଚଳାଇ ସେ ନକୁଳ କ୍ଷତ୍ରୀ
ଦଣ୍ଡ ଘେନଣ ହୋଇଲେ ଦକ୍ଷିଣ ମୂରତି ।
ଦୁର୍ଗନ୍ତକ ବନେ ଅଛି ସୁମନ୍ତ ପର୍ବତ
ସୌଭଗ୍ୟନଗ୍ରୀ କହଇ ତା ପଶ୍ଚିମପ୍ରସ୍ଥ ।
ଇଚ୍ଛାପୁର ବୋଲି ଅଛି ନଗର ଗୋଟିଏ
ସେ ରାଜ୍ୟର ଆୟତନ ଅଟେ ପୁଣ ଶଏ ।
ବାମଦେବ ବୋଲିକରି ତହିଁର ନୃପତି
କର୍ଣ୍ଣଶମର୍ବୁଦ ତାକୁ ଖଟିଥାନ୍ତି ହସ୍ତୀ ।
ଅଶ୍ୱଯୋଦ୍ଧା ପଦାତିକ ନାହିଁ ତାର କଳ୍ପ
ଶତ ଧାରଦଣ୍ଡ ତୁଲେ ରାଜ୍ୟ କରୁଅଛି ।
ସେ ବନସ୍ତ ଲଙ୍ଘିକରି ଚଳଇ ନକୁଳ
ଦଣ୍ଡ ଘେନଣ ଚଳିଲେ ସୌଭାଗୀର କୂଳ ।
ବାଇତୂର ଶବଦରେ କମ୍ପେ ମେରୁସ୍ଥଳ
ସେ ରାଜା କଟକେ ବାଦ୍ୟ ପଡ଼ଇ ଉଛୁଳ ।
ଆସ୍ଥାନେ ବାରତା ଯାଇ କହିଲେ ମୁନେନ୍ଦ୍ର
ଶୁଣ ସାବଧାନେ ଦେବ ବାମଦେବ ସାଇଁ ।
କେଉଁ ଦେଶ ଯୋଦ୍ଧାଏ ତ ବହୁନଗ୍ର ଜିଣି
ବାଦ୍ୟଘୋଷର ଶବଦ ଉଲ୍କାପାତ ଜାଣି ।
ରାଜ୍ୟର ଭିତରେ ସେହୁ ପୂରାଇଲେ ଦଣ୍ଡ
ଗରୁଡ଼ ପରାୟେ ଯୋଦ୍ଧା ଅତ୍ୟନ୍ତ ପ୍ରଚଣ୍ଡ ।
ଶୁଣିଣ ନୃପତି ବହୁ କରିଲେ ପ୍ରତିଜ୍ଞା
ପୁଣହିଁ ଗର୍ଜି ଉଠିଣ କରଇ ଅବଜ୍ଞା ।
ମନ୍ତ୍ରୀବର ବୋଲଇ ଯେ ଶୁଣ ବାମଦେବ
ସଂଗ୍ରାମ କରିବା ହେଉ ପ୍ରତିଜ୍ଞା ସ୍ୱଭାବ ।
ବଡ଼ଇ ଗହନ ଦେବ ପଶ୍ଚିମର ସ୍ଥଳ
ରାଜାଏ ଅଛନ୍ତି ତହିଁ ମହା ମହାବଳୀ ।
ସମରେ ପ୍ରତିଜ୍ଞାବନ୍ତ ଅଟଇ ଅଭୟ
ତାଙ୍କୁ ସମ୍ମୁଖୀନ ହେବ କେବଣ କ୍ଷତ୍ରିୟ ।

ସେ ଦିଗ ସାଧି କରେ ଯା ଭାଇ ଭୀମସେନ
ଉତ୍ତରଦିଗ ଜିଣିଲେ ବୀର ଅର୍ଜୁନ ।
ଏ ନକୁଳ ଦକ୍ଷିଣକୁ କରିଲେ ବିଜୟ
ରାଜସୂୟଯାଗ କରନ୍ତି ଯୁଧିଷ୍ଠିର ରାୟ ।
ସମଦଣ୍ଡ ଘେନି ଚାଲ ଆମ୍ଭେମାନେ ଯିବା
ବହୁ ଗଉରବ କରି ନକୁଳେ ଆଟିବା ।
ତାର ସମ୍ମୁଖୀନ ରଣେ କେ ପାରିବ ମିଳି
ମନ୍ତ୍ରୀମୁଖୁଁ ଶୁଣିକରି ସେ ପ୍ରତିଜ୍ଞାଶାଳୀ ।
କମ୍ପାଇଲେ ନିଜ ଅଙ୍ଗ ହୋଇ ବଇରାଗୀ
ସାଜ ସାଜ ସୈନ୍ୟ ବୋଲି ଧାଇଁଲେ ସେ ବେଗି
ଆକାଶ ଉଛୁଳି ପଡ଼େ ବାଇତୂର ବାଦ୍ୟ
ସମୁଦ୍ର ଗର୍ଜ୍ଜନ ପ୍ରାୟେ ହସ୍ତୀଙ୍କର ନାଦ ।
ପର୍ବତ ପ୍ରାୟେ ଦିଶନ୍ତି ସେହି ମହାନାଗେ
ଏକଗଜେ ଆରୋହିଲେ ମହାରାଜା ବେଗେ ।
ଏକଲକ୍ଷ ଯୋଦ୍ଧା ଘେନି ସଙ୍ଗେ ମହାରଙ୍ଗେ
କଟକୁ ବାହାର ହୋଇ କରିଲେ ବିଜୟେ ।
ତାହାର ହାରକୁ ଆସି ଆଟୋରିଲେ ସୈନ
ଛେଳି ଚଟ ନାଗଟକୁ ଛନ୍ତି କରେ ଘେନି ।
ବହୁତ ପ୍ରତିଜ୍ଞା କଲେ ରାଜା ବାମଦେବ
ରାଜ୍ୟରୁ ବାହାର ହେଲେ ହୋଇ ମତ୍ତଗର୍ବ ।
ଦୁଃସହ ପ୍ରତିଜ୍ଞା କରେ ସେହି ମହାବସ୍ତ୍ର
ଗର୍ଜନରେ କମ୍ପମାନ ହେଲେ ବଇରସ୍ତ୍ର ।
କଟକେ ପଶନ୍ତି ବାମଦେବ ନୃପ ଧାଇଁ
କାହାର ଥାଟ ଏତୁ ରେ ବୋଲି ପଚାରଇ ।
ନବ ନଶି କୁନ୍ତ ଗଦା ଧରିଛନ୍ତି ହସ୍ତେ
ମୁଖ ଶବଦେ ପ୍ରତିଜ୍ଞା କରେ ସାମରଥେ ।
ବାମଦେବ ନୃପତିକୁ ଦେଖି ସୁରନାନ
ବୋଲନ୍ତି ଉଚ୍ଚବାତ ତୁ କରୁ ଅକାରଣ ।
ସୋମବଂଶରେ ନୃପତି ଯୁଧିଷ୍ଠିର ରାୟେ
ରାଜସିଯାଗ କରିବେ ଆସି ଦେବତାଏ ।
ଦକ୍ଷିଣ ଦିଗକୁ ବିଜେ ଅର୍ଜୁନ ଅନୁଜ
ଏହି ନକୁଳ ଅଶ୍ୱିନୀକୁମାର ସାନୁଜ ।
ଦକ୍ଷିଣ ଦିଗେ ଅଇଲେ ରାଜାଙ୍କ ବରଣେ
ନିଜ ସମଦଣ୍ଡ ଘେନିଗଲେ ରାଜାଗଣେ ।
ତୁମ୍ଭେ ଏବେ ସୈନ୍ୟ ଘେନି ଆସୁ କେଉଁଅର୍ଥେ
ରାଜକୁ ଅଭୟ ତୁମ୍ଭେ କରୁ କେଉଁମତେ ।

ଆଃରେ ବାମଦେବ ତୁମ୍ଭ ଅଟୁ ବଡ଼ମୂଢ଼
ପ୍ରତିଲୋକରେ କପାଇଁ ଉପୁଜାଉ ଦ୍ୱନ୍ଦ୍ୱ ।
ମୂର୍ଖ ବର୍ବର କରୁଛ ମରିବାର ବୁଦ୍ଧି
ପାବେ କପାଁ ମର୍ଦ୍ଦନ୍ତୁ ଏଡ଼େକ ସମୃଦ୍ଧି ।
ଶୁଣି ପ୍ରତିଜ୍ଞା କରିଲ ବାମଦେବ ରାଜା
କୁନ୍ତ ଅସିବର ଧରି କରଇ ତର୍ଜନା ।
ନୃପତି ଆଜ୍ଞାରେ ଚଢ଼ନ୍ତି ସକଳ ସଇନ
ବାହୁଲେ ନାରାଚମାନ କରେ ଅସ୍ତ୍ର ଘେନ ।
ଆଗୁଆଣି ଥାଟେ ଥିଲେ ଲକ୍ଷେ ମହାଯୋଧୀ
ଅବକ୍ଷଣ ଶରମାନ ପୂରାଇଣ ଧନ୍ଧ ।
ନାରାଚ ପଡ଼ିବା ଦେଖି ପାଣ୍ଡବଙ୍କ ଥାଟରେ
ସେହି ଶରରେ ବାନ୍ଧିଲେ ରାଜା ସୈନ୍ୟପରେ ।
ନକୁଳ ସଇନଗଣେ ଅତି ବଳବନ୍ତା
ପରଚକ୍ର ସୈନ୍ୟ ତାଙ୍କୁ ନୁହନ୍ତି ଗଣିତା ।
ରେରେକାର ଶବଦରେ ଦେଲେ ଘୋଡ଼ ଉଢ଼
ବାମଦେବ ସଇନକୁ ପଡ଼ିଲେ ସେ ମାଡ଼ି ।
କୁନ୍ତ କୃପାଣ ଗୁରୁଜ ପୁଣି ଖାଷ୍ଟଣ ଶର
ପଡ଼ ନକଳଇ ରାଜା ସଇନ ଉପରି ।
ଘାଏ ଘୂମାଇ ପଡ଼ିଲେ ସର୍ବେ ମୂର୍ଚ୍ଛି ମାଡ଼ି
କାହାର କନ୍ଧ କାହାର ଶିର ପଡ଼େ ଛିଡ଼ି ।
ରେଖାର ରେଖ ର ଅଶ୍ୱ ପୁଣି ମତ୍ତହସ୍ତୀ
ଶରମାନ ଗଳିଯାନ୍ତେ ଭୂମିରେ ପଡ଼ନ୍ତି ।
ଭାଜିଲେ ରାଜାର ସୈନ୍ୟ ହୋଇଣ ବିମୁଖ
ଦନ୍ତରେ ତିରଣ ଧରି ବୋଲନ୍ତି ଯେ ରଖ ।
ସୈନ୍ୟଭଗ୍ନ ଦେଖି ବାମଦେବ ନରନାଥ
ଉଠେ ଦୁଇଅଇରାବତ ହସ୍ତୀର ସହିତ ।
ବହୁ ପ୍ରତିଜ୍ଞା ଦେଖାଇ ସେହୁ ନରସାଇଁ
ଆରେ ଆରେ ବୋଲି ଗଜ ଦେଲକ ଧୁଆଇଁ ।
ନକୁଳର ସୈନ୍ୟ ଥିଲେ ହୋଇ ଆଗୁଆଣି
ମଳୟ ବସନ୍ତ ବନ୍ଧେ ଶର ବେଗେ ଟାଣି ।
କୁନ୍ତ ଭେଳଣ ଦୁଷ୍ମନ୍ତ ନାମେ ସେନାପତି
ବାମଦେବର ହସ୍ତୀକୁ ମାଇଲା ବକୋତି ।
ଘାଏ ଘୂମାଇ ପଡ଼ିଲା ସେହି ମହାନାଗ
ଆରେକ ହସ୍ତୀ ଆରୋହେ ରାଜା ଯାଇ ବେଗ
ଏକ ବଜ୍ର ମୁଦ୍ଗର ନୃପତି ବୁଲାଇ
ବସନ୍ତସେନ ଉପରେ ପ୍ରହାରିଲା ନେଇ ।

ବସନ୍ତସେନ ଘୂର୍ଣ୍ଣିଣ ତାହା ଦେଲ ମେଣ୍ଟି
ପୁଣି ବାମଦେବ ରାଜା ପ୍ରହାରିଲ ଯାଠି ।
ବସନ୍ତସେନ ମେଣ୍ଟିଲ ଆଡ଼ ହୋଇକରି
ପରିଘ ଘେନି ବସନ୍ତ ରାଜାକୁ ପ୍ରହାରି ।
ରାଜା ଚଢ଼ିବା ହସ୍ତୀର ପଡ଼େ କୁମ୍ଭସ୍ଥଳେ
ଗର୍ଜଣ ସେ ମତ୍ତନାଗ ପଡ଼ିଗଲା ତଳେ ।
ଯହୁଁ ବିରଥୀ ହୋଇଲ ରାଜା ବାମଦେବ
ଆରେକ ହସ୍ତୀ ଚଢ଼ିଲ ହୋଇ କୋପଭାବ ।
ଗୁରୁଜ ବୁଲାଇ ପିଟେ ସେ ବସନ୍ତ ସେନ
ଘାଏଣ ସେ ମତ୍ତନାଗ ହେଲ ଅଚେତନ ।
ବାହନବର୍ଜିତ ହୋଇ ପଳାଏ ନୃପତି
ଆପଣା ଥାଟରେ ପଶେ କରି ପାଦଗତି ।
ଅଶ୍ୱେ ଅଶ୍ୱେ ଆରୋହଣ ସେନାପତି ବେନି
ରେରେକାରରେ ଉଠିଲେ ଲଙ୍କିଆକୁ ଘେନି ।
ରାଜା ପଳାଇ ଯାଆନ୍ତେ ଭଙ୍ଗିଗଲେ ବଳ
ନକୁଳ ସଇନ୍ୟମାନେ କଲେ ମହାଗୋଳ ।
ପର କି ଆପଣା ବୋଲି ବାରଣ ନ ଯାଇ
ଆଦିତ୍ୟ ଦେବତା ମେରୁ ଉହାଡ଼େ ଗମଇ ।
ଅନ୍ଧାରହେଲେ ଭଙ୍ଗିଲ ରାଜାର ସଇନ
ଗଡ଼ରେ ପଶିଲ ଯାଇ ଭଗ୍ନବଳ ଘେନି ।
ନକୁଳ ସୈନ୍ୟ ରହିଲେ ବାହାର ହାରରେ
ବସନ୍ତସେନ କହିଲ ନକୁଳ ସମ୍ମୁଖରେ ।
ସ୍ୱାମୀ ଗଡ଼କୁ ବେଢ଼ିବା ଭଲ ସର୍ବକାଳେ
ନ ପୁଣ ପଳାଏ ରାଜା ପ୍ରାଣର ବିକଳେ ।
ନକୁଳ ବୋଲେ ପଳାଇ ଯିବ କେତେଦୂର
ଦକ୍ଷିଣ ଦିଗର ରାଜା ଅଟନ୍ତି ଆମ୍ଭର ।
ଯଦି ଏ ବର୍ଗୀ ପଳାଇ ଯିବ ଦୂର ହୋଇ
ଶ୍ରୀମ ଠାକୁର ପଶ୍ଚିମ ଦିଗେ ଛନ୍ତି ରହି ।
ତେଣୁ ସେ ନଗର ମଧ୍ୟେ ରହିଲେ ନକୁଳ
ଗାରବାଦ୍ୟ ଶୁଭେ ଯେହ୍ନେ ସମୁଦ୍ରର ଗୋଳ ।
ହାସକରି ସେହୁ ବାମଦେବ ନରପତି
ସୈନ୍ୟ ଘେନ ପଳାଇଲ ସେହି ନିଶାରାତି ।
ପୁତ୍ର ବନ୍ଧୁ କୁଟୁମ୍ବାଦି ଘେନିଣ ସମସ୍ତ
କରବୀର ପୁରେ ଯାଇ ପ୍ରବେଶ ହୁଅନ୍ତି ।
କରବୀର ପୁରେ ରାଜା ଭୂମନ୍ୟୁ ନୃପତି
ତାହାର ଦୁହିତା ନାମ ଅଟେ [illegible] ।

ଦୁର୍ଯ୍ୟୋଧନ ରଜାର ଯେ ଅଟେ ପଞ୍ଚ ଘଣ୍ଟୀ
ସୈନ୍ୟ ଗଣଇ ତାହାଙ୍କୁ ବାଇଶ ଅକ୍ଷଉଣୀ ।
ଭୁମନ୍ୟୁ ରଜାର ସାତ ଅଳବୁତ ରଥୀ
ବାଇଶ ଅର୍ବୁଦ ପୁଣି ତାର ଅଟେ ହସ୍ତୀ ।
ବୃଳଶ ଅର୍ବୁଦ ଅଶ୍ୱ ଅଟଇ ତାହାର
ଚବଦଶକ୍ଷୌଣୀ ପଦାତ ଅଛନ୍ତି ନରବର ।
ସ ତଶତ ପାରିଦଣ୍ଡ ରଜା ଅଧିକାରୀ
ଦକ୍ଷିଣ କୋଶଳ ରଜା କେହି ନୁହେଁ ସରି ।
ବାମଦେବ ନରପତି ରଣରେ ପଳାଇ
କରବୀର ପୁର ରାଜ୍ୟ ପ୍ରବେଶିଲେ ଯାଇ ।
ଆସ୍ଥାନରେ ବସିଛନ୍ତି ନୃପତି ଭୁମନ୍ୟୁ
ଭଗ୍ନବଳ ସହ ମଳେ ଦେବରଜ ସୂନୁ ।
ପ୍ରଣିପାତ କରେ ଯାଇ ଅସ୍ଥାନର ତଳେ
ଶରଣ ଫୁକାରେ ରଜା ପ୍ରାଣର ବଳରେ ।
ବାମଦେବଙ୍କୁ ଦେଖିରେ ଭୁମନ୍ୟୁ ନୃପତି
କା ଭୟେ ପଳାଇ ଆସି କରୁ ଏତେ ସ୍ତୁତି ।
କହେ ବାମଦେବ ରଜା ହୋଇ କୃତାଞ୍ଜଳି
ସ୍ୱାମି କେବଣ ଦେଶର ନୃପ ମହାବଳି
ଅଳପ ସୈନ୍ୟ ସେନଣ କରେ ବଗବଳେ
ବାଈଁ ନ ଦେଇଣ ମୋତେ ପଶିଲା ମୋ ରାଜ୍ୟେ
ଅନେକ ସମର ମୁହିଁ କଲି ତାର କୁଳେ
ଶରଘାତ ନୁହେ ତାର ଶରୀରେ ପଡ଼ିଲେ ।
ମୋର ସୈନ୍ୟ ମରଇଲା ଦେବ ଅନର୍ମିତେ
ଅନେକ ସେ ଯୁଦ୍ଧ କଲା ମୋହର ସହିତେ ।
ସୈନ୍ୟ ମରଇ ପଳାଇ ଅଇଲି ମୁଁ ଏଥେ
ଶୁଣି ଭୁମନ୍ୟୁ ବୋଲନ୍ତି ତାହାଙ୍କୁ ବୁଝାଇ ।
କପା କୁ ଡେଜିଲୁ ରାଜ୍ୟ ଜ୍ଞାନ ତୋର ନାହିଁ
ଯେବେ ଆସିଲୁ ଏଠାକୁ ଥାଅ ସୁଖେ ରହି ।
ମୋହର ନନ୍ଦିନୀ ନାମ ଅଟେ ଗଜୁମତୀ
ତାହାଙ୍କୁ ବିବାହ ଦେଲି କୁରୁଚକ୍ରବର୍ତ୍ତୀ ।
ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ଅଟନ୍ତି ସାନୁଜ
କହୁ ବଡ଼କ୍ଷଣ ପଞ୍ଚରାଜ୍ୟେ ମହାରଜ ।
ଭୀମସେନ ବୋଲିକରି ତାହାଙ୍କ ଅନୁଜ
ତାହାଙ୍କ ସାନୁଜ ପାର୍ଥ ଇନ୍ଦ୍ରଙ୍କ ଆତ୍ମଜ ।
ଅର୍ଜୁନଙ୍କର ଅନୁଜ ନକୁଳ ସୁନ୍ଦର
ନୁଆଇଁ ହୁଅନ୍ତି ମୋର ପାଣ୍ଡବ ସୋଦର ।

ପ୍ରଶ୍ନତେ ନକୁଳ ଇଚ୍ଛାପୁରର ଉତ୍ତରେ
ଦେଖିଲେ ମାନବ କେହି ନାହାନ୍ତି ସେଠାରେ
ନକୁଳ ସୈନ୍ୟ ବସିଲେ ଯାଇ ଗଡ଼ ମାଡ଼ି
ବରୁଝରଲେ ପଳାଇଲେ ରଜା ଗଡ଼ ଛାଡ଼ି ।
ରାଜ୍ୟ ବାହାରେ ଦେଖନ୍ତି ନକୁଳ ସଇନ୍ୟେ
ଲୋଡ଼ନ୍ତି ଗିରି କନ୍ଦର ଗହନ ଅରଣ୍ୟେ ।
ପଚ୍ଚରନ୍ତି ମନୁଷ୍ୟଙ୍କୁ ରଜା କାହିଁ ଅଛୁ
ବିଗରାଜ ଲୋକ ଯେତୁ ବାଟେ ଆସୁଅଛୁ ।
ପଥ ଅନୁସରି କରି ଗୋଡ଼ାନ୍ତି ସଇନ
କରବୀର ପୁରେ ଆସି ହୋଇଲେ ଦଣ୍ଡ ସେନ ।
ଡଗର ବାରତା ଦେଲା ନୃପତି ଭୁମନ୍ୟୁ
ସ୍ୱାମି ନଗ୍ରେ ପ୍ରବେଶିଲେ ମାଦ୍ରୀଦେବୀ ସୂନୁ ।
ନକୁଳର ଆଗମନ ବାରତାକୁ ପାଇ
କଟକେ ଭୁମନ୍ୟୁ ରଜା ଉତ୍ସବ କରଇ ।
ସୁବର୍ଣ୍ଣ କଳଶେ ନେଇ ପତାକା ଉଡ଼ାନ୍ତି
ଦ୍ୱାରେ ପୂର୍ଣ୍ଣକୁମ୍ଭ ରମ୍ଭାବୃକ୍ଷକୁ ରୋପନ୍ତି ।
ନଗରର ସ୍ଥାନେ ସ୍ଥାନେ ନୃତ୍ୟରଙ୍ଗ କ୍ରୀଡ଼ା
ତିନକୋଶ ପରିଯନ୍ତେ ପାରିଲେ ପାଏଡ଼ା ।
ନଅ ମହାବୁଦ ରଥୀ ଅଶ୍ୱ ପାଞ୍ଚକୋଟି
ସମଦନ୍ତି ଘେନି ନୃପ ଯାଆନ୍ତି ପାଚ୍ଛେଟି ।
ସମଦନ୍ତି ଘେନିଣ ସେ ପାଣ୍ଡବ ସୁନ୍ଦର
ସ୍ନାହାନ କରନ୍ତି କୃଷ୍ଣାବେଣୀର ଭିତର ।
କରପଦ୍ମ ଯୋଡ଼ିକରି କହଇ ଡଗର
ଭୁମନ୍ୟୁ ନୃପ କଟକୁଁ ହୋଇଲେ ବାହାର ।
ପାଣ୍ଡବ ସଇନ ସର୍ବେ ସ୍ନାନ କରୁଥିଲେ
ଧାଡ଼ିକାରେ ଯେ ଯାହାର ଅସ୍ତ୍ରାଦି ଧଇଲେ ।
ଖଣଖଣ ଶବଦ ଯେ କରଣ ସଇନ
ଚଢ଼ନ୍ତି ଯାନ ବାହନ ଘାରେ ଅସ୍ତ୍ର ଘେନ ।
ନକୁଳ ସୈନ୍ୟମାନଙ୍କ ଉଚ୍ଚବାଚ ଦେଖି
ଧାଡ଼ିକାରେ ଭୁମନ୍ୟୁ ଯେ ବାହନ ଉପେକ୍ଷି ।
ବେନି କରରେ ଚାମର ଧରି ମହୀପତି
ସୈନ୍ୟ ଡେଜଣ ଆସଇ କରି ପାଦଗତି ।
କିଛିଦୂର ଆସି ଶାଳବୃକ୍ଷ ତଳେ ରହି
ଦୂରରେ କେମନ୍ତେ ଯିବି ଆଜ୍ଞା ମୋତେ ନାହିଁ
ରଜାର ସଙ୍ଗତେ ଥିଲେ ପଚାଶୀ କୁମର
ସେ ବୃକ୍ଷତଳେ ରହିଲେ ଧରିଣ ଚାମର ।

ଶାନ୍ତ ଅମାତ୍ୟେ ଚଳିଲେ ଯାଇ ଦୂରସରି
ସେ ଯାହାର ଅନୁରୂପେ କରି ପଟୁଆର ।
ତାହାଙ୍କ ଅନ୍ତରେ ପୁଣ ଚଳିଲେ ସଇନ
ଶମଗଜ୍ୟ ଗ୍ରୁଡଣ ଆସନ୍ତ ଘଣ ଛନ ।
ପ୍ରାତଃସ୍ନାନ ସାରି ଦେବ ତୋଳଲେ ଅଞ୍ଜଳ
ଶଙ୍ଖମୁଖେ ପ୍ରଣମିଲେ ଦେବ ଅଂଶମାଳ ।
ସୁବର୍ଣ୍ଣ ପିଢରେ ବସି ପୁଣ ଲପ୍ତ କଲେ
କୃଷ୍ଣହସ୍ତ ହୋଇକରି ନାମ ଉଚ୍ଚାରିଲେ ।
ମଣ୍ଡପ ବସନ୍ତ ଯାଇ କଲେ ନବେଦନ
ଭୂମନ୍ୟୁ ନୃପ ଆସିଛି କରି ଦରଶନ ।
ସ୍ୱାମି ସେ ଅଟେ ଦକ୍ଷିଣ ଦିଗ ଚକ୍ରବର୍ତ୍ତୀ
ଆଜ୍ଞା ନୋହିବାରୁ ଦେବ ଆସି ନ ପାରନ୍ତି ।
ସ୍ୱଚତର ସ୍ୱନର ସେ କଥା କହନ୍ତେଠି
ଚତୁର୍ଦ୍ଦିଗରେ ଚମକ ପଡ଼ି ନାମଘୋଷି ।
ନାମ ଶୁଣିଲ ଗ୍ରୁଡଣ ବସିଲେ ପିଢାରେ
ଦକ୍ଷିଣ ମଣ୍ଡିରେ ପଶି ବସିଲେ କୁପରେ ।
ଭୂମନ୍ୟୁ ନରପତିକୁ କଲେ ନିରୀକ୍ଷଣ
ନ୍ୟୁଗ୍ଳନ କରି ଶ୍ରିତଲେ ପାଣ୍ଡବଗଣ ।
ପଞ୍ଚ ବନ୍ଧୁ କୃଷ୍ଣ ମ୍ବାଦ୍ଧ ଘେନଣ ଭୂମନ୍ୟୁ
ନ୍ୟୁଗ୍ଳନ କରି ଶ୍ରୁତଲେ ଘେନ ସଙ୍ଗ ସ୍ୱନୁ ।
ପାତଗଣ ଭଣ ରଜା କଲେ ନିଜ୍ଜଗ୍ଳନ
ଶ୍ରମେ କର୍ଦ୍ଦମ ହୋଇଲା ଲାଗି ଭୂମି ଧୂଳ ।
ସ୍ୱାମି ରଜରଜେ୍ୟଶ୍ୱର କଥା କହନ୍ତେଠି
ମହିମା ଉଦ୍ଧାର ନାଥ ତୋର ନାମଘୋଷି ।
ତୁ ଶରଣ ଉଦ୍ଧାରଣ ଦେବ ମନସିଜ
ଜଗଜ୍ଜନ ମୋହନ ତୁ ପ୍ରଭୁ ଦେବରାଜ ।
ନିଜସ୍ଥଳ କରି ଯୋଡେ ଦେହକର ଗୋଟି ।
ଚନ୍ଦନ ସାଲଣ ଶୋଭିଲା ସର୍ବାଙ୍ଗରେ ଲୋଟି ।
ପୃଷ୍ଠି ଉଣ୍ଣ ହୋଇ ବୋଲେ ସେ ନୃପତିମଣି
ପ୍ରସନ୍ନ ନାରାୟଣ ତୁ ଦେବ ଚକ୍ରପାଣି ।
ଅନେକ ସ୍ତୁତି ବହୁତ ବଚନରେ ବୋଲି
ସନ୍ନିଧିକୁ ଆସି ପୁଣି ଶୁଏ ପଡ଼ଘାଲି ।
ନକୁଳ ବୋଲେ ଅନନ୍ତ ଯୂଥପତି ସ୍ୱହିଁ
ଆରେ ଭୂମନ୍ୟୁକୁ ତୋଳ ବେଗକରି ଯାଇ ।
ନକୁଳ ବାକ୍ୟେ ଅନନ୍ତ ଚଳଣ ତୁରିତ
ଉଠ ହେ ଭୂମନ୍ୟୁ ଆଜ୍ଞା ହୋଇଲା ତୁରିତ ।

ଆଜ୍ଞା ପ୍ରମାଣେ ଉଠିଲା ତହୁଁ ମହାରାଜେ
ମଥାରେ ହାତ ଦେଇଣ କହଇ ବଚନେ ।
ନକୁଳ ହୋଇଲ କପା ଏତେକ ଭକତ
ହନୁମନ୍ତଙ୍କ ପିଅର ଆମ୍ଭ ଜ୍ୟେଷ୍ଠ ତାତ ।
ସେ ମହାସତୀ ସାକ୍ଷାତେ ପରମା ଅପର୍ଣ୍ଣା
ହସ୍ତିନା ମଣ୍ଡନା ଆମ୍ଭ ଗଜଭଗ୍ନୀ ସିନା ।
ସେହି ମାହେଶ୍ୱରଙ୍କର ଅଟ ସେ ପିଅର
ବେଦରେ ପିଅର ସମ ହୋଇବ ଆମ୍ଭର ।
ଆସ ଆସ ମହାରାଜା ବସ ମୋର କତି
ନିମନ୍ତ୍ରଣ ପାଇଛ କି ରାଜସୂୟ ପ୍ରତି ।
ନକୁଳ ବଚନେ ଗରୁମନ୍ତର ପିଅର
ଶିରେ କର ଦେଇ ବୋଲେ ବଚନରେ ଗିର
ସ୍ୱାମି ହିଣ୍ଡି ନଗଞ୍ଜନ ଅଟେ ଯା ଆସ୍ଥାନ
ତହିଁ ବସିବାକୁ ମୁଁ କି ହୋଇତ ଭାଜନ ।
ଯଦି ବା ଅର୍ପଣ ମୁହିଁ କରିଛୁ କୁମାରୀ
ସ୍ୱାମୀ ସେବକ କି କେବେ ହେବ ସମସରି ।
ସ୍ୱାମୀ ଯା ଆସ୍ଥାନ ତଳେ ଲକ୍ଷେରଜା ଖଟି
ମୁଁ ତୋର ଦାସର ଦାସ ହୋଲି ମଣିବୁଟି ।
ମସ୍ତକରେ ହସ୍ତଦେଇ ରଜା ହେଲା ଉଷ୍ଣ
ନକୁଳ ମୁଖ ଦିଶିଲା ଚନ୍ଦ୍ର ଜିଣି ଶୋଭା ।
ଅନେକ ରତ୍ନାଭରଣ ଅଛି ତାଙ୍କ ଅଙ୍ଗ
ଝୀନବାସ ପରିଧାନେ ଉତ୍ତମେ ଦେହାଙ୍ଗ ।
ମାଛ ଘୋଟିଏ ଆସିଣ ଶଯ୍ୟାରେ ବସିଲେ
ଚନ୍ଦନ ଲେପନ ତହିଁ ବହୁତ ପାଇଲେ ।
ସପ୍ତଦ୍ୱୀପା ପୃଥ୍ୱୀ ସେହୁ ଧରେ କୁନ୍ତମୁନେ
ଯମ ଦର୍ପଭଞ୍ଜା ଯେହୁ କେଶବ ପ୍ରସନ୍ନେ ।
ପର୍ଶୁରାମ ଦଗଦଗେ ଶାସ୍ତ୍ରେ ଶୁଣିଥିଲୁ
ପାଣ୍ଡବଙ୍କ ଦଗଦ୍ଗେ ପ୍ରତ୍ୟକ୍ଷେ ଦେଖିଲୁ ।
ଯେଉଁମାନଙ୍କର ଥିବ ପୂର୍ବଜନ୍ମ ଭାଗ୍ୟ
ସେମାନେ ଦେଖିବେ ସିନା ରାଜସୂୟ ଯାଗ ।
ଭୂମନ୍ୟୁ ନୃପତି ସୁତେ ଚରଣେ ପ୍ରଣମି
ବୋଇଲେ ରାଜ୍ୟକୁ ଗ୍ଳଲ ଏବେ ଦେବସ୍ୱାମୀ
ରାଜ୍ୟର ନର ନାରୀଏ ଦେଖି ହେବ ଭୋଳେ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପ୍ତ ହେବେ ହେଳେ
ଏ ଜମ୍ବୁଦ୍ୱୀପ ମଧ୍ୟରେ ସଫଳ ମୋ ରାଜ୍ୟ
ସବୁ ପୁରେ ପଡ଼ିବ କି ତୁମ୍ଭ ପଦରଜ ।

ନକୁଳ ବୋଇଲେ ଆସ ଆସ ସୈନ୍ୟମାନେ
ଶଳାମାନଙ୍କ ବଚନ ଭଙ୍ଗିବା କେସନେ ।
ରଥ ଗଜ ଅଶ୍ୱ ପୁଣି ସମସ୍ତ ପଦାତି
ରାଜ୍ୟ ଭେଳ କଟକରେ ସମ୍ଭାରେ ପଶନ୍ତି ।
ଦାଣ୍ଡେ ପାତିଥିଲ ରାଜା ପାଏଡ଼ା ନ କୋଶ
ନାନା ଉପଚାର ବାଡ଼ିଥିଲ ଚନ୍ଦ୍ରକୋଷ ।
ମୃଗ ଦଣ୍ଡ ଗୃହଳ ଯେ ପରିବା ବସ୍ତ୍ର
ଦାଣ୍ଡେ କୁଡ କୁଡ ହୋଇଥିଲେ ସେ ସମସ୍ତ ।
ଚହଳ ଘୋଡ ଧଡୋଳ ହୋଇଲ ଦାଣ୍ଡର
ପାଦଗତିରେ ଉଠଇ ସବୁ ଉଏ ଚୂର ।
ସୈନ୍ୟଙ୍କ ଗତିରେ ଶୂନ୍ୟେ ଉଡଯାଏ ଧୂଳ
ଆକାଶେ ମୂର୍ଚ୍ଛନା ମାନ ଦଶେ ଅଂଶୁମାଳ ।
ଇନ୍ଦ୍ର ବଜେ ଭଲେ ଯେସନ୍ତେ ମଞ୍ଚକୁ ଅପୂର୍ବ
ତେମନ୍ତ ଦେଖନ୍ତି ନରେ କାନ୍ଥି କାନ୍ଥି ଠାବ ।
ବହସ୍ତେ ଭୂମନ୍ୟୁ ନଂର ସ୍ୱମରଙ୍କୁ ଧରି
କୁମରଙ୍କ କୁଳେ ତାଳେ ଆନନ୍ଦେ ଉଷାଳ ।
କଉଶାର ଗଣ୍ଡ ଯାଇ ପଶନ୍ତେ ଶୋଭଇ
ମଦନାର ନନ୍ଦନ ଯେ ତ୍ରୈଲୋକ୍ୟ ମୋହଇ ।
ପ୍ରବେଶ ହୋଇଲେ ଯାଇ ଅସ୍ଥାନ ଉପରେ
ଖଟନ୍ତି ସେ ବଳାସିମ ତାଣ୍ଡବ ସମ୍ଭାରେ ।
ଦେବାସନ ପ୍ରାୟେ ଶୋଭେ ଉତ୍ତମ ଆସନ
ଅଳକା ଭୁବନ ପ୍ରାୟ ଦିଶଇ ଶୋଭନ ।
ପରମ ବ୍ରାହ୍ମଣମାନେ ଭଇନ୍ତି ରନ୍ଧନ
ଅମୃତ ଷଡ଼ରସରେ ପାକର ବିଧାନ ।
ଶୀତଳ ଯୋଗାଡ଼ କଲେ ଦ୍ରବ୍ୟ ନିତ୍ୟପ୍ରତି
ମର୍ଦ୍ଦନକୁ ବଳେକଲ ସେ ନକୁଳ କ୍ଷତ୍ରୀ ।
ସୁବାସିତ ଶୀତଳ ଯେ ସମୀରର ପାଣି
ବେଣୀଭଦ୍ରା ନଦୀଜଳ ମିଶାବନ୍ତି ଆଣି ।
ତହିଁରେ ସ୍ନାହାନ ସାରି ବହସ୍ତେ ଆସ୍ଥାନେ
ଡାଳନ୍ତି ଚାମର ଯେସନ ରାଜପୁତ୍ରମାନେ ।
କେଶ ଶୁଖାଇ ହାବଶ ବର୍ଣ୍ଣେ ବାନ୍ଧନ୍ତେ
ସଜାଡ଼ି ଅଛନ୍ତି ଶଭ୍ର ପରମ ବୈଷ୍ଣବା ।
କୁମର ବଜସ୍ଥ କଲେ ମନୋହର ଭୁବନେ
ସମ୍ଭାରେ ବସିଲେ ପୁଣି ସର୍ବ ସୈନ୍ୟମାନେ
ସୁବର୍ଣ୍ଣ ପଲଙ୍କମାନ ନାନାବିଧ ପ୍ରକାର
ସର୍ବ ସୈନ୍ୟଙ୍କର ପିଢ଼ା ଅଟେ ସୁବର୍ଣ୍ଣର ।

ସର୍ବ ସୈନ୍ୟଙ୍କୁ ସୁବର୍ଣ୍ଣ ଥାଳ ରୁପା ଖୁରି
ଜଣ ଜଣକେ ପାଇଲେ ସୁବର୍ଣ୍ଣର ଝରି ।
ବ୍ରାହ୍ମଣେ ପରଷନ୍ତି ଯେ ସୁଧା ପାକମାନ
ଅରକ୍ଷେ ସର୍ବ ସଇନ୍ୟ କରନ୍ତି ଭୋଜନ ।
ଷୋଡ଼ଶ ଯୋଗାଡ଼ଫଳ ପିଠା ଦ୍ରବ୍ୟମାନ
ତୃପତ ଭାବ ହୋଇଲ ସମସ୍ତଙ୍କ ମନ ।
ଭୁଞ୍ଜଣ ତୃପତ ହୋଇ ସମସ୍ତ ସଇନ୍ୟ
ଆଚମନ କଲେ ଯେତେ ସୁନା ଝରି ଘେନ ।
କର୍ପୂର ତାମ୍ବୁଳ ଆଉ ଭୁଞ୍ଜି କୃତୂହଳେ
ବଳେ ବାରଣ ବାଜିଆ ଉପରେ ନକୁଳେ ।
ଆଳଟ ଚାମରମାନ ଡାଳୁଛନ୍ତି ଭଣ୍ଡ
ଗାନ୍ଧର୍ବଗଣ ନୃତ୍ୟ କେତିଣ ଦେଖନ୍ତି ।
ବୀଣା ବଂଶୀସ୍ୱର ଗୁଣା ଆଉରି ଅର୍ଦ୍ଧନ୍ତି
ମଞ୍ଚକୁଣ୍ଡଳୀ ତାଉ ଯେ ଫଉହରେ ଖଟି ।
ଉଠଷ ଭାତରେ ପୃଚ୍ଛା କରିଣ ନକୁଳେ
ଇନ୍ଦ୍ରାପୁରର ରାଜାଙ୍କୁ ଦେଖନ୍ତି ଏ ସ୍ଥଳେ ।
ଭୂମନ୍ୟୁର ପୁତ୍ରମାନେ ହୋଇ ପରଣାମି
ଇନ୍ଦ୍ରାପୁର ରାଜା ଦେଖା କରୁଅଛୁ ସ୍ୱାମି ।
ନଗରର ଉଠେ ରାଜା ଦଣ୍ଡେ କୃଷ୍ଣା ଘେନ
ସତ୍ୱରେ ଦର ଆଣିଛୁ ଦେଖା ଉରଣମ
ଉଦସ୍ଥ କରି ଶରଣ ମାଗେ ଦେବସ୍ୱାମି
ନକୁଳେ ଶୁଣିଲେ ରାଜା ହେଲ ପରଣାମି ।
ନକୁଳ ଆଜ୍ଞା କରିଲେ ଭୂମନ୍ୟୁ ନୃପକୁ
ବାମଦେବ ନୃପତିଙ୍କ ଆଣ ଉପରକୁ ।
ଅକାରଣେ ନଷ୍ଟ ହେଲୁ ଆହେ ବାମଦେବ
ସୈନ୍ୟ ମଧ୍ୟ ନାଶଗଲେ ନ ଜାଣିଲୁ ଭାବ ।
ଶୁଣି ବାମଦେବ ପାଦେ ହେଲ ପରଣାମି
ବହୁ ଅପରାଧ କଲି କ୍ଷମ ଦେବ ସ୍ୱାମି ।
ନକୁଳ ବୋଇଲେ ମୁହିଁ ନୁହେଁ ତୁମ୍ଭ ଦୋଷୀ
ଆମ୍ଭେ ଆସିନାହୁଁ ଜାଣ ଚୋର ବନ ନାଶି
ଭୋଜନ ଅକ୍ଷତ ଦେବୁ ଅପାରୁ ଅପାର
ଷୋଳ ବନଯାଏ ତହିଁ ପାଇବ ସମ୍ଭାର ।
ଯେ ଯାହାର ଅନୁରୂପେ କରିବୁ ଗୌରବ
ବହୁ ଭକ୍ତିଭାବ ପୁଣି ମହିମା ଦେଖିବ ।
ଆକାଶର ଦେବତାଏ ତହିଁକି ଆସିବେ
ଆଉରି ଯେ ନାଗରାଜା ସେଠାରେ ମିଳିବେ ।

ଏହି ମହିମା ଦେଖିଲେ ପାପ ହୁଏ କ୍ଷୟେ
ଲକ୍ଷେ ରାଜାଙ୍କ ମିଳନେ ହେବ ବସ୍ତ୍ର, ମସ୍ତେ
ପୃଥିବୀ ମଧ୍ୟରେ ହେଲେ ଲକ୍ଷେକ ନୃପତି
ଯେଉଁ ରାଜାର ଯେତେକ ସଇନ୍ୟ ପଦାତି ।
ଉତ୍ସବ ଯାତ୍ରା ହୋଇବ ସଙ୍ଗରେ ମଙ୍ଗଳେ
ସେ ପୁଣ୍ୟକ୍ଷେତ୍ରକୁ ଗଲେ ପୁଣ୍ୟଫଳ ଫଳେ ।
ଏଡ଼େ ସୁଲଭକୁ ଯେଣୁ ଆସିଥିଲୁ ଆମ୍ଭେ
କାଳେ ନ ଜାଣିଣ ଦ୍ୱନ୍ଦ୍ୱ କରିଅଛ ତୁମ୍ଭେ ।
ଜରାସନ୍ଧ ନେଲା ତୋତେ କରିଣ ବନ୍ଧନ
ଅଶ୍ୱିନୀ ଦୁର୍ଗାଷ୍ଟମୀରେ ଦେବନ୍ତା ବଳିଦାନ ।
କୃଷ୍ଣାର୍ଜୁନ ଭୀମ ତହିଁ ହୋଇଲେ ପ୍ରବେଶ
ସଂସାର ହିତେ ଜଗତକୁ କଲେ ବିନାଶ ।
ବଡ଼ଦୁଷ୍ଟ ବୁଦ୍ଧି ତୋର ଅଟେ ମଦଗଣ
ମରଣୁ ଉଦ୍ଧାର କଲୁ ପାପସୋଷଣ ଗୁଣ ।
ଯେଉଁ ଯଜ୍ଞ ପାଇଁ ଆମ୍ଭେ କରିଥିଲୁ ଇଚ୍ଛା
ସେହି ଯଜ୍ଞେ ଯିବାପାଇଁ କରିଲୁ କୁ କକ୍ଷା ।
ବାମଦେବ ବୋଲେ ଦେବ ହେତକଥା କହି
ବୋଲଲେ କବଚୁ କୋପକୁ ଯେ ମହାବାହୁ ।
ସ୍ୱାମୀ ବାକ୍ୟତ ବସ୍ତୁସେ ବାଳକର ବୁଦ୍ଧି
ବାଞ୍ଛା ନ ଦେଲ ଆମ୍ଭଙ୍କୁ କରୁ ଅପରାଧୀ ।
ବାଞ୍ଛା ନ ଦେଲ ରାଜ୍ୟେ ପଶୁ ଅନୁମିତ୍ତେ
ଅନେକ ଦ୍ୱାବାରେ ବସୁ ଆମ୍ଭେ ଯେ ସମସ୍ତେ
ଘରଥାଟ ଭଲ ମୁହିଁ ମହାଯୁଦ୍ଧ କଲି
ଅଜ୍ଞାନପଣରେ ମୁହିଁ ନିଜେ ନାଶଗଲି ।
ନକୁଳ ବୋଇଲା କୁହ ନାନାକଥା କହି
ବିଳମ୍ବ କରିବୁ ଯିନା ନ ପାରିବ ରହି ।
ଏହା କହି ନିମନ୍ତ୍ରଣ ଦେଲେ ନୃପତିକି
ସେ ପିତା ଯତ୍ନେ ଅଇଲ କୃଷ୍ଣଙ୍କ ତହିଁକି ।
ଏ ନିକଟେ ରହିଛନ୍ତି ଯେତେ ରାଜ୍ୟମାନ
ସମସ୍ତଙ୍କୁ ନିମନ୍ତ୍ରିଣ ଅଣାଅ ବହନ ।
ନକୁଳ ବଚନ ଶୁଣି ଭୂମନ୍ୟୁ ନୃପତି
ଶ୍ରୀମୁଖ ଦେଇ ରାଜାଙ୍କୁ ଅଣାଏ ତଡ଼ତି ।
ଉଡ଼ଙ୍ଗ ଚୁଡ଼ଙ୍ଗ ପୁଣି ନେପାଳ ଭୂପାଳ
ସଉଳକ କଉଳକ ଡାହାଳ ଦେଲ୍ଲକ ।
ଚୌର ଚର ମାନଭର ବସ୍ତୁ ଯେ ମଣ୍ଡଳ
ଦକ୍ଷିଣ କୋଶଳେ ଥିଲେ ଯେତେ ମହୀପାଳ ।
ସିନ୍ଧୁକୂଳ ଯାଏ ଥିଲେ ଯେତେକ ନୃପତି
ସେଠାରେ ଗଲେ ନକୁଳ ସବୁଙ୍କୁ ନିମନ୍ତ୍ରି ।
ଜୟ ଜୟ ଜଗନ୍ନାଥ କମଳାର ମୁଖ
ମୋ ଗୁହାରି ଶୁଣ ପ୍ରଭୁ ମୁଁ ଅଟେ ନିରେଖ ।
ଶାସ୍ତ୍ରେ ଜ୍ଞାନ ନାହିଁ କଡ଼ା ନାହିଁ ମନ୍ତ୍ରବଳ
ଅନ୍ଧବିଶ୍ୱାସ ମୋହର ଅଛଇ କେବଳ ।
ଆହେ ମହାବାହୁ ଯେଣୁ ଏ ଦାନ ଆରତ
ପଞ୍ଚଶ ପ୍ରକୃତି ମୋତେ କରିଲେଣି ବ୍ୟଥିତ ।
କୃଷ୍ଣ ନାମ ଜପିବାକୁ ନ ଦିଅନ୍ତି ବେଳ
ସର୍ବବେଳେ କରୁଥାନ୍ତି ମନକୁ ଆକୁଳ ।
ତେଣୁକରି ତୁମ୍ଭ ପାଦେ ଚିତ୍ତ ନ ରହଇ
ଭବସାଗରୁ ତରିବା ବାଟ ନ ଦିଶଇ ।
ସେଥିପାଇଁ ନିବେଦନ ଶୁଣ ଆହେ ହରି
ଚରଣେ ବନ୍ଦନ କର ସେ ସର୍ବ ଅଇର ।
ନିଶ୍ଚଳ କରାଇ ଧନ୍ୟ ଜପୁ ମୋ ରସନା
ଶାରଳା ଦାସ ସର୍ବଦା କରେ ଏ କାମନା ।

---

## ଦଣ୍ଡପା ନୃପତି ଓ ସୁବଳଗିରିରେ ଗୋରେଖ ସହିତ ଭେଟ ହୋଇ ସେମାନଙ୍କୁ ନିମନ୍ତ୍ରଣ ଦେଇ ନକୁଳର ହସ୍ତିନା ପ୍ରତ୍ୟାଗମନ

ଅଗସ୍ତିଙ୍କୁ ପଚାରିଲେ ବଳିଙ୍ଗା ରାଜନ
ବାମଦେବକୁ ନକୁଳ କଲେ ସମାଧାନ ।
ତହିଁ ଉପରୁ କରିଲେ କେବଣ କୌତୁକ
ସେହି କଥା କହ ମୋତେ ହେ ମୁନିନାୟକ ।
କହନ୍ତି ଅଗସ୍ତି ଶୁଣ ବଳିଙ୍କ ନୃପତି
ନକୁଳର ବାଣୀ ଅଟେ ଅଲୌକିକ ଅତି ।
ଶ୍ୟାମପାର୍ଶ୍ୱ ବୋଲିକରି ଗୋଟିଏ ନଗର
ତହିଁ ପ୍ରବେଶ ହୋଇଲା ନକୁଳକୁମାର ।
ସେହି ଦେଶର ନୃପତି ଶଙ୍ଖଘନ ରାଜା
ଅରୁଣସେନ ରାଜାର ଅଟଇ ତନୁଜା ।
ସେତୁବନ୍ଧ ସୁବଳସ୍ୱା ଅଧିକାର ତାର
ଶ୍ରୀରାମଚନ୍ଦ୍ରଙ୍କୁ ସେହି ସେବେ ନିରନ୍ତର ।
ସେତୁବନ୍ଧ ରାଜା ଅଟେ ଅଙ୍ଗଦକୁମାର
ତାହାର ବଂଶ ସମ୍ଭୃତ ଶଙ୍ଖଘନ ସାର ।

ଅଙ୍ଗଦସେନ ନନ୍ଦନ ଅଙ୍ଗଦନୃପତି
ଜହୁର ବୋ'ଲିକହିଣ ଏହାର ସନ୍ତତି ।
ଏହାର ନନ୍ଦନ ନାମ କୌଶିକ ନୃପତି
କୁଳମଙ୍ଗଳ ବୋଲିଣ ଏହାର ସନ୍ତତି ।
ମଳୟସେନ ବୋଲିଣ ଜାତହେଲା ବାଳ
ତା ନନ୍ଦନ ମନ୍ମଥ ନାମେ ମହୀପାଳ ।
ମନମଥ ସୁତ ଶବ୍ଦଜିତ ନରପତି
ବେଲା ବନରେ ଏହାଙ୍କ ଅଟେ ଚକ୍ରବର୍ତ୍ତୀ ।
ସେହି ସେତୁବନ୍ଧ ରାଜ୍ୟେ ନକୁଳ ପ୍ରବେଶ
ଦ୍ରୁମନଗିରି ଶିଖରେ ବାଜେ ଜୟଘୋଷ ।
ବାଦ୍ୟ ଶୁଣି ପୁଛେ ଶବ୍ଦଜିତ ନରପତି
କାହାର ଏ ଥାଟ ବୁଝ ହୋ ବୁଝି ଯାଇ ମନ୍ତ୍ରୀ ।
ରାଜ ର ଆଗରେ ମନ୍ତ୍ରୀ କହେ ପାଣ୍ଡବଦଣ୍ଡେ
କେବଣ ରାଜାର ଥାଟ ଦେଖ ଯାଇ ବୃଣ୍ଡେ ।
ମନ୍ତ୍ରୀଙ୍କର ବଚନରେ ଭୂପ । ରାଜଗଣ
ସ୍ୱରଲକ୍ଷ ଯୋଦ୍ଧା ଗଲେ ଘେନିଣ କୃପାଣ ।
ଦେଖିଲେ ଦ୍ରୁମନ ଗିରି ଶିଖେ ଥାଟ ଅଛି
ରେ ରେକାର ମୁଖଧ୍ୱନି କେବଳ ଶୁଭୁଛି ।
ସୈନ୍ୟ ବେଢ଼ିଲେ ସେ ଗିରି ଶତେପୁର କରି
ରେ ରେକାର ଶବଦକୁ ମୁଖରେ ଉଚ୍ଚାରି ।
କାହିଁର ରେ ବୋଲି ଉଚେ ଶବଦେକ ହାକି
କରନ୍ତି ସେ ସିଂହନାଦ ହେମାଳନ୍ତି ଡାକ ।
ପର୍ବତେ ଥାଇ ଦେଖନ୍ତି ନକୁଳ ସଇନ
ଭଡବାତ ହେଉ ହେଉ ପାହ୍ୱା ଭଜମା ।
ନକୁଳ ବୋଇଲା ଆରେ ଓହ୍ଲାଅ ପର୍ବତୁଁ
ବସନ୍ତ ସେନାପତିକି କହିଲା ଜାଣ ତୁ ।
ପାଣ୍ଡବଙ୍କର ଆହ୍ୱେ ସେନାପତି ବେନି
ପର୍ବତରୁ ଓହ୍ଲାଇଲେ କର୍ଣାଟିକ ସେନ ।
ଖଣ୍ଡ କତର ସଇନ ନାରାଚ ପେଷନ୍ତି
ଯୁଦ୍ଧ ଦେଖି ସେନାପତି ତେଜ ବଳାଶନ୍ତି ।
ଅଶ୍ୱପତି ବୁଲାଇଣ ପଡ଼ିଲେକ ମାଡ଼
ପଳାଇଗଲେ କଙ୍କର ନଜଦର୍ପ ଛାଡ଼ି ।
ରହ ରହ ମହାବଳ ଡାକେ ମନ୍ତ୍ରୀବର
ରହି ତପସ୍ୟା କରରେ କିପାଁ ଯାଅ ଖର ।
ସମ୍ବୋଧନ କରି ତହୁଁ କହେ ଜ୍ଞାନମନ୍ତ୍ରୀ
ସମାର୍ଜନା ବଚନରେ ରହି ସେନାପତି ।

ବୋଇଲେ କୁହ ରାଜାକୁ ବାର୍ତ୍ତା କହ ଯାଇ
ନକୁଳ ଯୁଧିଷ୍ଠିରଙ୍କ ଅଟେ ସାନଭାଇ ।
ଆଜ୍ଞା ପ୍ରମାଣେ ଦକ୍ଷିଣ ଦିଗକୁ ବରଣେ
ରାଜସୂୟ ଅର୍ଥେ ଆସନ୍ତି ରାଜା ନିମନ୍ତ୍ରଣେ ।
ଦଣ୍ଡ ଭେଟିଯିବେ ଏଥି ବେଗେ ଯେତେ ରାଜା
ଯୁଧିଷ୍ଠି ଦେବଙ୍କୁ ଯାଇ କରିବେ ସେ ପୂଜା ।
ଶୁଣି କୋପାନଳ ହେଲେ ସେ କଙ୍କରମାନେ
ଶ୍ରୀରାମ ବିନା ନ ଜାଣୁ ଆମ୍ଭମାନେ ଆନେ ।
ଜୀବନକୁ ତୁମ୍ଭର ରେ ଯେବେ ଅଛି ଆଶ
ଶବ୍ଦଜିତ ଆଜ୍ଞା ତୁମ୍ଭେ ରାଜ୍ୟରେ ନ ପଶ ।
ପ୍ରତିଜ୍ଞା କରିଣ ସେହି ତର୍ଜନ୍ତି ଗର୍ଜନ୍ତି
ଶାଳ ଶିଳ କରେ ଧରି ଆକ୍ରୋଶେ ରହନ୍ତି ।
ସେ ସର୍ବ ସୈନ୍ୟ ଅଟନ୍ତି ଯେଣୁ କାମରୂପୀ
କ୍ଷଣକେ ଅଦୃଶ୍ୟ କ୍ଷଣେ ଗଗନରେ ବ୍ୟାପି ।
ଅନ୍ତରୀକ୍ଷରେ ବୁଲିଲେ ପ୍ରହାରନ୍ତି ଶିଳ
କ୍ଷଣକେ ମହାମୂରତି କ୍ଷଣକେ କଟାଳ ।
ତାହା ଦେଖି କୋପ କଲେ ନକୁଳ ସଇନ
ଗର୍ଜିଣ ଉଠିଲେ ସର୍ବେ କରି ମହାଧ୍ୱନି ।
କୋନ୍ତ ଖଡ଼ଗ ନାରାଚ ପୃଷ୍ଠି ତୀକ୍ଷ୍ଣ ମୁନା
ଘେନି ସମରେ ଧାଆନ୍ତି ବଡ଼ ବଡ଼ ସେନା ।
ମୂଖରବ ଶବଦରେ କଲେ ଗୁଣଧୃଷ୍ଟି
ମହା ଭସ୍ମମୂର୍ତ୍ତି ହୋଇ ଯାବଡ଼େକ ଉଠି ।
ଧରି ଧରି ମାରି ମାରି ବଅନ୍ତି ବୋବାଳି
ଚରଣ ଆଘାତେ କମ୍ପି ଉଠେ ମହୀସ୍ଥଳୀ ।
ସେହି ଦୁଃସହ ପ୍ରତିଜ୍ଞା କହିତ ନ ପାରି
ଅହୋବଳ ଅନ୍ୟ ଅନ୍ୟ ଅସ୍ତ୍ର ମହାମାରି ।
ଝଲକେ ଲଙ୍ଗିଆ କୋନ୍ତ ମୁଦ୍ଗର ଯଷ୍ଟି
ଗୁରୁଜ ପରଶ ଅସି ଘେନି ପିଟାପିଟି ।
ପାଣ୍ଡବ ସୈନ୍ୟ ଉଠିଲେ ହୋଇ ଗଳଗାଜ
କଙ୍କର ସଇନଗଣ ପଳାଇଲେ ଲାଜ
ମହାପ୍ରତାପୀ ମଳୟବସନ୍ତ ସେ ବେନି
ଗୋଡ଼ାଇ ପ୍ରହାର କଲେ କଙ୍କର ସଇନ ।
ଅକୁପାରର କୂଳକୁ ପଳାନ୍ତି ସମସ୍ତେ
ଭଗ୍ନବଳ ଯାଇ କହେ ରାଜାର ଅଗ୍ରତେ ।
ଶୁଣ ସାବଧାନେ ଶବ୍ଦଜିତ ଦଣ୍ଡଧାରୀ
ଅଦଭୁତେ ସୈନ୍ୟ ତୋର ଗଲେ ପ୍ରେତପୁରୀ

ବଡ଼ ଦୁରପଥ ଦେବ କେଉଁ ଦେଶ ରହ୍ୟେ
ଶାଳଶୀଳ ପର୍ବତରେ ନ ହୋଇଲେ କ୍ଷୟେ ।
ସଂଗ୍ରାମରେ ତୋର ସୈନ୍ୟ ପାଇଲେ ଯେ ଦୁଃଖ
ଶସ୍ତ୍ର ନ ଭେଦଇ ଅଙ୍ଗେ ହୋଇଲେ ବିମୁଖ ।
ଅଦଭୁତେ ତୋ ସମସ୍ତ ସୈନ୍ୟ ନାଶଗଲେ
ଯୋଜନେକ ପର୍ଯ୍ୟନ୍ତେ ଘାଏଡ଼ା ପାଡ଼ିଲେ ।
ସଇନଙ୍କ କଷ୍ଟ ଦେଖି ନୃପ ଶଙ୍ଖଜିତ
ଶାର୍ଦ୍ଦୂଳେକ ଚଢ଼ି ସେହୁ ବାହାରେ ତ୍ୱରିତ ।
ହସ୍ତେ ଏକ କାଳଚକ୍ର ଧରି ନୃପମଣି
କୋପେ ଗର୍ଜ୍ଜନ କରଇ କାଳସର୍ପ ଜାଣି ।
ସମରେ ପ୍ରବେଶ ହେଲା ହୋଇ କୋପମୂର୍ତ୍ତି
ଦୂରୁ ଦେଖିଲେ ନକୁଳବୀର ମହାକ୍ଷତ୍ରୀ ।
ମଳୟ ବସନ୍ତ ଦେନି ସେନାପତି ରଇ
ବୋଇଲେ ରଜା ସମ୍ମୁଖରେ ଓଗାଳ ହେ ଯାଇ
ଆଜ୍ଞା ପାଇ ମହାବଳ ଦୁଇ ସେନାପତି
ସୈନ୍ୟବଳ ଘେନ ଆଗେ ଓଗାଳିଲେ ଧାତି ।
କରେ କାଳଚକ୍ର ଘେନି ବୀର ଶଙ୍ଖଜିତ
ବସନ୍ତସେନ ଉପରେ ପିଟେ ବଜ୍ରପାତ ।
କାଳଚକ୍ର ଘାତେ ସେନାପତି ମହାବଳୀ
ଅସାଷ୍ଟମରେ ବସନ୍ତ ପଡ଼ିଲାକ ଢଳି ।
ବସନ୍ତସେନ ବିଚ୍ଛେଦେ ସେ ମଳୟ ବୀର
ମୁଦ୍‌ଗର ବୁଲାଇ ଧାଏଁ ହୋଇ କୋପଭର ।
ଶଙ୍ଖଜିତର ଉପରେ ପ୍ରହାରିଲେ କୋପେ
ପଡ଼ିଣ ଶାର୍ଦ୍ଦୂଳ ତଳେ ଲୋଟିଲା ତା ଦର୍ପେ ।
ବାହନବିହୀନ ହୋଇ ଉଠିଣ ଶଙ୍ଖଜିତ
ପଛରେ ଗୋଡ଼ାଇ ଧରେ ମଳୟବସନ୍ତ ।
କେଶ ଧରିଣ ଉତ୍ପୁଡ଼ି ଆଣେ କୋପଚିତ୍ତେ
ଦୂରେ ଥାଇଣ ଦେଖିଲା ଅଶ୍ୱିବୀର ସୁତେ ।
ରହ ରହ ବୋଲି ତାକୁ କରନ୍ତେ ବାରଣ
ନକୁଳ ବଚନେ ରକ୍ଷା ପାଏ ନୃପଗଣ ।
ବିକଳ ହୋଇଣ ତହୁଁ ପୁଚ୍ଛେ ଶଙ୍ଖଜିତ
ସ୍ୱାମି କେଉଁ ଦେଶର ତୁ ଅଟୁ ବଳବନ୍ତ ।
ଅବଶ୍ୟେ ଆସିଲୁ ତୁ ମୋହର ରାଜ୍ୟକୁ
ଅନମତେ ମାଇଲୁ ମୋ ଅନେକ ସୈନ୍ୟଙ୍କୁ ।
ତୋହର ଶତ୍ରୁ ତ ମୁହିଁ ନୁହେଁ କେଉଁକାଳେ
ବଡ଼ ଅପଚୟ ମୋର କର୍ମର ଅବଳେ ।

ନକୁଳ ବୋଇଲେ ଆରେ ମୂଢ଼ ମନ୍ଦମତି
ଦେଶାନ୍ତରେ ବାର୍ତ୍ତା ତୋତେ ଦେଉଛି ନାହାନ୍ତି
ମୁହିଁ ପାଣ୍ଡବ ଅଇସ୍ୱ ଅଟେ ସୋମବଂଶୀ
ମୋ ନାମ ନକୁଳ ଏଥି ବିଜୟକେ ଆସି ।
ଷନସହସ୍ର ରଜା ମୁଁ ନେବଇଁ ବନ୍ଦି
ରାଜସୂୟ ଯାଗକୁ ତୁ ଚଳ ହୋ ତଡ଼ିତ ।
ତୋହର ଆନ୍ଦର କରୁ ଯୀରଜ ନାହିଁ
ଯାହାକୁ ଡାକ ଅଇଲେ କଳହନ୍ନ କାହିଁ ।
ଅକ୍ଷତ ଗୁଆକୁ ଘେନ ଭୁହୋ ଶଙ୍ଖଜିତ
ଅକାଉଣ୍ଡେ ଦ୍ୱନ୍ଦ୍ୱ କପାଁ କରୁ ଉପଚିତ ।
ନକୁଳ ଯାହା ବୋଇଲା ସେ ବଚନ ଶୁଣି
ଶାନ୍ତଲାଭ କଲା ତହୁଁ ସେହି ଦଣ୍ଡପାଣି ।
ପଳାଉଥିଲା ରାଜନ ଉଦ୍ଧୁଲା ଲେଉଟି
ନକୁଳଙ୍କୁ ପ୍ରଣିପାତ ହୁଏ ପାଦେ ଲୋଟି ।
ଅନେକ ଧନସୁଷ୍ଟେ କହୁ ଶଙ୍ଖଜିତ
ନିମନ୍ତ୍ରଣ ନେଲା ସେହୁ ହୋଇ ଶାନ୍ତଚିତ୍ତ ।
ଦଣ୍ଡ ଘେନ ଆଟ ବାହାରିଲେ ନରେଶ୍ୱର
ସାଜିଲା ଥାଟ ଘେନିଣ ବହୁତ ସମ୍ଭାର ।
ପଞ୍ଚବଂଶ ଲକ୍ଷରଜା ମତ୍ତଗଜ ସାଜ
ରଥ ନାହିଁ ଅର୍ଦ୍ଧଲକ୍ଷ ସାଜେ ମତ୍ତବାଜୀ ।
ପଦାତି ସୈନ୍ୟଙ୍କୁ ନେଲା ତିନି ଯେ ସାଗରେ
ସାଗର କୂଳକୁ ତେଜି ବାହାରେ ଉତ୍ତରେ ।
ଚଳନ୍ତି ନକୁଳ ସେତୁବନ୍ଧ ରାମେଶ୍ୱର
ପ୍ରବେଶ ହେଲେ ସୁବେଳ ଗିରିର ଉପର ।
ତେରଯୋଶ ଆୟତନ ସେ ଗିରିର ସ୍ଥଳୀ
ଉତ୍ସର୍ଗ ଅଟଇ ତିନଯୋଶରୁ ସେ ବଳି ।
ସେଠାରେ ଅଛଇ ଏକ ସୁବର୍ଣ୍ଣ ଦେଉଳ
ତାହାର ଉତ୍ସର୍ଗ ଅଟେ ଜାଣ ସାତତାଳ ।
ସେହି ସୁବର୍ଣ୍ଣ ଦେଉଳ ଚଢ଼ିଲେ ଯାଇଣ
ଦଶଦିଗ ଦେଖାଯାଏ କଲେ ନିରୀକ୍ଷଣ ।
ସେହି ଦେଉଳ ଭିତରେ ବିଜୟ ଧୂର୍ଜ୍ଜଟି
ସଂସାର ଅଦୃଶ୍ୟ ଥାଇ ପାତାଳରୁ ଫୁଟି ।
ଶ୍ରୀରାମ ଘାଟରେ ଯାଇ କଲେ ସ୍ନାନଦାନ
ଦ୍ୱାରେ ଦେଖିଲେ ପାଷାଣରୂପ ହନୁମାନ ।
ଦର୍ଶନେ ବହୁ ବିନୟେ କରିଲେ ଭକତି
ଦେଉଳ ଦେଖିଲେ ଭୂମିଗତ ପଶୁପତି

ବୈଦୁର୍ଯ୍ୟଶଙ୍ଖ ପ୍ରବାଳ କାନ୍ତିକ ଯେ ଜଣି
ଚକଶନ୍ତ ପ୍ରଭୃତିମ ତନଚାଳ ପାଣି ।
ଏସନ ସ୍ୱରୂପ ଦେଖି ଆଶ୍ଚର୍ଯ୍ୟ କୁମାର
ଚକ୍ଷୁରେ ଦେଖିବା ରୂପ ସଦାଶିବଙ୍କର ।
ନକୁଳ କୁମାର ତହୁଁ ହୋଇ ପରଣାମି
ବୋଲେ ଗିରିଜାବଲ୍ଲଭ ସଦାନନ୍ଦ ସ୍ୱାମି ।
ସିଦ୍ଧ ସମାଧି ସର୍ବଦା ଅଟଇ ତୋହର
ସ୍ଥୂଳଶୂନ୍ୟ ଭେଦବାକୁ ଶକତ ଯାହାର ।
ତୁମ୍ଭ କାଳ ତୁ ଅକାଳ ତୁମ୍ଭ ସର୍ବଭକ୍ଷ
ତୁମ୍ଭ ଯେ ମଧୁର ଶିବ କାଳକୂଟ ଭକ୍ଷ ।
ଜୟ କରୁଣା ସାଗର ଜୟ ରାମେଶ୍ୱର
ପ୍ରସନ୍ନେ ଶମ୍ଭୁ ଜଣିଲୁ ରାମ ଅବତାର ।
ବୃଷଭ ବାହନ ନାଥ ସୃଜ ସର୍ବନିଧି
ଯାହାର ପ୍ରସନ୍ନେ ନାଥ ମିଳଇ ଔଷଧି ।
ଶ୍ରୀରାମେଶ୍ୱର ଶ୍ରୀରାମଚନ୍ଦ୍ର କଲେ ପୂଜା
ଲକ୍ଷ୍ମଣ ଜନସ୍ୱେ ଭଜେ ତୁମ୍ଭ ଦେବରାଜା ।
ବାଞ୍ଛିତ ଅବାଞ୍ଛିତ ତୁ ଜଗଜନ ଗୁରୁ
କୃତାନ୍ତ ଭସ୍ମରୁ ନାଥ ତୁମ୍ଭ ଯେ ଉଦ୍ଧରୁ ।
ଅନ୍ଧକ ବିଦାରଣରେ ତୋର ବଦ୍ୟବୁଦ୍ଧି
କୃପାକର ବନ୍ଧାଇଲୁ ତୁମ୍ଭ ବାରିନିଧି ।
ଜନଙ୍କ ମନମୋହନ ପାଳନ୍ତ ତୁ ସର୍ବ
ଯୋଗୀଜନ ହୃଦରତେ ତୁମ୍ଭ ସର୍ବଜୀବ ।
ତୋର ପାଦେ ସେବାକର ରଘୁରାଜା ନାତି
ରାବଣକୁ ବଧ କଲେ ଯୁଝେ ଦାଶରଥି ।
ପୃଥ୍ୱୀ ଉଶ୍ୱାସ କରନ୍ତି କୌଣପକୁ ଧ୍ୱଂସ
ତୁମ୍ଭ ସ୍ଥୂଳ ତୁମ୍ଭ ସୂକ୍ଷ୍ମ ତୁମ୍ଭ ଅବିନାଶ ।
ତୁମ୍ଭ ବାରିନିଧି ନାଥ ଅଟୁ କି ପୁରର
ତୁ ନାଥ ପନାକଧାରୀ କନ୍ଦର୍ପ ଅରିର ।
ଶ୍ରୀରାମେଶ୍ୱର ସ୍ୱାମୀଙ୍କ ଚରଣାରବିନ୍ଦେ
କୋଟିଏ ତୀର୍ଥ ସଙ୍ଗମ ହୁଏ ଯେ ଉ ପାଦେ ।
କୋଟି କୋଟି ନଦୀ ଯେଣ ମହେଶ ମୁକୁଟ
ତା ସଙ୍ଗେ କଳମ୍ବ ନାଥ ଯେ କଲେ ଭକତ
ରାମେଶ୍ୱର ମହାଲିଙ୍ଗ ଅଟୁ ଶ୍ରୀଯୋଗାବଧି
ଶ୍ରୀରୁଦ୍ରମୂଳ ଖାଇଲା ବନେ ଜରବଧି ।
ସେହି ଲିଙ୍ଗକୁ ନକୁଳ କଲ୍ଲ ବହୁସ୍ତୁତି
ଭୂମିତଳ ଭେଜିଣ ଭଜେ କଲେ ଭୂମାପତି ।

ନକୁଳକୁ ସୁପ୍ରସନ୍ନ ହୋଇଣ ଯେ ହର
ବୋଇଲେ ମନର ବାଞ୍ଛା ପୂର୍ଣ୍ଣ ହେଉ ତୋର
ପାଇଲ୍ଲ ନକୁଳବୀର ମନ୍ତ୍ର ମହାସିଦ୍ଧି
ଯେଉଁରୂପେ ଉହ୍ଜାତ ହୋଇବାର ବଧି ।
ତହୁଁ ଚଳିଲ୍ଲ ନକୁଳ ବୀର ଚୂଡ଼ାମଣି
ସୁବେଳ ନଗ୍ରେ ପ୍ରବେଶ ହେଲ୍ଲ ଦଣ ଜଣି ।
ଦକ୍ଷିଣ କୋଶଳରେ ଯେ ବହୁରାଜ୍ୟ ସାଧି
କନ୍ଦଳୀ ବନେ ପ୍ରବେଶ ହେଲ୍ଲ ମହାଯୋଧି ।
ଦର୍ଶନ ପାଇଲେ ମହାଇନ୍ଦ୍ରନାଥ ସୁତ
ଭେଟିଲେ ଗୋରେଖ ମହାଯୋଗୀ ଅବଧୂତ ।
ଶୁକ୍ଳାମ୍ବର ପୁରୁଷ ହେ ଶିରେ ଜଟାବେଣୀ
ଈଶନଲେପ ସଉମ୍ୟ ପୁଣି ସିଦ୍ଧବାଣୀ ।
ବଂଶୀ ବାଦ୍ୟ କରୁଛନ୍ତି ସଦା ମତ୍ତଖେଳା
ଅନନ୍ତ ଗାୟତ୍ରୀ ମଧ୍ୟେ ଜପିଲା ବଉଳା ।
କରେ ଖର୍ପର ସ୍ଫଟିକ ଅଛି ବେନ କର୍ଣ୍ଣେ
କଣ୍ଠେ ବକୁଳର ମାଳା ପାଦୁକା ଗଗନେ ।
ସହି ସଙ୍ଗାତ ନାହିଁ ନା ଗମନାଗମନ
କେସ ମୁଁ ଉପମା ଦେବି ସେ ବନ ଶୋଭନ ।
ନକୁଳ କୁମର ଯାଇ ଭ୍ରମେ ଚଉପାଶେ
ଜୀବଜନ୍ତୁ କେହି ନାହିଁ ତାର ଆସପାଶେ ।
ଯୋଗାନଦୀର ଉତ୍ତରଦିଗ ଆରକୂଳେ
ଭେଟିଲେ ସେ ମହାତ୍ମାଙ୍କୁ ବକୁଳର ମୂଳେ ।
ନକୁଳ ଯେ ପୁଚ୍ଛା କଲେ ତୁ କେବଣ ଯୋଗୀ
ଏଡ଼େ ପ୍ରଶସ୍ତ ଭୂମିରେ କର୍ପା ନରତ୍ୟାଗୀ ।
ଗୋରେଖ ବୋଇଲେ ତୁମ୍ଭ ଶୁଣ ଆରେ ସୁତ
ଆମ୍ଭେ ଯେ ଅଟୁ ଗୋରେଖ ନାମେ ଅବଧୂତ
ଆଦ୍ୟନାଥ ଅଟନ୍ତି ଯେ ନିରଞ୍ଜନ ଗୋଷ୍ଠୀ
ତା ସୁତ ମତ୍ସ୍ୟେନ୍ଦ୍ରନାଥ ନାମେ ଇନ୍ଦ୍ରପତି ।
ମତ୍ସ୍ୟେନ୍ଦ୍ର ନାଥର ଜାଣ ଆମ୍ଭେ ଅଟୁ ସୁତ
ତୋର ଅଗ୍ରତେ କହିଲୁ ଜନ୍ମର ବୃତ୍ତାନ୍ତ ।
ତୁହୋ ନକୁଳ ନ ଜାଣୁ ଏହାର ବ୍ୟବସ୍ଥା
ରାଜ୍ୟ ଯେମନ୍ତେ ପାଇଲୁ ଶୁଣ ତାର କଥା ।
ଅନୁଭବନ ବୋଲିଣ ଏକ ସତ୍ୟଯୁଗେ
ଭବ ନାମରେ ପ୍ରଥିବୀ ବସେ ମଧ୍ୟସ୍ୱର୍ଗେ ।
ସ୍ୱାଙ୍କୁ ମାଡ଼ି ରହିଥିଲା ସାଗର ଖୀରେବ
ମହାଖଳା ପାତାଳକ ସୋମନାମେ ରୁଦ୍ର ।

କାଦମ୍ବରୀ ପାନେ ସେହୁ ହୋଇ ମତୁଆଳ
ଡେଇଁଣ ପଡ଼ିଲା ତହୁଁ ସେ ସାଗର ଜଳ ।
ବହୁକାଳ ଦ୍ୱନ୍ଦ୍ୱ କଲା ରତ୍ନାକର କୂଳେ
କ୍ଷୀରୋଦ ଗଣ୍ଡୂଷ ଜଳ ପୂର୍ଣ୍ଣ କରଥିଲେ ।
ଯେତେବେଳରେ ଗଣ୍ଡୂଷ କଲା ସେହୁ ସିନ୍ଧୁ
ତପୋଭୂମି ଖଣ୍ଡିଏ ମିଳେ ତହିଁ ମଧ୍ୟୁ ।
କାହାର ରାଜ୍ୟ ନୁହଇ ଯେ କୌଣସି କାଳେ
ସମୁଦ୍ର ଛଡ଼ା ଖଣ୍ଡିଏ ଅଟଇ ସେ ବେଳେ ।
କନ୍ଦଳରେ ଛଡ଼ାଇଲେ ସୋମଚନ୍ଦ୍ର ଦେବେ
କନ୍ଦଳ ନାମେ ବିଖ୍ୟାତ ହେଲା ତହୁଁ ତେବେ
ଏ ଅନାଥଭୂଇଁ ଯହୁଁ ପ୍ରକାଶିଲା ଆସି
ଆମ୍ଭେ ତ ଅନାଥ ପୁଣି ହୋଇଅଛୁ ସନ୍ନ୍ୟାସୀ ।
ଏ ଭୁବନେ ଆମ୍ଭେ ତହୁଁ ହେଲୁ ନରପତି
ଏ ସ୍ଥାନକୁ ନ ଆସନ୍ତି କେହୁ ଆମ୍ଭ ଜାତି ।
ନକୁଳ ବୋଲେ ନିର୍ମଳ ଅଟେ ଭୂମି ପାଷା
ଯାଗଯଜ୍ଞେ ଯିବାକୁ ନ ଥାଏ କେଉଁ ଇଚ୍ଛା ।
ଗୋରେଖ ବୋଇଲେ ଆମ୍ଭେ ଅଟୁ କୁତୂହଳୀ
ଭ୍ରମଣେ ସର୍ବଦା ଇଚ୍ଛା କଲୁ ଖୋଳାଖୋଳି ।
ସ୍ଥମୂରେ ଥୋଇଲେ ଯହୁଁ ନେଇ ନିମନ୍ତ୍ରଣ
ସାନନ୍ଦେ ପରମ ଯୋଗୀ କଲେ ତା ଗ୍ରହଣ
ହରଷେ ସଜ ହୋଇଲେ ମତ୍ସ୍ୟେନ୍ଦ୍ର ତନୟ
ତହୁଁ ଚଳିଲେ ସେଠାରୁ ବୀର ଅଶ୍ୱ ନେଇ ।
ପୁଣ ପୁଣ କୁମାର ଯେ ଆସଇ ଲେଉଟି
ଗୋରେଖଙ୍କୁ ଦେଖି ମନେ ଲଭି ମହାତୁଷ୍ଟି ।
ସେହନ୍ତ ସାରଥି ବୋଲେ ତହିଁ ନକୁଳକୁ
ପ୍ରତ୍ୟକ୍ଷ ଦେଖିଲୁ ଆସି ଗୋରେଖନାଥଙ୍କୁ ।
ଯାହାଙ୍କୁ ଦେଖିଲେ ନରେ ହୁଅନ୍ତି କୋଟିକଳ୍ପୀ
ମାଗ ସିଦ୍ଧବ୍ରହ୍ମ ତାଙ୍କୁ ବୋଲନ୍ତି ଯଦ୍ୟପି ।
ପିଣ୍ଡ ପ୍ରାଣ ଏକତତ୍ତ୍ୱ ଅଟେ ଯାହାଙ୍କର
ହେବୁ ଜ୍ଞାନ ପୁରୁଷ ସେ ତେଣୁ ଯୋଗେଶ୍ୱର
ସେହୁ ଯେ ଅଟନ୍ତି ଯୁଗଯୁଗାନ୍ତ ପୁରୁଷ
ତେଣୁକରି ମାନବଙ୍କୁ ହୁଅନ୍ତି ଅଦୃଶ୍ୟ ।
ସାରଥି ବାକ୍ୟେ ନକୁଳ ହୋଇ ପରଣାମି
ବୋଇଲା କହିବ ଜ୍ଞାନ କହିଦେବା ସ୍ୱାମି ।
ଗୋରେଖ ବୋଇଲେ ଏହି ସଂସାର ଜଞ୍ଜାଳ
ତାକୁ ତେଜିଲେ କରନ୍ତି ଜାଣ ଚିରକାଳ ।
କୁମାର ବୟସେ କ୍ଷେତ୍ର ବଳାଏ ତୋ ମନ
ଯୋଗ ସାଧିବା ବୟସ ନୁହେ ରେ ନନ୍ଦନ ।
ତୁମ୍ଭ ଯଦ୍ୟପି ମାଗିଲୁ ଦେବାକ ପଦାର୍ଥେ
ସ୍ତମ୍ଭନ ବିଦ୍ୟା ଏକ ଯେ ଦେଲେ ଅବଧୂତେ ।
ପବନର ଉଜାଣିକ କହିଲେ ବଖାଣି
ଶୋଷିଲେ ଅପ୍ସୁ କରଣ ଫେରାଇବ ଆଣି ।
କହି ଛଟକେ ଅଦୃଶ୍ୟ ହେଲେ ସେ ପୁରୁଷ
ତାହା ଦେଖିଣ ନକୁଳ ହୋଇଲା ହରଷ ।
ଦକ୍ଷିଣରେ ନିମନ୍ତ୍ରଣ ସବୁ କରି ଶେଷ
ଲେଉଟି ହସ୍ତିନାପୁରେ ହୋଇଲେ ପ୍ରବେଶ ।
ଜୟ ଜୟ ଜଗନ୍ନାଥ ମାନାବ୍ଧ ବିହାରୀ
କମଳା ସେବନ୍ତି ପାଦେ ହୋଇପ ଈଶ୍ୱରୀ ।
ନଖ କୋଣରୁ ଜାହ୍ନବୀ ହୋଇ ଉତପତ୍ତି
ତ୍ରିଜଗତ ପ୍ରାଣୀଙ୍କୁ ଯେ କରଇ ମୁକତି ।
ଧନ୍ୟ ହେ ମହିମାମେରୁ ମହିମା ଅପାର
ପାଣ୍ଡବ ରକ୍ଷକ ତୁମ୍ଭେ ଶରଣ ସୋଦର ।
ଗୋବର୍ଦ୍ଧନ ଗିରି ଧରି ତାରିଲ ଗୋପାଳ
ସେ ଭାର ସହିଲ ହାତ ନୋହିଲ ବିକଳ ।
ତେଣୁକରି ବୋଲାଉଛ ନାମ ଗିରିଧାରୀ
ସେ ଭାର ସହିଲେ ପ୍ରଭୁ ନ ହୋଇଲ ଭାରି ।
ମୋହର ଭାର ବହିଲ କି ଅବା ତୁମ୍ଭଙ୍କୁ
ଯେତେ ଡାକିଲେ ନ ଶୁଭେ ତେଣୁ ସେକର୍ଣ୍ଣକୁ
ଚଉଦ ବ୍ରହ୍ମାଣ୍ଡ ପ୍ରାଣୀ ଗୁହାରି ଶୁଣୁଛ
ମୋ ବେଳକୁ ପାଷାଣରୁ କଳା ଯାଉଅଛ ।
ଶୁଣ ବା ନ ଶୁଣ ତୁମ୍ଭେ ମୋର ଜପାମାଳ
ଶାରଳା ଦାସର ଅଟ ଅନ୍ତିମ ସମ୍ବଳ ।

---

## ସହଦେବଙ୍କ ପୂର୍ବଦିଗ ରାଜାମାନଙ୍କୁ ବରଣ ନିମନ୍ତେ ଗମନ, ତେତ୍ରେ ମହାଭାରତ ବିବରଣ, ମାର୍କଣ୍ଡ, କୋଲ୍ଲ କ୍ଷେତ୍ରକ ପ୍ରଭୃତି ରାଜାଙ୍କୁ ନିମନ୍ତ୍ରଣ ଏବଂ ନୀଳସେନ ରାଜା ସହିତ ଖଣ୍ଡଯୁଦ୍ଧ

ଏଥୁଅନ୍ତେ ବୈବସ୍ୱତ ମନୁ ନୃପବର
ଅଗସ୍ତି ମୁନିଙ୍କ ଗଳେ ଦେଇ ରତ୍ନହାର ।
ଧୂପ ଦୀପ ନଇବେଦ୍ୟ ବହୁତ ବାଢ଼ିଲେ
ନବବସ୍ତ୍ର ନବାସନେ ପୂଜଣ କୋଇଲେ ।

ହେ ମୁନି ତୁମ୍ଭ ପ୍ରସାଦେ ଏ ଭାରତ ବାଣୀ
ତୃପ୍ତି ହେଲି ପଞ୍ଚମନ ସର୍ବପର୍ବ ଶୁଣି ।
ନକୁଳ ଦକ୍ଷିଣ ଦିଗ କର ନମନ୍ତଣ
ହସ୍ତିନା ରାଜ୍ୟକୁ ଗଲେ ପୁଣି ଲେଉଟିଣ ।
ପୂର୍ବ ପଶ୍ଚିମ କେବଳ ବ'କ୍ସା ଜମ୍ବୁଅଛୁ
କିଏ ଏ ଦିଗକୁ ଗଲା କହ କୁମ୍ଭଦସ୍ଥ ।
ଶୁଣି ଅଗସ୍ତି ପଣ୍ଡିତ କହନ୍ତି ରାଜାଙ୍କୁ
ସହଦେବ ମନ୍ତ୍ରୀ ଗଲେ ପୂରୁବ ଦିଗକୁ ।
ମନଦେଇ ଶୁଣ ଏବେ ଆହେ ନରନାଥ
ତିନଦିଗ ରାଜା ସର୍ବେ ଗଲେ ଇନ୍ଦ୍ରପ୍ରସ୍ଥ ।
ଉତ୍ତରରାଜା ରହିଲେ ସେ ବାରୁଣାବନ୍ତେ
ଦକ୍ଷିଣ ରାଜା ଅଛନ୍ତି ଯାଇ ଇନ୍ଦ୍ରପ୍ରସ୍ତେ ।
ସର୍ବ ଆସ୍ଥିତନ ଅଟେ ଦ୍ୱାଦଶ ଯୋଜନ
ଗଙ୍ଗା ଯମୁନା ନଦୀର ଛଟ ମଧ୍ୟସ୍ଥାନ ।
ସର୍ବ ଅବତାର ସେହି କୁରୁକ୍ଷେତ୍ର ଭୂମି
ଦିଗମ୍ବରୀ କାତ୍ୟାୟନୀ ଯେ ପ୍ରେତରୂପେ ଭ୍ରମି ।
ମହାଭାରତ ସମର ହୁଏ ସେ ଭୂମିର
ଏମନ୍ତେ ସମର ହେଲା ତେଏସ୍ତର ବାର ।
ସଂଗ୍ରାମେ ମରନ୍ତି ତହିଁ ଯେତେ ମହାରଥୀ
ନିସତ ହୋଇଣ ସେହୁ ପଳାଇ ମରନ୍ତି ।
କୁରୁକ୍ଷେତ୍ରର ମଣ୍ଡଳ ଅଟେ ବାଉଯୁଣ
ରଜାଏ ହୁଅନ୍ତି କଟାଭିଳର ପ୍ରମାଣ ।
ଗତ ଅଗତ ହୋଇଣ ସେ ସ୍ଥାନରେ ଥାନ୍ତି
ଅସ୍ଥି ଚର୍ମ ମାଂସ ତହିଁ ମିଳାଇ ଯାଆନ୍ତି ।
ଯେତେବେଳେ ମହାଯଜ୍ଞ କଲେ ଯୁଧିଷ୍ଠିର
ଗତ ଅଗତ ସମସ୍ତେ ହୋଇଥାନ୍ତି ପାର ।
ପୁଣି ପୁଣି ଯଜ୍ଞ ହୁଏ ପୁଣିହିଁ ସମର
ପୁନଃପୁନଃ ମରି ତହିଁ ହେଉଥାନ୍ତି ପାର ।
ମହାଯଜ୍ଞ ଭୂମି ସେହି ମହାରଣ ଭୂଇଁ
ପୃଥ୍ୱୀରେ ଏମନ୍ତ ଭାବ ସବୁକାଳେ ହୋଇ ।
ଆହେ ବୈବସ୍ୱତ ମନୁ ପ୍ରଳୟ ହୁଅଇ
ପ୍ରଳୟ ଅନ୍ତରେ ପୁଣି ପୃଥିବୀ ଉଆଇ ।
ପୁଣି ସମାପ୍ତଣ ହୁଏ ଭାରତ ଭାରତେ
ଧାତୁବାଦ୍ୟ ପୁରୁଷ ସେ ଭ୍ୟାନ୍ତି ଏହିମତେ ।
ସବୁବର୍ଣ୍ଣ ଏକକରି କର ଏକମାଳ
ହୃଦେ ଲମ୍ବାଇଲେ ତାହା ନେଇ ବନମାଳୀ ।

ସେହି ଯେ ଅଟଇ ମାତା ସେହି ହୁଏ ପିତା
ସେହି ଜାତ ହୁଏ ପୁଣି ଶେଷକୁ ନିସ୍ତନ୍ତା ।
ଉତ୍ପତ୍ତି କରନ୍ତେ ତହୁଁ ହୋଇଯାଏ ଭାର
ଭାରଭର ହୋଇଲେ ନ ସହେ ବସୁନ୍ଧରା ।
ତହୁଁ ବସୁନ୍ଧରା ଦେବୀ ହୁଅଇ ବିକଳ
ଭାର ନିବାରଣ ପୁଣି କଲେ ସର୍ବକାଳ ।
ସର୍ବ କୌତୁକ କରଏ ସେହୁ ଅନ୍ତରସେ
ହରଇ ହରଇ ପୁଣି ରଜନୀ ଦିବସେ ।
ଏସନ ଭିଆଣମାନ ଜଗନ୍ନାଥ କଲେ
ତେଣୁ ଜଗତ ଜୀବନ ନାମକୁ ବହିଲେ ।
ଦିନ ସରବା କିମନ୍ତେ ଏମାନ ତ କରି
ନାନାଦି ଚରିତମାନ ଭିଆଏ ଶ୍ରୀହରି ।
କାଳ କଳୁଷ ଜନଙ୍କ ସବୁ କାଢ଼ିବାକୁ
ଇଚ୍ଛା ବଢ଼ାଇଣ ଥାନ୍ତି ଶ୍ରଦ୍ଧାରେ ତାହାକୁ ।
ନରନାରାୟଣ ସେହି ମହାନର୍କ ବନ୍ଧା
ନମୋ ନମୋ ଭଗବାନ ସଖା କି ଅସଖା ।
ତୋ କରସ୍ଥଳ ସଞ୍ଚିତ ଭାବେ କି ଅଭାବେ
ସନ୍ଥ ସଜ୍ଜନ ଧ୍ୱଂସ ପ୍ରସ୍ତାବେ ଅପ୍ରସ୍ତାବେ ।
ସୁରବର ସୁନ୍ଦର ତୁ କଥା ଜଗତ୍କେଠି
ମୋର ହୃଦସ୍ଥେ ବିକାଶୁ ତବ ନାମଗୋଷ୍ଠି ।
ଅଜ୍ଞାନେ କହଇ ମୁହିଁ ଯାହା ହୁଏ ଦୃଶ୍ୟ
ଜନ୍ମେ ଜନ୍ମେ ସେବକ ମୁଁ ତୋ ଦାସର ଦାସ
ଇତି ଶ୍ରୀ ପୁରାଣ ବାକ୍ୟ କହେ ଜନହିତେ
ବିଷ୍ଣୁ ପୁରାଣ କହିଲେ ବାକ୍ୟ ଏ ସଙ୍ଗତେ ।
ଇହଜନ୍ମ ସଂସାରେ ଅମାନ୍ତ ହରିବାକୁ
ଲୋଭ ମୋହ ହିଂସାଆଦି ନ ହେଉ କାହାକୁ
ଅଭୟ କାତ୍ୟାୟନୀ ତୁରେ ଅଟୁ ମୋର ମାତ
ପ୍ରତ୍ୟକ୍ଷରେ ବାକ୍ୟ ମୋତେ କର ତୁ ବ୍ୟକତ
ଅସଂଖ୍ୟ ସାଗର କଏ କରିବ ଲେଖନ
ସଂକ୍ଷେପି ଲେଖିଲେ କାହିଁ ପାଇବାକ ଦିନ ।
ଶୈଳରାଜାର ନନ୍ଦିନୀ କଲେ ମମ ହୃଦେ
ସ୍ୱେରେ ଧନ ପାଇ ଯଥା ରହନ୍ତି ଆନନ୍ଦେ ।
ଝଙ୍କଡ଼ପୁର ବାସିନୀ ପ୍ରତ୍ୟକ୍ଷେ ହିଙ୍ଗୁଳା
ବାଳି କୁତୂହଳେ ତୋର ସଦା ମତିଭୋଳା ।
ସେ ଦେବୀ ଚରଣ ତଳେ ଆରାଧି ମଙ୍ଗଳେ
ଲଭିବ ପରମ ଗତି ତାହାଙ୍କର କଳେ ।

ଶ୍ରୀଶାରଳା ଚଣ୍ଡୀଙ୍କର ଚରଣେ ଶରଣ
ଶୂଦ୍ରମୁନି ଶାରଳା ଯେ କରଇ ଜଣାଣ ।
ଶୁଣ ଏବେ ସାବଧାନେ ଦୁର୍ଲ୍ଲଭ ବାରତା
ସହଦେବ ପୂର୍ବଦିଗ ବିଜୟର କଥା ।
ବୁଳ କୃଷ୍ଣ ତ୍ରୟୋଦଶୀ ଅଟେ ଭୃଗୁବାର
ପୂର୍ବା ଫାଲଗୁନୀ ସିଂହ ଥିଲା ଶଶଧର ।
ଗର ନାମେ କରଣ ଯେ ବଇଧୃତି ଯୋଗ
ସମ୍ପୂର୍ଣ୍ଣ ଅମୃତ ଯୋଗେ ବିଜେ ପୂର୍ବଦିଗ ।
ଏକଲକ୍ଷ ରଥ ପୁଣ ବେନିଲକ୍ଷ ହସ୍ତୀ
ଚାରିଲକ୍ଷ ଅଶ୍ୱ ନବଲକ୍ଷ ଯେ ପଦାତି ।
ଟମକ ନିଶାଣ ଢୋଲ ଲକ୍ଷେ ଘାଇତୂର
ଆଲମ୍ବ ପାଟଛତ୍ର ଯେ ଅଇବ୍ରତ ତାର ।
ଏତେକ ସୈନ୍ୟ ଘେନିଣ ସେ ମଦନକଳା
ଦିଶେ ସୁସଜ୍ଜ ବାଳାର୍କ ପ୍ରାୟ ଅନର୍ଗଳା ।
ମହେନ୍ଦ୍ର ପର୍ବତେ ସେହୁ ଚଳେ ରଥ ବାନ୍ଧି
ସୁରସେନ ଶଙ୍ଖଧ୍ୱନି ଉଚ୍ଚରେ କରଇ ।
ମହେନ୍ଦ୍ର ଲଗ୍ନ ବୋଲିଣ ଅଛି ନଦୀଟିଏ
ତହିଁ ଯାଇ ସ୍ନାନ କଲେ ଅଶ୍ୱିନୀ-ତନୟେ ।
ତହିଁ ଚଳନ୍ତି ସଇନ ଅନେକ ହରଷେ
ପ୍ରବେଶ ପାଣ୍ଡବ ଯାଇ ମହେନ୍ଦ୍ରର ଦେଶେ ।
ତହିଁର ରାଜା ଅଟଇ ମାର୍କଣ୍ଡ ନୃପତି
ତାର ଅଗ୍ରତେ ଚରର ଯାଇଣ କହନ୍ତି ।
ଶୁଣ ଦେବ ସାବଧାନେ ମହେନ୍ଦ୍ରାଧିକାରୀ
କେବଣ ଦେଶର ରାଜା ଆସେ ସୈନ୍ୟ ଧରି ।
ଚରଗଣଙ୍କ ମୁଖରୁ ଏ ବାରତା ଶୁଣି
ଆସ୍ଥାନକୁ ତ୍ୟାଗକରି ଉଠେ ନୃପମଣି
ଶତଦ୍ୱାର ଅଷ୍ଟରତ୍ନ ସଙ୍ଗତରେ ଘେନ
ସମ୍ମୁଖରେ ମାର୍କଣ୍ଡ ରାଜା କରଇ ଦଇନ ।
ଅକ୍ଷତ ଗୁବାକ ଦେଲେ ବୀର ସହଦେବ
ପ୍ରୀତି ବଢ଼ାଇଲେ ତାରେ କରି ନାନାଭାବ ।
ତୁମ୍ଭ ପ୍ରୀତିଲୋକ ସିନା ଆମ୍ଭେ ଅଟୁ ରାଜା
ସମର୍ପଣ ଘେନି ଏବେ ଜୟନ୍ତାକୁ ଯା ଯା ।
ଅନେକ ଯେ କୃତକୃତ୍ୟ ହେଲା ମାର୍କଣ୍ଡ
ସଙ୍ଗତରେ ଘେନିଲା ସେ ଶତେ ପାରିଦଣ୍ଡ ।
ରଥ ଗଜସହ ଥିଲେ ତାର ଯେତେ ବାଜୀ
ଚଳିଲା ନରେନ୍ଦ୍ର ତହୁଁ ସେ ଗଡ଼କୁ ତେଜି ।

ତହୁଁ ସେ ସ୍ଥାନୁ ବିଜୟ କଲେ ସହଦେବ
ସିନ୍ଧୁ ଦେଶରେ ପ୍ରବେଶ ଘେନି ପ୍ରିୟସ୍ତବ ।
ସିନ୍ଧୁଦେଶ ରାଜା ନାମ ଅଟେ ଜୟଦ୍ରଥ
ଗଜ ଅଶ୍ୱ ନାହିଁ ଦଶସହସ୍ରେକ ରଥ ।
ଚରେ କହିଲେ ଦେବ ଶୁଣ ସିନ୍ଧୁପତି
ପୂର୍ବଦିଗୁଁ ବିଜେକରି ସହଦେବ ମନ୍ତ୍ରୀ ।
ପ୍ରବେଶ ହୋଇଲେ ଆସି ଏହି ସିନ୍ଧୁଦେଶେ
ବଡ଼ାଇ ପ୍ରତାପୀ ସୈନ୍ୟ ରହାନ୍ତି ସେ ରୋଷେ
ଦେଶାଇର ମୁଖୁ ବାର୍ତ୍ତା ଶୁଣି ଜୟଦ୍ରଥ
ନଗର ମଧ୍ୟେ ଉତ୍ସବ କରାଏ ରଚିତ ।
କଟକେ ପାଏଡ଼ାମାନ ପକାଇଲା ଖରେ
ପୂର୍ଣ୍ଣକୁମ୍ଭ ରମ୍ଭାତରୁ ପୋତେ ସର୍ବ ଦ୍ୱାରେ ।
ଆପଣେ ପାଦଗଣ୍ଡରେ ଗମିଲାକ ରସ୍ତେ
ଶ୍ରୀକରେ ଚାମର ଘେନି ବହୁତ ବିନୟେ ।
ସହଦେବ ବିଜେକଲେ ସେ ସିନ୍ଧୁ ରାଜ୍ୟରେ
ଜୟଦ୍ରଥ ଦେଖାକଲେ ସମୁଦ୍ର ତଟରେ ।
ରଥୁଁ ଉତୁରିଲେ ତହୁଁ ସହଦେବ ମନ୍ତ୍ରୀ
ଜୟଦ୍ରଥେ କୋଳାଗତ କରି ବହୁ ପ୍ରୀତି ।
କୋନ ସମ୍ଭାଷଣରେ ଯେ ବାରତା ବହୁତ
ଗଡ଼େ ପ୍ରବେଶିଲେ ଆସି ହୋଇ ହରଷିତ ।
କୁଶଳର ବାର୍ତ୍ତା କୁହାକୁହି ହୋନ୍ତି ବେନି
ଅନେକ ହରଷେ ବିଜେ ସେନାଙ୍କୁ ଘେନି ।
ବଡ଼ ସମ୍ଭ୍ରମରେ ରାଜା କରଇ ଉତ୍ସବ
ରାଜା ଭୁଞ୍ଜନ ଭୋଜନ କଲେ ସହଦେବ ।
ମଣୋହି ସାରିଣ ବିଜେ ଚନ୍ଦ୍ରଶାଳାପୁରେ
ଅକ୍ଷତ ଯୋଗାଡ଼ି ଦେଲେ ବହୁତ ବିଧିରେ ।
ପୁଣ ବୋଇଲେ ତୋହର ବନ୍ଧୁ ରାଜା ଯେତେ
ସମସ୍ତଙ୍କୁ ନିମନ୍ତ୍ରିଣ ଘେନଆସ ଏଥେ ।
ଜୟଦ୍ରଥ ବୋଇଲାକ ଯେତେକ ସଇନ
ସହସ୍ର ରାଜାଙ୍କୁ ମୁହିଁ ସଙ୍ଗେ ଯିବି ଘେନି ।
ଏମନ୍ତ କହି ମନ୍ତ୍ରୀକି ପେଷିଲା ସତ୍ୱର
ପ୍ରବେଶ ମନ୍ତ୍ରୀ ବିରଳଚନ୍ଦ ନଗର ।
ସେ ରାଜ୍ୟର ବର୍ଣ୍ଣାନିକ ନାମେ ନରପତି
ସହଦେବ ଚର ଯାଇ ବାରତା କହନ୍ତି ।
ଶୁଣ ସାବଧାନେ ବର୍ଣ୍ଣାନିକ ନୃପବର
ପୂର୍ବଦିଗୁ ଆସିଛନ୍ତି ସହଦେବ ବୀର ।

ରାଜାମାନେ ନିମନ୍ତ୍ରଣ କରିବା ନିମନ୍ତେ
ସକଳ ନରେନ୍ଦ୍ର ଯିବେ ଜୟନ୍ତୀର ପ୍ରାନ୍ତ ।
ବାରତା ପାଇଣ ଚଳେ ତହୁଁ ବର୍ଷ୍ଣାନଳ
ସମତନ୍ତ୍ର ସୈନ୍ୟ ତାର ସାଜଲ ଅନେକ ।
ଆପଣେ ଯେ ସମନ୍ତନ୍ତ୍ର ସେନ୍ୟ ସଙ୍ଗତ
ସହଦେବଙ୍କ ଦର୍ଶନ କଲା ଆସି ଧାଇ ।
ସମ୍ମୁଖେ ଆସି ସହସ୍ତେ ହୋଇ ପ୍ରଣାମି
ବୋଲେ ଜୀବନ ସଫଳ ହୋଇଲ ସ୍ୱାମି ।
ଅକ୍ଷତ ଗୁବାକ ତହୁଁ ଦେଇ ସହଦେବ
ବୋଇଲେ ରାଜର୍ଷି ଯାଏ ଚଳଯାଅ ଦେବ
ମାଦ୍ରୀଦେବଙ୍କ ନନ୍ଦନ ଆଜ୍ଞା ଅବଧାରି
ଦଣ୍ଡ ସେନ ଚଳଇ ସେ ଜୟନ୍ତୀ ନଗରୀ ।
ଅନେକ ଯେ ବାଇତ୍ର ଢମକାନ୍ଦ ବାଜେ
ଚନ୍ଦ୍ରଚୂଡ ଜଣି ଯାଇ ଐଶାନ୍ୟକୁ ଭଜେ ।
ବୃନ୍ଦାଅର୍କ ବୋଲଣର ରାଜ୍ୟ ଯେ ଗୋଟିଏ
ମଦନବସନ୍ତ ବୋଲି ତହିଁ ନୃପବସେ ।
ସେହି ରାଜାର ରାଜ୍ୟରେ ଭଜେ ମନ୍ତ୍ରୀବର
ସନ୍ନିଧିକୁ ଦକ୍ଷିଣ ପେଷିଲ ଉତ୍ତର ।
ମଦନବସନ୍ତକୁରେ ବାର୍ତ୍ତା କହ ଯାଇ
ଦଣ୍ଡ ଦେଉଣ ଗ୍ରାମକୁ ଆସୁ ନରସାଇଁ ।
ସ୍ୱାମିର ବଚନ ଶୁଣି ଚଳିଲ ମୃନେହ
ମଦନବସନ୍ତ ରାଜା ଗ୍ରାମରେ କହଇ ।
ଆହେ ରାଜା ସହଦେବ ପୂର୍ବଦିଗେ ବଜେ
ନିମନ୍ତ୍ରଣ କ୍ଷେତ୍ର ସମସ୍ତ ଦେଶ ନରରାଜେ ।
ସୈନ୍ୟ ସେନ ରହିଛନ୍ତି ମହୋଦଧି କୂଳେ
ଦର୍ଶନକୁ କରାଇବା ପ୍ରସନ୍ନର ବେଳେ ।
ଚାରମାନଙ୍କ ମୁଖରୁ ପାଇଣ ବାରତା
ଦେଖା ଦଇଶମା ଧନ ଘେନେ ଅପ୍ରମିତା ।
ମହୋଦଧିର କୂଳରେ ଭଜେ ମହାମନ୍ତ୍ରୀ
ନାମ ସଙ୍କେତ ଭାଳରେ ଭେଟି ଯାଇ କ୍ଷତ୍ରୀ
ଚାରେ ଜଣାଇଲେ ତବ ଆଜ୍ଞା ଅବଧାରି
ମଦନ ନୃପତି ଆସେ ଦେବ ଦେଖାକରି ।
ଜପଲପ୍ତ ବେଳେ ତାକୁ ଦେଲେକ ଅନାଇଁ
ନରପ୍ରଣ କରି ରାଜା ଶୁଭଲକ ଭୂଇଁ ।
ଅନେକ ବନସ୍ତେ ତହିଁ କହଇ ବାରତା
ମନ୍ତ୍ରୀବର ଗୁଣବନ୍ତ ଅଟେ ସାମରଥା ।

ସ୍ୱାମି ତବ ପାଦତଳେ ପଡ଼େ ମୋ ଭୁବନେ
ମହାଦଣ୍ଡ ଫଳଶ୍ରୁତି ଲଭେ ବହୁ ପୁଣ୍ୟେ ।
କହନ୍ତେ ପାଣ୍ଡବାମାନ ପାତ୍ର ଅମଳାତ୍ୟେ
ନଗ୍ରେ ଉତ୍ସବ କରନ୍ତି ଅତି ତୋଷଚିତ୍ତେ ।
ଅନେକ ଶୀତଳ ଦ୍ରବ୍ୟ ଉପହାରମାନ
ବହୁ ସମ୍ଭାରରେ ବାଡି ଅଛଇ ରାଜନ ।
ପାଣ୍ଡବା ଉପରେ ଅଷ୍ଟରନ୍ଧ୍ରାଦ କୁଡାଇ
ଲକ୍ଷେକ ସ୍ୱବର୍ଣ୍ଣ ରାଜା ପାଦପୂଜା ଦେଇ ।
ରାଜାଙ୍କ ଯେ ନିମନ୍ତ୍ରଣ କଲେ ସହଦେବ
ବୋଇଲେ ସୈନ୍ୟ ଚଳାଇ ଏକ୍ଷଣି ଯିବ ।
ସୈନ୍ୟ ଚଳାଇ ରାଜନ ଥୋକେ ଦୂର ଯାଉଁ
ସହଦେବ ପଥଗିରି ତ୍ୟାଗ କଲେ ତହୁଁ ।
ଦଣ୍ଡ ସେନ ସେଠାବରୁ ଚଳ ବୀରମଣି
ଦ୍ୱାଦଶ ନଗ୍ରେ ପ୍ରବେଶ ହେଲ ସେହିକ୍ଷଣି ।
ବୀରବାହୁ ନାମରେ ଯେ ସେଠାବର ରାଜା
ସହଦେବଙ୍କୁ ବହୁତ କଲା ପାଦପୂଜା ।
ସହଦେବ ନିମନ୍ତ୍ରଣ ଦେଲେକ ତାହାରେ
ଦଣ୍ଡ ଘେନ ଚଳେ ରାଜା ଜୟନ୍ତୀ ନଗରେ ।
କୃତାନ୍ତକ ନଗାଖରେ ରାଜ୍ୟ ମଧୁବନ
ତହିଁର ନୃପତି ନାମ ଅଟେ ଦ୍ୟୁମତ୍ସେନ ।
ସେ କୃତାନ୍ତ ନଗାଖରେ ଭଜେ ଅମାନିମା
ମହା ସମ୍ଭବେ ବିହାର କରନ୍ତି ସଇନ ।
ବଜାନ୍ତି ଯେ ଜୟଘୋଷ ଢମକ ବାଜନ୍ତି
ବାନାର୍କ ପଟ୍ଟରେ ଜରି ସଜ ରଥ ମଣ୍ଡି ।
ଫରହର ଆଲମ୍ବ ଯେ ଉଡ଼ଇ ରଥରେ
ଅନେକ କୌତୁକେ ଯାଇ ଚଳଇ ସମ୍ଭାରେ
ଦ୍ୟୁମତ୍ସେନ ନୃପତି ଯେ ବଳସେ ଆସ୍ଥାନେ
ଗ୍ରାମରେ ଭଲେ ଯାଇ ଦେଶାଉତମାନେ ।
ଶ୍ୱେତଦେବ ହସ୍ତିନାପୁର ଠାକୁର ଯୁଧିଷ୍ଠି
ବୃକୋଦର ଅଟନ୍ତି ଯେ ତାହାଙ୍କ କନିଷ୍ଠି ।
ତାହାଙ୍କ ଅନୁଜ ଅଟେ ବୀର ଅରଜୁନ
ନକୁଳ ବୋଲି କରଣ ତାହାଙ୍କର ସାନ ।
ସହଦେବ ଠାକୁର ଯେ ତାହାଙ୍କ ସାନୁଜେ
ମହାଦଣ୍ଡଇ ନିମନ୍ତେ ପୂର୍ବଦିଗେ ବଜେ ।
ହେ ଦେବ ସକଳ ରାଜା ଆଣିଲ ନିମନ୍ତ୍ରି
ଆମ୍ଭ ଦେଶକୁ ହେ ଦେବ କାଲି ଆସିଛନ୍ତି ।

ଶୁଣିଣ ହରଷର କହେ ତହୁଁ ଦ୍ୟୁମତ୍ସେନ
ତହିଁକି ଗଲେ କାରଣ ପୁଣି ଅଛି ପୁଣ୍ୟ ।
ଭୋଜନ ଅଶନ ଆଦି କହୁଛ ପାଇବା
ଲକ୍ଷକୋଟି ମନୁଷ୍ୟଙ୍କ ମୁଖକୁ ଯୋଗାଇବା ।
ଏହା କହି ସଙ୍ଗେ ଘେନି ଯୋଦ୍ଧା ଛତ୍ରକୋଟି
ଦ୍ୟୁମତ୍ସେନ ନୃପତି ସେ ଆସିଲେ ପାଶେଟି ।
ସହଦେବ ଛନ୍ତି ମଧୁସୂଦନ ପର୍ବତ
ତହିଁ ପ୍ରବେଶ ଦ୍ୟୁମତ୍ସେନ ନରନାଥ ।
ବହୁ ସମ୍ମତେ ଦର୍ଶନ କଲେ ଯାଇ ରାଜା
ଲକ୍ଷେ ସ୍ୱର୍ଣ୍ଣ ନେଇଣ କରେ ପାଦପୂଜା ।
ବହୁତ ବିନୟେ ରାଜା ବହୁତ ସମ୍ଭ୍ରମେ
ମଧୁବନ କଟକକୁ ନେଲେ ସହଦେବେ ।
ଇନ୍ଦ୍ର ବୈଜୟନ୍ତେ ଯେତେ ଦ୍ୱାଅନ୍ତି ଯେସନ
ମଧୁବନ ନରନାରୀ ଆନନ୍ଦ ସେସନ ।
ମନୋଜ୍ଞ ଯୋଗାଡ଼ମାନ କଲେ ନରପତି
ସହସ୍ରେକ ସୂପକାର ରନ୍ଧନ କରନ୍ତି ।
ନୃତ୍ୟ କରନ୍ତି ସେଠାରେ ବାରବିଳାସିନୀ
ସପ୍ତସ୍ୱର ବୀଣା ଜିଣି ମଧୁର ରାଗିଣୀ ।
ସ୍ନାନ ଦେବାର୍ଚ୍ଚନ କଲେ ବେଳ ସାତଘଡ଼ି
ମନୋଜ୍ଞକୁ ବାହାରିଲେ ତନ୍ଦ୍ରବେଳ ଛାଡ଼ି ।
ନାନାବିଧ ପିଷ୍ଟକ ପୁଣି ନାନାବିଧ ବ୍ୟଞ୍ଜନ
ସୂପକାର ପରଷନ୍ତି ସୁବାସିତ ଅନ୍ନ ।
ଭୋଜନେ ବସିଲେ ତହିଁ ସୈନ୍ୟ ସେନାପତି
ସମସ୍ତେ ଭୋଜନ କରି ଲଭିଲେ ତୃପତି ।
ଭୋଜନାନ୍ତେ ସହଦେବ କଲେ ଆଚମନ
କର୍ପୂରମିଶା ଖଡ଼ିଆ କରିଲେ ଚର୍ବଣ ।
କୁଟୁମ୍ବସହିତ ଘେନିଣ ସେ ଦ୍ୟୁମତ୍ସେନ
ଭୃତ୍ୟ ପରାୟେ ହୋଇଲେ ଖଟନ୍ତି ଆସ୍ଥାନ ।
ବେଦଧ୍ୱନି କଲେ ଦ୍ୱିଜେ ବହୁମେନେ ତୋଳି
ସୁଲକ୍ଷଣୀ ନାରୀ ତହିଁ ଦ୍ୟନ୍ତି ହୁଳହୁଳି ।
ରାଜା ବୋଲେ ଯାଗ କଲେ ମୋ ଉପରବଂଶେ
ତେଣୁ ତୋ ପାଦ ପଡ଼ିଲା ମୋର ଏହି ଦେଶେ
ପ୍ରସନ୍ନ ନାରାୟଣଙ୍କୁ ଦେଖିଲି ମୁଁ ତୋତେ
ରାଜ୍ୟକୁ ସୁଲଭ ମୋର ହେଲା ସର୍ବକାଳେ ।
ସହଦେବ ବୋଇଲେ ତୁ ମହତ ଧାର୍ମିକ
ଅମହତ ଜନ ସିନା ଅଟେ ଅବିବେକ ।

ଏହା କହିଣ ଯୋଗାଡ଼ ଦେଲେ ସହଦେବ
ଜୟନ୍ତା ଭୁବନେ କହେ ସମସ୍ତେଙ୍କି ଯିବ ।
ମୁଁ ଦର୍ଶନ କରାଇବି ଶ୍ରୀମ ଠାକୁରଙ୍କ
ସେ ଦର୍ଶନ କରାଇବେ ନେଇ ଯୁଧିଷ୍ଠିରଙ୍କୁ ।
ସ୍ନାହାନ ଭୋଜନ ସାରି ସେ ନୃପ ଦ୍ୟୁମନ
ତତକ୍ଷଣେ ସାଜିଲା ସମତନ୍ତ୍ରମାନ ।
ଚଳାଇ ନରେନ୍ଦ୍ର ତହୁଁ ସହିତ ତକ୍ଷଣେ
ସହଦେବ ବାହାରିଲେ ଅଇଶାନ୍ୟ କୋଣେ ।
ଭୋଜସେନ ଦେଶେ ଯାଇ ପ୍ରବେଶନ୍ତି ବୀର
ମହାରାଜ୍ୟ ଗୋଟିଏ ସେ ବଡ଼ାଇ ସୁନ୍ଦର ।
ସେ ରାଜ୍ୟକୁ ବେଢ଼ି ବହେ ନଦୀ ବୈତରଣୀ
କୋନ୍ତଭୋଜ ବୋଲିଣ ଯେ ତହିଁ ନୃପମଣି ।
ସେ କୋନ୍ତଭୋଜ ରାଜାର ଏକଇ ଦୁହିତା
ସେହି ଦୁହିତାର ନାମ ଅଟଇ କୋଇନ୍ତା ।
ସୋମବଂଶ ଅଧିପତି ପାଣ୍ଡୁ ନୃପମଣି
ତାହାଙ୍କୁ ପ୍ରଦତ୍ତ କଲେ କୁନ୍ତୀ ମହାରାଣୀ ।
କୁନ୍ତୀଙ୍କ ଯୁଧିଷ୍ଠିରଆଦି ପାଞ୍ଚଟି ଆତ୍ମଜ
ତେଣୁ ଅଜା ଅଟନ୍ତି ଯେ ରାଜା କୋନ୍ତଭୋଜ
ସେ ରାଜା ଅଗ୍ରତେ ଯାଇ କହିଲେ ମୁନେଇଁ
ସ୍ୱାମି ହେ କେବଣ ରାଜା ଦଣ୍ଡଆଣେ ବାନ୍ଧି ।
କୋନ୍ତଭୋଜ ଆଜ୍ଞା ଦେଲେ ମନ୍ତ୍ରୀକୁ ହକାରି
ଉତ୍ସବମାନ କରାଅ ରାଜ୍ୟରେ ମୋହର ।
କଟକ ଭିତରେ ନେଇ ପାଏଡ଼ା ସଜାଅ
ଦ୍ୱାରେ ପୂର୍ଣ୍ଣକୁମ୍ଭ ରମ୍ଭାତରୁକୁ ରୋପାଅ ।
ରାଜା ଆଜ୍ଞାପାଇ ମନ୍ତ୍ରୀ ଉତ୍ସବ କରାଏ
ସୈନ୍ୟ ଘେନିଣ ସେ ରାଜା ପାଶେଟିଣ ଯାଏ
କୁନ୍ଦଗିରି ଶିଖରରେ ଛନ୍ତି ବୀରମଣି
ସନ୍ନିଧେ ପ୍ରବେଶ ହେଲେ ଭୋଜ ନୃପମଣି ।
ସହଦେବ ରହିଥିଲେ ଆପଣାର ରଥେ
ଅଜାଗୁରୁ ଦେଖି ଭଜେ ହେଲେ ପାଦତଳେ
ସମ୍ମୁଖରେ ଯେ ପାଦ୍ୟଅର୍ଘ୍ୟ ଏକଗୋଟି ଥୋଇ
ଶୀଘ୍ରତରଣେ ସହଦେବ ଶୁଭିଲେକ ଯାଇ ।
କୋଳ କରିଣ ଧଇଲେ ନୃପ କୋନ୍ତଭୋଜ
ବହୁ ଅଳଙ୍କୃତ କଲେ ଅତ୍ମଜା ଆତ୍ମଜ ।
କର୍ପୂର କସ୍ତୁରୀ ଅଙ୍ଗେ କରିଲେ ମର୍ଦ୍ଦନ
ଅଗୁରୁ ଚନ୍ଦନ କଲେ ପୁଣି ହିଁ ଲେପନ ।

ଅନେକ ଯେ କୃତକୃତ୍ୟ ହୋଇଣ ନୃପସ୍ତ୍ରୀ
ପାଟକେ ପ୍ରବେଶ ହେଲେ ସହଦେବେ ନେଇ
ସ୍ନାନ ଭୋଜନ କରାଇ ତାଙ୍କୁ ମହାରସ୍ତେ
ର ପଲଙ୍କରେ ବସାଇ କରାଏ ଭଜସ୍ତେ ।
ଅନେକ ଆନନ୍ଦ ହେଲେ ପୁର ନରନାରୀ
ତଉତଳେ ଦେଖିବାକୁ ଲକ୍ଷା ପଣ୍ଡନର ।
ଧାମନ୍ତ ସରଦରଣୀ କାନ୍ତକୁ ଉପେକ୍ଷି
ପାଣ୍ଡବ ମନ୍ତ୍ରୀକ ଦେଖି ତୃପ୍ତ କଲେ ଆଖି ।
ମନ୍ତ୍ରୀବୋଇଲେ ହେ ପିତା ଯେତେ କୋଷଦଣ୍ଡ
ସବୁନ୍ତ ଯୋଗଣ ରଥ ଗଜ ଅଶ୍ୱ ମଣ୍ଡ ।
ବାଟରେ ଭେଟିବ୍ରା ଆଉ ଯେତେକ ରାଜାନ୍ତ
ସବୁନ୍ତ ସେନ୍ଧ ଚଳବୁ ଜସୁଦ୍ୱାର ପ୍ରସ୍ଥ ।
କୋଲ୍ହଦେଜ ବୋଇଲେକ ରାଜାନ୍ତ ଭୂ ସାଧି
ବନ୍ଧନରେ ସେନଆସ ସେ ସମସ୍ତ ଯୋଧି ।
ଏ ପୂର୍ବ ଦେଶର ଭୂମି ନୁହେ ଅସରଳ
ଦୁଷ୍ଟରାଜା ନୁହନ୍ତ ଏ ନ କରନ୍ତ ଗୋଳ ।
ଜ୍ଞାନବନ୍ତ ଧର୍ମବନ୍ତ ଅଟନ୍ତ ଦଣ୍ଡେ ତ
ପ୍ରୀତିବତ୍ସଳ ସର୍ବଦା ନୁହନ୍ତ ଉଦ୍ଧତ ।
ଏ ସର୍ବ ରାଜା ବଇନ୍ତ ବସ୍ତୁଙ୍କ ଆଶ୍ରିତେ
ଭୁମନ୍ତ ଅଶ୍ୱକ କେବେ ନୋହିବ ଯୁକତେ ।
ଏ ଦଶ ରାଜାଏ ପାଇଅଛନ୍ତ ବାରତା
ଆଜ୍ଞା ପାଇଲେ ଚଳିବେ ଏହି ମାତ୍ର କଥା ।
ଆସ୍ଥାନରେ ବସାଇଣ ଭୋଜ୍ୟଭୋଜ ରାଜା
ସହଦେବ କୁମରକୁ କଲେ ବହୁପୂଜା ।
ସେ ରାଜାକୁ ସହଦେବ କଲେ ନିମନ୍ତ୍ରଣ
ଆଜ୍ଞାଏ ବାହାର ରାଜା କୁଶଳ ହୋଇଣ ।
ତହୁଁ ସହଦେବ ସାର ଥାଟକୁ ଚଳାଇ
କରମଣ୍ଡଳ ରାଜ୍ୟରେ ପ୍ରବେଶିଲେ ଯାଇ ।
ଶ୍ରୀସ୍ୱାଭୁଜ ବୋଲିକର ତହିଁର ନୃପତି
ସେ ରାଜ୍ୟେ ଯାଏ ବଟବସ୍ୱାର୍ଯ୍ୟଙ୍କର ନାତି ।
ରାଜାର ଅଗ୍ରତେ ଯାଇ କହଇ ମୁନେନ୍ଦ୍ର
ଶୁଣ ଦେବ ସାବଧାନେ ବାରତା କହଇ ।
ସ୍ୱାମି ଏକଯୋଦ୍ଧା ଆସେ ତା ସୈନ୍ୟ ଅଳପ
ରଥ ଗଜ ପଦାତିକ ନୁହଇ ସଂକ୍ଷେପ ।
ଆନ ରାଜ୍ୟରେ ପଶିଲେ କେଉଁ ଦେବରସ୍ତେ
ବ୍ୟବହରନ୍ତ ସେ ସଇନ ଉଲ୍‌କାପାତ ପ୍ରାୟେ ।

ଉଗତ ମୁଖ ବାରତା ପାଇ ଶ୍ରୀସ୍ୱାଭୁଜ
ମନ୍ତ୍ରୀକୁ ବୋଇଲା ଆରେ ଦଣ୍ଡ ମୋର ସାଜ
ମୁହିଁ ଯେ ଅନ୍ୟ ରାଜ୍ୟକୁ ସାଜେ ହାଦେ ଥାଟ
ନ ବସ୍ତୁର କମ୍ପାଁ ଉଶେ ସେହ୍ନ ପରବାସ୍ତ ।
ଗର୍ଜିଲେ ଯୋଦ୍ଧାଏ ଶତ୍ରୁନ୍ୟେ ଲଗିଲେ ମୂର୍ଚ୍ଛ
କର୍ଣ୍ଣାଟ ସାଜେଣି ତହିଁ ସାଜବେଳକ ଥାଟ ।
ସହଦେବଙ୍କ ଆଗରେ କହନ୍ତ ଉଗର
ଶୁଣ ସାବଧାନେ ଦେବ ପାଣ୍ଡବ ସୁନ୍ଦର ।
କର୍ଣ୍ଣ ମଣ୍ଡଳର ରାଜା ବଡ଼ଇ ପ୍ରତାପୀ
ଗର୍ଜ୍ଜନ୍ତ ଗଙ୍କିଆ ଧର ହୋଇ ମହାକୋପୀ ।
ଆଗେ ଉତ୍ତାଳକେ ଦେବ ମହାକୋପ କରି
ଭଡନ୍ତ ନାଗର ସେହ୍ନ କହୁ ନ ବସ୍ତର ।
ସହଦେବ ଡାକେ ସୁରେଶ୍ୱର ସେନାପତି
ବୋଲେ ଆସିଅଛୁ ଆମ୍ଭେ ତାହାକୁ ନମନ୍ତି ।
ଏଥିର ବାରତା ତାକୁ ସବୁ କହଯାଇ
ନ ଜାଣିଣ ଦଣ୍ଡସାଜେ ସେହ୍ନ କାହିଁପାଇଁ ।
ସହଦେବ ଆଜ୍ଞାରେ ଯେ ଚଳେ ସୁରେଶ୍ୱର
ଅଶ୍ୱ ଚଢ଼ି ଯାଏ ମନ୍ତ୍ରୀ ରାଜାର ଆଗର ।
ଦେଖି ଜ୍ଞାନବର ମନ୍ତ୍ରୀ ପୃଚ୍ଛଇ ବାରତ
କେଉଁଣ ଦେଶରୁ ତୁମ୍ଭେ ହୋଇଲ ଆଗତ ।
ଉଲ୍‌କାପାତ ଜାଣି ଯେସନ୍ତେ ଆଣିଅଛ ଥାଟେ
ନ ପର୍ଜ୍ୱର ପଶିଲ ଯେ ଆସି ପରରାଷ୍ଟ୍ରେ ।
ସୁରେଶ୍ୱର ବୋଲେ ମନ୍ତ୍ରୀ ଶୁଣ ରାଜାଗତେ
ଆମ୍ଭେ ଆସିଛୁ କେବଳ କରଣ ନିମନ୍ତ୍ରେ ।
ବୋଲେ ସୋମବଂଶେ ଜାତ ଯୁଧିଷ୍ଠିର ରାୟେ
ତା କନିଷ୍ଠ ସହଦେବ ମାଦ୍ରୀର ତନୟେ ।
ପୂର୍ବଦରେ ଉତ୍ତେକଲେ ନିମନ୍ତ୍ରଣ ପାଇଁ
ଏହିରୂପେ ଚତୁର୍ଦ୍ଦିଗେ ଗଲେ ଚାରିଭାଇ ।
ରାଜସୂୟ ଯଜ୍ଞ କରିବେ ଧର୍ମ ନରପତେ
ସହଦେବ ଆସିଛନ୍ତ କରଣ ନିମନ୍ତେ ।
ଜମ୍ବୁଦ୍ୱୀପ ମଧ୍ୟେ ଛନ୍ତ ଲକ୍ଷେ ନରପତି
ଚତୁର୍ଦ୍ଦିଗ ରାଜାଙ୍କୁ ଯେ ନେଉଛୁ ନିମନ୍ତି ।
ନିମନ୍ତ୍ରଣ କାର୍ଯ୍ୟେ ଆସୁ ନୋହୁ ହିଂସାକାରୀ
ଉତ୍ସବ କାର୍ଯ୍ୟେ ବନ୍ଧୁଙ୍କୁ ନେଉଛନ୍ତ ଯେପରି ।
ତୁମ୍ଭ ଆମ୍ଭର ଅଛଇ ପ୍ରୀତି ବନ୍ଧୁପଣ
ଉତ୍ପାତ କରିବାର ଅଟେ ଅକାରଣ ।

ମାଧୁର୍ଯ୍ୟ ବଚନ ଯତ୍ନ କହେ ସେନାପତି
ବାସୁଦେବ ରାଜା ଛାମୁରେ ଜଣାଇଲ ମନ୍ତ୍ରୀ ।
ଶୁଣ ସାବଧାନେ ସେହୁ ପଣ୍ଡୁ ରାଜ ପୁତ୍ର
କୋନ୍ତଭୋଜ ରାଜା ନାତି କୁନ୍ତୀଦେବୀ ସୁତ
ଯଜ୍ଞ ନିମନ୍ତେ ଆଇଲେ ରାଜା ନିମନ୍ତ୍ରଣେ
ବସ୍ତୁ ସମାର୍ଜ୍ଜନା କରି କହେ ବନ୍ଧୁ ପଣେ ।
ବନ୍ଧୁ ପଣେ ବୁଝାଇଲ କାରଣ ଉତ୍ତମ
ଶୁଣି ତୃପ୍ତ ହେଲ ରାଜା ଶାନ୍ତ କଲ ତମ ।
ଆପଣେ ନୃପତି ଏକ ଅଶ୍ୱରେ ଆରୋହି
ସୈନ୍ୟବଳ ମାନଙ୍କୁ ସେ ପଛରେ ରଖାଇ ।
ଅଶ୍ୱ ତ୍ୟାଗକରି ତହୁଁ ଆପଣେ ନୃପତି
ହସ୍ତରେ ଚାମର ଧରି କରେ ପାଦଗତି ।
ଯେଉଁଠାରେ ବସିଛନ୍ତି ଅଶ୍ୱିନୀ ଆତ୍ମଜ
ଛାମୁରେ ପ୍ରଣାମ କଲେ ରାଜା ଶ୍ରୀସ୍ୱାଭୁଜ ।
ଶ୍ରୀଭୁଜରେ ସହଦେବ ରାଜା କଲେ କୋଳ
ଶ୍ରୀସ୍ୱାଭୁଜର କଣ୍ଠରେ ଦେଲେ ରତ୍ନମାଳ ।
ବେନକୁଳ ସମ୍ଭାଷଣ ଅନେକ ପୀରତି
କଟକେ ପ୍ରବେଶ ହେଲେ ଯାଇଣ ଛଡ଼ିତ ।
ଅନେକ ଅକ୍ଷତେ ପୂଜା କଲ ଶ୍ରୀସ୍ୱାଭୁଜ
ଭୋଜନ ଯୋଗାଡ଼ ସବୁ ଆଗେ କରି ସଜ ।
ସହଦେବ କୋଇଲେକ ମୋତେ ବେଳନାହିଁ
ଯାଇ ରାଜା ନିମନ୍ତ୍ରଣ କରିବଇଁ ମୁହିଁ ।
ନଉଦ୍ଧନେ ନିମନ୍ତ୍ରିବ ତିନସସ୍ର ରାଜା
ମୋ ବଡ଼ ରାଜାଏ ଆଗେ କରିବେ ଯେ ପୂଜା
ନିର୍ମଳ ଦେଶ ଅଟଇ ସେହି ପୁଣ୍ୟଭୂମି
ବ୍ରାହ୍ମଣେ ରାଜା ଅଟନ୍ତି ସର୍ବେ ମହାବ୍ରହ୍ମୀ ।
ପ୍ରଥମେ ଅକ୍ଷତ ଦେବେ ମହାଯଜ୍ଞ ସ୍ଥାନ
ନିର୍ବନ୍ଧେ ନେବାକୁ ରାଜା ଆଜ୍ଞା ଭଗବାନ ।
ଚାରିଦଗକୁ ଅଇଲୁ ଆମ୍ଭେ ଚାରିଭାଇ
ଚାରିଗୁଣ ଲକ୍ଷେରାଜା ନିମନ୍ତ୍ରିବା ପାଇଁ ।
ନିଶ୍ଚିତ ଆଜ୍ଞା ଆମ୍ଭଙ୍କୁ ଦେଲେ ବାସୁଦେବ
ନଉଦ୍ଧନରେ ନ ଗଲେ ମୁଣ୍ଡକାଟ ହେବ ।
ତେଣୁ ଭୋଜନ ଶୟନେ ମୋର ନାହିଁ ଇଚ୍ଛା
ଆଗେ ଯେ କରିବ ଦେଖା ପୂରିବ ତା ବାଞ୍ଛା ।
ଏହା କହି ନିମନ୍ତ୍ରଣ ଦେଲେ ସହଦେବ
ପାରିଦଣ୍ଡ ରାଜା ଘେନ ଏହିକ୍ଷଣି ଯିବ ।
ନଗଧାର ଆଜ୍ଞା ପାଇ ସାଜ ପାରିଦଣ୍ଡ
ତକ୍ଷଣେ ବାହାରେ ରାଜା ତେଜ ରାଜ୍ୟଖଣ୍ଡ ।
ତହୁଁ ସହଦେବ ଆଟ ଚଳାଇ ହରଷେ
ପ୍ରବେଶ ହୋଇଲ ଯାଇଁ ମିଥିଳାର ଦେଶେ ।
ନନ୍ଦସେନ ବୋଲି କରି ତହିଁ ଅଟେ ରାଜା
ସହଦେବ ଭଳେ ଜାଣି କଲ ପାଦପୂଜା ।
ପଞ୍ଚାଶ ଭାଇ ସୁକର୍ଣ୍ଣ ଦେଖା ବରଣୀ
ଦର୍ଶନ କଲ ପଞ୍ଚାଶ ପୁତ୍ରଙ୍କୁ ସେ ଘେନି ।
ଆପଣେ ରାଜା ଚାମର ଢାଳଇ ଅଗ୍ରତେ
ପୁଣି ପୁଣି ପ୍ରଣିପାତ ହୁଅଇ ଭକତେ ।
ନଉଛାଳ କରି ରାଜା ରହେ ପୁଭ ମେଣ୍ଟି
ମୋର ଶିରେ ଥୋଇଦଅ ତୋର ପାଦଗୋଟି
ଜୀବନ କାରଣ କର ମୋର ଜନ୍ମ ଜନ୍ମେ
ଲଭିବ ଅନେକ ପୁଣ୍ୟ ଭକ୍ତି ଅନୁକ୍ରମେ ।
ସହଦେବ ବୋଇଲେ ଯେ ତୋ ଜୀବନ ସାଧୁ
ପୂର୍ବବଗ ରାଜାମାନେ ମୋର ପ୍ରାଣବନ୍ଧୁ ।
ଏହା କହିଣ ଅକ୍ଷତ ଦେଲ ମହାମନ୍ତ୍ରୀ
ସମଦଣ୍ଡ ଘେନ ରାଜା ଚଳେ ତତକ୍ଷଣାନ୍ତେ ।
ସହଦେବ ଦକ୍ଷିଣକୁ ଗଲେ ମୁଖ କରି
ପ୍ରବେଶ ହେଲେ ମାଳେନ୍ଦ୍ର ନାମେ ଏକ ଗିରି ।
ମାଳେନ୍ଦ୍ରୀ ନଗରି ତୀରେ ମାଳେନ୍ଦ୍ରୀର ଦେଶ
ସେ କଟକ ଆୟୁତନ ପୂର୍ଣ ପଞ୍ଚଦଶ ।
ଶତେକ ଯୋଜନ ସ୍ଥଳୀ ସେ ରାଜ୍ୟ ଅଟଇ
ଖତେ ପାରିଦଣ୍ଡ ମାଳସେନକୁ ଖଟଇ ।
ରାଜାର ଆଜ୍ଞାରେ ଯାଇ କହିଲେ ମୁନେହି
ଶୁଣ ଦେବ ସାବଧାନେ ଦେଶବାର୍ତ୍ତା ଏହି ।
ହସ୍ତିନା ପୁରେ ଯୁଧିଷ୍ଠି ନାମେ ମହାରାଜା
ରାଜସୂ ଯଜ୍ଞେ କରିବେ ନୃପତିଏ ପୂଜା ।
ସହଦେବ ନାମେ ଏହୁ ନକୁଳର ସାନ
ନିମନ୍ତ୍ରି ଆସୁଅଛନ୍ତି ପୂର୍ବ ରାଜାମାନ ।
ଆମ୍ଭର ରାଜ୍ୟରେ ଆସି ହୋଇଲେ ପ୍ରବେଶ
ସୈନ୍ୟଙ୍କ ତେଜ ତାହାର ଅପୂର୍ବ ପ୍ରକାଶ
ଏସନକ ଶୁଣି ରାଜା କୋପେ ପରଚଣ୍ଡ,
ସନ୍ଧିଧିକୁ ହକାରିଲ ଶତେ ପାରିଦଣ୍ଡ ।
ବୋଇଲେ ଧାଆଁରେ ସର୍ବେ ବେଢ଼ି କରି ଧର
ଭାଙ୍ଗିବା ଦର୍ପ ତାହାର ଜୀବନେ ନ ମାର ।

ଚରଣ ପରାଘେ ତାକୁ କମ୍ପିତ ହୋଇ
ଅସ୍ଥି ମାଂସ ତାର ଆଜ ଦେହ ବସାଇଲ ।
ମୋହର ମହିମା ତାର ନାହିଁକି ଶୁଣିଲ
ନଷ୍ଟସ୍ୱରେ ନାଶକର ତା ପାଞ୍ଜି ଗୋଟିଲ ।
ରାଜା ବଚନେ ସାଜିଲେ ସମସ୍ତ ସଇନ
ଗଜ ପୃଷ୍ଠେ ଚଢ଼ି ରାଜା ଅସିଚକ୍ର ଘେନ ।
ଉଠିଲେ ସେ କୋପାନଳେ ରେକାର ଶବଦେ
ମହା ଉଚ୍ଛୁଳ ପବନ ତାହାଙ୍କର ନାଦେ ।
କଟକେ ପଶନ୍ତେ ସହଦେବର ସଇନ
ଉଭାଇଲେ ଯୋଦ୍ଧାମାନେ ଅସ୍ତ୍ରମାନ ଘେନ ।
ଝଲକାଇ ଲଙ୍କୋଆକୁ ବୁଲବନ୍ତି ହୋଇ
ଶ୍ୟାମଳ ମେଘେ ଯେସନେ ଝଲକେ ବିଜୁଳି
କୋଦଣ୍ଡେ ଶର ଯୁଡ଼ଇ ଅତି କୋପଭରେ
ଅବକ୍ଷଣରେ ବର୍ଷିଲେ ସୈନ୍ୟଙ୍କ ଉପରେ ।
ଶରତ ମେଘୁ ଯେସନେ ହୁଏ ବଜ୍ରପାତ
ଗୁଣ ଟଙ୍କାର ଶବଦେ ଶୁଭେ ସେହିମତ ।
ସୈନ୍ୟେ ତଆର ବୋଲନ୍ତି ମାଦ୍ରୀଙ୍କର ବତ୍ସ
ଉଜମ ପ୍ରକାଶ ହୋଇ ରଣୁ ଦଣ୍ଡେ ଘୁଞ୍ଚ ।
ମନ୍ତ୍ରିବରଙ୍କ ବଚନେ ଧୁଞ୍ଚନ୍ତି ସଇନ
କଟାଳ ଦେଖି ନାରଚ ବର୍ଷିଲେକ ଘେନ ।
ବେନି ପ୍ରହର ହୋଇଲ ଛନ୍ଦି ଶରବୃଷ୍ଟି
ଶସ୍ତ୍ର ପଡ଼ିତାଳ ହେଉ ରଥଗଣ ଫାଟି ।
ବେନି ସୈନ୍ୟଙ୍କର ଯୁଦ୍ଧ ହେଲା ହଦ୍ୱଘର
ସ୍ତ୍ରଯୋଦ୍ଧା ଘେନି ଉଠେ ଛନ୍ଦି ସହଦେବ ।
ଆପଣା ସୈନ୍ୟମାନଙ୍କୁ ଉତ୍ସାହ କରଣ
ରହ ରହ ଡାକଦେଲ ପାଣ୍ଡବ ପଞ୍ଚାଣ ।
ଅହୋବଳ ସଂଗ୍ରାମରେ ପ୍ରସରିଲ ରାତି
ଇଣେ ପକ୍ଷେ ସହଦେବ ଆଉ ସେନାପତି ।
ଦଶସହସ୍ର ଯୋଦ୍ଧା ବେନି ସେହୁ ବୀରବର
ସେ ଦୁହିଙ୍କୁ ଆବୋରଣ କରିଲ ସମର ।
ନ ଘୁଞ୍ଚନ୍ତି ସୈନ୍ୟ ତାର ବଢ଼ଇ ପ୍ରଚଣ୍ଡ
ସେ ନୀଳସେନ ରାଜାର ଶତ ପାରଦଣ୍ଡ ।
ବହୁତ ସଇନ୍ୟ ଛନ୍ଦି ହେଲେ ଅନାଅନ
ଉଠିଲେ ଏକ ମୁଖରେ ସହଦେବ ସୈନ ।
ବର୍ଷନ୍ତି ଶର ଘରଷ ପୁଣି ତୀକ୍ଷ୍ଣ ମୁନା
ଭିଡ଼ିଲେକ ରଥ ଗଜ ଫୁଟି ବଜ୍ରସେନା ।

ହସ୍ତୀଙ୍କ କୁମ୍ଭସ୍ଥଳରେ ଶର ହୋନ୍ତେ ବୃଷ୍ଟି
ଗର୍ଜ୍ଜନ ନାଦ କରଣ ମଲେ ମହାଙ୍ଗଟି ।
ଘୋର ଶସ୍ତ୍ର ଘାତରେ ଲୋଟନ୍ତି ଗଉଚେ
ରଥ ଗଜ ଅଶ୍ୱ ଘେନ ପଳାନ୍ତି ସମସ୍ତେ ।
ସହଦେବଙ୍କର ସୈନ୍ୟ ଶ୍ରୀକୃଷ୍ଣ ପ୍ରସାଦେ
ପଡ଼ିଲେ ଅନେକ ଯୋଦ୍ଧା ଯତ୍ନ ଅପ୍ରମାଦେ ।
ବିକଳେ ବିପକ୍ଷ ସୈନ୍ୟ ପଳାଇଲେ ଭୋଜ
ପାଣ୍ଡବ ବଳ ଉଠିଲେ ଛନ୍ଦି ଗଳଗାଜ ।
ତିନିକୋଶ ପରଯନ୍ତେ ପାଏଡ଼ା ପାଡ଼ିଲେ
ଭଗ୍ନବଳ ରାଜା ଆଗେ ଯାଇ ଉଭା ହେଲେ ।
ତାଙ୍କୁ ଦେଖିଣ ବିଷ୍ମୟ ହେଲ ଚକ୍ରବର୍ତ୍ତୀ
ସ୍ୱରଲକ୍ଷ ଯୋଦ୍ଧା ଘେନି ଚଢ଼େ ମତ୍ତହସ୍ତୀ ।
ରହ ରହ ବୋଲିକର ଡାକେ ନୃପମଣି
ଗର୍ଜଣ ନାରଚ ମାନ ବର୍ଷିଲେକ ଟାଣି ।
ରାଜା ଦେଖି ସହଦେବ ଯାଇ ହେଲ ଆଗ
ଦେଖିକରି ସ୍ତମ୍ଭୀଭୂତ ହେଲ ମହାଭାଗ ।
ସହଦେବ ପଚାରଇ ସେ ନୀଳ ରାଜାକୁ
ଅକାରଣେ ରଣ କିପା କରୁ ମରିବାକୁ ।
ମୁହିଁ ଅଇଲଇଁ ପୂର୍ବ ଦିଗର କରଣେ
ରାଜସୂୟ ଯଜ୍ଞ ସଜ୍ଜକୁ ରାଜା ନିମନ୍ତ୍ରଣେ ।
ପୂର୍ବ ରାଜା ଯାଉଅଛନ୍ତି ହସ୍ତିନା ରାଜ୍ୟକୁ
ତୋ ପରାୟେ ମୂର୍ଖରାଜା ନ ଦେଖିଲି ତାଙ୍କୁ ।
ଜୀବନ ରଖଉ ମଣୁ ଆୟୁ ଥାଉଁ ରାଜା
ନ କର ସଂଗ୍ରାମ ଏବେ ବେଗେ ଘୁଞ୍ଚ ଯା ଯା
ମୁଁ ଅଟେ ପାଣ୍ଡବଙ୍କର ସିନା ମନ୍ତ୍ରୀବର
ତୋ ଧୃଷ୍ଟପଣକୁ ଯୋଗ୍ୟ ଅଟେ ବୃକୋଦର
ଏବେ ତୋର ମନ୍ଦପଣ ଛାଡ଼ ହୋ ନୃପତି
ମୁହିଁ ସିନା ଆସିଅଛି ରାଜାଙ୍କୁ ନିମନ୍ତି ।
ରାଜସୂୟ ଯଜ୍ଞ ଯାହାର ଏମନ୍ତ ବିଧାନ
ଦର୍ଶନେ ଖଣ୍ଡଇ ପାପ ମିଳେ ବହୁ ପୁଣ୍ୟ ।
ପୂର୍ବଦିଗେ ରାଜା କେହି ନାହିଁ ଏଡ଼େ ଦୁଷ୍ଟ
ମୂର୍ଖ ଅଜ୍ଞମା ଭୂମିରେ ବଢ଼ାଇ ପାପିଷ୍ଠ ।
ଭଲେ ଭଲେ ବୁଝାଇଲି ଭଲପଣେ ମୁହିଁ
ତା ନୋହିଲେ ଏତେବେଳେ ଜୀଅନ୍ତୁକ କୁହି
କହୁଁ କହୁଁ ସହଦେବ ବିକାଶିଲ ତେଜ
ନୀଳସେନ ନୃପତିଙ୍କ ଭଣେ ସହ୍ରଭୁଜ ।

ଏମନ୍ତ ଦେଖି ଆଶ୍ଚର୍ଯ୍ୟ ହୋଇଲା ରାଜନ
ତନ୍ତେ ଏ କି ସତ୍ୟଯୁଗ ସହସ୍ରାର୍ଜ୍ଜୁନ ।
ପୁରାଣେ ଯା ଶୁଣିଥିଲି ଦେଖିଲି ତା ତେବେ
ମୋହର ମନରୁ ଭ୍ରାନ୍ତ ଗଲା ଏତେବେଳେ ।
ଗୁଣ ସ୍ୱରୂପ ସକଳ ସୁମରିଣ ରାଜା
ତକ୍ଷଣେ ବାହନ ତାର କଲା ପରତେଜ୍ୟା ।
କରରୁ ଘୁଞ୍ଚିଲା ତହୁଁ କମାଣ କୋଦଣ୍ଡ
ପ୍ରଣିପାତ ହେଲା ଯାଇ ନୃପ ନୀଳଷଣ୍ଡ ।
ଗଡ଼ ଘାଲିଣ ସ୍ତୁତି କରି ନଉଥିଲି
ଆଜ ନୀଳଷଣ୍ଡ ସହଦେବ ଦେଲେ ତୋଳି ।
ନୀଳସେନକୁ ତୋଳିଲା ନିଜ ରଥ ଥିଡ଼
ଆକର୍ଷଣ କେ କଲା ଶ୍ରୀଭୁଜରେ ଭିଡ଼ ।
ଏକ ରତ୍ନମାଳା ନେଇ ଲମ୍ବାଇଲା ସ୍କନ୍ଧେ
ଦେଖି ଫିଟିଗଲା ଭ୍ରାନ୍ତ ପରମ ଆନନ୍ଦେ ।
ବୋଇଲା ମୁଁ ଅଟେ ମୂର୍ଖ ପୁଣିହିଁ ଅଜ୍ଞାନ
ନୁହଇ ଧାର୍ମିକ ମୁହିଁ ପୁଣ ଶିଷ୍ଟଜନ ।
ତୁମ୍ଭ ଶରଣପଞ୍ଜର ଜଗନ୍ନାଥ ବନ୍ଧୁ
ଏ ମଧ୍ୟଭୁବନେ ତୋର ଜୀବନହିଁ ସାଧୁ ।
ତୁମ୍ଭ ଶରଣରକ୍ଷଣ କରୁଣାସାଗର
ଦାସ ଦୋଷ କ୍ଷମା ତୁମ୍ଭ କର ଯେ ମୋହର
ସହଦେବ ବୋଇଲେ ଯେ ଅଜ୍ଞାନ ପ୍ରାଣୀକ
ପଣ୍ଡିତେ ନ ଧରିଥାନ୍ତି ତାହାର ବାଣୀକ ।
ସହଦେବ ବୋଲେ ଆଉ ନ ଭଳ ତୁ ଚତ୍ତେ
କ୍ଷତ୍ରିବୃତ୍ତି ଥିଲେ ନଷ୍ଟେ ଘଟଇ ଏମନ୍ତେ ।
ଗତଦୋଷ ପାଇଁ ଆଉ ନ କର ତୁ ଖେଦ
ଏ ପୂର୍ବ ହରେଗ ଆସିଲି ରାଜାଙ୍କୁ ନମନ୍ତ ।
ତର୍ଜି ନ ପାରିବାରୁ ହିଁ ଅକାରଣେ ଦୋଷୀ
ବିନା ଅପରାଧେ ତୋର ବଳ ହେଲା ଧ୍ୱଂସି ।
ଏହାକହି ନିମନ୍ତ୍ରଣ ଦେଇ ସେ ରାଜାକୁ
ବୋଇଲା ତୁ ଦଣ୍ଡ ଘେନ ଚଳ ଜୟନ୍ତୀକୁ ।
ଶୁଣି ସହଦେବ ପାଦେ ହେଲା ପରଣାମି
ବୋଇଲା ଆଜକ ରହ ଆହେ ଦେବସ୍ୱାମି ।
ସହଦେବ ବୋଇଲା ତୁ ଚଳ ସୈନ୍ୟ ଘେନ
କ୍ଷଣେହେଁ ନ ରହୁ ଯାଅ ଦିବସ ରଜନୀ ।
ତାହା ଶୁଣି ନୀଳସେନ ସୈନ୍ୟ ସଜକରି
ବାହାରି ହୋଇଲା ନିଜେ ଗଡ଼ ପରିହରି ।

ଜୟ ଜୟ ତକାଆଣି ମୁକୁନ୍ଦ ମୁରାରି
ଜୟ ଜୟ ଲକ୍ଷ୍ମୀକାନ୍ତ ଶଙ୍ଖ ଚକ୍ରଧାରୀ ।
ଜୟ ହେ କରୁଣାସିନ୍ଧୁ ଶରଣ ରକ୍ଷଣ
ତିନ ଭୁବନ ପ୍ରାଣୀଙ୍କ ଅଟୁ ତୁ କାରଣ ।
ତୋର ପାଦପଦ୍ମେ ଯେହୁ ଦୃଢ଼ତା ରଖଇ
ତାହାକୁ ପରୀକ୍ଷା କରୁ ନାନା କଷ୍ଟ ଦେଇ ।
ତହିଁରୁ ନିବର୍ତ୍ତି ହୋଇ ଯେହୁ ସେବାକରେ
ତାହାକୁ ନ ଛାଡୁ କ୍ଷଣେ ଥାଉ ତା ସଙ୍ଗରେ ।
ଦୁଃଖ ସୁଖ ପାଇଁ ମୁହିଁ ନ କରେ ଭାବନା
ନିସ୍ତରେ ତୋହର ନାମ ରଟୁ ମୋ ରସନା ।
ସଂସାର ଜଞ୍ଜାଳଜାଲେ ନ ରହିବ ମତି
ଏହାହିଁ ଶାରଳାଦାସ ମାଗଇ ସମ୍ପ୍ରତି ।

---

## କେଶବରାଜା, ଶକୁନି ଓ ସହଦେବଙ୍କର କଥୋପକଥନ, ହୃଷୀକେଶ ନିକାଳହସ୍ତୀ ଓ ଚଉଦପୁରନରପତି ପ୍ରଭୃତିଙ୍କୁ ନିମନ୍ତ୍ରଣ ଏବଂ କପିଳ ମୁନିଙ୍କ ଦ୍ୱାରା ସଗରବଂଶ ଧ୍ୱଂସ ଓ ଗଙ୍ଗାଆନୟନ ବିବରଣ କଥନ

ପଚାରିଲେ ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି କହ ଅନ୍ୟ ବିବରଣ ।
ଏଥୁଅନ୍ତେ ସହଦେବ କଲେ କେଉଁ କୃତ୍ୟ
ସେହି କଥା ଶୁଣିବାକୁବଳଇ ମୋ ଚିତ୍ତ ।
ବଦନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସହଦେବ ତହୁଁ ଚଳ ଚଳାଇଲେ ସୈନ୍ୟ ।
ଉତ୍ତମ କୋଶଳ ଅଛି ନଦୀ ଏକଗୋଟି
ବିସ୍ତୃତ ଭଦ୍ରା ନଦୀରୁ ସେ ବାହାରିଛି ଫୁଟି ।
ସେ ନଦୀକୂଳେ ଚଳଇ ସହଦେବ ଥାଟ
ମଧୁମାଡଙ୍କ ଦେଶରେ ହୋଇଲେ ନିକଟ ।
ହସ୍ତିକାନନର ବୋଲି ଏକ ପରବତ
ତହିଁ ଯାଇ ବିଜେକଲେ ପଣ୍ଡୁ ରାଜା ସୁତ ।
ସେ ଦେଶର ରାଜା ନୀଳକେଶବ ନୃପତି
ବିଜେ କରିଛି ସମସ୍ତେ ଆସ୍ଥାନ ଜଗତୀ ।
ଚରଗଣ ଜଣାଇଲେ ନୃପତିର ପାଶେ
ପରଦେଶ ରାଜାଟିଏ ବିଜେ ଆମ୍ଭ ଦେଶେ ।

ବଢ଼ାଇ ସମ୍ମୁଖେ ଦେଖ ଆଣିଛୁ ସଇନ
ଆକାଶ ଉଚ୍ଛୁଳୁଅଛି ସାଞ୍ଚରର ଧ୍ୱନ ।
ଚର ବଚନରେ ମାନ କେଶବ ଯେ ରଜା
ବୋଲେ କେବଣ ଦେଶର ପୁଚ୍ଛି ଆସ ଯା ଯା
ରଜାର ବଚନେ ବେଗେ ଗଲେ ଚରଗଣ
ରଇବା ପର୍ଯ୍ୟନ୍ତେ ହୋଇ ମିଳିଲେ ଯାଇଣ ।
ଆଗୁଆଣିର ଥାଟକୁ ପୁଛନ୍ତି ବାରତ
କେଉଁ ଦେଶୁ ତୁମ୍ଭେମାନେ ହୋଇଲ ଆଗତ
ସୈନ୍ୟ ବୋଇଲେ ତୁମ୍ଭର ନୃପେ କହ ଯାଇ
ସୋମବଂଶ ଯୁଧିଷ୍ଠିର ଦେବ ସାନଭାଇ ।
ରାଜସୂୟ ମହାଯଜ୍ଞ କରିବା ନିମନ୍ତେ
ସହଦେବ ବଳେ ରଜା ନିମନ୍ତ୍ରଣ ଅର୍ଥେ ।
ସୈନ୍ୟମାନଙ୍କ ମୁଖରୁ ପାଇଣ ଉଦନ୍ତ
ତକ୍ଷଣେ ବାହୁଡ଼ିଗଲେ କେଶବର ଦୂତ ।
କେଶବସେନ ଛାମୁରେ ଜଣାଇଲେ ଯାଇ
ସହଦେବ ଆସିଛନ୍ତି ନିମନ୍ତ୍ରିବା ପାଇଁ ।
ଏମନ୍ତ ବାରତା ଶୁଣି ସାନନ୍ଦ ନୃପତି
ଆହ୍ୱାନ ଦେଇଣ ରଜା ଆସଇ ତଡ଼ତି ।
ସେ ନଗର ବାହାରରେ ଛନ୍ତି ସହଦେବ
ଦର୍ଶନ କରିଲେ ଯାଇ ନୃପତି କେଶବ ।
କେତେକ ଦୂରରୁ ରଜା କରି ନଉଛୁଳ
ଶସ୍ତ୍ରରୁ ନିପଣ୍ଡ ଟାଳ ବନ୍ଦିଲେକ ଗଳ ।
ବହୁତ ବିନୟ ହୋଇ କହିଲେ କେଶବ
ଶ୍ରୀଦ୍ୱାରରେ ଭୋଳାଗ୍ରତ କରେ ସହଦେବ ।
ବୋଇଲେ ତୋ ସମଦଣ୍ଡ ଦେନ ମହାରଜା
ଜୟନ୍ତା ରାଜ୍ୟକୁ ତୁହି ବେଗହୋଇ ଯା ଯା ।
ସହଦେବର ବଚନ ଶୁଣି ନୃପମଣି
ବୋଇଲେ ଆଜ୍ଞା ପ୍ରମାଣେ ଯିବ ଏହିକ୍ଷଣି ।
ନିମନ୍ତ୍ରଣର ଯୋଗାଡ଼ ଦେଲ ମହାମନ୍ତ୍ରୀ
ବହୁତ ଗୌରବ କରି କରିଲ ଭକତି ।
ତହୁଁ ସହଦେବ ମନ୍ତ୍ରୀ ଚଳେ ଦଣ୍ଡବାହି
ଗାନ୍ଧାର ଦେଶେ ପ୍ରବେଶ ହୋଇଲେକ ଯାଇ
ଗାନ୍ଧାର ଦେଶ ନୃପତି ଅଟଇ ଶକୁନ
ତା ରାଜ୍ୟେ ପ୍ରବେଶ ହେଲ ସେନ ଅମାକନା ।
ପରରାଷ୍ଟ୍ରର ସୈନ୍ୟଙ୍କୁ ଦେଖିଣ ମୃଗେନ୍ଦ୍ର
ଆହ୍ୱାନ ଚଳେ କହିଲେ ଶକୁନିକି ଯାଇ ।

ସ୍ୱାମି ଅଳ୍ପ ସୈନ୍ୟ ସେନ କେଉଁ ଦେଶ ରଜା
ଘୋର ଶବଦରେ ପୁଣି ବଜାଉଛି ବାଜା ।
ଶୁଣିକରି ଆଜ୍ଞା ଦେଲ ସେ ମନ୍ତ୍ରୀ ଶକୁନ
ରାଜ୍ୟେ ପଶି ନ ହୁଅରେ ଓଗାଳ ସଇନ ।
ବେଢ଼ଶତ ପାରଦଣ୍ଡ ରଜାଙ୍କୁ ହକାରି
ଆଜ୍ଞାଦେଲ ପ୍ରଦେଶୀକି ଆଣ ଯାଇ ଧରି ।
ମୋର ଦେଶେ କର୍ପା ସେହି ଏଡ଼େକ ପ୍ରଚଣ୍ଡ
ସୁରନଦୀର କୂଳରେ କାଟ ତାର ମୁଣ୍ଡ ।
ରଜାର ବଚନ ଶୁଣି ଚଳିଲେ ସଇନ
ଗାଢ଼େ ଆଜ୍ଞାଦେଲ ଯହୁଁ ସେ ମନ୍ତ୍ରୀ ଶକୁନ ।
ଅସିପଟ କୋନ୍ତ ଆଦି ବୁଲାଇଲେ ତୋଳି
ଝଟକଇ ଖଡ଼୍‌ଗମୁନା ବିଜୁଳିକି ବଳି ।
ନିରନ୍ତର ଶରବୃଷ୍ଟି ଜଳଧାର ଜାଣି
ଏହି ପରକାରେ ଦେଖି ଗର୍ଜିଲେ ସଇନ ।
ପାରିଦଣ୍ଡ ରଜା ଉଠି କଲେ ଶରବୃଷ୍ଟି
କାଣ୍ଡ ବିନ୍ଧନ୍ତି ନ ଦିଶେ ତାହାଙ୍କର ମୁଷ୍ଟି ।
ଗଦା ମୁଦ୍ଗର ଡେଙ୍ଗଲ ଟଙ୍ଗ କୋନ୍ତ ଯାଠି
ଅଶ୍ୱ ଗଜ ଉପରରେ ବୁଲାଇଣ ପିଟି ।
ଉଭୟ ଦଳ ସଇନ ରଣେ ନ ଘୁଞ୍ଚନ୍ତି
ମହାଘୋର ନାଦକରି ସମର କରନ୍ତି ।
ପାଣ୍ଡବ ସଇନମାନେ ରଣରେ ନିର୍ଭୟା
ନାରାୟଣଙ୍କ ପ୍ରସାଦେ ଅଛୁଟ ଯା କାୟା ।
କୋପରେ ଉଠିଲେ ବୀର ଉପରୋଧ ଛାଡ଼ି
ଗଜ ଅଶ୍ୱ ସଇନଙ୍କ ପଡ଼ିଲେ ସେ ମାଡ଼ି ।
ଏକମୁଖ ହୋଇ ଯହୁଁ ଉଠେ ସମଦଣ୍ଡ
ମୁଖରବ ଶବଦରେ କମ୍ପିଲ ବ୍ରହ୍ମାଣ୍ଡ ।
ପାଣ୍ଡବ ବଳ ସକଳ ଆକର୍ଷିଣ ଘୋଟି
ଶସ୍ତ୍ର ଘାତେ ଗାନ୍ଧାର ସୈନ୍ୟ ପଡ଼ି ଲୋଟି ।
ପବନଘାତେ ଲୋଟନ୍ତି ଯେସନେ ଦ୍ରୁମମାଳା
ଯେମନ୍ତ ରକ୍ତବର୍ଣ୍ଣେ ସୈନ୍ୟ ହେଲେ ଘେଳା ।
ଆଗୁଆଣି ଥାଟ ଥିଲେ ପଞ୍ଚଦଶ ଯୋଧି
ପାଣ୍ଡବ ବଳ ଘାତେ ହୋଇଗଲେ ମର୍ଦ୍ଦି ।
ଦଣ୍ଡଭଗ୍ନ ଦେଖିକରି ଗାନ୍ଧାର ଶକୁନ
ଆପଣେ ଉଠିଲେ ଦଶଲକ୍ଷ ଯୋଦ୍ଧା ସେନ ।
ଦୂରୁ ଦେଖିଲ ମଦନାଦେଶାଙ୍କର ବାଳ
ବସ୍ତ୍ରଭଇ ଶକୁନ ଏ ଆମ୍ଭର ମାତୁଳ ।

ଏମନ୍ତ ବଚନର କହି ତହୁଁ ହେଲା ଆଗ
ଶକୁନି ଆଗରେ ରଥ ଟେକିଲାକ ବେଗ ।
ରଥରୁ ଉତ୍ତୁରି ତହୁଁ ମାଦ୍ରୀଦେବୀ ସୁତ
ଶକୁନି ଆଗକୁ ଯାଇ ହେଲା ପ୍ରଣିପାତ ।
ଗଜୋପରେ ଥାଇ ଦେଖେ ଗାନ୍ଧାରର ରାୟେ
ତହୁଁ ନାଗ ତେଜ୍ୟା କରି କହଇ ବିନୟେ ।
ବାବୁ ତୋତେ ନ ଜାଣଇ ସହଦେବ ବୋଲି
ଅଜ୍ଞାନରେ ତୋର ତୁଲେ ମୁହିଁ ଦ୍ୱନ୍ଦ୍ୱ କଲି ।
ତୁମ୍ଭେମାନେ ଅଟ ମୋର ଜ୍ୟେଷ୍ଠଭଗ୍ନୀ ସୁତ
ଅଜ୍ଞାନପଣେ ମୋ ସୈନ୍ୟ ମାରିଲେ ବହୁତ ।
ସୁରବର ସୁନ୍ଦର ତୁ ପାଣ୍ଡବ ପ୍ରଚଣ୍ଡ
ତୁ ଧର୍ମ ବିଚାର କରି ଦିଅ ମୋତେ ଦଣ୍ଡ ।
ସହଦେବ ବୋଇଲା ଯେ ଭକ୍ତିଭାବ କହି
ମାମୁଁ ତୋର ରାଜ୍ୟ ବୋଲି ମୋର ଜ୍ଞାନ ନାହିଁ
ଏହି ତ ଗାନ୍ଧାର ଦେଶ ଅଟଇ ଯୁକତେ
ବେଶାଉରେ ବାରତା କି ନ କହିଲେ ତୋତେ
ଶକୁନି ବୋଲେ ଅଜ୍ଞାନେ କହିଲି ମୁଁ ଦୋଷ
ଯୁଧିଷ୍ଠିର ଆଗରେ ନ କରିବୁ ପ୍ରକାଶ ।
କି ବୋଲିବେ ଶୁଣି ଧୃଷ୍ଟରାଷ୍ଟ୍ର ବା ଗାନ୍ଧାରୀ
ଶ୍ରୀମାର୍ଜୁନ କୋପ ହେବ ପୁଣି ଦେବ ହରି ।
ସହଦେବ ବୋଲଇ ଅଜ୍ଞାନ ଅଟେ ଯେହୁ
ଅଜ୍ଞାନ ଗୋପ୍ୟ କଥାକୁ ପ୍ରକାଶଇ ସେହୁ ।
ଶକୁନି ବୋଇଲା ବାବୁ ମୋତେ ବଡ଼ ଲଜ୍ଜା
ମନ୍ତ୍ରୀ ବୋଲେ ସାଧୁନେହ ଏ ନଗର ରାଜା ।
ଶକୁନି ବୋଇଲେ ତୁମ୍ଭପାଇଁ ବଡଦୁଃଖୀ
ତୁମ୍ଭ ହାତରେ ମରଣ ଲଭି ହେବି ସୁଖୀ ।
ଦୁର୍ଯ୍ୟୋଧନ ମାମୁଁ ପୁଣି ସତକ ଅଦ୍ୟପି
ପାଣ୍ଡବଙ୍କ ହିତାର୍ଥରେ ବଞ୍ଚେ ମୁଁ ଅଦ୍ୟାପି ।
ସହଦେବ ବୋଲେ ମାମୁଁ ଜାଣେ ସର୍ବତତ୍ତ୍ୱ
ଏତେ କାଳରେ କହିଲୁ ତାଙ୍କ ମୃତ୍ୟୁପଥ ।
ମାମୁଁ ମୁଁ ଜାଣିଛି ଯାହା ଏହା ତତ୍ତ୍ୱକଥା
ବେଳମନ୍ତ୍ରୀ ବୁହାବୁନ୍ତ ହେଲେ ଯେ ବାରତା
ଶକୁନି ବୋଇଲା ତୁହି ଶୁଣ ଆରେ ବାବୁ
ମହାଭାରତର ଯୁଦ୍ଧ ନଷ୍ଟେ କରାଇବୁ ।
ତୁମ୍ଭ ପାଣ୍ଡବ ଯଦ୍ୟପି ଏକସ ଏକ୍ଷଣି
ତୁମ୍ଭମାନଙ୍କୁ ଶାସ୍ତି ଯେ ଦେବେ ଚକ୍ରପାଣି ।

ବହୁତ କଷ୍ଟ ପାଉଛି ଜାଣ ବସୁନ୍ଧରା
ମହାଭାରତ ଯୁଦ୍ଧରେ ଊଣା ହେବ ଭାର ।
ମୁଁ ତୋତେ ବଇମ କରି ବୋଲୁଅଛି ବାବୁ .
କୌରବ ବଂଶକୁ ନଷ୍ଟେ ନାଶ କରାଇବୁ ।
ମୁହିଁ ନ କୌଶଳେ ତାଙ୍କ ବଂଶ ମରାଇବି
ରଣଯଜ୍ଞ କରି ମୁହିଁ ଶେଷେ ନାଶ ଯିବି ।
ପରକାଳକୁ କାରଣ ମାଗୁଅଛି ତୋତେ
ସମରରେ ଶରଘାତ କରିବୁ ତୁ ମୋତେ ।
ବାବୁ ତୋ ହାତରେ ମୁହିଁ କଲେ ପ୍ରାଣତେଜ୍ୟା
ଅବସ୍ଥା ଦେଇ ନ ପାରେ ମୋତେ ଜନ୍ତୁରାଜା ।
ତାହା ଶୁଣି ସହଦେବ କହିଲା ଉତ୍ତର
ଏ ସର୍ବ ବିଷୟ ମୋତେ ଅଟଇ ଗୋଚର ।
ବହୁକାଳ କଥା ତୋର ପିତା ବିବରଣ
ତୋ ଜ୍ଞାତିମାନେ ପଥର ଘଇରେ ଭରଣ ।
ଶଏ ଛୟାଣାଇ ଜଣ ପୁରାଏ ସେ ଘରେ
ତୁହି ତ ବଞ୍ଚିଲୁ ତହିଁ ବଡ କୌଶଳରେ ।
ତୋ ପିତା ଗାନ୍ଧାର ସେନ ଯା କହି ମରିଛି
ସେ ସକଳ କଥା ତୋର ନଷ୍ଟେଁ ମନେ ଅଛି
ତାର ହାଡହାଡ ନେଇ କରିଛୁ ତୁ କାଠି
ସେ କାଠିରେ ଖେଳ ନଷ୍ଟେଁ ହାରିବେ ଯୁଧିଷ୍ଠି
ଆମ୍ଭର ସମ୍ପଦ ଯାକ ଦେବୁ ଦୁର୍ଯ୍ୟୋଧନେ
ପରେ ମରାଇବୁ ତାକୁ ସର୍ବଶେଷ ଜୀବନେ ।
ଏହିପରି ପୃଥ୍ୱୀଭାର ଉଶ୍ୱାସ କରିବୁ
ପର୍‌ଶେଷେ ତୁହି ମଧ୍ୟ ସଂସାରରୁ ଯିବୁ ।
ଏହା କହି ନମନ୍ତ୍ରଣ ହେଲା ସହଦେବ
ଦଣ୍ଡ ଘେନଣ ମାତୁଳ ବହନରେ ଯିବ ।
ସେ ଶକୁନି ମହାମନ୍ତ୍ରୀ ଅନେକ ଗୌରବେ
ଆପଣା ଭୁବନେ ସେନ ଗଲେ ସହଦେବେ ।
ଅନେକ ସମ୍ଭର୍ବରେ ଯେ କରାଏ ମଣୋହି
ସେ ଦିନକ ସହଦେବ ସେ ଦେଶରେ ରହି ।
ପରଦିନ ବୋଲେ ମାମୁଁ ଚଳ ଏହିକ୍ଷଣ
ବେଗେ ଯାଇ ରାଜାଙ୍କୁ ତୁ କର ସମ୍ଭାଷଣ ।
ସହଦେବର ବଚନେ ସାନନ୍ଦ ଶକୁନି
ବୋଲେ ଐଶାନ୍ୟ କୋଣର ରାଜା ଯିବ ଘେନି
ଐଶାନ୍ୟ କୋଣର ମୁହିଁ ଅଟେ ମହାଯୋଧି
ଦୁଇ ସହସ୍ର ରାଜାଙ୍କୁ ଜିଣିଅଛି ସାଧି ।

ଅନେକ ସମସ୍ତ କରି ବହୁରେ ଶକୁନ
ଚଳଇ ଗାନ୍ଧାରବଳ ସଙ୍ଗ ସଙ୍ଗେ ଘେନ ।
ଶକୁନ ମହାରାଜା ଯେ ଥାଟ ଚଳାଇଲେ
ବହୁତ ଦେଶର ନୃପ ସଙ୍ଗେ ଗୋଡାଇଲେ ।
ତହୁଁ ସହଦେବ ଶୀଘ୍ର କରିଲେ ପ୍ରୟାଣ
ବାଜଇ ଯେ ଡଙ୍କଘୋଷ ଜୟମଙ୍ଗ ନିଶାଣ ।
ସାଗର କୂଳ ମହେନ୍ଦ୍ର ନାମେ ଏକଦେଶ
ତହିଁର ରାଜାର ନାମ ଅଟେ ହୃଷୀକେଶ ।
ସହଦେବ ଭଜେଇଲେ ଯହୁଁ ସେହି ରାଜ୍ୟ
ବାର୍ତ୍ତାପାଇ ହୃଷୀକେଶ ଭଲେ ତହୁଁ ଭଜେ ।
ବହୁତ ପଦାର୍ଥମାନ ଆଣିଲା ଗ୍ରାମୁକୁ
କରକୁକେ ସହଦେବ ପୃଚ୍ଛା କଲେ ତାକୁ ।
ଅଶୀସହସ୍ର ଘର ଯେ ସେ ରାଜ୍ୟ ବସଇ
କାନ୍ଥ ରୂଅ ଶ୍ରେଣୀଆଦ ସୁବର୍ଣ୍ଣ ଅଟଇ ।
ଶୁଦ୍ଧ ସୁବର୍ଣ୍ଣ ନିର୍ମିତ ଜଗତୀ ମଣ୍ଡପ
ତରଣ ପ୍ରଭଣି ଘର ନାହିଁ ତା ସ୍ୱରୂପ ।
ମୁହିଁ ଅଇଲି ବାବୁ ରେ ବହୁସ୍ଥାନ ଭ୍ରମି
କାହିଁ ନ ଦେଖିଲି ଏଡେ଼ ରାଜ୍ୟର ଉତ୍ତମି ।
ଶୁଣି ହୃଷୀକେଶ ରାଜା କହଇ ପ୍ରଣମି
ସତ୍ୟଯୁଗ କଥା ତେବେ ଶୁଣ ଦେବ ସ୍ୱାମି ।
ସେ ଯୁଗେ ମାହେନ୍ଦ୍ର ନାମେ ଥିଲେ ଏକରାଜା
କ୍ଷୀରୋଦ ସାଗର ସେହୁ ନିତି କରେ ପୂଜା ।
ଲକ୍ଷେ ବତିଶ ବରଷ ଏମନ୍ତ ସେ ଖଟି
ତାହାନଧି ସେବାଭର ରାଜା ବହୁକଷ୍ଟୀ ।
ଶୁକ୍ଳ କୃଷ୍ଣପକ୍ଷ ଗୁରୁବାର ଯେ ପଞ୍ଚମୀ
ରୋହିଣୀ ନକ୍ଷତ୍ରେ ବଳେ ଲକ୍ଷ୍ମୀ ମର୍ତ୍ତ୍ୟ ଭୂମି
ଲକ୍ଷ୍ମୀ କୁଳେ ଚଳ ପେଷ୍ଟ ଛନ୍ତି ଦେନ ବାସୀ
କେ ଟିଆର୍ଥ ଜଳେ କରେ ସ୍ୱର୍ଣ୍ଣ ଉଦସି ।
ସମର ତାଳନ୍ତ ବେନ ପାର୍ଶ୍ୱରେ ନାୟିକା
ଦେଖିଲେ ମାହେନ୍ଦ୍ର ରାଜା ପୂଜା କରେ ଏକା
ବହୁଣଜେମା ରାଜାକୁ ଦେଖି ସ୍ୱନିକାଳେ
ପ୍ରସନ୍ନ ହୋଇଲେ ଦେବୀ ଅତି କୁତୂହଳେ ।
ରାଜାକୁ ପ୍ରସନ୍ନ ହୋଇ ଦେବୀ ଜଗନ୍ନାଥୀ
ବୋଇଲେ ତୁ ସେବ ଶୁକ୍ଳ ପଞ୍ଚମୀର ତିଥି ।
ଗୋସାମଣୀଙ୍କ ଆଜ୍ଞାରେ ମାହେନ୍ଦ୍ର ନୃପତି
ପାଳିଲା ସେ ବ୍ରତକରି ଲକ୍ଷ୍ମୀଙ୍କୁ ଭକତି ।

ସ୍ୱାମି କମଳା ବରଦେ ହେଲା ମହାରାଜ
ତେଣୁକରି ସ୍ୱର୍ଣ୍ଣମୟ ହେଲା ଏହି ରାଜ୍ୟ ।
ବୋଇଲେ ମ ସରେ ଦେଉଅଛ ଯେତେ ନିଧି
ପୂର୍ବର କଥା ଅଟଇ ସେନତ ତଥି ।
ତାଳେ ମହାଲକ୍ଷ୍ମୀ ଯହୁଁ ଏହି ବର ଦେଲା
ଏହି ଗଡତୋଟା ତହୁଁ ସ୍ୱର୍ଗଧାମ ହେଲା ।
ଅନେକ ବିନୟୀ ହୋଇ କହେ ହୃଷୀକେଶ
ମନ୍ତ୍ରୀବର ତାହା ଶୁଣି ହୋଇଲା ହରଷ ।
ଅକ୍ଷତ ଗୁବାକ ଦେଲା ଶିର ଚୂଡାମଣି
ବୋଇଲା ରାଜସିଯାଗେ ଯାଅ ଏହିକ୍ଷଣି ।
ସମତଣ୍ଡ ଘେନଣ ସେ ମାହେନ୍ଦ୍ର ନୃପତି
ଥାଟ ସଜ କଟଣ ସେ ଚଳେ ତକ୍ଷଣାନ୍ତ ।
ତହୁଁ ମନ୍ତ୍ରୀ ଚଳଗଲେ କରି ଅନୁକୂଳ
ନିକାଳ ହସ୍ତୀ ଭେଟିଲେ ନିଳଗିର ତଳ ।
ସନ୍ଦେଶ ଗାରେଡ଼ି ସେହୁ ପ୍ରତ୍ୟକ୍ଷ ଦେବତା
ସହଦେବ ସଙ୍ଗେ ହେଲେ ବହୁକାଳ କଥା ।
ପ୍ରତ୍ୟକ୍ଷ ନାରାୟଣ ସେ ଦେଖର ବନୋଧି
ବାମପାଦେ ମାଡ଼ିଅଛୁ ମହାଉଦଧି ।
ଯେଉଁ ଦେବତା ଦର୍ଶନେ ଦୁଷ୍କୃତାଦ ହର
ସୃଷ୍ଟିଯୁଗରେ ମନୁଷ୍ୟରୂପେ ଅବତର ।
ଅକ୍ଷତ ଗୁବାକ ଆଦ ଅର୍ଘ୍ୟଥାଳେ ଥୋଇ
ସହଦେବ ଶ୍ରୀତନ୍ୱଙ୍କ ପାଦତଳେ ଯାଇ ।
ମନ୍ତ୍ରୀବର ପୁନଃପୁନଃ ହୋଇ ପରଣାମି
ବୋଲେ ରାଜସୂୟ ଯାଗକୁ ଯିବ ଦେବସ୍ୱାମି ।
ବଦସ୍ତନ୍ତି ମହାତମା ସେ ନିକାଳ ହସ୍ତୀ
ଯମପ୍ରସ୍ଥ ବଳେ ଆମ୍ଭେ ଯାଇ ନିତିପ୍ରତି ।
ଯେତେ ଜୀବମାନଙ୍କୁ ହୋ କରନ୍ତି ଭୋଜନ
ହରଣ ମୃଗ ଗଣ୍ଡାର ଆଦ ଜୀବମାନ ।
ଘାନ୍ତକରେ ଲକ୍ଷେ ଲକ୍ଷେ ଆଣୁଥିବ ମାରି
ଶବରମାନେ ଆଣିବେ ଯାଇ ଘରକରି ।
ବନଜୀବଙ୍କୁ ଯୋଗାଡ଼ ଲାଗିବଟି ଯେତେ
ନିତିପ୍ରତି ମାରକରି ଦେଉଥିବ ତୋତେ ।
ତାହା ଶୁଣି ସହଦେବ ହେଲା ତୋଷମନ
ତହୁଁ ମହାତ୍ମା ହୋଇଲେ ତହିଁ ଅନ୍ତର୍ଦ୍ଧାନ ।
ତଳେ ସହଦେବ ତହୁଁ ଚଳାଇଣ ଦଣ୍ଡ
ବହରନ୍ତି ଯୋଦ୍ଧାମାନେ ବଢ଼ାଇ ପ୍ରଚଣ୍ଡ ।

କ୍ଷୀରଦ କୂଳେ ଦେଖିଲେ ନାନାଏ ଅଛି ଦେଶ
ତହିଁ ସହଦେବ ଯାଇ ହୋଇଲେ ପ୍ରବେଶ ।
ବାଲ୍ୟକାଳେ ଜନ୍ମ ସେସ୍ତ ଗୌତମୀ ଭକତ
ସେ ଦେଶ ରଜା କେବଳ ନଦୀଏ ଚକ୍ରବର୍ତ୍ତୀ ।
ସିଂହ ବୃହସ୍ପତି ଯୋଗେ ଗୌତମୀ କୂଳରେ
ଗୌତମ ଦାନ ଦେଲେ ପ୍ରଚୁର ପ୍ରକାରେ ।
ଏରୂପେ ଦାନ ଦେଲେ ଦିବସ ରଜନୀ
ତହୁଁ ହୋଇଲା ତାଙ୍କର ଗୋଷ୍ଠସ୍ଥଳ ଜନ ।
ପଞ୍ଚାଶତ ଗାଈ ର ଯେ ଦୁଇ ଏ ପଲ୍ଲି
ଚଉଦଶ ପଲ୍ଲିରେ ଜାତ ଏକ ଗୋଷ୍ଠ ବୋଲି ।
ଚଉଦଶ ଗୋଷ୍ଠରେ ଏକ ଲଉଡ଼ି ନିର୍ମାଣି
ଚଉଦଶ ଲଉଡ଼ି ହେବେ ମହାଖୋଣ୍ଡେ ଗଣି ।
ଚଉଦଶ ମହାଖୋଣ୍ଡରେ ଦୁଇ ଯେତେ ଗାଈ
ଏତେକ ଉପରେ ଯାଇ ଏକ ମହାଘୋଷ ।
ଏମନ୍ତ ଚଉଦଶ ମହାଘୋଷ ତହିଁ ଥିଲେ
ଭୋଷେମହାତ୍ମା ନୀଳାନଳସେନଙ୍କୁ ସେ ଦେଲେ
ଯେତେକ ଧନ ଲଗାଇ ତାଙ୍କର ହୋମକୁ
ନୀଳାନଳସେନ ଦିଅଇ ନିତ ଗୌତମଙ୍କୁ ।
ଗଉତମଙ୍କ ପ୍ରସାଦେ ସେ ନୀଳନ ରଜା
ମହୋଦଧି କୂଳେ ସର୍ବେ କରୁଥାନ୍ତି ପୂଜା ।
ସହଦେବ ପ୍ରବେଶିଲେ ଯାଇ ସେହି ରାଜ୍ୟ
ଗାରଡ଼ ଢୋଲ ଆଦି ବଢ଼ଲରେ ବାଜେ ।
ଦେଖାଉର ଦାଣ୍ଡୀ ଦେଲେ ନୀଳନ ସେନକୁ
ବିଦେଶୀ ରଜା ଟୋଟିଏ ଆସଇ ରାଜ୍ୟକୁ ।
ଆଚମ୍ବିତ ବାରତାକୁ ପାଇଣ ନୀଳନ
ରାଜ୍ୟରେ ପଶି ନ ଦିଅ ବଦନ ଉଠାନ ।
ମୋହର ଗ୍ରାମକୁ ଆଣ ତାକୁ ଯାଇ ଧରି
ଜୀବନ୍ତରେ ବନ୍ଦୀ କରି ଜୀବନେ ନ ମାରି ।
ରଜା ଆଜ୍ଞା ପାଇକରି ସେ ଗୋପାଳମାନେ
ବହୁ ପ୍ରତିଜ୍ଞା କରିଣ ଧାଇଁଲେ ବହନେ ।
ପାଦରେ କଠାଉ ଦେଇ କରେ ଧରି ଯଷ୍ଟି
ମଥାରେ ଖୋଲର ନାଣ ଫୁଲଶର ଗୋଟି ।
ଗଳେ ଜବାପୁଷ୍ପ ହାର ଗୁଞ୍ଜାର ଲମ୍ବଟି
ପ୍ରତିଜ୍ଞା କରି ଧାଆନ୍ତି ଓଷ୍ଠ କରି ଯଷ୍ଟି ।
କଡ଼ା ମର୍ଦ୍ଦଳ ଦମ୍ଫୁରୁ ବାଜଇ ବାଂଶୀ
ମହରି ଖେଳେ ଖେମଟା ନୃତ୍ୟ କରି କରି ।

ଅଣ୍ଟାରେ କାଚେଣୀ ଉଡ଼ ଘଣ୍ଟି ମାଳେ ମାଳେ
ଦାନ୍ତ ଘଷନ୍ତି ହୁଙ୍କାର କରନ୍ତି ଗୋପାଳେ ।
ବୃନ୍ଦାବନ୍ତ ଲଉଡ଼ିକୁ ପୁଣି ଗୀତ ଗାଇ
ବଳଦେ ବଳଦେ ଚଢ଼ି ଆସନ୍ତି ଖଚାଇ ।
ପାଣ୍ଡବ ସୈନ୍ୟମାନେ ଏରୂପର ଦେଖି
ପଶିଲେ ସେ ରଣରଙ୍ଗେ କ୍ରୋଧ ଉପେକ୍ଷି ।
ସମ୍ଭାଳିଣ ସହଦେବ ଆପଣାର ବଳ
ବୋଇଲେ ରଥ ଦେଖିବା ଗୋପାଳଙ୍କଗୋଳ
ଏକ ବଳଦେ ଆରୋହି ନୀଳନ ନୃପତି
ବାମ ଡାହାଣେ ରଖିଛି ଦୁଇଗୋଟି ସତୀ ।
ମାଦ୍ରୀନନ୍ଦନ ବୋଇଲେ ସାରଥିକୁ ଚାହିଁ
ନୀଳନସେନ ଆଗକୁ ରଥ ନିଅ ବାହି ।
ସହଦେବ ଡାକେ ରଥ ସାରଥି ବାହିଣ
ନୀଳନସେନ ସମ୍ମୁଖରେ ଲଗିଲା ନେଇଣ ।
ଦେଖିଲା ବୋଇଲା କେଉଁ ଦେଶର ନୃପତି
ମୋହର ରାଜ୍ୟରେ କିମ୍ପା କରୁଛ ଅନୀତି ।
ତୁମ୍ଭେ ଯୋଦ୍ଧାସବୁ ଅଟ କେଉଁ ଦେଶବାସୀ
ଏଠାରେ ସମ୍ମୁଖ ହେଲା କରୁ ନୁହେ କୃଷି ।
ଗୋତ୍ରପତି ଦେଲେ ମୋତେ ଗଉତମ ଯତି
ତାଙ୍କ ଆଜ୍ଞାରେ ପାଳେ ମୁଁ ଯେ ଗୋରୁ ସବୁନ୍ତି
ସହଦେବ ବୋଲେ ମୋର ଅଛି ବଡ଼ କାର୍ଯ୍ୟ
ତୋତେ ନିମନ୍ତ୍ରଣ କରି ନେଇଯିବି ଆଜ ।
ରାଜସୂୟ ଯାଗକୁ ବୃଦ୍ଧ ଚଳସି ନୀଳନ
ରାଜାମାନେ ଆସି ସର୍ବେ ହୋଇଛନ୍ତି ଠୁଳ ।
ଲକ୍ଷେ ରଜା ଭଜେ ଦେବେ ସେହି ମହାଯାଗେ
ତୁମ୍ଭ ରଜା ଭଜେକରି ଯିବୁ ଏହି ଲାଗେ ।
ସହଦେବର ବଚନେ ବୋଲଇ ନୀଳନ
ମୁଁ କିମ୍ପା ତୋ ସଙ୍ଗେ ଯିବି ଛାଡ଼ି ନିଜସ୍ଥଳ ।
ବହୁତ ପ୍ରତିଜ୍ଞା କଲା ତହୁଁ ସେ ନ ମାନ
ମୋହନା ଶର ମାଇଲା ମନ୍ତ୍ରୀ ତହୁଁ ଘେନ ।
ବଳଦରେ ଚଢ଼ିଥିଲା ସେ ନୀଳନସେନ
ମୋହନା ଶର ବାଜନ୍ତେ ହେଲା ଅଚେତନ ।
ରଥରୁ ଓହ୍ଲାଇ ଆସି ସହଦେବ ବୀର
ବାଳ ଆକର୍ଷି ଘେନିଲା ତଥିର ଉପର ।
ପାଟ ଡୋରରେ ବନ୍ଧନ କରିଲାକ ରଥେ
ତାହା ଦେଖି କୋପ କଲେ ଗଉଡ଼ ସମସ୍ତେ ।

ଲଉଡ଼କୁ ବୁଲାଇଣ ପିଟିଲେ ସେ ଆଗେ
ଗୋପାଳଙ୍କୁ ମାର ମନ୍ତ୍ରୀ କହିଦେଲା ରାଗେ ।
ସହଦେବ ଆଜ୍ଞାପାଇ ଘେରିଗଲେ ଜନ
ଗଉଡ଼ଙ୍କୁ ପ୍ରହାରିଲେ ଅଶ୍ୱାଦି ସକଳ ।
ପରବତ ଭେଦିବାକୁ ସମର୍ଥ ଯେ ଶରେ
ଗୋପାଳ କସ ମାସ୍ତକ ତାହାଙ୍କ ସମ୍ମୁଖରେ ।
କାଦମ୍ବରୀ ପାନେ ଥିଲେ ଅତି ମତ୍ତ ହୋଇ
ଅନେକ ସମର କଲେ ତହିଁ ସେ ଗୋପାଳ ।
ସମସ୍ତ ଗୋପାଳ ତହିଁ ପଡ଼ିଲେ ସମରେ
ଜଣେ କେହି ନ ରହିଲେ ସହଦେବ ଶରେ
ଛନ ମରହଟ୍ଟ ପୁଣି ଛନ ଅଇରାବତ
ଆଦର ଚଇନ ଥିଲେ ପଞ୍ଚଦଶ ଶତ ।
ସର୍ବେ ଲେଉଟିଲେ ପାଣ୍ଡବ ପଞ୍ଚାଶ ଶତରେ
ପାଏଣ୍ଡା ପଡ଼ିଲା ପାଞ୍ଚକୋଶ ପର୍ଯ୍ୟନ୍ତରେ ।
ମନ୍ତ୍ରୀ ବୋଇଲେ ଅଡ଼ାଅ ସର୍ବ ଗୋରୁପଲ
ଧାଇଁଣ ବେଢ଼ିଲେ ଯାଇ ତହୁଁ ମହାମଲ୍ଲ ।
ଘୋରରୂପ ଦେଖିକରି ଡରିଲେ ଗାଈ
ହମ୍ବାରବ କରିଣ ସେ ଉଠିଲେ ବୋବାଇ ।
ସେ ଗୋରୁପଲ ପଡ଼ିଲେ ତହୁଁ ଗଜରାଜ
ପାଣ୍ଡବଦଳ ସକଳ ପଳାଇଲେ ଲାଜ ।
ଅନେକ ବାଟେ ଉପାୟ କରିଲେ ସକଳେ
ଭେଦେହେଁ ସାଧି ନୋହିଲେ ସେ ସର୍ବ
ଗୋରୁଳେ ।
କେହିକ ବୋଇଲା ଗୋରୁ ବଡ଼ାଇ ପ୍ରମାଦ
ପଞ୍ଚତତ୍ତ୍ୱ ଗୋଷ ସିନା ପାରିଥାନ୍ତି ସାଧି ।
ଅଭିପ୍ରାୟ ଦୁଷ୍ଟଗାଈ ଅଟନ୍ତି ଏ ମନ
ଗୋରୁଙ୍କ ସହିତ ଜାତି ମନୁଷ୍ୟର ଦ୍ୱନ୍ଦ୍ୱ ।
ସୈନ୍ୟ ନାଶ ନ କରସ ହୋଇଣ ନବୁଦ୍ଧି
ତୋହରବୋଲେ ସେ ପଲ ନ ହୋଇବେ ସାଧି
ସମରେ ସଇନ ସଙ୍ଗେ ପାଇଲେ ସେ ଦୁଃଖ
ରହିଣ ରହିଲେ ଶରେ ହୋଇଣ ବିମୁଖ ।
ଯୁଗରେ ଗାଈକୁ କେବେ ନ କରନ୍ତି ବଧ
ଧର୍ମ ପ୍ରମାଣେ ଛାଡ଼ିଲେ ସର୍ବ ମହାଯୋଧ ।
ବେଲକସେନକୁ ଘେନିଗଲେ ସହଦେବ
ଚଣ୍ଡପୁର ନଗ୍ରେ ଯାଇ ପ୍ରବେଶ ପାଣ୍ଡବ ।
ଚଣ୍ଡୀକେଶୀ ବୋଲି କରି ନଦୀ ଏକ ଗୋଟି
ଚନ୍ଦ୍ରଗିରି ପର୍ବତରୁ ଆସଇ ସେ ଫୁଟି ।

ଚଣ୍ଡପୁର ନଗ୍ରେ ମନ୍ତ୍ରୀ ପ୍ରବେଶିଲେ ଯାଇ
ବାରତା ପାଇ ନୃପତି ହରଷ ହୁଅଇ ।
ଅନେକ ସାନନ୍ଦ ହୋଇ ଚନ୍ଦ୍ରଚୂଡ଼ ରାଜା
ସହଦେବ ପଦ୍ମପାଦେ ଯାଇ କଲା ପୂଜା ।
ବୋଇଲା ଅନେକ ପୁଣ୍ୟ ଅର୍ଜିଥିଲୁ ପୂର୍ବେ
ତେଣୁ ତୋ ପାଦ ଦର୍ଶନେ ସୁଜନ ମୁଁ ଏବେ
ବହୁତ ବିନୟୀ ହୋଇ କହେ ନୃପମଣି
ମନ୍ତ୍ରୀପ୍ରତି କହାଇଲେ ଭକ୍ତଭାବ ଜାଣି ।
ଚନ୍ଦ୍ରଚୂଡ଼ଙ୍କୁ ଅର୍ପିଲେ ଅପରାଧ ଗୁଆ
ବୋଇଲେ ତୁ ଦଣ୍ଡ ଘେନ ରାଜସିକୁ ଯାଅ ।
ନୃପ ବୋଲେ ଆମ୍ଭମାନେ ଏହିକ୍ଷଣି ଯିବୁ
ରାଜସୂୟ ଯଜ୍ଞ ସଭାରେ ଯୁଧିଷ୍ଠିର ସେବିବ ।
ସହଦେବ ମନ୍ତ୍ରୀ ଆଜ୍ଞା ମସ୍ତକେ ନିବେଶି
ଦଣ୍ଡ ଘେନ ବାହାରିଲା ଚନ୍ଦ୍ରଚୂଡ଼ କେଶୀ ।
ଶୀରତୂର ନାଦକରି ବାହାରିଲେ ସୈନ୍ୟ
ତହୁଁ ସହଦେବ ଭଜେ ଅଲେଖ ଆସ୍ଥାନ ।
ଅଲେଖସେମ୍ଭ ବୋଲିଣ ହରିହର ବଂଶୀ
ସହଦେବଙ୍କୁ ଭେଟିଲେ ସିନ୍ଧୁକୂଳେ ଆସି ।
ଛତ୍ରେଶ୍ୱର ପାଣିଦ୍ରବ୍ୟ ସଙ୍ଗେ ଘେନି ରାସ୍ତୁ
ମନ୍ତ୍ରୀ ଚୂଡ଼ାମଣି ପାଦେ କରିଲା ବିନୟ ।
ଅକ୍ଷତ ଗୁବାକ ନେଇ ଦେଲେ ସହଦେବ
ବୋଇଲେ ରାଜସୂୟ ଯଜ୍ଞେ ଏହିକ୍ଷଣି ଯିବ ।
ସହଦେବ ମନ୍ତ୍ରୀ ଆଜ୍ଞା ନିବେଶିଣ ଶିରେ
ସମଦଣ୍ଡ ଘେନି ରାଜା ତତକ୍ଷଣେ ବାହାରେ ।
ତହୁଁ ସହଦେବ ମନ୍ତ୍ରୀ ସୈନ୍ୟାଦିଙ୍କୁ ଘେନି
ମନୋହର ଦେଶେ ଗଲେ ମନ୍ତ୍ରୀ ଚୂଡ଼ାମଣି ।
ତ୍ରିପୁରେଶ୍ୱର ବୋଲିଣ ତହିଁ ମହାରାଜା
ତ୍ରିଅମ୍ବକ କପିଳାସବାସୀ କରେ ପୂଜା ।
ତାହାରି ରାଜ୍ୟରେ ଭଜେ କଲେ ସହଦେବ
ସମ୍ମୁଖରେ ଦର୍ଶନ କଲା କରିଣ ସମ୍ଭବ ।
ସହଦେବ ବୋଇଲେ ତୁ ଶୁଣ ତ୍ରିପୁରାନ୍ତ
ରାଜସୂୟଯାଗକୁ ଚଳ ସଇନ ସହିତ ।
ଏହା କହିଣ ଯୋଗାଡ଼ ଦେଲେ ମାନ୍ଦ୍ରବାଳେ
ଦଣ୍ଡ ଘେନି ତ୍ରିପୁରାନ୍ତ ବହନରେ ଚଳେ ।
ତହୁଁ ସହଦେବ ଗଲେ ନିଜ ଦଣ୍ଡ ସାଜି
ଯମନଙ୍କ ସ୍ୱାର୍ଥେ ଯମେଶ୍ୱର ଲିଙ୍ଗ ପୂଜି ।

ମଙ୍ଗଳକଳ୍ପବଟ ପାଖେ ସୁନ୍ଦର ପର୍ବତେ
ମନ୍ତ୍ରୀ ଚୂଡ଼ାମଣି ଯାଇ ବିଜେ ମହାତୀର୍ଥେ ।
ଧନୁମାସ ଶୁକ୍ଲପକ୍ଷ ତେ।୮ ଚନ୍ଦ୍ରବାର
ଶ୍ରବଣା ନକ୍ଷତ୍ର ଯୋଗ ଥିଲା ସେ ଦିନର ।
ସହଦେବ ବିଜେକଲା ସେ ଦିନର ନିଶି
ଭେଟିଲେ ଯାଇ ମାର୍କଣ୍ଡ ମହାତମା ଋଷି ।
ବାହନକୁ ତେଜ୍ୟାକରି ପଣ୍ଡୁ ରାଜା ସୁତ
ମାର୍କଣ୍ଡଙ୍କ ଚରଣେ ନମଇଁ ତୁରିତ ।
ବଦନ୍ତି ଯେ ମହାତମା ମାର୍କଣ୍ଡ ମୁନି
ପୂର୍ବଦିଗ ରାଜା ସବୁ ଆଣିଲ ଜିଣି ।
ଶୁଣି ସହଦେବ ବୋଲେ ତୁମ୍ଭ ଅନୁଗ୍ରହେ
ନିମନ୍ତ୍ରିଲି ସର୍ବରାଜା କାର୍ଯ୍ୟର ଆଗ୍ରହେ ।
ହେ ଋଷି ଯିବନାହିଁକି ରାଜସୂୟ ଯଜ୍ଞକୁ
ତୁମ୍ଭେ ନଥିଲେ ସେ ଯଜ୍ଞ ଶୋଭେ କି ଆମ୍ଭକୁ
ମାର୍କଣ୍ଡ ବୋଇଲେ ତହିଁ ଛନ୍ତି ମୁନିବ୍ୟାସ
ନିଶ୍ଚୟ ଯିବୁଁ ପ୍ରଥମ ଆହୂତ ଦିବସ ।
ଯମନିକ ତୀର୍ଥ ମଙ୍ଗଳସୁନ୍ଦର ଏ ଗିରି
କୋଟିତୀର୍ଥରେ ପୁଷ୍କର ଅଛି ବିଜେକରି ।
ଦ୍ୱାପରଯୁଗ ଶେଷରେ ଦେବ ଜଗନ୍ନାଥ
ବଉଦ୍ଧ ରୂପରେ ବିଜେ କରିବେ ଯେ ଏଥି ।
ସ୍ୱରଲକ୍ଷ ଚୌଦସସ୍ର ବର୍ଷ ପରଯନ୍ତ
ବସିବେ ଏହିସ୍ଥାନରେ ହୋଇଣ ନିଶ୍ଚିନ୍ତ ।
କଳିଯୁଗେ ଲୋକମାନେ କରୁଥିବେ ସେବା
ରଙ୍ଗ କୌତୁକ କରିବେ ରାମକୃଷ୍ଣ ଦେବା ।
ତୁମ୍ଭ ସର୍ବଜ୍ଞ ପଣ୍ଡିତ ମନ୍ତ୍ରୀ ଚୂଡ଼ାମଣି
ଗତାଗତ ଜାଣୁ କସ କହିବ ବଖାଣି ।
ସମସ୍ତ କଲ୍ୟାଣ ବାଞ୍ଛା କରି ମହାମତି
ଚଳନ୍ତେ ସେ ନିମନ୍ତ୍ରଣ ଦେଲେ ମହାମନ୍ତ୍ରୀ ।
ମାର୍କଣ୍ଡଙ୍କ କଲ୍ୟାଣ ପାଇ ମନ୍ତ୍ରୀବର
ଅର୍କତୀର୍ଥ ବିଜେ କଲ ପାଣ୍ଡବସୁନ୍ଦର ।
ରାମଚଣ୍ଡୀ ରାମେଶ୍ୱର କରିଲ ଦର୍ଶନ
ବରଞ୍ଚ ଦର୍ଶନ କଲ ଚନ୍ଦ୍ରଭାଗା ସ୍ନାନ ।
ସେ ଅର୍କତୀର୍ଥର ରାଜା ନାରାୟଣ ଦାସ
ତହିଁ ବିଜୟ କରନ୍ତେ ପଣ୍ଡୁରାଜା ଶିଷ୍ୟ ।
ନାରାୟଣ ନରପତି ବାରତା ପାଇଣ
ସମ୍ମୁଖେ ଆଗମ ହୋଇ କଲେକ ଦର୍ଶନ ।

ସେହି ରାଜାକୁ ଅକ୍ଷତ ଗୁବାକାଦି ଦେଇ
ଆଦର ରହି ସେଠାରେ କରିଲେ ମଣୋହି ।
ନାରାୟଣ ଚଳାଇଣ ଆସନ୍ତେ ବହନେ
ମହ୍ଲାର ବଳ ଭେଟିଲେ ଇନ୍ଦ୍ରକ କାନନେ ।
ନବଲକ୍ଷ ଯୋଦ୍ଧା ସେନ ସେହି ବନଚର
କେଣ୍ଡି ବିଟୋଦେ ଭ୍ରମଇ ଚକ୍ରୋପୃଳା ଛର
ସହଦେବ ମନ୍ତ୍ରୀ ଯାନ୍ତେ ଉଗାଳିଲେ ଆସି
ବୋଇଲେ କାହାର ଦର୍ପେ ରାଜ୍ୟେ ଅଛୁ ପଶି
କୃତ୍ତିବାସ ତୀର୍ଥ ସୀମା ଅଛୁଟି ଏ ଗିରି
ବିଜୟ ପରମାନନ୍ଦ ଦେବ ତ୍ରିପୁରାରି ।
ଶୁଣି ସହଦେବ ବୋଲେ ଶୁଣ ହେ ମହ୍ଲାର
ଆମ୍ଭେ ପାଣ୍ଡବ ବିବାଦ ନ ଅଛୁ ତୋହର ।
ରାଜସୂୟ ଯଜ୍ଞ ସଜ୍ଞ କରିବା ହେ ଆମ୍ଭେ
ଏହିଦିଗ ରାଜା ଘେନି ଚଳିଯିବ ତୁମ୍ଭେ ।
ଶୁଣିକରି ହରଷିତ ହେଲା ମହାବୀର
ବୋଇଲେ ଏ ତୀର୍ଥେ ଛନ୍ତି ଅନାଦି ଈଶ୍ୱର ।
ବିନ୍ଦୁସାଗର ତୀର୍ଥେ ଏ ଅଟେ ସିଦ୍ଧଜଳ
ସ୍ନାନକରି ପିଣ୍ଡଦ୍ୟନ୍ତି ମାନବ ସକଳ ।
ବିଜେ ମନ୍ତ୍ରୀବର ତହୁଁ ଏକାମ୍ର ତୀର୍ଥେ
ପିଣ୍ଡଦାନ ଦେଇ ତୋଷକଲେ ବିଶ୍ୱନାଥେ ।
ଜୟ ତୁହି ମହାଦେବ ତ୍ରିଭୁବନ ମଣ୍ଡ
ଅଭୟ ଭୁବନବାସୀ ସର୍ବଦୁଃଖ ଖଣ୍ଡ ।
ଶୈଳଜା ବଲ୍ଲଭ ନାଥ ସିଂତାଶୁମଉଳୀ
ବୃଷଭ ବାହନ ଦେବ ଜୟ ତୁ କପାଳୀ ।
ପରଲୋକ ଇହଲୋକ ସର୍ବସ୍ଥାନ ବନ୍ଧୁ
ଭକତ ବତ୍ସଳ ନାଥ ତୁହି ଆଶାସିନ୍ଧୁ ।
ଶ୍ରୀମହାଲିଙ୍ଗ ଭୁବନ ଆଦି ଅଧିପତି
ଅଭୟ ସୁର ବନ୍ଦନ ଫେଡ଼ ମୋ ଦୁର୍ଗତି ।
ମୋତେ ଅନୁଗ୍ରହ କର ଦେବ ଦେବରାଜା
ମଣ୍ଡଳରେ ଧବଳାଙ୍ଗୀ ଯା ବଂଶେ ଗିରିଜା ।
ଜନ୍ମେ ଜନ୍ମେ ସେବା ମୋର ତବ ପଦ୍ମପାଦେ
ଲଭିବ ପରମଗତି ନାଥ ତୋ ପ୍ରସାଦେ ।
କୃତ୍ତିବାସ ବେଣଦୈତ୍ୟ ଧ୍ୱଂସିଲ ହେ ସ୍ୱାମି
ତବ ପାଦରେ ମୋହର କୋଟିଏ ପ୍ରଣମି ।
ଶ୍ରୀମହାକ୍ଷେତ୍ର ଭୁବନ ଈଶ୍ୱରଙ୍କ ପୂଜା
ଖାଇଲା ଦାସଙ୍କୁ ଦୟା କର ଦେବରାଜା ।

ସହଦେବ ସୁନ୍ଦବାଣୀ ଶୁଣିଣ କପାଳୀ
ବୃଷଭ ବାହନେ ବଜେ ଶ୍ରୀପଞ୍ଚମଣ୍ଡଳ ।
ଦେଖି ମନ୍ତ୍ରୀ ଭକ୍ତଭାବେ କରନ୍ତି ପ୍ରଣତି
ବୋଲେ ଭକତବତ୍ସଳ ଖଣ୍ଡ ମୋ ଦୁର୍ଗତି ।
ସହଦେବର ବଚନେ ସ୍ୱାମୀ ଦେବ କାଶୀ
ବୋଇଲେ ପଣ୍ଡୁସୁତ ତୁ କଲ୍ୟାଣ ଖାଅସି ।
ବହୁ ପୁରୁଷାର୍ଥ କଲେ ତାଙ୍କୁ ଦେବରାଜା
ସର୍ବକାର୍ଯ୍ୟ ସିଦ୍ଧକର ବହନ ତୁ ଯା ଯା ।
ପୂର୍ବବତ ରାଜାଙ୍କୁ ତୁ କଲ୍ ନିମନ୍ତ୍ରଣ
ଯଜ୍ଞର କାଳ ନିକଟ ହୋଇଅଛି ଜାଣ ।
ଅକ୍ଷତ ଗୁବାକ ଦେଲା ମନ୍ତ୍ରି ଚୂଡ଼ାମଣି
ବୋଇଲେ ଯଜ୍ଞକୁ ସିଦ୍ଧେ ଶିବଗଣ ଘେନି ।
ଶୁଣି ସହଦେବେ ଆଜ୍ଞାକଲେ ବିଶ୍ୱନାଥେ
ପାର୍ଥ ନିମନ୍ତ୍ରିଲେ ମୋତେ ହେମନ୍ତ ପର୍ବତେ ।
ଆକାଶକୁ ଯାଇଅଛି ବୀର ଫାଲ୍ଗୁନ
ସ୍ୱର୍ଗରୁ ଆସିବ ସେହୁ ଦେବତାଙ୍କୁ ଘେନି ।
ଗଣ ସହିତେ ଯାଉଛୁ ଏବେ ସେ ସଙ୍ଗକୁ
ତୁ ବହନ ଘେନିଯାଅ ଏ ରାଜାଗଣଙ୍କୁ ।
ଏତେ ବୋଲି ଅନ୍ତର୍ଦ୍ଧାନେ ହେଲେ ମହେଶ୍ୱର
ଏକାମ୍ର ତୀର୍ଥରୁ ମନ୍ତ୍ରୀ ହୋଇଲା ବାହାର ।
ମହ୍ଲାରସେନ ନାମରେ ଯେବଣ ନୃପତି
ଭଳିଗଲେ ସହଦେବ ତାହାଙ୍କୁ ନିମନ୍ତି ।
ତହୁଁ ବଜେ କରଗଲେ ମନ୍ତ୍ରୀ ଚୂଡ଼ାମଣି
ଚିତ୍ରୋତ୍ପଳା ତୀରେ ଥାଟ କରିଲେ ପଲ୍ଲଣି ।
କୁଣ୍ଡଳ କ୍ଷେଜ ନାମରେ ଏକ ନରପତି
ସହଦେବେ ଦେଖାକରି ବଢ଼ାଇଲେ ପ୍ରୀତି ।
ନିମନ୍ତ୍ରଣର ଯୋଗ୍ୟ ଦେଲେ ମନ୍ତ୍ରୀବର
ବୋଇଲେ ରାଜସୂୟ ଯଜ୍ଞେ ଏକ୍ଷଣି ବାହାର ।
ତନଇ କୁଣ୍ଡଳରଜା ଥାଟକୁ ଚଳାଇ
ତହୁଁ ସହଦେବ ଚଳେ ନିଜ ଥାଟ ବାହି ।
ଶ୍ରୀମହାଦେବଙ୍କୁ ତହୁଁ ମନ୍ତ୍ରୀବର ଭେଟ
ଅନେକ ବନସ୍ତେ ଯାବେ ହୃଦେ ଲମ୍ବ ଭଜ
ବିଶ୍ୱନାଥ ସେବା କରି ଚଳେ ସହଦେବ
କୈଳାସ ଗିରି ଉପରେ ବିଜୟ ପାଣ୍ଡବ ।
କାଶୀ ସେବା କଲେ ଯାଇ ନନ୍ଦିକେଶ ତୀର୍ଥେ
ତହିଁ ନଗ ନାମଧେୟ ଏକଇ କରଚେ ।

ସେ ଯାଇ ଦର୍ଶନ କଲା ପାଣ୍ଡବ ପଞ୍ଚାଣ
ତାଙ୍କୁ ଦେଖି ସହଦେବ କଲେ ନିମନ୍ତ୍ରଣ ।
ରାଜସୂୟ ଯଜ୍ଞକୁ ତୁହି ଚଳରେ ସତ୍ୱର
ତାହା ଶୁଣି ସେ କରଗ ଶିରେ ଦେଲା କର ।
କରଗ ନୃପତି ବୋଲେ ଆହେ ଦେବ ସ୍ୱାମୀ
ଆଜ୍ଞା ପ୍ରମାଣେ ଏକ୍ଷଣି ହେବି ଅଗ୍ରଗାମୀ ।
ଅପୂର୍ବ ଦ୍ରବ୍ୟମାନଙ୍କୁ ଭଣ୍ଡାରରୁ ଘେନ
ତକ୍ଷଣେ କରକେଶ୍ୱର ଚଳାଏ ସଇନ ।
ତହୁଁ ଚଳେ ସହଦେବ ଐଶାନ୍ୟର ଦିଗେ
ଜଳତରଙ୍ଗ ରାଜ୍ୟରେ ପ୍ରବେଶିଲେ ବେଗେ ।
ବାଜଇ ଯେ ବଜଘୋଷ ଚମକ ନିଶାଣି
ହେବରନ୍ତି ଗଉଡ଼େ ଯେ ଖେଦ ଆଗୁଆଣି ।
ରାଜ୍ୟରେ ପଶନ୍ତେ ଶୁଭେ ବାଦ୍ୟ ଘୋରନାଦ
ସ୍ୱରେ ଯାଇ ଜଣାଇଲେ ରାଜାଙ୍କୁ ସମ୍ବାଦ ।
ସ୍ୱାମୀ କେଉଁ ଦେଶ ରାଜା ଆସେ ଦଣ୍ଡସାଜ
ବଳେ ରାଜ୍ୟରେ ପଶନ୍ତି କରି ଗଳଗାଜ ।
ରଥ ଗଜ ଅଶ୍ୱ ଆଦି କେଶୀ ନାହିଁ ଦଣ୍ଡ
ଦେଖାନ୍ତି ଯୋଦ୍ଧା ପ୍ରତିଜ୍ଞା କରି ପରଚଣ୍ଡ ।
ଗୃହପଣ ମୁଖୁ ରାଜା ପାଇଣ ତଦନ୍ତ
ଆଜ୍ଞା କରିଲା ସାଜରେ ବେଗେ ମୋର ରଥ
ରାଜାର ବଚନ ଶୁଣି ଧାଇଁଲେ ସଇନ
ରହ ରହ ବୋଲି ଡାକଦ୍ୟନ୍ତି କରି ଧ୍ୱନ ।
ନାନାଜାତି ଅଶ୍ୱ ଧରି ଚଢ଼ିଛନ୍ତି ହସ୍ତେ
ସ୍ୱେଚ୍ଛାର ତୁରଙ୍ଗମକୁ ଦେଖନ୍ତି ନିର୍ଭୟେ ।
ବହୁତ ଅଛନ୍ତି ସୈନ୍ୟ ନ ଯାଏ ଗଣନା
କରେ କୁନ୍ତ ଚର୍ମ ଅସି ବକ୍ଷେ ବଜ୍ରସେଣ୍ଡା ।
ଉପରଥୀ ଗଜ ଅଶ୍ୱ ଅନେକ ପଦାତି
ତିନିଶତ ପାରିଦଣ୍ଡ ଘେନି ନରପତି ।
ଲୁହା ଉପରେ ଶାର୍ଦ୍ଦୂଳ ଚର୍ମର ଟୁଣ୍ଡଣି
ଅହୋ ବଳ ସଇନକ ଟେକେ ରାଜା ଆଣି ।
ଆଗୁଆଣିର ଥାଟକୁ ଉଗାଳିଲା ଆସି
ଚନ୍ଦ୍ରେ ବିହୁଧାଏଁ ଯେସନ୍ତେ ପକାଇବ ଗ୍ରାସି ।
ପଞ୍ଚଲକ୍ଷ ଯୋଦ୍ଧା ଘେନି ସେ ଜଳତରଙ୍ଗ
ଆକାଶେ କ୍ଷେପିବ ଚଢ଼ି ଏମନ୍ତ ତୁରଙ୍ଗ ।
ରେ ରେ କାର ଶବଦରେ କରଇ ଯେ ରଡ଼
ଏସ ରଡ଼ ଶୁଭଇ ଯେସନ୍ତେ ମେଘ ଘଡ଼ଘଡ଼ ।

ରଜାର ପ୍ରତିଜ୍ଞା ଦେଖି ପାଣ୍ଡବ ସଇନ
ଗର୍ଜି ଉଠିଲେ ସେ ବୀର କରେ ଅସ୍ତ୍ର ଘେନ ।
ପ୍ରତିଜ୍ଞା ସାମର୍ଥ ଜଳତରଙ୍ଗ ସେ ବାଳୀ
ଦୂତ ସହଦେବଙ୍କୁ ସେ ଆସିଲ ଓଗାଳ ।
ସୈନ୍ୟ ଦୁଇଭାଗ କଲେ ରଜା ଦଉଡ଼ନ୍ତେ
ସହଦେବ ଓଗାଳିଲେ ଚଢ଼ି ଏକରଥେ ।
ସହଦେବଙ୍କୁ ପୁଚ୍ଛଇ କେଉଁ ଦେଶ ରଥୀ
କାହିଁକି ମୋ ରାଜ୍ୟ ଆସି ପକାଉଛୁ ମନ୍ଥ ।
ଶୁଣି ସହଦେବ ବୋଲେ ତୁ କେବଣ ପ୍ରାଣୀ
ସହଦେବ ପୂର୍ବେ ବନେ ତୁ କି ନାହୁଁ ଜାଣି
ରାଜସୂୟ ଯଜ୍ଞ ଆମ୍ଭେ କରିବା ନିମନ୍ତେ
ଝାଗାନ୍ୟ ବେଗେ ଅଇଲୁ ନିମନ୍ତ୍ରିବୁଁ ତୋତେ
ଲକ୍ଷେ ରଜା ମେଳେ ତର୍ପି କରିବାକୁ ଯଜ୍ଞ
ସମଦଣ୍ଡ ଘେନ ରହିଲ ବନ୍ଧନରେ ଯିବା ।
ସହଦେବ ବାକ୍ୟ ଜଳତରଙ୍ଗର ରାଜ୍ୟେ
ରଥ ତେଜ୍ୟାକରି ଯାଇ ପ୍ରଣିପାତ ହୁଏ ।
ତୁମ୍ଭ ଦେବ ସୋମବଂଶ କ୍ଷତ୍ରିୟ ଉତ୍ତମ
ଦାସ କରିଥିବା ଦୋଷ ଏବେ ମୋର କ୍ଷମ ।
ଶୁଣି ଦୋଳାଗ୍ରତ କରି ସହଦେବ ମନ୍ତ୍ରୀ
ଅଯତ ଯୋଗାଡ଼ ଦେଲେ ରଜାକୁ ନିମନ୍ତ୍ରି ।
ବୋଇଲେ ଦଣ୍ଡ ଘେନଣ ବାହାର ତକ୍ଷଣେ
ପ୍ରବେଶ ହେଲେଣି ଆସି ସର୍ବ ରଜାଗଣେ ।
ଶୁଣିଣ ନରେନ୍ଦ୍ର ଚିତ୍ତେ ହୋଇଲା ଆନନ୍ଦ
ମୁଖ ପ୍ରକାଶିଲା ଯେହ୍ନେ ପୂର୍ଣ୍ଣିମାର ଚନ୍ଦ୍ର ।
ଚଳଇ ଜଳତରଙ୍ଗ ସୈନ୍ୟବଳ ଘେନି
ତରଙ୍ଗ ଦେଖୁ ବାହାର ହୋଇଲେ ସଇନ ।
ଅନେକ ସମ୍ପର୍ବ କରି ବୁଲେ ନୃପମଣି
ହସ୍ତିନା ଦେଶକୁ ବୋଲି ଦଣ୍ଡର ପଲ୍ଲଣି ।
ଗୋମତୀ ନଦୀର ତୀରେ ଚଳେ ମହାମନ୍ତ୍ରୀ
କୈବର୍ତ୍ତ ରଜା ନିଷାଦପୁର ଅଧିପତି ।
ଶଙ୍ଖବଂଶ ଅଭିବୃଦ୍ଧ ତା ଆଠ ପଲ୍ଲଣି
ସତ୍ୟଯୁଗୁଁ ଅଛି ସେହି ନିଷାଦ ନୃମଣି ।
ତ୍ରେତାଯୁଗେ ରାମଚନ୍ଦ୍ର ନଦୀ କଲେ ପାରି
ତେଣୁ ଅମର ପଦରେ କଲେ ଅଧିକାରୀ ।
ସେହି ରାଜ୍ୟରେ ପ୍ରବେଶ ହେଲେ ସହଦେବ
ନଗର କହିଲା ବାର୍ତ୍ତା ସେ ରଜାର ଠାବ ।

ସହଦେବ ଏହି ନଦୀ ଦକ୍ଷିଣର କୂଳ
ଉପର ଜଗତୀପରେ ଦେଖେ ମହୀପାଳ ।
କୈବର୍ତ୍ତ ଦୂତେ ହୋଇଲା ଶୁଣି ନରନାହା
ଦକ୍ଷିଣ କୂଳକୁ ରଥ ବେଗକରି ବାହା ।
କେବଣ ଦେଶର ରଜା ଅଛୁ ଆରପାରି
ଦଣ୍ଡ ଘେନଣ ଆସିଣ ଏ କୂଳେ ବାହାରି ।
ରଜା ଆଜ୍ଞାରେ ସାଜଲେ କେତେ ନାବମାନ
ଉଡ଼ଇ ପତାଙ୍ଗମାନ ଝଲକେ ରତନ ।
ନାବ ଲାଗିଲା ଆସିଣ ଦକ୍ଷିଣ କୂଳରେ
ହୋମ ପର୍ବତର ବନ କଞ୍ଚିତ ଦୂରରେ ।
ସହଦେବ ବିଜେକଲେ ନାବର ଉପରେ
ସୈନ୍ୟ ପାରିହେଲେ ନଦୀ ଉତ୍ତର ତୀରରେ ।
ଆସ୍ଥାନ ତେଜିଲା ଚିତ୍ତେ କୈବର୍ତ୍ତର ରଜା
ଅର୍ଘ୍ୟ ଘେନି ସହଦେବ ପାଦେ କଲା ପୂଜା ।
ସହଦେବଙ୍କୁ ସୁବର୍ଣ୍ଣ ଆସନେ ବସାଇ
ଲକ୍ଷେକ ସୁବର୍ଣ୍ଣ ସେହୁଁ ବନ୍ଦାଇଲା ନେଇ ।
ନିଜ ପୁରରେ ଉତ୍ସବ କରାଏ ନୃପତି
ମଣ୍ଡଣି କରିଲା ମେଢ଼ ମଣ୍ଡପ ଜଗତୀ ।
ଅନେକ ଯେ କୃତକୃତ୍ୟ ହୋଇ ସେ ନିଷାଦ
ବୋଲେ ଦର୍ଶନେ ଖଣ୍ଡିଲା ସକଳ ଆପଦ ।
ବାଲ୍ୟକାଳେ ଥିଲି ମୁହିଁ ନଦୀ ଜଗିକରି
ପଥଶ୍ରାନ୍ତ ଲୋକଙ୍କୁ ମୁଁ କରିଦିଏ ପାରି ।
ତୋହର ଉପରିବଂଶେ ନୃପତି ଯଯାତି
ତାଙ୍କୁ ପାରି କରିଅଛି ମୁହିଁ ସାତରାତି ।
ଶ୍ରୀରାମଚନ୍ଦ୍ର ଯେ କାଳେ ବନବାସ କଲେ
ବୈଦେହୀ ଲକ୍ଷ୍ମଣ ଘେନ ଏ କୂଳେ ମିଳିଲେ
ତାଙ୍କୁ ପାରି କରି ଗଲେ ସେ ବନବାସକୁ
ଏହିବାଟେ ଗଲେ ବାଣ୍ଡୀବଟର ତଳକୁ ।
ରାବଣକୁ ମାରି ପୁଣି ବାହୁଡ଼ିବା ବେଳେ
ତାଙ୍କୁ ପାରିକରି ମୁହିଁ ଆଣିଲି ଏ କୂଳେ ।
ଲକ୍ଷେକ ପଲ୍ଲଣି ମୁହିଁ ଦେଲି ଦବାରତି
ତନଦନେ ପାରିକରି ଦେଲିଁ ସବୁନ୍ତ ।
ତାତେ ପ୍ରସନ୍ନ ହୋଇଲେ ମୋତେ ରାମଚନ୍ଦ୍ର
ବୋଇଲେ ତୁ ଯୁଗେ ଯୁଗେ ଥାଅ ରେ ନିଷାଦ
ସ୍ୱାମିଙ୍କର ଆଜ୍ଞା ମୁହିଁ ହୃଦେ ଧରିଥିଲି
ବଂଶବଧ କାଳେ ପୁଣି କୃଷ୍ଣେ ପାରିକଲି ।

ସହଦେବ ବୋଇଲେ ତୁ ନରଉପକାରୀ
ଅଗାଧ ଜଳରୁ ତୁମ୍ଭ ଧର୍ମ କରୁ ପାର ।
ଦଣ୍ଡ ଘେନଣ ତୋହର ଯାଉ ନାବମାନ
ଘେନଯାଅ ଚଢ଼ିଁ ମୋର ଦରଶନ ଧନ ।
ସହସ୍ର ସହସ୍ର ଖର ରାଜା ଦ୍ୟନ୍ତ ମୋତେ
ଅପ୍ରମିତ ହିରଣ୍ୟ ମୁଁ ସଙ୍ଗେ ନେବ କେତେ
ସହସ୍ର ନାବେ ପୂରାଇ ଦେଲେ ମନ୍ତ୍ରୀବର
ବୋଇଲେ ଏ ସବୁ ସଙ୍ଗେ ଘେନଯାଅ ତୋର
ଆଉ ସହସ୍ରେକ ନାବ ରଖ ଏହି ଘଟରେ
ନିମନ୍ତ୍ରିତ ରାଜା ପାରହେବେ ସେ ନାବରେ ।
ଏହା କହି ଅର୍ଘ୍ୟ ଘେନି ପାଣ୍ଡବ ପଞ୍ଚଣ
ନିଷାଦ ନରପତିକି କଲେ ନିମନ୍ତ୍ରଣ ।
ପୁଣି ବୋଲେ ଶୀଘ୍ର ବେଗେ ଚଳାଅ ନାବକୁ
ହେଉ ବୋଲି ସନମତ କରିଲା ମନ୍ତ୍ରୀକୁ ।
ନିଷାଦ ବୋଇଲା ତୋର ଆଜ୍ଞା ପରମାଣେ
ହସ୍ତିନା ରାଜ୍ୟକୁ ଏବେ ଯାଉଛୁ ଏକ୍ଷଣେ ।
ଥାଟ ଚଳାଇଲେ ମନ୍ତ୍ରୀ ବେଗବେଗେ କରି
ପ୍ରବେଶ ହୋଇଲେ ଯାଇ ଜ୍ଞାନନଗ୍ର ପୁରୀ ।
ସେ ରାଜ୍ୟର ରାଜା ଜ୍ଞାନଚନ୍ଦ୍ର ନରପତି
ତାହାର ରାଜ୍ୟେ ପ୍ରବେଶ ହେଲେ ମହାମନ୍ତ୍ରୀ
ଆରତୂର ବାଦ୍ୟନାଦେ ଗଗନ ଉଛୁଳେ
ରାଜ୍ୟରେ ପଶିଲେ ସୈନ୍ୟ ରାଜା ସନ୍ଧ୍ୟାବେଳେ
କଟକ ରକ୍ଷା କରନ୍ତି ବୀରଲକ୍ଷ ଯୋଧି
ରାଜ୍ୟରେ ପଶିଲେ ଯାଇ ରଖିଲେ ନିରୋଧି ।
ବୋଇଲେ କାହିଁର ସୈନ୍ୟ ପଶ ଅନିମିତ୍ତେ
ବାର୍ତ୍ତା ନ ଦେଇ ରାଜ୍ୟରେ ପଶୁଛ କେମନ୍ତେ
ଯମକୁ କି ଭୟ ନାହିଁ ମନ୍ଦ ବୁଦ୍ଧିପଣେ
ଯାକୁ ଏ ପୃଥ୍ୱୀ ରାଜା ନ ପାରନ୍ତି ରଣେ ।
ମହା ପ୍ରତାପୀ ରାଜା ଏ କଉତୁକ ବଂଶୀ
ନ ପଚାରି କପାଁ ପଶ ଆମ୍ଭ ରାଜ୍ୟ ଆସି ।
କହୁଁ କହୁଁ ଯୋଦ୍ଧାମାନେ ହେଲେ ପରଚଣ୍ଡ
ସହଦେବର ଉପରେ ପ୍ରହାରିଲେ କାଣ୍ଡ ।
ସହଦେବ ବୋଲେ ରହ ରହ ରେ ସଇନ
କହୁ ଲେଉଟିଆସୁ କପାଁ ମାର ଅସ୍ତ୍ର ଘେନ ।
ଜ୍ଞାନଚନ୍ଦ୍ର ବୋଲେ ତୁମ୍ଭେ କେଉଁଦେଶ ରାଜା
ମୋର ରାଜ୍ୟେ ପଶି କପାଁ ଆରତୂର ବଜା ।

ସହଦେବ ବୋଲେ ଆମ୍ଭେ ଅଟୁ ସୋମବଂଶୀ
ଯଜ୍ଞ ନିମନ୍ତେ ରାଜାଙ୍କୁ ନିମନ୍ତ୍ରିଣ ଆସି ।
ଏହା କହି ଅକ୍ଷତାଦି ଦେଲେ ମହାକ୍ଷତ୍ରୀ
ବୋଇଲା ସୈନ୍ୟଙ୍କୁ ଘେନ ଚଳ ଦିବାରାତି ।
ସହଦେବର ବଚନେ ଜ୍ଞାନଚନ୍ଦ୍ର ରାଜା
ହରଷରେ ପଦ୍ମପାଦେ ଯାଇ କଲା ପୂଜା ।
ବୋଇଲା ବହୁତ ପୁଣ୍ୟ ଅର୍ଜିଥିଲି ପୂର୍ବେ
ସେଥିକି ରାଜସୂୟଯାଗ ଦେଖିଲି ମୁଁ ଏବେ ।
ଏତେ ବୋଲିକରି ଜ୍ଞାନପୁର ଚକ୍ରବର୍ତ୍ତୀ
ନିଜ ରାଜ୍ୟ ଛାଡ଼ି ରାଜା ବାହାରେ ଚଢ଼ନ୍ତ ।
ଚଢ଼ୁଁ ଗଲେ ସହଦେବ ଘେନି ନିଜ ଦଳ
ସାଗର ସଙ୍ଗମେ ହେଲେ ପଣ୍ଡୁର ଦୁଲାଳ ।
ସେ ଘାଟେ ଉପରେ ଅଛନ୍ତି କପିଳ ମହର୍ଷି
ତ୍ରିବେଣୀ ସଙ୍ଗମ ମଧ୍ୟେ ଅଛନ୍ତି ସେ ବସି ।
ଲମ୍ବିତ ଜଟା ତାଙ୍କର ଭୂମିପରେ ଲୋଟି
ତିନିଯୁଗ ହେଲା ତାଙ୍କ ଏକାସନ ଗୋଟି ।
ରଥରୁ ଓହ୍ଲାଇ କରି ମାଦ୍ରୀଦେବୀ ବାଳା
ଋଷିଙ୍କର ପାଦତଳେ ପ୍ରଣିପାତ ହେଲା ।
ପରମ ଯୋଗୀ ପୁରୁଷ କରି ଆଶୀର୍ବାଦ
ପ୍ରସନ୍ନେ ବାର୍ତ୍ତା ପୁଛିଲେ ହୋଇଣ ସାନନ୍ଦ ।
ସହଦେବଙ୍କୁ କହିଲେ ସେ କପିଳ ଯତି
ଯାହା ନିମନ୍ତେ ରାଜସୂୟ ଯାଗକୁ କରନ୍ତି ।
ଘର ନିବାରିବା ଯାଇଁ କୌତୁକେ ଅନନ୍ତ
କରନ୍ତି କରାନ୍ତି ସେହି ଜାତ ମଧ୍ୟ ଅନ୍ତ ।
ଲକ୍ଷେ ନୃପତି ସମସ୍ତ କରଉଛି ସାଧି
ତୁମ୍ଭଙ୍କୁ ଯେ ଏକଛତ୍ର କରାଇବା ବୁଦ୍ଧି ।
ଗଙ୍ଗା ଯମୁନା ଆବର ନଦୀ ସରସ୍ୱତୀ
ତିନିଧାର ହୋଇ ମୁନି ଜଟାରେ ବୁଲନ୍ତି ।
ପୁଣି ସାଗରେ ମିଳନ୍ତି ହୋଇ ତିନିଧାର
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ମନ୍ତ୍ରୀବର ।
କପିଳ ମହାମୁନିଙ୍କ ପଚାରିଲେ ବାଣୀ
ବିନୟ ଭକ୍ତି ଭାବରେ ଯୋଡ଼ି ବେନିପାଣି ।
ବଡ଼ ଆଶ୍ଚର୍ଯ୍ୟ ହୋଇଲି ଦେଖି ମହାମୁନି
ତୁମ୍ଭଙ୍କୁ ନ ଛାଡ଼େ ସତ୍ୟ ଧର୍ମ ସୁରଧ୍ୱନି ।
ସହଦେବର ବଚନେ ବୋଲନ୍ତି ବ୍ରହ୍ମର୍ଷି
ବହୁକାଳ କଥା ଶୁଣ କହୁଛି ପ୍ରକାଶି ।

ବଜସ୍ୱ ନାମକ ଏକ ସତ୍ୟଯୁଗ କଥା
ମୋହକ ନାମରେ ପୃଥ୍ୱୀ କରିଥିଲେ ଧାତା ।
ଇକ୍ଷ୍ୱାକୁ ବଂଶେ ସଗର ନାମେ ନରପତି
ତା ଔରସେ ଜନ୍ମେ ଷାଠିଏସହସ୍ର ସନ୍ତତି ।
ଏକକାଳେ ମାତା ପୁତ୍ରେ ନ ପାରିଲା ପୋଷି
ମୃତ୍ତିକା ଖାଅ ବୋଲିଣ ମାତା ଦେଲେ ଭଷି
ତହୁଁ ସେ ସକଳ ପୁତ୍ରେ ଏକମୁଖ ହୋଇ
ଜମ୍ବୁଦ୍ୱୀପ ମାଟି ସବୁ ଯାଉଛନ୍ତି ଖାଇ ।
ନବଲକ୍ଷ ଦୁଇଶତ ଯୋଜନ ଏ ପୃଥ୍ୱୀ
ଦକ୍ଷିଣ ପୂର୍ବ ପଶ୍ଚିମ ଦେଢ଼ି ସେ ଯାଆନ୍ତି ।
ଆହେ ସହଦେବ ଖତ ଖାନ୍ତି ଏହି ବାଗେ
ବାରବର୍ଷ ଭକ୍ଷିଗଲେ ମନର ସରାଗେ ।
ଦଗପାଳିମାନେ ଯାଇ କହିଲେ ବ୍ରହ୍ମାଙ୍କୁ
ଜମ୍ବୁଦ୍ୱୀପ ନାଶଗଲା କହିଲୁ ତୁମ୍ଭଙ୍କୁ ।
ପୃଥ୍ୱୀ ନାଶଯିବା ଦେଖି ତହୁଁ ପିତାମହ
ଆମ୍ଭଙ୍କୁ ସେ ଆଜ୍ଞା କଲେ ତାଙ୍କୁ ବେଗେ କହ
ଧାତାଙ୍କ ବଚନ ଶୁଣି ଆମ୍ଭେ ଲଭି ତୁଷ୍ଟି
ସଗରସୁତେ ପୋଡ଼ିଲୁ କରି କୋପଦୃଷ୍ଟି ।
ଭଗୀରଥ ନାମେ ତାଙ୍କ ବଂଶେ ଜାତ ହେଲା
ଆକାଶରୁ ଗଙ୍ଗା ଆଣି ପୃଥ୍ୱୀରେ କଲା ।
ଆସନ୍ତେ ମେରୁମେଖଳେ ରହେ ଗଙ୍ଗାମାତ
ବନ୍ଧ ପ୍ରହାର କରିଲା ଆସି ଐରାବତ ।
ତିନଥର ଦନ୍ତାଘାତ କଲା ପରବତେ
ଏକଦନ୍ତ ଭାଙ୍ଗି ତହିଁ ରହେ ଅକସ୍ମାତେ ।
ତିନ ଆଘାତରେ ଗଙ୍ଗା ତିନଧାରେ ଫୁଟି
ମହାବେଗେ ବାହାରନ୍ତେ ଗଜ ଗଲା ଲେଟି ।
ଗଙ୍ଗା ଯମୁନା ଆବର ନଦୀ ସରସ୍ୱତୀ
ଏହି ତିନନାମେ ଗଙ୍ଗା ତହୁଁ ବାହାରନ୍ତି ।
ଆଗେ ଭଗୀରଥ ପଛେ ଗଙ୍ଗା ଆଦ୍ୟନାଶୀ
ତାଙ୍କୁ କଢ଼ାଇ ଆଣଇ ବଗ ଅନୁସରି ।
ଜହ୍ନୁ ଋଷି ଗୋକର୍ଣ୍ଣରେ ତପ କରୁଥିଲେ
ତାହାଙ୍କର କୁଟିରକୁ ଭସାଇଣ ନେଲେ ।
ତହୁଁ ମହାଋଷିଙ୍କର ଭାଙ୍ଗିଗଲା ଧ୍ୟାନ
ଏକା ଚଳୁକେ ସଂହାରି କରିଦେଲେ ପାନ ।
ଗଙ୍ଗାଦେବୀଙ୍କୁ ନ ଦେଖି ସଗରର ନାତି
ତହୁଁ ସେ ମୁନିଙ୍କ ପାଦେ କରିଲା ଭକତି ।

ବୋଇଲା ହେ ମହାଋଷି ଗଙ୍ଗା କଲ ପାନ
କେମନ୍ତେ ଉଦ୍ଧାର ହେବେ ସଗର ସନ୍ତାନ
ବହୁକାଳ ତପକରି ପାଇଥିଲି ଯାହା
ତାହାଙ୍କୁ ପ୍ରଦାନ କରି ଆହେ ମୁନିନାହା ।
ଏହିରୂପେ ଭଗୀରଥ କରିଲା ମିନତି
ତହୁଁ ଜହ୍ନୁ ମୁନିଙ୍କର କୋପ ହେଲା ଶାନ୍ତି ।
ବୋଇଲେ ମୁଖପଥରେ କରିଲେ ବାହାର
ଉଚ୍ଛିଷ୍ଟ ବୋଲି ସମସ୍ତେ କରିବେ ବିଚାର ।
ତହୁଁ ମୁନି ନିଜ ଜାନୁ ଦିଅନ୍ତି ଚିରାଇ
ସେହି ବାଟେ ତିନଧାରେ ଆସିଲେ ବାହାରି
ଗଙ୍ଗାଙ୍କୁ ପ୍ରାର୍ଥନା କଲେ ଯହୁଁ ଜହ୍ନୁମୁନି
ଜାହ୍ନବୀ ନାମ ଧଇଲେ ତହିଁ ସୁରଧୁନୀ ।
ଭଗୀରଥ ଗଙ୍ଗାଙ୍କୁ ଯେ ପୁଣି ମଣାଇଣ
ଐଶାନ୍ୟ ମୂର୍ତ୍ତିରେ ଆସେ ନବସହସ୍ର ଯୁଣ ।
ବଜସ୍ୱନଗ୍ରେ ଶିରଧା ବୋଲି ଗନ୍ଧନାଶୀ
ଗଙ୍ଗା ବହି ଆସୁ ପାତେ ନେଇ ସୁବର୍ଣ୍ଣର ।
ଆକାଶ ହାନ୍ଦୋଳାରେ ସେ ତିନିଧାରି ରୂପ
ଗନ୍ଧନାଶୀ ସୁରାପ ହେ ହୋଇଗଲେ ଗୋପ୍ୟ ।
ତାହାକୁ ଭକତି କରି ମାଗେ ଭଗୀରଥ
ଗଙ୍ଗାଙ୍କୁ ସେ ମହାମ୍ଭାଣୀ କରାଇଲା ସତ୍ୟ ।
ବୋଇଲା ମାଗୋ ପଶିଲୁ ତୁହି ସୁବର୍ଣ୍ଣର
ଆଜଠାରୁ ତୋର ନାମ ହେଉ ସୁରେଶ୍ୱରୀ ।
ସତ୍ୟ କରାଇଣ ଛାଡ଼ିଦେଲେ ସେ ଗଙ୍ଗାଙ୍କୁ
ଭଗୀରଥ ଦେଖାଏ ତା ପୂର୍ବ ପୁରୁଷଙ୍କୁ ।
ଅଗ୍ନି ଭିତରେ ନ ପଶି ସଗରର ନାତି
ଆମ୍ଭଙ୍କୁ ସେ ପ୍ରଦକ୍ଷିଣ କଲା ତିନଧାନ୍ତି ।
ଗଙ୍ଗାଙ୍କୁ ବୁଲିଲେ ତିନବେଳ ପରଯନ୍ତ
ଭଗୀରଥ ବୋଇଲା ମୁଁ ଆଣେ ପିତାଅର୍ଥେ ।
ଏ ଦହନ ଅଗ୍ନିଲକ୍ଷ ମୋହର ଉକତେ
ଗଙ୍ଗା ବୋଇଲେ ସ୍ୱରୂପ କହୁଅଛୁ ତୋତେ
ଯାହାରଟି ସେହି କାର୍ଯ୍ୟ ଅଛଇ ଜଗତେ
ସେହି ପିନା ଝାସଦେବେ ଯାଇଣ ଅଗ୍ନିତେ ।
ତୋ ଗୋହ ପୋଡ଼ି ମରନ୍ତି ପିନା ଏହି ଘରେ
କୁ ଝାସ ନ ଦେଲେ କେବେ ପଶିବ ସେଠାରେ
ଭଗୀରଥ ବୋଇଲା ମୁଁ ତୋହର ଶରଣ
ବଂଶ ନିମନ୍ତେ ଝାସୁଛି ପାଇବ କାରଣ ।

ଗଙ୍ଗା ବୋଇଲେ ଯେ ଗୁରୁଯୁଗର ମଧ୍ୟରେ
ଭଗୀରଥ ଗଙ୍ଗା ବୋଲି ଗାଧୋଇବେ ନରେ
ଦେବ ଦାନବ ଗୁହ୍ୟକ ଏହି ଆଦିକରି
ସମସ୍ତେ ସ୍ନାନ କରିବେ ତୋର ନାମ ଧରି ।
ଗଙ୍ଗାଙ୍କ ବଚନ ଶୁଣି ହୋଇ ଶାନ୍ତମୂର୍ତ୍ତି
ବଦନରେ ହାସ ଦେଲା ସଗରର ନାତି ।
ସଗର ପୁତ୍ରମ ନଙ୍କ କରିବ କାରଣ
ମୋ ମସ୍ତକେ ଦେବୀ ଏବେ କରିବ ଭ୍ରମଣ ।
ସାଗର ସଙ୍ଗମ ତହୁଁ ସ୍ରୋତ ମାହେଶ୍ୱରୀ
ଏଥିର ମହିମା କଏ କହିବ ବିସ୍ତାରି ।
ଶୁଣ ବାବୁ ସହଦେବ ଏ ସଙ୍ଗମ କଥା
କୋଟିତୀର୍ଥ ସମ ନୁହେଁ ଏହାକୁ ସର୍ବଥା
ପୂର୍ବବୋଧନ ନାମରେ ଥିଲା ସତ୍ୟଯୁଗ
ଯେ ଭାଳ କଥାକୁ ଶୁଣ କରି ମନଯୋଗ ।
ଗଙ୍ଗାଇଡ଼ ବାଇ ନାମେ ଥିଲା ଏକ ପକ୍ଷୀ
ଆକାଶେ ଉଡ଼ଇ ସେହୁ ମାଛ ଭକ୍ଷି ଭକ୍ଷି ।
ମାଛଇ ନିମନ୍ତେ ସେହୁ ଜଳରେ ପଡ଼ଇ
ବନେ ସଙ୍ଗମୁ ବାହାର ନ ପାରିଲା ସେହି ।
ନିଜ କାୟା ହାସ ଯହୁଁ ଦେଲା ତାରି ମଧ୍ୟେ
ଇନ୍ଦ୍ରପଦରେ ବସିଲା ଅତି ପ୍ରସାଦେ ।
ଏ ତୀର୍ଥ ମହିମା ପଟେ ଅତି ଅଦ୍ଭୁତ
ଆନ୍ତ ବ୍ରହ୍ମହତ୍ୟା ଦୋଷ ଖଣ୍ଡି ଗଲା ଏଥି ।
ତୁମ୍ଭେ ଏ ତୀର୍ଥରେ ସ୍ନାନ କର ହୋ ପାଣ୍ଡବ
ପିତା ନାମଧରି ତୁବ ହତ୍ୟା ଛୁଟିଯିବ ।
କପିଳ ଋଷିଙ୍କଠାରୁ ମନ୍ତ୍ରୀବର ଶୁଣି
ମହାତୀର୍ଥେ ସ୍ନାନ କଲା ପିତା ପାପ ଗୁଣି ।
ସ୍ନାନ ନିତ୍ୟକର୍ମ ସାରି ବୀର ସହଦେବ
ପିଣ୍ଡଦାନ କଲା ପିତା ନିମନ୍ତେ ପାଣ୍ଡବ ।
ପଣ୍ଡୁ ରଜା ବ୍ରହ୍ମହତ୍ୟା ଯେତେ ଦୋଷମାନ
ସ୍ନାନ ପିଣ୍ଡଦାନ ସର୍ବ ହୋଇଲା ଖଣ୍ଡନ ।
ତହୁଁ କପିଳ ମୁନିଙ୍କୁ କରି ନିମନ୍ତ୍ରଣ
ବୋଇଲେ ରଜସୂୟ ଯଜ୍ଞେ ଯିବେ କି ଆପଣ ।
ଶୁଣି ସାନନ୍ଦ ଚିତ୍ତରେ ବୋଲନ୍ତି କପିଳ
ରଜାମାନଙ୍କୁ ଘେନଣ ତୁମ୍ଭେ ଶୁଭେ ଚଳ ।
ଅସ୍ତୁକାର ପୁରୁଷ ଯେ ମହାକ୍ଷେତ୍ରେ ଗଲେ
ଅସ୍ତୁ ଅସ୍ତୁ ବୋଲିକରି ମଙ୍ଗଳ ବାଞ୍ଛିଲେ ।

ତହୁଁ ସହଦେବ ମନ୍ତ୍ରୀ ଚଳାଇ ନଗରେ
ସୁମରଇ ନାରାୟଣ ପୁରୁଷ ଉତ୍ତମେ ।
ଜୟ ଜୟ କୃଷ୍ଣ ଦେବ ଯମ ଦର୍ପଗଞ୍ଜା
କୌଶିକ ବାଞ୍ଛେ ଚାଡ଼କା ଦର୍ପ କଲୁ ଭଞ୍ଜା
ମହାବ୍ରହ୍ମ ପୁରୁଷ କୋଦଣ୍ଡ ଦୀକ୍ଷାଗୁରୁ
କୌତୁକେ ମହାଭାରତ ଯୁଦ୍ଧ ତୁହି କରୁ ।
କଳ୍ପ କଳ୍ପ ଯୁଦ୍ଧେ ନାଥ ହିରଣ୍ୟ ମାରିଲୁ
ସାଗରେ ସେତୁ ବାନ୍ଧଣ କୌଣପ ଧ୍ୱଂସିଲୁ ।
ଶୈଳଜା ବଲ୍ଲଭ ହର ଯାର ପ୍ରାଣବନ୍ଧୁ
କମଳା ପାଇବା ପାଇଁ ମନ୍ଥିଲୁ ତୁ ସିନ୍ଧୁ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ଭକାଶୁ ମୋ ହୃଦେ
ଶାରଳା ଦାସ ବଦନ୍ତି ପରମ ସାନନ୍ଦେ ।

---

## ଭୀମସେନଙ୍କର ପଶ୍ଚିମଦିଗ ଯାତ୍ରା ମୃଗସେନ ରାଜା ସହିତ ଯୁଦ୍ଧେ ପରାଜୟ, ସୋମବଂଶର ବଂଶାବଳି ଓ ମୃଗସେନର ଜନ୍ମ ବୃତ୍ତାନ୍ତ

ଘଟଋଷିଙ୍କ ନନ୍ଦନ ଅଗସ୍ତି ପଣ୍ଡିତ
ଯାର କଥା ଶୁଣି ପାପୀ ହୁଅଇ ମୁକତ ।
ବୈବସ୍ୱତ ମନୁ ପୃଚ୍ଛା କରିଲେ ହୃଷ୍ଟ ବେ
ଶ୍ରୀବତ୍ସ ପୁରାଣ ମୋତେ କହ ମୁନି ଏବେ ।
ଭୀମସେନ ଯାଇଥିଲେ ପଶ୍ଚିମ ଦିଗକୁ
ସାଧି ସାଧନା କଲେ କି ସକଳ ରଜାଙ୍କୁ ।
ରଜାଙ୍କୁ ଘେନି ଆସିଲେ ଟିକି ସର୍ବଶୁଭେ
ହେ ମହାତ୍ମା ତବ ମୁଖୁଁ ଶୁଣିବି ମୁଁ ଏବେ ।
ବଦନ୍ତି ଅଗସ୍ତି ଶୁଣ ବଳଙ୍କ ଅଧିପ
ନମନ୍ତିଲେ ସ୍ୱରଉଣା ପାଞ୍ଚସସ୍ର ନୃପ ।
ପଶ୍ଚିମ ଅନ୍ତେ ମେରୁର ଦକ୍ଷିଣ ପାର୍ଶ୍ୱେ
ମେଖଳ ପର୍ବତେ ହର ଉଦ୍ୟାନର ଦେଶେ ।
ହରିନାଥ ବୋଲିକରି ତହିଁ ଅଧିପତି
କିଷ୍କିନ୍ଧ୍ୟା ନଗ୍ରେ ଅନେକ କାଳୁଁ ସେହି ସ୍ଥିତ
ହରିବଳ ଘେନିକରି ଖଟେ ଶ୍ରୀରାମଙ୍କୁ
ରାବଣ ବଧି ପ୍ରସନ୍ନ ହୋଇଲେ ତାହାଙ୍କୁ ।
ନିଜ ଆୟୁଦେଇ ତାକୁ ଚିରାୟୁଷ କରି
ରଖାଇଲେ ତାକୁ ନେଇ କିଷ୍କିନ୍ଧ୍ୟା ନଗରୀ

ଅପାର କାଳରୁ ରାଜ୍ୟ କରଇ ସେ ବନେ
ଯମଦଣ୍ଡ ଖଣ୍ଡିଲ ସେ ଶ୍ରୀରାମ ପ୍ରସଙ୍ଗେ ।
ହରି ବଳ ସୈନ୍ୟ ଚାରି ଅଠର ମଣ୍ଡିତ
ଦଣ୍ଡ ଘେନି ନିର୍ଦ୍ୱନ୍ଦ୍ୱରେ ଥାଏ ସେ ବନସ୍ତ ।
ସେହି ରାଜ୍ୟରେ ପ୍ରବେଶ ହୋଇଲା ପାଣ୍ଡବ
ରାଜ୍ୟେ ପ୍ରବେଶନ୍ତେ ତହିଁ ଶୁଭେ ଗୋଳଧ୍ୱନି
କଳକଳା ରବେ ଧାଇଁଗଲେ କପିବୀରେ
କରେ ଶୋଭା ପାଏ ବୃକ୍ଷ ପଥରେ ପଥରେ ।
ରେରେକାର କଳକଳା ଏ ହେବ ଶବ୍ଦେ
କମ୍ପି ଗଲେ ବୃନ୍ଦାଅର୍କେ ଅହୋବଳ ନାଦେ ।
କଟିକଟି ନାଦ ମିଟିମିଟି ହେବ ଡୋଳ
ଭିଡ଼ନ୍ତି ଦାନ୍ତ ଖଟାନ୍ତି ହୋଇ ବଳଶାଳୀ ।
ଦେଖିଣ ପାଣ୍ଡବବଳ ଏମନ୍ତ ପ୍ରତ୍ୟକ୍ଷେ
ଦେଖିଲେ ସକଳେ ତହୁଁ ହୋଇ ଏକମୁଖେ
ଧରନ୍ତେ ଧରା ନୁହଇ ନ ଆସନ୍ତି କତି
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ଅଭୟ ସେ ରଥୀ ।
ଭୀମସେନ ସୈନ୍ୟସବୁ ସମର ଉପେକ୍ଷି
ନଗରେ ପଶିଲେ ହରିବଳଙ୍କୁ ନ ଦେଖି ।
କୋଳାହଳ ବାଦ୍ୟ ଶୁଣି ହରିନାଥ ରସ୍ତେ
ବାନର ବଳଙ୍କୁ ଘେନି କରିଲା ବଜସ୍ପେ ।
ଭୀମସେନର ସମ୍ମୁଖରେ ପ୍ରବେଶିଲା ଆସି
ପାଣ୍ଡବବଳ ଦେଖିଣ ତାଙ୍କୁ ହେଲେ ହାସି ।
ହରିନାଥ ପଚାରିଲା ଶୁଣ ମହାତ୍ମା
ମାନବ ଜନମ ଲଭି ତୋର ଏ ଗରିମା ।
ଏ କପିସୈନ୍ୟ ଅଛନ୍ତି ମୋର ମହାଯୋଦ୍ଧା
ତ୍ରେତାଯୁଗେ ରାମଚନ୍ଦ୍ର ହେଲେ ମୋତେ ସାଧି
ଭୀମ ବୋଇଲେ ମୋହର ପ୍ରତିଜ୍ଞା ବହୁତ
ମୁହିଁ ଅଟଇ ପାଣ୍ଡବ ସୋମବଂଶେ ଜାତ ।
ପବନ ନନ୍ଦନ ଭୀମସେନ ନାମ ଜାଣ
ପଶ୍ଚିମ ଦିଗେ ରାଜାଙ୍କୁ କରି ନିମନ୍ତ୍ରଣ ।
ଯୁଧିଷ୍ଠିର ରାଜସୂୟଯଜ୍ଞ କରିବା ନିମନ୍ତେ
ସର୍ବରାଜା ଯାଉଛନ୍ତି ସେ କାରୁଣାବନ୍ତେ ।
ତୁମ୍ଭେ ମହାରାଜା ଅଟ ବନ ଅଧିବାସୀ
ତୋତେ ନିମନ୍ତ୍ରିବା ପାଇଁ ପେଷିଲେ ଶ୍ରୀହରି
ସମଦଣ୍ଡ ହେବଣ ତୁ ଯିବୁଟି ହସ୍ତିନା
ହସ୍ତିବାସୀ ନୁହେଁ ମୁଁ ଉତ୍ତରବାସୀ ସିନା ।

ଭୀମ ବଚନେ ସାନନ୍ଦ ହେଲା ନରନାଥ
ବୋଲେ ପବନସୁତ ତୋ ଭାଇ ହନୁମନ୍ତ ।
ତହୁଁ ଭୀମସେନ ପାଶେ ନୃପ ପ୍ରିୟଭାବେ
ପୂଜା କରଇ ତାହାଙ୍କୁ ଅନେକ ସମ୍ଭବେ ।
ସେ ରାଜ୍ୟେ ରାଜା କରିଲେ ବହୁତ ଉତ୍ସବ
ଭୋଜନକୁ ଫଳ ଦେଲା ଯା ହେଲା ସମ୍ଭବ ।
ନିମନ୍ତ୍ରଣର ଯୋଗାଡ଼ ଦେଲାକ ପଞ୍ଚାଶ
ବୋଇଲା ତୁ ଦଣ୍ଡ ଘେନି ଚଳ ନୃପଗଣ ।
ସେଠାରୁ ମାରୁତି ତହୁଁ ଚଳେ ଦଣ୍ଡ ଘେନି
ମେଖଳା ଦେଶରେ ଯାଇ ପ୍ରବେଶ ପାଣ୍ଡବ ।
ମ୍ଳେଚ୍ଛାମ୍ଳେଚ୍ଛ ବୋଲିକରି ଏକ ପଲ୍ଲବତେ
ପ୍ରବେଶ ହୋଇଲା ଯାଇ ସେଠାରୁ ଉତ୍ତରେ ।
ମୃଗସେନ ନାମେ ତହିଁ ଏକଇ ନୃପତି
ବଡ଼ାଇ ପ୍ରତାପୀ ରାଜା ଗିରିଶିଖେ ସ୍ଥିତି ।
ବୀରତୂର ବାଦ୍ୟମାନ ଶୁଭେ ଅପ୍ରମିତ
ପର୍ବତ ଉପରେ ଥାଇ ଦେଖେ ନରନାଥ ।
ଭୂଜରେ ଶୋଭା ଭୂଜାଳି ପୃଷ୍ଠରେ ଧାରଣି
ରଙ୍ଗନେତ୍ରରେ ଘୂର୍ଣ୍ଣିଲା ଫୁଲାଇଣ ଗଣ୍ଡ ।
କନ୍ଦର ବେଢ଼ିଲେ ଯାଇ ପାଣ୍ଡବଙ୍କ ଠାଟ
ଦେଖିଣ ସେ ମୃଗସେନ ତାହାଙ୍କ ମୁରଟ ।
ବହୁତ ପ୍ରତିଜ୍ଞା କରି ଦେଖାଇଲେ ଟାଣ
ପ୍ରଥମେ ପ୍ରହାର କଲେ ନେଇଣ ସେ ବାଣ ।
କୋପେ ମୃଗସେନ ତହୁଁ ଘେନି ଖଣ୍ଡମୁନା
ବିନ୍ଧଇ ନାରାଚ ସେତୁ କରି ଅକଳନା ।
ସିଂହ ତୁରଙ୍ଗ ଧନୁରେ ପାଞ୍ଚଶର ସନ୍ଧି
ଆକର୍ଷି କୋପେ ନାରାଚ ଦେଲାକ ସେ ବନ୍ଧି
ସେ ପାଞ୍ଚଶର ଘୋଟିଲା ପାଣ୍ଡବର ଠାଟ
ହାସେ ସଇନ ଭାଜିଲେ ନ ପାଇଣ ବାଟ ।
ଅନ୍ତରୀକ୍ଷୁ ଶର ପଡ଼େ ଭୀମର ଠାଟରେ
ପଞ୍ଚଶତ ଯୋଦ୍ଧା ମଲେ ଏକ ପ୍ରହାରରେ ।
ପୁଣି ପ୍ରହାର କରିଲା ଶର ଅସ୍ତ୍ରବର
ପଞ୍ଚଶତ ଯୋଦ୍ଧା ପଡ଼ି ମରିଲେ ଆତୁର ।
ସୈନ୍ୟ ଅଧାସ୍ଥାନ ଦେଖି ବୀର ଭୀମସେନ
ରଥରୁ ଡେଇଁ ପଡ଼ିଲା ହୋଇ କୋପମନ ।
ରେରେକାର ଶବ୍ଦରେ ଯେତେହେଁଘୋଟେ ସନ୍ଧ
ଊର୍ଦ୍ଧ୍ୱ ଦିଗକୁ ବିସ୍ତାର କଲା ହେବ ବାହୁ ।

ଭୀମସେନଙ୍କୁ ଦେଖିଣ ନୃପ ମୃଗସେନ
ପୁଣି ଶତେକ ନାରାଚ କରିଲା ସନ୍ଧାନ ।
ଗିରିବର ତଳେ ଥିଲେ ଯେସନ ପବନ
ପଡ଼ିଲେ ନାରାଚ ସାଏ ଝିଲିକ ବହନ ।
ଏକଶତ ରଥୀ ପୁଣି ଦୁଇଶତ ହସ୍ତୀ
ଦେନ ଅଯୁତ ପଚଶ ମରିଲେ ପଦାତି ।
ଶତେକ ନାରାଚ ନୃପ ପୁଣି କଲା ବୃଷ୍ଟି
ଭୀମ ଉପରେ ପଡ଼ିଣ ଅଗ୍ନି ତେଜ ଉଠି ।
ଯେମନ୍ତେ ଅନଳ ବହେ ବହ୍ନିଲା ଅନଳ
ସହସ୍ର ତେଜେ ଦହିଲା ପାଣ୍ଡବର ଦଳ ।
ଯେତେ ସୈନ୍ୟ ଥିଲେ ଭୀମସେନ ସଙ୍ଗତରେ
ସମସ୍ତ ବଗଧ ହେଲେ ସେ ରାଜା ଶରରେ ।
ଏକା ରହେ ଭୀମସେନ ମଚ୍ଛିତ ସାରଥି
ଏହା ଛଡ଼ା ସଖା କେହି ତାହାର ନାହାନ୍ତି ।
ଏମନ୍ତ ଅବସ୍ଥା ଦେଖି ସୈନ୍ୟମାନଙ୍କର
ଅକ୍ଷଣ ଉଜ୍ଜ୍ୱଳନେତ୍ରୁ ବହେ ଅଶ୍ରୁଧାର ।
ଶୋକଭରରେ ରୋଦଇ ପାଣ୍ଡୁ ପଞ୍ଚାଣ
ସାରଥିଙ୍କୁ ପ୍ରଣମିଣ ବୋଲଇ ସେ ପୁଣ ।
ଶୁଣ ମୋହର ପିଅର ପିତାମହ ସରି
ସଖା ସୋଦର ମୋହର ଗଲେ ଅପସରି ।
ନାହିଁ ଜ ଅଛଇ ସିନା ମୋହର ଏ ଆତ୍ମା
କ୍ଷତ୍ରସ୍ୱବର ଖୋହନ୍ତ ସେ ସାଧୁ ମହାତ୍ମା ।
ଆମ୍ଭଙ୍କୁ କପାଇଁ ନାଶ ନ କଲା ସମରେ
କସ ପ୍ରୟୋଜନ ଅଛି ଆଉ ଜୀବନରେ ।
ସଖା ସହୋଦର ମୋର ସର୍ବ ହଜିଲା
କ୍ଷତ୍ରିୟ କୁଳକୁ ସିନା ହିଙ୍ଗାସ ପାଇଲା ।
ଯେ ପିତାମହ ମୋହର ବାହୁ ଭୁଜ ଭଥ
ମୃଗସେନ ନ ମାରିଲେ ଜୀଇଁବା ଧିକ ର ।
ଏହି ପ୍ରକାରେ କହନ୍ତେ ଧାଇଁ ମୃଗସେନ
ହାବୋଡ଼ା ଶର ଗୋଟିଏ ମାରିଲା ବହନ ।
ବଜ୍ରର ସମାନ ଯାଇ ସେ ନାରାଚ ପଡ଼ି
ଭୀମସେନ ରଥଚକ ପଡ଼ିଲାକ ଛିଡ଼ି ।
ରଥ ରଜ ଅଶ୍ୱଆଦି ନ ପାଇଲା ଯହୁଁ
ପାଦଗତିରେ ପାବନ ଧାଇଁଲାକ ତହୁଁ ।
ସାରଥି ବଚନ ଭୀମ ନ କରିଲା ରକ୍ଷା
ସ୍ୱଗରେ ମାନ୍ଧାତ କଲା ଧର୍ମକୁ ଉପେକ୍ଷା ।

ବାଆନ ବାଆନ ଭରି ଗଦା କରେ ଘେନ
କୁନ୍ଦର ପିଟିଲା ମୃଗସେନର ମୂର୍ଦ୍ଧନ ।
ଚନ୍ଦ୍ର ଗ୍ରାସିବାକୁ ରାହୁ ଯେସନ୍ତେ ତେଜ ଦଶେ
ସେହିପରି ମୃଗସେନ ମୃଗଙ୍କୁ ଆକର୍ଷେ ।
କୁନ୍ଦର ପ୍ରହାରେ ଗଦା ହଡ଼ମ୍ଭିର ନାହା
ଦେଖି ମୃଗସେନ ପାଛେ ତାର ଦେନ ବାହା
ଭୀମସେନ ପ୍ରହାରିଲା ଗଦା ଗଜଗାଜ
ରାଜାର ଉପରେ ପଡ଼ି ଗଦା ଗଲା ଭାଜ ।
ଭୋଇନ୍ତା ନନ୍ଦନ ଯହୁଁ ହେଲା ଶୂନ୍ୟହସ୍ତ
ଲୌହଗଦା ପ୍ରହାରିଲା ମୃଗ ନରନାଥ ।
ଦେଖିକର ବୃକୋଦର ଯାତେ ବାମଅଙ୍ଗ
ମୃଗସେନ ଦୁଇଗଦା ପଡ଼ି ହେଲା ଭଙ୍ଗ ।
ତାହା ଦେଖି ମୃଗସେନ ଧାଏଁ ମହାକ୍ରୋଧେ
ଭୀମସେନଙ୍କୁ ଆକର୍ଷ ଧରେ ମାଲଯୁଦ୍ଧେ ।
ପବନ ନନ୍ଦନ ଅଟେ ଅତି ବଳବନ୍ତା
ମୃଗସେନ ଅଟେ ମଧ ସିଂହଳ ଜଣନ୍ତା ।
ଭୁଜେ ଭୁଜ ଧରାଧରି ପାଦେ ଛନ୍ଦାଛନ୍ଦି
ଶିରେ ଶିର ପଡ଼ିତାଳ ହୃଦେ ହୃଦ ବାନ୍ଧି ।
ସମର ସମ୍ମୁଖେ ଦୁହେଁ ମଲ୍ଲରେ ପଡ଼ିଲେ
ଜୈକୁ ମଙ୍ଗଳ ସମର ଯେସନ୍ତେ କରିଥିଲେ ।
ସେହିରୂପେ ସମରରେ ବଢ଼େ ମହାରୋଳ
ମୁଖଶବ୍ଦ ଶବଦରେ ଉଠେ ମହାଗୋଳ ।
ଶିରେ ଶିର ପଡ଼ିତାଳ ହୃଦେ ବାନ୍ଧି ଦେନ
ଭରେଁଣ ଘାତେ ତର୍ଜ୍ଜି ଉଠଇ କହନ ।
ପର୍ବତ ଉଙ୍ଗରି ଖାଲ ପୁଣି ବୃକ୍ଷମାନ
ଦୁହିଙ୍କ ଶରୀର ଘାତେ ହୋଇଲାକ ଚୂର୍ଣ୍ଣ ।
ଭୀମସେନଙ୍କୁ ପାଡ଼ିଣ ରାଜା ମୃଗସେନ
ବକ୍ଷସ୍ଥଳେ ମାଡ଼ିବସେ ହୋଇ କୋପମନ ।
ବାମକରେ ପାକମାରି କଣ୍ଠଦେଶ ଧରି
ଡାହାଣ ହାତରେ ମୁଥ ମାରେ କୋପକରି ।
ମୁଥ ଘାତରେ ଝିଲିକ ପଡ଼େ ବୈଶ୍ୱାନର
ବୋଇଲା ବାଏ ଭଖିବ ତୋତେ ରେ ପାମର
ଘାଏ ନଷ୍ଟେସ୍ଥ ହୋଇଣ ପଡ଼ିଲା ମାରୁତି
ଶତଶୃଙ୍ଗ ପର୍ବତକୁ ସୁମରଇ ଧାତି ।
ପର୍ବତବର ଭୀମର ଅଙ୍ଗେ କଲା ବାଜ
ସାଷ୍ଟାମ ଯାଇ ଉଠିଲା ପବନ ଆତ୍ମଜେ ।

ଏକ ଉତ୍ତର ଶତେକ ସିଂହ ମହାବଳେ
ଲେଉଟାଇ ମାଡ଼ି ବସେ ରଜା ବକ୍ଷସ୍ଥଳେ ।
ମହାବଳବନ୍ତ ଯେଣୁ ପବନର ସୁତ
ମୃଗସେନ ବକ୍ଷସ୍ଥଳେ ବସିଲା ତୁରିତ ।
ବୋଇଲା ସୁତ ପ୍ରତିଜ୍ଞା କରି ମହାଗୁରୁ
ବୋଇଲା ପାମର ତୋତେ କିଏ ରକ୍ଷାକରୁ ।
ସୁମର ତୁ ପାମର ରେ ତୋର ପିତାମାତା
ସୁମର ତୁ ପାମରରେ ତୋ ଇଷ୍ଟଦେବତା ।
ଭୀମସେନର ପ୍ରତିଜ୍ଞା ମୃଗସେନ ଶୁଣି
ଗର୍ଜିଣ ଭୀମସେନକୁ ଲେଉଟାଇ ପୁଣି ।
ଧାଡିକାରେ ଲେଉଟାଇ ବସେ ବକ୍ଷସ୍ଥଳେ
ପୁଣି ପୁଣିହିଁ ପ୍ରତିଜ୍ଞା କରେ ମହାବଳେ ।
ରେ ରେ ପାମର ମହିମା ତୋର ଅଟେ ଧନ
ରେ ପାମର ଧନ୍ୟ ତୋର ସାଧବୀ ଜନନୀ ।
ରେ ରେ ପାମର ତୋହର କିସ ଅଟେ ଦର୍ପ
ରେ ରେ ପାମର ଗ୍ରାସିଲୁ ବୃହି କାଳସର୍ପ ।
ରେ ରେ ପାମର କୁହନ କି ପ୍ରତିଜ୍ଞା କରୁ
ରେ ରେ ପାମର ଆସିଣ କେହ୍ନ ରକ୍ଷାକରୁ
ରେ ରେ ପାମର ଚିରିବ ତୋର ବକ୍ଷସ୍ଥଳ
ରେ ରେ ପାମର ତୋହର ପୂରିଲଣି କାଳ
ରେ ରେ ପାମର ଜନ୍ମିଲୁ ତୁ କେବଣ ଦେଶ
ଏ ସ୍ଥାନକୁ ଆସି କାଞ୍ଚ କରିଲୁ ତୁ ଧ୍ୱଂସ ।
ଯାହାର କର୍ମେ ଯେଠାରେ ଅଛଇ କପୃତ
ତଇକ କଡ଼ାଇ ଆଟଣ ଗଳେ ଦେଇ ହସ୍ତ ।
ସ୍ୱର୍ଗେ ଦେବତା ପାତାଳେ ଛନ୍ତି ନାଗଲୋକ
ମର୍ତ୍ତ୍ୟପୁରେ ନରମାନେ ଅଛନ୍ତି ଅନେକ ।
ତୋହର ଅବସ୍ଥା ଯାହା ଘଟିଛି ତୁ ଦେଖୁ
ତ୍ରୈଲୋକ୍ୟ ମଧ୍ୟରେ ଆଜ ତୋତେ କିଏ ରଖୁ ।
ଦୁଃସହ ପ୍ରତିଜ୍ଞାମାନ କରେ ବାରମଣି
ବସୁରଇ ସ୍ଥାଣେ ଯାକୁ ମାରିବ ଏକ୍ଷଣି ।
ପୁଣି ବସୁରଇ ଏହୁ କାହାର ତନୟେ
ସ୍ୱରୂପ ଦିଶଇ ଦିଗପାଳ ଅଂଶ ପ୍ରାୟେ ।
ମାରିବ କି ନ ମାରିବ ବସୁରଇ ମନେ
ଅପଖ୍ୟାତି ପାଇବ ମୁଁ ମାରିବ କେସନେ ।
ପୁଣି ମୃଗସେନ ରଜା ପୁଚ୍ଛେ ମୁଖ ଚାହିଁ
କେବଣ ପୁରରେ ଜାତ ବାସ ତୋର କାହିଁ

ଭୀମ ବଚନେ ପଣ୍ଡୁ ବୋଲେ ମାଲଯୁଦ୍ଧେ ହାରି
ମୁହିଁ ସୋମବଂଶେ ଜାତ ବ୍ୟାସ ବଂଶଧାରୀ ।
ଚନ୍ଦ୍ର ଅଂଶେ ଉତପତ୍ତି ବୁଧ ନରପତି
ପୁରୁରବା ବୋଲିକରି ତାହାର ସନ୍ତତି ।
ପୁରୁରବାଙ୍କ ନନ୍ଦନ ନାମ ଯେ ପାଉର
ନହୁଷ ନୃପତି ପୁତ୍ର ହୋଇଲା ତାଙ୍କର ।
ନହୁଷ ରଜାଙ୍କ ପୁତ୍ର ହୋଇଲା ଯଯାତି
ଯଯାତିର ପୁତ୍ର ନାମ ପ୍ରବୀର ପ୍ରଚେତ ।
ମନୁ ସାନନ୍ଦ ବୋଲିଣ ପୁତ୍ର ଏହାଙ୍କର
ଇଲଭର ବୋଲିକରି ଏହାଙ୍କ କୁମର ।
ଦୁଷ୍ମନ୍ତ ବୋଲିକରିଣ ଯାଙ୍କ ପୁତ୍ର ଜାଣ
ଏଥିଉତ୍ତାରୁ କହୁଛି ମନଦେଇ ଶୁଣ ।
ଦୁଷ୍ମନ୍ତଙ୍କର ହୋଇଲା ସୁତ ନାମେ ସୂନୁ
ଭରତ ନନ୍ଦନ ହେଲା ନାମ ଯେ ଭୂମନ୍ୟୁ ।
ଭୂମନ୍ୟୁ ନନ୍ଦନ ନାମ ବରଥ ପ୍ରତ୍ୟକ୍ଷ
ବରଥ ନନ୍ଦନ ହେଲା ନୃପତି ବଭୂଷ ।
ବଭୂଷ ନନ୍ଦନ ନାମ ଶମ୍ଭୁ ନୃପଗଣ
କୁରୁନାଥ ବୋଲିକରି ଯାଙ୍କ ସୁତ ଜାଣ ।
କୁରୁନାଥ ନନ୍ଦନ ନୃପତି ଯେ ପାର୍ଥିକ
ତାର ନନ୍ଦନ ଶାନ୍ତନୁ ନାମେ ସହଦେବ ।
ତା ପୁତ୍ର ଚିତ୍ର ବିଚିତ୍ରବୀର୍ଯ୍ୟ ଦୁଇଭାଇ
ଗଙ୍ଗାଶାପରେ ମରିଲେ ଅପୁତ୍ରିକ ହୋଇ ।
ପରାଶରଙ୍କ ଭାରିଯା ନାମ ସତ୍ୟବତୀ
ଏହାଙ୍କର ନନ୍ଦନ ଯେ ବ୍ୟାସ ମହାଯତି ।
ଏହାଙ୍କ ନନ୍ଦନ ହେଲେ ପଣ୍ଡୁ ଧୃତରାଷ୍ଟ୍ର
ପଣ୍ଡୁ ନନ୍ଦନଙ୍କ ପୁତ୍ର ଯୁଧିଷ୍ଠିର ଶ୍ରେଷ୍ଠ ।
ରାଜସୂୟ ଯାଗ ସେହୁ କରିବା ନିମନ୍ତେ
ମୁଁ ଆସେ ପଶ୍ଚିମ ରଜା ନିମନ୍ତ୍ରଣ ଅର୍ଥେ ।
ସମସ୍ତ ନୃପତିଙ୍କି ମୁଁ ଆଣିଲଇଁ ସାଧି
ପୃଥିବୀ ମଧ୍ୟରେ ମୋର ସମ ନାହିଁ ଯୋଦ୍ଧି ।
ଜରାସନ୍ଧକୁ ମାରିଲି ମାଲବନ୍ଧେ ହେଳେ
ତୋତେ ହାରିଲି ଏଠାରେ ମୋର କର୍ମବଳେ
ମୃଗସେନ ବୋଇଲା ତୁ ଯେବେ ବ୍ୟାସବଂଶୀ
ଦେଖ ଲିପିକରି ସୁର ବ୍ୟାସ ମହାଋଷ ।
ରଜାର ବଚନେ ଭୀମ ଚିନ୍ତେ ହୃଦଗତେ
ତତକ୍ଷଣେ ବିଜୟ କଲେ ବ୍ୟାସ ତପୋବନ୍ତେ ।

ଦେଖିଲେ ଭୀମସେନର ଦୁଃସହ ଅବସ୍ଥା
ଗୁଡ଼ ଗୁଡ଼ ବୋଲି ଡାକ ଦେଲେ ବୃଦ୍ଧବେଶ
ନାଗରାଜାଙ୍କ ସଙ୍ଗରେ ଥିଲେ ବ୍ୟାସଋଷି
ଭୀମସେନ ସ୍ମରିନ୍ତେ ହଜେକଲେ ଆସି ।
ବ୍ୟାସଙ୍କୁ ଦେଖିଣ ମୃଗସେନ ପରଣାମି
ନ ଗୁଡ଼ିବ ମୁଁ ଏହାଙ୍କୁ ମାରିବଇଁ ସ୍ୱାମି ।
ବ୍ୟାସ ବୋଇଲେ ନ ଗୁଡ଼ୁ କପାଇଁ ବହନ
ଆମ୍ଭର ନାତି ଏ ତୋର ଭାଇର ନନ୍ଦନ ।
ତୁମ୍ଭ ଆମ୍ଭର ନନ୍ଦନ ଏ ତୋହର ସୁତ
ସହୋଦର ସୁତକୁ ତୁ ମାରୁନ୍ତୁ କେମନ୍ତ ।
ବ୍ୟାସଙ୍କ ବଚନ ଶୁଣି ଗୁଡ଼େ ତତ୍କ୍ଷଣାନ୍ତ
କୋଳେ ବସାଇଲେ ଋଷି ପୁତ୍ର ଆଜ ନାତି ।
ମୃଗସେନକୁ ସମାର୍ଜି କହି ବ୍ରହ୍ମସୁତ
ଭୀମସେନ ସମର୍ପିଲେ ମୃଗସେନ ହାତ ।
ସହୋଦର ସୁତ ଦେଖି ହୃଷ୍ଟ ମୃଗସେନ
ଭୀମସେନକୁ କୋଳରେ ବସାଏ ବହନ ।
ଗତ ପୁରାଣର ବାକ୍ୟ କହିଲେ ଯେ ଯତି
ଭୀମକୁ ଭଷିଲେ ମୃଗସେନର ଉତ୍ପତ୍ତି ।
ବହୁ କାଳର ବାରତା କହିଲେ ସାନନ୍ଦେ
ଭୀମସେନ ଶୁଣିଲେ ଯେ ମନର ଆନନ୍ଦେ ।
ମୃଗସେନ ବୋଲଇଣ ଯେଉଁ ମହାବୀର
ଏହା କହି କୃଷ୍ଣ ହେଲେ ଶତ ଅବତାର ।
ଅନେକ ଯୋଗାଡ଼ ତହିଁ କରେ ମୃଗସେନ
ସାନନ୍ଦ ମନରେ ଭୀମ କରିଲ ଭୋଜନ ।
ନିମନ୍ତ୍ରଣର ଯୋଗାଡ଼ ଦେଲେକ ପାବନ
ହୋଇଲ ହସ୍ତିନା ହଜେକର ସୈନ୍ୟ ସେନ
ପାଣ୍ଡବ ସକଳ ସୈନ୍ୟ ମୋହେ ପଡ଼ିଥିଲେ
ବ୍ୟାସଙ୍କର ସିଦ୍ଧ ବାକ୍ୟେ ଚେତନା ପାଇଲେ
ମୃଗସେନ ବୋଇଲା ମୋ ସୈନ୍ୟସଖା ନାହିଁ
ଏ ମେରୁମେଖଳେ ମୁହିଁ ଥାଏ ଏକାହୋଇ ।
ମୁହିଁ ନ ଜାଣଇ କିସ ରାତ୍ର ବା ଦିବସ
ମୁହିଁ ନ ଜାଣଇ ଯୁଗାନ୍ତରର ପ୍ରକାଶ ।
ଭୀମସେନ ବୋଇଲାକ ତୋ ଜୀବନ ଧନ୍ୟ
ତୋତେ ଭେଟିଲି ମୋହର ସାର୍ଥକ ଜୀବନ ।
ବ୍ୟାସ ବୋଇଲେ ତୁ ଭୀମ ଚଳ ବେଗହୋଇ
ନୃପତିମାନଙ୍କୁ ବେଗେ ନିଅ ତୁ କଢ଼ାଇ ।
ବନ୍ଧନରେ ଯେତେଯାଏ ସମସ୍ତ ରାଜାଙ୍କୁ
କଷ୍ଟ ନ କରିବୁ ନାହିଁ ଏହା ଉତ୍କଣ୍ଠରୁ ।
ତାହାର ଇଚ୍ଛାରେ ଯିବ ସେତୁ ଯଜ୍ଞସ୍ଥାନ
ଏହା କହି ବ୍ୟାସଗଲେ ହୋଇ ଅନ୍ତର୍ଦ୍ଧାନ ।
ମୃଗସେନ ପାଶେ ଯାଇ ପବନ ଦୁଲାଳ
ପୁନଃ ପୁନଃ ପ୍ରଣିପାତ ହେଲ ଘାତଚଳ ।
ତହୁଁ ପଶ୍ଚିମ ଦିଗକୁ ଆସିଲ ବହନେ
ଯେ ଯାହାର ସୈନ୍ୟଘେନି ଗଲେ ରାଜାମାନେ
ବୈବସ୍ୱତ ମନୁ ପୃଚ୍ଛା କରିଲେ ପ୍ରସ୍ତାବେ
ମୃଗସେନର ଚରିତ କହ ମୋତେ ଏବେ ।
ଅଗସ୍ତି ବୋଇଲେ ଶୁଣ ଆହେ ନୃପବର
ମୃଗସେନର ବିଷୟ ଯେମନ୍ତ ପ୍ରକାର ।
ସୁରସିଦ୍ଧ ବୋଲଇର ଏକ ସତ୍ୟଯୁଗ
ଯୁବାକାଳେ ବ୍ୟାସ ହେଲେ ମୃଗୁଣୀର ସଙ୍ଗ
ମୃଗୁଣୀ ଗର୍ଭରେ ଯହୁଁ ଯତ ହେଲେ ରେତ
ଗୋଟିଏ କୁମର ତହୁଁ ହୋଇଲାକ ଜାତ ।
ମନୁଷ୍ୟ ଶରୀର ତାର ମୃଗମୁଣ୍ଡ ଗୋଟି
ଅମୃତ ଯୋଗରେ ଜାତକଲେ ତପୋନିଷ୍ଠି ।
ଅଭେଦର ବଜ୍ରସେହ୍ଲା ଦେଲେ ତାର ଅଙ୍ଗେ
ତ୍ରୈଲୋକ୍ୟ ରଣେ ଜିଣନ୍ତାନାହିଁ ତାରସଙ୍ଗେ
ଅନପେ ଅନପେ ତାକୁ ନିଅନ୍ତ କଢ଼ାଇ
ବଳାତ୍କାରେ ନେବାପାଇଁ କାର ସାଧ ନାହିଁ ।
ଏହିପରି ଆଜ୍ଞା ତାକୁ ଦେଲେ ବ୍ୟାସଋଷି
ଅକ୍ଷୁଣ୍ଣ ଶରୀର ତୋର ହେବ ଅବିନାଶୀ ।
ଅତି ପ୍ରୀତିସ୍ୱଭେ ତାକୁ ବ୍ୟାସ ମହାସତ
ଅମୃତ ଆଣି ତାହାକୁ ସେବନ କରାନ୍ତି ।
ତେଣୁକରି ତା ଶରୀର ଅକ୍ଷୁଣ୍ଣ ହୋଇଲ
ମହାବଳବନ୍ତ ହୋଇ ଯୁଗ ଭୋଗକଲ ।
ଜୟ ତୁ ମହାମାୟା ଗୋ ଅନାଦି ଶକତି
ହିମବନ୍ତର ନନ୍ଦନୀ ଅଭୟା ପାର୍ବତି ।
ମହାଯୋଗ ସାଧିନୀ ଗୋ ତୁମ୍ଭ ସର୍ବଭୂତା
ତୁ ମୋତେ ବାରେ ପ୍ରସନ୍ନ ହୁଅସି ଗୋ ମାତା
କ୍ଷଣକେ କାଳିକା କ୍ଷଣେ କାମରୂପୀ ଧରୁ
କ୍ଷଣକେ ଜଗତ ପାଳୁ କ୍ଷଣକେ ସଂହାରୁ ।
କଳିବର୍ପ ଧ୍ୱଂସିନୀ ଗୋ ନମସ୍ତେ କରାଳ
ଦୁଷ୍ଟଜନ ନାଶୁ ମାଗୋ ସନ୍ଥଜନ ପାଳ ।

ମହାଯୋଗ ସାଧନା ଗୋ ଅଟୁ ଯୋଗିନୀରୂପୀ
ବାଳାର୍କ ତେଜକୁ ଜିଣି ଅଟୁ ତୁ ସ୍ୱରୂପୀ ।
ମହାଯୋଗ ମନ୍ତ୍ର ତୁମ୍ଭ ତୁମ୍ଭ ଗୋ କାମାକ୍ଷୀ
ପ୍ରସନ୍ନା ଅପର୍ଣ୍ଣା ତୁମ୍ଭ ତୁମ୍ଭ ପିଙ୍ଗଳାକ୍ଷୀ ।
ଖଟ୍ୱାଙ୍ଗ ଡମ୍ବରୁ ଧରୁ ତ୍ରିଶୂଳ ଶକତି
ଖେଚର ବାହନେ ଭ୍ରମୁ ତୁମ୍ଭ ଦିବାରାତି ।
ଜଡ଼ା ମର୍ଦ୍ଦଳ ବାଜଇ କାହାଳି ଦାଉଣ୍ଡି
ମଧୁମତ୍ତ ହୋଇ ନାନା ନୃତ୍ୟରଙ୍ଗେ ମଣ୍ଡି ।
ପାତାଳେ ଚରଣ ମାଗୋ ଆକାଶେ ମସ୍ତକ
ପ୍ରଖର ନିଃଶ୍ୱାସେ ତୋର ବହଇ ପାବକ ।
ମନମଥ ସୁନ୍ଦର ଗୋ ପୃଥ୍ୱୀଜନ ଚିନ୍ତା
ପରଲୋକର ବାଞ୍ଛିତ ତୁମ୍ଭ ବରଦାତା ।
ତବ ଚରଣେ ଭକତି ମୋହର ସର୍ବଦା
ଜନ୍ମେ ଜନ୍ମେ ସେବାମୋର ଦେବଗୋ ଶାରଦା
ମଙ୍ଗଳମୟୀ ଅଭୟା ତୁ ସର୍ବବାସିନୀ
କାଳପାଶ ଫିଟିଯାଏ ଯେ କରେ ଦରଶନ ।
ପ୍ରସନ୍ନ ଦର୍ଶନେ ମାଗୋ ସର୍ବ ଦୁଃଖ ଖଣ୍ଡି
ଅଭୟବରଦାୟିନୀ ତୁହି ସିଦ୍ଧଚଣ୍ଡୀ ।
ତୋର ପଦ୍ମ ଚରଣରେ ନିରନ୍ତରେ ସେବା
ଶୂଦ୍ରମୁନି ଶାରଳାକୁ ଗତି ମୁକ୍ତି ଦେବା ।
ଇତି ଶ୍ରୀ ବିଷ୍ଣୁପୁରାଣ ସଭାପର୍ବ ବାଣୀ
ସଂସାର ଜନଙ୍କ ହିତେ ବିରଚିଲ ଆଣି ।
ପଣ୍ଡିତ ମନ୍ଦଗ କରଣ ସମାପତ ଏଥୁ
ସଂସାରକୁ ଦେଖାଇଲ ପ୍ରାଣୀ ମୁକ୍ତି ହେତୁ ।

---

## ଅର୍ଜ୍ଜୁନଙ୍କର ଦେବଲୋକ ନିମନ୍ତ୍ରଣେ ଗମନ, ଯମ ଦ୍ୱାରା ପାପ ଓ ତାହାର ପ୍ରାୟଶ୍ଚିତ୍ତ କଥନ, ଦ୍ୱାରକାରେ ନିମନ୍ତ୍ରଣ ଦେଇ ଯୁଧିଷ୍ଠିରଙ୍କ ସହିତ ସାକ୍ଷାତ

ଅଗସ୍ତିଙ୍କୁ ପଚାରିଲେ ବୈବସ୍ୱତ ମନୁ
ଉତ୍ତର ଦିଗ ସାଧିଲାଟିକ ଇନ୍ଦ୍ରସୂନୁ ।
ଆବର କେବଣ କୃତ୍ୟ କଲା ଧନଞ୍ଜୟ
ସେ କଥା ସଂକ୍ଷେପି କହ ମୁନି ମହାଶୟ ।
ବଦନ୍ତି ଅଗସ୍ତି କୁମ୍ଭଋଷିଙ୍କର ବଳା
ଶୁଣ ଯୁଗାନ୍ତ ପୁରୁଷ ମନୁ ମତିହୀନା ।
ପାର୍ଥ ଉତ୍ତରେ ସ୍ୱଳକ୍ଷସସ୍ର ରଜା ସାଧି
ଜମାଗୋଷ୍ଠିକୁ ଆପଣା ରଥେ ଅଛୁ ବାନ୍ଧି ।
ମାତଳି ସାରଥିକି ଯେ ବୋଇଲେ ଅର୍ଜ୍ଜୁନ
ଆକାଶକୁ ରଥ ମୋର ବାହ ହେ ବହନ ।
ଇନ୍ଦ୍ରକୁ ମୁଁ ନିମନ୍ତ୍ରଣ ଦେବି ଯାଇ ସ୍ୱର୍ଗେ
ଅମର ସ୍ୱର୍ଗକୁ ମୋର ରଥ ବାହା ବେଗେ ।
ହେମ ପ୍ରଦେଶ ରଜାଏ ସଙ୍ଗେ ରହିଥିଲେ
ସେମାନଙ୍କୁ ଡାକି ପାର୍ଥ ଆଦେଶ କରିଲେ ।
ତୁମ୍ଭେମାନେ ଚଳିଯାଅ ଇନ୍ଦ୍ରପ୍ରସ୍ଥ ପୁରେ
ମୋ ସୈନ୍ୟଙ୍କୁ ଘେନିଯାଅ ତୁମ୍ଭର ସଙ୍ଗରେ
ମୁଁ ଯାଉଛି ଦେବତାଙ୍କୁ ନିମନ୍ତ୍ରଣ କରି
ତାହା ଶୁଣି ରଜାମାନେ ପ୍ରଣିପାତ କରି ।
ବୋଇଲେ ଯେ ରଜାମାନେ କରପଦ୍ମ ଯୋଡ଼ି
ଜମାଗୋଷ୍ଠ ଆମ୍ଭ ସଙ୍ଗେ ଦିଅ ଦେବ ଛାଡ଼ି ।
ଏହାଙ୍କୁ ଯେ ଆମ୍ଭେମାନେ ସଙ୍ଗେ ଘେନିଯିବୁ
ରଜୁସି ଯଜ୍ଞେ ଦର୍ଶନ ନେଇ କରାଇବୁଁ ।
ପାର୍ଥ ବୋଇଲେ ନ ବୋଲ କିଛି ଏହାପାଇଁ
ଅଶ୍ୱବ ନୃପତି ଯ୍ୱାକୁ ଟିକେ ଦୟାନାହିଁ ।
ଅବଶ୍ୟ ବନ୍ଧନ କରି ନେବି ମୁଁ ସଭାକୁ
ସ୍ୱର୍ଗ ମର୍ତ୍ତ୍ୟବାସୀମାନେ ଦେଖିବେ ଏହାକୁ ।
ଅନେକ କଠୋର କରି କହିଲେ ଅର୍ଜ୍ଜୁନ
ପାଷାଣର ରେଖାପ୍ରାୟେ ମୋହର ବଚନ !
ତହୁଁ ରଜାମାନେ ଗଲେ ଆଜ୍ଞାକୁ ଚଳାଇ
ମାତଳି ସାରଥି ସ୍ୱର୍ଗେ ରଥ ଦେଲା ବାହି ।
ଅନ୍ତରୀକ୍ଷରେ ଦେଖିଲା ଦିନକର ସ୍ୱାମି
ତାଙ୍କୁ ଦେଖି ଧନଞ୍ଜୟ ହେଲା ପରଣାମି ।
ଜୟ ଜୟ ଦିନନାଥ ଆର୍ତ୍ତି ନିବାରଣ
ତୁମ୍ଭ ଛାୟାନାଥ ଦେବ ତିମିର ହରଣ ।
ତୁ ଦେବ ଗଗନ ମଧ୍ୟେ ପ୍ରତ୍ୟକ୍ଷେ ସ୍ୱରୂପୀ
ସଂସାର ବଲ୍ଲଭ ନାଥ ତ୍ରିଜଗତ ବ୍ୟାପୀ ।
ସୁଞ୍ଜନ ଚିନ୍ତାମଣି ଶୂନ୍ୟରେ ତୁ ଭ୍ରମୁ
ପ୍ରାତଃ ଆହ୍ନିକ ନାଥ ସବୁ ତୋର ଛାମୁ ।
ଦିବସ ରଜନୀ ଆଦି ସବୁ ତୋହ ଜନ୍ମ
ମୋହର ଦେଖନ୍ତେ ନାଥ ସବୁ ନାଶଗଲା ।
ଅପାର ମହିମା ନାଥ ନ ସରେ କହନ୍ତେ
ପ୍ରଣାମ କରଇ ପାର୍ଥ ସୂର୍ଯ୍ୟ ପାଦତଳେ ।

ସ୍ୱାମି ପ୍ରସନ୍ନରେ ବର ଦେଲେ ପୂର୍ବେ ବିଧି
ଯାଅ ଯା ଅର୍ଜୁନ ତୋର କାର୍ଯ୍ୟ ହେଉସିଦ୍ଧି ।
ଅର୍ଜୁନ ବୋଇଲା ସଜ୍ଜ କରିବା ନିମନ୍ତେ
ସ୍ୱାମି ତୁମ୍ଭଙ୍କୁ ବରଣ କରୁଅଛୁ ଏଥେ ।
ପ୍ରସନ୍ନରେ ବର ଦେଲେ ସ୍ୱାମୀ ଦେବରାଜା
ସର୍ବକାର୍ଯ୍ୟ ସିଦ୍ଧି ହେଉ ଏବେ ତୁମ୍ଭ ଯାଯା ।
ସୂର୍ଯ୍ୟ ସ୍ୱାମିଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି
ଚଳଇ ଅର୍ଜୁନ ରଥ ତହିଁ ଆଗକରି ।
ଅନ୍ୟ ପୁରୁଷମାନଙ୍କୁ କରି ନିମନ୍ତ୍ରଣ
ବିଶ୍ୱେଦେବା ସନକାଦି କରି ତୁ ବରଣ ।
ପିତୃଲୋକ ଧ୍ରୁବଲୋକ ଗ୍ରହଆଦି କରି
ଚନ୍ଦ୍ରଦେବତାଙ୍କୁ ତହିଁ ଭେଟେ ଯାଇକରି ।
ନିମନ୍ତ୍ରଣର ଯୋଗାଡ଼ ଶୀଘ୍ରମନେ ଦେଇ
ଅର୍ଜୁନ ଶୁକଳ ତହୁଁ ପ୍ରଣିପାତ ହୋଇ ।
ଅନେକ ବିନୟ ଭାବେ ତାଙ୍କୁ କଲା ସ୍ତୁତି
ପ୍ରସନ୍ନେ ସମସ୍ୟା ଦେଲେ ତାଙ୍କୁ ନିଶାପତି ।
ବଦନ୍ତି ଶଶଧର ତୁ ଶୁଣ ଫାଲଗୁନ
ନିମନ୍ତ୍ରଣ କରି ଯାଇ ଦେବ ସହ୍ର ଯୋଜ ।
ତୁମ୍ଭେ ଆମ୍ଭର ବଂଶରୁ ହୋଇ ଜନମିଲି
ପୃଥିବୀ ଭାର ହରଣେ ତୋର ତହିଁ ସ୍ଥିତି ।
ବାବୁ ହେ କାହିଁ କରିଛ ଥାଇ ମର୍ତ୍ତ୍ୟସ୍ୱର୍ଗେ
ମୋ ବଂଶରେ ସାଧି ସାଧୁ ହେଲେ ପୁଣ୍ୟମାର୍ଗେ
ଦେବତାଙ୍କୁ ନିମନ୍ତ୍ରଣ କରି ଫାଲଗୁନ
ଆମ୍ଭେ ଯାଉଛୁ ସଭାକୁ ଗ୍ରହଗଣ ଘେନ ।
ଶଶଧରଙ୍କୁ ନମନ୍ତି ବୀର ଧନଞ୍ଜୟ
ଅଳକା ଭୁବନେ ଯାଇ କରିଲା ବିଜୟ ।
କୁବେର ଭୁବନେ ଦେଖେ କାର୍ଯ୍ୟର ଗହଳ
ବିଶ୍ୱକର୍ମା ଲାଗିପଡ଼ି ଗଢ଼ନ୍ତି ସକଳ ।
ରତ୍ନ ଯୋଗାଡ଼ ନିର୍ମାଣ କରୁଛନ୍ତି ବେଗ
ପ୍ରବେଶିଲା ସବ୍ୟସାଚୀ କୁବେରଙ୍କ ଆଗ ।
ନିମନ୍ତ୍ରଣର ଯୋଗାଡ଼ ଥୋଇ ଫାଲଗୁନ
କୁବେରଙ୍କୁ କରିଲା ସେ ଅନେକ ଭଇମା ।
ଅଳକା ନାଥ ପାର୍ଥଙ୍କୁ ସ୍ନେହେ କୋଳେ ଧରି
ସର୍ବ ବାରତା ପୁଚ୍ଛନ୍ତି ଆଶ୍ୱାସନା କରି ।
ଅର୍ଜୁନ ବୋଇଲା ସ୍ୱାମୀ ରାଜସୂୟେ ଯିବା
ବୃନ୍ଦାର୍କ ମେଳରେ ଷୋଳ ଦିବସ ରହିବା ।

କୁବେର ବୋଇଲେ ତାଙ୍କୁ ଦେଖି ଫାଲଗୁନ
ଲାଗିଛୁ ପଦ୍ମେ ଜାଣି ବିଜୟ ଭଜନା ।
ଶ୍ରୀ ଶ୍ରୀ ନାରାୟଣ ଆଜ୍ଞା କରିଛନ୍ତି ମୋତେ
ରତ୍ନ ଘଂଟଣା ଯାଗରେ ଲାଗିବାକ ଯେତେ ।
ସେଥି ସମସ୍ତ ପଦାର୍ଥ କରୁଛି ନିର୍ମାଣ
ଦୃଢ଼ଭାବେ ଆଜ୍ଞା ଯାହା ଦେଲେ ନାରାୟଣ ।
କୁବେର ବଚନ ଶୁଣି ପାଣ୍ଡବ ଅର୍ଜୁନ
ପ୍ରତ୍ୟକ୍ଷେ ଦେଖିଲେ ଯାଇ ସେ ଘଂଟଣାମାନ
ଦେଖି ଫାଲଗୁନ ମନେ ପରମ ସାନନ୍ଦ
ପରମ ସନ୍ତୋଷେ ବୋଲେ ହୋଇ ଗଦଗଦ
ତୁ ଦେବ ଜଗମୋହନ ସର୍ବ ଅଧିକାରୀ
ତୋ ପ୍ରସାଦେ ଆମ୍ଭେମାନେ ଉଦେ ବସୁନ୍ଧରୀ
ଯେତେକ ପ୍ରତାପୀ ହୋଇଣ ଥିଲେ ରାଜାମାନେ
ସେମାନଙ୍କୁ ଜୟ କଲୁ ତୋହର ପ୍ରସନ୍ନେ ।
ତୁ ପିତା ଆମ୍ଭମାନଙ୍କ ସର୍ବଦା ସପକ୍ଷ
ତୋ ପ୍ରସାଦେ ଆମ୍ଭେମାନେ ସର୍ବପୁରେ ଦକ୍ଷ
ଅନେକ କାର୍ପଣ୍ୟ ହୋଇ ବୀର ଫାଲଗୁନ
ଜଗନ୍ନାଥ ନାମ ଧରି କରଇ ବଇମା ।
କୁବେରଙ୍କୁ ନମନ୍ତିଣ ସୁଭଦ୍ରାର ନାହା
ମାତଳିକ ଆଜ୍ଞାକଲା ରଥ ମୋର ବାହା ।
ଚଳିଗଲେ ତୁରଙ୍ଗମ ପବନୁ ତୁରିତ
ଅମର ଭୁବନେ ବିଜେ ବାସବର ସୁତ ।
ଆକାଶେ ଦେବ ସଭାରେ ବିଜେ ସହସ୍ରାକ୍ଷ
ଆସ୍ଥାନ ତଳରେ ଉଭା ହୋଇଲା ବିବସ୍ତ୍ର ।
ଦେଖି ସାନନ୍ଦ ହୋଇଲେ ଅମରାଧି ସ୍ୱାମୀ
ପୁଣି ପୁଣି ଅର୍ଜୁନ ସେ ତୁଏ ପରଣାମି ।
ଅନେକ ହରଷେ ହୋଇ ଦେବ ଆଖଣ୍ଡଳ
ଅର୍ଜୁନଙ୍କୁ ଘେନିଯାଇ ବସାଇଲେ କୋଳ ।
ଅନେକ ଯେ ଆଦରଣ କରି ବୀର ପାର୍ଥେ
ପଚାରଇ ସୁରନାଥ ବହୁ ପୁରୁଷାର୍ଥେ ।
ରମ୍ଭା ଉର୍ବଶୀ ମେନକା ପୁଣି ଚିତ୍ରଲେଖା
କାମସେଣା ମଦନିକା ଆବର ଅମ୍ବିକା ।
ଏହାଙ୍କ ତୁଲେ ଚୌଷଠି ବିଦ୍ୟାଧରୀ ନାରୀ
ଖଟନ୍ତି ଅତି ହରଷେ ସେ ସର୍ବସୁନ୍ଦରୀ ।
ତାଳ ଲୟେ ପଦଘାଟ ରାଗିଣୀ ରଚନ୍ତି
ମୋହିନୀ ବେଶେ ତାଣ୍ଡବ ନୃତ୍ୟରେ ଖଟନ୍ତି ।

ବାସବ କୋଳେ ତନୟ କରନ୍ତି ଅର୍ଜୁନ
ପୁତ୍ରକୁ ଦେଖି ଆନନ୍ଦ କରୁଥାନ୍ତି ମନ ।
ନୃତ୍ୟଅନ୍ତେ ଷଡ଼ରସେ ଭୋଜନ କରାଇ
ଅର୍ଜୁନଙ୍କୁ ତୃପ୍ତ କଲେ ତହିଁ ସୁରସାଇଁ ।
ସୁବର୍ଣ୍ଣର ଥାଳରେ ଯେ ଅର୍ଘ୍ୟମାନ ଘେନି
ଅର୍ଜୁନଙ୍କୁ ବନ୍ଦାପନା କଲେ ସସ୍ତ୍ରଯୋନି ।
ଅର୍ଘ୍ୟ ଘେନି ବନ୍ଦାଇଲେ ସେ ବାରବନିତା
ବୋଇଲେ ପାର୍ଥ ଧନ୍ୟ ତୋ ଗର୍ଭଧାରୀ ମାତା
ଏହି ପୁରନ୍ଦରଙ୍କର ଯେ ଅଟେ ଶିରୋମଣି
କୋଳେ ବସାଇଲେ ଆଣି ବିଶ୍ୱଇନ୍ଦ୍ର ଜାଣି ।
ଧନ୍ୟ ଧନ୍ୟ ତୁମ୍ଭ ବୀର ଜୀବନହିଁ ସାଧୁ
ସହସ୍ର ଯାବତେ ଲକ୍ଷ୍ମୀ ନ ଛାଡ଼ିବେ ବନ୍ଧୁ ।
ବହୁତ ପ୍ରଶଂସା କଲେ ସ୍ୱର୍ଗର ଯୁବତୀ
ଯେତେ ଦେଖନ୍ତି ପାର୍ଥଙ୍କୁ ନୁହନ୍ତି ଅତୃପ୍ତି ।
ହସ୍ତିରଲେ ଶିବ କଲେ କନ୍ଦର୍ପ ଦହନ
ସ୍ୱରୂପ ହୋଇ ଏ କହ୍ନୁ ହେଲେ ଉତପନ୍ନ ।
ଦେବାଙ୍ଗ ଇନ୍ଦ୍ର ତୋତେ ଦେଖିବାକୁ ଇଚ୍ଛା
ଆମ୍ଭମାନଙ୍କ କଲ୍ପିଲ ହୁଅ ପୂର୍ଣ୍ଣ ବାଞ୍ଛା ।
ପୁନଃପୁନ ଏହିପରି କଥାମାନ କହିଲେ
ବହୁତ ଅସାଧ୍ୟମରେ ନ ଛାଡ଼ିଲେ ଘୁଲି ।
କଷ୍ଟେ କଷ୍ଟେ ଗୁଲଗଲେ ଆପଣାର ବାସେ
ଅନୁସ୍ୱାତେ ଖେଳିଲେ ସେ ଭଜନୀ ଦିବସେ ।
ଅର୍ଜୁନେ ପୃଚ୍ଛି ବୋଲନ୍ତି ଦେବ ସୁରନାଥେ
ବାବୁ ତେ ପାର୍ଥ ଅଇଲୁ ତୁ କେବଣ ଅର୍ଥେ ।
ଶୁଣି ଅର୍ଜୁନ ବୋଇଲେ ଦେବଙ୍କର ଯେ ହି
ରାଜସୂୟ ଯାଗ ନିମନ୍ତେ ଆସେ ପ୍ରଭୁ ଲୋଡ଼ି ।
ଉତ୍ତର ଦିଗର ରଜା କରି ନିମନ୍ତ୍ରଣ
ବିଦ୍ୟାଧର ଘେନି ବେଗେ କରନ୍ତୁ ଆପଣ ।
ଇନ୍ଦ୍ର ବୋଇଲେ ତୁ ଶୁଣ ଆରେ ଧନଞ୍ଜୟ
ମୋତେ ଆଜ୍ଞା କରଛନ୍ତି ପ୍ରଭୁ ଦେବରାୟ ।
ନନ୍ଦନ ବନରେ ଅଛି ଯେତେ ପକ୍ୱଫଳ
ନାବରେ ନେଇଣ ଦେବୁ ଇନ୍ଦ୍ରପ୍ରସ୍ଥ ସ୍ଥଳ ।
ବାବୁ ନାବ ପୂର୍ଣ୍ଣ କଲା ମୁଁ ପଞ୍ଚାଶ ଖଣ୍ଡ
କଦଳୀ କଣ୍ଟକୀ ଆମ୍ବ ନଡ଼ିଆ ସବ ।
ପୂରମାସ ହେଲା ବୋହି ନେଉଛି ହସ୍ତିନା
ଆଜେ ସେ ଯାଗ ଭିତ୍ୟର ଭିତ୍ୟ ଅଟୁ ସିନା

ଅଷ୍ଟଚ ନିମନ୍ତ୍ରଣ ଯେ ଦେଲେ ସବ୍ୟସାଚୀ
ତୁମ୍ଭେ ସର୍ବ ଦେବଙ୍କ ଯେ ଯେଉଁଠି ଅଛି ।
ସ୍ୱାମି ଏବେ ଯିବ ମୁହିଁ ବ୍ରହ୍ମା ଭୁବନକୁ
ନିମନ୍ତ୍ରଣ କରିବ ମୁଁ ସେ ପିତାମହଙ୍କୁ ।
ଶୁଣି ସନ୍ତୋଷ ହୋଇଲେ ଦେବ ମଘବାନ
ପ୍ରସନ୍ନ ହୋଇଣ ଦେଲେ ପୁଷ୍ପକ ବିମାନ ।
ଏଥେ ବସି ଯେ ଭୁବନେ କରିବୁ ତୁ ଇଚ୍ଛା
ସେହିକ୍ଷଣି ଭେଟିବୁ ତୁ ଯହିଁକି ତୋ ବାଞ୍ଛା ।
ସୁରନାଥଙ୍କ ବଚନ ଶୁଣି ସବ୍ୟସାଚୀ
ବିମାନରେ ବସି ଯଶୋବନ୍ତୀ ପୁର ଲଚ୍ଛି ।
ଅର୍ଜୁନ ଆଜ୍ଞାଦେଲେକ ତହିଁ ମାତଳିକି
ଜମାରୋଷ୍ଟକୁ ମୋ ରଥେ ଥାଅ ତୁମ୍ଭେ ରଖି
ଏହା କହି ଚନ୍ଦ୍ରଲେକ ବିମାନରେ ବସି
ବ୍ରହ୍ମଙ୍କର ପୁରେ ପାର୍ଥ ବେଗେ କଲେ ଆସି ।
ଅର୍ଜୁନଙ୍କୁ ଦେଖି ପୁରରକ୍ଷାକାରୀ ସର୍ବେ
କୋପଭରେ ଓଗାଳିଲେ ସକଳ ଗନ୍ଧର୍ବେ ।
ବୋଇଲେ କଏରେ ମାନବ ଦିଗପାଳ ନୋହି
ବ୍ରହ୍ମାପୁରେ ପଶୁଅଛି କି ସାହସୀ ହୋଇ ।
ପାର୍ଥ ବୋଇଲେ ବାସବ ସୁତ ମୁଁ ଅର୍ଜୁନ
ତୁମ୍ଭେମାନେ ବିଦ୍ୟାଧର ମୋତେ କି ନଚିହ୍ନ
ପିତାଙ୍କୁ ମୁଁ ନିମନ୍ତ୍ରିବ ରାଜସୂୟ ଅର୍ଥେ
ମୋତେ ପେଷିଲେ ଯୁଧିଷ୍ଠି ଦେବ ମର୍ତ୍ତ୍ୟପତେ
ତାହା ଶୁଣି ବୋଇଲେକ କ୍ଷଣେକ ବିଶ୍ରାମ
କରାଇଦେବୁ ପାର୍ଥଙ୍କ ହେବ ତୋର ଧର୍ମ ।
ଏମନ୍ତ କାଳରେ ତହିଁ ବଶିଷ୍ଠ ମହର୍ଷି
ଧନଞ୍ଜୟର ନିକଟେ ମିଳଗଲେ ଆସି ।
ପାର୍ଥ ନମସ୍କାର କଲେ ବଶିଷ୍ଠଙ୍କୁ ଦେଖି
ବଶିଷ୍ଠ ଚକିତ ହେଲେ ଅର୍ଜୁନେ ନିରେଖି ।
ଅର୍ଜୁନଙ୍କୁ ଘେନିଯାଇ ବଶିଷ୍ଠ ମହର୍ଷି
ପ୍ରଣିପାତ କରାଇଲେ ବ୍ରହ୍ମାପାଦେ ଆସି ।
ଅର୍ଜୁନଙ୍କୁ ଦେଖି ଧାତା କଣ୍ଠରେ ହସି
ମଉନଭାବେ ରହିଲେ କହନ୍ତି ନ ଭାଷି ।
ଅର୍ଜୁନ ଶତସହସ୍ର ପ୍ରଣିପାତ ହୋଇ
ମସ୍ତକେ କରି ନିବେଶି ସ୍ତୁତି ସେ କରଇ ।
ଦେବ ଦେବ ପିତାମହ ଜଗତର ପିତା
ଦେବ ଦେବ ପିତାମହ ତୁ ସକଳ କର୍ତ୍ତା ।

ଦେବଦେବ ପିତାମହ ସକଳ ଋତଜ
ଦେବଦେବ ପିତାମହ ସମସ୍ତ ଜନକ ।
ଦେବଦେବ ପିତାମହ ଅଚେତରୁ ଜାତ
ଦେବଦେବ ପିତାମହ ସ୍ୱଲସ୍ୱେ ତୁ ସ୍ଥିତ ।
ଦେବଦେବ ପିତାମହ ନମୋ ପଦ୍ମଯୋନି
ଦେବଦେବ ପିତାମହ ଭୁବନ ନିର୍ମାଣି ।
ଦେବଦେବ ପିତାମହ ଶୁଦ୍ଧ ତୁ ଦେବତା
ଦେବଦେବ ପିତାମହ ତୁହି ସର୍ବ ଜ୍ଞାତା ।
ଦେବଦେବ ପିତାମହ ଚତୁର ଆନନ
ଦେବଦେବ ପିତାମହ ହଂସ ତୋ ବାହନ ।
ଦେବଦେବ ପିତାମହ ବାପ ପଶୋବନ୍ତୀ
ଦେବଦେବ ପିତାମହ ଅଟୁ ତୁ ବହନ୍ତ ।
ଦେବଦେବ ପିତାମହ ଧାତୁ ବାଦ୍ୟବନ୍ଧୁ
ଦେବଦେବ ପିତାମହ ତାରୁ ଭବସିନ୍ଧୁ ।
ଦେବଦେବ ପିତାମହ ତୁ ଅନଙ୍ଗ ଭଞ୍ଜା
ଦେବଦେବ ପିତାମହ ବ୍ରହ୍ମଦୈତ୍ୟ ଗଞ୍ଜା ।।
ଦେବଦେବ ପିତାମହ ସ୍ୱଭୂଜ ମେରୁ
ଦେବଦେବ ପିତାମହ ବକ୍ଷେ ବେଦ ଧରୁ ।
ଦେବଦେବ ପିତାମହ ଶୂନ୍ୟେ ତୋ ଆସନ
ଦେବଦେବ ପିତାମହ ଜାତ ଅବସାନ ।
ଦେବଦେବ ପିତାମହ ବୋଧ ବ୍ରହ୍ମଜ୍ଞାନ
ଚତୁର୍ମୁଖେ ସଦା ମଗ୍ନ ବେଦ ଅଧ୍ୟୟନ ।
ଦେବଦେବ ପିତାମହ ତୋ ଦେହ ଅକାମ
ଦେବଦେବ ପିତାମହ ପିତା ତୋର ନାମ ।
ଦେବଦେବ ପିତାମହ ପ୍ରଭୁ ପଦ୍ମଯୋନି
ସେ ପାଦେ ସେବା ଶାରଳା ଦାସ ଶୂଦ୍ରମୁନି ।
ଅନେକ ପ୍ରାର୍ଥନା କରି ବୀର ଫାଲ୍‌ଗୁନି
ପୁଣ ପୁଣ ପାଦେ ପଡ଼ି କରିଲେ ବହିନ୍ତି ।
ଅର୍ଜୁନର ସ୍ତୁତିବାକ୍ୟ ଶୁଣି ଦେବବର
ବୋଲନ୍ତି କାମନା ତୋର ପୂର୍ଣ୍ଣହେଉ ବୀର ।
ଏ ତୋହର ଜୀବନରେ କଲୁ ଯେଉଁ କୃତ୍ୟ
ନର ହୋଇ ସ୍ୱରପୁରେ ଅଛୁ କେ ଏମନ୍ତ ।
ଜଗତ ମୋହନ ନାଥ ଯାହାକୁ ସପକ୍ଷ
ମାୟାରେ ଭୁଆଇଛନ୍ତି ସକଳ ଶୀବକ୍ଷ ।
ଆନନ୍ଦ ହୋଇ କହନ୍ତି ଦେବ ପଦ୍ମଯୋନି
ମଞ୍ଚେ ଜନ୍ମିବାର ତୋର ସାଧୁ ଫାଲ୍‌ଗୁନି ।

ତନ ପାର୍ଥ ଆକାଶରେ ଅନ୍ୟ ନିମନ୍ତ୍ରଣେ
ଆମ୍ଭେ ଯାଉଅଛୁ ଏବେ ବୃନ୍ଦାରକଗହଣେ ।
ତହୁଁ ଗ୍ରାମ୍ୟରେ ପାଦାର୍ଘ୍ୟଦେଇ ଧନଞ୍ଜୟେ
ପୁଣି ପୁଣି ଶତ ଶତ ପ୍ରଣିପାତ ହୁଏ ।
ଉଠ ଉଠ ବୋଲି ଧାତା ବୋଇଲେ ତତ୍ତ୍ୱତ
ତହୁଁ ପାର୍ଥ ନିମନ୍ତ୍ରିଲେ ତହିଁ ସର୍ବ ଯତି ।
ବଶିଷ୍ଠ ବାମଦେବ ଯେ ପୌଲସ୍ତ୍ୟ ଅଗସ୍ତି
ବାଲ୍ମୀକ ମାର୍କଣ୍ଡ ଦୁର୍ବାସାଦ୍ୟ ଯତି ।
ସମସ୍ତଙ୍କୁ ନିମନ୍ତ୍ରଣ କଲା ପିତା ଅର୍ଥେ
ବୋଲେ ଯାଗେ ମିଳ ବାଲଖିଲ୍ୟାଙ୍କ ସହିତେ
ସମସ୍ତେ ସମ୍ମତ ହେଲେ ପାର୍ଥକଥା ଶୁଣି
ବ୍ରହ୍ମାଙ୍କ ସଦନୁ ଫେରେ ତହୁଁ ସେହିକ୍ଷଣି ।
ବାହୁଡ଼ି ଆସଇ ପୁଣି ବାସବ ଭବନ
ତାହାଙ୍କୁ ଦେଖି ମଘବା ହେଲେ ତୋଷମନ ।
ପିତାମହ ବୋଇଲେ ଯେ ନାରଦ ହକାରି
ଅର୍ଜୁନ ଆସେ ଆକାଶେ ବଗବଜେ କରି ।
ତେତିଶକୋଟି ଦେବତାମାନଙ୍କ ବରଣେ
ସଂଯମନୀ ପୁରକୁ ଯେ ମିଳ ଏହିକ୍ଷଣେ ।
ପଣ୍ଡୁର ଅବସ୍ଥା ଦେଖି ବୀର ଧନଞ୍ଜୟ
ପିତା କଷ୍ଟରେ ଯମକୁ ଦଣ୍ଡିବ ନିଶ୍ଚୟ ।
ଏହି ତ୍ରୈଲୋକ୍ୟ ମଧ୍ୟରେ ପାର୍ଥ ମହାଯୋଧି
ସେହି କୋପ କଲେ କେହି ନ ପାରିବ ରୋଧି
ତୁ ହେ ନାରଦ ଯମକୁ କହ ଯାଇ ବେଗ
ପଣ୍ଡୁକୁ ଆସ୍ଥାନେ ନେଇ କରଣ ସମ୍ଭୋଗ ।
ବହୁ ଉପହାର ନାନା ଅଲଙ୍କାର ଦେଇ
ପଣ୍ଡୁ ରାଜାର ସମ୍ମୁଖରେ ଥାଇ ଉଚ୍ଚ ହୋଇ ।
ପିତା ପୌରୁଷେ ଯଥକୁ କରିବ ସେ ସ୍ନେହ
ଏମନ୍ତ ଚରିତ ଯାଇ ଯମ ଆଗେ କହ ।
ପିତାର ବଚନ ଶୁଣି ଚଳେ ତପୋନିଷ୍ଠି
ସଂଯମନୀ ପୁରେ ଯମ ସହିତରେ ଭେଟି ।
ବ୍ରହ୍ମାଙ୍କ ବାର୍ତ୍ତା ସକଳ କହେ ତା ଆଗରେ
ଶୁଣିକରି ନାଶକରି ଆସଇ ବେଗରେ ।
ପଣ୍ଡୁ ରାଜାଙ୍କୁ କରିଲା ପ୍ରଶଂସା ବହୁତ
ବୋଇଲେ ଧର୍ମେ ପାଞ୍ଚପୁତ୍ର କରିଥିଲୁ ଜାତ
ରାଜସୂୟ ଯଜ୍ଞ ଆରମ୍ଭ କରିଲେ ଯୁଧିଷ୍ଠି
ଖଣ୍ଡିଲୁ ତୁ ବ୍ରହ୍ମହତ୍ୟା ମେଣ୍ଟ ନ ଅରିଷ୍ଟି ।

ତୋର ମାତାପିତା ଧନ୍ୟ ଧନ୍ୟ ତୋ ଜୀବନ
ଶୁଭ ଅନୁକୂଳେ ଜାତ କଲେ ସନ୍ତାନ ।
ନ ଜାଣି ଅଜ୍ଞାନେ ସ୍ତ୍ରୀସଙ୍ଗେ ହୋନ୍ତି ରତ
ନିଜକୁ ଅମୀତ ପୁଣି ବଂଶ ହୁଏ ହତ ।
ନ ଜାଣି ମତ୍ତଗର୍ବରେ ହୋଇଥାନ୍ତି ବଣା
ଆପଣାର କଲା କର୍ମ ଯମକୁ ହୋଲଣା ।
ସୁଖରେ ତୁ ସ୍ୱର୍ଗ ଜାତ କରାଇଲୁ ପଣ୍ଡୁ
ଧର୍ମ ବୁଦ୍ଧିବଳେ ସ୍ୱର୍ଗେ ତୋ ଦୃଷ୍ଟେ ଖଣ୍ଡୁ ।
ଏହିରୂପରେ କହନ୍ତା କରି ନାରଦର
ପଣ୍ଡୁକୁ ବସାଏ ନେଇ ଭଣସ୍ତ ସତ୍ୱର ।
ଉପରେ ମଣ୍ଡିଲ ହୀରସୁଖା ପୁର ଜଣି
ନେତ ଚନ୍ଦ୍ରାତପେ ଝୁଲେ ନାନା ଶୁଦ୍ଧ ମଣି ।
ସ୍ଥମ୍ଭରେ ନୃତ୍ୟ ଗୀତାଦ୍ଧ କରନ୍ତି ବନିତା
ଖଟନ୍ତି ଯେ ଚଳାସିମା ତାଣ୍ଡବ ସଙ୍ଗୀତା ।
ଏମନ୍ତ କାଳରେ ବୀରବର ଫାଲ୍‌ଗୁନ
ଇନ୍ଦ୍ରଦେବତା ଚରଣେ କରଇ ନଇମ
କ୍ଷେ ପିତା ପିବର୍ଭି ମୂର୍ଚ୍ଛି ସଂଯମନୀ ପୁରେ
ପିତାଙ୍କୁ ଦେଖିବ ପିତୃଲୋକଙ୍କ ସଙ୍ଗରେ ।
ତାହା ଶୁଣି ସହସ୍ରାକ୍ଷ ହସାଇ ହୋଇଲେ
ଯମକୁ ନେଇ ପ ନୋହ୍ନବ ଭୁକ୍ତ ତଳେ ହେଲେ
ପଣ୍ଡୁ ବ୍ରହ୍ମହତ୍ୟା ଦୋଷୀ ତାକୁ ଅଛୁ ଦଣ୍ଡ
ପାପୀଲୋକଙ୍କର ଧ୍ୱଂସ କରଇ ସେ ପିଣ୍ଡ ।
ହାବୁ ଜାତ କରେ ବ୍ରହ୍ମା ନାଶକରେ ଯମ
ଏ ମଧ୍ୟରେ ଦୁଇଦେବ ଜଣ ଯମ ଧର୍ମ ।
ପୁଣ୍ୟବନ୍ତଙ୍କୁ ବହୁତ ହାଗରେ ମଣ୍ଡଇ
ପାପୀ ଲୋକଙ୍କୁ ଅନେକ ପ୍ରକାରେ ଦଣ୍ଡଇ ।
ଆପଣା ଅର୍ଜିଲା କର୍ମ ବଶ୍ୟରେ ସେ ସବୁ
ନ ପୁଣ ଯମଙ୍କୁ କୋପ କରିବୁ ତୁ ହାବୁ ।
ଅନେକ ବାଗେ ତଆର ତାକୁ ମଘବାନ
ପଠାଇଲା ନନ୍ଦଘୋଷେ ଚଢ଼ିଲା ଅର୍ଜୁନ ।
ମାତଳକୁ ଆଜ୍ଞାଦେଲେ ସୁଭଦ୍ରାର ନାହା
ସଂଯମନୀପୁରେ ଏବେ ମୋ ରଥକୁ ବାହା ।
ବାସବର ଆଜ୍ଞାକ୍ରମେ ମାତଳ ସାରଥି
ଅମରସ୍ୱର୍ଗରୁ ରଥ ବାହେ ତତ୍‌କ୍ଷଣାନ୍ତି ।
ତହେ ଫାଲ୍‌ଗୁନ ନାଶକରର ଭୁବନେ
ଦେଖିକରି ତରଗଲେ ବହୁ ପାପୀମାନେ ।

ଛଳ କର୍ମେ ଭଇଯାନ୍ତି ପାର୍ଥ ଦରଶନେ
ଅର୍ଜୁନର ନାଶକର ବସାଏ ଆସ୍ଥାନେ ।
ଦ୍ୱିଜାକୃଷ୍ଣ ଯମାଳୟେ କରଲେ ବଜସ୍ୱେ
ଦେଖିକରି ନାଶକର କୃତ କୃତ୍ୟ ହୁଏ ।
ଆପଣା ହସ୍ତରେ ଅର୍ଘ୍ୟ ଘେନି ଯମରାଜା
ଅର୍ଜୁନର ପାଦପଦ୍ମେ ତେଲ୍ କଲା ପୂଜା ।
ଦ୍ୱିଜାକୃଷ୍ଣ ପ୍ରତ୍ୟକ୍ଷରେ ଅଟେ ଅବତାର
ତବ ପ୍ରସାଦେ ଖଣ୍ଡିଲା ଦୁର୍ଗତି ମୋହର ।
କେଉଁ ଅନୁଗ୍ରହେ ନାଥ ଏଠାରେ ପ୍ରବେଶ
ପୃଥ୍ୱୀଙ୍କର ଉଦ୍ଧାରନ୍ତା କରନ୍ତା ଉଶ୍ୱାସ ।
କେଉଁ କାର୍ଯ୍ୟେ ଆଗମନ କେଉଁ ଅନୁଗ୍ରହ
ସୋମବଂଶର ମଣ୍ଡନ ନାଥ ମୋତେ କୁହ ।
ଅର୍ଜୁନ ହୋଇଲେ ଶୁଣ ଶମନ ଦେବତା
ଶଜୁସିପଞ୍ଚ ପିତାଙ୍କ କାର୍ଯ୍ୟନ୍ତି ସହଥା ।
ମଞ୍ଚପୁର ପ୍ରାଣୀଙ୍କର କୁହ ଅଟୁ ମୂଳ
ତୋହର ଦୟା ଭବରର ବସନ୍ତ ସକଳ ।
ମୋର ପିତା ପଣ୍ଡୁଦେବ ଛନ୍ତି କେଉଁଠାରେ
ଦେଖିବ ପିତାଙ୍କୁ ମୋର ତୋ ପ୍ରସାଦେ ଏବେ
ଶୁଣି ନାଶକର ହୋଲେ ଶୁଣ ସବ୍ୟସାଚୀ
ଦେଖ ତୋ ପିତା ଯେବଣ ଠାବେ ରହିଅଛି
ଆଗେ ଆଗେ କୃତାନ୍ତକ ପଛେ ଫାଲ୍‌ଗୁନ
ଦିବ୍ୟସିଂହାସନକୁ ଯେ ଗଲା ତାକୁ ଘେନ ।
ତହେଁ ଗଲନ ଅଉସ୍ତନାଥ ସୋମବଂଶୀ
କଣସ୍ଥ ସିଂହାସନରେ ପଣ୍ଡୁ ଛନ୍ତି ବସି ।
ଅନେକ ଅଳଙ୍କାରରେ ଶରୀର ଭୂଷିତ
ଦେଖି ଫାଲ୍‌ଗୁନ ମନେ ହେଲା ଆନନ୍ଦିତ ।
ଶ୍ରୀକରରେ ଅର୍ଘ୍ୟଥାଳ ଘେନିଣ ଅର୍ଜୁନ
ପଣ୍ଡୁ ପାଦତଳେ ଧୋଇ କରିଲା ବନ୍ଦନ ।
ଅର୍ଜୁନଙ୍କୁ ଦେଖିକରି ତୋଷ ମହାରାଜା
ହୋଇଲେ ତୋର ପ୍ରସାଦେ ସବହ ମୋ ପୂଜା
କାଳାନ୍ତକ ଭୁବନ ଏ ପିଶାଚର ପୁରୀ
ଏ ପୁରରେ ପୂଜା ମୋତେ ତୋ ପ୍ରସାଦେ କରି
କରପଦ୍ମ ଯୋଡ଼ିକରି ଅର୍ଜୁନ ହୋଇଲେ
ହେନେ ନାରଦ ଆମ୍ଭର ପୁରେ ଯାଇଥିଲେ ।
ଯୁଧିଷ୍ଠି ପୁଚ୍ଛିଲେ କାହିଁଥିଲା ବ୍ରହ୍ମଋଷି
ନାରଦ ହୋଇଲେ ଥିଲୁ ସଂଯମନୀ ପୁରୀ ।

ପୁଣିହିଁ ପୁଚ୍ଛିଲେ ପିତା ପଣ୍ଡୁ ନରପତି
ଯମର ସଭା ମଧ୍ୟରେ ଦେଖିଲି କି ପତି ।
ସେ ବୋଇଲେ ଦେଖୁଁ ଯକ୍ଷ ନିଶାଚରଙ୍କ ଗଣେ
ହେଠମାଥ ଉର୍ଦ୍ଧ୍ୱହାତ ରକ୍ଷ କୁକ୍ଷିସ୍ଥଳେ ।
ବସ ବୋଲନ୍ତି ତାଙ୍କ ନ ବୋଲଇ ଯମ
ଯୁଧିଷ୍ଠି ବୋଇଲେ ପିତା ଏ ଜନେ ଅଧର୍ମୀ ।
ନାରଦ ବୋଇଲେ ତହୁଁ ପଚ୍ଛିଲେ ପଣ୍ଡୁ ଙ୍କ
କେଉଁଦୋଷେ ଯମ ଶାସ୍ତି ଦେଉଛି ତୁମ୍ଭଙ୍କୁ ।
ଯୁଧିଷ୍ଠି ଅଗ୍ରେ ତହୁଁ ଭଣିଲେ ନାରଦେ
କେ ର ପିତା ବ୍ରହ୍ମହତ୍ୟା କରିଥିବା ହାତେ ।
ଏତେ ବୋଲନ୍ତେ ନାରଦ ହେଲେ ତିରୋଧାନ
ଶୁଣି ଉପହାସ କଲେ ସକଳ କୌରବ ।
ପଣ୍ଡୁ ବୋଇଲେ ନାରଦ ଦେଖିବାକୁଁ ମୋତେ
ଗୁରୁପଦ ପାଇଁ ହସ ଆସିଥିଲେ ଏଥେ ।
ଗୁରୁପୁତ୍ର ଯେଣୁ ହତ ତାହୁଁଭ ବେଳେ
ମୋତେ ରଖିଥିଲେ ଯମ ନିଶାଚରଙ୍କ ଗଣେ ।
ତହୁଁ ଯମକୁ ପୁଚ୍ଛିଲେ ବୀର ଧନଞ୍ଜୟ
ପିତା କେବଣ ପାତକେ କଲ ଏହାପାପ୍ ।
ତବ ମୁଖରୁ ଶୁଣିବ ଏହାର ସିଦ୍ଧାନ୍ତ
ଧନଞ୍ଜୟ ବଚନରେ ତହୁଁ ବୋଲନ୍ତି କୃତାନ୍ତ ।
ସ୍ୱାମି ବ୍ରହ୍ମହତ୍ୟା ଦୋଷ ଅଟେ ମହାପାପ
ତରେ ସ୍ୱାମି ନ ବଞ୍ଚିଲ ତାହା ଅନୁରୂପ ।
ତୁମ୍ଭେ ରାଜସୂୟଜ୍ଞକୁ ଆରମ୍ଭିଲ ଯହୁଁ
ହତ୍ୟାଦୋଷ କ୍ଷମା କରି ବସାଇଲି ତହୁଁ ।
ସ୍ୱାମି ତୁମ୍ଭର ଆଗରେ କହିଲି ସିଦ୍ଧାନ୍ତ
ରଖିଲେ ରଖ ମାରିଲେ ମାର ଆହେ ପାର୍ଥ ।
ଅର୍ଜ୍ଜୁନ ବୋଇଲେ ଏଡୁ ପୂର୍ବର ପ୍ରସ୍ତାବ
ତୋହର କଥାକୁ କିଏ ଅନ୍ୟଥା କରିବ ।
ଯମ ବୋଇଲେ ହେ ଦେବ ବ୍ରହ୍ମହତ୍ୟା କଲେ
ସେହୁ ଦୋଷ ନାଶ ହୁଏ ଅନ୍ନଦାନ ଦେଲେ ।
କେହୁ ନର ଗୋହତ୍ୟା ଯଦ୍ୟପି କରଇ
କୋଟିତୀର୍ଥ କଲେ ତେବେ ସେ ଦୋଷ ନାଶଇ
କେହୁ ନର ପରସ୍ତ୍ରୀ ହରଣ କରିଲେ ।
ସେହୁ ଦୋଷ ନାଶହୁଏ ଶିବ ପୂଜିଲେ
କେହୁ ଅଧମ ଯଦ୍ୟପି ଗୁରୁପତ୍ନୀ ହରେ
ସେ ପାପ ଖଣ୍ଡଇ ବ୍ରହ୍ମଜ୍ଞାନ ସାଧନରେ ।
ମାତୃହତ୍ୟା ଗୋରୁହତ୍ୟା ବୃଷଳୀ ଗମନ
ରତ୍ନଯଜ୍ଞ କରି ମଲେ ଦୁଷ୍ଟର ଖଣ୍ଡନ ।
ଯମଦେବତା କହିଲେ ଅର୍ଜ୍ଜୁନର ଆଗେ
ପଞ୍ଚ ମହାପାପ ଖଣ୍ଡେ ମଲେ ରଣଯାଗେ ।
ଯମ ବୋଲେ ପରସ୍ତ୍ରୀ ହରଣର ଦୋଷ
ଷଣ୍ଢ ଧେନୁ ଦାନ ଦେଲେ ପାପ ହୁଏ ନାଶ
ପରଦ୍ରବ୍ୟ ଦେଖିକରି ଯେହୁ କରେ ଲୋଭ
ସଦାଶିବ ସେବା କଲେ ପାପୁଁ ଯାଏ ତରି ।
ଯେଉଁଜନ ପରଧନ ହରିନିଏ ବଳେ
ପୁଷ୍କରିଣୀ ଖୋଳାଇଲେ ପାପୁଁ ତରି ଭଲେ ।
ଯମ ବୋଇଲେ ଅଦୋଷେ ଯେହୁ ଛେଦଭାଷି
ବିପ୍ରଙ୍କ ଗୃହଦାହରେ ପାପୁଁ ଯାଏ ତରି ।
ରହେ କୌନ୍ତେୟ ବିଶ୍ୱାସଘାତକର ଦୋଷ
କେବେହେଁ ସେ ନ ଟଳଇ ନର୍କେ ତାର ବାସ
ଯେ ପ୍ରାଣୀ ବ୍ରହ୍ମସ୍ୱ ହରେ ହୋଇଣ ବିଶ୍ୱାସୀ
ତୋହାର ମଣିକର୍ଣ୍ଣିକା କିବା ବାରାଣସୀ ।
ଆବର ଯେହୁ ହରଇ ବିଧବା ବ୍ରାହ୍ମଣୀ
ଚିରକାଳ ପଡ଼ିଥାଏ ନର୍କେ ସେହୁ ପ୍ରାଣୀ ।
ସଭାରେ ବସି ଯେ ଜନ କହୁଥାଏ ମିଥ୍ୟା
ସେ ଦୋଷ ହରେ ସାଗରେ ବୁଡ଼ାଇଲେ ମଥା
ଆବର ଯେହୁ ହରଇ ଗୋଚରର ଭୂଇଁ
ସେ ଦୋଷୁ ତରଇ ଲକ୍ଷେମାଡ଼ ସ୍ନାନଦେଇ ।
ପିତାମାତାଙ୍କୁ ଯେ ପୁତ୍ର ନ ଦିଅଇ ଅନ୍ନ
ପ୍ରୟାଗରେ ବାସକଲେ ଖଣ୍ଡେ ଦୋଷମାନ ।
ଯେହୁ ନିୟମ କରଇ ଯାଇ ଶିବଆଗେ
ପୁନଃ ପୁନଃ ଜାତହୁଏ ଅନ୍ତଜର କୁଳେ ।
ନାଶକର ବୋଲେ ଦେବ ବ୍ରହ୍ମହତ୍ୟା ଦୋଷ
କହିଲେ ତା ନ ସରିବ କେ କରିବ ଶେଷ ।
ଯମ ବୋଇଲାକ ଦେବ ଶୁଣିବା ହେ ପାର୍ଥେ
ଅପାର ପାତକ ଦେବ ନ ସରେ କହନ୍ତେ ।
ପାତକ ଖଣ୍ଡଇ ଦେବ ପ୍ରାୟଶ୍ଚିତ୍ତ କଲେ
ନାନା ପାପ ଖଣ୍ଡେ ବସ୍ତୁ ପ୍ରସଙ୍ଗ ଶୁଣିଲେ ।
ମନକର୍ଣ୍ଣ ନଦେଖି ଯେ ଶୁଣେ ବସ୍ତୁ ରସ
ସକଳ ପାପ ଖଣ୍ଡଇ ଦୋଷ ହୁଏ ଧ୍ୱଂସ ।
ସ୍ୱାମି ଜାଣେ ଅଜ୍ଞାନେ ଯେ ମହାପାପ କରେ
ମହାଭାରତ ଶୁଣିଲେ ସେହୁ ପାପହରେ ।

ସମସ୍ତ ଦୋଷ ହରଣେ ନାରାୟଣ ମୂଳ
ଶ୍ରୀମହାଭାରତ ଶୁଣ ଯେତୁ ପୁଣ୍ୟଜଳ ।
ଧର୍ମ ଅର୍ଥ କାମ ମୋକ୍ଷ ଏଥେ ଅଛି ସବୁ
ଏହୁ ପୁଣ୍ୟ ଜଳେ ନର୍କେ ନ ପଡ଼ିବୁ ବାବୁ ।
ଯେତେ ତୀର୍ଥ ଲୋଡ଼ିବୁ ତୁ ସର୍ବ ଏଥେ ପାଇ
ଅର୍ଜ୍ଜୁନ ଆଗରେ ଯମ କହନ୍ତି ବୁଝାଇ ।
ମହାଭାରତ ଶୁଣନ୍ତି ଯେତୁ ଦ୍ୱିଜଗତେ
ତାଙ୍କୁ ଶାସ୍ତି ନ ଦିଅଇ ମୁହିଁ କଦାଚତେ ।
ଦାନ ସାଗର ପୁଣ୍ୟର ଏତୁ ଫଳଶ୍ରୁତି
ଆୟୁଷ ଧନ ପୁତ୍ରାଦି ସବୁ ଅଛି ଏଥି ।
ଏ କଳିକାଳ ପାତକ ହରିବା ନିମନ୍ତେ
କେଶବ ମନୁଷ୍ୟ ରୂପେ ଅବତାରି ଏଥେ ।
ଯାହା ଯାହା କହିଲେକ ସେ ଯମ ଦେବତା
ସଂକ୍ଷେପେ କହିବାକୁ ତା କାହିଁ ସମର୍ଥତା ।
ସବୁ ପ୍ରାଣୀଙ୍କ ଶରୀରେ ଅଛନ୍ତି ନାରାୟଣ
ତାରନ୍ତି ମାରନ୍ତି ସେତୁ କରନ୍ତି କାରଣ ।
ତୁଳସୀନାଥଙ୍କୁ ସଦା ରଖି ହୃଦଗତେ
ବଦନ୍ତି ଶାରଳା ମୁନି ଜନଙ୍କର ହିତେ ।
ବହୁ ବିନୟେ କହନ୍ତି ସେ ଯମଦେବତା
ଶୁଣି ସାନନ୍ଦ ହୋଇଲା ପାର୍ଥ ମହାରଥା ।
ପଣ୍ଡୁ ବୋଇଲେ ବାବୁରେ ଆଧାୟୁ ତୁଅସି
ବଂଶ ନିଷ୍କଳଙ୍କ ହେଉ କରିଅ ରାଜସୂୟ ।
ପଣ୍ଡୁ ଯମ ଏ ଦୁହିଙ୍କ ନିମନ୍ତ୍ରଣ ଦେଇ
ଚଳିଗଲା ଧନଞ୍ଜୟ ଆନନ୍ଦିତ ହୋଇ ।
ମନୁ ପୁରୁଷଙ୍କ ମୂଳେ ଭୃଗୁ ବୃହସ୍ପତି
ହିରଣ୍ୟ ହେମବର୍ଣ୍ଣାଦି ସମସ୍ତ ନିମନ୍ତ୍ରି ।
ଯକ୍ଷ କିନ୍ନର ଗୁହ୍ୟକ ଏହି ଆଦି କରି
ଆକାଶରେ ନିମନ୍ତ୍ରିଲା ରହି ଦନ ସ୍ୱର ।
ତହୁଁ ମାତଳିକି ବୋଲେ ବାହା ରଥ ମୋର
ଦ୍ୱାରକା ପୁରକୁ ଯିବା ବିଳମ୍ବ ନ କର ।
ମାତଳି ବୋଇଲା ତହୁଁ ଦେବ ନାରାୟଣ
ରାଜସୂୟ ଯଜ୍ଞ ସଭାରେ ଅଛନ୍ତି ଆପଣ
ଅର୍ଜ୍ଜୁନ ବୋଇଲା ତହିଁ ଅଛି ଉଗ୍ରସେନ ।
ରହି ଅଛନ୍ତି ଯାଦବ ସାତବଂଶମାନ ।
ବିଶେଷରେ ଛନ୍ତି ପୁଣି ଦେବ ବଳଦେବେ
ନିମନ୍ତ୍ରଣ ନ ଦେଲେ ମୁଁ କାହିଁକି ସେ ଯିବେ ।
ଯଦି ବୋଲି ଜଗନ୍ନାଥ ତାହାଙ୍କର ଘର
ନିମନ୍ତ୍ରଣ ନ ଦେଲେ ସେ ଯିବେ କାହିଁପାଇଁ ।
ତହୁଁ ମାତଳି ବାହିଲା ରଥ ବେଗକରି
ବହନ ହୋଇଲେ ବିଜୟ ଦ୍ୱାରବତୀ ପୁରୀ ।
ଦେଖିଣ ସାନନ୍ଦ ହେଲେ ନୃପ ଉଗ୍ରସେନ,
ସଭାରେ ବିଜୟ କଲେ କୋଇନ୍ତୀ ନନ୍ଦନ ।
ଅର୍ଜ୍ଜୁନ ଚରଣେ ପୁତ୍ରେ ଯାଇ କଲେ ପୂଜା
କୋଳେ ଧରି ଚୁମ୍ବ ଦେଲେ ବାସବ ଆତ୍ମଜା
ନିମନ୍ତ୍ରଣ ଯୋଗାଡ଼ିକୁ ଦେଇ ଫାଲଗୁନ
ରାମ ପାଦପଦ୍ମେ କଲେ ବହୁତ ଦଇନ୍ୟ ।
ଉଗ୍ରସେନ ସହିତରେ ସର୍ବ ରାଜଦେବା
ନିମନ୍ତ୍ରି ବୋଇଲେ ଚାଲ ହସ୍ତିନାକୁ ଯିବା ।
ତାହା ଦେଖିଣ ସନ୍ତୋଷ ହେଲେ କାମପାଳ
ସଜ ହୋଇଲେ ଯିବାକୁ ରୋହିଣୀ ଦୁଲାଳ ।
ଉଗ୍ରସେନ ସହିତରେ ସର୍ବ ପୁତ୍ରମାନେ
ଆନନ୍ଦରେ ଆରୋହିଲେ ଯେ ଯାହାର ଯାନେ
ବାହାରିଲେ ଦ୍ୱାରକାରୁ ଅକଳନ୍ତା ଥଟ
ଘୋଟିଲେ ଚୌରାଶୀପୁଣ ସିନ୍ଧୁକୂଳ ପାଟ ।
ତାଳଧ୍ୱଜ ରଥେ ବିଜେ ସ୍ୱାମୀ କାମପାଳ
ଶ୍ରୀଭୁଜେ ଶୋଭା ପାଉଛି ହଳ ଯେ ମୁଷଳ ।
ପବନର୍ଦ୍ଧ ବେଗମାନ ଏମନ୍ତ ଯେ ବାଜି
ଆକାଶ ଘୋଟି ଚଳନ୍ତି ଗରଜି ଗରଜି ।
ବିହରନ୍ତି ନାଗମାନେ ଯେତୁ ବଡ଼ବନ୍ତା
ପଦାତିମାନଙ୍କ ସଂଖ୍ୟା କେ କରେ ଗଣିତା ।
ସୁନ୍ଦର ସୁପୁରୁଷ ଯେ ସ୍ଥୂଳ ସ୍ଥୂଳ କାୟା
ଧର୍ମ୍ମ କାଳଦଣ୍ଡକୁ ଯେ ଅଟନ୍ତି ନିର୍ଭୟା ।
ବାଟ କଡ଼ାଇ ଆଣନ୍ତି ତାଙ୍କୁ ଫାଲଗୁନ
ପଛେ ପଛେ ପାଣ୍ଡବଙ୍କୁ କ୍ଷେପନ୍ତି ସଇନ ।
ଝଲକେ ହିରଣ୍ୟ ହୀରା ବିଦାରଣ ମଣି
ଜଣେ ଜଣେ ପ୍ରକାଶନ୍ତି ଯେସନେ ବହ୍ନ ।
ପବନୁ ବେଗେ ଚଳନ୍ତି ରଜନୀ ଦିବସ
ଜୟନ୍ତୀ ଦ୍ୱୀପରେ ଯାଇ ହୋଇଲେ ପ୍ରବେଶ ।
ବଳରାମଙ୍କ ଆଗତ କହିଲେ ମୁନେହିଁ
ପାର୍ଥ ମଧ୍ୟ ବିଜେ କଲେ ଶୁଣ ଭବସ୍ୱାମୀ ।
ଧନୁ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଚନ୍ଦ୍ରବାର
ପୁଷ୍ୟା ନକ୍ଷତ୍ରକୁ ଭୋଗ ଥିଲା ସେ ଦିନର ।

ଗର ନାମରେ କରଣ ପ୍ରୀତିନାମେ ଯୋଗ
ଧନୁ ସଂକ୍ରାନ୍ତିକୁ ଅଷ୍ଟବିଂଶ ଦିନ ଭୋଗ ।
ଉତ୍ତର ଦିଗେ ବିଜୟ ସାରଣ ସକଳ
ଅର୍ଜୁନ ବିଜୟ ଯେଣେ ଶୁଭ ଅନୁକୂଳ ।
ମହା ସମ୍ଭବରେ ଆସି ବିଜୟ କରନ୍ତି
ଯମୁନାର କୂଳେ ଯାଇ ଜଗନ୍ନାଥ ଭେଟି ।
ରଥ ଚେଜ୍ୟା କରିଣ ସେ ପାଣ୍ଡବ କରନ୍ତି
ଜଗନ୍ନାଥଙ୍କର ପଦ୍ମପାଦେ ଯାଇ ଭେଟି ।
ଯଦୁବଂଶ ଅବତଂଶ ଜୟ ଚକ୍ରପାଣି
ଛତ୍ରକୋଟି ବ୍ରହ୍ମାଣ୍ଡର ଚୂଡ଼େ ଶିରୋମଣି ।
ପ୍ରଳୟର ଗଙ୍ଗା ନଖକୋଣେ ଥିଲା ଲୁଚି
ଶିରେ ଅଭିଷେକ କଲା ତାହାକୁ ବାଞ୍ଛି ।
ସେହି ପାଦୋଦକ ଯାହା ପଡ଼ିଲା ଉଛୁଳି
ପଶୁପତି ଅଭିଷେକ ହେଲେ ତାହା ତୋଳି ।
କୋଟି ଜନମର ସବୁ ଦୋଷ କଲେ ଧ୍ୱଂସ
ଜନ୍ମେ ଜନ୍ମେ ବଢ଼ ଇଲ ମୁହିଁ ବହୁ ଆଶ ।
ଅଗାଧ ସାଗର ତୋଲି ନ ପାରିଲି ପାଞ୍ଚି
ତବ ପ୍ରସାଦେ ଭାରତ ପୋଥି ଅଛି ଲୁଚି ।
ତବ ପଦ୍ମପାଦ ସଦା ଥାଉ ମୋର ହୃଦେ
ସଂସାର ବୋଧିବାକୁ ମୁଁ ପାଇଲିଇଁ ପଦେ ।
କୁଶସ୍ଥଳୀ ଦ୍ୱାରକା ଯେ ଭାରତର ଭୂମି
ସୁନ୍ଦର ଗିରି ସନ୍ନିଧେ ତୋଷିଲେ ସେ ସ୍ୱାମୀ ।
ଅକାରଣକୁ କାରଣ ଯେ ସ୍ୱାମୀଙ୍କ ପାଦ
ଜନ୍ମେ ଜନ୍ମେ ସେବଇଁ ମୁଁ ତାଙ୍କୁ ରଖି ହୃଦ ।
ଭାରତୀ ବଲ୍ଲଭ ପାଦେ ସଦା ମୋର ଆଶ
ଶୂଦ୍ରମୁନି ଶାରଳାର ହୃଦେ ଆସି ବସ ।
ଜ୍ଞାନ ଥାଉଁ ଥାଉଁ ମୂଢ଼ ହେଉଛନ୍ତି ଜଣ
ସଂସାର କାରଣ କୃଷ୍ଣ ନାମର ଧାରଣା ।
ସକଳ ଧର୍ମ ଲଭଇ ଯାହାକୁ ସେବିଲେ
ଧ୍ୱଂସ ହୁଅଇ ପାତକ ତାହାକୁ ଶୁଣିଲେ ।
ଯଜ୍ଞକୁଣ୍ଡେ ଯେତେ ଇଚ୍ଛା ଧ୍ୱଂସକର ଘୃତ
ମହା ଯଜ୍ଞଠାରୁ ଶ୍ରେଷ୍ଠ ଶ୍ରୀ ମହାଭାରତ ।
ଜନ୍ମେ ଜନ୍ମେ ସେବା ମୋର ଅଗସ୍ତି ପାଦରେ
ସମୁଦ୍ର ଗଣ୍ଡୂଷ କଲେ ଯେହୁ କଣ୍ଠତରେ ।
ବ୍ୟାସଦେବଙ୍କ ପ୍ରସନ୍ନେ ସ୍ଫୁରିଲା ମୋ ବାଣୀ
ସ୍ୱପ୍ନପର୍ବ ଲେଖି ମୁହିଁ ବଖାଣିଲି ଆଣି ।

ବଳଙ୍କ ଦେଖାଇ ବୈବସ୍ୱତ ମନୁରାଜା
ଅଗସ୍ତି ପାଦପଦ୍ମରେ ସଦା କର ପୂଜା ।
ମୃତାଙ୍କ ପ୍ରତ୍ୟକ୍ଷ ହୋଇ ଅପୂର୍ବ ଥିଲି
ଭାରତ ସମ୍ବିତା ଶୁଣି ସାତପୁର ହେଲି ।
ପୁଣି ଯେ ବୋଇଲେ ଏହି ସଂସାର ଅର୍ଣ୍ଣବେ
ଠିଆ ହୋଇବାକୁ କାହିଁ ନ ମିଳଇ ଠାବେ
ଶୁଣିଣ ମନୁ ବୋଇଲେ ଶୁଣ ତୁ ରଜତ
ଇହ ପରକାଳେ ନଷ୍ଟେ ହୋଇବୁ ମୁକତ ।
ନ ଭେଟିବୁ କାମ କ୍ରୋଧ ନ ଭେଟିବୁ କାଳ
ନ ଭେଟିବୁ ରୋଗ ଶୋକ ନ ଥିବ ଜଞ୍ଜାଳ ।
ମୁନି ବୋଇଲେ ଭାରତ ଶୁଣନ୍ତୁ ଯେପଣ
ସବୁଦିନେ ଶୁଣୁଥାଅ ମନ ତୋଷକର ।
ଇହକାଳେ ସବୁ ତୋର ହୋଇବ ସୁବିଧା
ପରଲୋକେ ଯମ ପୁଣି ନ କରିବ ବାଧା ।
ଭାର୍ଯ୍ୟା ପୁତ୍ର ଭାଇ ବନ୍ଧୁ ଏ ଯେତେକ ସବୁ
ପ୍ରତିବନ୍ଧକ କେବଳ ଏ ସକଳ ବାବୁ ।
ହିଂସା କ୍ରୋଧ ଲୋଭ ମିଥ୍ୟା ଏ ସବୁ କାହିଁକି
ଶମନ ବନ୍ଦିବ ଛରେ ତା ଜାଣୁ ନାହିଁକି ।
କୃଷ୍ଣ ଆହେ ଯୋଗେଶ୍ୱର ସଦା ଦେଇ ମତି
ଇତି ଶ୍ରୀ ମହାଭାରତ ସ୍ୱପ୍ନରେ ପୋଥି ।
ଅଗସ୍ତି ମୁନିଙ୍କ ପାଦେ ସଦା ମୋର ସେବା
ଶୂଦ୍ରମୁନି ଶାରଳାକୁ ମୁକ୍ତିପଥ ଦେବା ।
ଯେବଣ ନାମ ବହିଲୁ ଦଶ ଅବତାରେ
ସିଦ୍ଧ ଶାରଳା ହୋଇଲା ଏ କଳିକାଳରେ ।
ଜମ୍ବୁଦ୍ୱୀପ ବାହାନଧି ପଶ୍ଚିମର ଭାଗେ
ସୁନ୍ଦର ପର୍ବତ ମାଳ କଳ୍ପବଟ ଲାଗେ ।
ଚନ୍ଦ୍ରଭାଗା କୋଣାର୍କର ତୀର୍ଥ ଅଟେ ଯହିଁ
ସେହି ସର୍ବସ୍ଥାନ ହାବେ ସୁସ୍ଥାନ ଅଟଇ ।
ଚନ୍ଦ୍ରୋତ୍ପଳା ନଦୀ ବଂହ ଦକ୍ଷିଣ କୋଣରେ
ଓଡ଼ରାଷ୍ଟ୍ର ବ୍ରହ୍ମପୁର ଅଛଇ ସେଠାରେ ।
କଳିକାଳରେ ଗୁପତ ଅଛି ଏହି ନଦୀ
ଚନ୍ଦ୍ରୋତ୍ପଳା ନାମେ ଆସେ ଈଶାନ୍ୟକୁ ଭେଦି
ସେ ନଦୀକୂଳରେ ପର୍ଶୁରାମଙ୍କ ଆଶ୍ରମ
ନଜ ଭୁବନ କନକାବତୀ ଅଟେ ନାମ ।
ତାକୁ ଜଙ୍ଘେରଜଇନ୍ତା ନାମ ଗୋଟି ବୋଲି
ସେହିଠାରେ ବସିକରି ଲେଖୁ ମୁଁ ଜାରଲ ।

ବୁ ମାହେଶ୍ୱରୀ କହିଲୁ ମୋତେ ଶ ସ୍ୱଯୋଗେ
ଉତ୍ତମ ଜ୍ଞାନ ପାଇଲି ଭକତର ଭାବେ ।
କୃପାଜନକଙ୍କ ନନ୍ଦନୀ ଅନନ୍ତ ଯେ ଦେବୀ
ଜନ୍ମେ ଜନ୍ମେ ଅଭ୍ୟାସ ମୋ ତୋହପାଦସେବ
ସ୍ୱରୂପରେ ପାଇଲି ମୁଁ ସିଦ୍ଧି ଏଥି ପୋଥି
ଶାରଳା ପ୍ରସାଦେ ମୁହିଁ ଖଣ୍ଡିଲି ଦୁର୍ଗତି ।
ସଂସାର ଜନଙ୍କ ବାଧନ ମୋତେ ଦେଲେ କଷ୍ଟ
କୃପାଜନକଙ୍କ ନନ୍ଦନୀ ମୋର ହୃଦେ ଇଷ୍ଟ ।
ବାଳକା ସ୍ୱଭାବେ ଯେହ୍ନ କୌତୁକରେ ଖେଳ
କୃଷ୍ଣବର୍ଣ୍ଣ ସ୍ୱରୂପିଣୀ ହୋଇ ମତ୍ତ ଖେଳ ।
ବନ୍ଧବନାଶିନୀ ଦେବୀ ବପଦର ସଖା
ଅହର୍ନିଶୀ ବର ଦେଲ ତୁଷ୍ଟ କରୁ ରକ୍ଷା ।
ସନକବାଦେ କୈଳାସଂକ୍ଷେତ ଅଧିକାରୀ
ବର ମାଗି ତୋ ବଲ୍ଲଭ ହେଲେ ତ୍ରିପୁରାରି ।
ଶ୍ରୀମଙ୍ଗଳା ପାଦରେଣୁ ରହେ ମୋର ଶିରେ
ପ୍ରାପତ ହୋଇଲି ମୁହିଁ ନନ୍ଦ ଅକ୍ଷାରେ ।
ପ୍ରସନ୍ନେ ସାଧବୀ ଦେବୀ ଚରଣେ ଦଇମା
କହଇ ଶାରଳା ଦାସ କର ଶୂଦ୍ରମୁନି ।

---

## ଶ୍ରୀକୃଷ୍ଣ ବାଳକମାନଙ୍କର ଦ୍ୱାର ରକ୍ଷା ଅନନ୍ତ ପଡ଼ିହାରୀ ପାଇବା ପ୍ରାର୍ଥନା ଋଷିମାନଙ୍କୁ ଯଜ୍ଞରେ ବରଣ ଏବଂ ଯଯାତି ରାଜା ପ୍ରତି ପୁର ପ୍ରହାର ଦୁଇ ପୁତ୍ରଙ୍କର ଷଡ଼ଯନ୍ତ୍ର

ଅଗସ୍ତିଙ୍କ ପାଦପଦ୍ମେ ମନୁ କର ସେବା
ବୋଲନ୍ତି ଯଜ୍ଞର କଥା ମୋ ଆଗେ କହିବା ।
କୁମ୍ଭଋଷିଙ୍କ ନନ୍ଦନ ଅଗସ୍ତି ବଦନ୍ତି
ସମସ୍ତ ରଙ୍ଗ କୌତୁକ ଶ୍ରୀପତି କରନ୍ତି ।
ଛଅ ଲକ୍ଷ ସହସ୍ର ତିନି ଊଣା ପଶ୍ଚିମରେ
ରାଜା ଘେନି ଭଜେ ଭୀମ ପଶ୍ଚିମ ଦୁଆରେ ।
ଉତ୍ତରୁ ସ୍ୱଳ୍ପଶସହସ୍ର ରାଜା ଘେନି ପାର୍ଥ
ଉତ୍ତରଦ୍ୱାରେ ପ୍ରବେଶ ହୋଇଲେ ତୁରିତ ।
ଏକଊଣା ତିନିସହସ୍ର ଘେନି ନୃପମଣି
ଦକ୍ଷିଣ ଦ୍ୱାରେ ନକୁଳ ରଖାଇଲେ ଆଣି ।
ପୂର୍ବରୁ ଏକୋନଶତ ସହସ୍ର ରାଜା ଘେନି
ପୂର୍ବଦ୍ୱାରେ ରଖାଇଲେ ମନ୍ତ୍ରୀ ଚୂଡ଼ାମଣି ।
ପୂର୍ବଗଲେ ରାଜାମାନେ ବଡ଼ାଇ ସମ୍ଭାରେ
ସ୍ୱରବଗ ରାଜା ସ୍ଥିତ ହେଲେ ସ୍ୱଷ୍ଟଦ୍ୱାରେ ।
ଏ ବାଧିରେ ସ୍ୱତଊଣା ଲକ୍ଷେକ ନୃପତି
ସ୍ୱରବଗର ରାଜାଙ୍କୁ ଅଣିଲେ ନମନ୍ତି ।
ମହାଦ୍ୱାରରେ ଜୟସ୍ତ କଲେ ଚଳଗମ
ଗ୍ରାମ୍ୟରେ ଦର୍ଶନ କଲେ ଶ୍ରୀପୁରୁଷୋତ୍ତମ ।
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ଯୁଧିଷ୍ଠି କୁରତେ
ଆପଣେ କରନ୍ତେ ପୂଜା ରାମପାଦଗତେ ।
ବଳେନକଲେ କାମପାଳ ହସ୍ତରେ ସମ୍ଭବେ
ଆଦର ଅନନ୍ତ ସାତବଂଶର ଯାଦବେ ।
ପ୍ରଦ୍ୟୁମ୍ନକୁ ହକାରିଣ ଦେବ ଜଗନ୍ନାଥେ
ଆଗେ ଶାଢ଼ୀ ବଇଆଇଲେ ଯୁଧିଷ୍ଠିର ହାତେ ।
ବୋଇଲେ ସହସ୍ରେ ଭାଇ ଥାଅ ପୂର୍ବଦ୍ୱାରେ
ଯେ ରାଜାକୁ ଆଜ୍ଞା ହେବ ଗୁହିବ ଭିତରେ ।
ଶାମ୍ବକୁମରକୁ ପୁଣି ପ୍ରାମ୍ବକୁ ହକାରି
ନିଜେ ଶାଢ଼ୀଦେଲେ ତାଙ୍କୁ ଧର୍ମ ଅଧିକାରୀ ।
ସ୍ୱଳକ୍ଷ ସହସ୍ର ଭ୍ରାତ ଉତ୍ତରରେ ଥିବ
ଯେ ଯାହାକୁ ଆଜ୍ଞାଦେବ ଭିତରେ ଗୁହିବ ।
ଗଜ ନାମକ କୁମର ସତ୍ୟଭାମା ବାଳ
ଦଶସହସ୍ର ଘେନି ସେ ପଶ୍ଚିମ ଦ୍ୱାରପାଳ ।
ଜୟନ୍ତ ନାମେ ଅଟଇ କାଳନ୍ଦୀ କୁମର
ନବସହସ୍ର ଘେନି ରହେ ଦକ୍ଷିଣର ଦ୍ୱାର ।
ତାଡ଼ ଝୁମ୍ପା ସହିତ ବାହୁଟି ଜଗବ୍‌ବଳା
ମୁକୁଟ କର୍ଣ୍ଣ କୁଣ୍ଡଳ ହୃଦେ ରତ୍ନମାଳା ।
ଦେବାଙ୍ଗ ବସନ ନେତ ଆଦର ପଚନୀ
ଯୁଧିଷ୍ଠି ଦେବ ଏମାନ ଶ୍ରୀହସ୍ତରେ ଘେନି ।
ବୋଇଲେ କୃଷ୍ଣସୁତଙ୍କୁ ତୁମ୍ଭେମାନେ ଯୋଧି
ଅନେକ କଠୋରେ ଥିବ ଦ୍ୱାରମାନ ରୋଧି ।
ଏହା କହି କୁମରଙ୍କ ଶ୍ରୀଅଙ୍ଗେ ନେଇଣ
ସର୍ବ ରତ୍ନ ଅଳଙ୍କାର କଲେ ଆଭରଣ ।
ପୁଣି ପୁଅନ୍ତ ହକାରି ଦେବ ନାରାୟଣ
ବୋଇଲେ ଠାକୁର ଆଜ୍ଞା ସାବଧାନେ ଶୁଣ ।
ବାହୁରେ ଦ୍ୱାରକୁ ଯେତ୍ତୁ ନ ପାରିବ ରୋଧି
ଠାକୁରଙ୍କଠାରେ ନିଶ୍ଚେ ହେବ ଅପରାଧି ।
ଏହିରୂପେ ସ୍ୱର୍ଗଦ୍ୱାର ଦୃଢ଼ ରୋଧିକରି
କରଯୋଡ଼ି ଯୁଧିଷ୍ଠିରେ ବୋଲନ୍ତି ଶ୍ରୀହରି ।

ସ୍ୱାମି ପଟ୍ଟବାସ ପଣେ ମୋତେ ଶାଢ଼ୀ ବିଷ
ଦେଖା କରାଇବ ରାଜାମାନଙ୍କୁ ହେ ରାୟ ।
ପୁଣି ସେମାନଙ୍କୁ ନେଇ ଯଥା ସମୟରେ
ମାନ୍ୟକରି ବସାଇବ ଯାହାକୁ ଯେଠାରେ ।
ଶ୍ରୀକୃଷ୍ଣ ବଚନ ଶୁଣି ଧର୍ମସୁତ ଯୁଧିଷ୍ଠି
ବୋଇଲେ ତ୍ରୈଲୋକ୍ୟନାଥ ତୋର ସର୍ବଦୃଷ୍ଟି
ବେଦାଦି ଦେବତାଙ୍କର ଅଟୁ ଦେବରାଜା
ତୋ ପାଦପଦ୍ମେ କରନ୍ତି ସର୍ବଦେବ ପୂଜା ।
ମୋ କହ୍ନାଗ୍ରେ ପଟ୍ଟବାସ ତାଳଢ କଥର
ମୋର ପିତା ହତ୍ୟାଦୋଷ ନୋହୁଅଛେ ପାର
ଶୁଣିଣ ବିନୟଭାବେ ଶ୍ରୀକୃଷ୍ଣ କହିଲେ
ସ୍ୱାମି ହୋ ପୃଥିବୀରାଜା ସମସ୍ତେ ଅଇଲେ ।
ମୁଁ ଯେବେ ଉଚିତଭାବେ ନ ଖଟିବି ତୋତେ
ଏ ରାଜାଏ ତୋତେ ପୂଜା କରିବେ କେମନ୍ତେ
ତହୁଁ ଧର୍ମ ବିଜେକଲେ ବ୍ୟାସଙ୍କର ପାଶେ
ବୋଇଲେ ଶ୍ରୀକୃଷ୍ଣ କଥା ଶୁଣ ଆହେ ବ୍ୟାସେ
ଦୁଃସହ କଥା କହନ୍ତି ମୋତେ ଚକ୍ରଧାରୀ
ବୋଲନ୍ତି ତୋ ଯଜ୍ଞେ ହେବି ମୁହିଁ ପଟ୍ଟଧାରୀ
ବ୍ୟାସେ ବୋଇଲେ ବାବୁରେ ଅଛଇ ଏମନ୍ତ
ଯହିଁ ଧର୍ମ ତହିଁ କୃଷ୍ଣ ହୋଇଥାନ୍ତି ଭୃତ୍ୟ ।
ବ୍ୟାସଙ୍କ ବଚନ ଶୁଣି ଧର୍ମ ଦଣ୍ଡଧାରୀ
ନିଜ ଶ୍ରୀହସ୍ତରେ ଶାଢ଼ୀ ଦେଲେ ସ୍ନେହକରି ।
ତାଳହସ୍ତରେ ଘେନିଲେ ପ୍ରଭୁ ଶିରୀପତି
ମଥାରେ ବାନ୍ଧିଲେ ତାକୁ ନେଇ ତତ୍‌କ୍ଷଣାନ୍ତ
ସୁନାପୋଡ଼ ଦେଇ ବିଶ୍ୱକର୍ମାର ନିର୍ମାଣ
ଅନନ୍ତ ପଟ୍ଟବାସ ତା ନେଲେ ନାରାୟଣ ।
ଷାଠିଏ ସହସ୍ର ଶିଷ୍ୟ ଘେନି ବେଦବ୍ୟାସ
ଯଜ୍ଞଶାଳ ଆରୋପଣ କରନ୍ତି ବିଶେଷ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତ
ପ୍ରବେଶ ହୋଇଲେ ଯାଇ ସଭାର ଅଗ୍ରତ ।
ବ୍ରହ୍ମାନନ୍ଦ ବଶିଷ୍ଠ ଦେବଳ ବ୍ରହ୍ମଋଷି
ଅଶୀସହସ୍ର ଶିଷ୍ୟ ଘେନି ପ୍ରବେଶିଲେ ଆସି ।
ଲକ୍ଷେ ବାଳଖିଲ୍ୟ ଘେନି ବାନ୍ଧି କି ଦୁର୍ବାସା
ଯଜ୍ଞେ ପ୍ରବେଶିଲେ ଆସି ଆନନ୍ଦେ ସହସା ।
ପଞ୍ଚାଶ ସହସ୍ର ଶିଷ୍ୟ ମାର୍କଣ୍ଡେୟ ଘେନି
ଅଶୀସହସ୍ର ଶିଷ୍ୟ ସହ ବିଭାଣ୍ଡକ ମୁନି ।

ଋଷ୍ୟଶୃଙ୍ଗ ପଞ୍ଚଶତ ଶିଷ୍ୟଙ୍କର କୁଳେ
ନବସହସ୍ର ଋଷି ସଙ୍ଗେ ଗୌତମ ଅଇଲେ ।
ସନକ ସନାତନାଦି ଉତ୍ତମ ଯେ ଋଷି
ଏଗାର ସହସ୍ରସହ ଭରଦ୍ୱାଜ ଆସି ।
ପଞ୍ଚାଶ ସହସ୍ର ଘେନି ବିଶ୍ୱାମିତ୍ର ମୁନି
ରାଜସୂୟ ଯଜ୍ଞେ ବିଜେ ଶିଷ୍ୟଙ୍କୁ ସେ ଘେନି ।
ଲକ୍ଷେ ଶିଷ୍ୟ ଘେନି ବିଜେହେବେ ବାମଦେବ
ନବସହସ୍ର ଶିଷ୍ୟ ଘେନି ସଦାନନ୍ଦ ଶିବ ।
ସୁମନ୍ତ ମୁନି ସହିତ ନବସହସ୍ର ଚେଲା
ରାଜସୂୟ ଯଜ୍ଞସ୍ଥଳରେ ଯାଇ ପ୍ରବେଶିଲା ।
ଛଅାଶ ସହସ୍ର ଶିଷ୍ୟ ଘେନିଣ ଜୈମିନି
ପ୍ରବେଶ ହେଲେ ମହାତ୍ମା ଶୁଭଲଗ୍ନ ଘେନି ।
ଅଷ୍ଟାଦଶ ସହସ୍ରେକ ଦ୍ୱିଜ ଘେନି କୁଳେ
ସଭାରେ ବସିଲେ ଆସି ଋଷିଙ୍କର ମେଳେ ।
ରାଜଋଷି ବ୍ରହ୍ମଋଷି ପୁଣି ଦେବଋଷି
ସମସ୍ତ ବ୍ରହ୍ମବେତ୍ତାଏ ପ୍ରବେଶିଲେ ଆସି ।
ଋଷିମାନଙ୍କୁ ଦେଖିଣ ଦେବ ଧର୍ମରାଜା
ଅର୍ଘ୍ୟ ଘେନି ସମସ୍ତଙ୍କୁ ଯାଇ କଲେ ପୂଜା ।
ବସନ କୁଣ୍ଡଳମାନ ଚନ୍ଦନାଦି ଦେଇ
ବରଣ କରି ସବୁଙ୍କୁ ପ୍ରବୋଧିଲେ ଯାଇ ।
ଶୂଳ ଏକ ଶ୍ରୀହସ୍ତରେ ଘେନି ମାର୍କଣ୍ଡ
ନିଜେ ମହାତ୍ମା ଖୋଳନ୍ତି ଯାଇ ଯଜ୍ଞକୁଣ୍ଡ ।
ଦ୍ୱାଦଶକାଠ ବିସ୍ତାର ଚତୁର୍ଦ୍ଦିଗ ସ୍ଥଳୀ
ଗଭୀର ତା ତିନିକାଠି ଦ୍ୱାଦଶ ଅଙ୍ଗୁଳି ।
ପୂର୍ବ ଦ୍ୱାରରେ ବରଣ ମାର୍କଣ୍ଡ ଋଷି
ସଙ୍ଗରେ ଘେନି ପଚାଶ ସହସ୍ର ଯେ ଶିଷ୍ୟ ।
ଦକ୍ଷିଣ ଦ୍ୱାରରେ ବାମଦେବ ପୁରୋହିତେ
ପଶ୍ଚିମ ଦ୍ୱାର ଅଗସ୍ତ୍ୟ ଶିଷ୍ୟଙ୍କ ସହିତେ ।
ଉତ୍ତରେ ବରଣ ହେଲେ ବିଶ୍ୱାମିତ୍ର ମୁନି
ବରଣ ଆଧାନେ ଲକ୍ଷେ ବ୍ରାହ୍ମଣଙ୍କୁ ଘେନି ।
ଚାରି ବିଶ୍ୱେଦେବା ସାତ ମନୁ ଯେ ପୁରୁଷ
ଶୂନ୍ୟେ ଦେବତାଏ ପାଞ୍ଚ ସନକ ଯେ ଦଶ ।
ଅଷ୍ଟମନ୍ତର ବାକ୍ୟରେ ଲକ୍ଷେ ଦ୍ୱିଜ ବରି
ଋକବେଦୀ ବରଣ ଯେ ହେଲେ ଲକ୍ଷ ସ୍ୱରି ।
ଦ୍ୱିଲକ୍ଷ ଦ୍ୱିଜ ବରଣ ହେଲେ ସାମବେଦୀ
ଯଜୁର୍ବେଦୀ ପାଞ୍ଚଲକ୍ଷ ବରିଲେ ସମ୍ପାଦି ।

ଅଥର୍ବବେଦଙ୍କୁ ବଣ୍ଟିଲେ ନବଲକ୍ଷ ଜାଣ
ଯୋଗସମ୍ବଦ୍ଧା ଏକସ୍ତର ସହସ୍ର ବରଣ ।
ବ୍ରହ୍ମା ବିଷ୍ଣୁ, ରୁଦ୍ର ଏହି ତିନି ଦଇବତ
ସୋମ ଜଙ୍ଗମ ତେଇଶ ଲକ୍ଷ ପରମିତ ।
ସମସ୍ତ ବରଣ କଲେ ଧର୍ମଙ୍କର ସୁତ
ପୁଣି ଅନେକ କରିଲେ ଯାହାକୁ ଯେମନ୍ତ ।
ମହାଯଜ୍ଞରେ ବରଣ ସର୍ବ ବ୍ରହ୍ମମୁନି
ଯେ ଯାହା ପିଠେ ବସିଲେ ଶିଷ୍ୟମାନ ଘେନି
ବାଳାଞ୍ଜନ କାଳଧ୍ୱଂସ ନାମରେ ଉଗର
ଦୂତଙ୍କୁ ପଠାଇଥିଲେ ତହିଁ ଭାସ୍କର ।
ମହାପଣ୍ଡିତ ସେମାନେ ଜ୍ଞାନେ ସର୍ବସିଦ୍ଧି
ଭୂତ ଭବିଷ୍ୟତ ଜ୍ଞାତା ଅଟେ ତାଙ୍କ ବୁଦ୍ଧି ।
ଅଦଭୁତେ ଆକାଶରୁ ହୋଇଲେ ପ୍ରବେଶ
ଲୋହିତ ବର୍ଣ୍ଣ ଶରୀର ଅଗ୍ନିର ସଦୃଶ ।
ଯୁଧିଷ୍ଠିର ପଚାରିଲେ ମନ୍ତ୍ରୀର ଅଗ୍ରତେ
କାହିଁର ଦୂତ ଆଇଲେ ଏଡ଼େ ଅଦଭୁତେ ।
ଭୂମିର କାରଣ କହ ଏହାଙ୍କ ବିଷୟ
ସହଦେବ ବୋଲେ ସ୍ୱାମି ଶୁଣ ଧର୍ମରାୟ ।
ଆମ୍ଭର ଯେ ପୂର୍ବବଂଶ ସତ୍ୟଯୁଗ ରାଜା
ନହୁଷର ପୁତ୍ର ଯଯାତି ରାଜାର ଆତ୍ମଜା ।
ଯଯାତି ରାଜା ଯେ ସତ୍ୟଯୁଗ ନରପତି
ଦ୍ୱିଲକ୍ଷ ତିନସହସ୍ର ଭୋଗକଲେ ପୃଥ୍ୱୀ ।
ପୁରୁ ପ୍ରଭୃତି ଏ ଦୁହେଁ ଯଯାତିର ବାଳ
ପିତାଙ୍କ ପ୍ରଭୃତିକାଳେ ଯାଙ୍କ ଯୁବାକାଳ ।
ମୀନ କୃଷ୍ଣ ଚତୁର୍ଦ୍ଦଶୀ ପୁଣି ଭୌମବାର
ରେବତୀ ନକ୍ଷତ୍ର ଯୋଗ ଅଟେ ସେ ଦିନର ।
ଅଶ୍ୱେ ଅଶ୍ୱେ ଚଢ଼ିକରି ସେ ବେନି କୁମରେ
ଲୁଚିହେଲେ ବାହାରିଲେ ମୃଗୟା ଅର୍ଥରେ ।
କୁମାରମାନଙ୍କ ଯିବା ଜାଣିକରି ମନ୍ତ୍ରୀ
ଯଯାତିଙ୍କ ନିକଟରେ କହେ ତତକ୍ଷଣାନ୍ତି ।
ସ୍ୱାମି ତୋର ଯୁବାପୁଣେ ବୟସ ମଦରେ
ମୃଗୟାକୁ ଯାଉଛନ୍ତି ଘୋର ଅରଣ୍ୟରେ ।
ଶୁଣି ଯଯାତି ବୋଲଇ ତହୁଁ ମନ୍ତ୍ରୀ ଆଗେ
ପୁତ୍ରଙ୍କ ସଙ୍ଗତେ ଏବେ ଚଳ ଶୀଘ୍ର ବେଗେ ।
ପୁତ୍ରମାନଙ୍କୁ ବନରୁ ଆଣିବୁ ସମ୍ଭାଳି
ଦୁଷ୍ଟପୁଣେ ନ ଜାଣନ୍ତି ଧର୍ମ କେଉଁ ଭଳି ।

ରାଜାବାକ୍ୟେ ଯମନ୍ତକ ମନ୍ତ୍ରୀ ତହୁଁ ଚଳେ
ବନସ୍ତରେ କୁମାରଙ୍କ ସଙ୍ଗତରେ ମିଳେ ।
ଦୁଇଟି କୁମାର ମନ୍ତ୍ରୀ ଏହି ତିନିପ୍ରାଣୀ
ଚଳିଯାନ୍ତି ବନସ୍ତରେ ବନଚର ଜାଣି ।
ବହୁତ ଦୂର କନ୍ଦର ଗମିଲେ ଅଟବୀ
ମନ୍ତ୍ରିବର ବୋଲେ ବାବୁ ଦୂରକୁ ନ ଯିବା
କୁମରେ ମନ୍ତ୍ରୀ ବସିଲେ ଅଶ୍ୱତ୍ଥର ମୂଳେ
ସକାଳେ ବସିଲେ ତବା ବିଶ୍ରାମରବେଳେ ।
ପରୁ ଦପାଇ ଉଠିଲେ ତହୁଁ ଧାଡିକାରେ
ମନ୍ତ୍ରୀର କେଶ ଧଇଲେ ଯାଇ କୋପଭରେ ।
କୁଳବନ୍ତେ ଖଡଗକୁ ସହୁଁ ତଜ ଜାଣି
ବୋଲନ୍ତି ତୋହର ଶିର ପକାଇବୁ ହାଣି ।
ମନ୍ତ୍ରୀ ବୋଇଲା କୁମର କହ କେଉଁ ଦୋଷ
ଅକାରଣେ ମୋତେ କିପାଁ କରିବ ବିନାଶ ।
କୋପେ ବୋଲନ୍ତି ସୁମର ତୋ ଇଷ୍ଟଦେବତା
ଆବର ସୁମର ତୁମ୍ଭ ତୋର ପିତାମାତା ।
ବିକଳେ ମନ୍ତ୍ରୀ ବୋଇଲେ ଅନ୍ୟ କେ ରକ୍ଷଣ
ଧର୍ମପିତାମାତା ତୁମ୍ଭେ ତୁମ୍ଭର ଶରଣ ।
ଶରଣ ବୋଲନ୍ତେ ତହୁଁ ତାକୁ କଲେ ଦୟା
ସତ୍ୟ କରିଲେ ରଖିବୁ ତେବେ ତୋର କାୟା
ସାନନ୍ଦରେ ମନ୍ତ୍ରୀବର ସତ୍ୟବାକ୍ୟ କହି
ପ୍ରାଣେ ରକ୍ଷାପାଇ ପୁଣି କାରଣ ପୁଚ୍ଛଇ ।
କେଶ ଗୁଡ଼ ବନ୍ଧାଇଲେ ତାକୁ ସନ୍ନିଧାନ
ବୋଇଲେକ ତୋତେ କସ ତଥାଚିବୁ ଆନ
ପିତା ଆମ୍ଭର ଅଟନ୍ତି ନୃପତି ଯଯାତି
ଅନେକ କାଳଯ ଏ ସେ କଲେଣି ରାଜୁତି ।
ତାଙ୍କ ପୁତ୍ର ହୋଇ ଦୁହେଁ ହେଲୁ ବୃଦ୍ଧଅଙ୍ଗ
ଅପେକ୍ଷାରେ ଦିନ ଗଲା ହେଲୁଣି ବିଭଙ୍ଗ ।
ଏ ବୟସେ ରାଜନ ନ ହେଲୁ ବେନିଭ୍ରାତ
ଏଡେ ବଡ଼ ସୋମବଂଶ ନୋହିଲୁ ପ୍ରାପତ ।
ଦଣ୍ଡଛତ୍ର ଆବୋର ନ ହେଲୁ ରାଜ୍ୟଭୋଗୀ
ରାଜ ର କୁମର ହୋଇ ହୋଇଲୁଣି ଯୋଗୀ
ତୁ ମନ୍ତ୍ରୀ ଆମ୍ଭମାନଙ୍କୁ କରାଇବୁ ରାଜା
ଉଷ୍ମା ସଧାତେ ଯଯାତି ରାଜାକୁ ମାର ଯା ।
ତୁମ୍ଭେ ଅବା ଭୟ କରୁ ବଂଶ କଳଙ୍କରୁ
ତୁ ସପକ୍ଷ ହେବେଲ ନଷ୍ଟେ ମାରିବା ରାଜାକୁ ।

ପୃଷ୍ୟା ଅଭିଷେକ ମହାଯାଗ ଯେତେବେଳେ
ମାଣବ୍ରୁ ଯଯାତି ରାଜା ତୋର ବୁଝିବଳେ ।
ମନ୍ତ୍ରୀ ବୋଲେ ତୁମ୍ଭପିତା ବଧ ନ ସାଧିଲେ
ତୁମ୍ଭଙ୍କୁ ଏ ରାଜ୍ୟ କାହୁଁ ପ୍ରାପ୍ତ ହେବ ଭଲେ
ବୁଝିବଳେ ମନ୍ତ୍ରୀବର ବେହ ଉଷାଳସ
ନାନାବାଗେ କହି ତାଙ୍କ ପ୍ରୀତି ଜନ୍ମାଇଲ ।
ତହୁଁ ନାନା ଜୀବହତ୍ୟା କରି ପାରଧିରେ
ପୁରେ ପ୍ରବେଶ ହୋଇଲେ ଅତ୍ୟନ୍ତ ସନ୍ଧାରେ
ଯେ ଯାହାର ଇଚ୍ଛାକ୍ରମେ ଗଲେ ହେଝାଳସ୍ପେ
ଭାଳଇ ସେ ମନ୍ତ୍ରୀବର ହୃଦୟ ବିସ୍ମୟେ ।
ହୃଦୟେ ଚିନ୍ତା ପଶିଲା ଅଙ୍ଗ ହେଲା କ୍ଷୀଣ
ବେଗ ପ୍ରଳୟ ହୁଅନ୍ତେ ବପୁ ହେଲା ମ୍ଳାନ ।
ମନ୍ତ୍ରୀରୂପ ଦେଖି ନୃପ ହୁଅନ୍ତି ବିସ୍ମୟେ
ବୋଲେ ରାଜା ପୁଚ୍ଛେ କ୍ଷୀଣ କପାଁ ତୋର କାୟେ
ଉଦରେ ମନ୍ଦାଗ୍ନି ହୋଇ ବଢ଼ିଲା କି ବ୍ୟାଧି
ତୁ ମହାଧାର୍ମିକ ମନ୍ତ୍ରୀ ନ କରୁ ଔଷଧି ।
ରାଜାର ବଚନ ଶୁଣି ମୌନେ ସେହୁ ବସେ
ମିଥ୍ୟା ବାକ୍ୟରେ ରାଜାଙ୍କୁ କହୁ ନ ସନ୍ତୋଷେ
ଏହିପରି ପରବନ୍ତେ ଗଲା ମାସେକ
କହାଳ କରିଲେ ବେଳେ ଏକାନ୍ତକୁ ଘେନି ।
ମିଥୁନର କୃଷ୍ଣ ଚତୁର୍ଦ୍ଦଶୀ ଅର୍କବାର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନର ।
ବ୍ୟାଘାତ ନାମେ ଯୋଗ ଯେ ଶକୁନ କରଣ
ରାଜାମନ୍ତ୍ରୀ ଏକାନ୍ତରେ ହୋଇଲେ ମିଳନ ।
ମନ୍ତ୍ରୀ ଚିତ୍ତରେ କହିଲେ ହେବ ସତ୍ୟଭଙ୍ଗ
ଏଣେ ରାଜା ରକ୍ଷା କଲେ ହେବ ମହାପୁଣ୍ୟ
ନିଅବକାଶ ସ୍ଥାନରେ ଥାଇ ରାଜା ମନ୍ତ୍ରୀ
ମନ୍ତ୍ରୀ ବୋଇଲେ ତୁମ୍ଭେ ଶୁଣ ହେ ନୃପତି ।
ଯାହା ରହିଅଛି ତାହା ରଖନ୍ତି ଗୋପନେ
ସତ୍ୟ ଲଙ୍ଘିଅଛୁ ଏବେ ତୋ ଜୀବନ ପୁଣ୍ୟେ
ଏହା କହି ଯଯାତିର ପାଦରେ ପ୍ରଣମି
ବୋଲଇ ଯେ ବନ ପୁତ୍ରେ ହେଲେ ବନଗାମୀ
ତୁମ୍ଭେ ଆଜ୍ଞାଦେଲ ମୋତେ ଆହେ ନରସାଇଁ
ପୁତ୍ରମାନଙ୍କର ସଙ୍ଗେ ଯାଅ ବେଗ ହୋଇ ।
ତୁମ୍ଭ ଆଜ୍ଞାକ୍ରମେ ମୁହିଁ ଚଳିଲି ସହଣେ
ତୁମ୍ଭ ପୁତ୍ରଙ୍କୁ ଭେଟିଲି ଯାଇ ଘୋରବନେ ।

ଆହନଭକାଳେ ମୋତେ କଲେ ସେ କହାଳ
ହାଣିବେ ବୋଲିଣ ସେହୁ ଧଇଲେ ମୋ ବାଳ
ଶିର ଛେଦିବାକୁ ଯତ୍ନ କରିଲେ ସେ ଇଚ୍ଛା
ବଚନେ ବୋଇଲି ଦେବ ମୋତେ କର ରକ୍ଷା
ସତ୍ୟ କରାଇ ବୋଇଲେ ତୋତେ ନ ମାଣବୁ
ନୃପେ ମରାଇ ଆମ୍ଭଙ୍କୁ ରାଜା କରାଇବୁ ।
ରାଜ୍ୟଧର ଅଂଶେ ଜନ୍ମି ନ ହୋଇଲୁ କିଛି
ଆମ୍ଭେ ବୃଦ୍ଧ ହେଲୁ ପିତା ରାଜତ୍ୱ କରୁଛି ।
ଯଯାତି ମରାଇ ବେଗେ କରାଇବୁ ରାଜା
ବହୁତ ସମ୍ମାନେ ତୋତେ କରାଇବୁ ପୂଜା ।
ସ୍ୱାମି ସତ୍ୟ କଲି ମୁହିଁ ପ୍ରାଣର ବିକଳେ
ପ୍ରମାଦ ଚିନ୍ତିବ କାହୁଁ ତୋ ପାଦକମଳେ ।
ଦୁର୍ଦ୍ଧାର କୁମାର ତୋତେ ମାରି କଲେ ଇଚ୍ଛା
ଯେଉଁରୂପେ ପାର ସ୍ୱାମି ତୁମ୍ଭେ ହୁଅ ରକ୍ଷା ।
ସ୍ୱାମି ହେ ତୁମ୍ଭ ବିଷୟ ଗୁଣ ଗୁଣି ହୃଦେ
ତହୁଁ କ୍ଷୀଣ କଲି ପଡି ବିଷମ ପ୍ରମାଦେ ।
ଏହା କହି ମନ୍ତ୍ରୀବର ଗଲେ ନିକେତନ
ପୁତ୍ରଙ୍କର ମୁଖ ଚାହିଁ ବୋଲନ୍ତି ରାଜନ ।
ପୃଷ୍ୟା ଅଭିଷେକ ଦିନ ମାରିବ କପାଇଁ
ଆଜ ରାଜ୍ୟ ଦେବ କହି ପାଶରେ ବସାଇ ।
ପାଞ୍ଚ ମନ୍ତ୍ରୀ ପାତ୍ରଦଣ୍ଡି ଆଣିଲେ ହକାରି
ବୋଇଲେ ସେ ସର୍ବେ ଶୁଣ ମନଯୋଗ କରି
ରାଜତ୍ୱ କରିଲି ମୁହିଁ ହୋଇ ସୁଖଭୋଗୀ ।
ଚତୁର୍ଥ ବୟସ ମୋର ହେଲାରେ ମୁଁ ଯୋଗୀ ।
ଏହି ଯେ ପୁରୁ ପ୍ରବୀର ମୋର ପୁତ୍ର ବେନି
ତୁମ୍ଭେ ରାଜତ୍ୱ କରାଅ ବେନି ପୁତ୍ର ଘେନି ।
ସମ୍ପୂର୍ଣ୍ଣରେ ରାଜତ୍ୱ ମୁଁ କଲି ସତ୍ୟଯୁଗେ
ତ୍ରେତାଯୁଗ ଗଲା ସୋମବଂଶ ମୋର ଭାଗେ ।
ସତ୍ୟ ଲକ୍ଷେ ସହସ୍ରେକ ବର୍ଷ ଭୋଗ କଲି
ବାରଲକ୍ଷ ଛୟାଣୋଇ ତ୍ରେତାରେ ରହିଲି ।
ଲକ୍ଷେବର୍ଷ ଦ୍ୱାପରର ଗଲା ଭୋଗ ହୋଇ
ସପ୍ତାଗର ସପ୍ତଦ୍ୱୀପ ସାଧ କଲି ମୁହିଁ ।
ରାଜ୍ୟ ରକ୍ଷାପାଇଁ ଦୁଷ୍ଟଦାନବ ବିନାଶି
ତେଣୁ ହୋଇଛି ବହୁତ ମୁହିଁ ହତ୍ୟାଦୋଷୀ ।
ଅନେକ ଯେ ହତ୍ୟାଦୋଷ ଥିବାରୁ ଶରୀରେ
ଭ୍ରମଣ କରିବି ଏବେ ନାନାବିଧ ତୀର୍ଥରେ ।

ପୁରୁ ପ୍ରସାଦ ପୁତ୍ରଙ୍କୁ ଥାଇ କଲେ ରାଜା
ଜମ୍ବୁଦ୍ୱୀପ ଭରତଖଣ୍ଡେ କରାଇଲେ ପୂଜା ।
ଚତୁଁ ଦଣ୍ଡ କମଣ୍ଡଳୁ କଷା କଉପୀନେ
ଚଳନ୍ତି ଯଯାତିରାଜା ବ୍ୟାସ ତପସ୍ଥାନେ ।
ମନ୍ତ୍ରୀ ବୋଇଲା ହେ ଦେବ ଶୁଣ ମନ ଦେଇ
ଯଯାତି ରାଜ୍ୟ ଛେଡିଲେ ନିଜ ପ୍ରାଣ ପାଇଁ ।
ଦୁଇଭାଇ ଦୁଇଖଣ୍ଡେ ରାଜତ୍ୱ କରିଲେ
ଲକ୍ଷେ ସତଷଠି ବର୍ଷ ଜୀବିତ ରହିଲେ ।
ଏତେକ ପ୍ରାଣତ୍ୟାଗୀ ହେଲେ କାଳର ପ୍ରଭାବେ
ଦୁତ ନଆସନ୍ତେ ବିଷ୍ଣୁର କଲେ ଧର୍ମଦେବେ ।
ନାଶକର ବୋଲେ ତୁମ୍ଭେ ଅଟ ସୋମବଂଶୀ
ବହୁ ପୁଣ୍ୟକର ସୁଦ୍ଧା ପିତୃଦୋଷେ ଦୋଷୀ
ପିତୃବଧ କରିବାକୁ ତୁମ୍ଭେ କଲ ଇଚ୍ଛା
ପିତା ସମ୍ପଦ ହରଣେ ବଳାଇଲ ବାଞ୍ଛା ।
ମହାଗୁରୁ ମାରିବାକୁ ହେଲ ଅଭିଳାଷୀ
ଏବେ ଘୋର ନର୍କକୂପେ ପଡ଼ ହେଉଥାଅ ଧ୍ୱଂସି ।
କରନ୍ତି ବିନୟ ସେ ବେନି ସେନାପତି
ଦୁହିଙ୍କର ଭେଷ ଯାଇ ଧଇଲେ ତତ୍ପତି ।
ଧର୍ମନ୍ଲେକ ବୋଲେ ସୋମବଂଶ ଅଧିବାସୀ
ମୋକ୍ଷର କାରଣ କିପାଁ ନ କହୁ ବିସ୍ତର ।
କେତେକାଳ ପରେ ଏହୁ ହୋଇବେ ମୁକତି
ପ୍ରତିବାକ୍ୟ କହ କନା ଯମ ନରପତି ।
କୃତାନ୍ତକ ବଇବତ ବିସ୍ତର କହିଲା
ବଡ଼ ଦ୍ରୋହ କଲେ ଏହୁ କାରଣ ନୋହିଲା
ମନୁ ସାନନ୍ଦ ବୋଲିଣ ଏହାଙ୍କ ସନ୍ତତି
ତା ତହୁଁ ଦିଲୀପ ନାମେ ହେବ ଉତପତ୍ତି ।
ଦିଲୀପ ସୁତ ଦୁଷ୍ମନ୍ତ ହୋଇବ ଜନମ
ଦୁଷ୍ମନ୍ତ ସୁତ ଭରତ ହେବ ତାର ନାମ ।
ଭରତଠାରୁ ଭୂମନ୍ୟୁ ଜନମ ହୋଇବ
ଭୂମନ୍ୟୁସୁତ ବିରଥ ନାମକୁ ବହିବ ।
ବିରଥ ନନ୍ଦନ ପୁଣି ହୋଇବ ଭୂରଥ
ଶମ୍ବୂରଣ ନାମେ ଏକ ହେବ ତାର ସୁତ ।
ଶମ୍ବୂରଣ ପୁତ୍ର ହେବ କୁରୁ ନରପତି
ପାର୍ଥିବ ନାମେଣ ପୁତ୍ର ହେବ ଉତପତ୍ତି ।
ପାର୍ଥିବ ନନ୍ଦନ ନାମେ ହୋଇବେ ଶାନ୍ତନୁ
ତହିଁ ବିଚିତ୍ରବୀର୍ଯ୍ୟ ଯେ ଏହାଙ୍କର ସୂନୁ ।

ଯାହାଙ୍କଠାରୁ ଧୃତରାଷ୍ଟ୍ର ପାଣ୍ଡୁ ହେବେ ଜାତ
ପାଣ୍ଡୁ ବ୍ରହ୍ମହତ୍ୟା ଦୋଷେ ହୋଇବ ଦୂଷିତ ।
ପାଣ୍ଡୁର ନନ୍ଦନ ହେବ ଯୁଧିଷ୍ଠିର ରାଣ
ପିତାପାଇଁ ରାଜସୂୟ କରିବ ସେ ପୁଣ ।
ତାହାଙ୍କର ମହାଯଜ୍ଞ ଆରମ୍ଭଣ କାଳେ
ସତାଇଶ ବଂଶ ପାପ ହରିବ ସେ ବେଳେ ।
କାଳଞ୍ଜନ କାଳଧ୍ୱଂସ ଦୁଇ ନାମ ଧରି
ଖଟିବ ମହାଯଜ୍ଞକୁ ଯାଇଣ ତାଙ୍କରି ।
ସେ ମହାଯଜ୍ଞକୁ ତୁମ୍ଭେ ନୟନରେ ଦେଖି
ତେବେ ଯାଇ ସର୍ବପାପ ଯିବ ଧ୍ୱଂସ ହୋଇ ।
ସହଦେବ କହିଲାକ ଯୁଧିଷ୍ଠିର ପାଶ
ପୁରୁ ପ୍ରସାଦ ଅଟନ୍ତି ଆମ୍ଭ ପୂର୍ବବଂଶ ।
ମହାରାଜସୂୟ ଯଜ୍ଞ ଆରମ୍ଭଣ ଶୁଣି
ନାର୍କକୁଁ ନାଶକର ଉଦ୍ଧରଣ ଆଣି ।
ଯୁଧିଷ୍ଠିରେ ବୋଇଲେ ସହଦେବ ଯା ଯା
ବଂଶର ପିତୃଲୋକଙ୍କୁ କର ଯାଇ ପୂଜା ।
ଅନେକ ପୂଜା ତାହାଙ୍କୁ କରିଲେ ଯୁଧିଷ୍ଠି
ଗତ ଦୋଷ ନିମନ୍ତେ ସେ ରାଜସୂୟ ଖଟି ।
ଶୁଣ ହୋ ପଣ୍ଡିତ ଜନେ ସୁପୁତ୍ରଙ୍କ କଥା
ପିତୃଲୋକେ ଖଟିଥାନ୍ତି ହୋଇଣ ବଶ୍ୟତା ।
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧାରୀ
ଜୟ ହେ ଚକାନୟନ ଦୁଃଖୀ ଦୁଃଖହାରୀ ।
ଜୟ ବସୁଦେବ ସୁତ ଜୟ ବାସୁଦେବ
ଶରଣ ରକ୍ଷଣ ନାଥ ରାଧିକା ବଲ୍ଲଭ ।
କର ହେ ଉଦ୍ଧାର ମୋତେ ଡାକୁଛି ଆରତେ
ରବଇ ଶାରଳା ଦାସ ସଦା ହୃଦଗତେ ।

---

## ମୟଦାନବ ସଭାରେ ଯୁଧିଷ୍ଠିରଙ୍କର ଉପବେଶନ, ଯଜ୍ଞର ଅନୁକୂଳ ଓ ଯେ ଯେଉଁ କାର୍ଯ୍ୟରେ ଦକ୍ଷ ତାହାକୁ ସେହି ସେହି କାର୍ଯ୍ୟରେ ନିଯୋଗ ଏବଂ ଶାଢ଼ୀ ପ୍ରଦାନ

ପୁଣି ପଚାରିଲେ ଯାଇ ମନୁ ଯୁଗପତି
ଅଗସ୍ତିଙ୍କ ପଦ୍ମପାଦେ କରିଣ ଭକତି ।
ରାଜସୂୟ ମହାଯଜ୍ଞ କରିଲେ ସୂଚନା
ପୁଣି କେଉଁକୃତ୍ୟ କଲେ କୃଷ୍ଣ ମହାମନା ।

ଏସନ୍ତ କଥା ଶୁଣି ତନୁ କରନ୍ତ ମୁକତ
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ ।
ମୟ ଦାନବକୁ ଧ୍ୟାନେ ଚିନ୍ତିଲେ ଅଚ୍ୟୁତ
ମହାସଭା ଯେଣେ ଇନ୍ଦ୍ରପ୍ରସ୍ଥେ ଉପସ୍ଥିତ ।
ପଞ୍ଚାଶ ସେନା ଆଣନ୍ତି ତାକୁ ମୁଣ୍ଡେ ଧରି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସର୍ବ ଦଣ୍ଡ୍ୟାସୀ ।
ଶ୍ରୀରାଜସିଂହଙ୍କ ସଭା ଈଶାନ୍ୟର ଆଡ଼େ
ପଞ୍ଚାକୂଳସ୍ଥିତ ଧର୍ମଗିରି ପଞ୍ଚବାଡ଼େ ।
ଆକାଶ ସଭାକୁ ସ୍ଥାପ୍ୟାମଣ୍ଡପର ତଳେ
ଖୋଇଲା ମୟଦାନବ ଅତି ଶୁଭବେଳେ ।
ଦେଖି ମୋହିତ ହୋଇଲେ ସର୍ବ ନରପତି
ବୋଇଲେ ଧନ୍ୟ ଯୁଧିଷ୍ଠିର ତୋ ଆଶ୍ଚର୍ଯ୍ୟ ସ୍ଥିତି
ତୋର ମହିମାରୁ ପୁଣି ଆମ୍ଭ ପୁଣ୍ୟବଳେ
ଶ୍ରବଣେ ଯା ଶୁଣିଥିଲୁ ଦେଖିଲୁ ତା ଡୋଳେ
ସତ୍ୟ ତ୍ରେତୟା ଦ୍ୱାପର କଳି ଆଦି କରି
ଏମନ୍ତ ଚାରିଯୁଗେ ହୋଇ ନ ଥିଲା ଏପରି ।
ମନୁଷ୍ୟ ଦେଖିବା କଥା କପାଇଁ ପଚ୍ଛର
ଦେବଗଣଙ୍କୁ ଏ ସଭା ଅଟେ ଅଗୋଚର ।
ଆଶ୍ଚର୍ଯ୍ୟ ହୋଇ ବୋଲନ୍ତି ଦେଖି ଧର୍ମରାୟ
ମୋତେ ଅଗୋଚର ହରି କଲେ ଯେ ବିଷୟ ।
କର ଯୋଡ଼ିଣ ବୋଲନ୍ତି ପ୍ରଭୁ ଚକ୍ରପାଣି
ସ୍ଥାପ୍ୟାମଣ୍ଡପକୁ ଯିବେ ସର୍ବ ନୃପମଣି ।
ମୟଦାନବ ସଭାରେ ବସିବେ ଆପଣ
ତହିଁ ଦର୍ଶନ କରିବେ ସର୍ବ ରାଜାଗଣ ।
ଭୂ ପବନନନ୍ଦନ ଥିବ ଦେବ ତୋର କୋଳେ
ଭୂ ପବନ ସୁତ ଥିବ ପାଦଙ୍କର ତଳେ ।
ତହିଁ ପାଦଙ୍କର ତଳେ ସହଦେବ ମନ୍ତ୍ରୀ
ଭୂତ ଭବିଷ୍ୟତ କହୁଥିବ ବଦାଗତ ।
ତା ପାଦଙ୍କ ତଳେ ଥିବ ନକୁଳ କୁମର
ଅଭିଷେକ ଯୋଗାଡ଼କୁ ଧରିଥିବ କର ।
ତା ପାଦଙ୍କ ତଳେ ଥିବ ବୀର ଫାଲଗୁନ
ଭୁଜେ ଥିବ ଲକ୍ଷେବଳ ଗାଣ୍ଡିବକୁ ଘେନ ।
ତୋତେ ବା ଯେବଣ ରାଜା ହେବ ଅମାନତ
କର୍ଣ୍ଣକଟାରରେ ତାକୁ ଛେଦିବ ଭରତ ।
ଉପରେ ତିନି ପାଦଙ୍କ ତଳର ତଳରେ
ଦର୍ଶନ କରାଇବି ମୁଁ ରାଜାଙ୍କୁ ସେଠାରେ ।

ସ୍ୱାମି ଏ ବଚନ ସଭା ଦାନବ ନିର୍ମାଣ
ଚିହ୍ନର କଣ୍ଟକ ବୋଲି ଏହାକୁଟି ଜାଣ ।
ସ୍ୱାମି ଏହା ବାଡ଼େ ଚିହ୍ନ ବଚନ ଲେଖନ
ଜଳସ୍ଫଟିକ ପଥର ଏକାଇ ନିର୍ମାଣ ।
ବୋଲନ୍ତି ଧର୍ମନନ୍ଦନ କୃଷ୍ଣଙ୍କ ବଚନେ
କେତେବେଳେ ଦେଖାହେବେ ସର୍ବ ରାଜାମାନେ
ଗୋବିନ୍ଦ ବୋଇଲେ ଶାଢ଼ୀ ଦ୍ରୋଣେ ବସ ଧରି
ବୃଦ୍ଧ ଋଷୀଙ୍କ ଅଲ୍ପରେ ହେଉ ଅଧିକାରୀ ।
ନାରାୟଣଙ୍କ ବଚନେ ଦେବ ଧର୍ମସୁତ
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ଚଳିଲେ କୁରିତ ।
ଉତ୍ତମଣିର ମୁକୁଟ ବାହୁଟି କଙ୍କଣ
ଚତୁଃସମ ନାନା ପୁଷ୍ପ ପଟ୍ଟବସ୍ତ୍ରମାନ ।
ନାନା ଆଭରଣେ ଦ୍ରୋଣେ ପାଦପୂଜା କରି
ଶତ ପ୍ରଣିପାତ ହେଲେ ପାଦରେ ତାଙ୍କର ।
ବୋଇଲେ ତୁମ୍ଭେ ମୋ ଗୁରୁ ଦ୍ୱିଜକୁଳେ ମୁଖ୍ୟ
ବ୍ରାହ୍ମଣଙ୍କ ଚରଣାଳେ ହୁଅନ୍ତୁ ପରୀକ୍ଷ ।
କୃପାଚାର୍ଯ୍ୟ ଅଶ୍ୱତ୍ଥାମା ତାହାଙ୍କ ସହିତେ
ଚରଣାନକୁ ବନ୍ଦନ କଲେ ତୋଷଚିତ୍ତେ ।
ଦ୍ରୋଣ ସହିତରେ ବିଜେ କଲେ ବାସୁଦେବେ
ଶେଷ ଶାଳକୁ ଦେଖାନ୍ତି ନେଇ ଠାବେ ଠାବେ
ଚୂଲିକାରେ ଶଏ ସଖା ଦ୍ୱିଜ ତିନ ତିନ
ନଇତିକରେ ନିବଧ ରନ୍ଧଣାକୁ ଘେନ ।
ଏମନ୍ତରୂପେ ଦେଖାଇଲେ ନେଇ ଦାମୋଦର
ସୁବର୍ଣ୍ଣ ଯୋଗାଡ଼ ପୂର୍ଣ୍ଣ ସକଳ ମନ୍ଦିର ।
ନଉତି କୁଣ୍ଡାଇ ପୁଣି ତେଲ୍ଲଣି ମାଠିଆ
ସବୁ ସୁବର୍ଣ୍ଣେ ନିର୍ମାଣ କଲେ ଯଦୁନାହା ।
ଦେଖିଣ ଆଶ୍ଚର୍ଯ୍ୟ ଚିତ୍ତ ହେଲେ ଦ୍ରୋଣଗୁରୁ
ବୋଇଲେ ଜଗତ୍ତାରଣ କୃଷ୍ଣ ଏକା କରୁ ।
ଦ୍ରୋଣଙ୍କର ମୁଖଚାହିଁ ବଦନ୍ତି କେଶବ
ବେଷାଇ ବିଧିବିଧାନ ଶୁଣ ଏବେ ସର୍ବ ।
କୋଟି କୋଟି ନଳନିଧି ଏହି ତିନି ସ୍ଥିତ
ବୋହିବ ପ୍ରସଙ୍ଗେ ସବୁ ଅମୃତ ହୁଅନ୍ତୁ ।
ଏହା କହି ଧ୍ୟାନ କଲେ ବୋହିବ ବଦନ
ଦ୍ୱିଜରୂପେ ବିଜେ କଲେ ଅମୃତକୁ ଘେନ ।
ପୁଣି ସୁମରଣା କଲେ ପ୍ରସଙ୍ଗେ ହିଙ୍ଗୁଳା
ବିଜେ କଲେ ମାହେଶ୍ୱରୀ ଦେବୀ ମହାଖଳା ।

ସେବନ୍ତ ଶ୍ରୀନାରାୟଣ ହିଙ୍ଗୁଳାର ପାଦେ
ବୋଇଲେ ଏ ମହାଯଜ୍ଞ ହୁଏ ତୋ ପ୍ରସାଦେ
ପ୍ରସନ୍ନ ହେଲେ ହିଙ୍ଗୁଳା କୃଷ୍ଣଙ୍କ ବଚନେ
ବୋଲେ ଯଜ୍ଞ ଶେଷଯାଏ ଥିବି ଏହି ସ୍ଥାନେ ।
ଅକାଟିଲ ଅବାଟିଲ ଯୋଗାଡ ସହିତେ
ସୁଧା ହୋଇଥିବ ପାକ କରିବ ଯେ ଯେତେ ।
ଗଉସା ଶଉରୀ ନଳ ରନ୍ଧଣାର ବିଧି
ବୋହରି ପ୍ରସନ୍ନେ ହେବ ସେ ସମସ୍ତ ସିଦ୍ଧି ।
ଗୌରୀ ଯେହ୍ନେ ପାକକରି ଦିଅନ୍ତି ଶିବଙ୍କୁ
ସଉସ୍ୱଶ ଯେଉଁରୂପେ ଦ୍ୟନ୍ତି ଶ୍ରୀବିଷ୍ଣୁଙ୍କୁ ।
ସେହିପରି ସମ୍ପାଦିଲେ ସର୍ବ ରାଜସୂୟ
ଯାହା ପ୍ରସନ୍ନରେ କଲେ ପ୍ରଭୁ ଦେବରାୟ ।
ବଦନ୍ତି ଶ୍ରୀଜଗନ୍ନାଥ ଯୁଧିଷ୍ଠିର ଅଗ୍ରତେ
ସ୍ୱାମି ଶୀଘ୍ରେ ଶାଢ଼ୀ ଦେବେ ସର୍ବର ସଖାତେ ।
ସେହି ସବଶାଳେ ଯାଇ ହେଲୁ ଅଧିକାରୀ
ସମସ୍ତ ରନ୍ଧଣାମାନ କରନ୍ତୁ ବିସ୍ତର ।
କ୍ଷତ୍ରୀବର୍ଗ ଛନ୍ତି ସର୍ବରାଜାଙ୍କ ସଇନ
ଶାସ୍ତ୍ର ସମ୍ପାଦିଲେ ସ୍ୱାଙ୍କୁ ଦିବସ ରଜନୀ ।
ଶୁଣି ଶାଢ଼ୀସେନ ଧର୍ମ ଅର୍ପିଲେ କୁରୁତେ
ଗାଙ୍ଗେୟ ବାନ୍ଧିଲେ ନେଇ ତାହା ନିଜ ମାଥେ
ସବଶାଳାରେ ପରଚ୍ଛ ହେଲେ ଧୃଷ୍ଟରଥୀ
ମନଜାଣି ଅନ୍ନ ଦେବ କହନ୍ତି ଶ୍ରୀପତି ।
ଜଣେ ଯେବେ ଅନ୍ନାଭାବେ ତୃପତ ନୋହିବ
ତେବେ ପଣ୍ଡୁ ବ୍ରହ୍ମହତ୍ୟା ପାପ ନ ହୋଇବ ।
ଏଥିରୁ ଜଣେ ଯଦ୍ୟପି ନ ପାଇବ ଅନ୍ନ
ତେବେ ମସ୍ତକ ଚ୍ଛେଦିବ ମୋ ଦୃଢ ବଚନ ।
ଶାଢ଼ୀପାଇ ଧୃଷ୍ଟଦେବ ଗଲେ ସବଶାଳେ
ଦଶଲକ୍ଷ ସୁପକାର ଏହାଙ୍କର ତୁଲେ ।
ବିବିଧ ଭିଆଣ କରି ଦେବ ଦେଲେ ସଞ୍ଚ
ଜଣେ କେହି କେଉଁରୂପେ ନ ପାଇବ ବାଞ୍ଛ ।
ସଭଙ୍କୁ ଶାଢ଼ି ଦ୍ୟାଇଲେ ଯୁଧିଷ୍ଠିଙ୍କ ହାତେ
ଭୁରିଶ୍ରବା ସୋମଦତ୍ତ ବାହ୍ଲିକ ସହିତେ ।
ଉତ୍ତମ ରାଜବଂଶୀୟ ଯୋଦ୍ଧା ଅଶୀ ଖର୍ବ
ଏମାନଙ୍କୁ ସେନ କ୍ରମେ ଅନ୍ନ ପରଷିବ ।
ସେହୁ ଯେତେବେଳେ ଆସି ମାଗୁଥିବ ଅନ୍ନ
କୃପକରି ଦେଉଥିବ ସମସ୍ତ ରାଜନ ।

ଷୋଳସହସ୍ର ଗୋପ ଯେହୁ ଆପଣାର ସଙ୍ଗ
ସେ ମାନଙ୍କୁ ଆଜ୍ଞା ଦେଲେ ଦେବ ଶିରିଅଙ୍ଗ ।
ଗୋଦୋହନ କରି ଘରେ ସେ କ୍ଷୀର ସମସ୍ତ
ସବଶାଳେ ନେଇ ତାହା ଦେଉଥିବ ନିତ୍ୟ ।
ଏହା କହି ଶାଢ଼ୀ ଦେଲେ ଶ୍ରୀହସ୍ତେ ଶ୍ରୀହରି
ଆଣନ୍ତି ଗୋପାଳମାନେ ଦୁଗ୍ଧ ଘରକରି ।
ଏକ ସ୍ୱେଷଘରେ ଦୁଗ୍ଧ ସହସ୍ରେକ ଘର
ସ୍ୱେଷଘର ଅଛୁ ପଦ୍ମ ଆବର ପନ୍ଦର ।
ଘରକେ ସହସ୍ରେ ଘର କ୍ଷୀର ଦେଲେ ଆଣି
ପରର୍ବେ ପନ୍ଦର ଖର୍ବ ଲେଖା ପରମାଣି ।
ଖଣ୍ଡଧେନୁ ଦୋହନରେ ଘରେକ ଉଠଇ
ଏମନ୍ତେ ସହସ୍ରଘରକୁ ଅଟେ ଲକ୍ଷେ ଗାଈ ।
ଦଶଲକ୍ଷ ପନ୍ଦର ଯେ ମେବନ୍ତ ସମ୍ପାଦେ
ବଶକ୍ଷୌଣୀ ପଞ୍ଚବଶ ପଦ୍ମଧେନୁ ହାବେ ।
ଲେଖ ହୋ ସୁବୁଦ୍ଧି ଜ୍ଞାନୀ ଆବର ପଣ୍ଡିତେ
ରନ୍ଧଣାର ଯୋଗାଡ଼କୁ ଦୁଗ୍ଧ ହେଲା ଯେତେ
ତେତିଶ ମହାଖୁଣ୍ଡ ଯେ ଗାଈଙ୍କର ମେଳ
ଏକାଦଶ ପଦ୍ମ ପୁଣି ଚହ୍ନିକ ଗୋପାଳ ।
କଳ୍ପଳୀ କାଳା ଶାମଳା କେହି ବା ଧବଳ
ଦଂଶପୁ ସମୁଦ୍ର ପ୍ରାପ୍ୟେ ଦଶନ୍ତି ଗୋକୁଳ ।
ପୁଣି ବଶ ଅଇବ୍ରାତ ଘର ପରମାଣ
ଦଧି ଦୁଗ୍ଧ ଅଥାମ ଯେ ପର୍ବବାକୁ ଆଣି ।
ଏହିରୂପେ କହିବ ମୁଁ କେତେ ଧରମାଣି
ଲେଖିବାକୁ ଶକ୍ତି ନାହିଁ ମୁହିଁ ମୂର୍ଖପ୍ରାଣୀ ।
ଲକ୍ଷେ ରାଜାଙ୍କର ଅଟେ ଅସଂଖ୍ୟ ସଇନ
ସମ୍ଭବରେ ଆଣିଛନ୍ତି ଆଟର ପଲ୍ଲଣି ।
ଗଙ୍ଗା ଯମୁନାର ମଧ୍ୟେ ମନ୍ତ୍ରପାଦ ରଚି
ବାରଯୁଣ ଦୀର୍ଘପ୍ରସ୍ଥ କରି ଯଜ୍ଞ ସଜ୍ଜ ।
ସେହି ଭୂମି ଅଟଇ ସେ ଯୋଜନର ସ୍ଥଳୀ
କରିଥିଲେ ଯଜନ କଲେ ଯାହା ବନମାଳୀ ।
କଣତ ରାଜା ଅଟଇ ବନ ଅଧିପତି
ଗଙ୍ଗାକୂଳେ କାଠ ଆଣି କୁଢ଼ାଏ ସେ ନିତି ।
ହରିଣ ବରାହ ଗଣ୍ଡା ସମ୍ବରାଦି ଜୀବ
ବହୁଯୋଦ୍ଧା ସେନ ଆସେ ଜରତେଶ ଦେବ
ନିଷାଦ ରାଜା ଅଟଇ ଜାତିରେ କୈବର୍ତ୍ତ
ଗଙ୍ଗାରେ ନାବ ଚଳାଏ ମର୍ତ୍ତ ମର୍ତ୍ତ ।

ଆକାଶ ଗଙ୍ଗାରେ କୃଷ୍ଣ ଆଜ୍ଞା ପରମାଣେ
ନାବ ଲଗେ ଯାଇ ଇନ୍ଦ୍ର ନନ୍ଦନର ବନେ ।
ଲୋକାଲୋକ ବୋଲି ଅଛି ଯେଉଁ ପର୍ବତ
ତାହା ପଚ୍ଛରେ ଲଗାନ୍ତି ନେଇ କଇବର୍ତ୍ତେ ।
ଇନ୍ଦ୍ରଙ୍କର ନବଲକ୍ଷ ତୋଟାଳିଆମାନେ
ତକ୍ଷଣେ ନାବରେ ଆଣି ପୁରାନ୍ତି ବହନେ ।
ନଡ଼ିଆ ପଣସ ରମ୍ଭା ପୁଣି ଚୂତଫଳ
ଟଭା ନାରଙ୍ଗ ଜମ୍ବୀର ଲେମ୍ବୁ କଣ୍ଟୋଳ ।
ପୁଣି ବ୍ୟଞ୍ଜନ ଯୋଗାଡ଼ ସର୍ବ ପଦାର୍ଥକୁ
ଇନ୍ଦ୍ର ତୋଟାଳିଆ ଦ୍ୟନ୍ତି କୈବର୍ତ୍ତ ରାଜାକୁ
ନିଖର୍ବ ନବଅର୍ବୁଦ ନାବମାନ ଭଡ଼ି
ଇନ୍ଦ୍ରପ୍ରସ୍ଥେ ପ୍ରବେଶନ୍ତି ସେ ନାବରେ ଚଢ଼ି ।
ନାବେ ଫଳମାନ ଭରି ଆଣେଇ ସୁବାହୁ
ଆଳୁ ସାରୁ କନ୍ଦଳ ଯେ ନାନାଜାତି ତହୁଁ ।
ନାରାୟଣଙ୍କ ବଚନେ ହିଙ୍ଗୁଳା ପ୍ରସଙ୍ଗେ
କ୍ଷଣକେ ସିଝଇ ସବୁ ଅମୃତ ସମାନେ ।
ପରବା ପିଠଉ ଲୁଣ କେସର ସଜାଡ଼ି
ଘୃତଯୋଗେ ଏକାବେଳେ ହଟନ୍ତି ଯୋଗାଡ଼
ହାଣ୍ଡି ପୂରଇ ତକ୍ଷଣେ ଚୁଲିରେ ଜାଳିଲେ
କ୍ଷଣକେ ଅମୃତ ହୁଏ ବୋହବ ତନ୍ତିଲେ ।
ଏ ରନ୍ଧଣା ଗୋଟି ଗୋଟି ପୁଣି ନଳ ବିଧି
ବିନା ପଦ୍ମେ ପାକ ହୁଏ ହୋଇଣ ସସିଦ୍ଧି ।
ମକର ମାସର ଶୁକ୍ଲ ପ୍ରତିପଦା ତିଥି
ଶତଭିଷା ନକ୍ଷତ୍ରର ଚତୁର୍ଥ ପାଦେଟି ।
ରବିବାର ଶୁଭବେଳ ଲଗ୍ନେ ଶୁଦ୍ଧ ସ୍ଥିତି
ବିଂସୁଘ୍ନ କରଣ ବଣିସ୍ଥାନ ଯୋଗସ୍ଥିତ ।
ଲଗ୍ନେ ଚନ୍ଦ୍ରମା ବିକ୍ଷେପ ସ୍ଥାନେ ବୃହସ୍ପତି
ଅମୃତ ବେଳ ଯେ ଶନି ବୃଷପୁରେ ସ୍ଥିତି ।
ଏକାଦଶେ ରାହୁ ରହି ଜନ୍ମଘରେ ଶଶୀ
ସବୁ ଅନୁକୂଳ କଲେ ବ୍ୟାସ ମହାଋଷି ।
ନିତ୍ୟକର୍ମ ଆଦି ସାରି ନୃପ ଦେବଧର୍ମ
ବିଜୟ କରିଲେ ଯାଇ ଯଜ୍ଞର ଆଶ୍ରମ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତ
କୃଷ୍ଣାଜିନରେ ବସିଲେ ଯୁଧିଷ୍ଠି ଅଗ୍ରତ ।
କୁଶହସ୍ତ ହୋଇକରି ଦେବ ଯୁଧିଷ୍ଠିର
ସେ ମଧ୍ୟ ବସିଲେ କୃଷ୍ଣାଜିନର ଉପର ।

ସୁବର୍ଣ୍ଣ ଘଟେ ପୂରାଇ ସର୍ବତୀର୍ଥ ପାଣି
ପୁଷ୍କର ଦେବତା ତାହା ଯୋଗାଇଲେ ଆଣି ।
ଡାହାଣ ବର୍ତ୍ତିକ ଶଙ୍ଖ ନେଇ ଯବତିଳ
ସଙ୍କଳ୍ପ କଲେ ପ୍ରୋହିତ ବାକ୍ୟ ଦେଶକାଳ ।
ଯଥାବାକ୍ୟ ବେଦଶାସ୍ତ୍ର ବିଧିର ପ୍ରମାଣେ
ବଶିଷ୍ଠଦେବା ସନକାଦି ବ୍ରାହ୍ମଣ ବରଣେ ।
ଅଗ୍ନିକୁ ବରଣ କଲେ ତନ୍ତ୍ରି ମହାଯାଗେ
ଅର୍ପିଣ ସଙ୍କଳ୍ପ କଲେ ଯଥା ଶାସ୍ତ୍ରଯୋଗେ ।
ବରଣ ସାରି ଆସ୍ଥାନେ ବିଜେ କଲେ ଧର୍ମ
ସ୍ଥମୂରେ ଆସି ଜଣାନ୍ତି ଶ୍ରୀପୁରୁଷୋତ୍ତମ ।
ସ୍ୱାମି ଚତୁର୍ଦ୍ଦିଗ ବାହ୍ମ ଅଇଲେ ରାଜନେ
ଦର୍ଶନ କରିବେ ସେହୁ ବହୁ ଅର୍ଥଦାନେ ।
ଅନେକ ସମ୍ପଦ ଘେନି ଦେବ ଧର୍ମରାୟ
ମୟ ଦାନବ ସଭାରେ କରିଲେ ବିଜୟ ।
ବୋଲେ ବସାଇଲେ ନେଇ ଦେବୀ ଯାଜ୍ଞସେନୀ
ଅଗ୍ନିରୁ ଜାତ ପଞ୍ଚାଳ ରାଜାର ନନ୍ଦିନୀ ।
ଆକାଶ ଅଭିଷେକଇ ଯେତେ ଅଳଙ୍କାର
କୁବେର ଭୂଷଣ କଲା ଅଷ୍ଟାଙ୍ଗ ଶରୀର ।
ଅମ୍ଳାନ ବସନ ପୁଣ ଦେବପୁଷ୍ପମାନ
ଯୁଧିଷ୍ଠି ଦେବଙ୍କ ଶିରେ ଦେଲେ ମଘବାନ ।
ଅନେକ ଯେ ଆଭରଣମାନ ଆଣି ଶଚୀ
ଦ୍ରୌପଦୀ ଦେବୀ ଶରୀରେ ତାହା ନେଇ ରଚି
ରାଜାଙ୍କ ଉଠିବାପାଇଁ ସେ ତେର ପାବଚ୍ଛ
ପାବଚ୍ଛ ତଳେ ରଚିଲେ ମାଦ୍ରୀଦେବୀ ବସ୍ତ୍ର ।
କରେ ଘେନିଅଛି ଭୂତ ଭବିଷ୍ୟତ ପୋଥି
ଗତ ଆଗତ କହଇ ଉଭା ହୋଇ ତଥି ।
କନକ ବିଧେଶ୍ରୀ ଛତ୍ର ଧରଣି ନକୁଳ
ରହି ଅଛଇ ସେ ବେଳ ପାବଚ୍ଛର ତଳ ।
ଭୃଙ୍ଗାସ୍ତ୍ର ପାବଚ୍ଛ ତଳେ ବିଜେ ଫାଲଗୁନ
ଅନେକ ବେଶ ଭୂଷଣେ ଗାଣ୍ଡୀବକୁ ଘେନି ।
ଅନନ୍ତ ପଡ଼ିହାରୀରୂପେ ଜଗନ୍ନାଥ
ଦଶମ ପାବଚ୍ଛ ତଳେ ହୋଇଲେ ସେ ସ୍ଥିତ ।
ଦୁର୍ଯ୍ୟୋଧନେ ଶାଢ଼ୀ ବନ୍ଧ ବୋଇଲେ ଶ୍ରୀହରି
ଭଣ୍ଡାର ନାୟକ ହେଉ ଧନେ ଅଧିକାରୀ ।
ଭୁଇଁ ଛୁଇଁଣ ଯୁଧିଷ୍ଠି କର୍ଣ୍ଣେ ଦେଲେ ହସ୍ତ
ବୋଇଲେ ନଷ୍ଟ କରିବ ମୋ ଧନ ସମସ୍ତ ।

ଯନ୍ତତ ସୋଦର ମୋର ସେ ମାନଗୋବିନ୍ଦ
ତାଳେ ଦେଖି ନ ପାରଇ ସୋଦର ସମ୍ପତ ।
ଅଲ୍ପ ବ୍ୟୟସ୍ଥଳେ ବହୁବ୍ୟୟ ଦେବ କରି
ଭଣ୍ଡାରେ ନ ଥିଲେ ଧନ କେଉଁ କାର୍ଯ୍ୟପାରି ।
ସ୍ୱାମୀ ଅନାତ୍ମଶୀ ଭାର୍ଯ୍ୟା ଆଶ୍ରିତ ଜନ
ଅସାଧ ମଇତ୍ର ପୁଣି ସୁହୃଦ ବାନ୍ଧବ ।
ଅବିଶ୍ୱାସୀ ସହୋଦର ହୃଦୟ ଅଚେତା
ଆବର ଦୁର୍ଜ୍ଜନ ଭ୍ରାତା ଅନାତ୍ମଶୀ ମାତା ।
ଏତେଙ୍କର କୁଳେ ହରି ପ୍ରୀତି ନ କରିବା
ଏହାଙ୍କୁ ବିଶ୍ୱାସ କରି ଭାର୍ଯ୍ୟା ନ ଅର୍ପିବା ।
ଏହାଙ୍କର ଗୋଚରରେ ସମର୍ପିଲେ ଧନ
କାର୍ଯ୍ୟଭ୍ରଷ୍ଟ ହୋଇ ଜାଣ ହୁଏ ଅପମାନ ।
ଯୁଧିଷ୍ଠିରଙ୍କର ଏହି ନସ୍ତୁ ଉତା ଶୁଣି
ହସନ୍ତେ ବୋଲନ୍ତି ତହୁଁ ଦେବ ଚକ୍ରପାଣି ।
ସ୍ୱାମି ଭଣ୍ଡାରଧିକାରୀ ହୋଇ ଦୁର୍ଯ୍ୟୋଧନ
ତାର ଶକ୍ୟ ଅନୁସାରେ କରୁ ବିତରଣ ।
ତହିଁକି କହୁ ନ ଭଲ ଅଛୁ ଦିବ୍ୟବୁଦ୍ଧି
ପଣ୍ଡିତ ନାରାୟଣ ତା କରେ ଶଙ୍ଖନିଧି ।
କୃଷ୍ଣ ବଚନେ ଡାକିଲେ ତହୁଁ କାଳଞ୍ଜନ
ବୋଇଲେ ତୁମ୍ଭକୁ ଆଣ ରାଜା ଦୁର୍ଯ୍ୟୋଧନ ।
ଯୁଧିଷ୍ଠିରଙ୍କ ବଚନେ ସେହି ପ୍ରତିହାରୀ
ଆଜ୍ଞାକ୍ରମେ ଚଳେ ଦୁର୍ଯ୍ୟୋଧନକୁ ହକାରି ।
ବୋଇଲା ତୁମ୍ଭକୁ ଆସ କୃଷ୍ଣେ ଏହିକ୍ଷଣି
ଭଣ୍ଡାରନାୟକ ହେବ ଆଜ୍ଞା ପରମାଣି ।
ଶୁଣି ଶକୁନ ବଦନ କହେ ମହୀପାଳ
କେବଣ ଚରିତ ପ୍ରାପ୍ତ ମଣିଲୁ ମାତୁଳ ।
ଶକୁନ ବୋଇଲା ଶାଢ଼ୀ ଆଣ ବେଗକରି
ଯୁଧିଷ୍ଠିର କାର୍ଯ୍ୟ ନଷ୍ଟେଁ ହେବ ଅପହାସ ।
ଘରେ ଆଜ୍ଞା ଦେଲେ ତାଙ୍କୁ ଦଶଗୁଣ ଦେବୁ
ତା ଭଣ୍ଡାର ଧ୍ୱଂସ ହେବ ତୁ ଯଶ ଅର୍ଜିବୁ ।
ଧନ ଅଭାବରେ ନଷ୍ଟେଁ ଧର୍ମ ହେବ ହାନି
ରାଜନ ଏ ମହାଯାଗ ନଷ୍ଟେଁ ଥାଅ ଘେନି ।
ଶକୁନିର ବଚନରେ ଚଳେ ଦଣ୍ଡଧାରୀ
ଯୁଧିଷ୍ଠି ତୁମ୍ଭକୁ ଆସେ ମନେ ମାୟା ଧରି ।
ଶ୍ରୀହସ୍ତେ ଶାଢ଼ୀ ଘେନିବୁ ତେବେ ଧର୍ମ ସୁତେ
ଦୁର୍ଯ୍ୟୋଧନେ ଉଆଇନ୍ତି ପିତୃକାର୍ଯ୍ୟ ଅର୍ଥେ ।

ବୋଲନ୍ତି ରାଜାମାନଙ୍କ ଦରଶନୀ ଯେତେ
ସମସ୍ତ ସମ୍ଭାର ତାଙ୍କୁ ସମର୍ପିଲି ତୋତେ ।
ନାରାୟଣଙ୍କର ଆଜ୍ଞା ହେବ ଯେଉଁମତେ
ବିତରଣ ଧନ ଦେବୁ ଯେ ଯେଜନମତେ ।
ଯୁଧିଷ୍ଠିରଙ୍କର ବଚନେ ସେ ମାନଗୋବିନ୍ଦ
ଅବଧାରି ଶାଢ଼ୀ ଦେଲା ହୋଇଣ ଆନନ୍ଦ ।
ନବଲକ୍ଷ ଯୋଦ୍ଧା ପୁଣି ରଖିଲେ ଗହଣେ
ବାହନ ଭଣ୍ଡାର ହେଲା ପଞ୍ଚସ୍ଥିରପଣେ ।
ମଥାରେ ଶାଢ଼ୀ ବାନ୍ଧିଣ ଦେବ କୁନ୍ତିନାଥେ
ଭଣ୍ଡାରକୁ ଆଦେଶିଲେ ଆପଣାର ସ୍ୱାର୍ଥେ ।
ଶକୁନ ଗାନ୍ଧାରସେନ ନୃପତିର ବନ୍ଧା
ଅଶ୍ୱମାନଙ୍କର ହାଦେ ହୋଇଲା ପରିସ୍ଥ ।
ଯୁଧିଷ୍ଠିର ଅଜ୍ଞା କଲେ ଶୁଣ ତୁ ମାତୁଳ
ଅଶ୍ୱବିଦ୍ୟା ଯୋଗେ ଅଶ୍ୱ ଭଲେ ଚିତ୍ତପାଳ
ଯେତେ ପରିମାଣେ ଲାଗେ ଘାସ ଚଣା କରି
ସମସ୍ତଙ୍କୁ ଦେବୁ ମାମୁଁ ମନ ତୁଷ୍ଟକରି ।
ମାମୁ ମୁଳେ ଦୁର୍ଯ୍ୟୋଧନ ଅଠାଣୋଇ ଭାଇ
ଅଶ୍ୱ ଗଜ ପରୀକ୍ଷକ ହୋଇଲେ ସେ ଯାଇ ।
ଯୁଧିଷ୍ଠିରଙ୍କୁ ଜଣାଇଲେ ଶ୍ରୀକୃଷ୍ଣ ଆପଣେ
ଦୁଃଶାସନେ ଶାଢ଼ୀ ଦିଅ ରତିବୁଲପଣେ ।
ଦେବତା ଦୈତ୍ୟ ପିଶାଚ ହେଉଛନ୍ତି ମେଳ
ରହିଛାନ୍ତିରେ ସେ ପୃଷ୍ଠ ନ କରନ୍ତୁ ଗୋଳ ।
ଦୁର୍ଜ୍ଜନ ପ୍ରକୃତି କାରେ ନ ଥାଏ ପ୍ରତୀକ୍ଷା
ଯାହାର ବଳେ ଏ ନଶା ହୋଇପାରେ ରକ୍ଷା ।
ତହୁଁ କାଳଞ୍ଜନ ଆଣେ ଦୁଃଶାଙ୍କୁ ହକାରି
ଶ୍ରୀହସ୍ତରେ ଶାଢ଼ୀ ଦେଲେ ଧର୍ମ ଅଧିକାରୀ ।
ବୋଇଲେ ଲକ୍ଷେକ ରାଜା ପୁଣି ତାଙ୍କ ଦଳ
ଅନୁକ୍ଷଣେ ହେଉଅଛୁ ଅତି ମହାଗୋଳ ।
ପୁଣି ଛନ୍ତି ଦୁଷ୍ଟରାଜା ମହା ମହାବେଗୀ
ତୋହର ଦର୍ପେ ସେମାନେ ହୋଇଯିବେ ସାଧୁ
ତିନଶଲକ୍ଷ ଯୋଦ୍ଧା ଏ ଥିବେ ତୋର କୁଳେ
ଶିର ଛେଦିବୁ ମା ଆଜ୍ଞା ଅବଜ୍ଞା କରିଲେ ।
ତାଡ଼ ଝୁମ୍ପା ବାହୁଟି ଯେ ପୁଣି ଜଗଦ୍ବଳା
ଶିରରେ ମୁକୁଟ ଦେଲେ ଗଳେ ରତ୍ନମାଳା ।
ଦୁଃଶାସନ ନଜେ ଶିରେ ଶାଢ଼ୀ ବାନ୍ଧିକରି
ପର୍ଶୁରାମ ତେଜ ପ୍ରାୟେ ଦର୍ପ ଦେଲା କରି ।

ଯୁଧିଷ୍ଠିର ପଚାରନ୍ତେ ଶୁଣ ଜନାର୍ଦ୍ଦନ
ଏ ମହାସଭା ଶାନ୍ତରେ ରହିବ କେସନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମସୁତ
ଭୀମସେନେ ଆଜ୍ଞା ଦେବା କରିବେ ସେ ଶାନ୍ତ
ଯୁଧିଷ୍ଠି ବୋଇଲେ ତହୁଁ ଶୁଣ ଦେବହର
ଜାଣିଲ ରଜାଙ୍କୁ ରାଗ ଅଛଇ ତୋହର ।
ଅନୁରୂପେ ଦୁଷ୍ଟ ସେହୁ ଅଟେ ମନ୍ଦପ୍ରାଣୀ
ସେ କି ବଶରବ ଭଲ ମନ୍ଦ ଚକ୍ରପାଣି ।
କାହିଁକି ଦେ ଷଣ୍ଢଙ୍କୁ ଯେହୁ ଦିଏ ଦଣ୍ଡ ଘାରି
ସେହି କେମନ୍ତେ ଜାଣିବ ସମ୍ମାର୍ଜନା କରି ।
ହକାର ବୋଳିଲେ ତାର ଘେନଯାଏ ପ୍ରାଣ
ସେହୁ ସମ୍ମାର୍ଜିଲେ କାହିଁ ଥିବେ ରଜାଗଣ ।
ଏମନ୍ତ ଦୁଷ୍ଟଙ୍କୁ ସଭା ସମର୍ପ କେସନେ
ଅନୁକ୍ଷଣେ ଦୁଷ୍ଟକଥା ପାଞ୍ଚୁଥାଇ ମନେ ।
ଶ୍ରୀକୃଷ୍ଣ ବୋଇଲେ ଏହୁ ଅଟେ ମହାସଭା
ଅନ୍ୟରେ ନବର୍ତ୍ତି ନୁହେ ମନରେ ବୁଝିବା ।
ସର୍ବଦା ତାହାଙ୍କୁ ଭୟ କରୁଥାନ୍ତି ଜନ
ତାହା ହାତ ନଷ୍ଟେଁ ହେବ ସଭା ସମାର୍ଜନ ।
ନାରାୟଣଙ୍କ ମୁଖରୁ ଏହି ବାକ୍ୟ ଶୁଣି
ଅନେକ ସାନନ୍ଦ ହେଲେ ଧର୍ମ ନୃପମଣି ।
ସହଦେବର ପାଚ୍ଛେ ଭୀମସେନ ଥିଲା
ସଭା ସମାର୍ଜନା ଶାଢ଼ୀ ମଥାରେ ବାନ୍ଧିଲା ।
ଶ୍ରୀବତ୍ସଲାଞ୍ଛନ ପୀତବାସ ପରିଧାନ
ନବଘନ ଶ୍ୟାମରୂପେ ଚନ୍ଦ୍ରମା ବଦନ ।
ଶ୍ରୀପଦ୍ମଲୋଚନ ତାଙ୍କ ସୁରଙ୍ଗ ଅଧର
ହୃଦେ କଉସ୍ତୁଭ ମଣି ଅତି ଶୋଭାକର ।
କଣ୍ଠେ କୁଣ୍ଡଳ ସବୁ ଜଗଜ୍ଜନ ମୋହେ
ହସ୍ତେ ସୁବର୍ଣ୍ଣ ବଳୟ ଅଳଙ୍କାର ଦହେ ।
ରତ୍ନର ତାଡ଼ ବାହୁଟି କଟିରେ ମେଖଳା
ପାଦପଦ୍ମରେ ନୂପୁର ହୃଦେ ରତ୍ନମାଳା ।
କୋଟି କନ୍ଦର୍ପର ରୂପେ ଅତି ଶୋଭାବନ
ସୁନ୍ଦର ମୂରତି ପୂର୍ଣ୍ଣ ପ୍ରସନ୍ନ ବଦନ ।
ସୁବର୍ଣ୍ଣର ଯୋଡ଼ା ବେତ କରେ ଶୋଭାବନ
ସେ ରୂପ ବର୍ଣ୍ଣି ଲେଖିବ କା ଲେଖନୀ ମୁନ ।
ଦେବ ଦିଗପାଳ ଯକ୍ଷ କିନ୍ନର ଗନ୍ଧର୍ବ
ସାଧକ ମୁନୀନ୍ଦ୍ର ନୃପ ଆଦି କରି ସର୍ବ ।
ସମସ୍ତେ ପରମାନନ୍ଦ କୃଷ୍ଣ ମୁଖ ଦେଖି
ମାନସେ କରନ୍ତି ପୂଜା ମନେ ମନେ ଧ୍ୟାୟି ।
ଗଦଗଦେ ଅଶ୍ରୁ ବହି ତାଙ୍କେ ରୋମାବଳୀ
ସ୍ତୁତି କରି ଠିଆ ହୋନ୍ତି ହୋଇ କୃତାଞ୍ଜଳି ।
ଧନ୍ୟ ଧନ୍ୟ ସେହି ଯାଗ ଧନ୍ୟ ଧର୍ମସୁତ
ଧନ୍ୟ ସେହି ରଜା ଧନ୍ୟ ପରଜା ସମସ୍ତ ।
ଯେବଣ ରାଜ୍ୟେ ବିଜୟ ଦେବ ଜଗନ୍ନାଥ
ସେ ରାଜ୍ୟ ମହିମା କେହି କହି କି ସାମର୍ଥ ।
ହେ ପ୍ରଭୁ ସେ ଦେଶ ଜନ ପଶୁ ପକ୍ଷୀଙ୍କର
ପାଦରଜ ପଡୁ ମୋର ମସ୍ତକ ଉପର ।
ମୋହର ସପ୍ତପୁରୁଷ ମୁକ୍ତିଲାଭ ହେଉ
ଦୟାନିଧି ନାମ ତାର ଚିରକାଳ ଥାଉ ।
ଶ୍ରୀଜଗନ୍ନାଥ ସ୍ୱାମୀଙ୍କ ପାଦେ ପ୍ରଣାମି
ଶାରଳାଦାସ କହଇ ଉଦ୍ଧର ହେ ସ୍ୱାମୀ ।

---

## ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ରାଜାମାନଙ୍କର ଦର୍ଶନ, ଜମାଗୋଷ୍ଠୁ ରାଜାର ମୁକ୍ତି, ବିରାଟ ରାଜା ନ ଆସିବାରୁ ଶ୍ରୀକୃଷ୍ଣଙ୍କ କୋପ ଏବଂ ଅନ୍ଧ ନୃପତିଙ୍କୁ ଚକ୍ଷୁଦାନ

ଏଥୁଅନ୍ତେ ପଚାରନ୍ତି ମନୁ ମହାରଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟପୂଜା ।
ନିବେଦନ ଶୁଣ ମୋର ଆହେ ମୁନିବର
ଆସିଥିଲେ ସେ ସ୍ଥାନକୁ ସର୍ବ ନୃପବର ।
କେଉଁରୂପେ ହେଲା ଦେଖା ଦରଶନ ତହିଁ
ସେହି କଥା ଶୁଣିବାକୁ ମାନସ ବଳଇ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ
ଯେଉଁରୂପେ ହେଲା ତାହା ନାନାବିଧ ରହସ୍ୟ ।
ସହଦେବ ପ୍ରତି ଆଜ୍ଞା ହେଲା ଯେଉଁପରି
କାଳଞ୍ଜନ ଡଗରକୁ କହିଲେ ହକାରି ।
ତୁମ୍ଭେ ଏବେ କହ ଯାଇ ସହଦେବ ଆଗେ
ପୂର୍ବରଜାଙ୍କୁ ଦର୍ଶନ କରାଉ ସେ ବେଗେ ।
ଆଜ୍ଞାପାଇ ଚଳିଗଲେ ଦୁଇ ପ୍ରତିହାରୀ
ସହଦେବଙ୍କୁ ବାରତା ଦେଲେ ଯାଇକରି ।
ପୂର୍ବର ଦୁଆରେ ଥିଲେ ମନ୍ତ୍ରୀ ଚୂଡ଼ାମଣି
ରଜାଙ୍କୁ ଆଜ୍ଞା ହୋଇଲା ଆସନ୍ତୁ ଏକ୍ଷଣି ।

ମନ୍ତ୍ରୀ ଆଜ୍ଞାରେ ଉଠିଲେ ପୂର୍ବ ରାଜାମାନେ
ଏହିକାଳେ ବିଜେ କଲେ ଦେବ ଜନାର୍ଦ୍ଦନେ
ଉଧିବାମନ ସୁନ୍ଦର ଶୁଭ ଅନୁକୂଳେ
ବାହାରିଲେ ପୂର୍ବରାଜା ଅତି କୁତୂହଳେ ।
ପୂର୍ବଦ୍ୱାରେ ଦ୍ୱାରପାଳ କୁମର ପ୍ରଦ୍ୟୁମ୍ନ
ତାଙ୍କୁ ପଚାରିଲେ ଯାଇ ଦେବ ଜନାର୍ଦ୍ଦନ ।
ବାବୁ ରେ ଦ୍ୱାର କୁ ଛାଡ଼ ରାଜାମାନେ ଯିବେ
ସଭାର ମଧ୍ୟେ ସ୍ୱାମୀଙ୍କ ଦର୍ଶନ କରିବେ ।
ମଙ୍ଗଳ ଶୁଭକୁ ଧରି ରୁକ୍ମିଣୀର ବାଳ
ଅମୃତ ଯୋଗେ ଛାଡ଼ିଲା ସର୍ବ ମହୀପାଳ ।
ଆସ୍ଥାନରେ ବସିଛନ୍ତି ମହାରାଜା ଧର୍ମ
ରାଜଦର୍ଶନ କରନ୍ତି ଶ୍ରୀପୁରୁଷୋତ୍ତମ ।
ସର୍ବ ରାଜାଏ ସମ୍ମୁରେ ହେଲେ ପରଣାମି
କୃଷ୍ଣ ବୋଲନ୍ତି ଏ ପୂର୍ବଦିଗ ରାଜା ସ୍ୱାମି ।
ଜଡ ଶ୍ରୀମହାପ୍ରସାଦ ବୋଲି ଅବଧାରି
ବୋଇଲେ ଆସ୍ଥାନେ ବସ ସର୍ବ ଦଣ୍ଡଧାରି ।
ସର୍ବ ରାଜାଏ ସେଠାରେ କଲେ ବହୁସ୍ତୁତି
ନିରାକାର ପୁରୁଷ କୁ ଯୋଗାରୂଢ଼ ମୂର୍ତ୍ତି ।
ସଭ ରମ୍ୟା ମଣ୍ଡପର ପୂର୍ବଭାଗ ସ୍ଥାନ
ସମାର୍ଜ୍ଜିଣ ବସାଇଲେ ଦେବ ଜନାର୍ଦ୍ଦନ ।
ଏଥୁ ଅନନ୍ତରେ ପୃଷି କୁମାର ନକୁଳ
ଦକ୍ଷିଣ ଦ୍ୱାରେ ପ୍ରବେଶ ସେନ ତାଙ୍କ ବଳ ।
ଶ୍ରୀସମ୍ମୁରେ ଜଣାଇଲେ ଦେବ ଜଗନ୍ନାଥ
ନକୁଳ ଆଣେ ଦର୍ଶନେ ଦକ୍ଷିଣ ରାଜାନ୍ତ ।
ଆଣୁ ବୋଲି ଆଜ୍ଞା ଦେଲା ଜଣାନ୍ତି ସମ୍ମୁରେ
ତହୁଁ ବାସୁଦେବ ଗଲେ ଅତ୍ୟନ୍ତ ବେଗରେ
ଶ୍ରୀକୃଷ୍ଣଙ୍କୁ ଦେଖିକରି ସକଳ ନୃପତି
ସର୍ବରାଜା ତାଙ୍କ ପାଦେ ହୋଇଲେ ପ୍ରଣତି ।
ବହୁ ଭକ୍ତିକରି ବିଜେ ହେଲେ ସର୍ବରାଜ୍ୟେ
ନାରାୟଣଙ୍କ ଦର୍ଶନେ ପାପ କଲେ କ୍ଷୟେ ।
ପ୍ରଭୁ ଯେଉଁ ବେଦକଥା କର୍ଣ୍ଣେ ଥିଲେ ଶୁଣି
ଚକ୍ଷୁରେ ଦେଖିଲୁ ସେହିରୂପେ ପରମାଣି ।
ରାଜାମାନଙ୍କୁ ବଦନ୍ତି ତହୁଁ ବାସୁଦେବ
କୋଟିଜନ୍ମ ମୁକ୍ତ ହେବ ଯୁଧିଷ୍ଠିରଙ୍କୁ ସେବ ।
ମୁହିଁ ଭୃତ୍ୟପଣେ ଖଟେ ଯା ଚରଣ ତଳେ
ଶୁଣିଣ ଆଶ୍ଚର୍ଯ୍ୟ ହେଲେ ସର୍ବ ମହୀପାଳେ ।

ଗଡକ୍ରମରେ ଗୋବିନ୍ଦ ଆଜ୍ଞା ଅବଧାରି
ଦ୍ୱାର ଛାଡ଼ ରାଜା ଯିବେ ଦରଶନ କରି ।
ନାରାୟଣଙ୍କ ଆଜ୍ଞାରେ ଛାଡ଼ ଦେଲେ ଦ୍ୱାର
ସାତସହସ୍ର ରାଜା ନେଲେ ନକୁଳ କୁମର ।
ରାଜାମାନେ ଯାଇ ଚର୍ଚ୍ଚି କଲେ ଛଡଗ୍ରନ
ଭର ଯୋଡଣ ବୋଲନ୍ତି ଚର୍ଚ୍ଚି ବନମାଳୀ ।
ସ୍ୱାମି ଦକ୍ଷିଣ କୋଣରେ ଏ ସର୍ବ ନୃପତି
ନକୁଳ କୁମାର ଯାଙ୍କ ଆଣିଲା ଜନମନ୍ତି ।
ଦେଖିଣ ସାନନ୍ଦ ହେଲେ ଯୁଧିଷ୍ଠିର ଦେବେ
ବୋଇଲେ ରାଜା ବସନ୍ତୁ ଯେ ଯାହାର ଠାବେ
ସମସ୍ତ ରାଜାମାନଙ୍କୁ ସେନ ଦେବହରି
ଯେଝା ଆସ୍ଥାନେ ବସାନ୍ତି ଗଉରବ କରି ।
କାଳଞ୍ଜନ କାଳଧ୍ୱଂସ ଉଗର ବସ୍ତ୍ରରେ
ଦେଖା ଦରଶନ ଦେଲେ ଦୁର୍ଯ୍ୟୋଧନଠାରେ
ପୂର୍ବ ଦକ୍ଷିଣ ଦିଗର ଯେତେ ଧନମାନ
ଯନ୍ତ୍ରବନ୍ଧ ଭଣ୍ଡାରରେ ରଖେ କୁରୁବାନ ।
ଏଥିଅନନ୍ତରେ ତୁମ୍ଭେ ଶୁଣ ମନୁରାଜ
ପଶ୍ଚିମ ରାଜାଙ୍କୁ ସେନ ପବନ ଆତ୍ମଜ ।
ଶାମ୍ବ କୁମରକୁ ଯାଇ ପୃଛିଲେ ବଚନ
ଦ୍ୱାର ଛାଡ଼ ଠାକୁରଙ୍କ କରିବୁ ଦର୍ଶନ ।
ଶାମ୍ବ ବୋଲେ ଠାକୁରଙ୍କ ନ ହୋଇଲା ଆଜ୍ଞା
ମୋ ବଳେ କି କରିପାରେ ସେ କଥା ଅବଜ୍ଞା
ତାଙ୍କ ଆଜ୍ଞା ହେଲେ ଛାଡ଼ି ପାରିବି ମୁଁ ଦ୍ୱାର
ଶୁଣି ସ୍ତମ୍ଭୀଭୂତ ହେଲା ପବନ କୁମର ।
ଉତ୍ତର ଦିଗ ରାଜନ୍ୟ ସହସ୍ର ରାଜନ
ସେନ ଉତ୍ତର ଦ୍ୱାରରେ ବିଜୟେ ଅର୍ଜ୍ଜୁନ ।
ଯୁଧିଷ୍ଠି ସମ୍ମୁରେ ଯାଇ କହିଲେ ଶ୍ରୀହରି
ସ୍ୱାମି ଅର୍ଜ୍ଜୁନ ଆସିବେ ଦରଶନ କରି ।
ଯୁଧିଷ୍ଠି ବୋଇଲେ ଦେବ ପଚ୍ଛୁ କାହାକୁ
ରାଜାଙ୍କୁ ସେନ ଅର୍ଜ୍ଜୁନ ଆସୁ ମୋ ସମ୍ମୁକୁ ।
ଶୁଣି ସାନନ୍ଦ ହୋଇଲେ ଜଗତମୋହନ
ଉତ୍ତର ଦ୍ୱାରକୁ ବିଜେ କରିଲେ ବହନ ।
ଆପଣା ରଥୁ ଓହ୍ଲାଇ ବୀର ଫାଲଗୁନ
ଜଗନ୍ନାଥ ପାଦତଳେ କରଇ ବଇଲା ।
ଦେଖିଲେ ଯେ ଜମାଗୋଷ୍ଠ ବନ୍ଧା ଅଛୁ ରଥେ
ଅର୍ଜ୍ଜୁନକୁ କୋଳ କଲେ ଦେବ ଜଗନ୍ନାଥେ ।।

ଅର୍ଜୁନ ବଚନ ଶୁଣି ବୋଲନ୍ତି ଶ୍ରୀହରି
ଏ କେଉଁ ଦେଶ ରାଜାଙ୍କୁ ଆଣୁ ବାନ୍ଧିକରି ।
କର ଯୋଡ଼ିଣ କହଇ ସେ ପାଣ୍ଡବ ଶ୍ରେଷ୍ଠ
ସ୍ୱାମି ଏ ଉତ୍ତରଦିଗ ରାଜା ଜମାଗୋଷ୍ଠ ।
ଯା ମହିମା ତ୍ରୈଲୋକ୍ୟରେ ଅଟଇ ପ୍ରଚଣ୍ଡ
ଯା ନାମ ଲେଖି ପୋତଇ ହୁଡଉଚାର ମୁଣ୍ଡ ।
ମୋହର ସମସ୍ତ ସୈନ୍ୟ ଏହୁ ନାଶ କଲା
ଉତ୍ତର ସ୍ୱାମି ଏ ଦୁଷ୍ଟ କ ଦୋଷ ନ କଲା ।
ଶ୍ରୀ ନାରାୟଣ ବୋଲନ୍ତି ଶୁଣ ପାଉମଣି
ବ ବୁ ଜମାଗୋଷ୍ଠ ବନ୍ଧା ଫେଡ଼ ଏହିକ୍ଷଣି ।
ସଖା ସମ ଜିବା ଶାଢ଼ୀ ନେଲା ଭୀମସେନ
ଏ କଥା ଶୁଣିଲେ ତାର ଯେଜନ ଜୀବନ ।
ଦଣ୍ଡଦୋଷ ଏହାର ଯେ କରିବାକ କ୍ଷମା
ଅଜ୍ଞାନରେ ଦୋଷ କଲା ତାହା ନ ଘେନମା ।
ନାରାୟଣ ଅର୍ଜୁନଙ୍କୁ ବହୁତ ବୁଝାଇ
ଜମାଗୋଷ୍ଠଙ୍କୁ ବନ୍ଧନୁ ଆଣିଲେ ଫିଟାଇ ।
ନାରାୟଣଙ୍କ ମୁଖରୁ ଏ ବଚନ ଶୁଣି
ରଜାଏ କରିଲେ ହାସ ଶିବକୁଳ ଜାଣି ।
ଆଗେ ବାସୁଦେବ ପଛେ ଗଲେ ଫାଲଗୁନ
ମଧ୍ୟେ ଲକ୍ଷଣ ସହସ୍ର ରଜାଗଣ ଘେନ ।
ଉତ୍ତର ଦ୍ୱାରରକ୍ଷକ ସତ୍ୟଶ୍ରମା ସୁତ
ତାହାଙ୍କୁ ପୁଚ୍ଛନ୍ତି ଯାଇ ଦେବ ଜଗନ୍ନାଥ ।
ଶ୍ରୀକୃଷ୍ଣ ବୋଲନ୍ତି ତାଙ୍କୁ ଦ୍ୱାର ଛାଡ଼ ବାବୁ
ରଜାନ୍ତ ନେଇ ଠାକୁରେ ଦେଖା କରାଇବୁ ।
ସତ୍ୟବଣିକ କୁମର ନାମ ସତ୍ୟସେନ
ଛାଡ଼ିଲା ଦ୍ୱାର ପଶିଲେ ଜଗତ ମୋହନ ।
ଦେଖା ଦରଶନୀ ଧନ ଭଦେଇ ଅଛି ପୁର
ରଜାଙ୍କୁ ନେଇ ଦର୍ଶନ କରନ୍ତି ଶ୍ରୀହରି ।
ସ୍ୱାମି ଉତ୍ତର ରଜାନ୍ତ ଆଣିଲା ଅର୍ଜୁନ
ସ୍ୱାମି ହେ ଜଣକ ପାଇଁ ହେବ ସାବଧାନ ।
ଲକ୍ଷଣ ସହସ୍ର ନୃପ ପାଦେ ପଡ଼ଣାମି
ବୋଇଲେ ବହୁ ସୁଫଳ ଅର୍ଜିଲୁ ହେ ସ୍ୱାମି ।
ଜୀବନ ସୁଫଳ ଆଜ ଦେଖିଲୁ ଯୁଧିଷ୍ଠି
ବଂଶର ସୁଫଳ ରାଜସୂୟ ଯଜ୍ଞ ଖଣ୍ଟି ।
ଜୀବନ ସୁଫଳ ଆଜ ଦେଖି ଜଗନ୍ନାଥ
ଜୀବନ ସୁଫଳ ଋଷି ଦେଖିଲୁ ସମସ୍ତ ।

ବହୁ ବିନୟେ ବୋଲନ୍ତି ତହିଁ ରଜାମାନେ
ଯୁଧିଷ୍ଠିରଦେବ ବୋଇଲେ ବସ ଯା ଆସ୍ଥାନେ ।
ପରମ ସାନନ୍ଦ ହେଲେ ସ୍ୱାମୀବାକ୍ୟ ଶୁଣି
ଉତ୍ତର ଦିଗେ ବସିଲେ ସର୍ବ ନୃପମଣି ।
ଘୋବନ୍ଦ ପଚ୍ଛିଲେ ପୁଣି ଧର୍ମ ସନ୍ନିଧାନେ
ତିନ ଦିଗରୁ ପ୍ରବେଶ ହେଲେ ରଜାମାନେ ।
ବ୍ୟାସ କୁଲେ ଜଗନ୍ନାଥ ଯାଇ ହେଲେ କଥା
ସଂକ୍ଷେପି କହିଲେ ରଜାମାନଙ୍କ ବାରତା ।
ତେବେ ବ୍ୟାସ ତିନିଦିଗରୁ ଅଇଲେ ରଜନ
ପଶ୍ଚିମର ରଜା ଘେନି ଅଛି ଭୀମସେନ ।
ବ୍ୟାସ ବୋଇଲେ ଶୁଣିବା ଦେବ ନରହରି
ମାୟାରେ ମାନବରୂପେ ଅଛ ଅବତରି ।
ସମସ୍ତ କୁଶଳ ପ୍ରଭୁ ତୁହି ପରମାଣୁ
ଭୂତ ଭବିଷ୍ୟତ ବାର୍ତ୍ତା ତୁହି ସର୍ବଜାଣୁ ।
ସବୁ ରଜାଙ୍କୁ ଦର୍ଶନ କରାଇବୁ ଆଣି
ଏକା ବିରାଟେ ନ ନେବ ଆହେ ଚକ୍ରପାଣି ।
ଅଖିଳ ଭୁବନନାଥ ଆହେ ହୃଷୀକେଶ
ଯୁଧିଷ୍ଠିରଙ୍କୁ କଥାଏ ହୋଇବ ଅବଶ୍ୟ ।
ଅଜ୍ଞାତବାସ ପାଣ୍ଡବେ ହୋଇବେ ଗୋପନ
ନଷ୍ଟପୁରେ ଜାଣିଥାଅ ବର୍ଷେ ତେରଦିନ ।
ପାଣ୍ଡବ ଅର୍ଦ୍ଧୋଳି ସହିବାକୁ କେହୁ କ୍ଷମ
ବିରାଟ ରାଜ୍ୟେ ଗୋପନ ହେବେ ଦେବଧର୍ମ ।
ବିରାଟ ଏକା ସହିବ ଏହାଙ୍କ ଆର୍ଦ୍ଧୋଳି
ସତ୍ୟରୁ ପାର ହୋଇବେ ଯେଣୁ ଧର୍ମବାଳ ।
ବିରାଟ ନ ଦେଖି ଯେବେ ଧର୍ମଙ୍କ ନନ୍ଦନ
ସେହିପରି କରାଇବ ଦେଖା ଦରଶନ ।
ତୁହି ସଂସାର ତାରଣ ଦେବ ଅନ୍ତର୍ଯ୍ୟାମୀ
ଏଥିକୁ ବିଚାର ବୁଦ୍ଧି କର ଦେବସ୍ୱାମି ।
ସମସ୍ତ ରଜା ଘେନିଣ ଭୀମସେନ ଆସୁ
ଏକା ସେ ବିରାଟ ରଜା ଭିତରେ ନ ପଶୁ ।
ବିରାଟ ଯେ ଶ୍ୱେତରଜା ଥିଲା ସତ୍ୟଯୁଗେ
ମହାସନ୍ଧ୍ୟାରେ କରିଲା ସେହୁ ମହାଯାଗେ ।
ପୃଥିବୀ ବାଣ୍ଟି ସମୁଦ୍ର ହୋଇଲାକ ସତ
ବଶିଷ୍ଠ ଯେ ଯାଗନକ ହେଲେ ବ୍ରହ୍ମାସୁତ ।
ମେଷମାନେ ହେଲେ ସ୍ୱାହା ଆବର ପ୍ରୋକ୍ଷଣି
ଘୃତ ସମୁଦ୍ରରୁ ଘୃତ ବରଷିଲେ ଆଣି ।

ମୂଷଳଧାରେ ବର୍ଷିଲେ ସେହୁ ବଜ୍ରାଘାତ
ବ୍ରହ୍ମାଣ୍ଡରେ ଉଛୁଳିଲା ଅନଳର ଜ୍ୟୋତ ।
ଶ୍ଳେତେ ଘୃତକୁ ଭକ୍ଷିଲେ ତହିଁ ଲୋହିତାକ୍ଷ
ଲୁଦ୍ରବୃଦ୍ ମହାବ୍ୟାଧି ଲଭିଲେ ପ୍ରତ୍ୟକ୍ଷ ।
ସତ୍ୟ ସତର ଲକ୍ଷ ଅଠେଇଶସହସ୍ର ଥାଇ
ରହିଲେ ବହ୍ନି ଦେବତା ବ୍ୟାଧିଗ୍ରସ୍ତ ହୋଇ ।
ତ୍ରେତୟା ଯୁଗ ଏମନ୍ତ ଭାବେ ବହିଗଲା
ବୈଶ୍ୱାନରଙ୍କ ମନ୍ଦାଗ୍ନି ଗ୍ରାସଂ ଯେ ନୋହିଲା ।
ଦ୍ୱାପରରେ ଆଠଲକ୍ଷ ଭବଦ ଲୁଦ୍ରବୃତ
ଅର୍ଜୁନ ଖାଣ୍ଡବ ବନ ଖଣ୍ଡିଲା ଆପଦ ।
ସେହି ଶ୍ୱେତରାଜା ଏହି ଅଟଇ ଜଗତ
ମଣ ମତ୍ସ୍ୟ ଦେଶ ଅଟେ ଏହା ମହାବସ୍ତୁ ।
ଏମନ୍ତ କହିଲେ ଯହୁଁ ବ୍ୟାସ ମହାଯତି
ଦୁର୍ଲ୍ଲଭ କୃତ୍ୟ ବୋଲିଣ କହିଲେ ଶ୍ରୀପତି ।
ସ୍ୱବର୍ଣ୍ଣର ଯୋଡବେତ ଶୋଭଇ ହସ୍ତରେ
ଶ୍ରୀଅନନ୍ତ ପଡ଼ିହାରୀ ଚଳିଲେ ହରିବର ।
ପ୍ରବେଶ ହୋଇଲେ ଯାଇଁ ପଶ୍ଚିମ ଦୁଆରେ
ସେହି ଠାବରେ ଭେଟିଲେ ଭୀମ ସହିତରେ ।
ଗୋବିନ୍ଦଙ୍କୁ ଦେଖିକରି ହରଷ ଭୀମସେନ
ଶ୍ରୀଭୁଜରେ କୋଳାଗ୍ରତ କଲେ ଜନାର୍ଦ୍ଦନ ।
ବୋଇଲେ ବହୁତ ବିଳମ୍ବ କରି ଭୀମସେନ
ଅଇଲେଟିକ ତୋହର ସବୁ ରାଜାମାନ ।
ଭୀମବୋଲେ ସ୍ୱାମି ମହାଦୁରାପଦ ଭୂମି
ଏକମାଷକ ଦୃଷ୍ଟ ନ ଆସିଲା ସ୍ୱାମି ।
ଶୁଣିକରି କୋପକଲେ ଦେବକୀର ବାଳ
ବୋଇଲେ ତୁ ଯାଇନାହୁଁ ସବୁ ଦୁର୍ଜ୍ଜନ ।
ଏତେବଡ ରାଜା ତୋର ନଲାଗିଲା ଦରଷ୍ଟ
ଯାବତ କଥାକୁ ଘଣ୍ଟ ତୁହି ମୂର୍ଖ ଦୁଷ୍ଟ ।
ଏହା କହି କରେ ଚକ୍ର ଧଇଲେ ଶ୍ରୀବତ୍ସ
ଭୟେ ଭୀମସେନ ଗଲା ବହୁଦୂର ଘୁଞ୍ଚି ।
ଭୀମସେନ ବୋଲେ କୋପ ନ କର ଶ୍ରୀହରି
ଏକ୍ଷଣି ଦେବ ଦରଷ୍ଟ ବାନ୍ଧ ଆଣିକରି ।
ଗୋବିନ୍ଦ ବୋଇଲେ ଖାଡ଼ୀ ରହିଛି ତୋହର
ଏହିକ୍ଷଣି ଦେଖୁ ସଭା ସମାର୍ଜ୍ଜନାକାରୀ ।
ଯେବେ କ ନଇଲା ସେହୁ ପଛ ହୋଇ ଆସୁ
ବିଉଣା ପଞ୍ଚ ସହସ୍ର ରାଜାସଙ୍ଗେ ବସୁ ।

ଭୀମସେନ ବୋଲେ ଦେବ ସନ୍ଧ ନ ପାଇଲି
ବଜ୍ରଗିରିଦେଶୁଁ ନୃପ ବୃତାକୁ ମାଇଲି ।
ବିଉଣା ପଞ୍ଚାଶସହସ୍ର ରାଜାଙ୍କୁ ଆଣିଛୁ
ଶୁଣି ମନରେ ଦୁଃଖିତ ହୋଇଲେ ଶ୍ରୀବତ୍ସ ।
ଆମ୍ଭେ ଯୁଧିଷ୍ଠିରଙ୍କ କୁଳେ ହୋଇଲୁ ଅଜ୍ଞାନୀ
ନିମନ୍ତ୍ରଣେ ପଠାଇଲୁ ତୋତେ ଜାଣିଶୁଣି ।
ଏତେକ ଆଣିଲୁ ଯାହା ଷଣ୍ଡ ରାଜା ଭାଗ୍ୟ
ଭୀମସେନ ବୋଲେ ଦେବ କପାଁ କର ରାଗ
ସେ ରାଜାର ସୈନ୍ୟ ସର୍ବେ ସାତ ଅକ୍ଷୌହିଣୀ
ଯେବଣ ରାଜାକୁ ଦେବ ପକାଇଲି ହାଣି ।
ତାର ବହୁ ଧନରତ୍ନ ଆଣିଅଛୁ ରଥେ
ସୁବର୍ଣ୍ଣର ଏକରାଜା ଗଢ଼ିବା ନିମନ୍ତେ ।
ଭୀମସେନ ବଚନରେ ହସି ଚକ୍ରପାଣି
ବୋଇଲେ ଆସନ୍ତୁ ରାଜା ବୁଝିବା ଯେ ଗଣି ।
ରାଶି ପଞ୍ଚାଶ ସହସ୍ର ତିନିଗୁଣା ରାଜ
ସେନା ଭିତରେ ପଶିଲେ ପବନ ଆତ୍ମଜ ।
ଦେଖା ଦଇଶମୀ ସେନ ରାଜା ସଙ୍ଗ ଭୀମ
ଦର୍ଶନ କଲେ ଭଜସ୍ୱ ଯହିଁ ଦେବ ଧର୍ମ ।
ଶହସ୍ର ଦଳ ଲୋଚନ ଯେସନ୍ତେ ପୁରନ୍ଦର
ସେହି ସ୍ୱରୂପ ଦିଶଇ ପବନ କୁମର ।
ରାଜାମାନଙ୍କୁ ବହୁତ ସମାଦର କରି
ଯଥା ଯୋଗ୍ୟ ଆସନରେ ବସାଇଲେ ହରି ।
ଯୁଧିଷ୍ଠିରଙ୍କ ଆସନକୁ ଚାହିଁ ନରପତି
ଧନ୍ୟ ଧନ୍ୟ କହି ସର୍ବେ ପ୍ରଶଂସା କରନ୍ତି ।
ଶୁଣି ବୋଲନ୍ତି ସୁଫଳ ହେଲା ଆମ୍ଭ ଆଖି
ଯୁଧିଷ୍ଠିରଙ୍କ ବଦନକୁ ବେନ ନେତ୍ରେ ଦେଖି ।
ମର୍ତ୍ତ୍ୟଭୁବନେ ଏ ଗ୍ରସ୍ୱା ମଣ୍ଡପର ତଳେ
ସ୍ୱର୍ଗ ତେଜଣ ଝଳେକ ଅମର ମଣ୍ଡଳେ ।
ବିଶେଷରେ ଏଥେ ଛନ୍ତି ଦେବ ଯଦୁନାଥ
ଦିଶୁଛି ବୈକୁଣ୍ଠ ତୁଲ୍ୟ ଦେଖାଯାଏ ଏତ ।
ରୋଗ ଶୋକାଦି ଖଣ୍ଡଇ ଦେଖି ଯେଉଁ ସଭା
ସମସ୍ତ ଦୁଃଖ ହରିଲେ ଦେଖି ରାଜଦେବା ।
ଦେଖି ଦେଖି ଶ୍ରଦ୍ଧା ଆଉ ତୃପ୍ତ ନ ପାରନ୍ତି
ଖିଆପିଆ ପାସୋରିଲେ ସକଳ ନୃପତି ।
ଶୁଣି ବୈବସ୍ୱତ ମନୁ କହନ୍ତି ଅଗସ୍ତି
ସୋମଦତ୍ତ ନାମେ ସୋମବଂଶ୍ଚ ନରପତି ।

ଭୃଗୁଋଷି ଶାପେ ଅନ୍ଧ ହେଲା ସେ ସ୍ୱଜନ
ସେ ସଙ୍ଗକୁ ଆସିଥିଲେ ପାଇ ନିମନ୍ତ୍ରଣ ।
ତେଡ଼େବଡ଼ ମହାପାପ ତାର ଗଲା ମେଣ୍ଟି
ଦିବ୍ୟ ଚକ୍ଷୁପାଇ ତାର ଫିଟିଗଲା ଦୃଷ୍ଟି ।
ଜୟ ବାସୁଦେବ ଅନ୍ଧେ ଦେଲ ଚକ୍ଷୁଦାନ
ଜୟ ଜୟ ପଦ୍ମନାଭ ଦାରିଦ୍ର୍ୟଭଞ୍ଜନ ।
ଏକ ଗୋପାଳ କେତେକାଳେ ଅନ୍ଧ ହୋଇଥିଲା
ଶ୍ରୀରାମଚନ୍ଦ୍ରଙ୍କୁ ସେହୁ ଦୁଗ୍ଧ ଦାନ ଦେଲା ।
ତେଣୁକରି ଦେଖାଗଲା ତା ବେନ ନେତ୍ରକୁ
ଶ୍ରୀରାମ ନାହିଁ ବୋଲିଣ ବଶିଲା ତାହାକୁ ।
ଆଉ ଏକ ଦ୍ୱିଜ ଥିଲା ଦରିଦ୍ର ଆଜନ୍ମ
ଜନ୍ମ ନ ଜାଣଇ ସେହୁ ଜଗନ୍ନାଥ ତନୁ ।
ଦ୍ୱାପର ଯୁଗରେ ସେହୁ ଜନମିଲା ଏକା
ଭିକ୍ଷା ମାଗି ଯାଉଁ ଯାଉଁ ଉତ୍ତରିଲା ଦ୍ୱାରକା ।
ଦ୍ୱାରକା ଭୁବନେ ତାର କଷ୍ଟ ପାର ହେଲା
କ୍ରମେ ବ୍ରାହ୍ମଣ ଦରିଦ୍ରାବସ୍ଥାରୁ ତରିଲା ।
ସାତବରଷର ପୋଏ ହୋଇ ଏକମେଳ
ପ୍ରଦ୍ୟୁମ୍ନ ସଙ୍ଗତେ ଖେଳ କୁତୂହଳେ ଖେଳ ।
ପ୍ରଦ୍ୟୁମ୍ନର ବାଲିଘର ଭଙ୍ଗେ ଅନ୍ଧପୁତ୍ର
କ୍ରୋଧରେ ଦ୍ୟୁମ୍ନ ଗାଳି ଦେଲାକ ବହୁତ ।
ଅନ୍ଧସୁତ ପ୍ରଦ୍ୟୁମ୍ନକୁ ପଦାଘାତ କରେ
ଅସାସ୍ତ୍ରମରେ ପ୍ରଦ୍ୟୁମ୍ନ ପଡ଼ିଲେ ଭୂମିରେ ।
ଧୂଳିରେ ଧୂସର ହେଲା ତାହାଙ୍କ ଶରୀର
ତେଣୁ ଜଗନ୍ନାଥ ପାଶେ ମିଳିଲେ ସତ୍ୱର ।
ସଙ୍ଗୀଏ ବୋଇଲେ ମନ୍ଦ କଲୁ ଅନ୍ଧବାଳ
ନିଶ୍ଚେ ଜଗନ୍ନାଥ ତୋର ପୂରାଇବେ କାଳ ।
ବତିଶ ସହସ୍ର ଶତେ ଅଷ୍ଟୋତ୍ତର ଯାର
ଭାର୍ଯ୍ୟା ମଧ୍ୟରେ ଏକ ପ୍ରଦ୍ୟୁମ୍ନ କୁମର ।
ବହୁତ କ୍ରୋଧରେ ଗଲେ ରୁକ୍ମିଣୀର ବାଳା
ଆରେ ଅନ୍ଧର ନନ୍ଦନ ବେଗ ହୋଇ ପଳା ।
ସଙ୍ଗୀ ବାଳକ ବଚନ ଶୁଣି ଅନ୍ଧସୁତ
ଅନ୍ଧ ବ୍ରାହ୍ମଣ ପାଶକୁ ପଳାଏ ତୁରିତ ।
ଅନ୍ଧ ବୋଲେ କାହିଁ ବାବୁ ଆସୁ ଅତିଶ୍ରମେ
ସମସ୍ୟା ଦେଇ ନ ପାରେ ପୁତ୍ର ମତିଭ୍ରମେ ।
ବାଳକେ ବୋଲେ ତାତ ମୁଁ ମନ୍ଦକୃତ୍ୟ କଲି
କୃଷ୍ଣସୁତ ପ୍ରଦ୍ୟୁମ୍ନକୁ କ୍ରୋଧରେ ମାରିଲି ।

ବାଳକ ବୋଇଣ ସେହୁ କାନ୍ଦିଗଲା ବେଗେ
ନ ପୁଣ ଶ୍ରୀବାସୁଦେବ ନ ଆସନ୍ତୁ ରାଗେ ।
ଅନ୍ଧ ବୋଇଲେ ପୁତ୍ର ରେ ଲୁଚିଥା ମୋ ପିଠି
ଆସନ୍ତୁ ଶ୍ରୀବାସୁଦେବ ଦେଖୁ ମୋର ଦୃଷ୍ଟି ।
ତାହା ଶୁଣି ସେ ବାଳକ ଲୁଚିଲା ତା ପଛ
ଏଣେ କାନ୍ଦଣ ପ୍ରଦ୍ୟୁମ୍ନ ଭେଟିଲା ଶ୍ରୀବତ୍ସ ।
ଆହା ପୁତ୍ର ବୋଲିକରି ଧରିଲେ ଅଚ୍ୟୁତ
ବାବୁ କେ ତୋତେ ମାରିଲା କହନ ଯଥାର୍ଥ ।
କାନ୍ଦ କ୍ରୋଧରେ କହଇ ଶମ୍ବର ଅରି
ଅନ୍ଧସୁତ ମାରିଲା ଅଦୋଷେ ପ୍ରହାରି ।
ପୁତ୍ରର ବଚନ ନେତ୍ରେ ଦେଖିଣ ଅଚ୍ୟୁତ
ମାୟାମୋହେ କ୍ରୋଧ ହେଲେ ସେ ଜଗତଭୂତ
ଦ୍ୱାରକାର ଲୋକ ହୋଇ କାର ଏ ଭରସା
କେଉଁ ଅନ୍ଧପୁଅ ତୋତେ ଦେଲା ଏତେ ଦଶା
କ୍ରୋଧଭରେ ମସ୍ତକରୁ ବହେ ଶ୍ରମଝାଳ
ଆଗରେ ପ୍ରଦ୍ୟୁମ୍ନ ପଛେ ଦେବକୀର ବାଳ ।
ତାହା ଦେଖିକରି ଅନ୍ଧ ବ୍ରାହ୍ମଣର ବତ୍ସା
ବୋଲେ ପିତା ମୋତେ କରି ନ ପାରିବ ରକ୍ଷା
ଏସନକ ସମୟରେ ପ୍ରଭୁଙ୍କୁ ସେ ନେଇ
ଭେଟାଏ ପ୍ରଦ୍ୟୁମ୍ନ ଅନ୍ଧଦ୍ୱିଜସୁତ ଯହିଁ ।
କ୍ରୋଧଭର ହୋଇକରି ବୋଲନ୍ତି ଗୋବିନ୍ଦ
ମୋ ସୁତକୁ ମାରିଲା ତୋ ପୁଅ ଆରେ ଅନ୍ଧ
ନାରାୟଣଙ୍କ ବଚନେ ଅନ୍ଧ ଶରଣାମି
ବୋଲେ ମୋ ପୁତ୍ର ଥିବ କି ମାରିବାରେ ସ୍ୱାମୀ
ସେବକ ଉପରେ ଏତେ କୋପ କାହିଁପାଇଁ
ଶୁଣି କ୍ରୋଧରେ ବୋଇଲେ ଦେବ ଭବତ୍ରାସ
ଦେଖ ମୋର ପୁତ୍ରଅଙ୍ଗେ ଲାଗିଅଛି ଧୂଳି
ଦେଖ ନାହିଁ ଅନ୍ଧ ବୋଲି ରାଗେ ଚରକ୍ଷୁଳ
ଶାପକଲେ ଅନ୍ଧଦୋଷେଁ ପାଉ ସେ ହୋଇଲା
ନାରାୟଣଙ୍କ ବଚନେ ନେତ୍ରକୁ ହରିଲା ।
ଜୟ ତୁ ଅନ୍ଧପଟଳ ହାରି ବାସୁଦେବ
ଦର୍ଶନ ମାତ୍ରେ ଖଣ୍ଡୁ ତୁ ଅଦୃଷ୍ଟର ଭବ ।
ସ୍ୱାମି ତୋ ପାଦ ପଙ୍କଜେ ଲୋଟୁ ମୋର ମାଥ
ତୋ ଲୀଳାଁ ଆଶା ନ ତୁଟୁଁ ଯେତେକେ କଦାଚନ
ଏ ଜଗତେ ଜନମିଲେ ସର୍ବଜନ ହିତେ
ଶ୍ରୀବାସୁଦେବଙ୍କ ପଦଚରଣେ ନମସ୍ତେ ।

ତରଗଲ ସୋମଦତ୍ତ ରାଜା ଅନ୍ଧକଷ୍ଟ,
ତାଦୃଶ ମୋ ହୃଦୁଁ ଅନ୍ଧପଟଳ ଯେ ଫିଟୁ ।
ଅନ୍ଧକାର ମୋହମାୟା ଏ ସକଳରାଶି
ଦୁସ୍ତର ସଂସାର ମଧ୍ୟୁ କରବା ଉଦାସୀ ।
ଜଗତବାନ୍ଧବ ନାଥ ମୋ ହୃଦରେ ବସ
ଅଦୃଶ୍ୟରେ ପଦମାନ ମୋତେ ହେଉ ଦୃଶ୍ୟ ।
ଭୁନସାବଲ୍ଲଭଙ୍କର ପଦ୍ମପାଦ ଗତେ
ଅନୁକ୍ଷଣେ ଚିତ୍ତ ଥାଉ ସ୍ମରଇ ନିରତେ ।
ସକଳ ଜନମାନଙ୍କ ଉପକାର ଅର୍ଥେ
ଶାରଳା ଦାସ ଲେଖଇ ସଭାପର୍ବ ଗୀତେ ।

---

## ରାଜାମାନଙ୍କର ଭୋଜନର ବ୍ୟବସ୍ଥା

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ଶୁଣ ମୋ କହିବା ଗିର ।
ଶ୍ରୀମନ୍ତ କୋପକର ଦେବ ନାରାୟଣ
ବହୁ ଗାଳି ମନ୍ଦ କଲେ ଦେଖି ଆଚରଣ ।
ତଦପରେ ଦେବବର କଲେ କେଉଁ କୃତ୍ୟ
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ ।
କହନ୍ତି ଅଗସ୍ତି ଶୁଣ ଆହେ ମନୁରାଜ
ଦିଗସ୍ତ ସରଗେ ରାଜସୂୟ ବିବରଣ ।
ସମ୍ଭବେ ବିଜୟ ତହିଁ ସକଳ ରାଜନ
ଜନ୍ମେ ଜନ୍ମେ ତାହାଙ୍କର ଜୀବନହିଁ ଧନ୍ୟ ।
ତେଣୁ ତହିଁ ବସିବାକୁ ଭୋଜନ ହୋଇଲେ
ପୂର୍ବଜନ୍ମ ତପବଳେ ନେତ୍ରରେ ଦେଖିଲେ ।
ନରପତିମାନେ ଯହୁଁ ବସିଲେ ସମ୍ଭାରେ.
ଯୁଧିଷ୍ଠି କହନ୍ତି ତହିଁ ଶ୍ରୀକୃଷ୍ଣ ଆଗରେ ।
ହରି ହେ ଅନେକ ଦେଖୁଁ ବିଜେ ମହୀପାଳେ
ଅମାତ୍ୟ ସହିତେ ବସି ଅଛନ୍ତି ଗହଳେ ।
କେମନ୍ତେ ସ୍ୱାଙ୍କ ତରସ୍ତ କରିବା ହେ ହରି
ସେହି କଥା ମୋ ଆଗରେ କହନ୍ତୁ ବିସ୍ତାର ।
ଏମନ୍ତ ସମୟେ ହେଲା ମଧ୍ୟାହ୍ନର କାଳ
ସୁଗନ୍ଧ ତୈଳ ଘେନଲେ ଯୁଧିଷ୍ଠି ଭୂପାଳ ।
ନାରଦ ବୋଇଲେ ଯେବେ ଜଣେକ ଅତୃପ୍ତ
ଷଷ୍ଟୁ ବ୍ରହ୍ମହତ୍ୟା ଦୋଷ ନ ଯିବ କଦାପି ।

ଆହ୍ନିକର ବେଳା ଯହୁଁ ଆସି ହେଲା ଦନ
ମର୍ଦ୍ଦନ ଯୋଗାଡ଼ କଲେ ଅନେକ ବିଧାନ ।
ସୁଗନ୍ଧ ତଇଳ ଆଦ ଯେତେ ଦ୍ରବ୍ୟମାନ
ଶିଖଣ୍ଡୀକୁ ତାହା ନେଇ କଲେ ସମର୍ପଣ ।
ଯୁଧିଷ୍ଠିଙ୍କ ଆଜ୍ଞା ପାଇ ସେ ଶିଖଣ୍ଡୀ ବୀର
ତା ନେଇ ରାଜାମାନଙ୍କୁ ଦେଲେକ ସତ୍ୱର ।
ମର୍ଦ୍ଦନ କରନ୍ତି ମାଲେ ଅଷ୍ଟ ହସ୍ତକାରୁ
ବାହାସ୍ଫୋଟ ମାରଣ ସେ ଯହି ମହାମେରୁ ।
ମର୍ଦ୍ଦନ ଶେଷରେ ଯାଇ ପଶି ଗଙ୍ଗାଜଳେ
ସୁଗନ୍ଧ ଅଇଁଳା ସର୍ବେ ଲେପିଲେକ ବାଳେ ।
ସୁବର୍ଣ୍ଣ ଘଟେ ପୂରଇ ନାନା ବାସପାଣି
ପମାର ମାରମାନ ଯେ ନଉଡନ୍ତି ଆଣି ।
ଗଙ୍ଗାଜଳରେ ପଶିଲେ କୁତୂହଳ ହୋଇ
କରନ୍ତି ଯେ ଜଳକ୍ରୀଡ଼ା ନାନାକଥା କହି ।
ସ୍ନାନ ନିତ୍ୟକର୍ମ ଶେଷ କରିଲେ ବିଧାନେ
ଆହ୍ନିକ କର୍ମ ସାରିଲେ ପୁରୋହିତମାନେ ।
ନିତ୍ୟକର୍ମମାନ ସାରି ଆସିଲେ ବହନ
ମଣୋହି କରି ବସନ୍ତି ଯେ ଯାହା ଆସନ ।
ଲକ୍ଷେକ ନୃପତି ତହିଁ ମଣୋହିରେ ବିଜେ
ସୁବର୍ଣ୍ଣଗାହେ ଯେ ଗଡ଼ ପରଶନ୍ତି ଦ୍ୱିଜେ ।
ପରଷନ୍ତି ଅନ୍ନସବୁ ତହିଁ ସୂପକାରେ
ରାଜାଏ ଭୁଞ୍ଜନ୍ତି ତାହା ପରମ ସୁଖରେ ।
ସୁଗନ୍ଧ ସୁଶୀତଳ ଯେ ପରସ୍ତୁତ ନୀର
ଘେନି ବସିଲେ ପାଣିଆ ରାଜାଙ୍କ ଆଗର ।
ଇନ୍ଦ୍ରପ୍ରସ୍ଥ ନଗରର ଗଙ୍ଗାନଦୀ କୂଳେ
ଐଶାନ୍ୟ ମୂରତି ହୋଇ ବସିଲେ ଭୂପାଳେ ।
ସୂପକାରମାନେ ଅନ୍ନ ନେଇ ପରଷନ୍ତି
ଦେବ ପିତୃ ପିତାମହ ତର୍ପଣ କରନ୍ତି ।
ଯୋଗାଡ଼ଠାରେ ଜଣକେ ସ୍ମୃତି ଦୀପାବଳି
ଦିଅନ୍ତି ବ୍ରାହ୍ମଣମାନେ ତହିଁ ପଦାବଳି ।
ଦ୍ୱାଦଶ ହବ ଯେ ପଞ୍ଚଦଶ ପଞ୍ଚମୁଦ୍ରା
ବାହ୍ୟବଳ ତୃପ୍ତି ଅଥେ ବାକ୍ୟ ବ୍ରହ୍ମମୁଦ୍ରା ।
ଯେ ଯାହାର ସଂକଳପେ ଦେବ ପିତୃ ଅନ୍ନ
ଧରନ୍ତି ଦେବତାଙ୍କର ତହିଁ ନାମମାନ ।
ବହୁପ୍ରକାରେ ଯୋଗାଡ଼ ଦ୍ରବ୍ୟାମୃତ ପାକ
ଭୁଞ୍ଜନ୍ତି ରାଜାମାନଙ୍କୁ ଆଣି ଏକ ଏକ ।

ପ୍ରକୃତି ପୁରୁଷ ଆଚମନ ଚଞ୍ଚଧାର
ସନ୍ତୁଷ୍ଟ ମନରେ କରୁଅଛନ୍ତି ଆହାର ।
ଯେବଣ ବ୍ୟଞ୍ଜନମାନ ଆସୁଛି ଆକାଶୁ
ଅମୃତ ପ୍ରାୟେ ନ ସରେ ତାହାଙ୍କ ପରଶୁ ।
ଭୁଞ୍ଜୁଛନ୍ତି ନରପତି ଯେତେ ଯାହା ଇଚ୍ଛା
ସୁଗନ୍ଧ ପଦାର୍ଥମାନ ଆଦ୍ୟାଯୁନେ ବାଞ୍ଛା ।
ଏ ମହିମା ଲଭ୍ୟାଇଛନ୍ତି ଦେବ ଦେବ ହରି
ମଳବଧି ଚନ୍ଦ୍ରପ୍ରତି ଗଜଗା ଖଜଗା ।
ଗୋରସ ଦଧିଅନ୍ନ ଷଡ଼ରସ ଭୋଜନାନ୍ତେ
ନାନା ପିଠାର ମହିମା ନ ସରେ କହନ୍ତେ ।
ଭୋଜନ ସାରଣ ପ୍ରାୟେ ନ ପାରନ୍ତି ଉଠି
ଭୂମି ଉପରେ ଉଠନ୍ତି ଦେଇ ପାଦଗୋଟି ।
ଆଚମନ ସ୍ଥାନେ ବଳେ ହୁଅନ୍ତି ନୃପମାନେ
ବୋହିଯାଏ ସେହି ଜଳ ନଦୀର ସମାନେ ।
ଆଚମନ ସାରି ପ୍ରାୟେ ନଅବକାଶରେ
କର୍ପୂର ତାମ୍ବୁଳ ଆଦି ଭୁଞ୍ଜନ୍ତି ବଧିରେ ।
ସର୍ବାଙ୍ଗରେ ଅଳଙ୍କାର କୁସୁମର ଭରା
ଅମରଧ୍ୱନାଥ ପ୍ରାୟେ ଦିଶୁଅଛି ଶୋଭା ।
ନବବସ୍ତ୍ର ପୁଣି ନବ ନବ ଅଳଙ୍କାର
ସମ୍ଭବେ ବସନ୍ତି ପ୍ରାୟେ ଆସନ ଉପର ।
ଖଞ୍ଜୁଅଛନ୍ତି ଅନେକ ଭଳାସୀ ବଜନ୍ତା
ଦିବ୍ୟତାଳରେ ଗାଇଲେ ତାଣ୍ଡବ ସଙ୍ଗୀତା ।
ଶୁଣ ରାଜା ରାଜସୂୟ ଯଜ୍ଞର ଚରିତ
ଲକ୍ଷେମାଡ଼ ସ୍ୱର୍ଣ୍ଣଥାଳେ ଯୋଗାଉଛନ୍ତି ନିତ୍ୟ ।
ରାଜାରେ ଲକ୍ଷେକ ମାଡ଼ ହରିଆଦି କରି
ଭୋଜନାନ୍ତେ ପୋଛୁଦ୍ୟନ୍ତି ନେଇ ଘରିବାସୀ ।
ଯମୁନାର ଜଳେ ତାହା ପକାଅନ୍ତି ନେଇ
ଗଙ୍ଗାର ଜଳେ ପଡନ୍ତେ ନ ଆଣନ୍ତି କେହି ।
ଏହିପରି ପ୍ରତିଦିନ ଯୋଗାଡ଼ ନୂତନ
ଉଚ୍ଛିଷ୍ଟ ହେଲେ ପକାନ୍ତି ନେଇଣ ବହନ ।
ଏମନ୍ତ ସମ୍ପଦ ଅଟେ ରାଜସୂୟ ସଭା
ସାତନଦୀ ପେଡ଼ିଅଛି କୁବେରର ଶୋଭା ।
ରାଜାଙ୍କ ଭୋଜନ ଶେଷ ହେବାର ଉତ୍ତରେ
ପାତ୍ର ଅମାତ୍ୟମାନେ ବସନ୍ତି ସଭରେ ।
ମୁକୁଟବନ୍ଧା ରାଜନ ମହାମଲ୍ଲ ଜେନା
ମାଲ ମଣ୍ଡଳିକା ବଡ କୁମାର ଯେ ସେନା ।

ତହିଁ ମଧ୍ୟରେ ବସନ୍ତି ଭୋଜନ ନିମନ୍ତେ
ସୈନ୍ୟମାନେ ବସିଛନ୍ତି ପଦାତି ସହିତେ ।
କ୍ଷେତ୍ରପାଳ ପଟ୍ଟରୁ ଯେ ଭୀଷ୍ମ ମହାରଥୀ
ଅନେକ ସମ୍ଭାରେ ଅନ୍ନ ଆଣି ପରଷନ୍ତି ।
ଶୁଣ ମହାରାଜା ତାଙ୍କୁ ପ୍ରସନ୍ନ ହୁଙ୍କୁଳା
ଅମୃତ ସ୍ୱାଦୁ ଭୋଜନ ପାଇ ଅତି ଭୋଳା ।
ଭୋଜନ ସାରଣ ସର୍ବେ କଲେ ଆଚମନ
ପବନ ଉଡ଼ାଇ ନିଏ ସେହି ପତ୍ରମାନ ।
ମେଘମାନେ ବରଷନ୍ତି ତହିଁର ଉପରେ
ଧୋଇଯାଏ ସେ ଉଚ୍ଛିଷ୍ଟ ତହିଁ ଅନ୍ୟପରେ ।
ପୁଣି ସଇନ ଭୁଞ୍ଜାଇ ବସନ୍ତି ସେ ଠାବେ
ବହରନ୍ତି ସଇନ ଯେ କଉତୁକ ଭାବେ ।
ସହସ୍ରେକ ହାଟ ଆଠସହସ୍ର ଯେ ଘାଟ
ଅନୁକ୍ଷଣେ ଯାହା ତହିଁ ହରଷ ସେ ରାଷ୍ଟ୍ର ।
ନାରଦଙ୍କୁ ପୁଛିଲେ ଯୁଧିଷ୍ଠିର ଦେବ
ହରି ହେ ରାଜାଙ୍କ ସୈନ୍ୟ ବଡ଼ ଅସମ୍ଭବ ।
ଭୋଜନ ପ୍ରମାଣ ହେଉଅଛଇ କେମନ୍ତେ
ଭଗ୍ନରଣ ନାରଦ ତା କହିବା ମୋତେ ।
ଶଙ୍ଖଶାଳ ପୁରେ ଧର୍ମ ଗାଁପ୍ରେ କଲେ ହଳେ
ନଳେ ପଦ୍ମର୍ଣ୍ଣ ମଣାନ୍ତି ଥାଇ ଦେବରାଜ ।
ଦେଖିଲେ ସଇନ ତହିଁ ବଢ଼ଇ ଗହଳ
ବହୁ ସମ୍ଭାରେ ଭୁଞ୍ଜନ୍ତି ଅନ୍ନାଦି ସକଳ ।
ଯୁଧିଷ୍ଠିର ବୋଲନ୍ତି ହରି ସୈନ୍ୟ କେତେ ଜଣ
କେମନ୍ତେ ହେ ଦେବ ତାହା କର ପରମାଣ ।
ପାଇଲ ନ ପାଇଲକୁ ତତ୍ତ୍ୱ କେହୁ କରୁ
କୋଟିଏ ଜଣ ଭୁଞ୍ଜିଲେ ଶଙ୍ଖ ଏକ ସ୍ଫୁରୁ ।
ଏହା କହି ବଳେ ହେଲେ ପଶ୍ଚିମର ଆଡ଼େ
ଘଡ଼ିକେ ଦଶଲକ୍ଷ ତ ଶଙ୍ଖ ବାଜେ ତୁଣ୍ଡେ ।
ଦକ୍ଷିଣ ଆଡ଼େ ଖର୍ବେକ ଶଙ୍ଖ ଯେ ବାଜଇ
ଶୁଣିଣ ଆଶ୍ଚର୍ଯ୍ୟ ହୁଅନ୍ତି ଧର୍ମ ନରସାଇଁ ।
କୃଷ୍ଣଙ୍କୁ ବୋଇଲେ ହରି କେବଣ କାରଣ
ଅଳ୍ପକାଳରେ ଭୁଞ୍ଜିଲେ କେତେ ଏତେ ଜଣ
ବଦନ୍ତି କେଶବ ତହିଁ ଶୁଣ ନରପଣ
ଭୂମି ଆଙ୍କରେ ଖଟନ୍ତି ଆସି ଦେବଗଣ ।
ଦ୍ୱାହରଗି ବଳେ ଜଗିଅଛନ୍ତି ସଭରେ
ପୁଣି ହୁଙ୍କୁଳା ପ୍ରସନ୍ନ ଭୂମିର ଉପରେ ।

ଉଠନ୍ତି ଯେବେ ଲୋକେ ଜନେ ଭୋଜନ ସାରଣ
ଉଚ୍ଛିଷ୍ଟ ପତ୍ର ଉଡ଼ାଇ ନଅନ୍ତି ପବନ ।
ତକ୍ଷଣେ ମେଘ ବରଷି ଭୋଜନର ଠାବ
ଧୋଇ ଦେଲେ ଭୂମି ଦେଖି ଯୁଧିଷ୍ଠିର ଦେବ
ବୋଇଲେ ପବନ ଦେବ ଅଟନ୍ତି ମୋ ପିତା
ସେ ପୁଣ ହୋଇଅଛନ୍ତି ଉଚ୍ଛିଷ୍ଟ ଘୋଟନ୍ତା ।
ଏହା ମୋତେ ଅଧର୍ମ ହେ ପ୍ରତ୍ୟକ୍ଷ ଉତ୍ତମ
ବାୟୁର ଏ କାର୍ଯ୍ୟ ମୋର ନାଶଗଲା ଧର୍ମ ।
ସହଦେବ ମୁଖ ଚାହିଁ ଦେବ ଦାମୋଦର
ନାଶ କରିବାରେ ବାବୁ ଧର୍ମଙ୍କ ବିଚାର ।
ଗୋବିନ୍ଦ ଶ୍ରୀମୁଖ ଚାହିଁ ବୋଲେ ସହଦେବ
ମେରୁଶୂଳ ଋଷି ଛନ୍ତି ବଦରିକା ଠାବ ।
ଅନଳ ନୈବେଦ୍ୟ ଗ୍ରହାନ୍ତି ସେହୁ ମୁନି ଈଶ
ତାଙ୍କ ହସ୍ତରେ ଉଚ୍ଛିଷ୍ଟପତ୍ର ହେବ ଧ୍ୱଂସ ।
ଏ ମହାଯଜ୍ଞକୁ ହରି ବୁଝ ଯେ ଧାଇଣ
ଭୀମସେନଙ୍କୁ ପଠାଇ ମେରୁଶୂଳ ଆଣ ।
ସହଦେବ ବାକ୍ୟେ ଦେବ ପରମ ଆନନ୍ଦ
ଭୀମସେନେ ଘେନି ଆଜ୍ଞା କରିଲେ ଗୋବିନ୍ଦ ।
ତୁମ୍ଭେ ବଦରିକାଶ୍ରମେ ଯାଇ ଏହିକ୍ଷଣ
ବୁଦ୍ଧି ପରାକ୍ରମେ ମେରୁଶୂଳ ଋଷି ଆଣ ।
ଜୟ ଜୟ ଜଗନ୍ନାଥ ନୀଳାଦ୍ରି ବିହାରୀ
ଶାରଳା ଦାସକୁ କର ଭବସିନ୍ଧୁ ପାରି ।

---

## ମେରୁଶୂଳ ଋଷିଙ୍କ ବିବରଣ

ଶ୍ରୀକୃଷ୍ଣଙ୍କ ବାକ୍ୟେ ଚଳେ ଭୀମ ମହାରଥୀ
କାଳିକା ଗିରିରେ ଦେଖେ ପବନ ଦେବତା
ପବନ ବୋଲେ ଯାଉଛୁ ମେରୁଶୂଳ ଠାକୁ
କେମନ୍ତେ ଆଣିବୁ ଅଗ୍ନି ନୈବ ମନୁଷ୍ୟକୁ ।
ସେ ମହାଋଷିର ବାବୁ ନ ଜାଣୁ ମହିମା
ତାହାର ଚରିତ କହେ ଶୁଣ ଆରେ ଭୀମା ।
ବ୍ରହ୍ମାର ମେଖଳ ଗଲା ମନୁ ମେଖଳାକୁ
ନିତ୍ୟ କରମ ବିଧାନ ଆକାଶ ଗଙ୍ଗାକୁ ।
ସେ ଆକାଶ ପୁଟିଣ ଯେ ବହଇ ଜାହ୍ନବୀ
ନିତ୍ୟକର୍ମ ସାରି ପିତା ମହାବ୍ରହ୍ମ ସେବି ।
ଅମର ବିଳାସୀ ସଙ୍ଗେ ଯେ ଅଷ୍ଟନାୟିକା
କାମିନୀ କାମସେଣା ଯେ ମଳା ମଦନିକା ।

ମୋହିନୀ କମଳା ପୁଣି ଚପଳା ସର୍ବାଙ୍ଗୀ
ନବଯୁବା ମାତଙ୍ଗୀ ଯେ ମହା ସଉଭାଗୀ ।
ଗଙ୍ଗାକୁ ସ୍ନାହାନ ପାଇଁ ଆଇଲେ ଅପ୍ସରୀ
ବିବସ୍ତ୍ରା ହୋଇ ସେମାନେ ଜଳକ୍ରୀଡ଼ା କରି ।
ସ୍ତନ ଯଉବନ ଭରି ଅଟନ୍ତି ସୁବେଶୀ
ତାଙ୍କ ରୂପମାନ ଦେଖି ପାଷାଣ ଝୁରନ୍ତି ।
ସନ୍ଧ୍ୟା ସମୟରେ ତାଙ୍କୁ ଦେଖି ବେଦବର
ମଦନ ଅସାଷ୍ଟମରେ ଚଳିଲା ଶରୀର ।
ଜଳନ୍ତୁ ବାହାର ହେଲେ ଉଲଗ୍ନ ବସନ
ଦିଅନ୍ତି ସେ ସଉଭାଗୀ କୁଙ୍କୁମ ଲେପନ ।
ତାହାଙ୍କ ରୂପ ଦେଖିଲେ ସେ ବ୍ରହ୍ମା ଦେବତା
ମଦନରେ ଅସାଷ୍ଟମ ହୋଇଲେ ଅପଥା ।
ମନମଥ ଶର ତାଙ୍କ ଶରୀରରେ ଗଳି
କାମ ଆରତେ ପିତାର ଚଳିଲା ବିକଳୀ ।
ସନ୍ଧ୍ୟାର ହସ୍ତୀ ସକଳ ତେଜ୍ୟା କଲେ ବଳ୍କୁ
ତପ ଧ୍ୱଂସକାରିଣୀ ଏ ମିଳାଯାନ୍ତେ ବାବୁ ।
କାମ ବୋଲିକରି ଅଟେ ଯେବଣ ପଦାର୍ଥ
ଅଣେଶୁଙ୍ଗାରେ ଚଳିଲା ପିତାମହ ରେତ ।
ତାହା ଖସନ୍ତେ ଭୃଙ୍ଗିଲା ପିତାଙ୍କ ସରାଗ
ମେରୁ ମେଖଳାରେ ରେତ ପଡ଼ିଅଛି ବେଗ ।
ମହାଅନଳ ପରାୟେ କାଳାନଳ ସାର୍ଯ୍ୟ
ମେରୁ ମେଖଳ ନ ସହେ ମହାତ୍ମାର ତେଜ ।
ଦୁଇମନ୍ଦା ଚଳିପଡ଼େ ସେହି ମେରୁଠାବେ
ରଖ ରଖ ବୋଲିକରି ଡାକିଲା ସେ ସବେ ।
ମେରୁର ବିକଳ ଦେଖି ପାତ କାମହସ୍ତୁ
ଆର ମନ୍ଦାର ପଡ଼ନ୍ତେ ଧଇଲେ କୁରତ ।
ସେହି ମନ୍ଦାରରେ ଘେନ ଚନ୍ଦ୍ର ଦେବପତ
ମେରୁ ହୋଟରେ ଅଗ୍ନିକୁ ଫିଙ୍ଗିଲେ ତଡ଼ିତ ।
ପୁଣି ଅର୍ଦ୍ଧମନ୍ଦାର ଯେ ପଡ଼ୁ ପଡ଼ୁ ଚଳି
ମେରୁ ବିକଳରେ ଧାତା ଧଇଲେ ତା ତୋଳି
ମନ କଳୁଷରେ ଅଙ୍ଗାରାଲିକ ଯେ ଫିଙ୍ଗି
ବିମୁଖ ବ୍ରହ୍ମା ଉଠିଲେ ନିତ୍ୟକର୍ମ ଭଙ୍ଗି ।
ଶୁଣ ଆରେ ଭୀମସେନ ବୋଲନ୍ତି ମରୁତ
ପ୍ରଥମ ମନ୍ଦା ପଡ଼ିଲା ମେରୁ ପରବତ ।
ରଖ ରଖ ବୋଲି ମେରୁ ଡାକ ଦେଇଥିଲା
ସେହି ମନ୍ଦାକରୁ ରକ୍ଷ ଯକ୍ଷ ଜାତ ହେଲା ।

ଯେ ଅନନ୍ୟମନା ବାଲିକ ଦେଇଥିଲେ ଫର୍ଙ୍ଗି
ତହିଁରୁ ଜନ୍ମ ବାଲ୍ମୀକ ବାଳଖିଲ୍ୟା ଯୋଗୀ ।
ଭୀମସେନଙ୍କୁ କହଇ ମରୁତ ଦେବତା
ସେ ବାଲ୍ମୀକ ବାବୁ ଭୂତ ଭବିଷ୍ୟତଜ୍ଞାତା ।
ଏହା ମୂଳେ ଲକ୍ଷ ବାଳଖିଲ୍ୟା ଉପୁଜିଲେ
ମହାରାଗ ସାଧି ରାଗ ତମଙ୍କୁ ତେଜିଲେ ।
ଅଗ୍ନି ମଧ୍ୟେ ପକାଇଣ ଥିଲେ ଯେଉଁ ରେତ
ସେଥିରୁ ଜନ୍ମେ ପୁରୁଷେ ହୋଇ ମହାମତ୍ତ ।
ତାହାର ଶରୀରୁ ଜାତ ହୁଅଇ ଅନଳ
ଏକପାଦ ତନମୁଣ୍ଡ ଉଚ ନଅତାଳ ।
ଲୋହିତବର୍ଣ୍ଣ ସ୍ୱରୂପ ଅଟେ ଦଶଭୁଜ
ଷଡ଼ କର୍ଣ୍ଣ ଷଡ଼ ନେତ୍ର ବିରାଜେ ଯତେଜ ।
ସପତ ତାଳ ଉତ୍ସର୍ଗ ତା ନିଜ ପଞ୍ଜର
ଡରେ ହର ନ ପାରିଲେ ବ୍ରହ୍ମା ହରିହର ।
ମେରୁଶୃଙ୍ଗ ନାମ ତାର ଦେଲେ ମହାତମା
ବିଶ୍ୱ ନୋହିଲା ପୁଣି ସେ ନ ଇଚ୍ଛିଲା ବାମା ।
ମହାବ୍ରହ୍ମ ଧ୍ୟେନ ସେହି ସାଧେ ଲୟଯୋଗ
କରିଲା ସେ ସାଂସାରିକ ସୁଖ ପରିତ୍ୟାଗ ।
ଏହିପରି ଏକସ୍ତମ୍ଭ ଗଣ୍ଡା ଯୁଗ ଗଲା
ବାତ୍ତିତ କାଳରୁ କେତେ ମନୁ ବହିଗଲା ।
ସେତ୍ତ ଯେବଣ ଆଡ଼କୁ ନୟନେ ଚାହିଁଇ
ଷୋଡ଼ର ଯୋଜନ ଯାଏ ଅଗ୍ନିରେ ପୋଡ଼ଇ ।
ସମସ୍ତ ବହନ ହୁଏ ଭାଷ୍ମ ଆଦିକରି
ଦ୍ୱାଦଶ ଯୋଜନ ଯାନ୍ତି ତାଙ୍କୁ ତ୍ୟାଗକରି ।
ଏଡ଼େ ଦୁର୍ଯୋଗକୁ ପେଷିଛନ୍ତି ତପପାଣି
ମହାବ୍ରହ୍ମବେତ୍ତା ତାଙ୍କୁ ପାରିବୁ କି ଆଣି ।
ଭୀମସେନ ବୋଲେ ଦେବ ଶ୍ରୀକୃଷ୍ଣଙ୍କ ଆଜ୍ଞା
ମୋହର କି ବଳ ତାହା କରିବ ଅବଜ୍ଞା ।
ଶ୍ରୀହରି ଆଶ୍ରୟେ ଆମ୍ଭେ ବଞ୍ଚୁ ଚିରକାଳ
ଶୁଣି ପବନ କହଇ ଶୁଣ ଆରେ ବାଳ ।
ମେରୁଶୃଙ୍ଗେ ଆଣିବାକୁ ନ ଯାଅ ରେ କୁମର
ତାହାଯୋଗେ ସହିବୁ ତୁ ଦୁଃଖ ବହୁତର ।
ଭୀମସେନ ବୋଲେ ଦେବ ତାଙ୍କ ଆଜ୍ଞା ମେଣ୍ଟି
ଅବଶ୍ୟ ତହେଁ ଛେଦିବେ ମୋର ଶିରଗୋଟି ।
ଶୁଣି ବୋଲଇ ଆଣିବ ମେରୁଶୃଙ୍ଗ ଋଷି
ତୋର ବୁଦ୍ଧିବଳ ଥିଲେ କହୁ ମୁଁ ପ୍ରକାଶି ।

ପବନ ଦେବ ଘୋଡ଼ାଏ ଭୀମସେନ ଭୁଲେ
ମେରୁଶୃଙ୍ଗ ମଠୁଁ ପାଞ୍ଚ ଯୋଜନ ରହିଲେ ।
ଋଷି ପଛେ ଥାଇ କହେ ପବନ ଦେବତା
ହେ ଋଷି ଶୁଣ ଯୁଧିଷ୍ଠି ଯାଗର ବାରତା ।
ସୋମବଂଶେ ଜାତ ସେହୁ ଧର୍ମ ମହୀପତେ
ରାଜସୂୟ ଯାଗ କଲା ପିତାର ନିମନ୍ତେ ।
ପୃଥିବୀର ରାଜା ରାଜଋଷି ବ୍ରହ୍ମଋଷି
ସେ ରାଜସୂୟ ସଭାରେ ମିଳିଛନ୍ତି ଆସି ।
ପବନ ସୁତ ପାଣ୍ଡବ ବୀର ଭୀମସେନ
ନିମନ୍ତି ଆସି ରହିଛି ସେ ପାଞ୍ଚଯୋଜନ ।
ତୁମ୍ଭେ ନ ଗଲେ ନୋହିବ ସେହି ମହାସଭା
ହେ ମହାତମା ପୁରୁଷ ବେଗ ହୋଇଯିବା ।
ଭୀମସେନ ଡାକେ ପାଞ୍ଚ ଯୋଜନ ଅନ୍ତରେ
ବେଗେ ଆସ ହେ ମହାତ୍ମା ରାଜସୂୟ ଯଜ୍ଞରେ ।
ଆହେ ମେରୁଶୃଙ୍ଗ ଋଷି ଆସ ବେଗ ହୋଇ
ଯଦି ଆସିବ ମହାତ୍ମା ଆସ ଶାନ୍ତ ହୋଇ ।
ଋଷିଙ୍କୁ ଡାକ ପକାଏ ବୀର ଭୀମସେନ
ଉଚସ୍ୱରେ ଡାକ ତାର ଶୁଭିଲା ଶ୍ରବଣ ।
ମେରୁ ମେଖଳ ଉଚରୁ ମହାତମା ଉଠ
ବାର ଯୋଜନ ପର୍ଯ୍ୟନ୍ତ ପଡ଼ିଗଲା ଦୃଷ୍ଟି ।
ବୃକ୍ଷ ପକ୍ଷୀ ଜୀବଜନ୍ତୁ ଯେତେ ତହିଁ ଥିଲେ
ମେରୁଶୃଙ୍ଗ ଅଗ୍ନି ନେତ୍ରେ ସବୁ ପୋଡ଼ି ଗଲେ ।
ପବନ ଦେବ କହିଲା ପଶ୍ଚିମ ମୁରତି
ପଶ୍ଚିମେ ବହେ ଅନଳ କରି ମହାଜ୍ୟୋତି ।
ଭୀମ ପଳାଏ ପଶ୍ଚିମ ଦିଗୁଁ ଦକ୍ଷିଣକୁ
ପାଞ୍ଚ ଯୋଜନାନ୍ତେ ଡାକ ଦିଅଇ ଋଷିଙ୍କୁ ।
ଆସ ଆସ ମହାତମା ଦକ୍ଷିଣ ମୁରତି
ପବନ ଦେବ ଉଡ଼ାଏ ପଶ୍ଚିମକୁ ଜ୍ୟୋତି ।
ଏମନ୍ତେ ମେରୁଶୃଙ୍ଗଙ୍କୁ ଆଣେ ଭୀମସେନ
ବାରୁଣାବନ୍ତେ ପ୍ରବେଶ ହେଉ ତନୁବନ ।
ବାରୁଣାବନ୍ତ ବୋଲିଣ ଯେବଣ ପର୍ବତ
ତହିଁ ଉପରେ ବସିଲେ ଋଷି ଭଗବନ୍ତ ।
ଧ୍ୟାନେ ନମସ୍କରିଲେ ତହୁଁ ମୁଦ୍ରିତ ଲୋଚନେ
ସର୍ବରାଜା ଗଲେ ମେରୁଶୃଙ୍ଗ ସନ୍ନିଧାନେ ।
ଶ୍ରୀକରରେ ଅର୍ଘ୍ୟ ଘେନି ଧର୍ମ ମହାରାଜା
ମେରୁଶୃଙ୍ଗର ଅଗ୍ରତେ ଯାଇ କଲେ ପୂଜା ।

ମହାବ୍ରହ୍ମର୍ଷି ତାଙ୍କୁ କହିଲେ କଲ୍ୟାଣ
ମନବାଞ୍ଛା ତୋହର ଯେ ହୋଇବ ପୂରଣ ।
ଋଷିମାନଙ୍କ ଘେନିଣ ଧରମ ଯୁଧିଷ୍ଠି
ସମସ୍ତେ ମେଳ ହୋଇଲେ ମେରୁଶୃଙ୍ଗ ପିଠି ।
ସନ୍ନିଧି ହୋଇ କହନ୍ତି ଦେବ ନାରାୟଣ
ହେ ବ୍ରହ୍ମପୁରୁଷ ତୁମ୍ଭେ ସାବଧାନେ ଶୁଣ ।
ରାଜସୂୟ ଯଜ୍ଞ ଆପେ ସୃଜିଲେ ଯୁଧିଷ୍ଠି
ତୋପାଇଁ ଖଣ୍ଡନ ହେବ ସକଳ ଅରିଷ୍ଟି ।
ବାରୁଣାବନ୍ତ ପର୍ବତେ ମୁନି କହିଥିବ
ସୈନ୍ୟଙ୍କ ଭୋଜନ ଶେଷେ ଜଣ୍ଟିତ ସ୍ପର୍ଶିବ ।
ଉଚ୍ଛିଷ୍ଟପତ୍ର ସକଳ ହୋଇବ ରତନ
ଜନମ୍ଭ ସ୍ପର୍ଶେ ଜନ୍ମିଲେ ଚାରୁ ନାରାୟଣ ।
ମେରୁଶୃଙ୍ଗ କହିଲେ ତୁମ୍ଭେ ପୁରୁଷ ଉତ୍ତମ
ଆମ୍ଭ ସାକ୍ଷାତେ ନ ହେବ ଯଜ୍ଞକର୍ମ ଧର୍ମ ।
ଯେଉଁ ପ୍ରାଣୀ ନ ପାରନ୍ତି ଧର୍ମକର୍ମ କରି
କଳିରେ ସେ ନ ହୋଇବ ପର ଉପହାସୀ ।
ପରକାର୍ଯ୍ୟ କରିବାରୁ ଯେ ହୁଅନ୍ତି ଦୁଃଖୀ
ଏମନ୍ତ ପୁରୁଷମାନଙ୍କ ଅଗ୍ରାହ୍ୟରେ ଲେଖି ।
ସାହାଯ୍ୟ ଦେବାକୁ ଶକ୍ତି ନାହିଁ ତ ଆମ୍ଭର
ଆମ୍ଭଦ୍ୱାରା ଯୁଧିଷ୍ଠିରେ ହେଉ ଉପକାର ।
ଯେ ହେତୁରୁ ଆଜ୍ଞା ଦେଉ ଅଛନ୍ତି ଆପଣ
ଆମ୍ଭ ଧର୍ମେ ହେଉ ଏ ଉଚ୍ଛିଷ୍ଟପତ୍ରମାନ ।
ମେରୁଶୃଙ୍ଗକୁ ସମ୍ବୋଧି ଗଲେ ଜଗନ୍ନାଥ
ମହାଯଜ୍ଞରେ ପ୍ରବେଶ ହୋଇଲେ ତୁରିତ ।
ଇନ୍ଦ୍ରପ୍ରସ୍ଥ କଟକରେ ନାରାୟଣ ଯାଏ
ସଦା ଅନ୍ନ ଭୁଞ୍ଜୁଛନ୍ତି ସେଠାରେ ସର୍ବେ ।
ଭୋଜନ ସାରିଣ ଆଉ ହୁଅନ୍ତେ ସଇନ
କଣ୍ଟିତ ଦୃଷ୍ଟିରେ ଘୋଡେ ମେରୁଶଳ ମୁନି ।
ସେ ଉଚ୍ଛିଷ୍ଟପତ୍ରମାନ ହୁଅନ୍ତେ ଦଗଧ
ବୃଷ୍ଟିକର ପରସ୍ପର କରନ୍ତି ଜଳଦ ।
ଧନ୍ୟ ହେ ମହିମାମେରୁ ଧନ୍ୟ ସେ ମହିମା
କେତେ ଲୀଳା ଲଗାଇଛ ନାହିଁ ତାର ସୀମା ।
ଯୁଧିଷ୍ଠିର କସ ସାଧି ପୃଥ୍ୱୀଶ ରାଜାଙ୍କୁ
ତରସ୍ଥ କରି ସନ୍ତୋଷ କରିବ ତାହାଙ୍କୁ ।
କେବଳ ତୁମ୍ଭର ମାୟା ତୁମ୍ଭଙ୍କୁ ଗୋଚର
ଅନ୍ୟଙ୍କୁ ଦିଶଇ ତାହା କଲେ ଯୁଧିଷ୍ଠିର ।

କଏ ଦିଏ କଏ ଖାଏ କେଉଁଠାରୁ ଆସେ
ସବୁ ସୃଷ୍ଟିଣ ହୁଏ ତୁମ୍ଭ ମାୟାବଶେ ।
ନ ବଚନ ଅଟେ ପ୍ରଭୁ ତୁମ୍ଭଙ୍କୁ ଏ ସୈନ୍ୟ
ଯେ ପଡ଼ିବାତା ଅଟନ୍ତି ଚଉଦ ଭୁବନ ।
ଆହେ ଦୟାମୟ ହରି ଶରଣପଞ୍ଜର
ବାରେ କୃପାଦୃଷ୍ଟି ଦେଉ ଡାକଇ କିଙ୍କର ।
ତୁମ୍ଭେ ନ ରଖିଲେ ହରି ନଷ୍ଟେଁ ଯିବ ସବ
ଯେତେ ଡାକିଲେ ନ ଶୁଣେ କର୍ଣ୍ଣକୁ ତୁମ୍ଭର ।
ପଞ୍ଚ ପାଣ୍ଡବ ଆବର ଧ୍ରୁବ ପ୍ରହ୍ଲାଦ
କେଉଁରୂପେ ବଶ କଲେ କହ କେଉଁ ପଦ ।
ଶିଖାଇ ଦିଅ ହେ ମୋତେ ସେହି ପଦମାନ
ଶାରଳା ଦାସର ଇଚ୍ଛା କର ହେ ପୂରଣ ।

---

## କାମଧେନୁ ହରଣ ଓ ରାଜସୂୟ ଯଜ୍ଞ ସୂଚନା

ପୁଣି ପୁଚ୍ଛନ୍ତି ଭଲଙ୍କ ଦେଶ ଦଣ୍ଡଧାରୀ
ଅଗସ୍ତି ମୁନିଙ୍କ ପାଦେ ନମସ୍କାର କରି ।
ହେ ମୁନି ମେରୁଶୃଙ୍ଗକୁ ଆଣେ ଭୀମସେନ
ତତପରେ କେଉଁ କଥା କଲେ ଭଗବାନ ।
ସେହି କଥା ଶୁଣିବାକୁ ବଳେ ମୋ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
କଣସୁ ହୋଇଣ ହରିହର ବଂଶେ ରାଜା
ତାର ହେଲେ ଶତଅଷ୍ଟଉତ୍ତର ତନୁଜ ।
କୃପାଜଳ ଋଷିଙ୍କର କାମଧେନୁ ଗାଈ
ଚଉର୍ଯ୍ୟପଣେ ତାହାକୁ ନେଲେ ସେ ବେଗଇ
ଜମ୍ବୁଦ୍ୱୀପରୁ ଗାଈକୁ ଘେରିକରି ନେଲେ
ଶାକଲ୍ୟଦ୍ୱୀପେ ତାହାକୁ ଲୁଚାଇ ରଖିଲେ ।
ଅଷ୍ଟୋତ୍ତର ଶତେଶ୍ୱର ଖୀର ଖାଆନ୍ତି ସୁଖେ
କୃପାଜଳ ଋଷି ଗାଈ ହେତୁ ଥାନ୍ତି ଦୁଃଖେ ।
ତକ୍ଷ ପୁରୁଷେକ ମୁନି ଦେଖେ ସତ୍ୟଅନ୍ତେ
ଅନଳବସୁ ତା ନାମ ଅନଳ ପର୍ବତେ ।
ମୁନି ପଚାରିଲେ ଆହେ ଅନଳ ପୁରୁଷ
ମୋ ଗାଈକୁ ହରିନେଲା କେଉଁଣ ରାକ୍ଷସ ।
ତୁମ୍ଭେ ଅଷ୍ଟବସୁମାନେ ଅଟ ମହାବୀର
ଏ ବ୍ରହ୍ମଯୁଗରେ ତୁମ୍ଭ ନାମ ଗୋଚରେଶ୍ୱର ।

ତସ୍କର ଜାଣନ୍ତି ଯଦା ତସ୍କର ପ୍ରକୃତ
ମୁଁ ଜାଣୁ ନ ଥିଏ ନେଲ ମୋ ଗୋରୁ ସମ୍ପତ୍ତି
ଅନନ୍ତତପସ୍ୱ ବୋଇଲେ ଶୁଣ କୃପାଜନ
ଗାଈ ଚୋର ହୋଇଲଣି ଆସି ତତ୍କାଳ ।
ଜଣସ୍ୱ ଚନ୍ଦ୍ରର ଅଷ୍ଟୋତ୍ତର ଶତ ସୁତେ
ସତ୍ୟଯୁଗରେ ଗାଈକୁ ନେଲେ ଏହି ବାଟେ ।
ଅନନ୍ତତପ ମୁଖରୁ ଏ ବାରତା ପାଇ
ଶାକଳ୍ୟ ଦ୍ୱୀପରେ ଗାଈ ଠାବ କଲେ ଯାଇ ।
କୃତାନ୍ତଜନ ଜଣସ ଭାବେ କୈୟସ୍ୱନ
ଗାଈ ଗୋଟିକୁ ମାଗିଲ ତାକୁ ତପୋଧନ ।
ଅଷ୍ଟୋତ୍ତର ଶତଶାଖ ସେ ଋଷିଙ୍କ ବେଢି
ମାର ମାର ବୋଲି କେଶ ଧଇଲେ ଉଦ୍ଧତ ।
ସ୍ତ୍ରଘୋଡ଼ା ଗୋଇଠା ବେଦ ମାରେ ଲଉଡ଼ି
କୃପାଜଳ ପଡ଼ିଗଲେ ତହୁଁ ମୂହଁମାଡ଼ି ।
କୋପେ ତାଙ୍କ ଶାପ ଦେଲେ କୃପାଜଳ ଦେବ
ଯାଅ ତୁମ୍ଭେ ଜାତ ହୁଅ ଚଣ୍ଡାଳୀର ଗର୍ଭ ।
ଜ୍ଞାନ ଥାଉଁ ଦଣ୍ଡଲ ରେ ବ୍ରାହ୍ମଣର ଗାଈ
ଚଉର୍ଯ୍ୟ ପ୍ରବୃତ୍ତ ହେଲେ ଶାପଭୟ ନାହିଁ ।
ଏକାଦଶ ରୁଦ୍ରଙ୍କର ଅଟ ତୁମ୍ଭେ ସୁତେ
ଧାର୍ମିକ ପଣ୍ଡିତ ସେହି ଦିଗପାଳ ଅଟେ ।
ତାର ପୁତ୍ର ହୋଇ ତୁମ୍ଭେ ଏତେକ ଅଜ୍ଞାନ
ଦୁଷ୍ଟବୁଦ୍ଧି ଧରି ମୋତେ ଦେଲ ଏ କଷଣ ।
ମୋର ଶାପକୁ ତୁମ୍ଭେ ରେ ଅବଶ୍ୟ ପାଇବ
ଅଗଣା ଖତକୁଡ଼ରେ ଯାଇ ବରତିବ ।
ବ୍ରାହ୍ମଣପଣରେ ଆଉ ଗାଈ ସେବିବ
ଛେଳି ଗହିସ କରିଣ ଉଚ୍ଛିଷ୍ଟ ଖାଇବ ।
ଧୃତରୁଦ୍ର ବୋଲିକରି ଏକଇ ରୁଦ୍ରେକ
ଋଷିଙ୍କୁ ବିନୟ ହୋଇ ବୋଲଇ ଅନେକ ।
ଏଡ଼େ ମହାତ୍ମାଙ୍କୁ ଆମ୍ଭେ ନ ପାରିଲୁ ଚହ୍ନି
ଶାପରୁ ମୁକ୍ତ କାରଣ କହ ମହାମୁନି ।
ଗାଈଟିକୁ ବେନି ସର୍ବେ ଗୋଡ଼ାଇ ଚଳନ୍ତେ
ବୋଇଲେ ମହାଶାପ ତ ଦେଲୁ କୃପାଜନେ ।
ତୁମ୍ଭେ ଅଟ ତପୋବନ୍ତ ଧର୍ମ ମହାମୁନି
ଦୁଷ୍ଟମାନଙ୍କର ଦୋଷ କେହ୍ନେ ଅଛ ଘେନି ।
ନ ଜାଣିବାପଣେ ଦୋଷ କଲେ ମୋର ପୋଏ
ଯୁକ୍ତରେ ପୁଣି ହେବ ବାଞ୍ଛିତ ତପସ୍ୱେ ।

କେବେହେଁକି ମହାତମା ନ କଲ ଉପେକ୍ଷା
ଶାପରୁ ମୁକତ କର ଏହା ମୋର ଭିକ୍ଷା ।
ଏକାଦଶ ରୁଦ୍ରଙ୍କର ଭକ୍ତି ଦେଖିକରି
ତାଙ୍କୁ ଦୟା କଲେ କୃପାଜନ ତପସ୍ୱୀ ।
ବୋଲେ ତ୍ରେତାଯୁଗେ ଦ୍ୱିଜଘରେ ଯାଇ ଥିବ
ଦକ୍ଷିଣା ରାଜ୍ୟରେ ସେହି ଯୁଗ ପାହିଯିବ ।
ତ୍ରେତାଯୁଗ ଅନ୍ତେ ହେବ ଦ୍ୱାପର ଯୁଗ
ସୋମବଂଶେ ଜନମିବେ ଧର୍ମ ମହାଭାଗ ।
ରାଜସୂ ଯଜ୍ଞ କରିବେ ସେହୁ ଆଶ୍ରେପଣ
ତାଙ୍କ ଦେଶେ ପ୍ରବେଶିବେ ସର୍ବ ରାଜାଗଣ ।
ସେହି ରାଜାମାନଙ୍କର ଭୋଜନର ସ୍ଥାନେ
ତୁମ୍ଭେମାନେ ଛେଳି ହେବ ଯାଇ ପ୍ରତିଦିନେ ।
ସେ ମହାଯଜ୍ଞେ ଖଟିବ ଷୋଡ଼ଶ ଦିବସ
ଗୋରୁ ଘେନିଇବା ପାପ ତହିଁ ହେବ ନାଶ ।
ଶୁଣ ମହାରାଜ ଜନହ୍ୟୁର ମହିମା
ତାର ବାଟ ଗୁହିଁଥିଲେ ରୁଦ୍ର ମହାତମା ।
ସୁବର୍ଣ୍ଣର ଘଣ୍ଟିଏ ଏକ ଏକ କରି
ଗଳସ୍ୱରେ ପଢ଼ନ୍ତି ଝଣ୍ଟଝଣ୍ଟ କରି ।
ସୁବର୍ଣ୍ଣର ଘଣ୍ଟେ ମଳ ସୋମସ୍ୱ ଡକନ୍ତି
ଅଷ୍ଟୋତ୍ତର ଶତଘର କରୁଥାନ୍ତି ବୃଷ୍ଟି ।
ମେରୁଶୃଙ୍ଗ ଦାହ କଲେ ସେ ଉଚ୍ଛିଷ୍ଟ ପତ୍ର
ମେଘ ବୃଷ୍ଟି କରି ଭୂମି କରଇ ପବିତ୍ର ।
ଏହିରୂପେ ସମ୍ଭବରେ ଭୋଜନ ବ୍ୟବସ୍ଥା
ଯେ ନିୟମ କରିଛନ୍ତି ଶ୍ରୀକୃଷ୍ଣ ଦେବତା ।
ସମସ୍ତଙ୍କ ଭୋଜନାନ୍ତେ ଆପେ ଶୁଚି ହୋଇ
ଯଜ୍ଞସ୍ଥାନେ ବିଜେ କଲେ ଯୁଧିଷ୍ଠିର ଯାଇ ।
ବଶିଷ୍ଠ ପୌଲସ୍ତ୍ୟ ମାର୍କଣ୍ଡ ବିଶ୍ୱାମିତ୍ର
ସର୍ବ ଋଷିଙ୍କର ପାଦେ ହେଲେ ପ୍ରଣିପାତ ।
ଧୂପ ଦୀପ ନଇବେଦ୍ୟ ଗନ୍ଧ ପାଦାସନ
ଦେଇ ବିଧାନେ କରିଲେ ବିପ୍ରଙ୍କୁ ବରଣ ।
ବାମପାର୍ଶ୍ୱେ ଯାଜ୍ଞସେନୀ ଦ୍ରୁପଦ କୁମାରୀ
କରେ କୁଶବଟୁ ସଙ୍ଗେ ଯବତଣ୍ଡୁଳ ଭରି ।
ଆସନରେ ବିଜେ କଲେ ଯାଇ ଦଣ୍ଡଧାରୀ
ଦକ୍ଷିଣ ପାର୍ଶ୍ୱେ ଅଛନ୍ତି ଦେବ ଦଇତ୍ୟାରି ।
ଧୌମ୍ୟ ପୁରୋହିତ ସର୍ବ ବାକ୍ୟାଦି ଉଚ୍ଚାରି
ଯଜ୍ଞକର୍ମ ଆରମ୍ଭିଲେ ସୁବିଧାନ କରି ।

ବହୁତର ବେଦଧ୍ୱନି କରନ୍ତି ବ୍ରାହ୍ମଣେ
ଯଥାବିଧିରେ ଆଶିଷ ମଙ୍ଗଳ ବଚନେ ।
ଅଗ୍ନି ଆଚ୍ଛାଦନ କଲେ ସ୍ୱାହା ସ୍ୱଧା ମେଳେ
ଅଷ୍ଟାଦଶ ପ୍ରତ୍ୟଙ୍ଗିଛି ସପ୍ତ ବ୍ରହ୍ମବାଳେ ।
ସେମାନଙ୍କ ଦ୍ୱାରା ଯଜ୍ଞକାର୍ଯ୍ୟ ହେବ ସିଦ୍ଧି
ତାଙ୍କ କର୍ମରେ ସନ୍ତୁଷ୍ଟ ହେବେ ଦେବତାଦି ।
ପ୍ରାଣ ତେଜ ବୈଶ୍ୱାନର କାଳାନଳ ଜ୍ୱାଳା
ଜାତ ଅଗ୍ନି କୋଳେ ଏ ପିଙ୍ଗଳ ମୂର୍ତ୍ତିକଳା ।
ଆତ୍ମ ଜ୍ୟୋତି ସୁଷୁମ୍ନା ଅଜପାରୁ ମନ୍ତ୍ରେ
ଯଥାବାକ୍ୟ ଉଚ୍ଚାରଣ କରନ୍ତି ସ୍ତୋତ୍ରେ ।
ଜଟି କଟି ହଟି ଆଗ୍ରୁ ଘଟିମାର ନୁଟି
ଏହି ସ୍ୱରମୂଳେ ଅଷ୍ଟାଦଶ ମଧ୍ୟ ଖଟି ।
ଜାତ ଅନଳ ଅଗ୍ନି ଯେ ସମିଧ ବୃତ୍ତାନ୍ତ
ଏହା ମୂଳକର ଷୋଳଲକ୍ଷ ଯେ ଅଶ୍ୱନ୍ତ ।
ବଜେ କଲେ ଯାଜନକ ଯେ ଯାହାର ସ୍ଥାନ
ଯଥାବିଧି ମନ୍ତ୍ରେ କଲେ ସାମବେଦ ଗାନ ।
ପଞ୍ଚାମୃତ ଆଦିକରି ନଇବେଦ୍ୟ ସାରି
ବୈଶ୍ୱାନର ମୂଳଧେନ ମନ୍ତ୍ର ଅଷ୍ଟ ସ୍ତବ ।
ଗୁଆଘୃତ ବ୍ରହ୍ମକର୍ମ ଆଦି ଘାଳସୁର
ଅଷ୍ଟାଦଶ ଦହନ ଯେ ଦ୍ୱାଦଶ ତୋହର ।
ଯଜ୍ଞକୁଣ୍ଡ ସମ୍ମାର୍ଜନ କରନ୍ତି ମାର୍କଣ୍ଡ
ଅଗ୍ନିଦେବତା ବିଜୟ କଲେ ଅଗ୍ନିକୁଣ୍ଡ ।
ପ୍ରଥମେ ଆହୁତି ଦେଲେ ବୈଶ୍ୱାନର ମୂଳେ
ଘୃତ ସଜାଇଲେ ଅଗ୍ନିଦେବ ଗଣ୍ଡସ୍ଥଳେ ।
ତହୁଁ ସ୍ୱାହାକର ମନ୍ତ୍ର ଛାଡ଼ିଦେଲେ ଘୃତ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ଜଗନ୍ନାଥ ।
ବ୍ରାହ୍ମଣମାନେ ମିଳଣ କଲେ ବେଦଧ୍ୱନି
ମଙ୍ଗଳ ଗୀତ ଗାବନ୍ତି ସୁଶୀଳା କାମିନୀ ।
ଦ୍ୱାରଦେଶରେ ଗାବନ୍ତି ଆସି ଚଣ୍ଡସୁତ
ଗ୍ରହଶାନ୍ତି ମନ୍ତ୍ରମାନ ପଢ଼ନ୍ତି ପଣ୍ଡିତ ।
ଘୃତ ପାନରେ ବିକାଶ ହୋଇଲେ ଅନଳ
ଯୁଧିଷ୍ଠିରଦେବ ଛାଡ଼ିଲେ ଅଞ୍ଜଳି ତଣ୍ଡୁଳ ।
ବ୍ରାହ୍ମଣଗଣ ମିଳଣ କରନ୍ତି କଲ୍ୟାଣ
ଧର୍ମପ୍ରାପ୍ତ ହେଉ ଧର୍ମ ବୋଲନ୍ତି ବ୍ରାହ୍ମଣ ।
ଅଗ୍ନିଙ୍କର ତେଜ ଦେଖି ବୋଲନ୍ତି ଦୁର୍ବାସା
ହେ ବ୍ୟାସ ନ ଦିଶେ କପାଁ ଅଗ୍ନିଙ୍କର ଶିଖା

କୁମ୍ଭପର ଦ୍ୱିଜ ଦେଲେ ପ୍ରଥମ ଆହୁତି
ମହା ଶିଖା ନ ଉଠିଲା ଅନଳର ଜ୍ୟୋତି ।
ମାର୍କଣ୍ଡ ବୋଇଲେ ତହିଁ ଶୁଣ ମୁନିବର
ଆଜକାଲି ଅଟେ ଦିନ ମାସ ଯେ ମକର ।
ମକର ମାସେ ଆଦିତ୍ୟ ଅନଳ ଉଦୟେ
ତାହାଙ୍କ ତେଜ ହେତୁରୁ ଦିଶଇ ଏ ପ୍ରାୟେ ।
ବଶିଷ୍ଠ ବୋଇଲେ ଆହେ ଏମନ୍ତ ନୁହଇ
ଏହି ଅନଳରେ କାହିଁ ଆଦିତ୍ୟ ଦିଶଇ ।
ନିଜେ ଯାଜନକ ହୋଇ ତହିଁ ମାରକଣ୍ଡ
ତହିଁକି ଆଦିତ୍ୟ ତେଜ ହେବ ପରଚଣ୍ଡ ।
ନାରଦ ବୋଇଲେ ତୁମ୍ଭେ କହ ନାନାକଥା
ଶାସ୍ତ୍ର ଅନୁସାରେ କହ ଯଥାର୍ଥ ବାରତା ।
ଦୁର୍ବାସା ବୋଇଲେ ତୁମ୍ଭେ କଳିପ୍ରିୟ ମୁନି
ଭୂତ ଭବିଷ୍ୟତ ଜାଣି ଶୁଣି ମହାଜ୍ଞାନୀ ।
କାହିଁପାଇଁ ନ ଉଠିଲା ଶିଖା ଅନଳରୁ
ସେ କଥା ଦେଖାଅ ମୁନି ଶାସ୍ତ୍ର ସଙ୍କେତରୁ ।
ନାରଦ ବୋଲନ୍ତି ମୋତେ କହ କଳିପ୍ରିୟ
ସତ୍ୟ ଯା ଦେଖଇ ତାହା ବୋଲଇ ନିଶ୍ଚୟ ।
ସତ୍ୟ କହିଲେ ନିଶ୍ଚୟ ଲାଗେ ତହିଁ କଳି
ତେଣୁ ବୋଲୁଥାନ୍ତି ମୋତେ କଳିପ୍ରିୟ ବୋଲି
ମାର୍କଣ୍ଡ ବୋଲନ୍ତି ତୁମ୍ଭେ ଯଥାର୍ଥ ଉଗର
ସର୍ବ ଦୁଃସହ କୃଷ୍ଣଙ୍କୁ ହୁଅଇ ଗୋଚର ।
ନାରଦ ବୋଇଲେ କହ ଯଥାର୍ଥ ବଚନ
ଅପୁତ୍ରକ ଅଟନ୍ତି ଯେ ଯୁଧିଷ୍ଠିର ରାଜନ ।
ସନ୍ତାନ ଅଭାବେ ସିନା ଧର୍ମହାନି ହୁଏ
ତେଣୁକରି ଅଗ୍ନିଦେବ ଆହୁତି ନ ନିଏ ।
ରାଜା ହୋଇକରି ଯେବେ ହେଲା ଅପୁତ୍ରକ
ନ ହୁଏ ବସୁଧା କେବେ ସୁଫଳ ଦାୟକ ।
ଅପୁତ୍ରକ ହୁଅଇଟି ଯେଉଁ ଦେଶ ରାଜା
ବହୁତ ଦୁଃଖୀ ହୁଅନ୍ତି ତହିଁ ଜନପ୍ରଜା ।
ଅପୁତ୍ରକ ହୁଅଇଟି ଯେଉଁ ମହୀପାଳ
ଦେବତାଏ ତା ହସ୍ତରୁ ନ ନେନ୍ତି ଜଳ ।
ନୃପ ହୋଇକରି ଯେବେ ଅପୁତ୍ରକ ହେଲେ
ପାନ୍ତି ଅମନାତ୍ୟ ଭଲ ନ ପାଆନ୍ତି ଭଲେ ।
ଯୁଧିଷ୍ଠିର ଅପୁତ୍ରକ ପୁତ୍ର ତହିଁ ନାହିଁ
ଅଗ୍ନିଦେବ ଆହୁତିରେ ପଶିବେ କପାଇଁ ।

ନାରଦଙ୍କର ସ୍ତୁତ ବଚନକୁ ଶୁଣି
ସ୍ତମ୍ଭୀଭୂତ ହୋଇଗଲେ ପ୍ରଭୁ ଚକ୍ରପାଣି ।
କୃଷ୍ଣ ସ୍ତମ୍ଭୀଭୂତ ଦେଖି ହସି ବ୍ୟାସଙ୍କରା
ନାରଦଙ୍କ ବୋଲନ୍ତ ମୋ ଶୁଣ ଏକକଥା ।
ଯୁଧିଷ୍ଠିର ଅପମାନ ହୋଇଲେଁ କପଟ
ପଞ୍ଚଭାଇ ଏକଆତ୍ମା ବ୍ରହ୍ମ ମନେକର ।
ଆଦ୍ୟ ବନବାସ କାଳେ ହିଡମ୍ବ ର ବନେ
ହିଡମ୍ବାକୁ ବିବାହ ହେଲେ ଭୀମସେନେ ।
ନବାରଭବତ ସୁତା ହେଉଁ ଅଭିପର୍ଣ୍ଣା
ଅନାଦି ମାହେଶ୍ୱରୀ ସେ ନଟଜ୍ଞାମୀ ପ୍ରିୟା ।
ସେହି ହିଡମ୍ବି କ ଗର୍ଭେ ଭୀମ-ଔରସରେ
ଘଟୋତ୍କଚ ଜାତ ହେଲା ଜାଣନ୍ତି ସଂସାରେ ।
ଭୀମସୁତ ଯୁଧିଷ୍ଠିଙ୍କ ନୁହେ କି କୁମର
ଅପ୍ରବକ୍ତ ବୋଲି ବୋଲ କେଉଁ ପରକାର ।
ନାରଦ ବୋଇଲେ ତାହା ଜାଣି ଶୁଣି ବ୍ୟାସ
ଯାଗକାଳେ ସେ ପୁତ୍ରକୁ ନ ଡାକିଲ ପାଶ ।
ବେଦଶାସ୍ତ୍ରବକ୍ତା ହୋଇ କପାଁ ହେଲ ବଣା
ଏ ମହାଯଜ୍ଞକୁ ତାକୁ କେଡକର ଅଣା ।
ତା ଶୁଣି ଶ୍ରୀହରି ଆଜ୍ଞା କରିଲେ ଭୀମକୁ
ମନେ ଚିନ୍ତା କର ଏବେ ତୋହର ପୁତ୍ରକୁ ।
ଧନ୍ୟ ତମ୍ଭାକ୍ତ ତୋହର ଆହେ ଚକ୍ରପାଣି
ତୋ ପାଦେ ଶାରଦା ବାସ କରୁଛୁ ଦଇମା ।

---

## ଘଟୋତ୍କଚକୁ ସଭାକୁ ଆନୟନ ଓ ହିଡ଼ିମ୍ବଂକୀ ସହିତ ଦ୍ରୌପଦୀର କଳହ

ଶ୍ରୀହରିଙ୍କ ବଚନରେ ବୀର ବୃକୋଦର
ନାମ ଧରି ହୃଦଘଟେ ଚିନ୍ତଇ କୁମର ।
ସେଠାରୁ ହିଡମ୍ବୀ ବନ ନବଣତ ଧ୍ୱଣ
କର୍ଣ୍ଣିଲ ଘଟୋତ୍କଚର ଦେହ ପୁଣ ପୁଣ ।
ଜନନୀ ଆଗେ କୁମର ଯାଇଣ ପଚ୍ଛଇ
ମୋହର ଆସନ ମାଗୋ କପାଇଁ କମ୍ପଇ ।
ପୁତ୍ରର ବଚନ ଶୁଣି ହୃଦଘଟେ ଗୁଣି
ସକଳ ବ୍ରହ୍ମାଣ୍ଡ ତାକୁ ଦିଶିଲା ସେକ୍ଷଣି ।
ପୁଣି ପୁତ୍ରର ନିକଟେ କହେ ମାତା ତାର
ତୋତେ ଦେଖି ଲୋଡ଼ୁ ଛନ୍ତି ତୋହର ପିଅର

ତାହା ଶୁଣି ସେ କୁମର ବୋଇଲା ମାତାକୁ
କସ ଭେଟିଦ୍ରବ୍ୟ ନେବ ପିତାଙ୍କ ପାଶକୁ ।
ମାତା ବୋଇଲା ସେଠାରେ ଜନ୍ତ ଲକ୍ଷେରାଜା
ବଡ ସମ୍ଭ୍ରମରେ ଚଢିଁ ଭେଟିବ କ ପୂଜା ।
ଷଟେରଥ ପୁଞ୍ଜଇଲା ପାଣିଦ୍ରବ୍ୟ ଯେତେ
ଶତରଥ କସ୍ତୁରୀରୁ ଯୁଆଳ ସହିତେ ।
ସୁଗନ୍ଧ ଅଏଁଳା ନେଇ ଏକଲକ୍ଷ ଭାର
ଲକ୍ଷେଭାର ସଜକଲା ଚନ୍ଦନ କର୍ପୂର ।
ପୁଣି ଲକ୍ଷ ଲକ୍ଷ ଭାର ନେଲା ତରଫଳ
ନୀଳା ପାଟ ସଜ ହେଲା ହିଡମ୍ବୀର ବାଳ ।
ସଙ୍ଗେ ଜଣାତରଦଳ ଷଟେସସ୍ ରଥୀ
ମକଟ ତେଜ ରଶ୍ମିର ବାଳଅର୍କ ଜ୍ୟୋତି ।
ମାତା ଚରଣେ ଓଳଗି ମାଗିଲା ମେଲାଣି
ତାରକ୍ଷୀଡପା କଳକୁ ଆସେ ଥାଟ ଘେନି ।
ଖୋଳାଏ ଦୂର ହିଡମ୍ବୀ ଆସଇ ପାଗ୍ରେଟି
ବୋଲେ ହୃଦେ ଧରିଥିବୁ ମୋର କଥାଗୋଟି
ବାଟରେ ଭେଟିବୁ ତୋର ତାତ ଭୀମସେନ
ପିତାଙ୍କୁ ତୁ ନମସ୍କାର କରିବୁ ବହନ ।
ଦ୍ୱିତୀୟରେ ପ୍ରଣିପାତ ହେବୁ ବାସୁଦେବ
ତୃତୀୟେ ପ୍ରଣାମ ହେବୁ ଯାଇ ଯଜ୍ଞଠାବ ।
ଚତୁର୍ଥେ ନମିବୁ ଯାଇ ଯୁଧିଷ୍ଠ ଦେବଙ୍କ
ଆବର ତୁ ନମସ୍କାର ନୋହିବୁ କାହାକୁ ।
ବୃଦ୍ଧ ଅଟ୍ଟ ହିଡିମ୍ବି କ ବଚନ ମୂର୍ଦ୍ଧନା
ମାନବକୁଳକୁ ଅଟ୍ଟ ତୁ ଦେବତା ସିନା ।
ଘଟୋତ୍କଚ ବୋଲେ ମାତଃ ଅଧର୍ମ ଉକ୍ତିଲୁ
ହିଂସାପ୍ରାପ୍ତ କର ମାଗୋ ମୋତେ ନିବେଧିଲୁ
ଯୁଧିଷ୍ଠିଙ୍କ କୋଳେ ଥିବେ ଦ୍ରୁପଦଦୁହିତା
ନମସ୍କାର କଲେ ତାଙ୍କୁ ଲକ୍ଷେକ ନୃପତି ।
ବ୍ରାହ୍ମଣ ପଜାର ସେହି ଅଟଇ କୁମାରୀ
ଯଜ୍ଞ ଜାତ ସେ ଅଜାତ ଦେବୀ ମାହେଶ୍ୱରୀ ।
ଯୁଧିଷ୍ଠି ଦେବଙ୍କଠାରୁ ଅଟେ ଗୁରୁହଂସୀ
ସେ କୋପ କରିଲେ ଅଙ୍ଗ ହୋଇଯିବ ଧ୍ୱଂସୀ
ତୋର ତାଙ୍କଠାରେ ଅଛି ସପତ୍ନୀ ହିଂସା
ତେଣୁକରି ନ ଗୁଡ଼ିଲୁ କନକ ମନିଷା ।
ହିଡ଼ମ୍ବୀ ବୋଇଲା ତୁ ତ ବନେ ଅଧିପତି
ବଜ୍ର କବଚର ଭୁଜେ ତୋର ଉତପତ୍ତି ।

କୋଟିଶଥି ଲେଜକର ହେଷନାଦ ବୃଷ୍ଟିର
ଅଭିଷେକ କରଅଛୁ ତୋହର ଏ ଶିର ।
ପାଣ୍ଡବଙ୍କୁ ନମସ୍କାର ନୁହଇ ଯୁକତେ
ସ୍ତ୍ରୀ ଗୋଷ୍ଠୀକୁ ନମସ୍କାର କରବୁ କେମନ୍ତେ ।
କୃଷ୍ଣ ଯେ ବୋଇଲୁ ସେହୁ ଯଜ୍ଞରୁ ଉତ୍ପତ୍ତି
ସ୍ତ୍ରୀକୁଳକୁ ଦୂଷିତ ସେ ଦୋଷ୍ଟଣା ଯୁବତୀ ।
ପୁଂସ ପଞ୍ଚବଂଶ ନାଶ କରବେ ଯୁକତେ
ସ୍ତ୍ରୀ ହୋଇ ପଞ୍ଚସ୍ୱାମୀ ବରିଲା କେମନ୍ତେ ।
ସ୍ତ୍ରୀର ପାମଣ୍ଡ ସେ ନାରୀ ଅଟଇ ଅସତୀ
ତାକୁ ନମସ୍କାର କଲେ ଆୟୁ ହେବ କ୍ଷତି ।
ପୁତ୍ର ଉକ୍ତି ଦେଖିକରି ହିଡ଼ିମ୍ବୀ ବୋଲେ
ସେ ଠାବକୁ ଯିବ ମୁହିଁ ଭୁଲି ତୋହ ଭୁଲେ
ପୁତ୍ରକୁ ଯେଦେଣ ବଜ୍ରକବଚ ନନ୍ଦନା
ନିଜରୂପ ତେଜ ମାୟାରୂପକୁ ସେ ଘେନ ।
ଆକାଶେ ଉଠୁ ତାହାର ମଧ୍ୟରେ ପାଟି
ଗର୍ଭେ ପୂରାଇ ରଖିଲ ରଥ କୋଟି କୋଟି ।
ଇନ୍ଦ୍ରଙ୍କର ରୂପେ ଆସେ ଆକାଶ ମାର୍ଗରେ
ଦେବତାଏ ପଳାଇଲେ ତାକୁ ଦେଖି ଡରେ ।
ଭୀମସେନ ମୁଖ ଚାହିଁ ବୋଲନ୍ତି ଶ୍ରୀବତ୍ସ
ପୁତ୍ର ଘେନ ହିଡ଼ିମ୍ବୀ ଶୂନ୍ୟେ ଆସୁଅଛି ।
ଯୁଧିଷ୍ଠିର ପୁଚ୍ଛା କଲେ ସହଦେବ ପାଶ
ବାବୁ ରେ କପାଇଁ ସୂର୍ଯ୍ୟ ହୋଇଲେ ଅଦୃଶ୍ୟ
କରଯୋଡ଼ି ସହଦେବ ବଚନ ବୋଇଲ
ହିଡ଼ିମ୍ବୀ ଦେଖି ସୂର୍ଯ୍ୟ ଉହାଡ଼େ ଲୁଚିଲ ।
ସ୍ୱାମୀ ହେ କୋଟିଏ ରଥ ଉଦରେ ପୂରାଇ
ପୁତ୍ର ଘେନ ଆକାଶରେ ଆସୁଅଛି ଧାଇଁ ।
ଭୀମସେନଙ୍କୁ ଡାକିଣ କହନ୍ତେ ଶ୍ରୀନାଥ
ଆସୁଅଛି ହିଡ଼ିମ୍ବୀ ପୁତ୍ରର ସହିତ ।
ମହାବିଶ୍ୱରୂପ ଧରି ଆସେ ହିଡ଼ିମ୍ବୀ
ମନୁଷ୍ୟ ହସ୍ତ ହୋଇବେ ତାର ରୂପ ଦେଖି ।
କିଛିଦୂର ଯାଏ ବାବୁ ତୁ ପାଛୋଟି ଯାଅ
ଧୂଳେ ଘେନଆସ ତୋର ପତ୍ନୀ ଆଉ ପୁଅ ।
ଆଜ୍ଞା ପାଇ ଭୀମସେନ ଚଳିଲ ବହନ
ମନ୍ମଥ ପର୍ବତ ଯାଏ କରିଲ ଗମନ ।
ସ୍ୱାମୀ ବଚନ ଶୁଣିବା ମାତ୍ରେ ଅସୁରୀ
ବିଶ୍ୱରୂପ ତେଜ ହେଲା କନ୍ଦର୍ପ ସୁନ୍ଦରୀ ।

କାମସେଣା ପଞ୍ଚମ୍ବେକ ସେ ସ୍ତ୍ରୀ ହୋଇଲ
ସ୍ୱାମୀ ପାଦତଳେ ଆସି ପ୍ରଣିପାତ କଲ ।
ଘଟୋତ୍କଚ ପ୍ରଣମିଲା ଭୀମସେନ ପାଦ
ପୁତ୍ର ଭାର୍ଯ୍ୟା ଦେଖି ଭୀମ ହେଲେ ଗଦଗଦ ।
ଯାନ ବାହନ ତେଜିଲେ ସକଳ ସୈନ୍ୟ
ଭୀମସେନଙ୍କ ପାଦରେ ଯାଇ କଲେ ମାନ୍ୟ ।
ପୁତ୍ରଙ୍କୁ କୋଳରେ ଧରି ପାଣ୍ଡବ ସୁନ୍ଦର
ସର୍ବ ବାରତା ପୁଚ୍ଛଇ କୁଶଳାଦ ତାର ।
ସକଳ ସୁଲଭ ବୋଲି କହଇ କୁମର
ଭାର୍ଯ୍ୟାକୁ ସମ୍ବୋଧନ କରେ ବୃକୋଦର ।
ବାହୁଣା ପରବତରେ ରଖି ସୈନ୍ୟବଳ
ନିତ୍ୟ ଭୋଜନ ତାହାଙ୍କୁ ଦିଅନ୍ତି ସକଳ ।
କୁମରକୁ ଘେନ ଭୀମ ବେଗେ ଗଲେ ଚଳି
ଦ୍ୱାରରେ ରହିଲା ବଜ୍ରକବଚ ଦୁଲଣୀ ।
ଭିତରେ ପ୍ରବେଶ ହେଲା ଘଟୋତ୍କଚ ବୀର
ଶ୍ରୀନାରାୟଣଙ୍କୁ ଦେଖି କଲା ନମସ୍କାର ।
ଆଗେ ଆଗେ ବାସୁଦେବ ପଛେ ଭୀମସେନ
ମଧ୍ୟେ ଘଟୋତ୍କଚ ଚଳେ ହିଡ଼ିମ୍ବୀ ନନ୍ଦନ ।
ବ୍ୟାସ ବଶିଷ୍ଠଙ୍କୁ ଚାହିଁ ନମସ୍କାର କରି
ଅନ୍ୟ ଋଷିଙ୍କୁ ମାନନା କଲେ ସେହିପରି ।
ରାଜାମାନେ ନିରୂପଣ କଲେ ତାକୁ ଦେଖି
ଧ୍ୟାଇ ମାମୁଁ ହିଡ଼ିମ୍ବିକ ମାତା ହିଡ଼ିମ୍ବୀ ।
ଭୀମସେନ ହିଡ଼ିମ୍ବକ ଅସୁରକୁ ମାରି
କୁମାରୀ କନ୍ୟା ବଳ ଆଦିକୁ ନିବାରି ।
ବଜ୍ରକବଚ ନନ୍ଦନୀ ଭୀମେ କଲା ଇଚ୍ଛା
ଘଟୋତ୍କଚ ଅଟେ ତେଣୁ ଭୀମସେନ ବତ୍ସ ।
ସର୍ବେ ଆନନ୍ଦିତ ହେଲେ କୁମରକୁ ଚାହିଁ
ବୋଇଲେ ଦେଖିଲୁ ପୂର୍ବେ ଦେଖିନାହୁଁ କେହି
ଆସ୍ଥାନ ତଳକୁ ନେଲେ ଦେବ ଜନାର୍ଦ୍ଦନ
ବସ୍ତ୍ରଧନ ଉତ୍ସବ କଲେକ ଦର୍ଶନ ।
ପ୍ରତ୍ୟକ୍ଷରେ ନିରଞ୍ଜନ ଅଟନ୍ତି ଏ ସ୍ୱାମୀ
ବଳିର କୁମାର ହେଲା ତହିଁ ପରଣାମି ।
ଶ୍ରୀକୃଷ୍ଣ ବୋଇଲେ ଦେବ ଅବଧାନ କର
ହିଡ଼ିମ୍ବକବଚ ରାଜା କଲେ ନମସ୍କାର ।
ଜୟପ୍ରସାଦ ବୋଲିଣ ଆଜ୍ଞା ଅବଧାରି
ସ୍ତମ୍ଭରେ ଉଭା କୁମର କାଖେ ହସ୍ତ ଧରି ।

ଦ୍ରୌପଦୀର ମୁଖ ଦେଖି ହେଲା ହେଟମଥା
ଦେଖିଣ କୋପ କରିଲେ ଦ୍ରୁପଦ ଦୁହିତା ।
ପୁତ୍ରଠାରୁ ଅପମାନ ପାଇଣ ପାଞ୍ଚାଳୀ
ରାଗେ ପ୍ରଚଣ୍ଡ ନେତ୍ରରୁ ଅଶ୍ରୁ ପଡ଼ଇ ଗଳି ।
ରାଗେ ଅଧୀର ହୋଇଣ କର୍ମ ମାହେଶ୍ୱରୀ
ଘଟୋତ୍କଚ ମୁଖ ଚାହିଁ ଆଜ୍ଞା ଅବଧାରି ।
ଆରେ ଘଟୋତ୍କଚ ତୁହି ମାତା ଶିକ୍ଷାପାଇ
ଅବଜ୍ଞାରେ ନମସ୍କାର ନ ହେଲୁ ରେ ବାଇ ।
ମୁଁ ଯାଜ୍ଞସେନୀ ଯୁଧିଷ୍ଠିରଦେବ ପାଟବଂଶୀ
ପାଣ୍ଡବଙ୍କୁ ଶତଗୁଣେ ମୁହିଁ ଗୁରୁହଂସୀ ।
ବ୍ରାହ୍ମଣ ରାଜା ଦ୍ରୁପଦ ମୁଁ ତାର କୁମାରୀ
ତୋର ମାତା ନିଲକ୍ଷଣୀ ଅଟଇ ଅସୁରୀ ।
ମାତାର ବଚନ ପାଳ ତୁହି ଆରେ ଦୁଷ୍ଟ
ମୋତେ କପା ନମସ୍କାର ନ କଲୁ ପାପିଷ୍ଠ ।
ଏ ମହାସଭାରେ ମୋତେ ଲଜ୍ଜା ତୁ ଦିଆଉ
ମୋ ଶାପରେ ତୁ ପାମର ହେବୁ ଅଳ୍ପଆୟୁ ।
ମାତା ପାପିଷ୍ଠୀର ବୋଲେ ହିଙ୍ଗାସିଲୁ ମୋତେ
ଅଯୁଦ୍ଧେ ଶକତି ପଡ଼ୁ ତୋର ହୃଦଗତେ ।
ଏହିରୂପେ ଶାପଦ୍ୟନ୍ତେ ଦ୍ରୁପଦ କୁମାରୀ
ଭୟେ ଘଟୋତ୍କଚ ତହୁଁ ପଳାଇଲା ଡରି ।
ଦ୍ୱାରେ ଥାଇ ଦ୍ରୌପଦୀର କଥା ଶୁଣୁଥିଲା
ଗଦକୁ ପେଲି ହିଡମ୍ବା ଭିତରେ ପଶିଲା ।
ଲଜ ଭୟ ସଙ୍କୋଚିଦ ସବୁ ତ୍ୟାଗକରି
ଦ୍ରୌପଦୀକୁ ବାକ୍ୟ କହେ ଅତି କୋପ ଧରି ।
ଆଲୋ ଦେଖୁଛୁ ତ ମୁହିଁ ତୁ ବଡ଼ ଅସତୀ
ତୁ ଗୋଟାଏ ନାରୀ ହୋଇ ତୋର ପାଞ୍ଚପତି
ମୋର ପୁତ୍ର ଗୋଟି ଅଟେ ରାଜଅଭିଷେକୀ
ସେ କି ପ୍ରଣାମ କରିବ କୌଣସି ନାରୀକି ।
ମୋ ଅଜ୍ଞାନ ବାଳସୁତ ତାକୁ କଲୁ କୋପ
କିଛି ନ ବିଚାରି ପୁଣି ଦେଲୁ ତାକୁ ଶାପ ।
ଯେଉଁ ଶାପ ଦେଲୁ ତାକୁ ନୋହିବ ଅନ୍ୟଥା
ଯୁଦ୍ଧରେ ସେ ତୋ ସୁତ ତୁ ତାହାର ମାତା
ଯେଉଁ ଶାପ ଦେଲୁ ତାର ହୋଇବ ଲୋ ସତ
ଅରୀର ଶକ୍ତି ପଡ଼ଇ ଅରୀ ହୃଦଗତ ।
ସେ ଶକ୍ତି ପିଠିରେ ଯାଇ ଯେବେ କି ପଡ଼ନ୍ତା
ପୁଷ୍ପଇଙ୍କ ପ୍ରାପ୍ତ ଅରୀ ନର୍କଗତ ହୁଅନ୍ତା ।

ଆଲୋ ଆଣ୍ଟୁକୁଡ ତୋର ନାହାନ୍ତି ସନ୍ତାନ
ଯେଉଁରୂପେ ଶାପ ଦେବି ଶୁଣ ତା ବିଧାନ ।
ନଷ୍ଟେ ପୁତ୍ର ହେବ ତୋର ପାଞ୍ଚ ଔରସରେ
ପାଞ୍ଚଟି କୁମର ହେବେ ଜାଣିଥା ମନରେ ।
ଏ ମୋହର ବାକ୍ୟେ ତାକୁ ପଡ଼ିବ ଭ୍ରମ ତ
ରାତ୍ର ଯାତବର୍ଷେ ହେବ ତାଙ୍କ ମୁଣ୍ଡ ଛେଦ ।
ଏହିରୂପେ ହିଡ଼ମ୍ବିକା ଶାପ ଦେଲା ସତ୍ୟେ
ଦୁଇ ସତ୍ତୁଣୀଙ୍କର ଦ୍ୱନ୍ଦ୍ୱ ହେଲା ତହୁଁ ।
ଶୁଣ ବୈବସ୍ୱତ ମନୁ ରାକ୍ଷସୀ ବୃଦ୍ଧିକୁ
ଶାପକୁ ବହିଲା ଆଣି ସେ ଭବିଷ୍ୟତକୁ ।
ଶ୍ରୀଜନମେଜୟ ପୁଚ୍ଛିଲେ ବ୍ୟାସଙ୍କ ବଦନ
ହୋଇଲେ ମୁନି ଏ ଶାପ ହୋଇବ କେସନ
ଶ୍ରୀକୃଷ୍ଣ ବଚନେ ବ୍ୟାସ ଫିଟାଇଲେ ପୋଥି
ସଭାରେ ଶ୍ରବଣକାରୀ ଲକ୍ଷେକ ନୃପତି ।
ଆଗତ ପୁରାଣ କଥା ବ୍ୟାସ କହୁଛନ୍ତି
ସକଳ ଭବିଷ୍ୟ କଥା ସକଳେ ଶୁଣନ୍ତି ।
ଶୁଣ ହେ ପରମବ୍ରହ୍ମ କୃଷ୍ଣ ମହାଭାଗ
ଦୁଇକୁଳ ଦ୍ୱନ୍ଦ୍ୱୀ ହେବେ ପାଇବାକୁ ଭୋଗ ।
ପ୍ରଥମରେ ଭୀଷ୍ମ ଯାଇ ହେବେ ସେନାପତି
ଦଶଦିନ ଯୁଦ୍ଧକରି ହେବେ ବିନଶ୍ୟନ୍ତି ।
ତାଙ୍କ ଅନ୍ତେ ସେନାପତି ହେବେ ଗୁରୁଦ୍ରୋଣ
ହିଡିମ୍ବ ଦିବସ ରାତେ ହେବ ଘୋରରଣ ।
ବଜ୍ରଶକ୍ତି ଥିବ ରାଧାସୁତର ହସ୍ତରେ
ନନ୍ଦିଘୋଷ ଲୁଚିଇବ ଆପଣ ସେଠାରେ ।
ଘଟୋତ୍କଚକୁ ବୋଲିବ ସେଠାରେ ଆପଣ
ନନ୍ଦିଘୋଷ ପଛେ ଲୁଚି ବସ ରେ ଯାଇଣ ।
ଶକ୍ତି ବୁଲାଇ ମାରିବ ରାଧାର କୁମର
ପାତାଳେ ଲୁପିବ ରଥ ହନୁମନ୍ତ ବୀର ।
ସେ ରଥ ପାତାଳଦେଶେ କରନ୍ତେ ଗମନ
ଘଟୋତ୍କଚ ବକ୍ଷେ ଶକ୍ତି ହୋଇବ ପତନ ।
ବେଦବ୍ୟାସ ଜଣାଇଲେ ଆଗତ ବିଷୟ
ଘଟୋତ୍କଚ ନାଶ କଥା ଏହି ଦେବରାୟ ।
ଆବର ପୁଚ୍ଛା କରିଲେ ପ୍ରଭୁ ଚକ୍ରଧର
ପାଞ୍ଚାଳୀ ପୁତ୍ରଙ୍କ କଥା କହ ମୁନିବର ।
ବ୍ୟାସ ବୋଇଲେ ଅଟଇ ଏହି ତତ୍ତ୍ୱକଥା
ଦ୍ରୋଣ ଅନ୍ତେ ସେନାପତି କର୍ଣ୍ଣ ମହାରଥୀ ।

ଅଢ଼ାଇ ଦିବସ କର୍ଣ୍ଣ କରିବ ସମର
ଶେଷେ ଗଦାଯୁଦ୍ଧ ହେବ ଉଭୟ ମାତର ।
କୌତୁକ ରଣ ହୋଇବ ଅଷ୍ଟାଦଶ ଦିନ
ପାଣ୍ଡବ ପାଞ୍ଚଭାଇ ସେ କରି ଜୟ ରଣ ।
ଶୁଭ ଅନୁକୂଳ ଘେନି ଯମପ୍ରସ୍ଥେ ଯିବେ
ଅର୍ଘ୍ୟ ଘେନି କୁନ୍ତୀଦେବୀ ବନ୍ଦାଇଣ ନେବେ
ପାଣ୍ଡବଙ୍କୁ ଘେନି କୃଷ୍ଣ ଚଳିବ ଦ୍ୱାରକା
ପାଞ୍ଚାଳ ସୁତେ ରହିବେ ହୋଇଣ ନିଃଶଙ୍କା ।
ଅଶ୍ୱତ୍ଥାମା ସେନାପତି ହେବ ଯେ ରାତିରେ
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ମାରିବ ଖଣ୍ଡାରେ ।
ପାଞ୍ଚାଳୀ ପାଞ୍ଚକୁମର ଶୋଇଥିବେ ଖଟେ
ପଶି ଘେନି ଅଶ୍ୱତ୍ଥାମା କାଟିବ ଆକଟେ ।
ତହିଁ କୁମରମାନଙ୍କ ପାଞ୍ଚଗୋଟି ଶିର
ନେଇ ଧନୁ କରେ ବାନ୍ଧି କରିବ ସେ ଭର ।
ତାହା ଦୁର୍ଯ୍ୟୋଧନ ଆଗେ ପକାଇ ଦିଅନ୍ତେ
ଦୁର୍ଯ୍ୟୋଧନ ମୃତ୍ୟୁ ହେବ ତାହାକୁ ଚାହାନ୍ତେ
କହନ୍ତି ଯେ ବ୍ୟାସମୁନି ଶୁଣ ବେଦଗର୍ଭେ
ହିଡ଼ିମ୍ବିକା ଶାପେ ଏହା ଘଟିବ ନିଶ୍ଚୟେ ।
ବ୍ୟାସଙ୍କ ବଚନୁ ହରି ଏହିରୂପେ ଶୁଣି
ଅତ୍ୟନ୍ତ ହରଷ ହେଲେ ମନେ ମନେ ଗୁଣି ।
ଶ୍ରୀମୁଖରେ ମହାବାହୁ କରି ସାଧୁ ସାଧୁ
ସମାଧାନ କଲେ ତହିଁ ଦୁଇ କୁଳବଧୂ ।
ଜୟ ଜୟ ଜଗନ୍ନାଥ ଶ୍ରୀମଧୁସୂଦନ
ଅଗତି ଗତିଦାୟକ ଜଗତ ଜୀବନ ।
ତୁ ରଖିଲେ ହରି ତାକୁ କିଏ ପାରେ ମାରି
ତୁ ମାରି ଇଚ୍ଛିଲେ କେହି ନ ପାରିବେ ତାରି
ତୋହର ଏ ଖେଳଘର ତୁହି କରିଅଛୁ
ତୋହର ଖେଳକୁ ଏକା ତୁ ସିନା ଦେଖୁଛୁ ।
ତୁହି ତାକୁ ତୁହି ମାରୁ ଦେଇ ସୁଖ ଦୁଃଖ
ତୁହି କି ନ ଜାଣୁ ହରି ମୁଁ ଅତି ନିରେଖ ।
ତୋର ଶ୍ରୀଚରଣ ଛଡ଼ା ନ ଜାଣେ ମୁଁ ଆନ
ମୋହର ଭକତି ପ୍ରଭୁ ଘେନ ବା ନ ଘେନ ।
ସେଥିପାଇଁ ଭୟ ଲେଶ ନାହିଁ ତ ମୋହର
କେବଳ ରସନା ଡାକୁ ଶ୍ରୀହରି ଶ୍ରୀହରି ।
ଶାରଳା ଦାସ କହଇ ସଭାପର୍ବ ଗୀତେ
କାହିଁ ପଳାଇବୁ ହରି ସଦା ଥିଲେ ଚିତ୍ତେ ।

---

## ବିଭୀଷଣକୁ ନିମନ୍ତ୍ରଣ କରି ଆଣିବା ନିମନ୍ତେ ଘଟୋତ୍କଚର ଗମନ

ପନ୍ୱରନ୍ତ ବୈବସ୍ୱତ ମନୁ ନୃପବର
ହେ ମୁନିନାୟକ କିସ ହେଲ ଅତଃପର ।
ସେହିକଥା ଶୁଣିବାକୁ ବଳଇ ମୋ ଚିତ୍ତ
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ ।
ଅନେକ ବେଶ ଭୂଷଣ କରି ସେ କୁମରେ
ବସାଇଲେ ତାକୁ ନେଇ ଯୁଧିଷ୍ଠି କୋଳରେ
ନାନାବିଧ ମଙ୍ଗଳ ବାଦ୍ୟ ବାଜେ କରି ଧ୍ୱନି
ଦିଅନ୍ତି ହବିର୍ଭାଗକୁ ଯେ ପଟହଧ୍ୱନି ।
ଯୁଧିଷ୍ଠି ଦେବ ପୁଚ୍ଛିଲେ ଆହେ ଜନାର୍ଦ୍ଦନ
ମେଳ ହୋଇ ଅଇଲେ କି ସକଳ ରାଜନ ।
କହନ୍ତି ଶ୍ରୀ ବାସୁଦେବ ଶୁଣ ଦେବରାୟେ
ମର୍ତ୍ତ୍ୟପୁରୁ ଆସିନାହିଁ ପ୍ରତାପୀ ରାଜାଏ ।
ଅତିବଡ଼ ଗୁରୁହିଂସୀ ଅଟେ ମହାରାଜା
ତେପନ ଯୁଗ ଧାର୍ମିକ ଯେହ୍ନେ ମହାତେଜା ।
ଆଶ୍ଚର୍ଯ୍ୟ ହୋଇଲେ ଶୁଣି ଯୁଧିଷ୍ଠିର ଦେବ
ଏଡ଼େ ରାଜା ଶୁଣାନାହିଁ କାହିଁ ବାସୁଦେବ ।
କହନ୍ତି ଶ୍ରୀ ନାରାୟଣ ଶୁଣ ଆହେ ନୃପ
ବିଭୀଷଣ ନାମେ ରାଜା ଅଛି ଲଙ୍କା ଦ୍ୱୀପ ।
ସେହୁ ବଡ଼ ରାମଭକ୍ତ ପୁଣ ଅଟେ ଯତି
ତ୍ରେତୟାରେ ରାମଚନ୍ଦ୍ର ଜନମ ଲଭନ୍ତି ।
ପିତା ସତ୍ୟ ପାଳିବାକୁ ବନବାସ କଲେ
ଭାଇଭାର୍ଯ୍ୟା ସହିତରେ ଦଣ୍ଡକେ ରହିଲେ ।
ରାବଣ ଅଟଇ ଲଙ୍କାଗଡ଼ର ରାଜନ
ରାମ ପତ୍ନୀ ହରିନେଲା କରିଣ ଗୋପନ ।
ଲଙ୍କାକୁ ଗମନ କରି ତାହାକୁ ମାଇଲେ
ବିଭୀଷଣକୁ ସେଠାରେ ରାଜା କରିଦେଲେ ।
ଯୁଧିଷ୍ଠି କହିଲେ ସେ କା ଆସିବ କାହିଁକି
କୃଷ୍ଣ ବୋଇଲେ ପେଷିବା ଦୂତେକ ତହିଁକି ।
ଆସିବା ନ ଆସିବାର ଜାଣିବା ତଦନ୍ତ
ଏହା କହି ତହିଁ ଗଲେ ଦେବଜଗନ୍ନାଥ ।
ସହଦେବ ଘେନି ବିଜେ ହେଲେ ଯାଇ ଦ୍ୱାରେ
ପୁଣି ବ୍ୟାସ ପାଶେ ଯାଇ ପୁଚ୍ଛିଲେ ସତ୍ୱରେ

ଆହେ ବ୍ୟାସ ଯୋଗାଏ କି ତୁମ୍ଭର ମନକୁ
ବିଭୀଷଣଙ୍କୁ ଶ୍ରୀମୁଖ ଦେବୁ ଆସିବାକୁ ।
ବ୍ୟାସ ବୋଇଲେ ତୁମ୍ଭେ ତ ଅଟ ମହାଯୋଗୀ
ତୁମ୍ଭ ଶ୍ରୀମୁଖ ଚଳିଲେ ଆସିବ ସେ ବେଗି ।
ମନ୍ତ୍ରୀ ସହଦେବ ଶୁଣି ବ୍ୟାସଙ୍କ ସମ୍ମୁଖେ
ଶ୍ରୀମୁଖ ଲେଖନ୍ତି ଯାଇଁ ଯୁଧିଷ୍ଠିର ଅଗ୍ରତେ ।
ମାୟାରେ ପରଲୋକ ଯେ କରେ ଆଚ୍ଛାଦନ
ମନୁକାଳ ବଞ୍ଚାଇ ସେ ପୁଣ ଉତ୍ପନ୍ନ ।
ଅନନ୍ତକୋଟି ବ୍ରହ୍ମାଣ୍ଡେ ଅଜେୟ ଯେ ଜାଣ
ନରାକାର ପୁରୁଷ ଯେ ମନୁଷ୍ୟ ଧାରଣ ।
ପୂର୍ବ ଦ୍ୱାପର ପାଟକ ଯେ ଅଟେ କାରଣ
ଯେତୁ ଅଟେ ସୋମବଂଶ କୁଳ ଉଦ୍ଧାରଣ ।
ସୁଗୁଣନିଧାନ ସେହୁ କଥା ଜଗଜ୍ଜେଠି
ଶୁକ୍ଳାମ୍ବର ନିରଞ୍ଜନ ଅବତାର ଗୋଟି ।
ନାରାୟଣ ବନ୍ଦୁ ଆନ୍ତି ଯାହାଙ୍କ ଚରଣ
ସେହୁ ହସ୍ତିନାର ରଜା ରାଜେଶ୍ୱର ଜାଣ ।
ମହାରାଜା ଯୁଧିଷ୍ଠିର ପାଦେ ଜଗଦ୍ବନ୍ଦୁ
ଲଙ୍କାଦ୍ୱୀପ ରାଜା ତୁମ୍ଭେ ଯା ପାଦକୁ ବନ୍ଦ ।
ଏହି ଶ୍ରୀମୁଖ ଆଜ୍ଞାରେ ତୋର ଥାଉ ସୈନ୍ୟ
ଦେଖା ଦରଶନ ବେନି ଆସିବ ବହନ ।
ଏଠାରେ ହେଉଛି ରାଜସୂୟ ଯଜ୍ଞ ଜାଣ
ବସି ବର୍ଣ୍ଣନ କରିବୁ ଧର୍ମଙ୍କ ସନ୍ତାନ ।
ତୋତେ ଆଜ୍ଞା ଦେଲେଆରେଲଙ୍କାର ନାୟକ
ଶ୍ରୀହସ୍ତରେ ସେନ ଶଙ୍ଖ ଚକ୍ରର ସନ୍ତକ ।
ଆହୋ ବିଭୀଷଣ ମୋର ଏହି କଥା ଶୁଣ
ବହନ ଆସ ତୁ ଦେଖାଦରଶନ ବେନିଣ ।
ଏ ଗଲା ଦୂତ ସଙ୍ଗରେ ସତ୍ୱରେ ଆସିବୁ
ସମାବତାରରେ ତୋତେ କହୁନାହିଁ ବାବୁ
ଏଠାକୁ ଆସିଲେ ତୁ ଆଉରେ ବିଭୀଷଣ
ନିଷ୍ଠେ ମୁକ୍ତ କରିବି ଠାକୁରେ ବଚନ ।
ଶ୍ରୀମୁଖ ଲେଖି ଚଳାଇଲେ ଦେବ ଜଗନ୍ନାଥ
ଯଜ୍ଞସ୍ଥଳେ ନେଇ ଦେଲେ ଯୁଧିଷ୍ଠିର ହସ୍ତ ।
ଶ୍ରୀମୁଖ ସନ୍ତକ ବାନ୍ଧେ ଯୁଧିଷ୍ଠିରଙ୍କର
ବିଧି ବିଧାନ ଅଛଇ ଯେମନ୍ତ ପ୍ରକାର ।
ଯୁଧିଷ୍ଠିର ପଚାରିଲେ ଶୁଣ ହେ ଅନନ୍ତ
ଲଙ୍କାଦ୍ୱୀପେ ଯିବାପାଇଁ କାଏ ସାମରଥ ।
ଅତ୍ୟନ୍ତ ଦୁର୍ଗମନ ସିନ୍ଧୁତଡ଼ ସେହି
ମାନବ ମାତ୍ରକ ଦେବ ପାରିବ କି ଯାଇ ।
ଯୁଧିଷ୍ଠିରଙ୍କ ଅଗ୍ରତେ ବୋଇଲେ ଶ୍ରୀବତ୍ସ
ଲଙ୍କାଯିବ ହିଡ଼ିମ୍ବିଙ୍କ ପୁତ୍ର ଘଟୋତ୍କଚ
ଅନ୍ତରୀକ୍ଷେ ଗମେ ଦେବ ଅସୁରଙ୍କ ରଥ
ସେହି ଗମନ କରିବ ସେ ଦୁଃସାଧ୍ୟ ପଥ ।
ନାରାୟଣ ଆଜ୍ଞା ଶୁଣି ଧର୍ମ ନରସାଇଁ
ଘଟୋତ୍କଚେ ଆଜ୍ଞାଦେଲେ ଲଙ୍କା ଯିବାପାଇଁ
ଅନ୍ତରୀକ୍ଷ ବିମାନରେ ଚଢ଼ିଣ କୁମର
ଲଙ୍କା ଯିବାଧାଇକି ସେ ହୋଇଲା ବାହାର ।
ବାସବ ଆଜ୍ଞାରେ ଯେହ୍ନେ ଅଙ୍ଗାର ପଲ୍ଲଗ
ନାନା ଅସ୍ତ୍ର ମଧ୍ୟରେ ଯେ ଶୋଭେ ତାର ଅଙ୍ଗ
ଶ୍ୟାମ ଶ୍ରୀମୁଖ ଲମ୍ବାଏ ତାର ହୃଦରତେ
ଚଳିଲା କୁମର ଚନ୍ଦ୍ର ଦକ୍ଷିଣର ପଥେ ।
ସର୍ବରାଜାଏ ବନ୍ଦିର କରନ୍ତି ଯଜ୍ଞରେ
ଯୁଧିଷ୍ଠିର ଅଧିଷ୍ଠ ଏ ସଭାଗାରରେ ।
ତ୍ରେତାଯୁଗ ବିଭୀଷଣ ପୁଣି ମହାରାଜା
ଯୁଧିଷ୍ଠିର ପାଦେ ଆସି କରିବ ସେ ପୂଜା ।
ବଡ଼ି ଦୁର୍ଲଭ କଥାତ ଦେଖନ୍ତୁ ଏଠାରେ
ସବୁ ଆଶ୍ଚର୍ଯ୍ୟ କଥାହିଁ ହରି ପ୍ରସାଦରେ ।
ସବୁ ରଜା ମନେ ଚିନ୍ତି କଲେ ଧନ୍ୟ ଧନ୍ୟ
ଇନ୍ଦ୍ରପ୍ରସ୍ଥରୁ ବାହାରେ ହିଡ଼ିମ୍ବି ନନ୍ଦନ
ଝଞ୍ଜା ଭାନ ପରାଏ ଭୀମସେନ ବାଳ
କାରିଂକୋଶରକୁ ଜଣ ତେଜ ଅନର୍ଗଳ ।
ଜମ୍ବୁଦ୍ୱୀପ ପ୍ରଦକ୍ଷିଣ କଲା ଏକରକ୍ଷେ
କ୍ଷୀରୋଦକୁ ଜାଣି ଗଲା ଉଜଗା ପ୍ରଭାତେ ।
ମାଘ ଶୁକ୍ଳପକ୍ଷ ସୋମବାର ତୃତୀୟାରେ
ଉତ୍ତରଭାଦ୍ର ନକ୍ଷତ୍ର ପାଞ୍ଚଦଣ୍ଡ ଠାରେ ।
ଘଟୋତ୍କଚ ପ୍ରବେଶିଲା ଲଙ୍କାର ମଧ୍ୟେଣ
ଆସ୍ଥାନରେ ବସିଛନ୍ତି ରଜା ବିଭୀଷଣ ।
ଗ୍ରୀଷ୍ମରେ ଯେ ବସିଛନ୍ତି ପାତ୍ର ଅମାତ୍ୟ
ଶୂନ୍ୟେ ବିରାଳ ଗମନ୍ତେ ଛନ୍ତି ଏକ ରଥ
ସ୍ୱମୁଖରେ କାନ୍ଥେ ଧାତୁଗ ନାମେ ଏକମନ୍ତ୍ରୀ
ଆକାଶରେ ଭୂଲି ଆସେ ଦେଖ ଏକରଥ ।
ପଶ୍ଚିମାପୂର୍ବକୁ ତେଜ ଆସେ କି କୁବେର
ଆକାଶର ନାଥ କିବା ଆସେ ସୁନାସୀର ।

ଦ୍ୱାପରଯୁଗେ ହୋଇବ ଏ କଥାର ମହିମା
ଶ୍ରୀରାମଙ୍କ ଚରଣ ସେ ସ୍ମରଣ ସେବା ।
ଶୁଣିଏ ବୋଲେ ଭାଗ୍ୟନିଧି ନାଥ ରଘୁବର
ଏ ବୋଲେ ଆପଣଙ୍କ ବୈଭବ ଈଶ୍ୱର ।
ଏଥରକେ ଅଗ୍ରଜଙ୍କ ବଚନ ମନନ
ଘଟୋତ୍କଚ ଦେବକିଙ୍କ ଛନ୍ତି କଥ ସେବ ।
ଶଙ୍ଖଚକ୍ର ଚକ୍ରର ସେ ରଥର ଉପର
ଆସ୍ଥାନ ଲେଖ ଉଠଲେ ବେଦେ ଲଙ୍କେଶ୍ୱର ।
ରଥର ଓହ୍ଲାଇ ଭକ୍ତ ବିଭୀଷଣ ଭାଇ
ଜଗନ୍ନାଥ ଜମରକ ଚରେ ରଚନାତ ।
ଚମ୍ପକରେ ଶ୍ରୀମୁଖ ଅଛି ସେ ଲଯାର
ବିଭୀଷଣ ଆହ୍ଲାଦର କେଶିଣ ଉଠର ।
ମହାମାରଣ ମନ୍ତ୍ରୀ ସେ ଖଣ୍ଡରେ ଉଦର
ଆବେ ଭାବ ସେଇଁଦେଶ୍ୱ ବୋଲଇ ଆଗତ ।
ଶ୍ରୀମତ ବୋଲେ ପାଏଣ୍ଡା ପାଞ୍ଚ ବିଭୀଷଣ
ନୀଳଗିରି ଉଣ୍ଡ ବେଦେ ସ୍ୱାମୀ ଆଜ୍ଞା ସେବ ।
ବିଭୀଷଣ ବୋଲେ ମନ୍ତ୍ରି ଅନ୍ତର ଅମଳୀ
ଅନ୍ୟ ଠାକୁର ନ ଜାଣେ ମୋହନ ଉପର ।
ରାବଣ ମୋର ଠାକୁର ଥିଲ କ୍ଷେତ୍ରାସ୍ପଦେ
ଶ୍ରୀରାମ ବଧିଲେ ତାକୁ ଜାନକୀର ଯୋଗେ ।
ଦ୍ୱିତୀୟ ଠାକୁର ମୋର ଜଗନ୍ନାଥ ସ୍ୱାମୀ
ଅନ୍ୟ ଠାକୁରଙ୍କ ମୁଣ୍ଡି ନୁହେ ପ୍ରଣାମି ।
ରାମ ରାବଣ ଦୁହିଙ୍କୁ ଏକା ମୁଁ ଜାଣଇ
ସଂସାରେ ଜଗତଜନ୍ତା ଆଉ ନ ଘେଣଇ ।
ଘଟୋତ୍କଚ ବୋଲେ ରାମ କ୍ଷେତ୍ରପ୍ରା ଯୁଗରେ
ସୂର୍ଯ୍ୟବଂଶେ ଜନମିଲେ ଦଶରଥ ଘରେ ।
ଅନନ୍ତ ବଂଶରେ ଜାତ ଯଦୁ ମହାଋଷି
ଅରୁଣତେଜ ବୋଲଣ ତାହାଙ୍କର ଶିଷି ।
ଅରୁଣତେଜର ପୁତ୍ର ଅଟେ ବସୁଦେବ
ତାହାଙ୍କ ନନ୍ଦନ ନାମ ହେଲ ବାସୁଦେବ ।
ଅଷ୍ଟମଲ୍ଲ ମୂଳେ ସେହୁ କଂସାସୁର ବଧି
ଜରା ନାରକାଦ ଜାଳନ୍ଦମନ ନରେବଧି ।
ଏବେ ବଳେ କଣଛନ୍ତି ଯାଇ ଯମପ୍ରସ୍ଥେ
କୃଷ୍ଣଙ୍କୁ ଶ୍ରୀମୁଖ ଦେଲେ ଯିବାର ନିମନ୍ତେ ।
ନିଃସନ୍ଦେହ ବାଣୀ ଶୁଣି ଭକ୍ତ ବିଭୀଷଣ
ଜଗତ ଉପରୁ ଡେଇଁପଡ଼ ତତକ୍ଷଣ ।

ପାଏଣ୍ଡା ପାଣ୍ଡବ ସେହୁ କଲ ନିଉଗ୍ରାନ
ଘଟୋତ୍କଚ ଶ୍ରୀମୁଖକୁ ନେଇ ଦେଲ ଖୋଲ ।
ଘଟୋତ୍କଚକୁ ବୀର୍ଯ୍ୟଣ ବୋଇଲ ବଚନ
କେଉଁଣ କୁଳରେ ଜାତ ଯୁଧିଷ୍ଠିର ରାଜନ ।
ବୁଧ ନାମେ ଚନ୍ଦ୍ରବେକ ତାହାଙ୍କ ସନ୍ତତି
ପୁରୁରବା ବୋଲି ତାଙ୍କ ପୁତ୍ରେକ ଦୁଷ୍ମନ୍ତ ।
ତାଙ୍କ ନନ୍ଦନ ନହୁଷ ନାମେ ନରନାଥ
ଯଯାତି ମହାରାଜା ଯେ ତାହାଙ୍କର ସୁତ ।
ଦିଲ୍ଲୀପ ବୋଲି ଜରଣ ତାହାଙ୍କ ନନ୍ଦନ
ତାଙ୍କର ଅଂଶରୁ ଜାତ ଦୁଷ୍ମନ୍ତ ରାଜନ ।
ଭରତ ନାମରେ ହେଲେ ଏହାଙ୍କ ନନ୍ଦନ
ପୃଥିବୀ ମଧ୍ୟରେ ହେଲେ ବଡ ଖ୍ୟାତପଣ ।
ଭରତ ସୁତ ଭୂମନ୍ୟୁ ନାମରେ ହୋଇଲେ
ସାର୍ଥକ ବୋଲି ତାଙ୍କର ସୁତ ଜନମିଲେ ।
ତାହାଙ୍କର ସୁତ ଶମ୍ଭୁ ବ୍ରାଣ ନରପତି
ଆଦତ୍ୟ ନନ୍ଦନୀ ବଶ୍ୱ ହୋଇଲେ ତପସ୍ୱୀ ।
ଯା ତେଜ ସହି ନ ପାରେ ନିଜେ ନରପତି
ତାଙ୍କୁ ଦେଖନ୍ତ ବାସ କଲେ ଶମ୍ଭୁ ସଦଗତି ।
ତାଙ୍କ ଉତ୍ପନ୍ନ ଜାତ ହେଲେ କୁରୁ ନରରାଜ
ବରଥ ବୋଲଣ ତାତ ତାଙ୍କର ଆତ୍ମଜ ।
ତାଙ୍କର ନନ୍ଦନ ନାମ ହୋଇଲ ଶାନ୍ତନୁ
ଚିତ୍ର ବିଚିତ୍ର ବୋଲିଣ ଯାଙ୍କ ଦୁଇ ସୂନୁ ।
ବେଦବ୍ୟାସ ମୁନିପୁତ୍ର ପାଣ୍ଡୁ ଧୃତରାଷ୍ଟ୍ର
ପାଣ୍ଡୁଙ୍କର ପୁତ୍ର ଧର୍ମ ଯୁଧିଷ୍ଠିର ଜ୍ୟେଷ୍ଠ ।
ସାକ୍ଷାତ ଧର୍ମପୁରୁଷ ଯୁଧିଷ୍ଠିର ରାୟ
ତାଙ୍କର ଅନୁଜ ଭୀମ ପବନ ତନୟ ।
ତାହାଙ୍କର ସାନ ନାମ ଅଟେ ଫାଲ୍‌ଗୁନ
ହରି ଅର୍ଜୁନ ଏକାତ୍ମ ଅଟନ୍ତି ସେ ଦେନ ।
ପାଞ୍ଚାଳ ଦେଶରେ ପାର୍ଥ ବିନ୍ଧ ରାଧାଚକ୍ର
ଭାଙ୍ଗି ଦେଲେ ଲକ୍ଷେକ ନୃପଙ୍କର ଦର୍ପ ।
କୈଳାସ ଉପାଡ଼ୁଥିଲ କୁମ୍ଭକ ଦଇତ
ଜିଣି ନ ପାରିଲେ ଶିବ ସ୍ୱଗଣ ସହିତ ।
ଅଗ୍ନି ବ୍ୟାଧି କରାଇଲେ ଇନ୍ଦ୍ରବନ ଦହି
ଦ୍ୱାପରେ ପାଣ୍ଡବଗଣ ଯୋଦ୍ଧା ସେ ହୋଇଲେ
ହନୁମନ୍ତ ସଙ୍ଗତରେ କଲେ ସେ ବିବାଦ
ଶରେ ସାଗର ବାନ୍ଧିଲେ ମହା ସେତୁବନ୍ଧ ।

ଗଜେନ୍ଦ୍ରୀ ହରଣ ଭାବେ ଡକଲେ ସେ କାଳୀ
ଉପୂରେ ଅଗ୍ନି ପ୍ରଦାନ କଲେ ବନମାଳୀ ।
କଲେ ରାଜସୂୟ ଯଜ୍ଞ ଧର୍ମଦେବ ରାଜା
ଲକ୍ଷେନୃପ ଆସି କଲେ ତାଙ୍କ ପାଦ ପୂଜା ।
ତ୍ରୈଲୋକ୍ୟ ଠାକୁର ଯେହୁ ଦେବ ଚକ୍ରଧାରୀ
ସେ ଯଜ୍ଞେ ହେଲେ ଅନନ୍ତ ନାମେ ପ୍ରତିହାରୀ ।
ଛଳଣ ଶ୍ରୀମୁଖ କେଲେ ରାମୁରେ ଜଣାଇ
ବିଭୀଷଣ ବୋଲେ ନିଶ୍ଚେ ଦେଖିବ ମୁଁ ଯାଇ
ଘଟୋତ୍କଚ ବୋଲେ ଭଗବାନ ହେଲେ ତୃପ୍ତି
ବହୁତ ପୂଜା କରିଲେ ଲଙ୍କା ଚକ୍ରବର୍ତ୍ତୀ ।
ମନ୍ତ୍ରୀ ଘେନଣ ଏକ ଦେ ଭାବଇ ଲଙ୍କାଧି
ଶ୍ରୀରାମ ପ୍ରସାଦେ ମୋର ସର୍ବକାର୍ଯ୍ୟ ସିଦ୍ଧି ।
ସେତୁବନ୍ଧ ପାରହୋଇ ରାମ ଯିବାକାଳେ
ମୁଁ ପୁଚ୍ଛା କଲି ଉତ୍ତର ମୂର୍ତ୍ତି ଦେଖିବେକେ ।
ସ୍ୱାମୀ ତ୍ରେତୟାଯୁଗେ ମୁଁ ଭେଟିଲଇଁ ତୋତେ
ଦ୍ୱାପରେ ଦେଖା ହୋଇବା କଥା କହ ମୋତେ
ଶ୍ରୀରାମ ବୋଇଲେ ରାମ ଅବତାର ପରେ
ଦ୍ୱାପରେ ଜନ୍ମିବୁଁ ଆମ୍ଭେ ବସୁଦେବ ଘରେ ।
ମୋ ଦୂତ ଆସନ୍ତେ ତୁମ୍ଭ ଯିବୁଟି ବହନ
ନରକାର ବସ୍ତୁଙ୍କୁ ତୁ କରିବୁ ଦର୍ଶନ ।
ମହାପ୍ରଭୁ ମୋତେ ଏହା କହିଛନ୍ତି ଯେ କହି
ନରାବସ୍ତୁ ହସ୍ତିନାରେ ଏବେ ଜନ୍ମି ଛନ୍ତି ।
ନିଃସନ୍ଦେହ ଆଜ୍ଞା ଦେଲେ ଲଙ୍କା ମହାରାଜ
ମନ୍ତ୍ରୀକୁ ବୋଇଲେ ବେଗେ ଦଣ୍ଡ ମୋର ସାଜ
ବହୁ ଲକ୍ଷବରେ ସଜ ହେଲେ ଦୈତ୍ୟବଳ
ଅସୁର ଦୁନ୍ଦୁଭି ନାଦେ କମ୍ପେ ସିନ୍ଧୁଜଳ ।
ବତିଶ ଅକ୍ଷୁଣ ସୈନ୍ୟ ଦଇତ୍ୟ ଦାନବ
ସହସ୍ରେ ରଥ ପୂରାଏ ନେଇ ପାଟିଦ୍ରବ୍ୟ ।
ଦେବଦଳନ ରଥ ସେ ଦାନବର ଥିଲା
ସେ ରଥକୁ ବିଭୀଷଣ ଦେନ ବଜେ କଲା ।
ସହସ୍ର ଶାର୍ଦ୍ଦୂଳ ନେଇ ଯୋଚିଲାକ ରଥେ
ଅତି ଦ୍ରୁତରେ ଉଡନ୍ତି ଗଗନର ପଥେ ।
ଶତଯୋଜନ ଅଟଇ ଅଗାଧ ଜଳଧି
ପ୍ରହରେକ ମଧ୍ୟେ ଗଲେ ବ୍ୟାଘ୍ରମାନେ ଖେଦି
ସାଗର ଲଙ୍ଘିଲା ଯହୁଁ ଅସୁରଙ୍କ ରଥ
ବିକଟଦନ୍ତ ଭୀଷଣ ଦିଶନ୍ତି ଦଇତ୍ୟ ।

ପର୍ବତ ପ୍ରାୟ ଶରୀର ଦୈତ୍ୟ କାମରୂପୀ
ଉତ୍ତର କୂଳରେ ଦଣ୍ଡ ଚଳେ ସର୍ବବ୍ୟାପି ।
ହିଡ଼ମ୍ବୀ ନନ୍ଦନ ଦେଖି ହୋଇଲା ଆଶ୍ଚର୍ଯ୍ୟ
ବିଚାରଇ ମନକୃତ୍ୟ କଲେ ଦେବରାଜ ।
ଆଜ ଏ ମହାସଇନ୍ୟ କାହିଁ ବିଶ୍ରାମିବେ
ଏ ରାକ୍ଷସଙ୍କୁ କିଏ ସେ ଅନ୍ନ ଯୋଗାଇବେ ।
ଆବର ଲଙ୍ଘନ୍ତି ଯେବେ ମାନବ ସୈନ୍ୟଙ୍କୁ
କିଏ ସେ ସମର୍ଥ ହେବ ଏହାଙ୍କ ଆଗକୁ ।
ନିମିଷ ମାତ୍ର ଲଙ୍ଘିବେ ଏହୁ ଭଦ୍ରପୁର
ଅବଶ୍ୟ ଏ ବିଭୀଷଣ ଅଟଇ ଅମର ।
ଘଟୋତ୍କଚ ବିଚାରେ ମୁଁ ଯାଏ ଆଗ ହୋଇ
ସ୍ୱାମୀ ରାମୁରେ କହିବ ଏହି କଥା ନେଇ ।
ପୃଥ୍ୱୀରେ ଜନ୍ମିଛନ୍ତି ଦେବ ଦାମୋଦର
ପୃଥ୍ୱୀଭାର ଉଦ୍ଧାରନ୍ତି ତାଙ୍କ ମୂଳାଧାର ।
ସ୍ଥାନ ନ ଅଣ୍ଟିବ ଯେବେ ଏତେକ ସୈନ୍ୟଙ୍କୁ
ଯେତେକ ସୈନ୍ୟ ନ ଆସନ୍ତୁ ଏ ଇନ୍ଦ୍ରପ୍ରସ୍ଥକୁ ।
ଶୂନ୍ୟେ ଗମନ କରଇ ଭୀମସେନ ବାଳ
ଗଳେ ଅଛି ବିଭୀଷଣ ଦତ୍ତ ରତ୍ନମାଳ ।
ସତ୍ୟଯୁଗରେ ଆଦିତ୍ୟ ସେ ରତ୍ନମଣିକ
ପ୍ରସନ୍ନରେ ଦେଇଥିଲେ ସେ ବଂଶପାଣିକ ।
ବିଭୀଷଣ ସେ ମଣିକୁ ଯତ୍ନେ ରଖିଥିଲେ
ତାକୁ ଆଣି ଘଟୋତ୍କଚ ଗଳେ ଲମ୍ବାଇଲେ ।
ଅଭୟ ବଳବନ୍ତା ସେ ହିଡ଼ମ୍ବୀ ତନୟ
ମଣି ତେଜରେ ଦିଶଇ ବାଳଅର୍କ ପ୍ରାୟ ।
ଶୂନ୍ୟମାର୍ଗରେ କୁମାର ଚଳଇ ସତ୍ୱରେ
ଦିନକରେ ହେଲା ତିନିବଂଶ ଯୋଜନରେ ।
ରଥ ତେଜ୍ୟା କଲା ବଜ୍ରକବଚର ନାତି
ଦକ୍ଷିଣ ଦ୍ୱାରରେ ଉଭା ହୋଇଲା ସାହାନ୍ତି ।
ଯାନ୍ତେ ପଥ ନିରୋଧିଲା ସତ୍ୟଭାମା ବାଳ
ଦକ୍ଷିଣ ଦ୍ୱାରରେ ଯେଉଁ ଅଟେ ରକ୍ଷାପାଳ ।
ବୋଲେ ଦ୍ୱାର ଛାଡ଼ି ମୁହିଁ ଯିବି ଭିତରକୁ
ଲଙ୍କାର ବାରତା ଦେବି ଯାଇ ଠାକୁରଙ୍କୁ ।
ସେ ଦ୍ୱାରେ ଥିଲା ମାତଙ୍ଗ ନାମେ ସେନାପତି
ଭୀମସେନ ଠାକୁରଙ୍କୁ କହିଲା ତତ୍ତ୍ୱ ।
ଘଟୋତ୍କଚ ଆଗମନ ଜାଣି ଭୀମସେନ
ସଙ୍ଗତରେ ନେଲେ ତହୁଁ ଦେବ ଭଗବାନ ।

ଯୁଧିଷ୍ଠିରଦେବଙ୍କ ଆଗେ ମାରୁତି ତନୟ
ଲଙ୍କାପତି ବିଭୀଷଣ ଏହ ଦେବ ପରିଚୟ ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ଏହି କଥା ଶୁଣି
ବୋଇଲେ ଏତେ ରାଜା କି ଆପଣେ ଦ୍ୱିଜମଣି ।
ଶୁଣି ସାନନ୍ଦ ହୋଇଲେ ଯଦୁ ଦେବରାଜେ
ଘଟୋତ୍କଚର ନିକଟେ ଚହୁଁ କଲେ ବିଜେ ।
ହଡମ୍ବୀ ନନ୍ଦନ ତାଙ୍କୁ ଦେଖି ପରଣାମି
ବୋଲେ ବିଭୀଷଣ ଦେବ ବିଜେ କଲ ସ୍ୱାମି ।
ଅନେକ ସଇନ୍ୟ ଦେବ ଆଣିଅଛୁ ସାଙ୍ଗ
ଗିରିବର ପରଭାବେ ସେମାନଙ୍କ ଅଙ୍ଗ ।
ମହାଯଜ୍ଞ ଆରମ୍ଭିଣ ଖର୍ଜିଲ୍ ହୋ ଭୂମି
ଯଜ୍ଞକୁ ସାରନ୍ତୁ ବିଭୀଷଣଙ୍କ ନ କହି ।
ସ୍ୱାମି ଲକ୍ଷେ ନୃପତିଙ୍କ ଅନ୍ନ ଦେବ ଯେବେ
ଏହାରାକ୍ଷସ ସୈନ୍ୟଙ୍କୁ ନ ଅଣ୍ଟିବ ତେବେ ।
ଭୋଜନ ସମୟେ ଯାଇ ଦେଖ ବାସୁଦେବ
ବାନରଙ୍କର ଭକ୍ଷଣ ଅଟନ୍ତି ମାନବ ।
ଆପଣେ ଆଗେପି ସ୍ୱାମି ଆଗେ କଲ୍ ନାଶ
ଘଟୋତ୍କଚର ବଚନେ ଲଭିଲେକ ହାସ ।
ଶୁଣି ଆପଣା ମନରେ ହୋଇ ହସ ହସ
ହନୁମନ୍ତ ସ୍ମରଣା କଲେ ହୃଷୀକେଶ ।
ହସ୍ତିନାରୁ କିଷ୍କିନ୍ଧ୍ୟା ଯେ ସହସ୍ର ଯୋଜନ
ଛନ୍ତେ ଆସ୍ଥାନେ ଥାଇ କର୍ମେ ହନୁମାନ ।
ଆସନ କମ୍ପନ୍ତେ ତାହା ଜାଣିଣ ପାବନ
ତକ୍ଷଣେ ସାଜିଲେ ତାର ଦଧିମୁଖ ସୈନ ।
ସାତପଦ୍ମ ସନ୍ଦର ମେହନ୍ତ କପିବଳ
ଲାଞ୍ଜ ଉପରେ ବସାଏ ସେ କପି ସକଳ ।
କିଷ୍କିନ୍ଧା ପର୍ବତେ ପାଦ ଦେଇଣ ପାବନ
କ୍ଷେପାଏ ମାଇଲା ତହୁଁ ନଭବଳ ଘେନ ।
ଶୂନ୍ୟ ଭୁବନକୁ ଭେଦ କ୍ଷଣକରେ ଭ୍ରମି
ଇନ୍ଦ୍ରପ୍ରସ୍ଥେ ବିଜେ କଲେ ହନୁମନ୍ତ ସ୍ୱାମୀ ।
ଦୂରୁଁ ଦେଖେ ଶ୍ରୀଅନନ୍ତ ଦେବ ପଡ଼ିହାସ
ଦୂତଗନ୍ତା ପିନ୍ଧି କାଖେ ଯୋଡ଼ିବେତ ଧରି ।
ଅଞ୍ଜନା ନନ୍ଦନ ଏହି ବେଶ ଦେଖି ଦୂରେ
ପ୍ରଣିପାତ ନଉଗୁଳ କରଇ ଗ୍ରାମୁରେ ।
ହନୁମନ୍ତଙ୍କୁ ଦେଖିଣ ସମସ୍ତ ରଜାଏ
ବୋଲନ୍ତି ଲଙ୍କାଯମ ଏ ଦୈତ୍ୟ କଲ୍ୟ ଯଜ୍ଞେ ।

ସାଧୁ ସାଧୁ ରେ ମହିମା ଯୁଧିଷ୍ଠି ରାଜନ
ତୋର ପ୍ରସାଦେ ଦେଖିଲୁଁ କେତେ କଥାମାନ
ହନୁମାନ ଶୁଣିଥିଲୁ ଦେଖିଲୁ ନୟନେ
ଜନମ ସୁଫଳ ଏହା ଯୁଧିଷ୍ଠି ଦର୍ଶନେ ।
ତ୍ରୈଲୋକ୍ୟ ମଧ୍ୟରେ ଯେତେ ଅଟନ୍ତି ଅସାଧ
ସେ ସବୁଙ୍କୁ ଯୁଧିଷ୍ଠିର ଦେବ କଲେ ସାଧ ।
ହନୁମନ୍ତଙ୍କୁ ସାଦର କଲେ ଜଗନ୍ନାଥ
ବିଭୀଷଣ ଆଣିଅଛି ଯୁଧିଷ୍ଠି ନିମିତ୍ତ ।
ହନୁମନ୍ତ ବୋଲଇ ଯେ ଶୁଣ ଦେବରାୟେ
ତାର ମୋର ଦେଖା ନାହିଁ ବହୁକାଳ ଯାଏ
ଡାହାଣରେ ହନୁମନ୍ତ ବାମେ ବୃକୋଦର
ଦୁଇ ଖୁଇଙ୍କୁ ଘେନିଣ ଗଲେ ଚକ୍ରଧର ।
ପଛରେ ଗୋଡ଼ାଇଛନ୍ତି ବନିତା ନନ୍ଦନ
ଚଳନ୍ତି ଶ୍ରୀଜଗନ୍ନାଥ ଜଗତ ମୋହନ ।
ଲମ୍ବିତ କବରୀ ପରେ ଲମ୍ବ ଜଡ଼ାଗୋଟି
କପାଳେ ଚନ୍ଦନଚିତା ଦିଶୁଅଛି ଫୁଟି ।
ଦକ୍ଷିଣ ମୂରତି ହେଲେ ସ୍ୱାମୀ ଚକାଡୋଳା
ତ୍ରୈଲୋକ୍ୟକୁ ମୋହୁଛନ୍ତି ଦେବକୀର ବଳା ।
ବେନି ଯୋଜନ ପର୍ଯ୍ୟନ୍ତ ଗଲେ ସେ ପାଶେଟି
ତୁଙ୍ଗଭଦ୍ରା ନଦୀକୂଳେ ବିଭୀଷଣେ ଭେଟି ।
ଶଙ୍ଖ ଚକ୍ର କୋଦଣ୍ଡ ଯେ ଗଦା ଭୁଜଶିର
କାଖେ ଯୋଡ଼ିବେତ କୋଟିସୂର୍ଯ୍ୟ ଅଧିକାଶ ।
ଗରୁଡ଼ଧ୍ୱଜ ରଥକୁ ଶୀର ଦେଖି ଦୂରେ
ରଥରୁ ଡେଇଁ ପଡ଼ିଲା ଅତି ଭକ୍ତିଭରେ ।
ପରମାନନ୍ଦ ହୃଦୟ ଦେବ ବନମାଳୀ
ଦୂରୁଁ ଦେଖି ବିଭୀଷଣ କଲା କଉତୁଳି ।
ମହାଭଗ୍ନୁଙ୍କର ରୂପେ ଥିଲେ ଯେ ଅସୁରେ
ହନୁମନ୍ତ ମୁଖ ଚାହିଁ ଡରିଲେ ଅନ୍ତରେ ।
ନବକୋଟି ସୈନ୍ୟ ଏକଦଳ ହୋଇଅଛି
ହନୁମନ୍ତ ଡରେ ସର୍ବେ ହେଲେ ଏକମେଳ ।
ଏକପିଠିକି ଲୁଚିଲେ ଆରେକ ଅସୁର
ବିଚାରନ୍ତି କିପାଁ ଆସେ ଲଙ୍କାପୋଡ଼ା ଖାର ।
ଏହୁ ଧ୍ୱଂସ କରିଥିଲା ସର୍ବଂଶେ ରାବଣ
ଦୁର୍ଭାରବଳ ଧ୍ୱଂସନେ ଏହା ବୁଦ୍ଧି ଜାଣ ।
ଆସିଲା ଅଚଳ ମାଳା ପକାଇଣ ହୃଦେ
ସାଗରେ ପକାଇ ଏକ ସେତୁବନ୍ଧ ବାନ୍ଧେ ।

ଶତେ ଚଉତ୍ରିଂଶ ଯୁଣ ସେତୁ ଦୀର୍ଘ ଜାଣ
ଦ୍ୱାତ୍ରିଂଶ ଯୁଣ ଓସାର ଉଚ୍ଚ ବାରଯୁଣ ।
ଏଡା ଅଗାଧଜଳେ ବାନ୍ଧିଦେଲା ବନଚରୁ
ଯା ଯୋଗୁ ରାମ ପାଇଲେ ଜାଣ ସର୍ବହେତୁ ।
ଅଗାଧ ସାଗରରେ ଏହୁ କଲା ବାଟ
ଯହିଁ ରାବଣ ସଙ୍ଗେ ହେଲା ଯୁଦ୍ଧ ଭେଟ ।
ଲକ୍ଷ୍ମଣଙ୍କୁ ରାବଣ ଯେ ମାଇଲା ଶକତି
ଲଙ୍କାକୁ ନେବା ଇଚ୍ଛିଣ ଅଭିନ୍ନ ହେ ଧାତ ।
ଲକ୍ଷ୍ମଣଙ୍କୁ ତୋଳିବାର ହନୁ ଦେଖି ଦୂରେ
ରେରେକାର କରି ଆସି ମୁଷ୍ଟିଏକ ମାରେ ।
ବିଂଶପାଣିର ମୁଖରୁ ବହିଲା ଶୋଣିତ
ଅଚେତ୍ନ ହୋଇ ପଡ଼ିଲା ସେହୁ ମୃତବତ ।
ଲକ୍ଷ୍ମଣଙ୍କୁ ତୋଳି ନେଇଗଲା ରାମ ପାଶ
ଜଳଧିସ୍ଥ ବାନର ଯାଙ୍କୁ ନ ନାଇ ଉଶ୍ୱାସ ।
କେ ବୋଲେ କପିଟି ଆସି ହେଲା ଉପସ୍ଥିତ
ମରଣକାଳକୁ ଯେହ୍ନେ ଘଟେ ବିପରୀତ ।
ନଦୀସ୍ଥ ମର୍କଟ ଲଙ୍କାରେ ଡୟା ନାହିଁ
ଭୟେ ବାହିଲେ ସକଳେ ହନୁମୁଖ ଚାହିଁ ।
ଦୈତ୍ୟମାନେ ଦଶନଖ ମୁଖରେ ଭରିଣ
ଡାକନ୍ତି ଶ୍ରୀରାମ ରଖ ଆମ୍ଭଙ୍କୁ ଶରଣ ।
ବାରବାର ନିବେଦନ କଲେ ବିଭୀଷଣ
ଜୟ ଜୟ ରଘୁନାଥ ଗଲି ମୁଁ ଶରଣ ।
ଜୟ ରଘୁନାଥ ତବ ପଦାରବିନ୍ଦରେ
ଶାରଳା ଦାସର ମନ ରହୁ ନିରନ୍ତରେ ।

---

## ଯୁଧିଷ୍ଠିରଙ୍କ ଦର୍ଶନାର୍ଥେ ଶ୍ରୀକୃଷ୍ଣ ବିଭୀଷଣଙ୍କୁ ଘେନି ଭିତରକୁ ଯିବାପାଇଁ ଦ୍ୱାରଦ୍ୱାରେ ଭ୍ରମଣ ଏବଂ ରାଜାମାନଙ୍କ ଭେଟିକନାଦି ଦର୍ଶନ

ପୁନରପି ପୃଚ୍ଛା କଲେ ମନୁ ଦଣ୍ଡଧର
ଅଗସ୍ତିଙ୍କ ଶ୍ରୀଚରଣେ ଯୋଡ଼ି ବେନିକର ।
ହେ ମହର୍ଷି ଏହାପରେ ହେଲା ଯେଉଁ କଥା
ବିସ୍ତାରି କହି ମୋହର ଫେଡ ମନବ୍ୟଥା ।
କହନ୍ତି ସେ କୁମ୍ଭସୁତ ମୁନି ବ୍ରହ୍ମବେତ୍ତା
ହେ ଦଳଙ୍କ ଦେଖ ଶ୍ରାଜ ବୈବସ୍ୱତ ଶ୍ରୋତା ।

କେମନ୍ତେ ଶୁଣ କୁନ୍ତେ ରାଜହଂସ ବାଣୀ
ସ୍ୱର୍ଗରେ ଭରତ ଏବଂ ଭବ ତରଙ୍ଗିଣୀ ।
ବହୁ ତପସ୍ୱୀ ହୋଇଣ ରାଜା ବିଭୀଷଣ
ଶ୍ରୀକୃଷ୍ଣଙ୍କ ପାଦେ କରି ସହସ୍ର ପ୍ରଣାମ ।
ବୋଲେ ତ୍ରେତାଯୁଗେ ଦେବ ତୋହର ଶରଣ
ଦ୍ୱାପରେ ଦୟା କ୍ର ମୋତେ କର ନାରାୟଣ ।
ବୋଇଲେ ଶ୍ରୀକୃଷ୍ଣଚନ୍ଦ୍ର ଶୁଣ ହେ ଲଙ୍କାଧି
ଆମ୍ଭର ଦର୍ଶନେ ତୋର କାର୍ଯ୍ୟ ହେବ ସିଦ୍ଧି
ଜଗତର ଅବତାର ଯୁଧିଷ୍ଠିର ସ୍ୱାମୀ
ଲଙ୍କେଶ ନମ ତାଙ୍କର ଚରଣେ ପ୍ରଣମି ।
ଶ୍ରୀକୃଷ୍ଣଙ୍କ ନିସ୍ତନଙ୍କ ଏବଂ ମହାରାଜା
ସକଳେ ତାଙ୍କ ଚରଣେ କରିବେକ ପୂଜା ।
ବିଭୀଷଣ ବୋଲେ ଦେବ କହନ୍ତି କୃଷ୍ଣଙ୍କୁ
ମୋହର ପାଇଁକ ତାକ କହନ୍ତୁ ହନୁକୁ ।
ଏ ମୋର କ୍ରଲେ ଅଛନ୍ତି ଯେତେ ଦୈତ୍ୟବଳ
ଏ ଦୈତ୍ୟମାନଙ୍କ ଏଡା ହନୁ କ୍ଷୟକାଳ ।
ଏହାଙ୍କୁ ଦେଖି ମୋ ସୈନ୍ୟ ହୁଅନ୍ତି କାତର
ସେମାନଙ୍କ ଦୟାକରି ଅଞ୍ଜନା କୁମର ।
ହନୁବୋଲେ ଆଶିଛନ୍ତି ତୋତେ ଦେବରାଜେ
କୁ ଆସିଛୁ ଧର୍ମସୁତ ଯୁଧିଷ୍ଠିରଙ୍କ କାର୍ଯ୍ୟେ ।
ଯେବଣ ଯୁଧିଷ୍ଠିରଦେବ ତ୍ରୈଲୋକ୍ୟର ନାଥ
ତାହାଙ୍କ ଆଜ୍ଞା କେ ଏଥେ ଲଙ୍ଘନେ ସମର୍ଥ ।
ଏହାଙ୍କ ଅନୁଜ ଏହୁ ଅଟେ ଭୀମସେନ
ଯାହାକୁ ଦେଖିଲେ ଭୟ କରଇ ଶମନ ।
ଭୀମସେନ ସାନୁଜ ଯେ ବୀର ଧନଞ୍ଜୟ
ଏକାକେ ସେ ତିନିପୁର ଜିଣିପାରେ ଜୟ ।
ସୁଗନ୍ଧପୁଷ୍ପ ହରଣେ କଲା ସେ ଭୀମନ
ଏକାକେ ଧ୍ୱଂସ କରିଲା ମୋର ମଧୁବନ ।
ବାରତା ପାଇ ଅଇଲି ମୁହିଁ କରି ରୋଷ
ମୋହର ଗ୍ରାମୂରେ ସେହୁ କଲା ଗୁଣଘୋଷ ।
ସତ୍ୟ ତ୍ରେତୟା ଦ୍ୱାପର ଆବର ଯେ କଳି
ଏ ଚାରିଯୁଗରେ ଜାଣ ମୁହିଁ ମହାବଳୀ ।
ସାଗରେ ବାନ୍ଧିଥିଲି ମୁହିଁ ସେତୁବନ୍ଧ
କପିବଳ ଘେନି ପାରି ହେଲେ ସତ୍ୟସନ୍ଧ ।
ମୋହର ବିବାଦେ କାଟି ଅସ୍ତ୍ର ମନଭେଦ
କ୍ଷଣକ ମଧ୍ୟେ ବାନ୍ଧିଲା ପାର୍ଥ ବାଣବନ୍ଧ ।

ବିଭୀଷଣ ବୋଲେ ବନ୍ଧବାନ୍ଧବା ଉପ୍ରରେ
ଉଗ୍ର ହୋଇ ପାରିଲ କି ତାହାର ଉପରେ ।
ହନୁମନ୍ତ ବୋଲେ ମୁହିଁ ପରୀକ୍ଷା କରିଲି
ବିଶ୍ୱରୂପ ଧରି ବନ୍ଧ ଉପରେ ଉଠିଲି ।
ତିଳାଏକ ନ ଟଳିଲା ଶରବନ୍ଧ ତାର
ସେ ଦିନୁ ଜାଣିଲି ମୁହିଁ ଏକ ମହାବୀର ।
ଖାଣ୍ଡବବନ ଦହିଲା ଏହି ଫାଲଗୁନ
ଲହୁଲହୁ ବ୍ୟାଧିରୁ ସେ ତରିଲେକ ଅଗ୍ନି ।
ହେ ରକ୍ଷସପତି ତୁମ୍ଭେ ଯାଅ କୃଷ୍ଣସଙ୍ଗେ
ଯୁଧିଷ୍ଠି ପାଦେ ବିନୟୀ ହେବ ବହୁମାର୍ଗେ ।
ତାହା ଆଜ୍ଞାରେ ନିଯୁକ୍ତ ଛନ୍ତି ଏ କେଶବ
ଅନ୍ୟ କଉଣସି କଥା ମନରେ ନ ଭାବ ।
ଏ ପରେ କୃଷ୍ଣ ବୋଲିଲେ ହନୁମନ୍ତେ ଶୁଣି
ବିଭୀଷଣ ସୈନ୍ୟଙ୍କୁ କୁ ଅନ୍ନ ଦିଅ ଥାଇ ।
ଯିଏ ଯେରୂପେଭୋଜନେ ହୋଇବେ ସେ ତୃପ୍ତି
ସେରୂପେ ଦେବୁ ଯେପରି କେ ନୁହେ ଅତୃପ୍ତି
ବିଭୀଷଣ ମହାପାର୍ଶ୍ୱ ପାର୍ଶ୍ୱ ବେନମନ୍ତ୍ରୀ
ଏ ତିନଙ୍କୁ ଘେନି ଆପେ ଆସନ୍ତି ଶ୍ରୀପତି ।
ବିଭୀଷଣଙ୍କୁ ଶ୍ରୀକୃଷ୍ଣ ବୋଲନ୍ତି ବାଟରେ
ହେ ରାଜା ନମିବ ଯିଲେ ଯୁଧିଷ୍ଠି ପାଦରେ ।
ବିଭୀଷଣ ଯାଉ ଭାବେ ନ ନମିବ ଆମେ
ଶ୍ରୀକୃଷ୍ଣ ତା ଭାବ ଜାଣି ବିଚାରନ୍ତି ମନେ ।
ହେ ରକ୍ଷସପତି ତୁମ୍ଭେ ନମିବ ଧର୍ମଙ୍କୁ
ଯେ ସ୍ୱାମୀ ଯେ ରୂପ କୋପ ନ କରେ ଆମ୍ଭଙ୍କୁ ।
ଏରୂପେ କହିଣ ଧରି ବିଭୀଷଣ କର
ଦକ୍ଷିଣ ଦ୍ୱାରେ ପ୍ରବେଶ ହେଲେ ଚକ୍ରଧର ।
ସେ ଦ୍ୱାରରେ ଦ୍ୱାରପାଳ କାଳିନ୍ଦୀର ବଳା
ପ୍ରତ୍ୟକ୍ଷେ ଧରିଛି ସେହି ବସ୍ତୁଙ୍କର କଳା ।
ଅନେକ ଅଳଙ୍କାର ତା ଶରୀରେ ଭୂଷଣ
ଦେଖିଣ ଆନନ୍ଦ ମନ ହେଲା ବିଭୀଷଣ ।
ସେ ଦ୍ୱାରେ ବୋଲନ୍ତି ଶୁଣ କୃଷ୍ଣ ଦ୍ୱାରପାଳ
ଏ ଅଟନ୍ତି ବିଭୀଷଣ ଲଙ୍କା ମହୀପାଳ ।
ଯୁଗଂଲେଖା ରାଜା ଏହୁ ରାମ ଅଭିଷେକ
ଯୁଧିଷ୍ଠି ଠାକୁରଙ୍କୁ ଏ ଆସିଅଛି ଦେଖି ।
ଭିତରକୁ ଯିବୁ ଆମ୍ଭେ ଦ୍ୱାର ଛାଡ଼ ବାବୁ
ଯୁଧିଷ୍ଠିରଙ୍କୁ ଦର୍ଶନ ସ୍ୱାମୀଙ୍କୁ କରାଇବୁ ।

କୁମର ଦେଇଲା ତାଙ୍କ ଆଜ୍ଞା ନ ପାଇଲେ
ଦ୍ୱାର ଛାଡ଼ି ପାରିବ କି ମୁହିଁ ତୁମ୍ଭ ବୋଲେ ।
ତହୁଁ ବିଭୀଷଣେ କୃଷ୍ଣ ଘେନିଣ ସଙ୍ଗରେ
ପୂର୍ବ ଦ୍ୱାରକୁ ଚଳିଲେ ପଶିବା ନିମନ୍ତେ ।
ଗୋବିନ୍ଦ ବୋଇଲେ ପାଶେ ଡାକି କାଳଞ୍ଜନ
ବିଭୀଷଣ ଆଣିଛନ୍ତି ବହୁ ଦ୍ରବ୍ୟମାନ ।
ଭଣ୍ଡାର ଅଧିକାରୀଙ୍କୁ କହ ଯାଉ ନେଇ
ମର୍ତ୍ତ୍ୟ ଭୁବନେ ଏ ଦ୍ରବ୍ୟ ଲୋଡ଼ିଲେ ନ ପାଇ
କୃଷ୍ଣ ଆଜ୍ଞାରେ ଦର୍ଶନ ଧନମାନ ଦେଲେ
ଦୁର୍ଯ୍ୟୋଧନ ପାଶେ ତାହା ସବୁ ସମର୍ପିଲେ ।
ବିଭୀଷଣଙ୍କୁ ଘେନିଣ ତହୁଁ ଦାମୋଦର
ବିଜୟ କରିଣ ଗଲେ ପୂର୍ବ ସିଂହଦ୍ୱାର ।
ଦଶ ଅଯୁତ ତହିଁ ଦୁହାନ୍ତି ଏ ଗାଈ
ତାଙ୍କେକ ଉପ୍ରର୍ଗେ ବହେ ଦୁଗ୍ଧନଦୀ ତହିଁ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ରାଜା ବିଭୀଷଣ
କାହିଁ ନ ଦେଖିଛୁ କେବେ ଏସନ ବିଧାନ ।
ପୂର୍ବଦିଗ ସିଂହଦ୍ୱାରେ ବିଜୟ ଅନଙ୍ଗ
ଅଶୀ ସହସ୍ର ଯୋଦ୍ଧା ଯେ ଛନ୍ତି ତାର ସଙ୍ଗ ।
ଅନେକ ରହିଲେ ପୂର୍ବଦିଗ ରାଜା ସୈନ୍ୟ
ବହୁ ପାଣିଦ୍ରବ୍ୟ ଦେଖା ବରିଶନ୍ତି ଘେନି ।
ଲକ୍ଷେ ରାଜାଙ୍କର ଯେତେ ଗଜ ଅଶ୍ୱମାନ
ଯେ ଯାହା କଯୋଗ ଘେନି ଅଛନ୍ତି ଏ ସ୍ଥାନ
ଦେଖିକରି ଆଶ୍ଚର୍ଯ୍ୟ ଯେ ନଇକେଶ ବସ୍ତ୍ର
ମହାଦୁର୍ଲ୍ଲଭ ଦେଖିଣ କ ସ୍ଫୁରଇ କଛୁ ।
ଗୋବିନ୍ଦ ବୋଲନ୍ତି ଦ୍ୱାରେ ଶୁଣ ହେ ପ୍ରଦ୍ୟୁମ୍ନ
ଏ ଅଟନ୍ତି ଲଙ୍କାଗଡ଼ ରାଜା ବିଭୀଷଣ
ଦ୍ୱାର ଛାଡ଼ିଦେଲେ ଆମ୍ଭେ ଭିତରକୁ ଯିବୁ
ଯୁଧିଷ୍ଠିର ଠାକୁରଙ୍କୁ ଦର୍ଶନ କରିବୁ ।
ବାବୁ ମାନକେତନ ଏ ଅଟେ ମହାତ୍ମା
ତ୍ରେତାଯୁଗ ରାଜା ଏ ରାକ୍ଷସେ ଉତ୍ତମା ।
ରାମଚନ୍ଦ୍ର ଅବତାରେ ଏହୁ ଅଭିଷେକୀ
ଆମ୍ଭ ଆଜ୍ଞାରେ ଆସୁଛି ଯୁଧିଷ୍ଠିରଙ୍କୁ ଦେଖି ।
ନାରାୟଣଙ୍କ ବଚନ ଶମ୍ବର ଏଭର
ବୋଇଲା ରାଜା ଆଜ୍ଞାରେ ଛାଡ଼ିବ କପର ।
ଆଜଦିନ ଦେବ ଉତ୍ତରିବା ସିଂହଦ୍ୱାରେ
ରାଜାଙ୍କୁ ଜଣାଇ ତାଙ୍କୁ ଛାଡ଼ିବା ଭିତରେ ।

ଗୋବିନ୍ଦ ବୋଇଲେ ଶୁଣ ଏଥିଠାରୁ ଯିବା
ଇନ୍ଦ୍ର ଦୁଆରେ ଅବା ଯାଇଣ ପାରିବା ।
ବିଭୀଷଣଙ୍କୁ ଘେନିଣ ଦେବ ଦାମୋଦର
ପ୍ରବେଶ ହୋଇଲେ ଯାଇ ସେ ଉତ୍ତର ଦ୍ୱାର
ଦେଖିକରି ସେନ୍ୟମାନେ ଦୂରୁ ଆଗୁସରି
ବୋଇଲେକ ଆଉ ହୃଷ୍ଟ ଆସୁଛନ୍ତି ହରି ।
ଶାମ୍ବ କୁମର ବିଜୟେ ହିଶାଇନ୍ଦ୍ର ଜାଣି
ଅନର୍ଘମଣି ମୁକୁଟ ଜଳେ ସୂର୍ଯ୍ୟ ଜିଣି ।
ନିଜ ତାତଙ୍କୁ ଦେଖି ସେ ଉଠି ଧାଡକାରେ
ପ୍ରଣିପାତ ହୋଇଲା ସେ ତାହାଙ୍କ ପସ୍ୱରେ ।
ଶ୍ରୀହରି ବୋଇଲେ ତୋର ପୂରୁ ମନୋବାଞ୍ଛା ।
ଅନେକ ବିପୁଳ ଭୁଞ୍ଜ ଯେ ତୋହର ଇଚ୍ଛା ।
ଶାମ୍ବଙ୍କୁ ବୋଇଲେ ତହୁଁ ଦେବ ଚକ୍ରଧର
ବିଭୀଷଣ ଦର୍ଶନଙ୍କୁ ଯିବେ ଛାଡ଼ ଦ୍ୱାର ।
ଏହି ରାଜା ଅଟନ୍ତି ଯେ ଲଙ୍କା ଅଧିପତି
ଯୁଧିଷ୍ଠିରଙ୍କ ଦର୍ଶନେ ଏଥେ ଆସିଛନ୍ତି ।
ଶାମ୍ବ ବୋଲେ ବିନାଜ୍ଞାରେ ଛାଡ଼ିବି କିପରି
ଏହା ଶୁଣିଣ ଫେରିଲେ ପ୍ରଭୁ ନରହରି ।
ଯାନ୍ତେ ବିଭୀଷଣଙ୍କୁ ବୋଇଲେ ଗଦାଗ୍ରସ୍ଥି
ଯୁଧିଷ୍ଠିର ଦେବଙ୍କୁ ଦେଖି ପ୍ରଣମିବୁ ତୁହି ।
ଶୁଣି ହୃଦେ ବିଭୀଷଣ ଏମନ୍ତ ଭାବଇ
ଆନ କେ ଠାକୁର ତୋହ ଛଡ଼ା ଜାଣେ ନାହିଁ
ଜଗତ ଯୋଦର ତୋର ଜଗନ୍ନାଥ ନାମ
ଆହ୍ମମାନେ ଅପୁରୁଷ ତୁ ପୁରୁଷୋତ୍ତମ ।
ବିଭୀଷଣ ହୃଦଗତେ ଏମନ୍ତ ବିଚାରେ
ଜାଣିଲେ ପରମାନନ୍ଦ ତାହା ହୃଦସ୍ଥରେ ।
ମନେ ଏହା ବିଚାରନ୍ତି ପ୍ରଭୁ ଦେବରାଜ
ନ ପୁଣ ଯୁଧିଷ୍ଠି ସ୍ୱାମୀ ପାଆନ୍ତି ଲାଜ ।
ବିଭୀଷଣଙ୍କୁ ଘେନିଣ ଦେବ ଯଦୁପତି
ପଥେ ପଥେ ଯାଉଁ ଯାଉଁ ତାହାଙ୍କୁ ଦେଖାନ୍ତି
ବ୍ରାହ୍ମଣସହସ୍ର ରାଜାଙ୍କ ଯେତେକ ସଇନ
ଦେଖ ଏହିଠାରେ ଛନ୍ତି ତୁରଙ୍ଗମ ସେନ ।
ଦେଖ ହେ ରାକ୍ଷସପତି ରାଜାଙ୍କର ସ୍ଥାନ
ଯମୁନା ଜଳେ କରନ୍ତି ରାଜାଏ ସ୍ନାହାନ ।
ରାଜାଏ ସ୍ନାନ କରନ୍ତେ ଯମୁନାର ନୀର
ମହକେ ଅଗର ଆଉ କସ୍ତୁରୀ କର୍ପୂର ।

ସମସ୍ତେ ଅଟନ୍ତି ଯୁବା ସୁନ୍ଦର କୁମାର
ରାଜପୁତ୍ର ଅଲଅଳ ଆଉ ଗଡ଼େଶ୍ୱର ।
ସ୍ନାହାନ କରିରେ ସେ କେଶକୁ ଶୁଖାଇ
ପିନ୍ଧୁଛନ୍ତି ନବଘନ ବସ୍ତ୍ରମାନ ନେଇ ।
ଜାଇ ଯୁଇ ମଲ୍ଲୀ ଆଉ ବକୁଳ ମାଳତୀ
କେତକୀ ନାଗେଶ୍ୱରି ଯେ ଚମ୍ପକ ସେବତୀ ।
କନକ କୁସୁମ ଫୁଲେ ସାଜୁଛନ୍ତି ଗର୍ଭ
ବହୁମୂଲ୍ୟ ଅଳଙ୍କାରେ ଦିଶନ୍ତି ସେ ଶୋଭା ।
ଅମାତ୍ୟ ପାତ୍ରକୁମର ଯେତେ ବଡ଼ଜେନା
ମୁକୁଟ ବନ୍ଧା ସାହାଣି ମହାମଲ୍ଲ ସେନା ।
ଅନେକ ବେଶ ଭୂଷଣ ହୋଇ ମନୁଷ୍ୟଗଣେ
ଦେବମଣ୍ଡଳ ଅସ୍ଥାନେ ଗଲେ ଯାଇ ଭଜେ
ପାଦ ଧୋଇ କରିଗଲେ ଭୋଜନର ସ୍ଥାନ
ସୁବର୍ଣ୍ଣ ପାତ୍ରମାନଙ୍କେ ଯୋଗାଡ଼ ବିଧାନ ।
ଅପୂର୍ବ ଯୋଗାଡ଼ମାନ କରେ ଲଙ୍କେଶ୍ୱର
କତି କତି ନବଘନ ରନ୍ଧଣା ବେଭାର ।
ସୁବର୍ଣ୍ଣ ପଲମମାନ ଯୋଗାଡ଼ିବା ପାଇଁ
କୋଟି କୋଟି ସ୍ୱର୍ଣ୍ଣମାଢ଼େ ଗଢ଼ାଅଛି ହୋଇ ।
ଭୋଜନ ସ୍ଥାନରେ ଗନ୍ଧେ ବିଜୟେ ସମ୍ଭାରେ
ତହିଁ ବାରୁଣୀ ଦ୍ୱାଦଶ ବସ୍ତୁ ଦନକରେ ।
ବୋହଗ ଶେଷେ ବାସେଲୀଦ୍ୱାରେହେଲବଳ
ବାହୁଯା ଅନୁସରଣ ଅନନ୍ତ ନୈବଳ ।
ଏସନକ ସମ୍ପଦରେ ଭୋଜନ ବିଧାନେ
ପରଷନ୍ତି ନାନା ଖାଦ୍ୟ ସୂପକାରମାନେ ।
ଯୁକତରେ ଅନ୍ନ ଆଦି କୃଷ୍ଣ ଯାହା ସଞ୍ଚି
ସୁବାସ ଆମୋଦ ଗନ୍ଧ ଆକାଶେ ବାସୁଛି ।
ଗଇଷା ଖଇରୀ ନାନାବିଧି ତନ ପ୍ରତି
ଦେଖି ଶୂନ୍ୟ ଲୋକେ ହୁଅନ୍ତି ଆନନ୍ଦିତ ମତି ।
ସୁବାସିତ ଲବଣୀ ଯେ ଘୃତ ଚତୁସ୍ୱାଦେ
ଦେବ ପିତୃଙ୍କୁ ଦେଇଣ ଭୁଞ୍ଜି ମହାଶ୍ରଦ୍ଧେ ।
ଭୋଜନ ମହିମା ଦେଖି ରାଜା ବିଭୀଷଣ
ଧନ୍ୟ ଧନ୍ୟ ବୋଲିକରି ଭାବଇ ହୃଦେଣ ।
ଅନେକ ତୋଷେ ରାଜାଏ ସବରେ ଭୁଞ୍ଜନ୍ତି
ବହୁତ ଦଧି ସଞ୍ଚିତ କୃଷ୍ଣ କରିଛନ୍ତି ।
ଗୋରସ ଯେ ଷଡ଼ରସ ଆଦି ଅନ୍ନ ପିଠା
କର୍ପୂର ଆମୋଦ ଅତି ସୁସ୍ୱାଦୁ ମିଠା ।

ବିଶେଷଣେ ଅଗୋଚର ଭୋଜନ ବିଧାନ
ଦେଖିଣ ପ୍ରଶଂସା ବହୁ କଲେ ବିଭୀଷଣ ।
ଶ୍ରୀଜଗନ୍ନାଥ ଆଖିରେ ଯୋଡ଼ି ବେନି କର
ରାଜାଙ୍କୁ ସମ୍ମାର୍ଜନା ଯେ କଲେ ଯାଇକର ।
ପ୍ରବୋଧନା ବାକ୍ୟେ ଜଣ ଜଣକେ ସମାର୍ଜି
କୃଷ୍ଣଙ୍କ ବାକ୍ୟେ ରାଜାଏ ସନ୍ତୋଷରେ ଭୁଞ୍ଜି ।
ଭୋଜନେ ସନ୍ତୁଷ୍ଟ ଯହୁଁ ହୋଇଲେ ରାଜାମାନେ
ଶଙ୍ଖ ଶବଦ କରିଲେ ଆଚମନ ସ୍ଥାନେ ।
ମେରୁଶୃଙ୍ଗ ରହିଙ୍କର ଅନଳ ନୟନ
ଉଚ୍ଛିଷ୍ଟ ପନସବୁକୁ କଲା ଦହନ ।
ସୁବର୍ଣ୍ଣ ପାତ୍ର କାଢ଼ିଣ ନେବେ ପଶୁବାସୀ
ଗଙ୍ଗା ଭିତରେ ନେଇଣ ଦେଲେ ଫିଙ୍ଗିକର
ବିଭୀଷଣ ପୃଚ୍ଛା କଲେ କହ ନାରାୟଣ
ଗଭୀର ଜଳେ ଫିଙ୍ଗିଲେ କିପାଁ ଏ ବାସନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ବିଭୀଷଣ
ରାଜାଙ୍କୁ ମିଳିବ ନିତ୍ୟ ନୂତନ ବାସନ ।
ବିଭୀଷଣ ବୋଲେ ଦେବ ଏ ବଡ଼ ଆଶ୍ଚର୍ଯ୍ୟ
ଅନ୍ୟ ଯଜ୍ଞ ଦେଖିନାହିଁ ଦେଖିଲି ମୁଁ ଆଜ ।
ହରି ବୋଲନ୍ତି ଦେଖ ହେ ଲଙ୍କା ଅଧିପତି
ସେମାନେ ଘରର କଟି ଗୋ ଛେଳି ସିଞ୍ଚନ୍ତି ।
କଶ୍ୟପ ରୁଦ୍ରଙ୍କ ଏହୁ ଶତେକ ସନ୍ତତି
ଏହା କରିଣ ଏମାନେ ଲଭିବେ ମୁକତି ।
ଅସୁର ଭୋଜ୍ୟ ହୋଇଲେ ବଶିଷ୍ଠଙ୍କ ପୁଣେ
ଏହୁ ନିର୍ମଳ କରନ୍ତି ମୁକ୍ତିର ନିମନ୍ତେ ।
ଛେଳି ପଇଁର କରନ୍ତି ପୂରୁବର ପାପେ
ବ୍ରହ୍ମରାକ୍ଷସ ହୋଇଣ ବିଶ୍ୱାମିତ୍ର ଶାପେ ।
ଦେଖ ହେ ମେଘ ଛତ୍ରିର ପରେ ବରଷନ୍ତି
ଛତ୍ରିର ଉପରେ ପୁଣି ଚନ୍ଦନ ଲେପନ୍ତି ।
ଛତ୍ରିର ଉପରେ ବସି ଭୁଞ୍ଜନ୍ତି ସଇନ
କୋଟିଏ ଜଣ ଭୁଞ୍ଜିଲେ ହୁଏ ଶଙ୍ଖଧ୍ୱନି ।
ବିଭୀଷଣ ଏଣେକରି ବାଣ୍ଡେ ଉଣ୍ଡହେଲେ
ମେଦଛେକ ଶଙ୍ଖଧ୍ୱନି ସେକ୍ଷଣି ଶୁଣିଲେ ।
ବହୁତ ପ୍ରଶଂସା କଲେ ଦେଖି ବିଭୀଷଣ
ବାବୁ ଯୁଧିଷ୍ଠି ମହିମା ତୋର ଧନ୍ୟ ଧନ୍ୟ ।
ଏ ପୃଥ୍ୱୀରେ ଥିଲେ ବହୁ ମହା ମହାରଥୀ
ଜାନୁବନ୍ଧ ପର୍ଶୁରାମ ବେଣୁ ମାନଧାତା ।

ବାଳି ବଳି ହରିଶ୍ଚନ୍ଦ୍ର ଆଉ ଭାନୁଚନ୍ଦ୍ର
ଏବେର ପୃଥ୍ୱୀରେ ଥିଲେ ବହୁତ ନରେନ୍ଦ୍ର ।
ଏ ପୃଥ୍ୱୀରେ ଥିଲେ ବହୁ ମହା ମହା ରାଜେ
କେହୁ ଅର୍ଜି ନ ପାରିଲେ ଏତେକ ସମ୍ଭବ ।
ଗୋବିନ୍ଦ ବୋଇଲେ ତୋର ଜୀବନଟି ଧନ୍ୟ
ଏ ସମ୍ପଦ ଦେଖିଲୁ ତୁ ଚର୍ମଚକ୍ଷୁ ଯେଣୁ ।
ବିଭୀଷଣ ବୋଲେ ଦେବ ବୁଝିଛି ମୁଁ ହୃଦେ
ଏତେକ ସମ୍ପଦ ତାର ତୋହର ପ୍ରସାଦେ ।
ତହୁଁ ଯନ୍ତ୍ର ବିଭୀଷଣ ହାତ ଧରି ହରି
ସହଶାଳ ଦେଖାଇଲେ ପୁଣି ନେଇକରି ।
ରୋଷାଇଶାଳମାନଙ୍କୁ ଦେଖାଅନ୍ତେ ନେଇ
ଆଶ୍ଚର୍ଯ୍ୟ ହେଲା ତା ବିଭୀଷଣ ମନେ ବହି
ଏକା ପାଞ୍ଚନଉତିକ ତିନି ସୂପକାର
ଏ ବଧି ଶତେ ପାଚକ ରୋଷାଇ ଶାଳର ।
ବିଭୀଷଣ ବୋଲେ ଦେବ ଶୁଣ ନାରାୟଣ
ଏ ସକଳ କଥା ପ୍ରଭୁ ତୋହର ଭିଆଣ ।
ଗୋବିନ୍ଦ ବୋଇଲେ ପୂର୍ବୁ ସହଦେବ ମନ୍ତ୍ରୀ
ଏ ପ୍ରସ୍ତାବ ସୂପକାରେ ବୋଧି କହିଛନ୍ତି ।
ନବରତ୍ନ ହାଣ୍ଡି ଏକ ନେଇ ବସାଇବ
ତହିଁରେ ପଦାର୍ଥ ଯହୁଁ ଫୁଟିବା ଦେଖିବ ।
ଆରେକ ନଉତି ଏକ ବସାଇବ ନେଇ
ଏରୂପେ ପାଞ୍ଚ ନଉତି ଚୁଲ୍ଲୀରେ ବସାଇ ।
ଯୋଗେ ଯଦି ଖରା ପାଇ ଏକ ଫାଟିଯିବ
ତହିଁକି ଗୋଟିଏ ପୁଣି ସଜ୍ଜିଣ ରଖିବ ।
ତାହା ବଦଳରେ ଶୀଘ୍ର ନେଇ ବସାଇବ
ଉପର ତଳ କରିଣ ଚଟୁ ମାରୁଥିବ ।
ଚଟୁମାରି ବାମେ କାର ଯୋଡ଼ିଥଲେ ହାତ
ତହିଁକି ଗୋଟିଏ ତୁମ୍ଭେ ରଖିଥିବ ସାଥ ।
ଏରୂପେ ବିସ୍ତର ଯାର ଜାଣ ବିଭୀଷଣ
ମହାମନ୍ତ୍ରୀ ସହଦେବ କରିଛି ଭିଆଣ ।
ଅପାର ମହିମା ଏହି ଯୁଧିଷ୍ଠି ଦେବଙ୍କ
ଭୃତ୍ୟପଣେ ଖଟିଛନ୍ତି ସର୍ବ ଦେବଲୋକ ।
ଦେଖ ଚୁଲ୍ଲୀରେ ପକାନ୍ତି କଞ୍ଚା ବାଲି ନେଇ
ଅଗ୍ନିଦେବେ ଜଳି ପାକ ପ୍ରସ୍ତୁତ ହୁଅଇ ।
ଅକଟା ପଣିକା ଆଉ ଅକଟା ମସଲ
ହାଣ୍ଡିରେ ପୂରିଲେ ସବୁ ସୁଧା ପାକ ହେଲା ।

ଶଙ୍କରଙ୍କୁ ପରଷନ୍ତି ଉମା ଯେଉଁପରି
କୃଷ୍ଣେ ପରଷନ୍ତି ତଥା କରୁଣ କୁମାରୀ ।
ସତ୍ୟଯୁଗେ ନଳ ଯେବେ ଅମୃତର ପାକ
ରନ୍ଧଣା କରି ତୋଷିଲେ ଯତ୍ନେ ଦେବଲୋକ
ପଚାଶ ଶତାଶ ନଳ ବଧି ଜନପ୍ରତି ।
ଦୋହଦସ ପ୍ରସ ଲ ସର୍ବେ ହୁଅନ୍ତି ତୃପତି
ଏସନକ ମନ୍ଦମାତି ଉଦ୍ୟାନ ବିଧାନ
ନନ୍ଦନବନୁ ଆସଇ ଉତ୍ତମ ଫଳମାନ ।
ତଣ୍ଡୁଳମାନ ଆସଇ ଶାକଳ ଦ୍ୱୀପରୁ
ବିଭୀଷଣଙ୍କୁ ଦେଖାନ୍ତି ଦେବ କଳ୍ପତରୁ ।
ବିଭୀଷଣେ ଭୋଜ ଦେବ ଗଙ୍ଗାକୂଳେ ବଜେ
ଜନପଦ ଫଳ କୋଟି ଉଜାଡ଼ନ୍ତି ହେଳେ ।
ବ୍ରାହ୍ମଣ ଆଦି ଅଶ୍ୱ ମା ଚଣ୍ଡାଳ ସବ୍ରତେ
ସବୁଙ୍କୁ ଭୋଜ ଦିଅନ୍ତି ବୁଝି ବିଧିମତେ ।
ରାଜାମାନଙ୍କର ଭୋଜ୍ୟ ହୁଏ ଯେଉଁପରି
ବାଦ୍ୟକାରଙ୍କୁ ଭୋଜନ ଦିଅନ୍ତି ସେହିପରି ।
ଅଶ୍ୱ ଗଜେ ଖାଇବାକୁ ଦିଅନ୍ତି ଯା ହି ଘାସ
ଏହାଙ୍କ ଚର୍ଚ୍ଚା । ବୁଝଇ ଜଗତ ନରେଶ ।
ମୃଗ ବାହୁଟିଆ ଆଦି ଗଣ୍ଡାଗାର ଆଣି
ଯେତେ ଲାଗଇ କରତ ଯୋଗାଉଛି ପୁଣି ।
କୃଷ୍ଣପାଦେ ବିଭୀଷଣ ପୁନଃପୁନଃ ନମି
ବୋଲେ ଯ୍ୟା ସଞ୍ଜୟ କାହିଁ କରିଥିଲୁ ସ୍ୱାମି ।
ଏହା ଦେଖାଇ ଚଳନ୍ତି ତହୁଁ ଦାମୋଦର
ବିଜୟ କରିଲେ ଯାଇ ପଶ୍ଚିମ ଦୁଆର ।
ସାତକ୍ଷୌଣୀ ବଳ ଘେନି ସଙ୍ଗରେ ଭରତ
ଶ୍ରୀକୃଷ୍ଣ ପାଦେ ନମିଲ ଯୋଡ଼ି କରପୁଟ ।
ପାଞ୍ଚଦିନ ହେଲା ସ୍ୱାମୀ ଅଇଲଣି ମୁହିଁ
ଦରଶନ କରିବାକୁ ମୋତେ ଦିଅନ୍ତି ନାହିଁ ।
ଏତେଦିନ ହେଲା ଦେଖ ନ ପାରିଲି ଯାଇ
ଧର୍ମଙ୍କ ଦେଖା ନ ପାଇ କଷ୍ଟେ ଅଛି ରହି ।
ଏହା ଶୁଣିଣ ବୋଇଲେ କମଳଲୋଚନ
କେଉଁଠାରେ ଭୁଞ୍ଜୁଅଛ ଅନ୍ନାଦି ବ୍ୟଞ୍ଜନ ।
ମୋତେ କି ପଚାରୁଅଛ ଦେବ ଜନାର୍ଦ୍ଦନ
ସାତକ୍ଷୌଣୀ ବଳ ଭୁଲେ କରେ ମୁଁ ଭୋଜନ
ସର୍ବେ ବୋଲନ୍ତି ଅନନ୍ତ ପଡ଼ିହାରୀ ଯେବେ
ବର୍ଣ୍ଣନ କରିଲ କେବେ ଦେଖିବୁ କି ତେବେ ।

ନାରାୟଣ ବୋଇଲେ କି ସେ ପଡ଼ିହାରୀକ
ହେ ଭରତ ରାଜା ଚଳି ତାହାକୁ ଚିହ୍ନିକ ।
ଭରତ ବୋଇଲ ସେହୁ ଥାଆନ୍ତି ଗ୍ରାମରେ
ତାହାଙ୍କୁ ପାଆନ୍ତି ଯେବେ ପଶନ୍ତି ଭିତରେ ।
ଶ୍ରୀକୃଷ୍ଣ ବୋଇଲେ କଷ୍ଟେ ପାଇବୁ କି ଭେଟ
ଏଥିଠାରେ ଅପେକ୍ଷାରେ ଥାଅ ହୋ ଭରତ ।
ବିଭୀଷଣ ବୋଲେ ଦେବ ଅଟ ମାୟାଧର
ତୁମ୍ଭର ସକଳ ମାୟା ବେଦେ ଅଗୋଚର ।
ମାନବ ହୋଇଣ ତୋତେ କେ ଅନ୍ତ କରିବ
ବ୍ରହ୍ମା ଇନ୍ଦ୍ର ନ ପାଆନ୍ତି ପାର ଲେଶ ଶିବ
ଚଉଦ ବ୍ରହ୍ମାଣ୍ଡର ତୁ ଅଟ ଅଧିକାରୀ
ତୁ ଜାଣୁ ତୋହର ମାୟା ଦେବ ଦଇତ୍ୟାରି
ଏହିପରି କଥାବାର୍ତ୍ତା ହୋଇ ହୋଇ ଗଲେ
ପଶ୍ଚିମଦ୍ୱାର ନିକଟେ ପ୍ରବେଶ ହୋଇଲେ ।
ପଚାଶ ସହସ୍ର ରାଜା ତହିଁ ଛନ୍ତି ପୂରି
ପଶିବାକୁ ତହିଁ ଶକ୍ତି ନାହିଁ ଯେ କାହାରି ।
ଦେଖା ଦାଇଶମ ଧନ ନିଏ ଘରେ କଳି
କୁଡ଼ କୁଡ଼ ହୋଇ ତହିଁ ହୁଏ ବଜାବଳି ।
ହୀରା ମାଣିକ୍ୟ ବୈଦୂର୍ଯ୍ୟ କେ ଅନ୍ତ କରୁଛି
ଅଶ୍ୱ ଗଜ ପାଦତଳେ ପୋତି ହେଉଅଛି ।
ଦ୍ୱାର ଜଗି ରହିଅଛି ଭଦ୍ର ସୁକୁମାର
ନବସହସ୍ରଭ୍ରାତା ଛନ୍ତି ସଙ୍ଗରେ ତାଙ୍କର ।
ବିଭୀଷଣଙ୍କୁ ଘେନିଣ ଦେବ ଜନାର୍ଦ୍ଦନ
ରାଜାମାନଙ୍କ ଗହଳେ ପଶିଲେ ବହନ ।
ଧାଇଁ ଅମାତ୍ୟମାନଙ୍କ ବହୁତ ଗହଳ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଲଙ୍କା ମହୀପାଳ
ଦେଖିଣ କୁମାରମାନେ ଯଥାସ୍ଥାନୁ ଉଠି
ଗୋବିନ୍ଦଙ୍କୁ ପ୍ରଣିପାତ ହେଲେ ଭୂମିଲୋଟି ।
ବୋଇଲେ ଗୋବିନ୍ଦ ତାଙ୍କୁ ଶୁଣ ଦ୍ୱାରପାଳ
ଏହି ଦେଖ ବିଭୀଷଣ ବିଖ୍ୟାତ ଭୂପାଳ ।
ଲଙ୍କାପତି ଏ ତେଜମୟ ଭୋଗା ରାଜା
ଆସିଛନ୍ତି ଯୁଧିଷ୍ଠିରଙ୍କ କରିବାକୁ ପୂଜା ।
ଦ୍ୱାର ଛାଡ଼ ବାବୁ ଆମ୍ଭେ ଯିବୁ ଭିତରକୁ
ବିଭୀଷଣ ଦରଶନ କରିବେ ସ୍ୱାମୀଙ୍କୁ ।
ପୁଣ ପୁଣ କହୁଛନ୍ତି ଦେବ ନାରାୟଣ
ନ ଶୁଣେ ଭଦ୍ର କୁମାର ପିତାଙ୍କ ବଚନ ।

କଠୋର ବାକ୍ୟ କହଇ ସେ କୁମରରମଣି
କିଏ ଲଙ୍କା ବିଭୀଷଣ ତାହାକୁ ନ ଜାଣି ।
ମହାରାଜାଏ ଦର୍ଶନ ନ ପାନ୍ତି ଏ ଦ୍ୱାରେ
ଛାଡ଼ ନ ପାରିବ ହାର ମୁଁ ବିନା ଆଜ୍ଞାରେ ।
ଏମନ୍ତ କହି କୁମର ହୋଇଲାକ ତୁନି
ଲଜ୍ଜାପାଇ ଚଳଗଲେ ବିଭୀଷଣ ସେନି ।
ବୋଲନ୍ତି ବଳେ ଦର୍ଶନ କରିଅଛି ନେଇ
ଧର୍ମସୁତ ଯୁଧିଷ୍ଠିରଙ୍କ କୋପକୁ ଡରଇ ।
ଏହା କହି ବିଭୀଷଣେ ଘେନି ବନମାଳୀ
ଇନ୍ଦ୍ରପ୍ରସ୍ଥ ଭଣ୍ଡାର ଦ୍ୱାରେ ଯାଇ ମିଳି ।
ମାନଗୋବିନ୍ଦ ବିଜୟେ ଭଣ୍ଡାରର ଦ୍ୱାରେ
ବତିଶ ସହସ୍ର ଯୋଦ୍ଧା ଅଛନ୍ତି ସଙ୍ଗରେ ।
ଗୋବିନ୍ଦ ବୋଇଲେ ଏହି ଦେଖ ଲଙ୍କପତି
କୁରୁକୁଳ ମଣ୍ଡନ ଏ ମାନଚକ୍ରବର୍ତ୍ତୀ ।
ତୁ ତ ରଜା ଏହାକୁ ନ କରିବୁ ପ୍ରଣାମ
ପଦ୍ମନାଭ ନାରାୟଣ ଏ ସ୍ୱୟଂ କୃଷ୍ଣ ସମ ।
ଅନର୍ଘ ମଣି ମୁକୁଟ ଅଛି ଏହା ଶିରେ
କୋଟିଏ ମଣି ଅଛି ଯା ସପତ ଶିଖରେ ।
କୋଟିପାଦେ ଲକ୍ଷ୍ମୀ ଚନ୍ଦ୍ରି ବଳେ କରୁଛନ୍ତି
ଅନୁକ୍ଷଣେ ତା କନ୍ଧରୁ ଛାଡ଼ି ନ ପାରନ୍ତି ।
ଶଙ୍ଖନିଧି ପଦ୍ମନିଧି ଅଛି କରସ୍ଥଳେ
ପାଷାଣେ ଲାଗିଲେ କରି ସ୍ୱର୍ଣ୍ଣ ତତକାଳେ ।
ସ୍ଥଳକେ ପାଦେ ଅବେଶ୍ୱ ପଦ୍ମଫୁଲ ଫୁଟେ
ଚୌରାଶୀ ଗୁଣ ଲକ୍ଷଣେ ଏହି ରଜା ଅଟେ ।
ସବୁବେଳେ ହୋଇଥାଏ ବରବେଶ ଏହି
ମାତା ପିତାନ୍ତ କାହାକୁ ପ୍ରଣାମ ନୁହଇ ।
ଲକ୍ଷେ ରଜାଙ୍କ ଉପରେ ଏ ମଉଡ଼ମଣି
ସପତସାଗର ଯାର ମହିମା ବଖାଣି ।
ଯା ସୈନ୍ୟ ଗୋଳରେ ଭଙ୍ଗେ ସମୁଦ୍ର ଗାରିମା
ତେଜେ ପର୍ଶୁରାମ ସମ ଜ୍ଞାନେ ଅଟେ ବ୍ରହ୍ମା ।
ହେ ଦୈତ୍ୟ ବୁଝ ଯୁଧିଷ୍ଠିର ମହିମା କପରି
ଏତେବଡ଼ ରଜା ଯାର ଭଣ୍ଡାରଧିକାରୀ ।
ବିଭୀଷଣ ବୋଲେ ଦେବ ତୋର କୃତ୍ୟ ସବୁ
ଜାଣି ଭଣ୍ଡାର ବେଇଛୁ ସେହେ ନ ସରିବ ।
କୃଷ୍ଣ ବୋଲନ୍ତି ଧର୍ମକୁ କଲେ ତୁ ଦର୍ଶନ
କୋଟିଏ ଜନ୍ମର ପାପ ହୋଇବ ଖଣ୍ଡନ ।

ତାହାଙ୍କ ପାଦେ ସହସ୍ର ପ୍ରଣାମ କରିବୁ
ଠାକୁରଙ୍କ ଆଜ୍ଞା ହେଲେ ଭୂମିରୁ ଉଠିବୁ ।
ବିଭୀଷଣ ଏହା ଶୁଣି ରଖିଲେ ହୃଦଗତେ
ମୁହିଁ ଅନ୍ୟ ନ ଜାଣଇ ଜାଣେ ଏକା ତୋତେ
ତା ଭାବ ଜାଣି ହସନ୍ତି କୃଷ୍ଣ ମନକଲି
ଏମନ୍ତ ରଜାକୁ ମୁହିଁ କପାଁ ଜଣାଇଲି ।
ଏ ତ ମାନ୍ୟ ନ କରିବ ଠାକୁର ଅଗ୍ରତେ
କି ଉପାୟ କରିବି ମୁଁ ବସ୍ତୁରଇ ଚିତ୍ତେ ।
ଦୁର୍ଯ୍ୟୋଧନକୁ ବୋଇଲେ ଦେବ ନାରାୟଣ
ବିଭୀଷଣ ଆଣିଥିଲା ଯେଉଁ ଦ୍ରବ୍ୟମାନ ।
ଯତନେ ଭଣ୍ଡାରେ ତାହା ଥୋଇଛୁ ନା ସବୁ
ଏପରି କହିଲେ ଯହୁଁ ଦେବ ପଦ୍ମନାଭ ।
ଦୁର୍ଯ୍ୟୋଧନ ବୋଲେ ବେଳସହସ୍ର ରଥ ଥିଲା
ନମିଷକେ ଦାନେ ତାହା ସକଳ ସରିଲା ।
ଶୁଣି ବିଭୀଷଣ ବଡ଼ ହୋଇଲା ଆଶ୍ଚର୍ଯ୍ୟ
ଏତେ ସଞ୍ଚିତ ଉଣିଛି କୁହି ଦେବରାଜ ।
ରାଜସୂୟ ଯାଗ ସଭା ଦେବଙ୍କୁ ଦୁର୍ଲ୍ଲଭ
ଯେ ଯାହା ମାଗଇ ନିଏ ନିରତେ ନ ଯିବ ।
ଭଣ୍ଡାର ଦ୍ୱାରେ ରହିଣ ଦେଖେ ବିଭୀଷଣ
ବଡ଼ବେ ଦାନ ହୋଇଲା ମେଦଚ୍ଛେଦ ସ୍ୱର୍ଣ୍ଣ ।
ବିଭୀଷଣ ବୋଲେ ଧର୍ମ ଜୀବନ ତୋ ସାଧୁ
ଧନେ ସମସରି ତୋତେ ନ ହୋଇବ ସିନ୍ଧୁ ।
ବିଭୀଷଣକୁ ଘେନିଣ ଯାନ୍ତି ଦାମୋଦର
ରନ୍ଧନଶାଳମାନ ଦେଖେ ବିଶ୍ରବା କୁମର ।
ଲାଗିଅଛନ୍ତି ଚାନ୍ଦିଣି ପଞ୍ଚାଶ ଅଯୁତ
ଅଳକାପୁରଉଛି ଲକ୍ଷେ ଆଣିବ୍ୟନ୍ତି ବିତ୍ତ ।
କୋଟିଏ ଅର୍ଥ ଘେନିଣ ଯେହାନ୍ତି ପୁଷ୍କର
ଖଟିବାକୁ ରହିଅଛି ଦକ୍ଷିଣ ଦୁଆର ।
ଭୁଞ୍ଜନ୍ତି ଲଙ୍କାର ସୈନ୍ୟ ସରସ୍ୱତୀ ଘରେ
ତାଙ୍କୁ ପରଷଇ ହନୁ ରହିଣ ସେଠାରେ ।
ଭୁଞ୍ଜୁଅଛନ୍ତି ରାକ୍ଷସେ ଯେ ଯାହାର ଇଚ୍ଛା
କରୁ କି ଅପେକ୍ଷା ନାହିଁ ପୂର୍ଣ୍ଣକର ବାଞ୍ଛା ।
ମାରୁତି କହଇ ତାଙ୍କୁ ଜରନାହିଁ ଘାତ
ସନ୍ତୁଷ୍ଟ ହୋଇଣ ଭୁଞ୍ଜ ତୋଷକର ମତ ।
ଯଦ୍ୟପି ତାଙ୍କୁ ପ୍ରବୋଧ କରଇ ପାବନି
ଉଦ୍ଭ କି ଛାଡ଼ନ୍ତି ମନୁ ଅସୁର ସଇନ ।

ପରଷଇ ହନୁ ଦୈତ୍ୟେ ଭୁଞ୍ଜନ୍ତି ଆନନ୍ଦେ
ଡରେ କେ ବୋଲଇ ସ୍ୱାମି ଅର୍ଣ୍ଣିଲିଣି ନାଦେ
ବିଭୀଷଣଙ୍କୁ ଦେଖାନ୍ତି ଦେବ ଦାମୋଦର
ଦେଖିଣ ଅତି ଆଶ୍ଚର୍ଯ୍ୟ ହୁଏ ଲଙ୍କେଶ୍ୱର ।
ବୋଲେ ସବୁ ଆହେ ହରି ତୋହର ଏ କୃତ୍ୟ
ପାଣ୍ଡବଙ୍କ ନାମ ଭଳେ କରନ୍ତୁ ବିଦିତ ।
ତୁମ୍ଭ ଏକା ଦୟାମୟ ଅଟ କଳ୍ପତରୁ
ସବୁ ପାପ ଦୂର ହୁଏ ତୋହର କୃପାରୁ ।
ଶାରଳା ଦାସ ଭଣଇ ତୋହର ଚରଣ
ମୋର ପାପ ନାଶକର ମୂର୍ତ୍ତି ଅକଞ୍ଚନ ।

---

## ବିଭୀଷଣର ଯୁଧିଷ୍ଠିରଙ୍କ ଦର୍ଶନ
## ଓ ଯୁବନାଶ୍ୱ ରାଜାଙ୍କ ଉପାଖ୍ୟାନ

ପୁନଶ୍ଚ ପୁଚ୍ଛା କରନ୍ତି ମନୁ ଅଧିପତି
ଦରଶନ ପାଇଲେକି ନାହିଁ ଲଙ୍କପତି ।
ଏଥିର ବିଷୟ ମୋତେ କହ ତପୋଧନ
ତୁମ୍ଭର ଚରଣେ କରେ ଏହି ନିବେଦନ ।
ରାଜାର ଭକ୍ତି ଘେନିଣ କହନ୍ତି ଅଗସ୍ତି
ହେ ରାଜା ଏକାଗ୍ରଚିତ୍ତେ ଶୁଣ ତୋଷମତି ।
ପୁନଶ୍ଚ ବିଭୀଷଣଙ୍କୁ ଘେନି ନାରାୟଣ
ସେହିଠାରୁ ଧୀରେ ଧୀରେ କରିଲେ ଗମନ ।
ପଶ୍ଚିମ ଦ୍ୱାର ନିକଟେ ପ୍ରବେଶ ହୋଇଲେ
ବିଭୀଷଣ ହାତ ଧରି ଦ୍ୱାରପାଶେ ଗଲେ ।
ସାରଦର କୁମରଙ୍କୁ କହିଲେ କେଶବ
ଦ୍ୱାର ଛାଡ଼ ଦର୍ଶନକୁ ବିଭୀଷଣ ଯିବ ।
ସାରଦର ବୋଲେ ଦେବ ଦଣ୍ଡେ ଏଠା ରହ
ଭୀମସେନଙ୍କୁ ଜଣାଏ ଏହାଙ୍କ ବିଷୟ ।
ଶୀଘ୍ର ଡାକି ସାରଦର ସେ କାଳଞ୍ଜନକୁ
ବୋଇଲେ ଜଣାଅ ତୁମ୍ଭ ଭୀମ ଠାକୁରଙ୍କୁ ।
ବୋଲିବୁ ରାଜାମାନଙ୍କୁ ଘେନିଣ ଅନନ୍ତ
ଦରଶନ କରିବାକୁ ଦ୍ୱାରେ ଉପଗତ ।
ଦ୍ୱାରପାଳ ବାଣୀ ଶୁଣି ଗଲା କାଳଞ୍ଜନ
ସଭାରେ ଜଣାଏ ଯହିଁ ଛନ୍ତି ଭୀମସେନ ।
ବିଭୀଷଣର ଆଗତ ବୋଲିଣ ଜଣାଇ
ଶୁଣି ଆଜ୍ଞାଦେଲେ ଭୀମ ଆସୁ ବେଗ ହୋଇ ।
ଏହା ଶୁଣି ପ୍ରବେଶିଲେ ପଶ୍ଚିମ ଦୁଆର
ଆସୁ ବିଭୀଷଣ ଦ୍ୱାରଛାଡ଼ ସାରଦର ।
ଶୁଣିଣ ଦ୍ୱାର ଛାଡ଼ିଲେ ତହୁଁ ସାରଦର
ବିଭୀଷଣ ଘେନି ଦେବ ପଶିଲେ ଭିତର ।
ପାରୁଶ ମହାପାରୁଶ ମନ୍ତ୍ରୀ ସହିତରେ
ବିଭୀଷଣ ଚଳିଗଲେ କୃଷ୍ଣଙ୍କ ସଙ୍ଗରେ ।
ରାଜାମାନେ ବସିଛନ୍ତି ବଡ଼ାଇ ସଭାରେ
ପାତ୍ର ଅମାତ୍ୟମାନେ ଛନ୍ତି ପଚୁଆରେ ।
ରାଜାମାନେ ହେଉଛନ୍ତି ତହିଁ କୃତକୃତ୍ୟ
ବୋଲନ୍ତି ଏ ବିଭୀଷଣ ଲଙ୍କାପୁର ନାଥ ।
ଅନେକ ଅଳଙ୍କାରରେ ଭୂଷିତ ତା କାୟ
ପ୍ରତ୍ୟକ୍ଷ ଦିଶିଲା ସେହି ଦ୍ୱିତୀୟ ଇନ୍ଦ୍ର ପ୍ରାୟ ।
ଦେଖିଲେ ତାହାର ରୂପ ଜଗତ ମୋହଇ
ଛନ୍ଦୀପଣରେ ଜାଣନ୍ତି ବ୍ରହ୍ମାଣ୍ଡେ କେ ନାହିଁ ।
ଦଶଶିର ରାବଣର ଅଟଇ ଏ ଭାଇ
ଦେବତାଙ୍କୁ ଭୃତ୍ୟପଣେ ଖଟାଇଲା ନେଇ ।
ବିଭୀଷଣ ରାଜା ଅଟେ ବହୁତ ସମ୍ପଦେ
ଦେଖନ୍ତି ନୃପତିମାନେ ଅତ୍ୟନ୍ତ ସାନନ୍ଦେ ।
ଦେଖି ରାଜାଏ ବୋଲନ୍ତି ଆମ୍ଭେ ଅଟୁ ଧନ୍ୟ
ତେପନଯୁଗ ଗଣ୍ଡାକୁ ଦେଖେ ଏ ନୟନ ।
ପୂର୍ବ ପୁଣ୍ୟରେ ଦେଖିଲୁ ରାଜସୂୟ ସଭା
ପାଣ୍ଡବଙ୍କ ପରସାଦେ ଦେଖିଲୁ ଏ ଶୋଭା ।
ଯାଗଶାଳେ ଥାଇକରି ଋଷିଏ ବୋଲନ୍ତି
ଦେଖ ଏହି ବିଭୀଷଣ ବିଶ୍ରବା ସନ୍ତତି ।
ଏ ସେ ଶ୍ରୀରାମଙ୍କ ପାଦେ ଶରଣ ପଶିଲା
ରାବଣକୁ ମରାଇଣ ଦେବଙ୍କୁ ତୋଷିଲା ।
ଦେଖିଣ ଆନନ୍ଦ ହେଲେ ସର୍ବ ମହାମୁନି
କଲ୍ୟାଣ ବାଞ୍ଛା କରିଲେ କରି ବେଦଧ୍ୱନି ।
ବିଭୀଷଣେ ତିଆରନ୍ତି ପୁରୁଷ ଉତ୍ତମ
ସ୍ୱାମୀଙ୍କ ଚରଣେ ତୁମ୍ଭ କରିବୁ ପ୍ରଣାମ ।
ମହା ପ୍ରତାପୀ ଏ ଧର୍ମରାଜା ଯୁଧିଷ୍ଠିର
ଆଜ୍ଞା କଲେ ଭୂମିପରୁ ଉଠିବୁ ସତ୍ୱର ।
ଅନେକ ତପସ୍ୟା ତୁମ୍ଭ ପୂର୍ବେ କରିଥିଲୁ
ତହିଁର ଫଳେ ତୁ ଜାଣ ଦର୍ଶନ ପାଇଲୁ ।
ବିଭୀଷଣ ବିସ୍ମରଇ ପୁଣି ହୃଦଗତେ
ଅନ୍ୟ କେ ସ୍ୱାମି ନ ଜାଣେ ତୋ ଛଡ଼ା ଜଗତେ

ବିଭୀଷଣ ହୃଦଭାବ ଜାଣି ବାସୁଦେବ
ଭାବଲେ କେବେ ଏ ତାଙ୍କୁ ପ୍ରଣାମ ନୋହିବ
ଆସ୍ଥାନରେ ବସିଛନ୍ତି ଦେବ ଧର୍ମରାଜ
ବିଭୀଷଣଙ୍କୁ ଘେନିଣ ବିଜେ ଦେବରାଜ ।
ଗୋବିନ୍ଦ ବୋଇଲେ ଦେବ ଏ ଲଙ୍କାବାସି
ଅବଧାରି ହେବା ଦେବ ଦର୍ଶନ କରୁଛି ।
ଉଚ୍ଚସ୍ୱରେ ଡାକଦ୍ୟନ୍ତି ଦେବ ବନମାଳୀ
ଆପଣେ ପାଦେ ପଡ଼ିଣ କଲେ କୃତାଞ୍ଜଳ ।
ଅଦ୍ଭୁତ ବନ୍ଦ ଭଟସ୍ୱ ବଚନରେ କହି
ଭକ୍ତବାଛଳର ତଳେ ଶୁଣିଲେ ଗୋସାଇଁ ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲ ବିଭୀଷଣ
ନରେପି ଭାବିଣ ସେହୁ ଧର୍ମଙ୍କ ନନ୍ଦନ ।
ବିସ୍ମଇ ମନେ ଏହୁ ନୁହଇ ମାନବ
ଯାହାର ପାଦେ ପ୍ରଣାମ କରନ୍ତି କେଶବ ।
ନରକର ବସ୍ତୁ ଅବା ହୋଇବେ ପ୍ରତ୍ୟକ୍ଷେ
ଏହା ଭାବିବ ପ୍ରଣାମ ହୋଇଲେ ସମ୍ମୁଖେ ।
ଯୁଧିଷ୍ଠି ପାଦେ ନମିଲେ ଦେବ ନାରାୟଣ
ତାଙ୍କ ପାଦତଳେ ନମେ ରାଜା ବିଭୀଷଣ ।
ମାରକଣ୍ଡ ମୁଖ ଋଷି ବ୍ୟାସ ମହାଋଷି
ଧନ୍ୟ ବିଭୀଷଣ କହି ବନ୍ଦିତ ପ୍ରଶଂସି ।
ମନ୍ଦିର ପଣେ ଭୋଗେ କେହି ନୁହେ ସର
ରାବଣ ସମ୍ପଦେ ଧନ୍ୟ ହେଲ ଅଧିକାରୀ ।
ତୁହି ଅଟୁ ମହାରାଜା ଜାଣୁ ସବୁବୁଦ୍ଧି
ତେପନ ଯୁଗ ଭୋଗିଲୁ ମହାମନ୍ତ୍ର ସାଧି ।
ଜଗପ୍ରସାଦ ବୋଲିଣ ଅର୍ଜୁନ ଜଣାଏ
ଦେବ ବିଭୀଷଣ ନମୁଛନ୍ତି ଦେବରାୟେ ।
ଶୁଣି ଯୁଧିଷ୍ଠି ବୋଲନ୍ତି ଯାଅରେ ନକୁଳ
ବାଞ୍ଛାସିଦ୍ଧ ହେଉ ବେଗେ ଶ୍ରୀହରିଙ୍କୁ ତୋଳ ।
ନକୁଳ ବୋଇଲେ ଆଜ୍ଞା ଦେଲେ ଧର୍ମରାଣ
ଉଠନ୍ତୁ ହେ ହରି ବୋଲୁଁ ଉଠିଲେ ମୋହନ
ଉଠି ବସି ବିଭୀଷଣ ଶିରେ ହାତ ଦେଇ
ବୋଇଲେ ନ ଉଠିବୁ ତୁ ତାଙ୍କ ଆଜ୍ଞା ନାହିଁ
ବିଭୀଷଣ ରହେ ମାନ କୃଷ୍ଣଙ୍କ ବଚନ
ଆଡ଼ ହୋଇଣ ଧର୍ମଙ୍କୁ ଜଣାନ୍ତି ମୋହନ ।
ସ୍ୱାମି ଲଙ୍କାଗଡର ଏ ରାଜା ବିଭୀଷଣ
ତୋର ପାଦେ କରୁଅଛି ଭୂମିଷ୍ଠ ପ୍ରଣାମ ।

ଶ୍ରୀରାମ ଅଭିଷେକ ଏ ଅଟେ ମହାରାଜା
ଆପଣଙ୍କ ଶ୍ରୀଚରଣେ କରୁଅଛି ପୂଜା ।
ଶୁଣି ବାମକର ଧରି ବୋଇଲେ ଯୁଧିଷ୍ଠି
ହେ ହରି ବିଭୀଷଣଙ୍କୁ କହ ଆସୁ ଉଠି ।
କୃଷ୍ଣ ବଚନେ ଉଠିଲେ ଲଙ୍କା ଅଧିପତି
ଉଠି ପୁଣି କରେପଇ ଧର୍ମଙ୍କର ମୂର୍ତ୍ତି ।
ହରି ବୋଇଲେ ଏ ଯେବେ ନର ହୋଇଥାନ୍ତା
ମୋହର ନମସ୍କାରେ କି ତା ଶରୀର ଥାନ୍ତା ।
ନଷ୍ଟପ୍ରାୟ ଦଗ୍ଧ ହୁଅନ୍ତା ତାର ନିଜକାୟ
ନିରାକାର ଅବତାର ଏ ଯେ ଧର୍ମରାୟ ।
ଶ୍ରୀକରେ ଅର୍ଘ୍ୟ ଘେନିଣ ତହୁଁ ବିଭୀଷଣ
ଯୁଧିଷ୍ଠି ଦେବଙ୍କ ପାଦେ କରିଲା ବନ୍ଦନ ।
କରେ ଯୁଧିଷ୍ଠିର ଦେବ ଦେଲେ ଜୟମାଳା
ବହୁ ପୁରୁଷାର୍ଥ କଲେ ଦେବ ଧର୍ମବଳା ।
ଆସ୍ଥାନେ ବସ ବୋଲିଣ ସର୍ବ ଦଣ୍ଡଧାରୀ
ସ୍ୱର୍ଣ୍ଣାସନେ ବସାଇଲେ ନେଇ ତାଙ୍କୁ ହରି ।
ସ୍ୱର୍ଗପୁର ସମାନ ସେ ସଭାର ଶୋଭନ
ଅଦ୍ଭୁତ ସାନନ୍ଦେ ବସି ଦେଖେ ବିଭୀଷଣ ।
ଅମର ବିଳାସିମାଏ ତାଣ୍ଡବ ଖଟନ୍ତି
ନାନାନୃତ୍ୟ ହେଉଅଛି ତହିଁ ବିବାରିତ ।
ରାଜସୂୟ ଯାଗସଭା ପନ୍ଦର ଦିବସେ
ଦେବେ ପୁଷ୍ପବୃଷ୍ଟି କଲେ ଆକାଶୁଁ ହରଷେ ।
ପଣ୍ଡୁ ସ୍ୱର୍ଗ ଗଲେ ବୋଲି ଶୁଭିଲାକ ବାଣୀ
ଜୟ ଜୟ ଶବଦରେ ଭର୍ତ୍ତିଲ୍ଲ ମେଦିନୀ ।
ବ୍ୟାସଦେବ କହିଲେକ ବିଭୀଷଣ ଆଗେ
ଯୁବନାଶ୍ୱ ରାଜା ଯାଗ କଲା ସତ୍ୟଯୁଗେ ।
ଅନେକ କଷ୍ଟରେ ସେହୁ ସନ୍ତାନ ପାଇଲା
ଏ ରାଜସୂୟ ସଭାର ସମାନ ନୋହିଲା ।
ରାଜାମାନେ ପୃଚ୍ଛାକଲେ ବ୍ୟାସଙ୍କ ଅଗ୍ରତେ
ଯୁବନାଶ୍ୱ ରାଜା କଥା କୁହନ୍ତୁ ପଣ୍ଡିତେ ।
ଶୁଣିଣ ବ୍ୟାସ କହିଲେ ଫିଟାଇଣ ପୋଥି
ଲକ୍ଷେ ରାଜାଶ୍ରୋତା ବକ୍ତା ବ୍ୟାସ ମହାଯତି ।
ମନ ନିବେଶିଣ ଶୁଣ ହେ ନୃପତିଗଣ
ଯୁବନାଶ୍ୱ ରାଜାଙ୍କର ଯଜ୍ଞର ବିଧାନ ।
ସୂର୍ଯ୍ୟବଂଶେ ସେହୁ ରାଜା ହୋଇଲେକ ଜାତ
ସଂକ୍ଷେପି କହୁଛି ଶୁଣ ତାହାଙ୍କ ଚରିତ ।

ଆଦ୍ୟ ଶୂନ୍ୟ ନିରଞ୍ଜନ ଶକତି ଉତ୍ପତ୍ତି
ପ୍ରଥମରେ ଉତ୍ପନ୍ନଲେ ଦେବତା ବ୍ରାହ୍ମଣ ।
ଏହାଙ୍କର ଅଂଶେ ଜାତ ହେଲେ ସୂର୍ଯ୍ୟବଂଶ
ଏହି ବଂଶେ ହରିଶ୍ଚନ୍ଦ୍ର ହୋଇଲେ ନରେଶ ।
ହରିଶ୍ଚନ୍ଦ୍ରଙ୍କ ନନ୍ଦନ ରୋହିତାଶ୍ୱ ହେଲେ
ହରଯଶ ଏହାଙ୍କର ସନ୍ତାନ ହୋଇଲେ ।
ହରଯଶର ନନ୍ଦନ ହେଲେ ଯୁବନାଶ୍ୱ
ସୁଖରେ ପାଳିଲେ ପ୍ରଜା ହୋଇ ଏ ନରେଶ ।
ଏହି ରାଜାଙ୍କର କୋଳେ କୁମର ନୋହିଲା
ଅପୁତ୍ରକେ ବେନଲକ୍ଷ ବର୍ଷ ରାଜ୍ୟ କଲା ।
ବହୁତର ଯାଗଯଜ୍ଞ କଲେକ ନୃପତି
ତଥାପି ତାହାର କୋଳେ ନୋହିଲା ସନ୍ତତି ।
ନାନା ଦାନମାନ ରାଜା କଲା ଅନୁକ୍ଷଣ
ବହୁତୀର୍ଥ ବୁଲି ରାଜା କଲା ପର୍ଯ୍ୟଟନ ।
ଅନେକ ପୂଜା କରିଲା ଦେବତା ବ୍ରାହ୍ମଣ
ତଥାପି ତାହାର ଅଂଶେ ନୋହିଲା ସନ୍ତାନ ।
ପୁତ୍ର ନୋହିବାରୁ ରାଜା ଅତିଅନ୍ତ ଦୁଃଖେ
ଦେବତା ବ୍ରାହ୍ମଣ ପୂଜି ବସିଲା ସମ୍ମୁଖେ ।
ବଶିଷ୍ଠ ବାମଦେବ ଯେ କହିଲେ ବ୍ରହ୍ମାଙ୍କୁ
ଯୁବନାଶ୍ୱ ଭଜିଲକ ଦେବ ବ୍ରାହ୍ମଣଙ୍କୁ ।
ବେଦ ମନ୍ତ୍ରମାନ ସତ ନୋହିଲା ଭରସି
ଶୁଣି ପିତାମହ ଏକ ପୁତ୍ର ଯଜ୍ଞ ସୃଷ୍ଟି ।
ଅଗ୍ନି ଦେବଙ୍କୁ ସନ୍ତୁଷ୍ଟ କଲେ ଯଜ୍ଞ ଗୋଷ୍ଠେ
ମହାମନ୍ତ୍ରେ ଯଜ୍ଞ କଲେ ପୁତ୍ର ଜଳଘଟେ ।
ଆହୁତି ସମ୍ପନ୍ତ ଥାଇ ଲୋକାଲୋକ ଗିରି
ମହାମନ୍ତ୍ର ଜଳଘଟ ନେଇ ଯତ୍ନକରି ।
ଅଗର ବୃକ୍ଷେ ସଶାଖା ଡାଳ ଥିଲା ଗୋଟି
ତା ଉପରେ ଥୋଇଲେ ନେଇ ସେ ଜଳଘଟଟି
କାଲି ପ୍ରଭାତେ କହିବା ଆସି ବଶିଷ୍ଠଙ୍କୁ
ଯୁବନାଶ୍ୱଙ୍କୁ ଦେବେ ସେ ଏ ଜଳଘଟକୁ ।
ଥୋଇ ଦେବଗଣ ଚଳି ଗଲେ ଲଣ୍ଡଭଣ୍ଡେ
ବଶିଷ୍ଠ ଯାଇଅଛନ୍ତି ପ୍ରୟାଗ ମାର୍କଣ୍ଡେ ।
କୁମ୍ଭମାସ ଶୁକ୍ଳପକ୍ଷ ଗୁରୁବାର ଚୌଠି
ରେବତୀ ନକ୍ଷତ୍ର ହୁଏ ବେଳ ତିନଘଟି ।
ସେହିଦିନ ଯୁବନାଶ୍ୱ ମୃଗୟା ବନୋଦେ
ଲେଉଡ଼ି ନ ପାଇଲେ ବନେ ମୃଗ ଗଣ୍ଡାହାଦେ

ବୁଲି ବୁଲି ନରପତି ମହାଶ୍ରମୀ ହେଲେ
ପିପାସା ଅତୁରେ ସେହି ମନ୍ତ୍ରୀକି ବୋଇଲେ ।
ଆହେ ମନ୍ତ୍ରୀ ତୁମେ ଦହ୍ୟ ହୁଏ ମୋର କାୟ
ବହନ ଲୋଡ଼ଣ ମୋତେ ଜଳ ଢୋକେ ଦିଅ
ରାଜାର ବଚନେ ମନ୍ତ୍ରୀ ଅଶ୍ୱକୁ ପଲାଣି
ବୁଲି ବୁଲି ନ ପାଇଲେ କାହିଁ ଲୋଡ଼ି ପାଣି ।
ଲୋକ ଲୋକ ଗିରିକୁ ସେ ଭେଟିଲା ନିକଟେ
ଅଗର ବୃକ୍ଷେ ଦେଖିଲା ଥିଲା ଜଳଘଟେ ।
ସେ ଜଳଘଟକୁ ଘେନି ମନ୍ତ୍ରୀ ଗଲା ବେଗେ
ଯତ୍ନକରି ଦେଲା ନେଇ ଯୁବନାଶ୍ୱ ଆଗେ
ମହା ପିପାସାରେ ରାଜା ବସିଥିଲେ ତହିଁ
ଜଳ ପିଅନ୍ତେ ସେ ଘଟଯାକ ଦେଲେ ପିଇ ।
ସେ ଜଳ ସବୁହି ରାଜା ତୃଷାରେ ପିଇଲା
ଧାତାମନ୍ତ୍ରେ ରାଜାଗର୍ଭେ ପୁତ୍ରେକ ରହିଲା ।
କଟକରେ ଯାଇ ବିଜେକଲା ସୂର୍ଯ୍ୟବଂଶୀ
ପିତାଙ୍କୁ ଭେଟିଲେ ଯାଇ ବଶିଷ୍ଠ ମହର୍ଷି ।
ଧାତା ବୋଇଲେ ତୁ ଯାଅ ଲୋକାଲୋକ ଗିରି
ତାହା ଶିଖେ ବୃକ୍ଷେ ଅଛି ଘଟେ ଜଳେ ପୂରି ।
ଯୁବନାଶ୍ୱ ରାଜା ଭାର୍ଯ୍ୟା ପିଇଲେ ସେ ନୀର
ଏକପୁତ୍ର ହେବ ତାହା ମହା ବୀରବର ।
ଧାତାଙ୍କ ବାକ୍ୟେ ଚଳିଲେ ସେଠାରୁ ବଶିଷ୍ଠ
ପର୍ବତେ ଦେଖିଲେ ବୃକ୍ଷେ ନାହିଁ ଜଳଘଟ ।
ପିତାର ଛାମୁରେ ଯାଇ କହିଲେ ବାହୁଡ଼ି
ଲୋକାଲୋକେ ନ ପାଇଲୁ ଜଳଘଟ ଲୋଡ଼ି ।
ତାହା ଶୁଣି ପିତାମହ ମନେ ଚିନ୍ତା କଲେ
ଦାନବ ପାଇଣ କିବା ତାହା ହରି ନେଲେ ।
ସେ ପୁତ୍ର ଯେବେ ଜନ୍ମିବ ଦାନବଙ୍କ କୋଳେ
ଆଜହୁଁ ତେଜିଲେ ସ୍ୱର୍ଗ ଜାଣ ଦିଗପାଳେ ।
ଧ୍ୟାନରେ ଚିନ୍ତି ଜାଣିଲେ ହାବର୍ଷୀର ମାହା
ଯୁବନାଶ୍ୱ ରାଜା ନିଜେ ପିଇଛନ୍ତି ତାହା ।
ବିସ୍ମିତ ବୋଇଲେ ସୂର୍ଯ୍ୟବଂଶ ତ ରହିଲା
ଏଡ଼େ ରାଜା ଯୁବନାଶ୍ୱ ଅକାରଣେ ମଲା ।
ଯାଅ ଯାଅ ହେ ବଶିଷ୍ଠ ଯୁବନାଶ୍ୱ ତହିଁ
ସେ ରାଜାକୁ ରକ୍ଷା କର ଧର୍ମ କଥା କହି ।
ଯୁବନାଶ୍ୱ ରାଜା ନାଶଯିବ ପୁତ୍ର ବାଞ୍ଛା
ବଂଶର କାରଣ ହେବ ପୁତ୍ର ହେଉ ରକ୍ଷା ।

ସେ ମହାମନ୍ତ୍ର ଜଳକୁ ପିଇଲା ନରେଶ
ବଳବନ୍ତ ପୁତ୍ର ଏକ ଉଦ୍ଭେ ଗର୍ଭବାସ ।
ତାଦୃଶ ତା ଗର୍ଭେ ଏକ ଉତ୍ପନ୍ନଅଛି ବଳା
ସେଥିପାଇଁ ରାଜା ମନେ ହେଲଣି ବଢେଲା ।
ବନୁଦନ ନୃପତିର ଗର୍ଭ ହେଲା ଭାର
ଷଣ୍ଣମାସେ ଜସ ହେଲା ଘ୍ରାନେ ଦଣ୍ଡଧାରୀ ।
ସ୍ପରମାସେ ହେଲା ରାଜା ମହା ଅଶକତା
ଅନୁକ୍ଷଣେ ସେ ରାଜାଙ୍କୁ ପୁଚ୍ଛେ ତା ବନିତା ।
ବୋଲଇ ନରେଶ ତୋର ହେଲା କିସ ବ୍ୟାଧି
ବୈଦ୍ୟଙ୍କୁ କହି ବହନ କର ଅଉଷଧି ।
ବ୍ରହ୍ମାଙ୍କ ମନ୍ତ୍ରରେ ଶିଶୁ ଗର୍ଭେ ଅଛି ରହି
ମନ୍ତ୍ର ଅଉଷଧିରେ କି ତାହା ନାଶଯାଇ ।
ହଲଇ ପାରେ କି କେହି ଶୁନ୍ୟ ମେରୁକଳା
ତେସନେକ ସ୍ୱରୂପରେ ଗର୍ଭେ ବଢେ ବଳା ।
ମହାବୈଷ୍ଣବ କୁମର ବଳେ ବଳବନ୍ତା
ପାଞ୍ଚମାସେ ହେଲେ ରାଜା ଅତି ଅଶକତା ।
ଉଠ ନ ପାରଇ ରାଜା ଭୂମିପରେ ଲୋଟି
ଏମନ୍ତ କାଳେ ବଶିଷ୍ଠ ଉର୍ଦ୍ଧ୍ୱ ଯାଇ ଭେଟି ।
ବ୍ୟାସ ବଶିଷ୍ଠ ସୁଦେବ ଶୁକ ମାରକଣ୍ଡ
ଧର୍ମଗ୍ରନ୍ଥ କହି ତାର ଆଶ୍ୱାସନ୍ତି ପିଣ୍ଡ ।
ବଶିଷ୍ଠ ବୋଇଲେ ରାଜା ନ କର ମୌଷଧି
ଗର୍ଭରେ ତୋହର କିଛି ଜାଣ ନାହିଁ ବ୍ୟାଧି ।
ଆପଣ ଯଜ୍ଞ ଦେବତା ହଜେ ନ ସ୍ଥାପିଲୁ
ଅତ୍ୟନ୍ତ କଷ୍ଟରେ ଆମ୍ଭେ ପିତାଙ୍କୁ କହିଲୁ ।
ସନ୍ତତି ଜଳଘଟକ ଯଜ୍ଞ ଜାତକଲେ
ଲୋକାଲୋକ ଗିରିଶିଖ ବୃକ୍ଷରେ ଥୋଇଲେ ।
ଯେଉଁଦିନ ଗଲୁ ତୁହି ମୃଗୟା ବନୋଦେ
ମୃଗ ନ ପାଇ ତୃଷାରେ ବସିଲୁ ବିଷାଦେ ।
ମନ୍ତ୍ରୀ ତୋହର ଅଶ୍ୱେକ ଚଢ଼ି ବେଗେ ଗଲା
ଜଳ ନ ପାଇ କାହିଁ ସେ ଘଳଘଟ ନେଲା ।
ତୋତେ ସେହି ଜଳଘଟ ଦେଇଥିଲା ଆଣି
ମହାଶ୍ରମେ ପିଇଲୁ ତୁ ବନେ ଯେଉଁ ପାଣି ।
ଧାତାର ମହାମନ୍ତ୍ର କି ହୋଇପାରେ ନାଶ
ପୁତ୍ରେକ ହୋଇବ ରାଜା ହେଲୁ ଗର୍ଭବସ ।
ଯୁବନାଶ୍ୱ ତୁଷ୍ଟହେଲା ବଶିଷ୍ଠ ବଚନ
ମୁହିଁ ପ୍ରପଞ୍ଚ ମଉଳ ହେଉ ମୋ ସନ୍ତାନେ ।

ଯଦ୍ୟପି ସାନନ୍ଦ ମନ ହେଲା ନରପତି
କୁମାରର ଭାର ରାଜା ସହିଛି କେମନ୍ତ ।
ମାତା ଗର୍ଭରେ ପୁତ୍ରକୁ ପିତା ପାଳ ଅଛି
ଯାହାକୁ ଯେ କଥା ପୂର୍ବେ ବିଧାତା ଲେଖିଛି ।
ପିତାର କି ଶକ୍ତି ତାହା ପାରିବ ସେ ସହି
ମହାଦୁଃଖରେ ଶରୀର ତାର ହୁଏ ଦହି ।
ବଶିଷ୍ଠ ପୁରାଣ ପଣ୍ଡିତ ଶୁକ ମହାଯତି
ରାଜାଙ୍କ ଅଗ୍ରତେ ଯାଇ ନୀତି ଶୁଣାବନ୍ତି ।
ନବଶତ ମହାଦେଈ ରାଜାଙ୍କ ଭାରିଯା
ଅନୁକ୍ଷଣେ ବେଢ଼ି ବସି ଖଟୁଥାନ୍ତି ରାଜା ।
ଶିବଆଳେ ଗୋ ଦୁହାଁଣ ଈଶ୍ୱରେ ତାଳନ୍ତି
ନାନା ଉପଚାରେ ଗ୍ରହ କରୁଅନ୍ତି ଶାନ୍ତି ।
ନବଲକ୍ଷ ବ୍ରାହ୍ମଣଙ୍କୁ ଆଣି ବସ୍ତ୍ର ଆଳେ
ଭୁଞ୍ଜାନ୍ତି ଚଣ୍ଡୀଙ୍କୁ ବଳି ଦ୍ୟନ୍ତି ନିଶାକାଳେ ।
ସହି ନ ପାରଣ ରାଜା କାନ୍ଦେ ଉଚ୍ଚସ୍ୱରେ
ମହାବଳୀ କୁମରଟି ବୁଲଇ ଗର୍ଭରେ ।
ଅନେକ ବ୍ୟାକୁଳ ମନେ ହୁଏ ଯୁବନାଶ୍ୱ
ସେ ବେଳକୁ ହେଲଣି ଗର୍ଭ ଆଠମାସ ।
ନବମାସେ ବାହାରଣ ଲୋଡ଼ଇ ସେ ଦ୍ୱାର
ମହା ଭଇରବ ମୂର୍ତ୍ତି କଲା ସେ ବସ୍ତାର ।
କୁମ୍ଭ କ୍ଷୁକ୍ଳ ଚତୁର୍ଥୀରେ ଗର୍ଭେ ରହେ ପୁତ୍ର
ହେ ରାଜା ଏମନ୍ତକାଳେ ହୋଇଲା ସେ ଜାତ
ମାର୍ଗଶିର ଶୁକ୍ଳପକ୍ଷ ଚତୁର୍ଥୀର ତିଥି
ଉତ୍ତରଷାଢ଼ା ନକ୍ଷତ୍ର ବାର ବୃହସ୍ପତି ।
ବାଣିଜ୍ୟ ନାମେ କରଣ ଗଣ୍ଡ ନାମେ ଯୋଗ
ସତ ଦେଢ଼ ପ୍ରହରେ ମିଥୁନ ଲଗ୍ନ ଭୋଗ ।
ଗର୍ଭର ଭିତରୁ ପୁତ୍ର ବାହାନାଦ କରି
ବାହାର ହୋଇଲା ସେହୁ ପଞ୍ଜର ବଦାରି ।
ପୁତ୍ରର ବଦନ ଯୋଟି ରହିଁ ଯୁବନାଶ୍ୱ
ଛାଡ଼ିଣ ପିଣ୍ଡ ପରାଣ କଲା ସ୍ୱର୍ଗେ ବାସ ।
ଭୂଳସା ନାମରେ ଯୁବନାଶ୍ୱ ପାଟରାଣୀ
ପୁତ୍ରକୁ ସମ୍ଭାଳିଲା ସେ ବଂଶର କାରଣି ।
ରାଜାର ପିଣ୍ଡ ନେଇଣ ପ୍ରୟାଗର ତୀର୍ଥେ
ଦହନ କରାଇଲେ ସେ ବଶିଷ୍ଠ ପ୍ରୋହିତେ ।
ବ୍ରହ୍ମାଙ୍କ ବାକ୍ୟ ମନ୍ତ୍ରରେ ଉପୁଜେ ସନ୍ତତି
ମାତାର ବିହୁନେ ପୁଣ ହେଲା ଉତପତ୍ତି ।

ମହର୍ଷିମାନେ ଦର୍ଶନ ଦେଲେ ଏହି ନାମ
ମାନଧାତା ନାମଗୋଟି ଜନ୍ମ ସର୍ବୋତ୍ତମ ।
ପୁରାଣ ବାକ୍ୟେ କହିଲେ ମୁନି ଶୁକବ୍ରହ୍ମ
ସେ ମାନଧାତାଙ୍କ ହେଲା ପ୍ରସିଦ୍ଧ ଯେ ନାମ ।
ସିଦ୍ଧ୍ୟେ ରାଜ୍ୟ କଲା ଲକ୍ଷେ ଷାଟିସସ୍ର ବର୍ଷ
ନବଦ୍ୱୀପ ମଧ୍ୟେ ତାର ମହିମା ପ୍ରକାଶ ।
ଶୁଣ ହୁ ରାଜା ଏମନ୍ତେ ଧାତାର ମହିମା
ନବଦ୍ୱୀପ ସାତସିନ୍ଧୁ ମଧ୍ୟେ ସେ ମହାତ୍ମା ।
ସୃଜନରୁ ପ୍ରଥମରେ ଧନୁ ଏ ହୁଅିଲେ
ଅଜଗବ ନାମ ଗୋଟି ସେ ଧନୁର ହେଲେ ।
ସେ ଧନୁର ତେଜ ମାନଧାତା ମହାଯୋଧୀ
ଏକା ନ ରାତକେ ସେହି ସପ୍ତଦ୍ୱୀପ ସାଧି ।
ଶତ୍ରୁ ନସୂଦନ କଲ ଅମର ଭୁବନୁ
ସତ୍ୟଯୁଗେ ମହାରାଜା ଯୁବନାଶ୍ୱ ସୂନୁ ।
ସେ ରାଜା ଯଜ୍ଞ କରଲ ବଳଙ୍କର ବେଶେ
ଯଜ୍ଞସ୍ଥାନେ ହୁତାଶନ ଉଠେ ଅର୍ଦ୍ଧାକାଶେ ।
ସତ୍ୟଯୁଗେ ମଧ୍ୟସ୍ୱର୍ଗେ ଷଡ଼ ଚକ୍ରବର୍ତ୍ତୀ
ବଳୀ ବେଣୁ ମାନଧାତା ଆର ମହାଯନ୍ତ ।
ଜାନୁରଣ୍ଡ ପରଶୁରାମ ଶ୍ରୀହରିଚନ୍ଦନ
ସତ୍ୟଯୁଗେ ଥିଲେ ଏହି ଛଅଟି ରାଜନ ।
ସତ୍ୟଯୁଗେ ନବ ଆଠଲକ୍ଷ ଛୟାଣୋଇ
ବର୍ଷ ଶେଷଯାଏ ଭୋଗ କଲେ ଏହି ମହୀ ।
ଏସନକ ଯଜ୍ଞ କରି ନ ଥିଲେ ଯେ କେହି
ବ୍ୟାସ ମହାଯତି ଏହା ସଭା ମଧ୍ୟେ କହି ।
ସେ ପାଣ୍ଡବାନ୍ଧବ ହରି କମଳଲୋଚନ
ସିନ୍ଧୁସୁତା କମଳାଙ୍କ ତୁମ୍ଭେ ପ୍ରାଣଧନ ।
ତୁମ୍ଭେ ଏହି ମହାଯଜ୍ଞ ସ୍ଥାପନ କରିଲ
ପାଣ୍ଡବମାନଙ୍କ ଯଶ ଭବେ ରଖାଇଲ ।
କର ଦୟା ମୋହଠାରେ ହେ ମଧୁସୂଦନ
ଅନ୍ତମେ ନ ଲାଗୁ ମୋତେ ଶମନ ବନ୍ଧନ ।
ଶାରଳା ଦାସର ସଦା ଏତିକ ମାଗୁଣି
ତୋ ନାମ ଧରି ତରିବ ଭବ ତରଙ୍ଗିଣୀ ।

## ଯୁଧିଷ୍ଠିରଙ୍କ ଦର୍ଶନେ ବିରାଟ ରାଜାଙ୍କ ଅପମାନ

ଏଥୁଅନ୍ତେ ମନୁରାଜା ଯୋଡ଼ି ବେନି ହାତ
ଅଗସ୍ତି ମୁନିଙ୍କ ପାଦେ କରି ପ୍ରଣିପାତ ।
ହେ ଅଗସ୍ତି ଏହା ପରେ ହେଲା କେଉଁ କଥା
ତାହା ଶୁଣାଇ ମୋହର ଖଣ୍ଡ ମନବ୍ୟଥା ।
ଅଗସ୍ତି ବୋଇଲେ ଶୁଣ ବଳଙ୍କ ନନ୍ଦନ
ଏଥୁଅନନ୍ତରେ ହେଲା ଯେତେକ ବିଧାନ ।
ରାଜାମାନଙ୍କ ପାଶରେ ବ୍ୟାସ ମହାଯତି
ଯୁବନାଶ୍ୱ ରାଜାଙ୍କର ଚରିତ କହନ୍ତି ।
ଏମନ୍ତ ସମୟେ ତହିଁ ଦୂତ କାଳଞ୍ଜନ
ସଭାରେ ଜଣାଏ ଯହିଁ ଛନ୍ତି ଭୀମସେନ ।
ସ୍ୱାମି ପଶ୍ଚିମର ରାଜା ବିରାଟ ଯା ନାମ
ସବୁବେଳେ କହେ ମୋତେ କରାଅ ଦର୍ଶନ ।
ଭୀମସେନ ଜଣାଇଲେ ନାରାୟଣ ପାଶେ
ସ୍ୱାମୀ ବିରାଟ ଦର୍ଶନେ ଆସିବାକୁ ଆଶେ ।
ଗୋବିନ୍ଦ ପୃଚ୍ଛା କରିଲେ ବ୍ୟାସ ମହର୍ଷିଙ୍କି
ଦର୍ଶନକୁ ଆସିବେ କି ବିରାଟ ଏଥିକି ।
ବ୍ୟାସ ବୋଇଲେ ହେ ଦେବ ଶୁଣିମା ଶ୍ରୀରଙ୍ଗ
ବିରାଟର ଆଶା ଗୋଟି କେବେ ତୁ ନ ଭାଙ୍ଗ ।
ତୁମ୍ଭ ଦେବ ମାଧ୍ୱାଧର କର ଏହି ବୁଦ୍ଧି
ତୋତେ କି ଅଜଣାଅଛି ଆହେ ଦୟାନିଧି ।
ଯେମନ୍ତେ ବିରାଟ ତାଙ୍କୁ ଦେଖି ନ ଚାହିଁଇ
କାଳେ ପାଣ୍ଡବମାନଙ୍କୁ ସାହା ହେବେ ସେହି
ବ୍ୟାସ ବାସୁଦେବ ଏହି କଥା ହେଲା ପରେ
ଭୀମଙ୍କୁ ଡକାଇ କୃଷ୍ଣ କହିଲେ ସଧୀରେ ।
ଯାଅ ବାବୁ ବିରାଟକୁ ଆଣ ତୁ ବହନ
ଯେତେହେଁ ଠାକୁରେ ନ ଚାହୁଁ ବିରାଟ ରାଜନ ।
କୃଷ୍ଣଙ୍କ ବାକ୍ୟରେ ଭୀମ ଗଲେ ଅତି ଜମେ
ଦୁଇ ଗଦା ବୁଲାଇ ଗଲେ ବକ୍ଷ ବାମେ ।
ଦେଖିଣ ହାସିଲେ ତାଙ୍କୁ ରାଜନ ସମସ୍ତେ
ବୋଲନ୍ତି କୋପ କାହାକୁ କରୁଅଛ ଏତେ ।
ଭୀମଙ୍କ ସେ ରୂପ ଦେଖି ସକଳେ ଥରିଲେ
ଯମସମ୍ମୁଖରେ ଯମ ଦେଖି ଭୟ କଲେ ।
ଅଧରରେ ଦନ୍ତ ଚାପି ଧାଇଁ ବୃକୋଦର
ଧାଡ଼କାରେ ଛୁଦେଶିଲେ ପଶ୍ଚିମ ଦୁଆର ।
ହାରେ ଉଭା ହୋଇ ଡାକେ ପବନର ସୁତ
ମତ୍ସ୍ୟଦେଶ ରାଜା କାହିଁ ଅଛ ହେ ବିରାଟ ।
ଭୁଜକ ତଳ ପରସ୍ତେ ବୁଲାଇ ଦୁଆଣ
ବିରାଟ ହାସିଲେ ଭୟେ ଭୀମରୂପ ଦେଖି ।

ଖସୂରେ ମତ୍ସ୍ୟ ଅଧିପ କର୍ମେ ଥରବର
ଘ୍ରାମୁରେ ମିଳିଲ ତା ମନ୍ତ୍ରୀ ଯେ ଯାତକେଶ୍ୱର ।
ବୃକୋଦର ବୋଇଲ ହେ କୁ କ ମତ୍ସ୍ୟପତି
ସେ ବୋଇଲ ମୁଁ ଅଟଇ ସେ ରଜାର ମନ୍ତ୍ରୀ ।
ଭୀମ ବୋଇଲେ ବସନ୍ତ ଆଣ ମୋ ଘ୍ରାମୁକୁ
ତାହାକୁ ଆଜ୍ଞା ହୋଇଲ ଘ୍ରାମୁକୁ ନେବ କୁ ।
ମନ୍ତ୍ରୀ ବୋଲେ ଏବେ ଭ୍ରାନ୍ତ ଫିଟିଲ ହେ ସ୍ୱାମି
ବସନ୍ତ ଭୀମଙ୍କ ପାଦେ ହେଲ ପରଣାମି ।
ପଞ୍ଚଶ ହାର ସୁବର୍ଣ୍ଣ ନେଇଣ ସମ୍ଭ୍ରମ
ଦେଇ ଭୀମପାଦେ ପଡ଼ି ମତ୍ସ୍ୟ ମହୀପାଳ ।
ଭୀମସେନ ବୋଇଲ ହୋ ରଜା ଉଠ ଉଠ
ଏଡ଼େ ବଡ ମନ୍ଦ ବୁଦ୍ଧି ଯେତୁ ହୋ ବସନ୍ତ ।
ତ୍ରେତୟ ଯୁଗର ରଜା ଲଙ୍କା ବିଭୀଷଣ
ସେ ଦର୍ଶନ କଲେ ଆସି ହେଲ ନନ୍ଦନ ।
ଏଡ଼େ ତୁ ଅବଜ୍ଞା କରୁ ପାଇ କାହା ବଳ
ନିକଟ ରଜା ହୋଇଣ କପାଁ ତୋ ଉଦ୍ୟମ ।
ହେ ବସନ୍ତ କୀଚକ ଯେ ଅଟେ ତୋର ଶଳା
ଶତସିଂହ ବଳ ବୋଲି ତେଣୁ କଲୁ ହେଳା ।
ମୋର ଶ୍ରୀମୁଖକୁ ସେହୁ ନିନ୍ଦା କରୁଅଛୁ
ସଙ୍ଗକୁ ଅଲଳୁ ବୁଦ୍ଧି ସେ ଜାଣି ରହିଛୁ ।
ବସନ୍ତ ବୋଇଲେ ଦେବ ତା ଦୁଷ୍ଟ ପ୍ରକୃତି
ଅପଣ୍ଡିତ ଦୋଷ କପା ଧର ମହାମତି ।
ଭୀମ ବୋଇଲେ ଅଇଲୁ କୁହ କେଉଁ ବନ
ଗୃହବନ ହେଲ ମୁହିଁ ଅଛୁ ଏଣୁ ସ୍ଥାନ ।
ଭୀମସେନ ବୋଇଲେକ ଶୁଣ ହେ ବସନ୍ତ
କେଉଁଠି ଅନ୍ନ ବ୍ୟଞ୍ଜନ ଭୁଞ୍ଜନ୍ତୁ ତୋ ଥାଟ ।
ବସନ୍ତ ବୋଇଲେ ସ୍ୱାମୀ ଶୁଣ ଭୀମସେନ
ସାତକ୍ଷୌଣୀ ସୈନ୍ୟ ବୁଲେ କରୁଛି ଭୋଜନ
ଭୀମ ସାନନ୍ଦ ବସନ୍ତଠାରୁ ଏହା ଶୁଣି
ଘ୍ରାମୁକୁ ଦରଶନ କୁ ନେଲେ ଅନୁ ଆଣି ।
ବସନ୍ତ ବୋଇଲେ ତହୁଁ ଯୋଡ଼ି ଦେନ ହାତ
ପଞ୍ଚାଶ ହାର ଧନ ମୁଁ ଆଣିଛୁ ନଟାନ୍ତ ।
ଭୀମ ବୋଇଲେ ତୁ ହୁଇ ରାଜ୍ୟ ଅଧିକାରୀ
ପରର ସମ୍ପଦ କୁହ ବଳେ ଭୋଗକର ।
ଦୁହିଁ। ହିପଦୁ ବରଡ଼ ବାରଲକ୍ଷ ଗାଈ
ପରର ଧେନୁ ତୁ ବଳେ ଆଣିଲୁ ଛଡ଼ାଇ ।
କୀଚକର ବଳେ ତୋର ଏଡ଼େକ ମହିମା
ମନ୍ଦ ପ୍ରକୃତି ନ ଛାଡ଼ ଦେଖାଉ ଗାରିମା ।
ପଞ୍ଚଶ ହାର ଆଣିଛୁ ତେ ହସନ୍ତି ରଜା
ଜନମୁଖ ଗୁହିଁବାକୁ ନ ପାଉ କି ଲଜ୍ଜା ।
ତୋ ପାଇଁ ଅସି ପ୍ରହାର କରୁଛୁ ହିଗଣ୍ଡି
ତାହା ତ ନ କଲୁ ଆମ୍ଭେ ତୋହର ନିମିତ୍ତ
ଭୁଞ୍ଜି ଥଇଲୁ ଅଶୁଦ୍ଧ ମୂଢ଼ ମଦଭାବେ
ଆସ ଏକାନ୍ତ ଦର୍ଶନ କରାଇବା ତେବେ ।
କହୁଁ କହୁଁ କୋପାନଳ ପଣ୍ଡୁ ରଜା ସୁତ
ବସନ୍ତ ବେକରେ ନେଇ ଦେଲ ବାମହାତ ।
ଆଉରେ ହସ୍ତକୁ ନେଇ ଦେଲ କଟିଭାଗେ
ପେଲି ଦେଲେ ଭୀମସେନ ଅଣେ ଅତି ବେଗେ
ବସନ୍ତ ନରପତି ଯେ ହୋଇଣ ହତାଶ
ବୋଇଲେ ଗୋସାଇଁ ମୋର ଅଛୁ କେଉଁ ଦୋଷ
ଭୀମ ବୋଲେ କଲ ମୋତେ ନିଗର୍ଭି ପ୍ରହାର
ବଳ କାରେ ରାଜ୍ୟକୁ ତୁ ନେଇଛୁ ତାହାର
ବସନ୍ତ ଆମ୍ଭ ଗୋଟି ହୋଇଛୁ ଦାୟାଦ୍ୟ
ସବୁ ରଜାମନେ ଦେଖି ହୁଅନ୍ତି ଆଶ୍ଚର୍ଯ୍ୟ ।
ଧର୍ମ ଧର୍ମ ସୁମରନ୍ତି ସର୍ବ ରଜାମାନେ
ବସନ୍ତକୁ ନିଶ୍ଚେ ଭୀମ ବଧିବେ କି ପ୍ରାଣେ ।
କେତେ ବୋଲନ୍ତି ବଣିକ ଘ୍ରାମୁକୁ ଏ ଗଲେ
ମୃତ୍ୟୁ ନାହିଁ ଯୁଧିଷ୍ଠିରଙ୍କ ଦର୍ଶନ ପାଇଲେ ।
ସ୍ତ୍ରୀ ସବ ଚଳନ୍ତି ମାଗୋ ଦୁର୍ଗତିନାଶିନୀ
ପ୍ରାଣ ପାଉ ଏ ବସନ୍ତ ରଖ ଗୋସାମଣି ।
ଥୋକେ ବୋଲନ୍ତି ଏ ଧର୍ମସଭା ପିତୃକାର୍ଯ୍ୟ
ଅପ୍ରାଧେ ଏ ବସନ୍ତକୁ ମୃତ୍ୟୁ ନାହିଁ ଆଜ ।
କୃଷ୍ଣଙ୍କୁ ଗୁହିଁ ବୋଲନ୍ତି ପରାଶର ସୂନୁ
ହେ କୃଷ୍ଣ ବସନ୍ତ କେହ୍ନେ ଧର୍ମଙ୍କୁ ନ ଚାହୁଁ ।
ତୁଳସୀ ବେଗୀ ବଲ୍ଲଭ ବ୍ୟାସଙ୍କ ବଚନେ
ଆପଣେ ଧାଇଁ ଚଳଲେ ଦେବ ଜନାର୍ଦ୍ଦନେ ।
ସୁଦର୍ଶନ ଚକ୍ରକୁ ସେ ବେଗେ ଦେଲେ ପେଷି
ବସନ୍ତର ସମ୍ମୁଖେ ସେ ତୁଳନ୍ତ ଆସି ।
ଏଡ଼େକ ଆକର୍ଷିଛନ୍ତି ତାକୁ ସାର ଭୀମ
ତେଣୁ ହୋଇଛୁ ବସନ୍ତ ରଜା ମତିଭ୍ରମ ।
ତେଣୁକର ଅନ୍ଧକାର ହସେ ଦଶଦିଶ
ଚକ୍ର ଉହାଡ଼ରେ ପୁଣି ନୁହେଁ କିଛି ଦୃଶ୍ୟ ।

ଗୋବିନ୍ଦ ବୋଇଲେ ମହାରାଜା ଏ ବିରାଟ
ଦର୍ଶନ କରାଇ ଅଛି ଆସ୍ଥାନ ନିକଟ ।
ଶୁଣନ୍ତେ କୃଷ୍ଣ ମାରୁତ ମୋଡ଼ିଲା ତା ଚୋଟି
ଅସାଷ୍ଟମେ ଦଣ୍ଡବତେ ପଡ଼େ ମହୀ ଲୋଟି ।
ଉଠ ବୋଲି ବିରାଟଙ୍କୁ କହିଲେ ଯୁଧିଷ୍ଠି
ଭୀମଙ୍କ ଭୟେ ସେ କେତୁ ନ ପାରଇ ଉଠି ।
ଭୂପୃଷ୍ଠେ ଥାଇ ଧର୍ମଙ୍କୁ ଦେଖି ନ ପାରିଲା
ବିକଳ ହୁସ୍ବା ପରଂପୂ ଶ୍ରୀପଦ ଦେଖିଲା ।
ଭୀମ ବୋଲେ ଦେଖିଲୁ ତ ମହା ମହୀପାଳ
ବିରାଟ ବୋଲେ ଦେଖିଲି ଚରଣ ଯୁଗଳ ।
ଗୋବିନ୍ଦ ବୋଇଲେ ଏହି ଅଟେ ବଡ଼ ମନ୍ଦ
କୀଚକ ବଧିଲେ ହେଲା ବିରାଟେ ସମ୍ପଦ ।
ଭୀମ ବୋଲେ ସେହି ଦେଖୁ ହୁଏ ଏହି ଦଶା
ଶ୍ରୀକୃଷ୍ଣ ବୋଲନ୍ତି ଏହାକୁ ସଭାରେ ନ ବସା ।
ଗୋବିନ୍ଦଙ୍କ ଆଜ୍ଞା ପାଇ ବୀର ବୃକୋଦର
ବିରାଟେ ବହାଏ ନେଇ କାହାର ସଭାର ।
ଏମନ୍ତ ଚନ୍ଦନ ବନ ହୋଇଲା ଆବୃତ
ବସିଲେ ସମସ୍ତେ ତହିଁ ଲକ୍ଷେକ ନୃପତ ।
ମହା ମନ୍ତ୍ରରେ ଆହୁତି ଉଠଇ ଗଗନେ
ଶୂନ୍ୟ ଆଘ୍ରାଣ କରନ୍ତି ଦିଗପାଳମାନେ ।
ଅର୍ଥିଜନେ ଦାନ ଦିଅନ୍ତି ଯେ ଯାହା ମାଗଇ
ଅଷ୍ଟରତ୍ନ ମିଳେ ସିଏ ଯାହା ପାରେ ନେଇ ।
ଇଚ୍ଛାଏ ଯେ ଯେତେବେଳେ ମାଗଇଟି ଅନ୍ନ
ମନ ତେ ଷଡ଼ରସ ତାକୁ ଦିଅନ୍ତି ଭୋଜନ ।
ମାଘମାସ ଶୁକ୍ଳପକ୍ଷ ପୂର୍ଣ୍ଣିମାର ଦିନ
ଆସ୍ଥାନ ଉପରେ ଉଠିଲେ ଯେ ଧୃଷ୍ଟଦ୍ୟୁମ୍ନ ।
ଶ୍ରୀବସ୍ତ୍ର ଲକ୍ଷଣ ତାର ତାମ୍ରବର୍ଣ୍ଣ କାୟେ
ସ୍ୱହୃଦରେ ଦିଶନ୍ତି ସେ ବ୍ରହ୍ମାପୁଷ୍ପ ପ୍ରାୟେ ।
ଲମ୍ବିତ ଜୁଡ଼ା ତାଙ୍କର ଧରି କୁଶହସ୍ତ
ଯୁଧିଷ୍ଠି ଦେବ ଦେଖିଣ ମାଥେ ଦେଲେ ହାତ ।
କର ଛୁଆଇ କଲ୍ୟାଣ କରେ ଧୃଷ୍ଟଦ୍ୟୁମ୍ନ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସକଳ ରାଜନ ।
ଶ୍ରୀଶାରଳା ଚଣ୍ଡୀଙ୍କର ପାଦେ ରଖି ଚିତ୍ତ
ଶାରଳା ଦାସ କହଇ ସଭାପର୍ବ ଗୀତ ।

## ଧୃଷ୍ଟଦ୍ୟୁମ୍ନର ପୂର୍ବଜନ୍ମ ବିବରଣ

ମନ୍ତ୍ରୀ ପୃଚ୍ଛା କଲେ କହ ମୁନି ମହାଶୟ
ଏଥିରେ ବଢ଼ୁଛି ମୋର ଜନ୍ମିଲା ସଂଶୟ
ତ୍ରୈଲୋକ୍ୟନାଥ ବନ୍ଦନା କରେ ଯାହା ପାଦେ
ଏମନ୍ତ ଯେ ଧର୍ମରାଜା ଯୁଧିଷ୍ଠିର ହାଦେ ।
ଲକ୍ଷେ ନୃପତି ଯାହାର ପାଦତଳେ ଲୋଟି
ମୁକୁଟ ଶିରେ ଲାଗିଛି ଧର୍ମଙ୍କ ଅଙ୍ଗୁଷ୍ଠ ।
ଏ ଦ୍ୱାପର ଯୁଗେ ଯାର ଏସନ ମହିମା
ଶୁକ୍ଳଅମ୍ବର ଶରୀର ପ୍ରତ୍ୟକ୍ଷେ ମହାତ୍ମା ।
ଦେବ ଦାନବେ ଯାହାର କଥା ଅଗୋଚର
ଧୃଷ୍ଟଦ୍ୟୁମ୍ନକୁ କେମନ୍ତେ କଲେ ନମସ୍କାର ।
ଅଗସ୍ତ୍ୟ ବୋଇଲେ ତୋତେ କହିବା କାରଣ
ହେ ରାଜା ସ୍ଥିର ହୋଇଣ ତାହା ଏବେ ଶୁଣ ।
ଏମନ୍ତ ଘଟଣା ଯହୁଁ ଶ୍ରୀହରି ଦେଖିଲେ
ଅଧର କମ୍ପାଇ ପ୍ରଭୁ ମହାରାଗ କଲେ ।
ଆ ମୁଁ ଯାହାଙ୍କର ପାଦେ କରୁଛୁ ପ୍ରଣାମ
ଧୃଷ୍ଟଦ୍ୟୁମନ ତାହାଙ୍କୁ କରିଲା କଲ୍ୟାଣ ।
ଏକ୍ଷଣ ଚକ୍ରେ ଛେଦିବି ତାହାର ମୁଁ ଶିର
ଦ୍ରୌପଦୀ ଦେବୀଙ୍କ କ୍ରୋଧ ହୋଇବ ଅପାର
ଏହା ଭାଳି ଶାନ୍ତ ହୋଇ ପୃଚ୍ଛିଲେ ଧର୍ମଙ୍କୁ
ଭେଦେ କି କଥାଏ ଆଜ ପୃଚ୍ଛିବି ଭୀଷ୍ମଙ୍କୁ ।
ଭୀଷ୍ମର ପାଦେ ନମନ୍ତି ଲକ୍ଷେକ ନୃପତି
ଦେବଋଷି ମହାଋଷି ଏମାନେ ବନ୍ଦନ୍ତି ।
ଆଶ୍ଚର୍ଯ୍ୟ ମଣୁଛି ମୁହିଁ ଦେଖି ଭୀଷ୍ମ କଥା
ଧୃଷ୍ଟଦ୍ୟୁମ୍ନକୁ କେମନ୍ତେ ନୁଆଁଇଲ ମଥା ।
ଧର୍ମ ବୋଇଲେ କୃଷ୍ଣାଙ୍କ ଏହି ଜ୍ୟେଷ୍ଠଭ୍ରାତେ
ତେଣୁକରି ନମସ୍କାର ହୋଇଲୁ ଯୁଗତେ ।
ଯୁଧିଷ୍ଠିରଙ୍କ ମୁଖୁ ଏହା ଶୁଣି ହୃଷୀକେଶ
ଶୁକ ମୁନିଙ୍କ ସେକ୍ଷଣି ଡକାଇଲେ ପାଶ ।
ତାହାଙ୍କୁ କହନ୍ତେ ହରି ଫେଡ଼ିଲେ ସେ ପୋଥି
ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ଆଗରେ ପଢ଼ନ୍ତି
ପଢ଼ୁ ପଢ଼ୁ ଦେଖିଲେ ସେ ଶାସ୍ତ୍ରର ବିଧାନେ
ପତ୍ନୀ ଜ୍ୟେଷ୍ଠଭ୍ରାତେ ମାନ୍ୟ ନାହିଁ କେଉଁସ୍ଥାନେ
ବ୍ୟାସଙ୍କ ପାଠରେ ଶାଳା ଭୃତ୍ୟଙ୍କ ସମାନ
ଭଣଜାକୁ ତୋଷିକଲେ ହୁଏ ବହୁ ପୁଣ୍ୟ ।

ଦେବତାଙ୍କ ପ୍ରଜାକଲେ ଧର୍ମ ଅଛି ଯେତେ
ମଙ୍ଗଳୋତ୍ସବେ ଭଣଜା ତୋଷେ ଧର୍ମ ତେତେ
ସ୍ୱାଙ୍କୁ ଭୁଞ୍ଜାଇବେ ଲକ୍ଷେ ବ୍ରାହ୍ମଣର ଫଳ
ଏ ପିଣ୍ଡ ଦେଲେ ଲଭନ୍ତି ପିତୃ ଚତଭାଳ ।
ପୁରାଣର ଧର୍ମଶ୍ରୁଣି ଦେବ ଜନାର୍ଦ୍ଦନ
ଗଗେ ଜଳ ଭୁଠଲେ ସେ ଅନଳ ସମାନ ।
ଆରେ ଧୃଷ୍ଟଦ୍ୟୁମ୍ନ ତୋର ଏଡ଼େ ବଡ଼ ଦର୍ପ
ପତ୍ନୀ ବୁଲେ ତୋତେ ମାନ୍ୟ କଲ ଅନୁରୂପ
ତୋହର କେମନ୍ତେ ହେଲ ଏଡ଼େକ ଭରସା
କଲ୍ୟାଣ କଲୁ ଧର୍ମଙ୍କୁ ବଳାଇ ମନଶା ।
ଯଜ୍ଞଶାଳେ ଥାଇ ଏହା ଦେଖି ବେଦବ୍ୟାସ
ଭଲଲେ ଧୃଷ୍ଟଦ୍ୟୁମ୍ନନ ଯାଉଅଛି ନାଶ ।
ଏହିକ୍ଷଣି ନାରାୟଣ ପଗଣେ ମାରବ
ଏଡ଼େ ବଡ଼ ସଭଗୋଟି ବ୍ୟର୍ଥ ହୋଇବ ।
ଯାଗଶାଳରୁ ମହାତ୍ମା ଉଠି ତତ୍କ୍ଷଣାନ୍ତ
ଯୁଧିଷ୍ଠି ଆସ୍ଥାନଠାକୁ ବିଜେକଲେ ଧାଇଁ ।
ଆସ୍ଥାନରୁ ତେଜ୍ୟାକର ଉଠିଲେ ଯୁଧିଷ୍ଠି
ବ୍ୟାସଙ୍କର ଚରଣରେ ଦେଲେ ଅର୍ଘ୍ୟଗୋଟି ।
ବ୍ୟାସଙ୍କ ମୁଖକୁ ଗ୍ରହିଁ ବୋଇଲେ ଶ୍ରୀଧର
ଦ୍ରୁପଦ ପୁତ୍ରକୁ ମାନ୍ୟ କଲେ ଯୁଧିଷ୍ଠିର ।
ଦ୍ରୌପଦୀ ବୋଲନ୍ତି ନମି ବ୍ୟାସଙ୍କ ପଦରେ
ଭାଇ ମୋ ନାଶ ଯାଉଛି ରଖ ଏ ସଙ୍କଟରେ ।
ତ୍ରୈଲୋକ୍ୟନାଥ ମୋ ଭ୍ରାତୃଦୋଷେ କର କ୍ଷମା
ବିନାଶିବେ କାହେ ଦେବ କର ତୁମ୍ଭେ ରକ୍ଷା
ବ୍ୟାସ ବୋଇଲେ କୃଷ୍ଣଙ୍କୁ ଶୁଣ ଭଗବାନ
ଧୃଷ୍ଟଦ୍ୟୁମ୍ନନକୁ ଦେବ ମଣ ନ ସାମାନ୍ୟ ।
ଧୃଷ୍ଟଦ୍ୟୁମ୍ନନ ଅଟଇ ସ୍ୱୟଂ ପଶୁପତି
ଏହାର ବିଷୟ କହେ ଶୁଣ ହେ ଶ୍ରୀପତି ।
ହିମାଳୟ ଗିରିତଳେ ମାନସ ଯେ ନଦୀ
ତାର ତୀରେ ଏକଦଳା ପାର୍ବତୀ ସମାଧି ।
ଏକଦଳା ପାର୍ବତୀଙ୍କି ଇଚ୍ଛାକଲେ ହର
ତେଣୁ ଖଟିଆନ୍ତି ତାର ସମ୍ମୁଖେ ଈଶ୍ୱର ।
କପିଳା ଧେନୁ ଚହ୍ନିକ ଗଙ୍ଗ ପାଣି ପିଇ
ନିରଞ୍ଜନ ଦେବ ଭର୍ତ୍ତା ତାହାର ଅଟଇ ।
ନିରଞ୍ଜନ ପଞ୍ଚଆତ୍ମା ପଞ୍ଚଷଣ୍ଢ ହୋଇ
ସେ କପିଳା ପଛେ ପଛେ ଅଛନ୍ତି ଗୋଡ଼ାଇ

ସୋମେକ ରୁଦ୍ର ହୋଇଲେ ଦେଖ ଏକଦଳା
ଜେ, ମାତା ଅପସ୍ଥ ତାର ଏହିପରି ଲୀଳା ।
ଗୋଡ଼ାଇ ଅନନ୍ତ ଦେଖ ତାକୁ ପଞ୍ଚଷଣ୍ଢ
ପାଷଣ୍ଡ ଆଶା ଦେଖାଇ କରେ ଲଣ୍ଡଭଣ୍ଡ ।
ଯେବଣ ଷଣ୍ଢକୁ ଇଚ୍ଛା ତାହାର ହୋଇବ
ସ୍ୱରଙ୍କି ବପତ ଭଣ୍ଢ ଏକେକ ହରବ ।
ପଞ୍ଚଷଣ୍ଢ ଆଶା କରି ଅଛନ୍ତି ଯେ ଭାଇ
ସ୍ତ୍ରୀ ଗୀଲଙ୍କୁ ଅଧର୍ମ କଥା ନ ଯୋଗାଇ ।
କପିଳାକୁ ଏକଦଳା ଧରଇ ବିକୃତ
ବୋଇଲା ଏ କଥା ମାତ ନୁହଇ ଯୁକତ ।
ସ୍ତ୍ରୀ ଗୀ ଜନ୍ମ ହୋଇ ତୁମ୍ଭେ କର ଅବିଶ୍ୱାସ
ଏକଦଳା ଯଥୁଁ ହେଲା ଈଶ୍ୱରଙ୍କ ବଶ ।
ଏକଦଳାଠାରୁ ଏହା ଶୁଣିଣ କପିଳା
ବୋଇଲେ ମନେ ବିକୃତ କଲୁ ଏକଦଳା ।
ଅଜ୍ଞାନେ ଅପସ୍ତ ଦେଲ ବୋଇଲୁ ଏ କଥା
ଚତୁର୍ଥ ଅବତାରେ ତୋ ହେଉ ପଞ୍ଚଭର୍ତ୍ତା ।
ଈଶ୍ୱରଙ୍କୁ ଗ୍ରହିଁକର ବୋଇଲେ ଏମନ୍ତ
ଅଜ୍ଞ ବୋଇଲୁ ମୋତେ ଶୁଣ ହେ ଦୁର୍ମତ ।
ଦ୍ରୁପଦ ଯଜ୍ଞ ଅନଳୁ ହୁଅ ଉତପତ୍ତି
ଧୃଷ୍ଟଦ୍ୟୁମ୍ନ ତୋର ନାମ ହେବ ରଖ ମନ ।
ଏହି ଏକଦଳା ହେବ ଦ୍ରୁପଦ ଦୁହିତା
ଏହାର ହୋଇବୁ ତୁହି ଜାଣ ଜ୍ୟେଷ୍ଠଭ୍ରାତା ।
ଏମନ୍ତ ଶାପ ଦେବାରୁ ପୂର୍ବରୁ କପିଳା
ଦ୍ରୌପଦୀ ଯେ ଜନ୍ମିଛନ୍ତି ସ୍ୱୟଂ ଏକଦଳା ।
ସୋମକ ରୁଦ୍ର ଅଟନ୍ତି ଏହି ଧୃଷ୍ଟଦ୍ୟୁମ୍ନ
ଏଥିରେ ସନ୍ଦେହ କରୁ ନାହିଁ ଜନାର୍ଦ୍ଦନ ।
ପୁଣି ଶ୍ରୀକୃଷ୍ଣଙ୍କୁ ବ୍ୟାସ ଭଣିଲେ ଏକାନ୍ତେ
ଦ୍ରୋଣ ଶିରଚ୍ଛେଦ ହେବ ଧୃଷ୍ଟଦ୍ୟୁମ୍ନ ହସ୍ତେ ।
ଆବର ଭିଷ୍ମକୁ ନାଶ କରିବ ଶିଖଣ୍ଡୀ
ଏଥିକ ତାହାକୁ ଦେବ ନ ପାରିବ ଦଣ୍ଡି ।
ବୋଲନ୍ତେ ଧୃଷ୍ଟଦ୍ୟୁମ୍ନନ ବଧଯୋଗ୍ୟ ଅଟେ
ସନ୍ଦେହ ଫେଡ଼ି କହିଲ ତୁମ୍ଭର ନିକଟେ ।
ବ୍ୟାସଙ୍କ ବଚନେ କୃଷ୍ଣ ରାଗ ଦୂର କଲେ
ଧୃଷ୍ଟଦ୍ୟୁମ୍ନ ରୁଦ୍ର ବୋଲି ବିଶ୍ୱାସ କରିଲେ ।
ପୁଣି ବୋଇଲେ ବିଶ୍ୱାସ କଲି ମୁଁ ଯଦ୍ୟପି
ଏଣିକି ଧର୍ମ ତାକୁ ନ କ୍ଷମିବେ କଦାପି ।

ଦ୍ରୌପଦୀ ଭାବନ୍ତେ ମଠେ ଅନ୍ଧେ ଅଜାସୁର
ଆଜ ରକ୍ଷା କଲେ ମୋର ସ୍ୱାମୀଙ୍କର ଶିର ।
ଜୟ ଜୟ ମାଧବ ହେ କମଳା ନିବାସ
ଜୟ ଜୟ ପୀତାମ୍ବର ଜୟ ହୃଷୀକେଶ ।
ଜୟ ଜୟ ଦୀନବନ୍ଧୁ ଅଗତିର ଗତି
ଜୟ ଜୟ ରାଧାନାଥ ଗୋକୁଳର ପତି ।
ଏହିପରି ଘୋଷିଥାଏ ତୋର ନାମ ନିତି
ଶାରଳା ଦାସର ସଦା ଏହାହିଁ ବିନତି ।

---

## ଏକଶତ ରଥ ସୁବର୍ଣ୍ଣ ମାଗିବା ନିମନ୍ତେ ଯୁଧିଷ୍ଠିରଙ୍କ ନିକଟକୁ ଶିଶୁପାଳର ଗମନ

ପଚାରନ୍ତେ ବୈବସ୍ୱତ ମନୁ ନୃପବର
କେବଣ ବିଷୟ ହେଲା କହ ଅତଃପର ।
କହନ୍ତି ଅଗସ୍ତି ମୁନି ଶୁଣ ଆହେ ନୃପ
ପୁଣି ଯାହା ଯାହା ହେଲା କହୁଛି ସ୍ୱରୂପ ।
ଯୁଧିଷ୍ଠିରଙ୍କ ବହୁଳ ଧନ ଦ୍ରବ୍ୟ ଦେଖି
ଦୁଷ୍ଟଜନେ ଭାବୁଛନ୍ତି ସୁହୃଦ ଉପେକ୍ଷି ।
କୃପ ଆଚାର୍ଯ୍ୟ ଶକୁନି ଦୁଃଶାସନ ମେଳେ
ଶାଲ୍ୱ ଶିଶୁପାଳ ପୁଣି ଦୁର୍ଯ୍ୟୋଧନ ମେଳେ ।
ଶକୁନି ବିଚାର କହେ ସେ ଶିଶୁପାଳକୁ
ଶତେକରଥ ପାଣିଦ୍ରବ୍ୟ ମାଗ ଯୁଧିଷ୍ଠିଙ୍କୁ ।
ଦେଇ ନ ପାରିବ ସେତୁ ନାହିଁ ତ ଭଣ୍ଡାର
ଦୂଷିତ ହୋଇବ ଯଜ୍ଞେ ଜାଣ ଏ ସଞ୍ଚାର ।
ଦମଘୋଷଙ୍କ ନନ୍ଦନ ଏ ବଚନ ଶୁଣି
ହରଷରେ ଶତରଥ ସଙ୍ଗେ ନେଇ ପୁଣି ।
ପ୍ରବେଶ ହେଲା ଯଜ୍ଞର ଭିତର ଦୁଆରେ
କାଳଞ୍ଜନ ଉଗରକୁ ଡାକେ ଧାଡିକାରେ ।
ବୋଲେ ଆରେ ଶୁଣ କାଳଞ୍ଜନ ପ୍ରତିହାରୀ
ଯୁଧିଷ୍ଠିରଙ୍କୁ ବାରତା ଦିଅ ବେଗକରି ।
ବୋଲ ଚେଦିଦେଶ ରାଜା ଦମଘୋଷ ସୁତ
ବହିବା ଦୋଷ ଘଟିଲା ତାହାର ଆସିତ ।
ଯୁଧିଷ୍ଠ ରାଜା ପ୍ରସନ୍ନେ ବହିବ୍ରତା ଯିବ
ପାଣିଦ୍ରବ୍ୟ ଶତେ ରଥ ଏହିକ୍ଷଣି ଦେବ ।
ନୋହିଲେ ଯଜ୍ଞ ତୋହର ହୋଇବ ଦୂଷଣ
ଜଣା କୃତ୍ୟମାନ ତୋର ହେବ ଅକାରଣ ।
ଶିଶୁପାଳର ବଚନ ଶୁଣି ପ୍ରତିହାରୀ
ଭୀମସେନର ଆଗରେ କହେ ଯାଇ କରି ।
ସ୍ୱାମି ଶିଶୁପାଳ ରାଜା ହୋଇଲା ଭିକ୍ଷାରୀ
ଧନ ଅଭାବେ କୁଟୁମ୍ବ ନ ପାରଇ ପୋଷି ।
ଶଏରଥ ଆଣିଅଛି ନେବ ପାଣିଦ୍ରବ୍ୟ
ନ ଦେଲେ ତୁମ୍ଭର ଯଜ୍ଞ ଦୂଷଣ ହୋଇବ ।
ଭୀମସେନ ଆଜ୍ଞା କଲେ ସେ କାଳଞ୍ଜନକୁ
କହ ଯାଇ ଦୁର୍ଯ୍ୟୋଧନ ଭଣ୍ଡାର ନାଥକୁ ।
ବୋଲେ ଦୁଃଖୀ ଶିଶୁପାଳ ମାଗୁଅଛି ଧନ
ପାଣିଦ୍ରବ୍ୟ ଶଏରଥ ଦେବ ତାକୁ ଦାନ ।
ଆଜ୍ଞାପାଇ ଚଳିଗଲା କାଳଞ୍ଜନ ଦୂତ
ଭଣ୍ଡାର ନାଥଙ୍କୁ ଯାଇ ଜଣାଏ ତୁରନ୍ତ ।
ହେ ଭଣ୍ଡାର ନାଥ ତୋତେ ଭୀମଙ୍କର ବାଣୀ
ଶିଶୁପାଳେ ପାଣିଦ୍ରବ୍ୟ ଦେବ ଏହିକ୍ଷଣି ।
ତହୁଁ ବୋଲେ ଦୁର୍ଯ୍ୟୋଧନ ଆରେ ଦୂତ
ଆସୁ ନେଇ ଶିଶୁପାଳ ମୋହର ପଛାତ ।
ତକ୍ଷଣେ ସେ ଶିଶୁପାଳ ରାଜା ସଙ୍ଗେ ଗଲା
ବାଆନ ଖାନ ଭଣ୍ଡାର ସକଳ ଦେଖିଲା ।
ବୋଲେ ଶିଶୁପାଳ ଏଥେ ପାଣିଦ୍ରବ୍ୟ ନାହିଁ
ଏ ଦ୍ରବ୍ୟମାନ ଅପୂର୍ବ କଦା ତୁମ୍ଭଙ୍କହିଁ ।
କାଳଞ୍ଜନେ ବୋଲେ ତୁହି ଯାଅ ବେଗହୋଇ
ଏହି କଥା ଭୀମସେନେ ଦିଅ ଯେ ଜଣାଇ ।
ତବେ କାଳଞ୍ଜନ ତହୁଁ ଭୀମର ସମ୍ମୁଖୁ
ବୋଲେ ଭଣ୍ଡାର ଦେଖାଏ ସେ ଶିଶୁପାଳକୁ
ଶିଶୁପାଳ ଦେଖେ ବୋଲେ ପାଣିଦ୍ରବ୍ୟ ନାହିଁ
ସବୁ ନାଶଗଲା ମୋତେ ପ୍ରତୀତ ହୁଅଇ ।
ଏ ବାରତା ପାଇଣ ସେ ପବନ ଆତ୍ମଜେ
ଆପଣେ ଅନ୍ତଃପୁରରେ ତହୁଁ କଲେ ବିଜେ ।
ଦୁର୍ଯ୍ୟୋଧନର ନିକଟେ ବୋଲେ ବୃକୋଦର
ଶତେକରଥ ପାଣିଦ୍ରବ୍ୟ ଦିଅ ହେ ଭଣ୍ଡାର ।
ଦୁର୍ଯ୍ୟୋଧନ ଦେଖାଏ ଯେ ଭଣ୍ଡାର ସରବ
ଦେଖିଲେ ଭୀମଙ୍କେ ତହିଁ ନାହିଁ ପାଣିଦ୍ରବ୍ୟ ।
ବାହୁଡ଼ି ଭୀମ କହଇ ଶ୍ରୀ ବାସୁଦେବଙ୍କୁ
ଶିଶୁପାଳ କଟାକ୍ଷ କରୁଛି ଆମ୍ଭଙ୍କୁ ।
ପାଣିଦ୍ରବ ଶତେକରଥ ମାଗେ ଦୃଢ଼ କରି
ମୁହିଁ ଦେଖିଲି ଭଣ୍ଡାରେ ନାହିଁ ତହିଁ ହରି ।

ଭୀମସେନ ମୁଖୁ ଏହୁ ବଚନକୁ ଶୁଣି
ଆପଣେ ବଜେ କରିଲେ ଦେବ ଚକ୍ରପାଣି ।
କଟିମେଖଳାରେ ଗଣ୍ଠା କାଖେ ଦେଇ ଧରି
ଶିଶୁପାଳର ସମ୍ମୁଖରେ ବଜେ ନରହରି ।
କସ ବୋଲି ଶିଶୁପାଳ ମାଗୁ ଅଛି ଧନ
ଆମ୍ଭର ସୋଦର ହୋଇ ଏଥେଁ କଲୁ ମନ ।
ଶିଶୁପାଳ ବୋଲେ ମୋର ପାଣିଦ୍ରବ୍ୟେ କାର୍ଯ୍ୟ
ଯୁଧିଷ୍ଠିରଙ୍କୁ ମାଗିଲେ ନାହିଁ ମୋତେ ଲାଜ ।
ଚହୁଁ ତାର ବାମକର ଧରି ଦାମୋଦର
ବଜସ୍ତେ କରିଲେ ସ୍ୱାମୀ ଭଣ୍ଡାର ଦୁଆର ।
ବୋଇଲେ ଦୁର୍ଯ୍ୟୋଧନ ଏ ଶିଶୁପାଳ ଦୁଃଖୀ
ପାଣିଦ୍ରବ୍ୟ ଶତେଭାର ମାଗେ ଦଅ ଲେଖି ।
ଶୁଣି ବନସ୍ୱଭ୍ରବରେ ବୋଇଲ କୌରବ
ପାଣିଦ୍ରବ୍ୟ ଭଣ୍ଡାରରେ ନାହିଁ ବାସୁଦେବ ।
ଗୋବିନ୍ଦ ବୋଇଲେ ଦେଖ ଦେଖ ତ ଭଣ୍ଡାର
ଅଞ୍ଜଳିଏ ଆଣ ଦେଖି ଆମ୍ଭର ସମ୍ମୁଖ ।
ନାରାୟଣଙ୍କ ଆଜ୍ଞାରେ ମାନଚକ୍ରବର୍ତ୍ତୀ
ଭଣ୍ଡାରୁ ଅଞ୍ଜଳିଏ ସେ ଆଣେ ତତ୍‌କ୍ଷଣାନ୍ତ ।
ସମ୍ମୁଖରେ ନେଇଣ ଦେଲା ଦେଖି ବାସୁଦେବ
ଶିଶୁପାଳ ଦେଖେ ସବୁ ଅଟେ ପାଣିଦ୍ରବ୍ୟ ।
ଦୁର୍ଯ୍ୟୋଧନ ଯେ ଦ୍ରବ୍ୟରେ କରକୁ ଲଗାଇ
ପଥର ହୋଇଲେ ମଧ୍ୟ ପାଣିଦ୍ରବ୍ୟ ହୋଇ ।
ଏକ ଭଣ୍ଡାରରୁ ସେହି ଶତେଭାର ଦେଲା
ଅକ୍ଷୟ ଭଣ୍ଡାର ତାର କେବେ ନ ସରିଲା ।
ଶୁଣ ହେ ମନୁ ରାଜନ ଶ୍ରୀହରି ମାହାତ୍ମ୍ୟ
ଅଦୃଷ୍ଟି ଅଶ୍ରୁତି ପୁଣି ଅଟେ ଅଲେଖିତ ।
ଶିଶୁପାଳକୁ ବୋଇଲେ ଚହୁଁ ଦେବରାଜା
ଦାରିଦ୍ର୍ୟ ଫିଟୁ ତୋହର ପୁରେ ଏବେ ଯା ଯା
ମନୁ ନୃପତି ବୋଇଲେ ଶୁଣ ଚଇତନ
ସନ୍ଧଗନାରାୟଣ ଯେ ଅଟେ ଦୁର୍ଯ୍ୟୋଧନ ।
ଶଙ୍ଖନିଧି ପଦ୍ମନିଧି ଅଛି ତାର କରେ
କର ଲାଗନ୍ତେ ପଥର ପାଣିଦ୍ରବ୍ୟେ ଫେରେ ।
ସ୍ଥଳନ୍ତେ ମହୀରେ ସ୍ୱର୍ଣ୍ଣପଦ୍ମ ଯେ ଫୁଟଇ
ପ୍ରତ୍ୟକ୍ଷେ ମାନଗୋବିନ୍ଦ ଶ୍ରୀହରି ଅଟଇ ।
ତାହାକୁ ଯେ ନମସ୍କାର କେବେ ନ କରଇ
ଅଭାଗ୍ୟ ଦାରିଦ୍ର୍ୟ ସେହୁ ଜନ୍ମ ନ ସରଇ ।

ଯେବଣ ଦ୍ରବ୍ୟ ତାହାର ହସ୍ତରେ ଲାଗିଲେ
ତତକ୍ଷଣେ ପାଣିଦ୍ରବ୍ୟ ହୁଅଇ ସେ ଭଲେ ।
ତୋଷେ ମନୁ ବୋଲେ ଶୁଣି ଚଇତନ ବାଣୀ
କହସି କଥାରେ ଏବେ ସୁଧାରସ ଜାଣି ।
ଚଇତନ ବୋଲେ ଅତି ଅସମ୍ଭବ କଥା
ସାବଧାନ ହୋଇ ଶୁଣ ଯଜ୍ଞର ବାରତା ।
ଜୟ ଜୟ ଶାରଳା ମା ଝଙ୍କଡ଼ବାସିନୀ
ଶାରଳାଦାସ କହଇ ଯେନ ତା ଦରମା ।

---

## ଜମ୍ବୁସିଂହ ଦୈତ୍ୟ ବଧ

ବୈବସ୍ୱତ ମନୁ ଶ୍ରୋତା ଅଗସ୍ତି ବକତା
ଆସ୍ଥ ନଗରର ରାଜାମାନଙ୍କର ବାର୍ତ୍ତା ।
ଗୋସିଂହ ଦୈତ୍ୟକୁ ବଧ କଲେ ଅର୍ଜୁନ
ଜମ୍ବୁସିଂହ ନାମରେ ସେ ତାହାର ନନ୍ଦନ ।
ଜେନାବତୀ ନଗ୍ରର ସେ ଅଟେ ଅଧିପତି
ମହିଷାସୁରର ପୁଣି ଅଟେ ପଣନାତି ।
ଜମ୍ବୁସିଂହ ମନ୍ତ୍ରୀ ନାମ କୃତାନ୍ତକ ଜାଣ
ରାଜସୂୟଯାଗର ବାର୍ତ୍ତା ପାଇଲା ସେ ପୁଣ ।
ଜମ୍ବୁସିଂହ ଆଗେ କର ଯୋଡ଼ିଣ ବୋଇଲା
କୃଷ୍ଣ ନକଟକୁ ରାଜ୍ୟେ ବାର୍ତ୍ତା ନ ଆସିଲା ।
ରାଜା ହୋଇଣ ଯଦ୍ୟପି ହୁଏ ଅବରଣ
ତାହାର ରାଜ୍ୟରେ ଥିବା ଅଟେ ଅକାରଣ ।
ରାଜସୂୟଯାଗ ଦେବ ଯୁଧିଷ୍ଠିର କରେ
ଲକ୍ଷେ ରାଜାଙ୍କୁ ନମନ୍ତି ଅଛି ସମ୍ଭବରେ ।
କେବଣ ଦୋଷକୁ ତୋତେ ନ କରିଲା ସେହୁ
ବସ୍ତୁର କର ଏ କେଉଁ କଥା ଯେ ଅଟଇ ।
ମନ୍ତ୍ରୀର ବଚନ ଶୁଣି ରାଜା ଜମ୍ବୁସିଂହ
କଦଳୀ ପତର ପ୍ରାୟେ କମ୍ପେ ତାର ଅଙ୍ଗ ।
ମନ୍ତ୍ରୀକି ଆଜ୍ଞାଦେଲା ସେ ପ୍ରତାପୀ ଦନୁଜ
ହୋଇଲକ ଅତିବେଗେ ଦଣ୍ଡ ମୋର ସାଜ ।
ସମଦଣ୍ଡେ ଯିବ ମୁହିଁ ରାଜସୂୟଯାଗକୁ
ଭାଙ୍ଗିବ ମହାସଭା ଯେ ପାରିବ କେ ରଖୁ ।
ନୃପତି ବଚନେ ମନ୍ତ୍ରୀ ଦଣ୍ଡକୁ ସାଜିଲା
ରଥ ଗଜ ଅଶ୍ୱ ଆଦି ସବୁ ସଜକଲା ।
ତନପଦ୍ମ ଅଶ୍ୱ ବିଂଶପଦ୍ମ ପୁଣି ହସ୍ତୀ
ଷାଠିଏ ସହସ୍ର ରଥ ନିୟୁତ ପଦାତି ।

ଶାଙ୍ଖଳର ବାଜଇ ଯେ ଟମକ ନିଶାଣ
ଥାଟ ଚଳନ୍ତେ ମେଦିନୀ ହୁଏ କମ୍ପମାନ ।
ଅନ୍ଧାର ଜାଳରେ ପୃଥି ଦିଶଇ ଆଲୁଅ
ବୃନ୍ଦାର୍କେ ଆକାଶେ ଥାଇ ଭଜେ ମହାଭୟ ।
ନାରଦ କହିଲେ ଯାଇ ଇନ୍ଦ୍ର ଦେବତାଙ୍କ
ନ ପୂର୍ଣ ଧାଡି ଦିଅଇ ତୋର ଭୁବନକୁ
ଧାମନ୍ତ ଯେ ନିଶାଚର ବଳ ଅତି ବେଗେ
ଦେବତାଏ ଭୟ ପାନ୍ତି ଥାଇଣ ସ୍ୱରଗେ ।
ନାରଦଙ୍କ ବଚନରେ ଦେବ ପୁରନ୍ଦର
ଅମର ଭୁବନ ସେହୁ କଲେଣ ଅନ୍ତର ।
ହର ଉଦ୍ୟାନ ବନରେ ଯାଇଣ ଲୁଚିଲେ
ଜୟସିଂହ ଦଣ୍ଡ ଦେଖି ଦେବେ ପଳାଇଲେ ।
ନାରଦ ମହାଋଷି ଯେ ତେଜିଲେ ଆକାଶ
ରାଜସି ଯାଗ ସଭାରେ ହୋଇଲେ ପ୍ରବେଶ ।
ହସ୍ତେ ଅଛି ମହାମ୍ବାର ବୀଣା ସପ୍ତସ୍ୱର
ଦେଖିକରି ପୂଜା କଲେ ଦେବ ଚକ୍ରଧର ।
ଆସ୍ଥାନ ତେଜିଣ ଧର୍ମ ଉଠିଲେ ସତ୍ୱରେ
ଶତ ପ୍ରଣିପାତ ହେଲେ ନାରଦ ପୟରେ ।
ଆସ୍ଥାନ ତେଜିଣ ବେଗେ ସକଳ ରାଜନ
ମୁନିଙ୍କର ପାଦପଦ୍ମ କରିଲେ ବନ୍ଦନ ।
ନାରଦ ବୋଇଲେ ତହୁଁ ଶୁଣ ଧର୍ମସୁତ
ତୋର ସଭାକୁ ବାହିଲା ଜୟସିଂହ ଦୈତ୍ୟ ।
ଭଙ୍ଗିବ ମହାଯଜ୍ଞ ସେ କରିବ ବିଧ୍ୱଂସ
ଅସଂଖ୍ୟ ବଳ ତାହାର ରଥ ଗଜ ଅଶ୍ୱ ।
ତୁ ଯତ୍ନ ଯଜ୍ଞେ କରିଲୁ ଲକ୍ଷେ ରାଜାଗଣେ
ଜୟସିଂହ ଦଇତ୍ୟକୁ ନ କଲୁ ବରଣ ।
ଏ ସମ୍ବାଦ କହିଦେଲି ଯାଇ ତାର ମନ୍ତ୍ରୀ
ତେଣୁକରି ଦଣ୍ଡ ସାଜ ଅସୁର ଦୁର୍ମତି ।
ନାରଦ ମୁଖରୁ ଶୁଣି ଏସନକ ବାଣୀ
ଭୟେ ସମସ୍ତଙ୍କ ଚିତ୍ତ ଛନ୍ନ ଛନ୍ନ ପୁଣି ।
ବ୍ୟାସଦେବ ବୋଇଲେ ହେ ଶୁଣ ବାସୁଦେବ
ଜୟସିଂହ ବାହିଲା ଯେ କେମନ୍ତ କରିବ ।
ଅନେକ ବ୍ୟାକୁଳ ହେଲେ ସର୍ବ ରାଜାମାନେ
ସମସ୍ୟା ନ ଦିଅନ୍ତି ସେ ଭୟକରି ମନେ ।
ଏମନ୍ତ ବଚନ ଶୁଣି ଦେବ ଦଇତ୍ୟାରି
ସନ୍ନିଧିକୁ ଅତିବେଗେ ଅର୍ଜୁନ ହକାରି ।

ବୋଇଲେ ଜୟସିଂହ ଯେ ବାହିଲା ଏଥର
କପଟ ଏ ସଭା ରକ୍ଷା ହେବ ତା ବିସ୍ତର ।
ଅର୍ଜୁନ ବୋଇଲେ ସ୍ୱାମୀ କପାଁ କରୁ ଚିନ୍ତା
ଏ ମହାଯାଗକୁ ତୁମ୍ଭ ହରି ସେ ରଖନ୍ତା ।
ଥାଆନ୍ତୁ ରାଜାମାନେ ଯେ ନିଶ୍ଚିନ୍ତରେ ରହି
ମୋହଠାରେ ସୁପ୍ରସନ୍ନ ହୋଇଥା ଗୋସାଇଁ ।
ଗୋବିନ୍ଦ ବୋଇଲେ କରୁ ପ୍ରତିଜ୍ଞା ତୁମ୍ଭ ତ
କି ପ୍ରକାରେ ଜୁଝ ହେବ ଜୟସିଂହ ଦୈତ୍ୟ
ସଭାକୁ ଆସିବ ଯେବେ ଦୈତ୍ୟ ଗଳଗାଜ
ଉପଦ୍ରବେ ରାଜାମାନେ ପଳାଇବେ ଭାଜ ।
ପାର୍ଥ ବୋଇଲେ ସେ ଅଟେ ଗୋସିଂହର କିସ
ଗୋବିନ୍ଦ ବୋଇଲେ ଅଟେ ତାହାର ଯେ ଶିଷ୍ୟ
ଅର୍ଜୁନ ବୋଇଲେ କି ସେ ଗୋସିଂହନ୍ତୁଁ ତାପି
ମୋହର କଥା ହରି ତ ନ ଜାଣୁ ଅଦ୍ୟାପି ।
ନାରାୟଣ ବୋଇଲେ ଯେ ଜନ୍ମ ବଡ଼କଥା
ରାଜାଏ ଜାଣନ୍ତି ନାହିଁ ତୋହର ବାରତା ।
ଗୋବିନ୍ଦ ବୋଇଲେ ଚାଲ ଯିବା ଆମ୍ଭେ ବେନି
ସଙ୍ଗେ ଯିବେ ବାୟୁସୁତ ହନୁମନ୍ତ ଘେନି ।
ଅର୍ଜୁନ ବୋଇଲେ ସ୍ୱାମୀ କୁହ କି ଏମନ୍ତ
କପାଇଁ ସଙ୍ଗରେ ନେବା ବୀର ହନୁମନ୍ତ ।
ଘରରେ ଘରେଇ ମଲ୍ଲ ଅଟଇ ଯେ ମୁହିଁ
ଯାଗ ଚର୍ଚ୍ଚା କର ତୁମ୍ଭେ ଦେଖେ ମୁହିଁ ଯାଇ ।
ନାରାୟଣେ ତିଆରଣ ପାର୍ଥ ହେନ୍ତ ସଜ
ଗରୁଡ଼ ହକାରି ଆଜ୍ଞା ଦେଲେ ଦେବରାଜ ।
ବାବୁ ଜୟସିଂହ ଯୁଦ୍ଧେ ଯାଉଛୁ କପଟି
ଅର୍ଜୁନକୁ ବୈନତେୟ ବସା ତୋର ପିଠି ।
ନାରାୟଣ ବଚନରେ ହୋଇ ତତପର
ଅର୍ଜୁନକୁ ଖଗେଶ୍ୱର ବସାଏ ପିଠିର ।
ଅକ୍ଷୟ ତୂଣ କରରେ ଗାଣ୍ଡିବ ଯେ ଧନୁ
ଅତିବେଗେ ଅନ୍ତରୀକ୍ଷେ ଚଳେ ଇନ୍ଦ୍ରସୁନୁ ।
ଦୈତ୍ୟସୈନ୍ୟ ନନ୍ଦକେଶ ନଗରକୁ ଘୋଟି
କାଶୀନଗ୍ରୀ ତଟରେ ପାର୍ଥ ଯାଇ ତାଙ୍କୁ ଭେଟି ।
ନାରାୟଣ ବଳେ ଯେତେ ଖଗେଶ୍ୱର ପିଠି
ସେହିରୂପେ ଦିଶଇ ସେ ପାଣ୍ଡବ କପଟି ।
ଅସୁର ଥାଟ ଦେଖିଣ ଗରୁଡ଼ ସହଳ
ଭୟେ [illegible] ।

ମ୍ଳେଚ୍ଛଙ୍କର ମୁଖଗବ ଖଗେଶ୍ବର ରଡ଼
ଶୁଣି ଦୈତ୍ୟଙ୍କ ହସ୍ତରୁ ଶସ୍ତ୍ର ପଡ଼େ ଝଡ଼ି ।
ଥାଟର ଭିତରେ ଉଲ୍‌କାପାତ ପ୍ରାପ୍ତ ଦେଖି
ଆସିଲେ କି ନାରାୟଣ ବୈକୁଣ୍ଠ ଉପେକ୍ଷି ।
ଦୈତ୍ୟବଳ ନିସୂଦନକାରୀ ଯେଉଁ ଦେବ
ତାହାଙ୍କ ସନ୍ମୁଖେ ପଡ଼ି ଦୈତ୍ୟ କେ ବଞ୍ଚିବ ।
ଜୟସିଂହ ପଚାରଇ କୃତାନ୍ତ ମନ୍ତ୍ରୀକି
ବାହନ ଚଢ଼ିଣ କେତ୍ତୁ ଅଇଲ ଏଥିକି ।
ବୋଲଇ ସେ ମନ୍ତ୍ରିବର ଶୁଣ ଜୟସିଂହ
କି ଅବା ସେ ବାସୁଦେବ କି ଅବା ପଣ୍ଡଗ ।
ଭାରତେ ଭଟେଇମଲ୍ଲ ଅସଂଖ୍ୟ ମହିମା
ଲୁପେ ଅଜୟ ଅଟନ୍ତି କୁଳକୁ ବଢ଼ିମା ।
ରାଜାମାନଙ୍କୁ ପ୍ରବୋଧ କରି ବାସୁଦେବ
ତୋହର ନିକଟେ ବିଜେ କଲେକି ସେ ଦେବ
ଏକକ୍ଷୌଣୀ ଦୈତ୍ୟସୈନ୍ୟ ମାର୍କଣ୍ଡେ ବୋଇଲେ
ଏକା ଜଣେ ତହିଁ ଫାଲଗୁନ ବିଜେ କଲେ ।
ତା ସଙ୍ଗେ ସମର କେହ୍ନେ କରିବ ଏ ଜଣେ
ଗୋସିଂହ ପୁନ୍ଦକୁ ସରି ହେବ କି ଅର୍ଜୁନେ ।
ବ୍ୟାସଦେବ ବୋଇଲେକ ଆହେ ମାର୍କଣ୍ଡ
ଏକମନ ହୋଇକରି ଶୁଣ ଗ୍ରନ୍ଥ ଖଣ୍ଡ ।
ତାହାର ପିତା ଯେ ଅଟେ ଗୋସିଂହ ଦଇତ
ଦ୍ୱାରକା ଭୁବନେ ଆସି ହେଲା ଉପଗତ ।
ସାତବଂଶ ଯାଦବଙ୍କୁ ଘେନି ରାମହରି
ରଣ କଲେ ନ ଯୁଝିଲା ଅମର ଅଇରି ।
ବାହୁବଳେ ଜୟ ସେହୁ କରିଲା ସମରେ
ରାମକୃଷ୍ଣ ପଶିଲେ ଯେ ଅଗ୍ନିର ଭିତରେ ।
ବାସୁଦେବ ପ୍ରଦ୍ୟୁମ୍ନ ଏ ଦୁହିଙ୍କ ଯେ ଧରି
ଯଜ୍ଞକୁଣ୍ଡେ ଫିଙ୍ଗି ଦେଇ ବାହାନାଦ କରି ।
ସାତବଂଶ ଯାଦବଙ୍କୁ ସମୂଳେ ନାଶିଲା
ଭଣ୍ଡାର ଲୁଟ କରିଣ ସତ୍ୟଭାମା ନେଲା ।
ବୈଶାଖମାସ ଯେ କୃଷ୍ଣ ନବମୀର ଦିନ
କପଟରୂପେ ଅର୍ଜୁନ ବୁଲୁଥିଲେ ବନ ।
ଉଦାମ୍ନ ନଦୀ ତୀରରେ କାମେଶ୍ୱର ଗିରି
ତହିଁପରେ ବସିଥିଲେ ପାର୍ଥ ଧନୁର୍ଦ୍ଧାରୀ ।
ଗୋସିଂହ ରଥେ ଥାଇଣ ଡାକେ ସତ୍ୟଭାମା
ଆସ ପାର୍ଥ ରକ୍ଷାକର ଦେଖା ତୋ ମହିମା ।

ଅନ୍ତ୍ରିକ୍ଷ କୋକିଳ ଜଣି ଶୁଭିଲକ ବାଣୀ
ପର୍ବତ ଉପରେ ଥାଇ ଶୁଣିଲେ ଫାଲ୍‌ଗୁନ ।
ପୁଣି ଆଉ ବେଳେ ଦେଖି ଡାକଦେଲେ ଧାଇ
ଅସୁର ବଳକୁ ପାର୍ଥ ଦେଖିଲେ ସେ କତି ।
ପୁଣ ଡାକଦେଲେ ସତ୍ୟଭାମା ଅଟେ ମୁହିଁ
ବଳାତ୍କାରେ ମୋତେ ହରନେବ ଦୈତ୍ୟ ଏହି
ସତ୍ୟଭାମାର ବଚନ ଶୁଣିଲେ ସ୍ୱରୂପ
ତତ୍‌କ୍ଷଣେ ଅର୍ଜୁନ ମାର କଲେ ମହାକୋପ ।
ବଣଯୂଣ ମାଡ଼ିଯାନ୍ତି ଅସୁର ସଇନ
ଏକା ଜଣକରେ ଉପାଳଟେ ଫାଲଗୁନ ।
ଅସୁର ବଳଙ୍କୁ ଯାଇଁ ଓଗାଳିଲା ପାର୍ଥ
ରାତ୍ର ଦିବା ଯୁଦ୍ଧ କରି ମାଇଲ ସମସ୍ତ ।
ଗୋସିଂହ ବଧ କରିଣ ନେଲା ଶବାବନ୍ତି
ଦ୍ୱାରକାରେ ଉତ୍ସବ ଯେ କଲେ ଶିଶୁପତି ।
ବ୍ୟାସଦେବ ବୋଇଲେ ସେ ରାଜର୍ଷି ସଭାରେ
ଅର୍ଜୁନର ଶରଘାତେ ମଲେ ଦୈତ୍ୟଘାଟେ ।
ବ୍ୟାସଙ୍କର ମୁଖୁଁ ଯହୁଁ ଶୁଣିଲେ ଏସନ
ମନୁ ଭ୍ରାନ୍ତ ଛାଡ଼ିଲେ ସେ ସର୍ବ ରାଜାଗଣ ।
ଅସୁର ସଇନମାନ ଦେଖି ଫାଲଗୁନ
କ୍ରୋଧରେ ବର୍ଷିଲେ ମାର ଦିବ୍ୟଶର ସେନ ।
ଏକ ନାରାଚରେ ଦୈତ୍ୟ ସଇନଙ୍କୁ ଘୋଟି
ଥାଟଯାକ ତାହାରି ଯେ ହେଲା ଶରବୃଷ୍ଟି ।
ସମସ୍ତଙ୍କର ଉପରେ ପଡ଼େ ଯାଇ ବାଣ
ଆକାଶୁଁ ବୃଷ୍ଟି ଯେସନେ କରେ ମଘବାନ ।
ଦେଖିକରି ଭାଜିଗଲେ ଦୈତ୍ୟଦଳମାନେ
ଶସ୍ତ୍ର ଚୁନ୍ମାଇ ଧାଇଁଲେ ପାର୍ଥ ଅବଜ୍ଞନ୍ତେ ।
ଏକା ଜଣକେ ନାରାଚ ବନ୍ଧ ଶତ ଶତ
ବ୍ୟାକୁଳ କରିଣ ଦେଲେ ରାକ୍ଷସଙ୍କ ଚିତ୍ତ ।
ଦଇତ୍ୟ ଯେତେକ ଶର ପ୍ରହାର କରନ୍ତି
ଦେଖିକରି ଅର୍ଜୁନ ତା ଦୂରୁ ନିବାରନ୍ତି ।
ଅପୂର୍ବ ସମର ତହିଁ କରନ୍ତି ଅର୍ଜୁନ
ଗରୁଡ଼ ପକ୍ଷରେ ବାଜ ଶର ହୋଏ ଚୂର୍ଣ୍ଣ ।
ଜୟସିଂହ ପୁଷ୍ପଇଣ ଲକ୍ଷେ ଖଣ୍ଡଶର
ଅର୍ଜୁନ ଆଗରେ ମିଳେ କରି ବେରେକାର ।
ଦେଖିଣ ସାନନ୍ଦ ହେଲେ ସେ ଗାଣ୍ଡୀବଧାରୀ
ଯୋଦ୍ଧାଙ୍କେ ବନ୍ଧିଲେ ଶର କୋଟି କୋଟି ସ୍ୱର

ଏକାଥରେ ଶରପେଷି ଅର୍ବୁଦଯୋଦ୍ଧାଙ୍କୁ
କାହା ଭୁଜ କାହା ଜାନୁ ଫାଟିଯାଏ କୁଳୁ ।
ଏକ ନିମେଷରେ ପଞ୍ଚ ପଞ୍ଚ ଶର ଫୁଟି
ବାଜେ ନୃତ ଫଳପ୍ରାୟେ ପଡ଼ିଲେ ସେ ଲେଟି
ହାକୋଡ଼ାଶରେକ ପୁଣି ମାଇଲେ ଫାଲ୍‌ଗୁନ
ରୁଧିର ବନ୍ୟ କର୍ଦ୍ଦମ ହୋଇଲା ମେଦିନୀ ।
ଅସଂଖ୍ୟ ଶର ମାରି ଯେ ବୀର ଧନଞ୍ଜୟ
ଲେଟିଲେ ରାକ୍ଷସେ ବାତେ ଉନ୍ମୂଳନ ପ୍ରାୟ ।
କାଳାନଳ ଜାଣିକରି ଦିଶେ ଫାଲଗୁନ
ଏକାଜଣେ ଜୟ କଲା ଅସୁର ସଇନ ।
ସଇନ ବିନାଶ ଦେଖିକରି ଜୟସିଂହ
ସମରେ ବାରବର ସେ ହୋଇଲା ଅଥୟ ।
ଆରେ ଆରେ ମାନବରେ ପିତା ଶତ୍ରୁ ମୋର
କେଉଁଠାକୁ ଯିବୁ ଆଜ କୁହରେ ପାମର ।
ଗୋସିଂହ ନାଶିଲୁ ତୁହି ଏବେ ମୁଁ ଜାଣିଲି
ଯତ୍ନେ ଯାକୁ ଲୋଡ଼ୁଥିଲି ତାହାକୁ ପାଇଲି ।
ଅସୁର ବଚନ ଶୁଣି କହିଲେକ ପାର୍ଥ
ମୂର୍ଖ ସେ ନାଶିଲି ଆରେ ଗୋସିଂହ ଦଇତ ।
ଯୁଗେ ଯୁଗେ ହେବ ତୁମ୍ଭେ ମୋର ହସ୍ତେ ବଧ
ଶକ୍ତି ଯେବେ ଅଛି ତେବେ କର ଆରେ ଯୁଦ୍ଧ
ନ ପୁଣ ନଜ ସହିତ ନାଶ ବନ୍ଧୁଗଣ
ଅର୍ଜ୍ଜୁନ ବଚନ ଶୁଣି କୋପ ସେ ହୋଇଣ ।
ଧଇଲା ଲୁହାର ଧନୁ କରେ ଅତି ରାଗେ
ଗଉଜଣ ଲକ୍ଷେ ଲକ୍ଷେ ଶର ବନ୍ଧେ ବେଗେ
ହୁତାଶନ ପରାୟେ ସେ ଦିଶେ ତେଜୟାନ
ସାକ୍ଷାତରେ ଦେଖାଯାଏ କି ଅବା ଶମନ ।
ବୁଲାଇ ମାଇଲା ତାହା ଅର୍ଜ୍ଜୁନ ଉପରେ
କାଟିଦେଲେ ପାର୍ଥ ତାକୁ କଞ୍ଚିତ ମାତ୍ରରେ ।
ପୁଣି ଜୟସିଂହ ଧରି ଶର ଲକ୍ଷ୍ୟକରି
ଖେଷକ୍ରେ ନାଶିଲା ତାହା ସେ ଗାଣ୍ଡୀବଧାରୀ ।
କେ ପେ ଦୁର୍ବଳ୍ଲକ ଶର ପେଷିଲା ଦଇତ
ଖଗେଶ୍ୱର ଗିଳଦେଲା ତାହାକୁ ତୁରିତ ।
ଦେଖିକରି ଆଶ୍ଚର୍ଯ୍ୟ ଯେ ହୋଇଲା ଅସୁର
ପକ୍ଷୀ ହୋଇ ମହିମା ତୋ ଅଟଇ ଅପାର ।
ତେବେ ସହି ନ ପାରନ୍ତି ଯେଉଁ ଶର ତେଜ
ଗଳେ ସଂହରିଲୁ କେହ୍ନେ ଏ ବଡ଼ ଆଶ୍ଚର୍ଯ୍ୟ ।
ଲୁହାର ତହେକ ତହୁଁ ଦେନଣ ଦଇତ
ଖଗେଶ୍ୱର ପରେ ପିଟେ ଯେହ୍ନେ ବଜ୍ରଘାତ ।
ଅଭୂତ ମହାରଥୀ ସେ ଜାଣି ବଜ୍ରହେଳା
ଗରୁଡ଼ ପକ୍ଷ ଘାତରେ ହୋଇଗଲା ଚୂନା ।
ପୁଣ ପୁଣ ଅରଜୁନ ନାରଚକୁ ବନ୍ଧ
ଜୟସିଂହ ଧନୁ ସବୁ ପକାଇଲେ ଛେଦ ।
ଧନୁଭଗ୍ନ ଦେଖିକରି କ୍ରୋଧରେ ଦଇତ
ଲୁହାର ବେନ ଗଦା ସେ ଧରି ବେନହାତ ।
କୋପେଣ ଗର୍ଜ୍ଜଇ ଦୈତ୍ୟ କାଳସର୍ପ ପ୍ରାୟ
ମେରୁଗିରି ସମାନରେ ଦିଶେ ତାର କାୟ ।
ଲୁହାର ବେନଗଦା ସେ କ୍ରୋଧରେ ଫିଙ୍ଗଇ
ତାହା ଦେଖି ଖଗବର ପକ୍ଷ ଉହାଡ଼ଇ ।
ଗରୁଡ଼ ପରେ ପଡ଼ିଲା ଗଦା ଦୁଇ ଯାଇ
ଶତଖଣ୍ଡ ହୋଇଲା ସେ ଅର୍ଜ୍ଜୁନ ଦେଖଇ ।
ଖଗବର ଦେଖି ଯେହ୍ନେ ଭୁଜଙ୍ଗର ଭ୍ରାନ୍ତ
ଗଦାବର ଗୁଣ୍ଡ ଦୈତ୍ୟବଳୀ ଶ୍ରାନ୍ତମୂର୍ତ୍ତି ।
ଶୂନ୍ୟହସ୍ତ ହୋଇକରି ଗୋସିଂହର ବଳା
ପୁନରପି ଦେଖିଣ ସେ କରେ ଖଡ଼୍‌ଗଫଳା ।
ଭୁବନ ତହ ପରାୟେ ବୁଲାଏ ନୟନ
କି ଅବା ମର୍ତ୍ତ୍ୟଭୁବନେ ବିଜୟ ଶମନ ।
କୋପେଣ କୋପାନଳ ସେ ସେତୁପତ୍ନୀ ସୁତ
ପାର୍ଥ ଉପରେ ଖଡ଼୍‌ଗକୁ ପିଟିଲା ତୁରିତ ।
ବିନତା ନନ୍ଦନ ତାହା ନୟନରେ ଦେଖି
ଅର୍ଜ୍ଜୁନକୁ ଉହାଡ଼ିଲା ମେଲିଇ ସେ ପକ୍ଷୀ ।
ପକ୍ଷର ଉପରେ ଆସି ପଡ଼େ ଅସିବର
କ୍ଷଣମାତ୍ରେ ଖଣ୍ଡ ଖଣ୍ଡ ହେଲା ଶତଚୂର ।
ନିରସ୍ତ୍ର ହୋଇ ଦଇତ ପକାଏ ଲେଉଟି
ବଜ୍ରାବଳୀ ଗଦା ଘେନି ପିଟିଲା କପଟୀ ।
ଦେଖିକରି ଦଇତ ଯେ ଘାତେ ବକ୍ଷସ୍ଥଳ
ଅର୍ଜ୍ଜୁନ ହସ୍ତରୁ ଶସ୍ତ୍ର ଘେନିଲା ତତ୍କାଳ ।
ସେହି ଶର ଘେନ ଲେଉଟାଇ ପୁଣି ପିଟି
ଗରୁଡ଼ ପିଠିରେ ବାଜି ଶସ୍ତ୍ର ଗଲା ଫୁଟି ।
ପୁଣି ଅରଜୁନ ବନ୍ଧେ ଶର ତୀକ୍ଷ୍ଣମୁନା
ଦୈତ୍ୟହୃଦେ ପଡ଼ି ଫୁଟିଗଲା ବଜ୍ରସେହ୍ନା ।
ପୁନରପି ବନ୍ଧିଲେ ସେ ହାକୋଡ଼ାକ ଶରେ
ଗିରିକର [illegible] ।

କର୍ଣ୍ଣାଟଶରେ ଦଇତ ହେଲା ଭୂମିଶାୟୀ
ନାସା ଭିତରୁ ରୁଧିର ଘନ ଘନ ବହି ।
ସାଏଣ ଅଚେତନ ସେ ହୋଇଲା ଦୁର୍ଦ୍ଦାନ୍ତ
ଚେତଉଠି ରଣେ ବାଣ ପେଷିଲା କୁଝିତ ।
ତାହା ଛେଦ ପାର୍ଥ ପେଷେ ଅମୋଘ ଶକତି
ପ୍ରାଣତ୍ୟାଗ ପ୍ରାପ୍ତ ହେଲା ଅସୁର ନୃପତି ।
ପୁଣି ପାର୍ଥ ମହାକୋପେ କରେ ଚନ୍ଦ ଦେନ
ପେଷନ୍ତେ ଦଇତ ଅଙ୍ଗେ ଚୂର ହେଲା ପୁଣି
ବହୁତ ଶର ଘେନଣ ମାରେ ଧାଡି ଧାଡି
ଭୟେ ପାର୍ଥ ନ ଯାଏ ସେ ଦଇତର କତି ।
ଜୟସିଂହ ପରେ ପଡ଼ ଅନେକ ଯେ ଶର
ସ୍ତୁହୁଁ ଗୃହୁଁ ତୃଣ୍ଡ ସେହୁ ହେଲେ ଧାଡିକାର ।
ଜ୍ୱଳନ୍ତ ଅନଳ ପ୍ରାପ୍ତ ହୋଧରେ ଦେବାର
ଧାଡିକାରେ ଉପାଡ଼ିଲା ଏକକୋଟି ଗିରି ।
ବିନତାନନ୍ଦନ ଖଗ ଉଡ଼ାଡ଼େ ତା ଦେଖି
ଆଗଭର ହୋଇକରି ଉଠିଲା ସେ ପକ୍ଷୀ ।
ଗିରି ବୁଲାଇଣ ପିଟେ ଦଇତ ପ୍ରଚଣ୍ଡା
ବୈନତେୟ ପୃଷ୍ଠେ ପଡ଼ ହେଲା ମସିଗୁଣ୍ଡା ।
ଖଗେଶ୍ୱର ପିଟଇ ଯେ କୋପେ ପକ୍ଷ ନେଇ
ନଷ୍ଟେଷ୍ଟ ହୋଇଣ ପଡ଼ଇଲା ଦୈତ୍ୟସାଇଁ ।
ପଡ଼ନ୍ତେ ଦଇତ୍ୟ ଘରେ ମାରେ ନେଇ ଅଣ୍ଡ
ବେନଫାଳ ହୋଇଗଲା ତକ୍ଷଣେ ପାପିଷ୍ଠ ।
ପକ୍ଷୀରାଜ ବୋଲେ ଦେବ ଦୈତ୍ୟ ହେଲା ହତ
ଜେନାବଳୀ ପାଟଣାକୁ ଚାଲ ଯେ ତୁରିତ ।
ଅନେକ ଧନ ଭଣ୍ଡାର ଅଛଇ ଯେ ତହିଁ
ଅପୂର୍ବ ଦ୍ରବ୍ୟ ଆଣିବା ଆମ୍ଭେ ତହୁଁ ଯାଇ ।
ସାନନ୍ଦ ହୋଇଣ ତହୁଁ କଶ୍ୟପର ବଳା
କଉତୁକେ ଉଡ଼ଇ ସେ ପକ୍ଷୀ ଅନର୍ଗଳା ।
ଜେନାବଳୀ ନଗ୍ରପାଶେ ହୋଇଲେ ପ୍ରବେଶ
କଷ୍ଟିତରେ ପକ୍ଷ ଝାଡ଼େ କଶ୍ୟପର ଶିଷ୍ୟ ।
ଯେତେ ଦେଉଳ ମଣ୍ଡପ ଥିଲା ସେ ନଗର
କ୍ଷଣେ ବିନଷ୍ଟ ସବୁ ହେଲା ତତ୍କ୍ଷଣାନ୍ତ ।
ଅନେକ ଥିଲେ ଯେ ତହିଁ ଅସୁର ଅସୁରୀ
ଏଣେ ତେଣେ ପଡ଼ିଲେ ଯେ ଯାଇ ଉଡ଼ିକରି ।
ଯେତେ ରହିଥିଲେ ତହିଁ ଅସୁରଙ୍କ ବଂଶ
ଗରୁଡ଼ ବାଧାତେ ସର୍ବେ ହେଲେ ପ୍ରାଣେ ନାଶ

ଅନେକ ରତ୍ନ ଭଣ୍ଡାର ଘେନ ସର୍ବ୍ୟସାତୀ
ଗରୁଡ଼ ପୃଷ୍ଠେ ଥୋଇଲେ ନାନା ଦ୍ରବ୍ୟ ସଙ୍ଗ
ବାହୁଡ଼ଇ ଖଗେଶ୍ୱର ଅର୍ଜ୍ଜୁନକୁ ଘେନ
ସଭାରେ କହିଲେ ଯାଇ ନାରଦ ଯେ ମୁନ ।
ଆହେ ରାଜାମାନେ ତୁମ୍ଭେ ନ ହୁଅ ବିକଳ
ଅର୍ଜ୍ଜୁନ ଧ୍ୱଂସିଲା ଜୟସିଂହ ଦୈତ୍ୟବଳ ।
ଜେନାବଳୀ ନଗ୍ର ସବୁ କରି ଛିନ୍ନଛନ୍ଦ
ବହୁତ ଧନ ଭଣ୍ଡାର ଘେନ ତହୁଁ ପାର୍ଥ
ରଣଜୟ କରଣ ସେ ବାହୁଡ଼ନ୍ତି ହର୍ଷେ
ଏହା ସତ୍ୟ ଅଟେ ତୁମ୍ଭେ ନ ଭାଳ ମାନସେ
ନାରଦ କହନ୍ତେ ତୋଷ ସକଳ ନୃପତି
ଛାଡ଼ିଲେ ମନରୁ ଚିନ୍ତା ଲଭିଲେକ ଶାନ୍ତି ।
ଅନେକ ଆନନ୍ଦ ହେଲେ ଯୁଧିଷ୍ଠିର ରାୟେ
ଏସନକ ସମୟରେ ବୀର ଧନଞ୍ଜୟେ ।
ତାରକା ବିନାଶେ ଯେହ୍ନେ କାର୍ତ୍ତିକେୟ ମୂର୍ତ୍ତି
ବିକାଶଇ ତେହ୍ନେ ବୀର ଅର୍ଜ୍ଜୁନର ଜ୍ୟୋତି ।
ସକଳ ନୃପତିଗଣେ ହୋଇଣ ଆନନ୍ଦ
ଧନ୍ୟ ଧନ୍ୟ ପାର୍ଥ କହି କଲେ ସାଧୁବାଦ ।
ନ ଥିବେ ମହୀରେ ଏହି ରୂପ ଧନ୍ୱୀ ଜଣେ
ସ୍ୱାଙ୍କ ବିନା ଏହି କାର୍ଯ୍ୟ ନ ହୁଅଇ ଆନେ ।
ଏକମୁଖେ କଲେ ତହୁଁ ପାର୍ଥଙ୍କୁ ପ୍ରଶଂସା
ସାଧୁ ପାଣ୍ଡବ ତୁମ୍ଭର ପୂରିବ ମନାଷା ।
ଆମ୍ଭର ଷଣ୍ଢସ୍ୱପଣ ଅଟେ ଯେବେ ସତ୍ୟ
ପଣ୍ଡୁନନ୍ଦନଙ୍କୁ ହେଉ ସ୍ୱର୍ଗ ପରାପତ ।
ଏସନ ବାଣୀ ସକଳେ ଉଚ୍ଚସ୍ୱରେ ଭଣି
ଶୁଣେ ଖଗେଶ୍ୱର ହୁଏ ପରବେଶ ଆସି ।
ବହୁତ କାଳର ଧନ ବହୁତ କନକ
ବର୍ଷକେଣ ନ ସରଇ ରଜନୀ ଦିବସ ।
ବାହନ ଭଣ୍ଡାର ସବୁ ପାଣି ଦ୍ରବ୍ୟମୟେ
ଆକାଶେ ଅମରେ ଥାଇ କଲେ ଜୟେ ଜୟେ
ଦୈତ୍ୟଙ୍କୁ ଦେବତାଙ୍କର ବହୁ ଭୟ ଥିଲା
ଜୟସିଂହ ନାଶି ପାର୍ଥ ତାହା ଦୂର କଲା ।
ଅନେକ ସନ୍ତୁଷ୍ଟ ହେଲେ ସର୍ବ ଦେବଗଣ
ସହସ୍ରନେ କଲେ ପୁଣି ପୁଷ୍ପ ବରଷଣ ।
ଶୁଣ ହେ ମହାତ୍ମା ଗଣ ରାଜସୂୟ କଥା
ଅପୂର୍ବ ଧନ ମିଳିବ ଶୁଣିଲେ ସର୍ବଥା ।

ବହୁତ ମହିମା ତାର ନ ସରେ କହନ୍ତେ
ଯମଦଣ୍ଡ ଦୂରହୁଏ ବିଷ୍ଣୁ ସୁମରନ୍ତେ ।
ସେ ବିଷ୍ଣୁ ଚରଣ ଆଉ ସରସ୍ୱତୀ ପାଦ
ଭଜଇ ସାରଳା ଦାସ ମନ ଷଟପଦ ।

---

## ଅନନ୍ତ ନାଗଙ୍କୁ ନିମନ୍ତ୍ରଣ କରିବା ପାଇଁ ଅର୍ଜୁନଙ୍କର ପାତାଳେ ଗମନ ଓ ଶରମୁନେ ପୃଥିବୀ ଧାରଣ ଏବଂ ନାଗବାଳୀ ବିବାହ ପ୍ରସଙ୍ଗ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ତୁମ୍ଭ କୁଳ ଶ୍ରୋତା ମୁହିଁ ନ ଦେଖଇ ଖିତି ।
ଏ ଭାରତ ଚରିତକୁ ଶୁଣି ଶୁଣାଇଲେ
ନିଷ୍ଟୟ ମୁକତି ହେବ ମିଥ୍ୟା ନାହିଁ ଭଲେ ।
ଚଇତନ ପୁଚ୍ଛାକଲେ ସେ ମହାମୁନିଙ୍କୁ
ସୁଧା ରସମୟ କଥା କହ ହେ ଆମ୍ଭଙ୍କୁ ।
ଅମୃତ କୁଳି ପଦ ଯେ ମୋତେ କହ କର
ଏହି ଭବସାଗରରୁ ଭଖ ତୁ ଉଦ୍ଧାର ।
ବୋଇଲେ ଯେ ମନ ତୁମ୍ଭେ ଶୁଣ ଚଇତନ
ହୃଦଗତେ ଲୟ ରଖିଥିବୁ ତୁହି ପୁଣ ।
ଯୁଧିଷ୍ଠିର ଦେବଙ୍କର ମହିମାକୁ ଶୁଣ
ଅଷ୍ଟାଦଶ ବଂଶର ଯେ ଛନ୍ତି ରାଜାଗଣ ।
ବାଦ୍ୟ ନୃତ୍ୟ ଗୀତେ ତହିଁ ପାହିଗଲା ରାତି
ଆକାଶପଥେ ଉଦୟ ହେଲେ ଛାୟାପତି ।
ଅର୍ଜୁନ ଶ୍ରୀହରି ପାଦେ ହୋଇ ପରଣାମୀ
ବୋଲେ ଜୟସିଂହ ନାଶକଲ ଦେବସ୍ୱାମୀ ।
ସଂକ୍ଷେପି କହିଲେ ଜୟସିଂହର ବାରତା
ପ୍ରଭୁ ତୁମ୍ଭ ପ୍ରସାଦରେ ଜିଣିଲେ ଦଇତା ।
ଅର୍ଜୁନ କହନ୍ତେ ଏହା ପ୍ରସନ୍ନ ମୁରାରି
ଯୁଧିଷ୍ଠି ପାଦେ ଦର୍ଶନ କଲେ ଯାଇ କରି ।
ଦେଖିଣ ପରମ ତୋଷ ହେଲେ ଧର୍ମବାଳ
ପ୍ରସନ୍ନ ମନରେ ତାର ବାଞ୍ଛିଲେ ମଙ୍ଗଳ ।
ଏସନ ସମୟେ ଆସି ଋଷ୍ୟଶୃଙ୍ଗ ଯତି
ବିଭଣ୍ଡିକ ସୁତ ତୁଲେ ଉପସ୍ଥିତ ହନ୍ତି ।
ଅପୂର୍ବ ମହାତ୍ମା ଋଷ୍ୟଶୃଙ୍ଗ ମୁନିବର
ମନୁଷ୍ୟ ଶରୀର ମୃଗ ମୁଣ୍ଡଗୋଟି ତାର ।

ରାଜାଗଣ ଦେଖିକରି ହୋଇଲେ ଆଶ୍ଚର୍ଯ୍ୟ
ଅଗସ୍ତିଙ୍କୁ ପୁଚ୍ଛିଲେ ଏ କାହା ସୁତ ଆର୍ଯ୍ୟ ।
ବଦନ୍ତି ଅଗସ୍ତି ଯେ ଶୁଣ ନୃପଗଣ
ବିଭଣ୍ଡିକ ସ୍ୱର୍ଗପୁରେ କରିଲେ ଗମନ ।
ସନ୍ନିଧେ ଖଟିଅଛନ୍ତି ସର୍ବ ଦିଗପାଳ
ସେ ଅମର ପୁରେ ବିଜେ ଦେବ ଆଖଣ୍ଡଳ ।
ନୃତ୍ୟ ଗୀତ କରନ୍ତି ଯେ ଅପସରାଗଣ
ତାଳ ଦୁନ୍ଦୁଭି ବାଦ୍ୟରେ ଉଚ୍ଛୁଳେ ଭୁବନ ।
ଏମନ୍ତ ସମୟେ ଗଲେ ବିଭଣ୍ଡିକ ଋଷି
ବାସବ ଦେବ ତାହାଙ୍କୁ ନ ଦେଲେ ଯେ ବସି
କ୍ରୁଦ୍ଧ ହୋଇ ମହାତମା ଗଲେ ଅପସରି
ଅଭିମାନେ ବାସବକୁ ନୟନରେ ହେରି ।
ଆହୋ ସୁନାସୀର ତୁହି ହୋଇ ଗର୍ବେ ମତ୍ତ
ଅଭିମାନେ ଅପମାନ ଦେଲୁ ତୁ ଆମ୍ଭନ୍ତ ।
ମୋର ନାମ ବିଭଣ୍ଡିକ ଜାଣିଥାଅ ତୁହି
ଇନ୍ଦ୍ରପଦବୀ ତୋହର ନିଷ୍ଟୟ ନେବଇଁ ।
ଏତେ ବୋଲି ଚଳିଗଲେ ମହାବ୍ରହ୍ମଋଷି
ବଦରିକା ଆଶ୍ରମରେ ପ୍ରବେଶିଲେ ଆସି ।
ଇନ୍ଦ୍ରପଦ ଘେନିବାକୁ କଲେ ସେହୁ ବୁଦ୍ଧି
ଆହାର ମୈଥୁନ ତେଜି ତପେ ହୋଇ କ୍ରୋଧୀ
ସତ୍ୟଯୁଗେ ବହୁତ ବରଷ ତପିଯନ୍ତେ
ଧବନ ପଇଣ ମୁନି ରହିଲେ ନିଷ୍ଠନ୍ତେ ।
ରଜନୀ ପ୍ରଷ୍ଟେ ନିରଞ୍ଜନ ପରସନ୍ନେ
ବସିବେ ସ୍ୱଦେବ ସୁତ ସେ ଅମର ସ୍ଥାନେ ।
ଅଭିମାନେ ବାସବର ଘେନିବେ ସେ ପଦ
ଏସନ ବାରତା ପାଇ ମହର୍ଷି ନାରଦ ।
ଧିକାର କହିଲେ ଯାଇ ଇନ୍ଦ୍ର ଦେବତାଙ୍କୁ
ନ ଚିହ୍ନିଲୁ ଇନ୍ଦ୍ର ବିଭଣ୍ଡିକ ମହର୍ଷିଙ୍କୁ ।
ନିରଞ୍ଜନ ପ୍ରସାଦେ ସେ ସ୍ୱର୍ଗପୁର ଘେନି
କାଲି ଦେବ ବଶବନ୍ତେ ଇନ୍ଦ୍ର ହେବେ ମୁନି ।
ନାରଦଙ୍କ ମୁଖୁଁ ନିରଧାରି ବାକ୍ୟ ଶୁଣି
ବିଷାଦ ଲଭିଲେ ତହୁଁ ଦେବ ବଜ୍ରପାଣି ।
ଅସକନ୍ଦା ନାମେଣ ଯେ ଏକଇ ଅପ୍ସରୀ
ତାହାକୁ ପାଶେ ହକାରି ବୋଲେ ବଜ୍ରଧାରୀ
ତୁରେ ସୁନ୍ଦରୀ ବାରେକ ରଖ ମୋର ଗିର
ବିଭଣ୍ଡିକ ଋଷି ତପ ଭଙ୍ଗ ପାଇ କର ।

ଜଗଧାର ଆଜ୍ଞା ଯହୁଁ ଦେଲେ ଦେବରାଜ
ଋଷି ଆଶ୍ରମକୁ ନାରୀ ହୋଏ ବେଗେ ସଜ ।
ବିବିଧ ବସନମାନ ଅଳଙ୍କାର ନାଇ
ସାକ୍ଷାତେ ହରମୋହିନୀ ସଦୃଶ୍ୟେ ଦିଶଇ ।
ସୁନାସୀର ବଚନରେ ତରଳ ଅପ୍ସରା
ବିଭାଣ୍ଡକ ଆଶ୍ରମରେ ପ୍ରବେଶ ପ୍ରମଦା ।
ଅନେକ ମଧୁର ବାକ୍ୟେ ମୋହିଲା ସେ ମୁନି
ଅପସରୀ ରୂପେ ମୁଗ୍ଧ ହେଲେ ତପୋଧନୀ ।
ବିଚଳିତ ଚିତ୍ତ କାମ ହେଲା ଜର୍ଜ୍ଜରିତ
କଠୋର ତପରୁ ମନ ହୋଇଲା ନିବର୍ତ୍ତି ।
ତତକ୍ଷଣେ ଅଙ୍ଗୁ ତାଙ୍କ ଖସେ ବ୍ରହ୍ମବୀର୍ଯ୍ୟ
ପୃଥ୍ୱୀ ନ ସହି ପାରିଲା ତାହାର ସେ ତେଜ ।
ବେଗେ ମଣ୍ଡଳର ତାକୁ ନିଜ କରେ ଧରି
ଗଙ୍ଗାକୁ ଫିଙ୍ଗିଣ ଦେଲେ ହୃଦେ ମେ ବହରି ।
ଇନ୍ଦୁକା ନାମରେ ଥିଲା ଏକଇ ମୃଗୁଣୀ
ତୃଷାରେ ଆଇଲା ନଦୀ ପିଇବାକୁ ପାଣି ।
ଋଷି ବୀର୍ଯ୍ୟ ପଶିଲାକ ଯାଇ ତାର ଗର୍ଭେ
କୁମାର ପ୍ରାପତ ହେଲା ଏହିପରି ଭାବେ ।
ମୃଗୁଣୀ ଗର୍ଭରୁ ଜାତ ହୋଇଲା ସନ୍ତତି
ମାନବ ଶରୀର ତାର ମୃଗ ଶିର ମୂର୍ତ୍ତି ।
ବିଭାଣ୍ଡକ ଦେଖିଲେ ସେ ପୁତ୍ର ହାନଯନ୍ତ
ଧ୍ୟାନରେ ଜାଣିଲେ ଏହୁ ଆମ୍ଭର ସନ୍ତତି ।
ଯତନ କରିଣ ମୁନି ପାଳିଲେକ ବାଳ
କ୍ଷୀର ବିନା ସେ କୁମର ହୋଇଲା ଦୁର୍ବଳ ।
ବିଭାଣ୍ଡକ କୋପ କଲେ ଇନ୍ଦ୍ର ଦେବତାଙ୍କୁ
ଭଗନ କରିଲୁ ପୁତ୍ର ଅର୍ଜ୍ଜିବା ତପକୁ ।
ତଇବେ ପ୍ରାପତ ହେଲା ମୂର୍ତ୍ତି ପୁତ୍ର ଗୋଟି
କେମନ୍ତେ ବଞ୍ଚିବ ଏହୁ କ୍ଷୀର ବିହୁନେଟି ।
ଯେବେ ନୋହିବ ବାଳକ ଶ୍ଳୋକେ କ୍ଷୀରସର
ବୃଷ୍ଟି ତତକ୍ଷଣେ କରିବୁ ଆରେ ପୁରନ୍ଦର ।
ପାଣି ଯେବେ ନ ବର୍ଷିବୁ ଜାଣିଥାଅ କୋପେ
ଅମର ପୁର ଦଗଧ କରିବି ପ୍ରତାପେ ।
ଶୁଣ ଆହୋ ମହାମନା ଋଷି ପରାଶର
ବାଳଯନ୍ତ କୋପେ କମ୍ପେ ଅମର ନଗର ।
ଯେବଣ ଦେଶରେ ଜାଣ ହୁଏ ଅନାବୃଷ୍ଟି
ଏ ମହାତ୍ମା ବାକ୍ୟେ ତହିଁ ହୁଏ ଜଳବୃଷ୍ଟି ।

ଏମନ୍ତ ବାରତା ମୁନି କହିଣ ଦିଅନ୍ତେ
ଋଷ୍ୟଶୃଙ୍ଗ ତେଜ ଭଲେ ଯୁଧିଷ୍ଠି ଅଗ୍ରତେ ।
ଯୁଧିଷ୍ଠିରେ ଦେଖିଣ କଲେ ପାଦପୂଜା
ଋଷିମେଳେ ବିଜେ ଋଷ୍ୟଶୃଙ୍ଗ ମହାତେଜା ।
ଶୁଣ ମନ ଦେଇ ଏବେ ଚୈତନ୍ୟ ମହାତ୍ମା
ସଂକ୍ଷେପି ପୃଚ୍ଛା କରିଲୁ ରାଜର୍ଷି ମହିମା ।
ଅକଳିତ ମହିମା ଯେ ସିନ୍ଧୁସମ ଜାଣି
କିଏ ମୁଖେ କହିପାରେ ଏହି ତଥ୍ୟବାଣୀ ।
କହିଚ ମହିମା ଜାଣି ନ ସରେ କହନ୍ତେ
ପାଣ୍ଡବ ସଭମଣ୍ଡି ଭାରତ ଶୁଣନ୍ତେ ।
ନିତ୍ୟକର୍ମ ବିଧାନରେ ଇଷ୍ଟ ସର୍ବଦେବା
ବାରବନ ଯାଏ ହେଲା ମହା ଯାଗସଭା ।
ପ୍ରତିଷ୍ଠି ମୁନି ଆହୁତି କଲେ ଅନୁକୂଳେ
ଖୋଇଲେକ ଲକ୍ଷେ କୁମ୍ଭ ଘୃତ ମନ୍ତ୍ରବଳେ ।
ଲକ୍ଷେ କୁମ୍ଭ ଆହୁତିରେ ଅଗ୍ନି ଜଳି କାନ୍ତ
ତୋଳିଲେ ସେ ମହାମନ୍ତ୍ର ପରାଶର ଯନ୍ତ ।
ବ୍ୟାସଦେବ କହିଲେ ଯେ ଶ୍ରୀକୃଷ୍ଣଙ୍କ ପାଶେ
ଲକ୍ଷେ କୁମ୍ଭ ଢାଳିଦେଲେ ଧର୍ମ ଷଡ଼ଶ୍ୱାସେ ।
ସନ୍ତକେ ଜାଣିଲେ ପଣ୍ଡୁ ହତ୍ୟାଦୋଷ ଗଲେ
ମହାମନ୍ତ୍ରେ ବ୍ୟାସ ତାହା ବାକ୍ୟ ଉଚ୍ଚାରିଲେ ।
ଯୁଧିଷ୍ଠିଙ୍କ ଆଗେ ବିଜେ ଧୌମ୍ୟ ପୁରୋହିତ
ଜଳରେ ଉଦକପନ୍ତ କରିଲେ ସେ ସତ୍ୟ ।
ଆକାଶ ଗଙ୍ଗା ବୋଲିଣ ଅଛି ଯେଉଁ ନଦୀ
ମେରୁ ମେଖଳା ଈଶାନ୍ୟେ କୃଷ୍ଣାବେଣୀଭେଦି
ସଂଯୋଗିଲେ ଗୋପବୃନ୍ଦମାନେ ପାଣି ଆଣି
ଏକଲକ୍ଷ ଘଟ ତହିଁ ସଂଯୋଗିଲେ ପୁଣି ।
ସ୍ନାନ ସନ୍ଧ୍ୟାକର୍ମ ଆଦି କରି ପୁରୋହିତେ
ଯୁଧିଷ୍ଠିରଙ୍କୁ ସ୍ନାହାନ କରାଇ ସମସ୍ତେ ।
ଧର୍ମଙ୍କ ଷଡ଼ ନିଃଶ୍ୱାସେ ଲକ୍ଷେକ ଆହୁତି
ଏକ ଘଟକେ ନ ଚଳେ ଦେବ ମନଭ୍ରାନ୍ତ ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ମହାତମା
ମହାମନ୍ତ୍ର ପୋଥି ଦେଲେ ତାଙ୍କୁ ଶୁକବ୍ରହ୍ମା ।
ବ୍ୟାସଙ୍କୁ କହିଲେ ତହୁଁ ଦେବ ଜଗନ୍ନାଥେ
କୁମ୍ଭେକ ନ ଚଳି ମୁନି ରହିଲା କେମନ୍ତେ ।
ଶ୍ରୀକୃଷ୍ଣ ଆଗେ କହିଲେ ନାରଦ ଯେ ମୁନି
ଘଟେକ ନ ଚଳେ ଆମ୍ଭେ ବାଣୀ ଅଛୁ ସେନ ।

ନାରଦ କହିଲେ ହେତୁ ନ ଜାଣ ରାଜାଏ
କ ପ୍ରକାରେ ନ ଚଳନ୍ତି କୁମ୍ଭରୁ ଗୋଟିଏ ।
ଏହା ଶୁଣିଣ ହରଷ ହୋଇଲେ ଅଚ୍ୟୁତ
କେବଣ ନୃପତି ତାହିଁ କହସି ଆଗତ ।
ବ୍ୟାସ ବୋଇଲେ ତୁମ୍ଭେ ହେ ଶୁଣ ଦେବହରି
ପାତାଳ ସ୍ୱର୍ଗେ ବାସୁକି ଅଟେ ଅଧିକାରୀ ।
ପଣ୍ଡୁ ରାଜା ତହ ପାତକର ତଳେ ଥିଲ
ମଧ୍ୟପୁରେ ଅନ୍ଧ ହୋଇ ପାତକେ ଉଠିଲ ।
ନାଗବଳ ଘେନି ଯେବେ ଆସିବ ସେ ରାଜା
ସେହି ଷୋଳହଜ ଆସି କରିବେକ ପୂଜା ।
ତେବେ ସେ ପଣ୍ଡୁର ସର୍ବ ପାପ ଯିବ କ୍ଷୟ
ଶୁଣିକରି ଆଶ୍ଚର୍ଯ୍ୟ ଯେ ହେଲେ ଦେବରାୟ ।
ଯୁଧିଷ୍ଠି ହରଷ ଦେଖିକରି ଦେବହରି
ପାର୍ଥଙ୍କୁ ଆଣିଲେ ତହିଁ ଅର୍ଜୁନେ ହକାରି ।
ଯୁଧିଷ୍ଠି ଦେବ ବୋଇଲେ ବ୍ରହ୍ମାଣ୍ଡ ଧାରଣ
ନବଦ୍ୱୀପ ସପ୍ତସିନ୍ଧୁ ଅଛି ତା ଶିରେଣ ।
କେହ୍ନେ ଆସିବ ସେ ପ୍ରତେ ନ କହଇ ମୁହିଁ
ସେ ମହାଭାର ମେଦନୀ ସହିବ ଯେ ତାହିଁ ।
ତା ଶୁଣି ହରି ଚାହିଁଲେ ଅର୍ଜୁନର ମୁଖ
ପିତୃକାର୍ଯ୍ୟ ନିମନ୍ତରେ ସହିବୁ ତୁ ଦୁଃଖ ।
ପାତାଳ ସ୍ୱର୍ଗକୁ ତୁହି ଯିବୁ ଏହିକ୍ଷଣି
ବାସୁକି ନାଗବଳକୁ ସଙ୍ଗେ ଆସ ଘେନି ।
ନାରାୟଣଙ୍କ ବଚନେ ସନମତ କରି
ବହୁ ସାନନ୍ଦେ ଚଳିଲେ ସେ ଗାଣ୍ଡିବ ଧାରୀ ।
ପୁଣି ବ୍ୟାସ ପଢାଇଲେ ଲକ୍ଷେକ ଆହୁତି
ସେ ବିଧି ମହାମନ୍ତ୍ରକୁ ଟେକି ତକ୍ଷଣାନ୍ତି ।
ଚଳିଲେ ପାର୍ଥିବ ବୀର କ୍ଷତ୍ରିୟ ପୁଙ୍ଗବ
ଶ୍ରୀକରରେ ଶୋଭିବନ୍ତ ଧନୁ ଯେ ଗାଣ୍ଡିବ ।
ରଥ ଗଜ ଅଶ୍ୱ ତୁଲେ ନାହିଁ ଯେ ପଦାତି
ଏକାକୀ ଜଣେ ଚଳଇ ସେ ଶାନ୍ତନୁଙ୍କ ନାତି ।
ହିମବନ୍ତ ସ୍ଥିତ ବନ ପର୍ବତର ତଟେ
ତହିଁର ସମୀପେ ଅଛି ପାତାଳକୁ ବାଟେ ।
ମହାବ୍ରହ୍ମକୁ ଅର୍ଜୁନ ହୃଦେ କରି ଲୟ
ଲକ୍ଷେ ଯୋଜନ ପାତାଳେ ପଶେ ଧନଞ୍ଜୟ ।
ନାଗମାନେ ଆଶ୍ଚର୍ଯ୍ୟ ଯେ ହେଲେ ତାହାଦେଖି
କାହିଁର ନର ଅଇଲୁ କୋ ପୁର ଉପେକ୍ଷି ।

ପାର୍ଥ ବୋଇଲେ ତୁମ୍ଭର ରାଜା ସପ୍ତଶାଖା
ତାହାଙ୍କୁ ମୁଁ ନିମନ୍ତ୍ରିବ ଲଗି ମୋତେ ଦେଖା
ସେଠାବରୁ ଉଜାଯାନ୍ତି ପାଣ୍ଡବ କହାଣୀ
ଅନନ୍ତ ନାଗ ବାସୁକି ଦେବଙ୍କୁ ଯେ ଭେଟି ।
ଦେଖିକରି ସାନନ୍ଦ ଯେ ସେ ଅନନ୍ତ ରାଜା
ଅର୍ଜୁନଙ୍କୁ ବାସୁକି ଯେ କରେ ଅର୍ଘ୍ୟ ପୂଜା ।
ବହୁ ସୁରୁଷାର୍ଥ ତାକୁ କରିଣ ବାସୁକି
ପୁରେ ଉତ୍ସବ କରାଏ ଅର୍ଜୁନଙ୍କୁ ଦେଖି ।
ଅନେକ କୁଟୁମ୍ବ ଘେନି ନାଗ ଯେ ଅନନ୍ତ
ବହୁତ ତପସ୍ୱୀ ହୋଇ ହେଲେ କୃତ୍ୟ କୃତ୍ୟ
କରଯୋଡ଼ି ପଚାରଇ ଶୁଣ ତୁ ଫାଲ୍‌ଗୁନ
ତୋତେ ଯେ ଦେଖିଲି ମୁହିଁ ଜୀବନ ମୋ ଧନ୍ୟ
ମୋତେ ଅନୁଗ୍ରହ କଲୁ କିପାଁ ଧନଞ୍ଜୟ
କେବଣ ହେତୁ ମୋ ପୁରେ କରିଲୁ ବିଜୟ ।
ଅର୍ଜୁନ ବୋଇଲେ ତାତ ସାବଧାନେ ଶୁଣ
ମୋତେ ପଠାଇ ଆଜ୍ଞା ଦେଲେ ଦେବ ନାରାୟଣ
ରାଜସୂୟ ଯାଗ କରୁଛନ୍ତି ଧର୍ମସୁତ
ମୁହିଁ ଯେ ଅଇଲି ତୋତେ ନେବାର ନିମିତ୍ତ ।
ବେଗ ହୋଇ ଆସ ତ ତ ଯିବା ମଧ୍ୟପୁରେ
ନାଗବଳମାନ ଘେନି ଯିବୁ ସମ୍ଭ୍ରମରେ ।
ହାସ୍ୟ କରିଲ ଅନନ୍ତ ଅର୍ଜୁନ ବଚନେ
ମୋର କଥା କି ନ ଜାଣ ଅବା ନାରାୟଣେ ।
ଏ ମହୀମଣ୍ଡଳେ ଛନ୍ତି ନାନା ଜୀବଜନ୍ତୁ
ମୋହର ଶିରେ ସେ ସବୁ ସନ୍ତାର ହେତୁ ।
ସଚଳାଚଳ ଅଟଇ ପୃଥିବୀ ମହାଭାର
ଯତ୍ନେ ସମ୍ଭାଳଇ ମୁହିଁ ତାହାକୁ ହେ ବୀର ।
ଅନେକ ଅଛଇ ବନ ଉଚ୍ଚର ପର୍ବତ
ମୋହ ଅଭାବରେ ସେହୁ ହେବ ରସାଗତ ।
ଅନନ୍ତର ବଚନେ ଯେ ଅର୍ଜୁନ ଉତ୍ତର
ଯାଅ ବୋଲି ଆଜ୍ଞାମୋତେ ଦେଲେ ଦେବହରି
ମୁହିଁ ତହିଁ ଉତ୍ତର ତ ନ କଲି ଏମନ୍ତ
ଏଡ଼େ ବଡ଼ ଭାର ଏହୁ ସହିଅଛୁ ନାଥ ।
ମୁହିଁ ଏହାକୁ ନ ନେଲେ ଫେରିବ କେମନ୍ତ
ନିଶ୍ଚୟେ କୋପ କରିବେ ମୋଠାରେ ଅଚ୍ୟୁତ
ପ୍ରତିଜ୍ଞା କରି କହିଲି ମୁହିଁ ଧନଞ୍ଜୟ
ତ୍ରୈଲୋକ୍ୟ ମଧ୍ୟରେ ନାମ ବହିଲି ବିଜୟ ।

ନ ଜାଣିଲେ ନ ବାହୁଡେ ମୋହର ସାରଥି
ସକଳ ପ୍ରତିଜ୍ଞା ମୋର ହୋଇଲେ ଅସାଧି ।
ସଙ୍ଗସ୍ଥଳେ ଯୋଡନ ସେ ଶୁଭୁଅଛି ଧୁନ
ପାର୍ଥ ଏଣିକି ଆସିବ ଭାରତର ସେନ ।
ଦଣ୍ଡ ଗଭାଏ ଅଟନ୍ତ ବଳ ଦକ୍ଷିଣସୁ
ବାସୁକି ନ ଘଟେ ମର୍ଦ୍ଦି ଦେବ ଉଦଧିସୁ ।
ଏବେ ଜଗତ ବୋଇଲେ ସିବ ବସ୍ତିବାକୁ
ଅନନ୍ତ ବୋଲନ୍ତି ଘଟ ଜେତ ମୁଁ କାହାକୁ ।
ଏବେ ପଣ୍ଡିତ ହୋଇ ତୁ ଗଲୁର ହୁଡ ଛ
ଏ ପୃଥିବୀ ଉଣ୍ଡାସୁ ସେ ଦେବ ଉପାଗତ ।
ଅର୍ଜ୍ଜୁନ ବୋଇଲେ ପୃଥ୍ୱୀ ଗ୍ରନ୍ଥ ନାଗରାଜା
ମୁହିଁ ପୃଥ୍ୱୀ ଧରନ୍ତ ତୁ ଦେଖ ହୋଇ ଯା ଯା ।
ଅରଜନ ବଚନରେ ଚକ୍ରଡିଣି ସାକ୍ଷୀ
ଶୁଣିଣ ଉଷାଢବ ହୋଇଲେ ବାସୁକି ।
ସଲଗଦାଗପୁଣ ନ ଅଟଇ ନୟତ
ଯାକୁ ଅସମ୍ଭବ ବୁଢେ ଏ ମହାଭାରତ ।
ବାସୁକି ବୋଇଲେ ଜ୍ଞାନ ତୋହର ସେ ନାହିଁ
ଏତେ ଗର୍ବ କହୁ ନରକୁଳେ ଜନ୍ମ ହୋଇ ।
ଏ ପୃଥ୍ୱୀର ମହାଭାର ଦେବେ ଅଗୋଚର ।
ଯା ଭାର ବହି ନ ପାରେ ମେରୁ ସେ ମନ୍ଦର ।
ଅର୍ଜ୍ଜୁନ ବୋଇଲେ ତନ୍ତ୍ର ଜାଣିନି ନ ଜ୍ଞାନ
ଧରିବ ଭାରକୁ ମୁହିଁ ଗ୍ରନ୍ଥ ମହୀଆଳ ।
ଅର୍ଜ୍ଜୁନର ବଚନରେ ବାସୁକି ସେ ନାଗ
ବୋଲେ ଦେଖିବା ଧରିବ କେମନ୍ତେ ମହୀଭାଗ ।
ଏସନ ବଚନ ଶୁଣି ପାର୍ଥ ଧନୁର୍ଦ୍ଧର
ମହା ଭଇରବ ମୂର୍ତ୍ତି ହୁଏ ଅବତାର ।
ଏକପାଦ ଆଗୁସାରେ ଆସେ ଶାରଧୀରେ
ମହାତେଜ ମୂର୍ତ୍ତି ଧରି ପାର୍ଥ ଧନୁ ଧରେ ।
ଧନୁହସ୍ତେ ନେଇ ଦେଲା ଡାହାଣତ ଜାନୁ
ଆରେକ ହସ୍ତ ଲଗାଇ ସେ ମଧ୍ୟ ଭୁବନୁ ।
ଜାନୁରେ ଏକହସ୍ତେ ଯେ ଆରହସ୍ତେ ପୃଥ୍ୱୀ
ଅରଜୁନ ଧଇଲା ସେ ମହାଭାର କ୍ଷିତି ।
ସ୍ତୁତ ଏବେ ଅନନ୍ତ ଯେ ବୋଲେ ଫାଲଗୁନ
ଛାଡ଼ ତୋହର ଫଣା ମୁଁ ଧଇଲି ମେଦନୀ ।
ଅନନ୍ତ ବୋଇଲେ ତୁମ୍ଭ ଜନ୍ମଲୁ କସ ହେ
ନବଦ୍ୱୀପ ସାଗର ଜ ଧନୁହସ୍ତେ ରହେ ।

ପଦ୍ମ ପୃଥ୍ୱୀଭାର ମୁହିଁ ଫେର ଦେବ କାଢ଼ି
ତୋହର ଉପରେ ପଡିଯିବ ଆଜ ମାଡ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭ ଏମନ୍ତ ନ କହ
ଗ୍ରନ୍ଥବେଳ ପୃଥିବୀ ତୁ ଛଣ୍ଡିଲରେ ଯାଅ ।
ଅର୍ଜ୍ଜୁନ ବଚନେ ଫେର ଭାବଇ ଅନନ୍ତ
ଅଣ୍ଡିନେ ଉଦ୍ଧର ଧର ଧରେ ସାବ ପାର୍ଥ ।
ଅଳସ ଜାଣ ବାସୁକି ଛାଡ଼ିଲା ଅନଳ
ଦେଖେ ମହାଭାର ପୃଥ୍ୱୀ ରହେ ଧନୁହସ୍ତ ।
ଶୁଣ ତୁହେ ଚକ୍ରଭର ଅର୍ଜ୍ଜୁନ ମହିମା
ଆକାଶରେ ସାଧୁ ସାଧୁ କଲେ ଦେବ ବ୍ରହ୍ମା ।
ଦେଖିଲେ ଆଶ୍ଚର୍ଯ୍ୟ ସେ ହେଲେ ଭାଗବତ
ଧଇଲା ପାର ଅର୍ଜ୍ଜୁନ ପୃଥ୍ୱୀ ଅଚଳ ।
ଧନୁହସ୍ତେ ରହିଲା ସେ ମହୀ ମହାଭାର
ସଗଳସାଗର ଗିରି ପର୍ବତ ଆଦର ।
ସପ୍ତଦ୍ୱୀପ ପୃଥ୍ୱୀ ଆଦ ଯେତେ ଧରାଧରେ
ସମସ୍ତେହେଁ ରହିଲେ ଯେ ଯାହାର ହେଜ୍ଜରେ
ଅନେକ ସାନନ୍ଦ ହେବେ ଦେଖି ମହୀପାଳ
ଅର୍ଜ୍ଜୁନର ଉପରେ ନେଇ ଦେଲେ ରତ୍ନମାଳ ।
ପ୍ରତ୍ୟକ୍ଷରେ ରୂପ ତନୁ ନାରାୟଣ ମୂର୍ତ୍ତି
ଅନନ୍ତ ବାସୁଦେବ ଜ ଧରିଅଛି ପୃଥ୍ୱୀ ।
ଉଣ୍ଟସୁ ଅର୍ଜ୍ଜୁନ ତୁମ୍ଭ ଅନନ୍ତାବତାର
ବାବୁ ଷାଇ ଯେବେ ତୁମ୍ଭ ଯାଙ୍କୁ ସେବାକର
ଦେଖିଲଛ ଆଶ୍ଚର୍ଯ୍ୟ ଯେ ହେବେ ନାଗମାନେ
ଯାଅ ନାଗରାଜା ଯେନ ତୋହର ସଇନ୍ୟ ।
ଅନନ୍ତ ବୋଇଲେ ବାବୁ ଭାର ହେଲା ତୋତେ
ଦେଖିଣ ଆଶ୍ଚର୍ଯ୍ୟ ମୁହିଁ ପିବଇ କେମନ୍ତେ ।
ବାସୁକି ରାଜାର ଅଟେ ଏକଇ ଦୁଲଣୀ
ତାହାର ନାମ ଅଟଇ ଯେ ପୁଣି ସନ୍ଧ୍ୟାବାଳୀ ।
ଅନନ୍ତ ଯେ ହଜାରଣ ପାଖେ ଦୁହିତାକୁ
ବୋଲେ ତୁ ସେବା କରିବୁ ଅର୍ଜ୍ଜୁନ ବୀରକୁ ।
ଜାଣିଥାଅ ମୁହିଁ ଏବେ ଯାଉଛି ଉପରେ
ତୁ ଉବାରନ୍ତ ଖଟିବୁ ଏହାର ପଦ୍ମରେ ।
ଶଙ୍ଖରେ ଜଳ ଘେନଣ ଧୋଇବୁ ଯା କାୟେ
ଝୀନବସ୍ତ୍ର ଗୋଟି ଆଣି ପିନ୍ଧାଇବୁ ମାୟେ ।
କସ୍ତୁରୀ ଗନ୍ଧ ଚନ୍ଦନ ଲେପିବୁ ଖସାରେ
ଅନେକ କୁସୁମଗଭା ଖଞ୍ଜିବୁ କେଶରେ ।

ଅମୃତ ଯୋଗାଉମାନ ଦେଉଥିବା ଛନ୍ତି
ଆଚମନ କରାଇବା ଜଳ ଧରି ଥାନ୍ତି ।
ମାଗୋ ଯେମନ୍ତେ ଖଟନ୍ତି ସ୍ୱାମୀଙ୍କୁ ଉର୍ବଶୀ
ସେହିମତ ଖଟିଥିବା ସବୁ ନାଗ କନ୍ୟା ।
ମାଗୋ ଯଦ୍ୟପି ଶ୍ରୀବତ୍ସ ପାଇବ ଅର୍ଜୁନ
ତୁ ଧରିବୁ ପୃଥ୍ୱୀ ଲେଖେ ସ୍ଥିର କରି ମନ ।
ମାଗୋ ଯେସନେ ଉଦାସ ନୋହେ ସବ୍ୟସାଚୀ
ତେସନ ପ୍ରକାରେ କୃଷ୍ଣ କହିଥିବା ସଞ୍ଚି ।
ଅର୍ଜୁନଙ୍କୁ ବୋଲେ ତୋଷ ଲଭିବ ଉଲୁପି
ତୋ ଚରଣେ ଖଟିଥିବ ମୋର କନ୍ୟାଗୋଷ୍ଠି
ଅର୍ଜୁନ ବୋଇଲେ ଆହେ ନାଗକୁଳ ରଜା
ନାଗବଳ ଘେନି କୃଷ୍ଣ ଶୀଘ୍ର ହୋଇ ଯା ଯା ।
ଯେତେକ ନାଗ ଅଛନ୍ତି ତୋହର ଏ ପୁରେ
ବାଳବୃଦ୍ଧ ଆଦି ଘେନି ଯାଅ ତୁ ସଙ୍ଗରେ ।
ଅର୍ଜୁନର ଆଜ୍ଞାରେ ସେ ସର୍ବ ନାଗବରେ
ସଜ ହୋଇ ବାହାରିଲେ ସେ ଦ୍ୱଆର ବାଟେ
ସହସ୍ରେକ ଫଣା ଖଟେ ଫଳା ଲଗେ ଶିରେ
ପାତାଳ ନଗର ହୋଇ ବାହାରେ ଦ୍ୱଆରେ
ତାହା ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ମନୁଷ୍ୟେ
କାଳ ଗରଳମାନ ଯେ ଉଡନ୍ତି ଆକାଶେ ।
ଆନନ୍ଦେ ଭୁଜଙ୍ଗଗଣ ଯାଉଛନ୍ତି ଗର୍ଜି
ଅନେକ ଗିରି ବୃକ୍ଷ ଯେ ପଡୁଅଛି ଭାଜି ।
ଅର୍ଜୁନଙ୍କୁ ବହୁରୂପେ ଖଟଇ ନାଗୁଣୀ
ବହୁତ ପରିଚର୍ଯ୍ୟ ଯେ ଦାସ ଦାସୀ ପୁଣି ।
ପ୍ରଭାତ କାଳରେ ସ୍ନାନ ସନ୍ଧ୍ୟା କରାଇଣ
ଆସ୍ଥ ଅଳଙ୍କାର ମାନ ଅନେକ ଖଞ୍ଜିଣ ।
ବହୁତ ଅମୃତ ବଧି ବେଢ଼ଥାଇ ସଞ୍ଚି
ଭବନରେ ଭୋଜନ ବସି କରେ ସବ୍ୟସାଚୀ ।
ଭକତଭବନରେ ଖଟିଥାଇ ସେ ବନିତା
ପୂଜାବଧିରେ ଯେମନ୍ତେ ଖଟେ ପତିବ୍ରତା ।
ଏସନ ଭକତଭରେ ଖଟେ ସନ୍ଧ୍ୟାକାଳୀ
କରଯୋଡ଼ି ସଦା ଥାଏ ଦାସୀଠାରୁ ବଳି ।
ସମସ୍ତେ ନାଗରାଜା ଚଳିଲେ ହରଷେ
ପ୍ରବେଶିଲେ ଚତୁର୍ଦ୍ଦଶ ଭୁବନେ ଧର୍ମଦେଶେ ।
ବେଣାଭରେ ବାରତା ଯେ କହିଲ ସଭରେ
ଅନନ୍ତ ବଳସ୍ତ କଲେ ଇନ୍ଦ୍ରପ୍ରସ୍ଥରେ ।

ଶାମ୍ବକପଟ ବୋଇଲା ସେ ପାଣ୍ଡୁଜନଙ୍କୁ
ବାସୁକି ଆଇଲେ ଜଣା ଭୀମ ଠାକୁରଙ୍କୁ ।
ପାଣ୍ଡବ ବୋଲେ ସ୍ୱାମି ଉରସେ ବାସୁକି
ଅର୍ଜୁନ ଉରସେ ଗଲେ ପାତାଳ ପୁରୀକୁ ।
ଭୀମ ବୋଇଲେ ହରି ହେ ଆସ ବେଗହୋଇ
ଆଜ୍ଞାମାନ ଗଲେ ବେଗେ ଗୋବିନ୍ଦ ଗୋସାଇଁ
ଗଣ୍ଡିପ ଦ୍ୱାର ପଥରେ ହୋଇ ସଜବାଜ
ବାରଣ ଗଞ୍ଜନ ଗଲେ ଛତ୍ର ନେତଧ୍ୱଜ ।
ଗିରି ଶିଖରେ ଉଠିଲେ ଯାଇ ଦେବ ହରି
ସଙ୍ଗେ ଯୋଷୀର ଯେ ଦଶାବର୍ଣ୍ଣ ନାଗନାରୀ
ପାଞ୍ଚସହସ୍ର ଭ୍ରାତ ସେ ପାଣି ଦ୍ରବ୍ୟ ଘେନ
ମହୀ ତାଡ଼ୋଳା ହେଉଛି ଫୁଫୁକାର ଧ୍ୱନି ।
ନାଗବଳ ସକଳର ଦେଖିଲେ ମୂରତି
ଖଗେଶ୍ୱରଙ୍କୁ ସ୍ମରଣ କଲେ ଲକ୍ଷ୍ମୀପତି ।
ବଦରାସ୍ତୁତ ଋଷିମାନେ ଯାଇଁ ଭେଟି
ଉଚ୍ଚସ୍ତ ଶ୍ରୀ ଜଗନ୍ନାଥ ବୈନତେୟ ପିଠି ।
ଯହୁଁ ଉଡାଣିଲା ତହୁଁ ଖଗବର ରୂପ
ଦେଖିକରି ଫଣାଙ୍କର ଭଙ୍ଗ ଗଲା ଦର୍ପ ।
ନାନାବିଧ ବର୍ଣ୍ଣରୂପ ମୂର୍ତ୍ତି ଧରିଥିଲେ
ଗରୁଡ଼ଙ୍କୁ ଦେଖିକରି କଙ୍କର ହୋଇଲେ
ନାଗବଳ ଘେନି କରି ବଳସ୍ତ ବାସୁକି
ପ୍ରଣତ ହୋଇଲେ ବାସୁଦେବଙ୍କୁ ସେ ଦେଖି ।
ଉତୁରିଲେ ବୈନତେୟ ପୃଷ୍ଠରୁ ଗୋବିନ୍ଦ
ଅନନ୍ତ ବହୁତ ଭାବେ ପୂଜେ ପ୍ରଭୁପାଦ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଅଇଲୁ ବାସୁକି
ଅନେକ ଭକ୍ତିରେ ଏବେ ଖଟ ଯୁଧିଷ୍ଠିରଙ୍କି ।
ଆହୋ ନାଗରାଜା ତୋର ତହିଁ ପାର୍ଥ ଗଲା
କୃଷ୍ଣ ତ ଅଇଲୁ ସେହି କାର୍ତ୍ତିକ ରହିଲା ।
ସେ ବୋଲେ ମହତ ତୁ ତ ପୁରୁଷ ଉତ୍ତମୀ
ତୁ ଦେବ ଅନନ୍ତ ମୂର୍ତ୍ତି ହେଉ ଜଗପତି ।
ଅର୍ଜୁନ ବୀର ପ୍ରତ୍ୟକ୍ଷେ ନାରାୟଣ ସେହି
ଧନୁହସ୍ତେ ମେଦିନୀକୁ ହେଳେ ଅଛି ବହି ।
ସ୍ୱାମି ଦେବେ ଅଗୋଚର ଅଶେଷ ମହିମା
ତୋହର ଅଟଇ ସିନା ଏସନ ଗରିମା ।
ଅନେକ ମହିମା ଏହେଲେ କହିଲା ବାସୁକି
କୃଷ୍ଣ ବୋଲେ ନ କହ ତୁ ଧର୍ମଯୁଧିଷ୍ଠିଙ୍କି ।

ବହୁତ ବ୍ୟାକୁଳ ହେବେ ଧର୍ମ ତାହା ଶୁଣି
ବୋଲିବେ ଭାଇଙ୍କୁ ମାଡ଼ ବସିବ ଧରଣୀ ।
ନାଗ ସଇନ୍ୟ ଘେନଣ ସେ ଅନନ୍ତ ରାଜା
ହରି ସଙ୍ଗେ ଗଲା ଧର୍ମେ କରିବାକୁ ପୂଜା ।
ଅନନ୍ତ ଘେନି ଚଳିଲେ ଜଗତମୋହନ
ବିଜୟ କରିଲେ ସ୍ୱାମୀ ସଭାର ଆସ୍ଥାନ ।
ଦେଖି ପରମ ସାନନ୍ଦ ହୁଅନ୍ତି ନରେନ୍ଦ୍ର
ନାଗ ନୃପତିଙ୍କୁ ଦେଲେ ବହୁ ପରସାଦ ।
ଏ ନାଗରାଜାଙ୍କୁ ଆମ୍ଭେ ଦେଖିବା ହୋ କାହିଁ
ଅନେକ କାଳ ରାଜାଏ ଦେଖିଲା ତ ନାହିଁ ।
ଅନୁକ୍ରମେ ଗୋପାଳଙ୍କୁ କହନ୍ତି ମୋହନ
ନାଗରାଜା ସଇନଙ୍କୁ ଦିଅ କ୍ଷୀରପାନ ।
କ୍ଷୀର ପାନରେ ରହିଲେ ନାଗବଳମାନେ
ଧୀଲାଇ ଲେଉଡ଼ନ୍ତି କରି ଗରୁଡ଼ ଦର୍ଶନେ ।
ଶ୍ରୀହରି ବୋଇଲେ ତୁମ୍ଭେ କାହିଁକି କାତର
ଗରୁଡ଼ଙ୍କୁ ଦେଖି କେହି ଭ୍ରାନ୍ତି ଯେ ନ କର ।
ଏ ମହାଯାଗ ଅଟଇ ଧର୍ମର ସଭା
କାହିଁର ବଳେ କାହାକୁ ଲଙ୍ଘନ୍ତି କେ ଅବା
ସୁଖେ ଥାଅ ତୁମ୍ଭେ କ୍ରୀଡ଼ାରସ କୁତୂହଳେ
ନାରାୟଣ ବଚନରେ ରହିଲେ ସକଳେ ।
ବିହାର କରନ୍ତି ପୁଣି ଆପଣା ଇଚ୍ଛାରେ
କଳୁ ଗରୁଡ଼ଙ୍କୁ ଭୟ ଥାଇ ଯେ ଅନ୍ତରେ ।
ଅନନ୍ତ ନାଗ ଘେନଣ ଏଣେ ଦେବ ହରି
ଯୁଧିଷ୍ଠି ଦେବ ଛାମୁରେ ଯାଇ ବିଜେକରି ।
କୃଷ୍ଣ ବୋଇଲେ ପାତାଳପୁର ନାଗରାଜା
ସ୍ୱାମୀଙ୍କର ଭକତିରେ କରି ପାଦ ପୂଜା ।
ଛାମୁରେ କହିଲେ ଯାଇ ପାତାଳର ସ୍ୱାମୀ
ଯୁଧିଷ୍ଠିର ଦେବଙ୍କର ପାଦେ ପରଣାମି ।
କରତାଳ ଦେଲେ ତହୁଁ ଦେବ ନାରାୟଣ
ହସ୍ତରେ ହସ୍ତ ଦେଇଣ ବିନତୀ ହୋଇଣ
ଲକ୍ଷେଶ୍ୱର ସୁବର୍ଣ୍ଣ ଯେ ଦେଖା ଦରଶନ
ନାଗମାନେ ତାହାଛନ୍ତି ସଙ୍ଗତରେ ଘେନି ।
ଭଣ୍ଡାରେ ଥୋଇଲେ ନେଇ ସର୍ବ ଧନମାନ
ନମିଷକେ ଦୁର୍ଯ୍ୟୋଧନ ଦେଲା ସବୁ ଦାନ ।
ଶ୍ରୀକୃଷ୍ଣଙ୍କ ଆଜ୍ଞା ହେଲା ସଭା ମଧ୍ୟେ ବସ
କୁ ଜବେଇ ଆସ୍ଥାନରେ ବସିଲେ ନାଗେଶ ।

ଦେଖିଲେକ ଆହୁତ ପରାଶରଙ୍କ ତନୟେ
ମହାଅନଳେ ଦେବତା ସୁଖେ ସୁସ୍ଥ ହୁଏ ।
ଢାଳନ୍ତି ଆହୁତ ଘୃତ ଧର୍ମରାୟ ତୋଳ
ଆକାଶ ଲଗୁଛଇ ସେ ଆହୁତ ପ୍ରଜ୍ୱଳ ।
ସ୍ନାହାନ ଭୋଜନ ଅଟେ ଯାର ଯେତେ ଇଚ୍ଛା
ଦାନରେ ତୋଷ ହୋଇଣ ଯେ ଯାହାର ବାଞ୍ଛା ।
ଶତ୍ରୁ ମିତ୍ର ସମସ୍ତେ ଯେ ହେଲେ ଏକମୂର୍ତ୍ତି
ଦାନମାର୍ଗରେ ଯେତୁ ଯା ମାଗନ୍ତି ପାଆନ୍ତି ।
ଯେତେକ ଅଛନ୍ତି ତହିଁ ପିତୃଜନମାନେ
ସମସ୍ତେ ତୃପତ ହେଲେ ଘୃତରସପାନେ ।
ଅନେକ ସମ୍ବର୍ଦ୍ଧେ ଦ୍ୟନ୍ତି ଅନେକ ଯେ ଧନ
ଦରିଦ୍ର ଦୁଃଖୀ ନାହିଁ ଯେ ଅବଳ୍ପିଲେ ଦାନ ।
ସତ୍ୟ ତ୍ରେତୟା ଦ୍ୱାପର ଆଉ ଯୁଗ କଳି
ଚାରିଯୁଗକୁ ଗଣ୍ଡାଏ ଏହାକୁହିଁ ବୋଲି ।
ଚତୁର୍ଦ୍ଦଶ ଗଣ୍ଡାରେ ଯେ ହୁଏ ମନୁ ଜାଣ
ସାତ ମନୁରେ କଳପେ ହୁଅଇ ପ୍ରମାଣ ।
ସାତକଳପେକ ଏକ ଭୁଆଳେକ ବୋଲି
ଓଂଣଇଶ ଭୁଆଳକେ ଚନ୍ଦ୍ରେ [illegible]
ଏତେକାଳ ଯାଏ ଭୋଗ ହୋଇଲେ ପୃଥ୍ୱୀର
ରମାୟଣ ଭରତ ଯେ ହୁଅଇ ନକର ।
ଚନ୍ଦ୍ରେକ ପୂରିଲେ ପୃଥ୍ୱୀ ପ୍ରଳୟରେ ଯାଇ
ଏତେକାଳ ପରିଯନ୍ତେ ନିଦ୍ରା ହୋଇଥାଇ ।
ପୁଣହିଁ ସେ ନିରଞ୍ଜନ ହୁଅଇ ପୁରୁଷ
ବ୍ରହ୍ମଲୋକ ଶିବଲୋକ କରଇ ଉଦ୍ଦେଶ୍ୟ ।
ପୁଣ ନବସୃଷ୍ଟି ଜାତ କରଇ ବିଧାତା
ଉତ୍ପତ୍ତି ପ୍ରଳୟ କରେ ଯେ ଆମ୍ଭ ଦେବତା ।
ପୁଣ ଏହୁ ସତ୍ୟଯୁଗ ହୁଅଇ ଆବର
ଉପୁଜନ୍ତି ପୁରୁରବା ଆଦି ନୃପବର ।
ଆବର ଧାର୍ମିକଶ୍ରେଷ୍ଠ ମାନଧାତା ବୀର
ପର୍ଶୁରାମ ଜାନୁଭଣ୍ଡ ଭଗୀରଥ ଶୂର ।
ହରିଚନ୍ଦନ ଶମ୍ଭୁ ଯେ ଦକ୍ଷ ପ୍ରଜାପତି
ଏ ସମସ୍ତ ଏ ପୃଥ୍ୱୀରେ ଜନମ ହୁଅନ୍ତି ।
ସତ୍ୟଯୁଗର ଅନ୍ତରେ ତ୍ରେତୟା ଧାରଣ
ପୌଲସ୍ତି ବଂଶେ ଉପୁଜେ ପୁଣହିଁ ରାବଣ ।
ଅଲୌକିକ ବର ପାଇ ସେ ହରଇ ସୀତା
ଏପରି ଅଲୌକିକ ଯେ ସଂସାରର କଥା ।

ଏଥିଅନ୍ତେ ସୂଜନେ ହେ ଶୁଣ ଚେତ ମନ
ଯାଗସ୍ଥାନେ ଏତେକ ହୁଏ କଥୋପକଥନ ।
ଏଣେ ଦୁର୍ଯ୍ୟୋଧନ ରାଜା ବହୁପୁଣ୍ୟ ଅର୍ଜି
ଦାନରେ ସକଳ ଧନ ଦଅଇ ବର୍ଜି ।
ଭାଣ୍ଡେକ ଦେଲେ ଯେ ତାହା ଶତେଭାର ହୋଇ
ଦୁର୍ଯ୍ୟୋଧନ ଛୁଇଁଲେ ଯେ ତାହା ନ ସରଇ
ଶଙ୍ଖନିଧି ପଦ୍ମନିଧି ଯାହାର ହସ୍ତରେ
ଭାରେ ବ୍ୟୟ କଲେ ପୂର୍ଣ୍ଣ ହୁଏ ଶତେ ଭାରେ
ସୋମ ବଂଶରେ ଯାହାର ଯେତେ ପାପ ଥିଲା
ସେ ମହାଯାଗ କରନ୍ତେ ଦହନ ହୋଇଲା ।
ଅନେକ ଜନ୍ମର ଚଣ୍ଡି ଖଣ୍ଡଇ ଦୁଷ୍କୃତ
ମହା ପୁଣ୍ୟତୋୟା ନଦୀ ବଶେ ପୁଣ୍ୟବନ୍ତ ।
ଯେବଣ ନର ପଢ଼ନ୍ତି ଭାବ ହୃଦଗତେ
ଦହନ ହୁଏ ତାଙ୍କର ପାପ ଥାଏ ଯେତେ ।
ଯେବଣ ଜନ ପଢ଼ଇ ଶ୍ରବଣ ବା କରେ
ଧନ ସମ୍ପଦ ପାଇଣ ଯାଏ ସ୍ୱର୍ଗପୁରେ ।
ହିଂସାଦ୍ୱେଷ ପାପଆଦି ଯେତେ ହୃଦେ ଥାଇ
କୁଳର କଳଙ୍କମାନ ସବୁ ନାଶ ଯାଇ ।
ହତ୍ୟାଦୋଷକୁ ମୋଚନ କରେ ଯାଗଗୋଟି
ଦୃଢ଼କର ହୃଦଗତେ ଏ କଥା ଭାବଟି ।
ଜୟ ଜୟ ଜଗନ୍ନାଥ ନୀଳଗିରିସାଇଁ ,
ଜୟ ଜୟ ଜଗନ୍ନାଥ ଭକ୍ତ ଭାବଗ୍ରାହୀ ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧର ।
ତୋହର ପାଦେ ଶରଣ ଶ୍ରୀସାରଳା ଦାସ
ମମ କଣ୍ଠେ ବସି ଶୁଦ୍ଧପଦମାନ ଭାଷ ।

---

## ଶିଶୁପାଳ ବଧ ଓ ତାହାର ପୂର୍ବଜନ୍ମ ବୃତ୍ତାନ୍ତ

ଚଇତନ ପୁଚ୍ଛା କଲେ କହ ଆହେ ମନ
ଏବେ ସେ ସଭା ସମ୍ପନ୍ନ ହୋଇଲା କେସନ ।
ମାଘମାସ ପୌର୍ଣ୍ଣମାସୀ ତିଥି ରବିବାର
ମଘାନାମେ ନକ୍ଷତ୍ର ଯେ ଭୋଗ ସେ ଦିନର ।
ବବନାମେ କରଣ ସୌଭାଗ୍ୟ ନାମେଯୋଗ
ସେ ଦିନ ସମାପନ ସେ ହେଲା ମହାଯାଗ ।

ସ୍ନାହାନ କରିବେ ଉତ୍ସବରେ ମହାଯଜ୍ଞ
ସେକାଳେ ଅମୋକ୍ଷ ବ୍ୟକ୍ତି ମୋକ୍ଷ ଯେ ହୁଅନ୍ତି
ସୁବର୍ଣ୍ଣ ଘଟକୋଟି ଯେ ସୁବର୍ଣ୍ଣର ଝରା
କୋଟିଏ ତୀର୍ଥ ଯେବଣ ଜଳପୂ ପୁଷ୍କର ।
ଅନ୍ନଦାନ ଦେଇ ତ୍ରିଶ ଜଣେକ ଚରଣେ
ଯୁଧିଷ୍ଠିରଦେବଙ୍କୁ ସ୍ନାନ କରାନ୍ତି ବ୍ରାହ୍ମଣେ ।
ସ୍ନାହାନ ସାରଣ ଦେଲେ ଅନେକ ଯେ ଦାନ
ଷଡ଼ରସମହାରସ ଯେଣ କରନ୍ତି ଭୋଜନ ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ବ୍ରାହ୍ମଣକେ ଦଶମାଢ଼ ସୁବର୍ଣ୍ଣ ସମ୍ପାଦ ।
ବୈତରଣୀ ନଦୀଷ୍ଠରେ ଉଦକରେ ସ୍ନାନ
କରି ବ୍ରାହ୍ମଣକେ ଦେଲେ ଲକ୍ଷେମାଢ଼ ସ୍ୱର୍ଣ୍ଣ ।
ଆଜନ୍ମେ ହସ୍ତଗ୍ରହ ନ କରିବ ଆନେ
ହାତରେ ଥିବ ଯୁଧିଷ୍ଠିରଦେବଙ୍କ ପ୍ରସନ୍ନେ ।
ନ କରିବ କୃଷି ଯେ ନ କରିବ ବାଣିଜ୍ୟ
କୁଟୁମ୍ବ ଯେବଣ ଭୋଗ କରିବ ଐଶ୍ୱର୍ଯ୍ୟ ।
ଏସନକ ଦାନ ଦେଲେ ସେ ରାଜା ଯୁଧିଷ୍ଠି
ଖଣ୍ଡିଲେ ପାତକମାନ ଗଲା ଯେ ଅରିଷ୍ଟି ।
ବ୍ୟାସଦେବ ବୋଇଲେ ହେ ଶୁଣ ଦେବରାୟେ
ଶ୍ରୀକରେ ତୋହର ଯେନ ତୁ ଅର୍ଘ୍ୟ ଗୋଟିଏ
ସୁବର୍ଣ୍ଣର ଏକପାଦେ ଲକ୍ଷ ଅଷ୍ଟରତ୍ନ
ମାଣିକ୍ୟର ଯେନଲେ ସେ ଲକ୍ଷେ ଦୀପମାନ ।
ବିଜେ ଧର୍ମରାୟ ମହାଯାଗର ସଭାରେ
ଲକ୍ଷେରାଜା ଉଭା ହୋଇ ଅଛନ୍ତି ଆଗରେ ।
ଏଥେ ଅଛନ୍ତି ଛତିଶକୁଳ ପାଟବଂଶୀ
ବ୍ରହ୍ମର୍ଷି ରାଜର୍ଷି ନାରଦାର ଋଷି ।
ଶ୍ରୀକରେ ଅର୍ଘ୍ୟ ଯେବଣ ପଞ୍ଚରନ୍ତି ଧର୍ମ
ଯେଉଁପରରେ ବଳର ଅଛୁ ପୂର୍ବକର୍ମ ।
ମହାବଳ ବ୍ରହ୍ମ ତୁମ୍ଭେ ଧାର୍ମିକ ବିବେକ
ଗୁଣବନ୍ତ ସୁଧୀ ସର୍ବେ ଗୁଣର ଭାବୁକ ।
ଆଗେ କରିବା କାହାକୁ ପାଦାର୍ଘ୍ୟରେ ପୂଜା
ହସ୍ତାସ୍ତରେ ଅକ୍ଷତ ଯେ ଦେବା ସର୍ବରାଜା ।
ଏତେ ଆଜ୍ଞା ମୋତେ କହ ତୁମ୍ଭେ ଶୁଦ୍ଧଚିତ୍ତେ
ବିଷ୍ଣୁର ଆଜ୍ଞା ସକଳ ଦିଅ ବେଗେ ମୋତେ ।
ଯୁଧିଷ୍ଠିର ମୁଖୁଁ ଏହି ବଚନକୁ ଶୁଣି
ପିତାମହେ ଭୀଷ୍ମକୁ ଗୌତମକୁ ଭାଣି ।

ସମସ୍ତ ନୃପତିଗଣ ମୌନବ୍ରତ ହୋଇ
ଦ୍ରୋଣ ଗୁରୁଙ୍କୁ ସକଳେ ପାଶରେ ବସାଇ ।
ବୋଇଲେ ହେ ଦ୍ରୋଣଗୁରୁ ଭରଦ୍ୱାଜବଂଶି
ପର୍ଶୁରାମଙ୍କର ଗୁଣ ବିଦ୍ୟା ଜବ ଅଛୁ ।
ଧର୍ମ ଶାସ୍ତ୍ର ପ୍ରମାଣରେ ତୁମ୍ଭେ ଅଟ ଗୁରୁ
ଧର୍ମ ବୋଇଲ ଯାହା ତୁ କେମନ୍ତେ ବର୍ଜ୍ଜୁ ।
ବିପ୍ରର ମୁଖୁଁ ବାହାର ହେବ ଯେଉଁ କଥା
ତାହା କେ ଅନ୍ୟଥା କରି ପାରିବ ସର୍ବଥା ।
ଦ୍ରୋଣ ବୋଇଲେ ତୁମ୍ଭେ ହେ ଲକ୍ଷେ ନରପତି
ମୋତେ ଯେ ପୁଚ୍ଛା କଲେ ମୁଁ କହିବି ଯୁକତି ।
ଧର୍ମ ଅର୍ଥ ମୋକ୍ଷ କାମ ଏ ଚତୁର୍ବର୍ଗକୁ
ବସ୍ତୁ ଥାଉଁ ଥାଉଁ ଅର୍ଘ୍ୟ ନ ଦେଇ କାହାକୁ
ଏସନକ ବସ୍ତୁର ଯେ ଅଛି ଶାସ୍ତ୍ରଯୋଗେ
ମୁଁ ତାହା କହିଣ ଅଛି ବ୍ୟାସଙ୍କର ଆଗେ ।
କାଶୀଦେଶ ରଜା ତହୁଁ ଦ୍ରୋଣଙ୍କୁ କହିଲେ
ଦିଅଲୁ ପାଦ୍ୟାର୍ଘ୍ୟ ସର୍ବେ ନୃପତି ବୋଇଲେ ।
ଦ୍ରୋଣଗୁରୁ ବୋଇଲେକ ଶୁଣ ହେ ଯୁଧିଷ୍ଠି
ଶ୍ରୀକୃଷ୍ଣ ଚରଣେ ଦିଅ ପାଦ୍ୟ ଅର୍ଘ୍ୟ ଗୋଟି ।
ଶୁଣିଣ ଯୁଧିଷ୍ଠି ଦେବ ବୋଇଲେ ସାନନ୍ଦେ
ଜୟ ତୁ ଜଗନ୍ମୋହନ ପରମ ଆନନ୍ଦେ ।
ଜୟ ଜଗତ ପୁରୁଷ ସର୍ବଜନ ଚିନ୍ତା
ଯୋଗିଜନ ଶରଣ ତୁ ଅଟୁ ବରଦାତା ।
ଶ୍ରୀକରେ ଯୁଧିଷ୍ଠି ଦେବ ପାଦ୍ୟ ଅର୍ଘ୍ୟ ଘେନି
କରେ ପଖାଳିଲେ କୃଷ୍ଣଙ୍କର ପାଦ ଦେନି ।
କୋଟିଏ ତୀର୍ଥ ଘେନିଣ ପୁଷ୍କର ସ୍ନାହାନେ
ଆକାଶରୁ ପୁଷ୍ପବୃଷ୍ଟି କଲେ ଦେବଗଣେ ।
ମସ୍ତକରେ ସୁବାସିତ କୁସୁମର ଗନ୍ଧ
ଜଗନ୍ମୋହନ ଦିଶନ୍ତି ଅତିଶୟ ଶୋଭ ।
ସପତସରି ମାଳା ଯେ ଅଷ୍ଟରତ୍ନେ ଖଞ୍ଜା
ଶ୍ରୀକୃଷ୍ଣଙ୍କ ଅଙ୍ଗେ ନେଇ ଦେଲେ ଧର୍ମରଜା ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ
ମୋହନ ରୂପେ ବିଜୟନ୍ତି ପ୍ରଭୁ ଦେବରାଜ ।
ଅନେକ ସମ୍ପଦ ଦେଲେ ଧର୍ମ ଭଗବାନେ
ସାନନ୍ଦରେ ସବୁ ତାହା ଘେନିଲେ ମୋହନେ
ବିଜୟେ ଦୁଷ୍ଟମାନେ ଯେ ଏକଇ ଆସନେ
ପାଣ୍ଡବଙ୍କର ଚରିତ ଦେଖିଣ ନୟନେ ।
ବିଶ୍ୱରେ କୋଟିଘାଟେ ଆମ୍ଭେ ଅଭିଷେକି
ବସୁଧା ଧାରଣ ପୁଣି ଅଟୁ ପୃଥିପାଳ ।
ଆମ୍ଭଙ୍କୁ ପାଦାର୍ଘ୍ୟ ଦେଇ ନ କଲ ବରଣ
ଭୂମିଧାରଣ ଅଟୁ ଯେ ଏ ମଧ୍ୟ ଭୁବନ ।
ନନ୍ଦର ପୁଅ ଗଉଡ଼ କହାଇ ଅଟଇ
ତାକୁ ଅର୍ଘ୍ୟ ଦେଲ ବଡ଼ ସଙ୍କଟ ଏ ହୋଇ ।
କେହି କିଛି ନ ବୋଇଲେ ହୋଇଲେକ ତୁନ
ଇନ୍ଦ୍ରପ୍ରସ୍ଥ ବସିଲେ ସେ ଅଭିଷେକ ଘେନି ।
ଫଲ୍ଗୁନ ବୋଇଲ ଶୁଣି ସେ ଶିଶୁପାଳକୁ
କୃଷ୍ଣ ଅର୍ଘ୍ୟ ଘେନେ କେହ୍ନେ ଯୋଗାଇ ମନକୁ
ସଂସାରେ ଶୁଭଇ କୃଷ୍ଣ ଶିଶୁପାଳ ଭ୍ରାତ
ତୋହର ବୋଲକୁ ଛଳ କରିବ ଶ୍ରୀନାଥ ।
ପରୁ ଯେବେ ବୋଲୁକ ନା ତୁହି ଶ୍ରୀହରିଙ୍କି
ଶିଶୁପାଳ ବୋଲେ ମୋତେ ପାରିବ କ ରଖି
ଶାଲ୍ୱ ପୁଣ୍ଡରୀକ ଦୁର୍ଯ୍ୟୋଧନାଦି ବୋଇଲେ
ତୈଲୋକ୍ୟେ କେବା ଜିଣିବ ଆମ୍ଭେମାନେ ଥିଲେ
ତୋର ବଚନକୁ ଯେବେ କୋପିବ ଶ୍ରୀହରି
ଆମ୍ଭେ ସର୍ବେ ମିଳି ତାକୁ ପକାଇବା ମାରି ।
ଯେଉଁ ଲୋକକୁ ଆଶ୍ରିତ ହୋଇଥିବ ମେରୁ
ଯାଅ ଯାଅ ଶିଶୁପାଳ କାକୁ ଭୟ କରୁ ।
ସମୁଦ୍ର ଲଙ୍ଘନ କଲେ କେତେ ମାତ୍ର ପୃଥ୍ୱୀ
ପାଣ୍ଡୁ ପୁତ୍ରଙ୍କ ଅଗତେ କଇଯା ଯୁକତି ।
ଏ ବଚନ ଶୁଣିକରି ଦମଘୋଷ ବାଳ
ହରଷେ ଖଣ୍ଡା ଘେନିଣ ଉଠେ ଶିଶୁପାଳ ।
ବିଜେ କରିଛନ୍ତି ସଭାମଧ୍ୟେ ଦେବହରି
ଭୀମ ନକୁଳ ଅଛନ୍ତି ଖଡଗ ଉଭାରି ।
ଦମଘୋଷ ପୁତ୍ର ଦୁଷ୍ଟ ବଚନ ପ୍ରକାଶି
ହେ ଧର୍ମ ତୁ ମହାଯାଗ କରିଲୁ ରାଜସୂ ।
ଏଡ଼େବଡ଼ ସମ୍ପଦ ତୁ ଅରଜିଲୁ ପୁଣ୍ୟେ
ନାନା ଅଭରଣ ଦେଲୁ ସଭ ବିଦ୍ୟମାନେ ।
ସମସ୍ତଙ୍କୁ ଭୁଞ୍ଜି ସେବା କଲୁ ମହାରଜ
କେଉଁ ଦେଶ ରଜାର ଏ ଅଟଇ ତନୁଜ ।
ଶୁଣି କେ ବୋଲେ ଏ ଜାତ ବସୁଦେବ ଘରେ
କେ ବୋଲଇ ଗୋପେ ପଳାଇଲେ କଂସଡରେ
କେ ବୋଲେ ପିତା ଗଉଡ଼ ମାତା ଗଉଡ଼ୁଣୀ
ବେପାରେ ବଧ କଳନ୍ତି ପ୍ରତ୍ୟକ୍ଷେ ଏ ଜାଣି ।

ଦୁଇ ବାପ ଏକ ପୁଅ ବର୍ତ୍ତିବା ନିମନ୍ତେ
ଏତେ ପାମରଙ୍କୁ ପାଦ୍ୟ ଦେଲୁ ତୁ କେମନ୍ତେ ।
ପୁଣି ବୋଇଲ ତୁମ୍ଭେ ଯେ ଅଛ ଜାରଜାତ
ଏକ ମାତା ତୁମ୍ଭର ଯେ ଅଟେ ପାଞ୍ଚପିତା ।
ଏକ ଘରଯାକୁ ତୁମ୍ଭେ ପାଞ୍ଚଗୋଟି ଭ୍ରାତା
ଭଣ୍ଡ ହୋଇକର ଏବେ ହେଉଛ ଉକତା ।
ଯେ ଯାଦବ ଶ୍ରୀକୃଷ୍ଣଙ୍କ ଅଟଇ ପାତକା
ତୁମ୍ଭ ବନ୍ଧୁପଣେ ଏବେ ହେବ ସେହି ଲେଖା ।
ଅବରଣ ଲୋକ ଆଣି କଲ ଯେ ବରଣ
ପଣ୍ଡିତଲୋକମାନଙ୍କୁ ବୋଲନ୍ତି ଅଜ୍ଞାନ ।
ଏହି ଅବା ନ ଜାଣିଣ ବରଲୋକ ତୋତେ
ତୁରେ ଗଉଡ଼ ପାଦ୍ୟାର୍ଘ୍ୟ ଘେନଲୁ କେମନ୍ତେ ।
ବାଳୁତକାଳରେ ବଧ କରିଲୁ ପୂତନା
ସ୍ତ୍ରୀହତ୍ୟା ମହାଦୋଷ ତୋହର ତ ଜଣା ।
ଭୂମନ୍ୟୁ ମହାରାଜା ଯେ ସ୍ତ୍ରୀହତ୍ୟା କଲ
ସାତଜନମ ଚଣ୍ଡାଳ ଗୃହେ ଜନ୍ମ ହେଲ ।
ପୂତନା ହତ୍ୟାକଲୁ ତୁ ସ୍ତ୍ରୀହତ୍ୟା ଦୋଷୀ
ଯୁକତେ ପୁଣ୍ୟସ୍ଥାନରେ କେହ୍ନେ ଅଛୁ ବସି ।
ଶିଶୁପାଳ ଝିଙ୍ଗାସକୁ ଶୁଣି ବୃକୋଦର
ରାଗେ ଅଧର କମ୍ପାଇ କଂମ୍ପ ଥରହର ।
ଲୋଚନରୁ ଅଶ୍ରୁଜଳ ବହେ ମହାରାଗେ
ବୋଲେ ଶିଶୁପାଳ ମୁଣ୍ଡ କାଟିବି ମୁଁ ଆଗେ ।
ଯୁଧିଷ୍ଠିରଦେବ ବୋଇଲେ କୋପ ଛାଡ଼ ବାବୁ
ରାଗ କଲେ ଧର୍ମମାନ ନାଶଯିବ ସବୁ ।
ବୋଲୁ ଅଛେ ଶିଶୁପାଳ ନ କର ତୁ ରାଗ
ବଇର ଫଳାଇ ଦେବ ସିନା ପରଭବ ।
ଧର୍ମେ ଝିଙ୍ଗାସିଲେ ନ ସହନ୍ତି ଜଗପାଳେ
ଆମ୍ଭର କୋପ ତ ସେ ନ ସହେ ଏତେବେଳେ
ମୋହର ଶପଥ ଅଛେ ଶାନ୍ତ ହୁଅ ଭୀମ
ଧର୍ମ ଅଧର୍ମ ସୁମର ଛୁଟାଅ ତୋ ତମ ।
ସ୍ୱାମୀର ବଚନେ ଭୀମସେନ ହୋଇ ଶାନ୍ତ
ଯୁଧିଷ୍ଠି ଅନେକ ବାକ୍ୟ ଭୀମକୁ ବୁଝାନ୍ତି ।
ନ ଜାଣୁ ଭୀମସେନ ରେ ଏଥିର ଚରିତ
ଜଗନ୍ନାଥ ଶିଶୁପାଳ ସହୋଦର ଭ୍ରାତ ।
ସତ୍ୟବ୍ରତ ବୋଲି ବ୍ରହ୍ମବଂଶେ ଏକରାଜା
ଦେବବନ୍ତ ବୋଲିଣ ତାର ଏକଇ ତନୁଜା ।

ଯେ ଦୁହିତା ନାମ ତାର ଅଟଇ ଦେବକୀ
ବସୁଦେବେ ବିଭାହେଲେ ଧର୍ମପଣ ଦେଖି ।
ଆରେକ ଦୁହିତା ନାମ ଅଟେ ଦଇବକୀ
ତାକୁ ବିଭାହେଲେ ଦମଘୋଷ ନୃପତିଙ୍କ ।
ଦେବକୀର ଗର୍ଭେ ଉପୁଜିଲେ ଜନାର୍ଦ୍ଦନ
ଦଇବକୀ ଗର୍ଭେ ହେଲା ଶିଶୁପାଳ ଜନ୍ମ ।
ଏକଇ ସୋଦର ଦୁଇ ଭଗିନୀର ସୁତ
ସୋଦରପଣରେ ମୋହୁଅଛୁ ଜଗନ୍ନାଥ ।
ଯୁଧିଷ୍ଠି ବଚନେ ଭୀମସେନ ଶାନ୍ତ ଭଜ
ପୁଣ ପୁଣ ଶିଶୁପାଳ କହେ ଗଳଗାଜ ।
ଆରେ ରେ ଗଉଡ଼ ତୁହି ଅଟୁ ବଡ଼ଭଣ୍ଡ
ପୂତନା ନାଶ କରିଲୁ ନାଶକଲୁ ଷଣ୍ଢ ।
ଈଶ୍ୱର ବାହନ ବଧ କଲୁ କାଳେ କାଳେ
ତୋର ହତ୍ୟାଦୋଷ ମୋତେ ଲାଗିଲା ଏବେଳେ
ଯେଉଁ ଦେବେ ଧ୍ୟାଉଛନ୍ତି ଋଷି ଯୋଗୀମାନେ
ନାଶ କଲୁରେ ପାମର ତାହାର ବାହନେ ।
ଯେବଣ ଦେବଙ୍କୁ ଧ୍ୟାନ କରନ୍ତି ବ୍ରହ୍ମାଣ୍ଡ
ସେତେବେଳେ ଖପରରେ ଅଛୁ ଗୋରୁମୁଣ୍ଡ ।
ଗୋହତ୍ୟା ପାତକର ନ ଯାଇ କହନ୍ତେଣ
ସମସ୍ତ ପାପ କରିବା ଲଭ ବଡ଼ପଣ ।
ଗୋପାଳୁଣୀମାନେ ତୋତେ ସମସ୍ତେହେଁ ମାଙ୍କ
କୁଞ୍ଜବନେ କ୍ରୀଡ଼ା କଲୁ ସେମାନଙ୍କୁ ଘେନ ।
ଆରେ ପାମର ତୁ ଅଟୁ ଉସ୍ତାନକ ପାପୀ
ଅଜ୍ଞାନୀ ପାଣ୍ଡବେ ତୋତେ ସଭା ମଧ୍ୟେ ସ୍ଥାପି ।
ଯଦୁ ଋଷିଙ୍କର ପୁତ୍ର ଏବେ ବୋଲାଇଲୁ
ସ୍ତୃତଗହ ଘେନିକରି ସେଠାରେ ରହିଲୁ ।
ସ୍ତ୍ରୀହତ୍ୟାଦୋଷ ଗୋହତ୍ୟା କରଣର କୋଟିଏ
କେମନ୍ତେ ବରିଅଛୁ ଯଦୁଆ ଏ ବେଶେ ।
ଯେବଣ ଜନ ବର୍ତ୍ତନ୍ତି ହତ୍ୟାର ଭବାବେ
ସଂସାରେ ଭଲ ତାହାକୁ ନ ବୋଲନ୍ତି ହାବେ
ଭଣ୍ଡି କାର୍ଯ୍ୟ ଘେନକର ଅଧର୍ମ ନ ଜାଣି
ଭଣ୍ଡିଲୁ ମିଛେହେଁ ତୁହି ସବୁ ଗୋପାଳୁଣୀ ।
ତୋତେ କେହ୍ନେ ସହିବଟି ଧର୍ମ ଏ ମେଦିନୀ
ପୁଣି ପାଣ୍ଡବେ ବରଣ କଲେ ତୋତେ ଆଣି ।
ମରିବା ମାରିବା ଦୁଇ ତୁ ନ ଜାଣିକରି
[illegible] ।

ଏ ମହାସଭାରେ ଏଡ଼େ ସାହମା ବୋଲଇ
ଦ୍ରୋଣ ବୋଇଲେ ଶୁ ଶୁଣ ଶିଶୁପାଳ ବୀର ।
ଶ୍ରୀଜଗଦ୍‌ବନ୍ଦନ ନାଥ ଜଗତଠାକୁର
ତାହାଙ୍କୁ ଆଉ ବସ୍ତୁ କୁ ଜ୍ଞାନ ନ କର ।
ଯାହାର ହୃଦେ ବସଇ ମହୀ ନବଖଣ୍ଡ
ରୋମ ଅଗ୍ରରେ ଯାହାର ବସଇ ବ୍ରହ୍ମାଣ୍ଡ ।
ଅନେକ ଜନ୍ମରୁ ଭକ୍ତ ସନ୍ତାଳେ ସେ ଏବେ
ପ୍ରାଣେ ନାଶକଲେ କିଏ ରକ୍ଷିବରେ ତୋତେ
ଦୋଷ ଅବା ମଦ ଅବା ବୋଲଲ୍ ନ ଭାବ
କହିଲ ଦୋଷେ ତ ଅକାରଣେ ନାଶଯିବ ।
ଦ୍ରୋଣଙ୍କର ବଚନରୁ ଏହ୍ନବାଚ୍ୟ ଶୁଣି
ମହାକ୍ରୋଧେ ଶିଶୁପାଳ ଉଠେ ଶିରଟେଣି ।
କୃଷ୍ଣ ଯାହାଙ୍କି ବୋଇଲ ଭରଦ୍ୱାଜ ସୁତ
ଆମ୍ଭେ କଷ୍ଟଅନ୍ତୁ ତୋତେ ଏଥିର ଚରିତ ।
ଜରାସନ୍ଧ ଦନ୍ତରା ସେ ଦେଶ ମଗଧେଶ
ତାହାଙ୍କ ବଳର ଅଛି କଂସ ଓଳଗଣ ।
ତାହାକୁ ବଧ କରିଲେ ଏହୁ ବାଲକାଳେ
ଦ୍ୱନ୍ଦଚାଏ କାନ୍ଦ ମିତା ଆପରେ ଜନ୍ମିଲେ ।
ଏହିଂପିତା ତୁ ନୈବେଦ୍ୟରେ ଅଛୁ ମହାତେଜା
ତୋର ପର ପିତା ଥାଇଁ ହୋଇଲୁ ବଧକା ।
ବସ୍ତ୍ରସାଗର ଅଟଇ ତୋହର ସାଉଧୁ
ତୋର କନ୍ୟା ହୋଇ ଆସ୍ତ ଶୀଘ୍ର ଅସାଧୁ ।
ଦ୍ୱନ୍ଦଭାଙ୍ଗ ଉଷ୍ମ ଆଉ ମାତାଙ୍ଗ ବଳନେ
ମଥୁରା ରାଜ୍ୟକୁ ସେହୁ ଦାନ୍ତ ଅବହେଳେ ।
ବନ୍ଧବର୍ଗ ଗୁଣ ପଳାଇଲେ ତାର ଡରେ
ଦ୍ୱାରକାର ଲୁଚିଥିଲେ କୌସୁମ୍ଭ ବନରେ ।
ହିଡ଼ିମ୍ବ ଧାଇଁଲେ ଦୈତ୍ୟ ବେଢ଼ିଲେ ସେ ବନ
ତହୁଁ ପଳାଇ ଲୁଚିଲେ ଶିବଜା ଅରଣ୍ୟ ।
ସେ ବନସ୍ଥଳୁ ବେଢ଼ିଣ ବସିଲେ ସେ ବନେ
ତହୁଁ ପଳାଇଲେ ଏହୁ ପ୍ରାଣର ଡକନେ ।
କୌସ୍ତୁଭମଣ୍ଡଳ ବୋଲି ଏକଇ ବନସ୍ତେ
ତହିଁ ଯାଇ ରହିଲେ ସେ କୁଟୁମ୍ବ ସହିତେ ।
ସ୍କନ୍ଦପଣ ମୁଖ୍ୟ ଦୈତ୍ୟ ବାରତା ପାଇଲା
କଉସ୍ଥଳ ବନେ ଯାଇ ଏହାଙ୍କୁ ଘେରିଲା ।
ଖଣ୍ଡା ଖୋଳିକରି ବେଳା ଅନଳ ଲଗାଇ
ନାନା ଜୀବଜନ୍ତୁ ମଲେ ଏହାଙ୍କର ପାଇଁ ।

ଜରାସନ୍ଧ ଭୟେ ତହୁଁ ଏହୁ ପଳାଇଲା
ଅରୁଷା ନାମେ କୁଣ୍ଡଳୀ ନଗରେ ରହିଲା ।
ଆମ୍ଭେ ସର୍ବେ ମିଳିକରି ଧାଇଁଲୁ ତହିଁକି
ନାନା ଜୀବ ବଧକଲୁ ନ ପାରିଲୁ ଦେଖି ।
ତହୁଁ ପଳାଇଣ ଏହୁ ପଶେ ହ୍ରମବନ୍ତେ
ଲୁଚିଲେ ବନ୍ଧବର୍ଗଙ୍କୁ ଗୁଡ଼ ବେଣଭ୍ରାତେ ।
ମହାଧାର୍ମିକ ରାଜା ସେ ଅଟେ ଜରାସନ୍ଧ
ଲୁଚିଲା କୁଟୁମ୍ବଙ୍କ ସେ ନ କରଇ ବଧ ।
ପୁଣ ପୁଣ ପଳାଇଣ ଗଲେ ବେଣଭ୍ରାତେ
ସଭଏଁ ଲୁଚିଲେ ଯାଇ ଉସ୍ତଳର ତଟେ ।
କଷ୍ଟ ଦେଖି ରାଜା ଦୟା ଏମାନଙ୍କ କଲା
ରଣକାଳେ ଜରାସନ୍ଧ ଯ୍ୟାଙ୍କୁ ଉପେକ୍ଷିଲା ।
ତହୁଁ ପଳାଇଣ ଗଲା ହୋଇଣ ବିମୁଖେ
ଗୋମନ୍ତ ପର୍ବତେ ଲୁଚେ ଯାଇ ମହାଦୁଃଖେ
କକ୍ଷାବନ୍ତ ରାଜା ଅଟେ ଜରାସନ୍ଧ ବୀର
ପର୍ବତ ବେଢ଼ିଲା ସେ କରି ଲକ୍ଷେପୁର ।
ପର୍ବତ ପୋଡ଼ିଣ ସେହୁ ଅନଳ ଲଗାଇ
ଅନେକ ଜନ୍ତୁ ମରିଲେ ଏହାଙ୍କର ପାଇଁ ।
ସେହୁ ଗୋମନ୍ତୁ ଓହ୍ଲାଇ ପୁଣି ଆସ୍ଥ ଡ଼ରେ
କୁଟୁମ୍ବ ଘେନ ରହିଲେ ଏ ମଧୁବନରେ ।
ଘେରଇ ତହିଁ ରହିଲ ଆମ୍ଭେ ଅବହେଳେ
କାଳଯବନ ପଠାଇ ଦେଲୁ ତତକାଳେ ।
ଭାଙ୍ଗିଲା ମଧୁବନ ସେ କରିଲା ବିଧ୍ୱଂସ
ସମୁଦ୍ର ଭିତରେ ଯାଇ କଲେ ଏହୁ ବାସ ।
କହୁଁ କହୁଁ କୋପଭର ହୋଇ ଶିଶୁପାଳ
ଖଣ୍ଡା ଝମକାଇ ବୀର କରେ ବାହୁବଳ ।
ଶିଶୁପାଳକୁ ଦେଖିଣ ଭୀଷ୍ମ ଆଗକଢ଼ି
ଆରେ ଶିଶୁପାଳ ବୁଦ୍ଧି ଅଛୁ ବଡ଼ ଗାଢ଼ି ।
ଏଡ଼େ କଟାଳ କପାଁ ତୁ କରୁ ତାକୁ ଆଜ
ସପତ ବ୍ରହ୍ମାଣ୍ଡ ଆଜ ହୋଇବ ଦନ୍ଧଯ୍ୟ ।
ଦୁଃସହ ପ୍ରତାପୀ ହୋଇଥିଲେ ଦୁଷ୍ଟମଲ୍ଲି
ବାଳଖେଳ କୁଡ଼ନ୍ତେ ସବୁ ନାଶଗଲେ ।
ସେ ଶ୍ରୀମୂର୍ତ୍ତି ଦେଖିଣ ହେଲେ ସର୍ବେ ହତ
ଅଷ୍ଟମଲ୍ଲ ସନ୍ମୁଖରେ ହୋଇଲେ ନିପାତ ।
ହେ ଶିଶୁପାଳ କହିଲୁ ଅଷ୍ଟାଦଶ ଧାଡ଼ି
କେତେ କେତେ ସଇନ ଯେ ପଳେ ତହିଁ ପଡ଼ି

ଗୋମନ୍ତ ପର୍ବତର ବୃତ୍ତ କହିଲୁ ଯେ କଥା
ଆମ୍ଭେମାନେ ଜାଣୁ ତାର ସକଳ ବାରତା ।
ତେଇଶ ଅକ୍ଷଉଣୀ ବଳ ତୁମ୍ଭେ ଘେନିଗଲ
ସତର ଅକ୍ଷଉଣୀ ତହିଁ ସୈନ୍ୟ ମରିଗଲ ।
କେତେ କୃତ୍ୟ କଲେ ତହିଁ କୃଷ୍ଣ ବଳରାମ
ପଳାଇଲ ତୁମ୍ଭେ ରାଜା ହାରଣ ସଂଗ୍ରାମ ।
କାଳୟବନ ତୁମ୍ଭର ତଳ ବନ୍ଧୁ ଆସେ
ତାଙ୍କ ଭେଟି ନ ପାରିଲ ଆଉ କୃଷ୍ଣ ପାଶେ ।
ଅନେକ ପ୍ରତିଜ୍ଞା ତହିଁ କରିଥିଲ ନର
କେବଳେ ସନ୍ଧି ନ ପାରିଲ ଶ୍ରୀଯସେନ ଖ୍ରସ ।
ସ୍ଥିର ଯ'ମର ବୋଲଣ ଆପଣେ ନ ମାର
ସେବକ ହସ୍ତେ ଜରାକୁ ଦେଲେ ବଧକରି ।
ଆରେ ରେ ନିଲାଜ ବାସୁଦେବ ନାଶକଲା
ତୁମ୍ଭେ ପଳାଇଲ ପୃଷ୍ଠି ମଧ୍ୟାସ୍ଥ ମଣିଲା ।
ଅଜ୍ଞାନେ ମୂରଖ ବାଇ ଛକଳ ସ୍ୱଭାବ
ନାଶକର ଆଗେ ତୁମ୍ଭେ ଏତ ଯଶ ଗର୍ବ ।
ଶିଶୁପାଳ ବୋଲେ ତୁହି ନ ଜାଣୁ ଗାଙ୍ଗେୟ
କ୍ଷତ୍ରୀ ହୋଇ ପଳାଇଲେ କିସ ଧର୍ମ ଲଭ ।
ଭୀଷ୍ମ ବୋଇଲେ ଶ୍ରୀବୃକ ଅଟେ କେତେ ଥର
ଲକ୍ଷେକ ରାଜା ଆଣିଣ କଲ ସ୍ୱୟମ୍ବର ।
ସ୍ୱୟମ୍ବରେ ସର୍ବ ନୃପ ଅନନ୍ତ ଯେ ବସି
ପାଣ୍ଡବେ ରାମ କୃଷ୍ଣ ପ୍ରବେଶିଲେ ଆସି ।
ରାଜାମାନେ ବସିର ଯେ ଅନନ୍ତ ଆସ୍ଥାନେ
ନନ୍ଦ ଗଉଡ ସୁତ ପିତା ଅଟେ ଯାଦବମାନେ ।
ଆମ୍ଭେ ଯେ ରାଜକୁମାରେ ଅଛୁ ଏଥେ ବସି
କେଉଁଲୋକ ଗଉଡ଼ ବସିବ ଏ ସଭାରେ ଆସି ।
ସଭାସ୍ଥଳେ ନ ଛାଡ଼ିଲେ ତାଙ୍କୁ ଏହା କହି
ଜନ ପାବଲି ତଳରେ ରହିଲେ ଦିଶଇ ।
ରାଜାମାନେ ନ ଚାହିଁଲେ ବନ୍ଧୁ ମତ୍ତଗର୍ବ
ଏସନ ଅଟଇ ଜାଣ ଦୁଷ୍ଟଙ୍କ ସ୍ୱଭାବ ।
ରଥେ ଜଗନ୍ନାଥ ଚଢ଼ି ଗଲେ ଆଗସର
ଆଜ୍ଞାଦେଲେ ଦେବରାଜ ଗରୁଡ଼େ ହକାରି ।
ବନଚାପ୍ତ ମାଇଲା ପକ୍ଷକୁ ଭୂରତେ
ସ୍ୱୟମ୍ବର ଭଗ୍ନ ହେଲା ପକ୍ଷ ବା'ତାଘାତେ ।
ସମସ୍ତ ରାଜାଏ ଚଢ଼ି କୁଣ୍ଡାପ୍ରାସେ ଉଡ଼ି
ସହସ୍ର ଯୋଜନେ ଯାଇ ଘୋଡ଼ାହାତୀ ପଡ଼ି ।
ସେ ସ୍ୱୟମ୍ବର କାଳେ ଯେ ଆମ୍ଭେ ତହିଁ ଥିଲୁ
ସର୍ବରୁ ଛତଣସୂଣେ ଉଡ଼ଣ ପଡ଼ିଲୁ ।
ବୋଲାଇ ଥିଲ୍ ଯେ ଦମଘୋଷର ଦୂଷଣା
ଚକ୍ଷୁଥାଉ ଆରେ କପାଁ ହେଉଅଛୁ କଣା ।
ରୁକ୍ମିଣୀର ବର ହେଉଥିଲ ଶିଶୁପାଳ
ଦ୍ୱାରରେ କସିଲ୍ ଗୟାମଣ୍ଡପର ତଳ ।
ପଞ୍ଚ ବର ଦେଶରେ ହୋଇଲୁ ବରଣ
ମଣ୍ଡଳର କନ୍ୟା ଗଲ ନେଲେ ନାରାୟଣ ।
କାଳୟବନ ହସ୍ତରେ ସାଜ ଜରାସନ୍ଧ
ବଡ ସୈନ୍ୟ ମରିଲ ପଡେ ବନ୍ଧୁ ନନ୍ଦ ।
କମାସାଗର ଦଣ୍ଡ ସେ ଭକ୍ଷା ଜଗଜ୍ଜେଠି
ତୁମ୍ଭ ଦେଖନ୍ତେ ରୁକ୍ମଣ କଲେ ସାତବେଣ୍ଟି
କାତହନେ ନ ପାରିଣ ତୁ କଲ୍ ପ୍ରପଞ୍ଚ
ନିର୍ଲଜ ଜୀବନ ଘେନି କପାଁ ତୁମ୍ଭେ ଅଛ ।
ଭୀଷ୍ମଙ୍କ ଟିକାସ ବାକ୍ୟ ଏତ୍ତପରି ଶୁଣି
ରାଗେଣ ଶିଶୁପାଳ ଯେ ଉଠେ ଶିରଟ୍ଟିଣି ।
ପଣ ପ୍ରଣ ମନ୍ତ୍ରିଙ୍କ କରଇ ପ୍ରତିଜ୍ଞା
ମତ୍ତବ ଲୋକ ବଚନ କରଇ ଅବଜ୍ଞା ।
ଗର୍ଜିଣ ଉଠି ଅଧରେ ଦଶନକୁ ଚାପି
କରେ ଗଦା ବ୍ୱନଲଣ ଉଠେ ଜାମରୂପୀ ।
ଏତେ ଅଧର୍ମ ଅର୍ଜିଲ୍ କହିରେ ଯୁଧିଷ୍ଠି
ଶୁଣହେ ଗାଙ୍ଗେୟ ତୁମେ ଏହାର ଯେ ଗୋଷ୍ଠୀ
ବରଦାସ୍ୱକ ଦ୍ୱିଜର ଯେଉଁପରି ଖ୍ୟାତ
କୃଷ୍ଣ ଆଗରେ କହୁଛୁ ମୁହିଁ ସେ ଭାରତ ।
ବରଦାସ୍ୱକ ବୋଲଣ ଏକଇ ବ୍ରାହ୍ମଣ
ଅତି ଦୁଃଖେ ଯେତ୍ତେ ଦ୍ୱିଜ ବଞ୍ଚୁଥିଲା ଦିନ ।
ଅନେକ ଦାନ ସେତ୍ତ ସେ ଘେନେ ଧନଲୋଭେ
ଏକାକୀ ବଞ୍ଚିଲ ସେତ୍ତ କୁଟୁମ୍ବ ଅଭାବେ ।
ଏମନ୍ତେ ଚତୁର୍ଥ ବୟ ହୋଇଲା ସେ ଭ୍ରମ
ଛାଡ଼ିଲା ସବୁ କର୍ମ ଦିଶେ ଆସି ଧର୍ମ ।
ଏକାକୀ ଲୋକ ଯେତ୍ତ ତ ଏକେ ଭିକ୍ଷାବାସୀ
ତଥାପି ସେ ନ ପାରିଲା ଉଦରକୁ ପୋଷି ।
ନାନା ଦୁଃଖ ପାଏ ବରଦାସ୍ୱକ ବ୍ରାହ୍ମଣ
କ୍ଷୁଧାରେ ବ୍ୟାକୁଳ ତାର ହୁଏ କଣ୍ଠପ୍ରାଣ ।
ସ୍ୱଦେଶ ଛାଡ଼ିଣ ସେତ୍ତ ଗଲାକ ବିଦେଶ
ଜପମାଳା କରେ ଧରି ପିନ୍ଧି କନ୍ଥା ବାସ ।

ଉଜାଣ ବୋଲି ଜାଣ ଏକଇ ନଗରୀ
ମନୁଷ୍ୟମାନ ଚହିଁରେ ଅଟେ ଅଧିକାରୀ ।
ବଡ଼ ସାଧୁ ସମ୍ପଦେ ସେ ଅଟେ ଲକ୍ଷୀଧର
ଅନେକ ବୋଇଲ ସେହ୍ନ କରଇ ବେଭାର ।
ତାହା ପିଣ୍ଡାରେ ବସିଲ ସେହ୍ନ ଜସ୍ଵବନ୍ତ
ଆସିଣ ଦେଇ କାଣ୍ଡିକୁ ମଡ଼ଇ ଅନନ୍ତ ।
ଧାର୍ମିକ ବେଢ ସାଧବ କରଇ ଗୌରବ
ସ୍ନାନ ଶୌଚ ସେମାନଣ ସେ କରେ ଉଲ୍ଲବ ।
ଅନେକ ଭକତ କବେ ତହିଁ ଜନେ ଆସି
ମଣ୍ଡନ ହୋଇଥାଇ ସେ ନ ଦେଇ ସନ୍ତାଷି ।
ଦୃଢ଼ ଆସନେ ବସିଣ କରେ ନାନା କର୍ମ
ବଡ଼ ଧାର୍ମିକ ଦେଖିଣ ବୋଷ ଦ୍ଵନ୍ଦ ଜନ ।
ମିଛେହେଁ ବୋଲେ ମୋହର ଅଇନ୍ଧେଗ ନାହିଁ
ଶୂନ୍ୟେ ପବନ ଭେଦଇ ନଗଞ୍ଜର ଧାମ୍ପି ।
ନସ୍ଥା ତାର ଦେଖି ଜନେ ବଡ଼ ତାକୁ ମାନ
ଦେବନ ଚରଣ ପଖାଳି ଉଦକହିଁ ସେବନ ।
ବଡ଼ ଧାର୍ମିକ ସେ ଅଟ ଲୋକଙ୍କର ପ୍ରିୟ
ପରସ୍ପର ନାହିଁ ତାର ସବୁ ଏକମତ୍ୟ ।
ସେତେବେଳେ ନବ୍ରାହ୍ମାଣ୍ଡ ସେହ୍ନ ଗ୍ରାମଜନ
ଗୃହରେ ସନ୍ତଣାଶାଳେ ଚଗଇ ରନ୍ଧନ ।
ନାନା ବ୍ୟଞ୍ଜନ ଅନେକବିଧ ରସମାନ
ହାଣ୍ଡିରେ ହସ୍ତ ଭରଣ କରଇ ଭୋଜନ ।
ଉଦର ପୂରିଲେ ପୁଣି ବାହାର ସେ ଆସି
ମହାନସ୍ଥା ପାଇଁ ମଣ୍ଡନରେ ଥାଏ ବସି ।
ଏହିରୂପେ ମାସ କେତେ ଅଗତ ହୋଇଲା
ସୁପକ୍ଵ ଅନ୍ନ ତାହାର ସବୁ ଭକ୍ଷ ହେଲା ।
ରଜନୀ ପ୍ରଭାତେ ପୁଣି ଦେଖେ ସୂପକାର
ସୁସ୍ଵାଦୁ ଦ୍ରବ୍ୟମାନ ଯେ ନ ଥାଇ ହାଣ୍ଡିରେ ।
କେବଣ ଚରିତ ଏହା ଜାଣିବା କେମନ୍ତେ
ଏସନ ଆଶ୍ଚର୍ଯ୍ୟ କଥା ନ ଜାଣିଲୁ ଏଥେ ।
ଏହିରୂପେ ଗଲା ଦଶମାସ ପରସନ୍ତେ
ଶସାର କଷ୍ଟ ହୋଇଲା ତାର ଅକସ୍ମାତେ ।
ଶିଶୁପାଳ ବୋଲେ କୃଷ୍ଣ ସାବଧାନେ ଶୁଣ
ଦିନ ଦିନେ ଏହିପରି ପାତ ଭକ୍ଷଣ ।
ପ୍ରତିଦିନ ଯହିଁ ଅନ୍ନ ବ୍ୟଞ୍ଜନ ଭୁଟିଲା
ପରସନ୍ତେ ଲୋକଙ୍କୁ ଯେ କହୁ ନ ଅଣ୍ଟିଲା ।
ସେ ସୂପକାରଙ୍କୁ ସର୍ବେ ଦେଲେ ତହୁଁ ଗାଳି
ବକଳରେ ଦ୍ଵିଜବର ପୁନଃ ପୁନଃ ଗାଳି ।
ଦିନେ ସନ୍ତଣାଶାଳରେ ଦ୍ଵିଜବର ଠାକ
ଛଦ୍ମଣ ବ୍ରାହ୍ମଣ ମଧ୍ୟେ ପଶିବାର ଦେଖି ।
ହାଣ୍ଡିରୁ ଖାଆନ୍ତେ ବେଗେ ପିଟେ ମୁଣ୍ଡେ ବାଡ଼ି
ଫାଟିଣ ବ୍ରାହ୍ମଣ ମୁଣ୍ଡ ପଡେ ମୁହଁମାଡ଼ି ।
କରେ ସୂପକାର ସେଜନର ପୀମାବଳି
ନଗ୍ର ଲୋକମାନେ ତହିଁ ହେଲେ ଯାଇଁ ମେଳ
ସମସ୍ତେ ଆସି ଦେଖିଲେ ଛଦ୍ମ ବ୍ରାହ୍ମଣ
ଚଣ୍ଡାଳ ହାତେ ଜାଡିଣ ପକାଇଲେ ପୁଣ ।
ସର୍ବେ ନିନ୍ଦାମନ୍ତ ତାର ପ୍ରପଞ୍ଚ ପ୍ରକୃତ
ସେମନ୍ତ ପ୍ରକାରେ ଅଟଇ ଏହାର ଯୁକତ ।
ଶିଶୁପାଳ ବୋଲେ କୃଷ୍ଣ କହିଲି ଯେ କଥା
ଏହାର ଚରିତ ଅଟେ ଏମନ୍ତ ବ୍ୟବସ୍ଥା ।
ମାମର ପାଣ୍ଡବେ ଏହା ନ ଜାଣନ୍ତି ଖଣ୍ଡି
ଏହି ରୂପରେ ଗଉଡ ଖାଉଅଛି ହାଣ୍ଡି ।
ଶିଶୁପାଳର ବଚନ ପ୍ରତିଜ୍ଞାକୁ ଶୁଣି
ନୃପନ ବୃଜାନ୍ତ ଚନ୍ଦ୍ରପ୍ରାପ୍ତ ଚକ୍ରପାଣି ।
ଦମଘୋଷ ବୋଇଲାରେ ଶୁଣ ଶିଶୁପାଳ
ମୃତ୍ୟୁକୁ ଆଶ୍ରୟ କରି କହୁ କୁ କଥାଳ ।
ଜଗନ୍ନାଥଙ୍କ ଚରଣେ ଦମଘୋଷ ନମି
ବୋଲେ ଶିଶୁପାଳ ଦୋଷ ଉଦ୍ଧର ହେ ସ୍ଵାମି
ଟେନା ମାଇଲେ କି ସ୍ଵାମି ଟଳଇ ମନ୍ଦର
ଧୂଳିକେ ପୋଛିଲେ ପୋତା ହୁଏ କି ସାଗର
ଦୁଷ୍ଟଙ୍କର ଦୋଷ ଦେଇ ତୁହି ଉଦ୍ଧାରନ୍ତା
ତେଣୁ ତୁମ୍ଭ ନାମ ଅଟେ ଜଗତ କରତା ।
ସ୍ଵାମି ଯମୁନା କୂଳରେ ଖେଳ କୁତୂହଳେ
ଶିଶୁପାଳ ନାମ ମୃତ୍ୟୁ ହେଲୁ ତେତେବେଳେ
ଶରଣ ସମ୍ଭାଳ ତୁହି ଆହେ ମହାପ୍ରଭୁ
ଅଜସ୍ର ଜଗପାତକୁ ଉଦ୍ଧାରନ୍ତା ସବୁ ।
ସର୍ବଜନ ଉଦ୍ଧାରନ୍ତା ସର୍ବଜନ ତନ୍ତା
ଭକତ ଅଭକତ କୁ ସକଳ କରତା ।
ଭବଗ୍ରାହୀ ଜଗନ୍ନାଥ ଭକତ ବତ୍ସଳ
କଳଙ୍କ ଧ୍ଵଂସନ ନାମ ତୋର ସର୍ବ ଖେଳ
ସକଳ ବ୍ରହ୍ମାଣ୍ଡ ନାଥ ତୁହିଁ ସର୍ବ ଚକ୍ଷୁ
ଛାର ଶିଶୁପାଳେ କର୍ମ କୋପ କରୁଅଛୁ ।

ମୁଣ୍ଡେ ଫେଳିଲେକ ଅବା ପୃଥିବୀ ଫଟଇ
କଷ୍ଟର ପାପର ଶିଶୁପାଳ ତ ଅଟଇ ।
ଦୋଷ ଉପେକ୍ଷା କରଣ ଯେଣିକା ତଇଁ
ଶ୍ରୀକୃଷ୍ଣ ଚରଣ ସଦା ହେବେ ଶୁଦ୍ଧମନ ।
ଶ୍ରୀହରି ବୋଇଲେ କହଁ ତନୟାଙ୍କୁ ଦେଇ
ମୋତେ କସ ଭଆଣୁ ତୋ ପୁତ୍ରକୁ ନ କହୁ ।
ନାଶଯିବା କାଳ ଆସି ହୋଇଲେକ ପାଣି
ଅପସପର କଥା ଯେ କହୁଛି ନ ଜାଣି ।
ଶୁଣି ତରଜଇ ଶିଶୁପାଳ ମହାବୀର
ଅପସପର କ ବୋଲୁ ମୋତେ ରେ ପାମର
ଗୋପାଳ ମାଗଣ ତୋର ଜସ ଜଣ ଜଣା
ଗୋପାଙ୍ଗଣୀ ସଙ୍ଗ ଗେନ୍ଧ ଥିବ ତୋର ବାଞ୍ଛା ।
କୃଷ୍ଣ କହାଲି ଆସ୍ତେ ଗର୍ଜସି ସଭାକୁ
କସ ସାମରଥ କୁଳେ ଅର୍ଘ୍ୟ ଦେଣବାକୁ ।
କୂପ ଜଳ କେତେ ହୁଏ ସାଗରେ କ ସରି
ବ୍ରାହ୍ମଣ ଚଣ୍ଡାଳ କେବେ କବା ଲକ୍ଷ୍ୟ କରି ।
ସେବତୀ ପୁଷ୍ପ ମିଶାଇ ଆଣି ଅନ୍ୟ ଫୁଲ
ଗୁଞ୍ଜପୁଞ୍ଜ ନେଇ କରୁ ମାଣିକ୍ୟର ତୁଲ ।
ସ୍ଫଟିକ ଗୁହ୍ନ୍ତ କୃଷ୍ଣ ସ୍ୱର୍ଗ ସଙ୍ଗେ ନେଇ
ଭଣ୍ଡ ଛୁ ପାଣ୍ଡବେ ଜଗନ୍ନାଥ ନାମ ଦଇ ।
ଆରେ ଗଉଡ ଜାହ୍ନିଁଜ କଥା ନ କହନ୍ତୁ
ମଉନ ହୋଇ ହୃଦରେ କହଁ ବସିଅଛୁ ।
ସ୍ୱପୋତେ ମାରି ମ୍ୟ ତୋର ଛୁଣ୍ଡାଇବ ଶିର
ଆବନେ ଗଣ୍ଡ ପାଇବୁ ଲଷ୍ଟ୍ରକୁ ସ୍ମର ।
ପାଶୁପତ ଦମ୍ଭଣ ଓଷ୍ଟକୁ ଚାମୋଡ଼ି
ଆକର୍ଷିଣ ଶିଶୁପାଳ ଉଠେ ଗ୍ଣ୍ଡ ରଡ଼ି ।
ସତ୍ୟ ଦେବ ଜଗନ୍ନାଥ ଦେଖିଲେ ତା ରଙ୍ଗ
କତଳୀଫଳ ଫର୍ଯେ କମ୍ପାଇଲେ ଅଙ୍ଗ ।
ଭାବିଲେ ମୋର ଦ୍ୱା ମୁଣ୍ଡ ପକାଇବ ତଳ
କଲି ଏ ସଭାରେ ଦେବ ଏକ୍ଷଣି ଗୋଳ ।
ପୁନରପି ଦୃଢମଧ୍ୟେ ଭ୍ରଜନ୍ତି ଶ୍ରୀହରି
ସୁଦର୍ଶନ ଚକ୍ରେ ଯାଙ୍କୁ ପକାଇବ ମାରି ।
ଶ୍ରୀହରିଙ୍କ ସୁଦର୍ଶନେ ହରି ଆଜ୍ଞା ଦେଲେ
ଶିଶୁପାଳ ଶିର ଛେଦ ପକାଅ ବୋଇଲେ ।
ଅନନ୍ତାକ୍ଷରୁ ପଡ଼ିଲା ଚକ୍ର ସୁଦର୍ଶନ
ଶିଶୁପାଳ ମୁଣ୍ଡ ଛିଡ଼ି ପଡ଼ିଲା ବହନ ।

ପ୍ରତ୍ୟକ୍ଷରେ ଦେଖିଲେ ତା ଦୁଷ୍ଟରାଜାମାନେ
ବୋଇଲେ ଏ ନାଶ ଗଲା ଆପଣା ଅଜ୍ଞାନେ ।
ଭୀଷ୍ମ ଦ୍ରୋଣ ବୋଲିଲେ ନ କର ଭୂସ୍ମେଗୋଳ
ଧରମଙ୍କୁ କହିଲେକ ଜୀବନ ସଫଳ ।
ଅନାରଣେ ଜଗନ୍ନାଥେ ବହୁ ଟିଙ୍ଗାସିଲ
ଜାଚତନ ଶିରେ ଚଡ଼ି ଫଗଣ ଗୁଡ଼ିଲା ।
ଅସ୍ୱଭାର ପ୍ରତ୍ୟକ୍ଷ ଯେ ନ ପାଇଲେ ସନ୍ତ
ଷଣକରେ ଦଶ ନେଲେ ତାର ଜୀବନନ୍ତି ।
ଆସ୍ଥାନରେ ବସିଥିଲେ ଯେତେ ଦୁଷ୍ଟରାସେ
ଫଳାଇଲେ ସେ ମହାର ଶା'ଲ ପଦାଭସେ ।
କଟିଲା ସଙ୍କରେ ମହାକୋଳାହଳ ଧ୍ୱନି
ଯୁଧିଷ୍ଠି ସର୍ବରାଜାଙ୍କ ସମ୍ଭାଷିଲେ ପୁଣି ।
ମହାବୋଳ ଦେଖିଲକ୍ଷ ବ୍ୟାସ ମହାତପ
ସାତକ ଧ୍ୱଂସ ହେମନ୍ତେ ଦେଲେକ ଆହୁତି ।
ଷଡଶ୍ୱାସେ ଯୁଧିଷ୍ଠିର ଲକ୍ଷେ କମ୍ପ ଛାଳ
ଶୂନ୍ୟବାଣୀ ହେଲା ପଣ୍ଡୁ ସ୍ୱର୍ଗେ ଗଲେ ଚଳି ।
ବହୁଦକ୍ଷ୍ୟା ଦୋଷଯାଜ ଅଙ୍ଗ ଗଲା ପାରି
ବସିଲେ ଅମରପୁରେ ପଣ୍ଡୁ ନୃପବର ।
ସମସ୍ତ ବ୍ରାହ୍ମଣେ ତହିଁ କଲେ ବେଦଧ୍ୱନି
ଧିକରଷ୍ଟଙ୍କ ନିକଲେ କରେ ଅର୍ଘ୍ୟସେନ ।
ଅନେକ ସମ୍ପଦେ ଭଲେ ରାଜାମାନେ ପୂଜା
କହୁତ କଣସୁ ଦେବେ ଧର୍ମର ତନୁଜା ।
ବେଗେ ରାଜାମାନଙ୍କୁ ଯେ ଭରି ସମାର୍ଜ୍ଜନ
କେମନ୍ତ କର୍ମର ଆଦ୍ୟ ସୁଗନ୍ଧ ଚନ୍ଦନ ।
ନନ ବସ୍ତ୍ର ଅଳଙ୍କାର ଶଙ୍ଖରବେ ଭରି
ଚଳନ୍ତି ରାଜାମାନେ ଯେ ଯେ ଯାହାର ପୁରୀ ।
ସମାର୍ଜି ରାଜାମାନଙ୍କୁ ପଠିଆନ୍ତି ଦେଶ
ବହୁ ବଦନେ କହନ୍ତେ କରିଣ ବିଶ୍ୱାସ ।
ଧର୍ମଶଣାନ୍ତ ରାଜାଙ୍କୁ ଦେଲେ ପୁଣି ଆଜ୍ଞା
ଯେ ଯାହା ଦେଶରେ ଥିବ ନ କର ଅବଜ୍ଞା ।
ଆଜ ଅବଧି ଆମ୍ଭର ଥିବ ଯେଉଁ କାର୍ଯ୍ୟ
ଦୂତ ପେଷନ୍ତେ ଆସିବ ସର୍ବେ ହୋଇ ସଜ ।
ଏକ ରାଜା ନ ଲଙ୍ଘିବ ଆରେକର ସୀମା
ପାବନୀ ବୋଲେ ଜାଣିଥା ମୋର ନାମ ଶ୍ରୀମା
ସର୍ବ ରାଜନେ ବାହୁଣାଦନ୍ତେ ପରଣାମି
ଭୂଷ୍ଟ ପାଦେ ଖଟିଥିବୁ ସଦା ଦେବଦ୍ୱାସ୍ତ

ରହିଅଛୁ ଆମ୍ଭେ ଏଥେ ଯେତେ ଦଣ୍ଡଧର
ଲକ୍ଷେ ରଜାଙ୍କ ଉପରେ ଭୀମ ଯେ ଠାକୁର ।
ଗଙ୍ଗାପାର ହୋଇ ଗଲେ ସର୍ବ ରଜାମାନେ
ବାରୁଣାବନ୍ତୁ ବାହାର ହେଲେ ଭୀମସେନେ ।
ନାରଦ ଜମାଗୋଷ୍ଠୁଙ୍କୁ କରାଇଲେ ପ୍ରୀତି
ଏକାତ୍ମା ହୋଇ ଚଳିଲେ କେନ ନରପତି ।
ହିଗର୍ଭ ବୋଇଲା ମୁହିଁ ମଗଧାଧିପତି
ମୋହର ରାଜ୍ୟ ଭୋଗିଲା ବିରାଟ ନୃପତି ।
ଦୁହାଁଳ ଦ୍ରୁପଦ ଯେ ଦାରଲକ୍ଷ ଗାଈ
ଷଣ୍ଡି ର ନବସହସ୍ର ବସ୍ତ୍ରା ଲକ୍ଷେ ମାଈ ।
ଭୀମସେନର ବଚନେ ହି ଗର୍ଭେଶ ଗଲା
ତାହା ଦେଖି ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ ହୋଇଲା
ଯୁଧିଷ୍ଠିଙ୍କ ବାକ୍ୟେ ଦମଘୋଷ ପରଣାମି
ଶିଶୁପାଳକୁ ଦହନ କରିବା ହେ ସ୍ୱାମି ।
ଯେ ଯାହା ଅର୍ଜିଲା କର୍ମ ଭୁଞ୍ଜିବ ସୁଜତେ
ଅପାର କାଳରୁ ତାହା ଦିଶୁଥିଲା ମୋତେ ।
ଯୁଧିଷ୍ଠିର ଆଜ୍ଞାଦେଲେ କରାଇ ଦର୍ଶନ
ଲୋକମାନେ ଶବକୁ ଯେ ଅଣାଇ ଦହନ ।
ଦିବ୍ୟ ପଲ୍ୟଙ୍କରେ ତାକୁ ଶୁଆଇଲେ ନେଇ
ଗଙ୍ଗାନଦୀ କୂଳଯାଏ ନେଲେ ତାକୁ ବହି ।
ମୃତ ପିଣ୍ଡକୁ ଦହନ କଲେ ଶ୍ମଶାନେ
ଅନେକ ଦାନ ଦେଲେ ସେ ବୁଭୁକ୍ଷିତ ଜନେ
ବ୍ରାହ୍ମଣମାନଙ୍କୁ କଲେ ବହୁତ ସେ ପୂଜା
ଅନେକ ଉକତ କଲେ ତହିଁ ଧର୍ମରଜା
ବସନ କୁଣ୍ଡଳ ଆଦି ଧୂପ ନଇବେଦ୍ୟ
ପୁଣ୍ୟତୋୟା ନଦୀତୀରେ ଶ୍ମଶାନ ସମ୍ପନ୍ନ ।
ଭଣ୍ଡାରରେ ରହିଥିଲା ବହୁତ ଯେ ଧନ
ଚଉବଂଶ ଦନ ଯାଏ ଦେଲେ ନାନାଦାନ ।
ରଜାମାନଙ୍କୁ ଦେଲେ ଯେ ପୁଣି ଜଗଦ୍ବଳା
ସୀମନ୍ତମଣି କୁଣ୍ଡଳାଦି ଦେଲେ ରତ୍ନମାଳା ।
ନାନାବିଧ ଅଳଙ୍କାର ଦେବାଙ୍ଗ ବସନ
ଶାଢ଼ୀମାନ ପାଇଲେ ସେ ସକଳ ରାଜନ ।
ସମସ୍ତ ରଜାଏ ତାଙ୍କୁ ସାଧୁସାଧୁ ଭଣି
ଶତ୍ରୁ ର ଆପଦ ଗଲା ସ୍ୱର୍ଗେ ଶୁଭେ ବାଣୀ ।
ଆହେ ଯୁଧିଷ୍ଠିର ଆମ୍ଭ ଆଜ୍ଞା ଘେନ ବରି
କ୍ଷିତି ମାରି ପଞ୍ଚରାଜ୍ୟ ହୁଅ ଅଧିପତି ।

ଋଷିମାନେ କଲେ ତହିଁ କଲ୍ୟାଣକୁ ବାଞ୍ଛା
ଅବିଳମ୍ବେ ପୂର୍ଣ୍ଣ ହେଉ ତୋହର ଯେ ଇଚ୍ଛା
ନିଷ୍କଳଙ୍କ ହୋଇଥାଉ ତୋର ଦେହ ଗୋଟି
ଏହି ଦେହ ନେଇ ସ୍ୱର୍ଗେ ଗମିବୁ ଯୁଧିଷ୍ଠି ।
ଏ ରାଜ୍ୟର ଭାର ତୋତେ ପ୍ରାପ୍ତ ହୋଇଥାଉ
ଦେବ ଯେ ଦାନବ ତୋତେ ସରସମ ନୋହୁ
ଇନ୍ଦ୍ରପ୍ରସ୍ଥ ଆଦିକରି ଏହୁ ପଞ୍ଚଦଶ
ନିଷ୍କଳ ହୋଇଣ ରହୁ ତୋହର ଏ ବଂଶ ।
ଯେତେକ ସମ୍ପଦ ଅର୍ଜିଲୁ ତୁ ଧର୍ମନନ୍ଦନ
ଆମ୍ଭର କଲ୍ୟାଣେ ଏବେ ଲଭ ହେ ସେମାନ
ଯେବେ ଅଛଇ ଆମ୍ଭର ଜପତପ ସତ
ପଞ୍ଚରାଜ୍ୟ ଜମ୍ବୁଦ୍ୱୀପେ କରି ତୁ ରାଜତ୍ୱ ।
ବ୍ରହ୍ମର୍ଷି ଦେବର୍ଷି ରାଜର୍ଷି ଦେଲେ ଅର୍ଘ୍ୟ
ଆମ୍ଭର କଲ୍ୟାଣେ ତୋତେ ପ୍ରାପ୍ତ ହେଉ ସ୍ୱର୍ଗ
ସମସ୍ତ ଋଷିଙ୍କୁ ଦେବ ମିଷ୍ଟାନ୍ନ ଭୋଜନ
ପୁଣି ସେମାନଙ୍କୁ ଦେଲେ ଶୀତର ବସନ ।
ଏସନ ବିଧାନେ ସର୍ବେ ତୃପତ ହୋଇଲେ
ପନର ସୁଗନ୍ଧ ଜଳ ଆଚମନ କଲେ ।
ଚଳନ୍ତି ବ୍ରାହ୍ମଣେ ନାନା କଲ୍ୟାଣକୁ କରି
ଅକଳଙ୍କ ହୋଇଥାଉ ତୋର ନଜ ପୁରୀ ।
ତଇତନ ପୂଜା କଲେ ତହିଁ ମନଦେଇ
ଶିଶୁପାଳ ମହିମା ତ ଦେବଙ୍କୁ ଦୁର୍ଲ୍ଲଭ ।
ନାରାୟଣ ତହିଁ ତାକୁ ମାଇଲେ ଶ୍ରୀହସ୍ତେ
ଶିଶୁପାଳ ଭାଗ୍ୟକଥା ନ ସରେ କହନ୍ତେ ।
ତଇତନ କହିଲେ ହେ ଶୁଣ ମନୁଗଣ
ଶିଶୁପାଳର ଚରିତ କହିବା ଏଥର ।
ସାମାନ୍ୟ ନୁହଇ ସେ ଯେ ଅଟେ ବଡ଼ଜଣ
ଯେ ଅର୍ଥେ ତାକୁ ମାଇଲେ ତହେ ନାରାୟଣ
ବିଷ୍ଣୁ ଗଭ ନାମେ ସତ୍ୟଯୁଗେ ଏକଦିନେ
ପଦ୍ମଯୋନି ବ୍ରହ୍ମା ଗଲେ ବୈକୁଣ୍ଠ ଭୁବନେ ।
ନବଯୁଗ ଯାଏ ଦ୍ୱାରେ ରହିଲେ ସେ ବସି
ଜୟ ବିଜୟ ଯେ ପୁରେ ନ ଦେଲେକ ପଶି
ସାର ନାମରେ ଏକଇ ବୈକୁଣ୍ଠ ଅଟଇ
ଅଣାକାର ବିଷ୍ଣୁ ର ସେ ଆସନ ବୋଲଇ ।
ଏକଲୟ ଭରି ଧାତା ବସି ଉପଲକ୍ଷ୍ୟ
ଅଣାକାର ପୁରୁଷଙ୍କୁ ନ ପାରିଲେ ଦେଖି ।

ବାହୁଡ଼ିଣ ପିତାମହ ଆସେ ମଧ୍ୟସ୍ୱର୍ଗେ
ବସିଲେ ସେ ଶୁକ୍ଳାମ୍ବର ପର୍ବତର ଲଗେ ।
ଚିନ୍ତି ମନେ ଆକାଶକୁ ଯାଇ କି କରିବ
ନାରାୟଣଙ୍କ ମୂରତି କେମନ୍ତେ ଦେଖିବ ।
ନବଦ୍ୱାରେ ଲକ୍ଷ୍ୟକରି ବସିଲେ ହରଷି
ଶୂନ୍ୟପବନ ଭକ୍ଷିଣ ବଳୁ ଯାଏ ବସି ।
ପବନ ନିରୋଧି ସେହୁ ଚଢିଲେ ଉଜାଣି
ଅଣାକାର ବିନା କିଛି କଥାନ୍ତି ନ ଜାଣି ।
ମହାଯୋଗେ ସେ ପୁରୁଷ ପ୍ରବର ଏମନ୍ତେ
ବସିଲେକ ସତଷଠି ଯୁଗ ପର୍ଯ୍ୟନ୍ତେ ।
ଅଣାକାର ପୁରୁଷ ଯେ ଜାଣିଲେ ତା ଲକ୍ଷ୍ୟେ
ବିଧାତା ବୈକୁଣ୍ଠପୁର ଇଚ୍ଛିଲେ କ ଲାପ୍ୟେ ।
ପ୍ରିୟବଶ କମଳାଙ୍କ କ୍ଷୀରଗୋଟି ବାଳୀ
ହକାରିଣ ଆଜ୍ଞା ଦେଲେ ଦେବ ବନମାଳୀ ।
ଏହିଠାରୁ ଯିବ ତୁମ୍ଭେମାନେ ମଧ୍ୟପୁରୀ
ପଦ୍ମଯୋନି ବସିଅଛି ବୈକୁଣ୍ଠକୁ ହେରି ।
ତୁମ୍ଭେ ସ୍ୱର୍ଗେ ଯାଇଣ ତାର ତପ ଭଞ୍ଜି
କଠୋର କର୍ମ କରିଣ ତପ ତାର ତଞ୍ଜି ।
ନାରାୟଣଙ୍କ ଆଜ୍ଞାରେ ଗଲେ ସେ ଯୁବତୀ
ଦେଖିଲେ ତାଙ୍କର ତପ କଠୋର ଯେ ଅତି
କରେ ସପ୍ତସ୍ୱର ବୀଣା ଧରିଣ କାମିନୀ
ମନୋହର ଉପହାରମାନଙ୍କୁ ସେ ଘେନି ।
ମୁରଲୀ ପଞ୍ଚମସ୍ୱରେ ଗୀତ ଆରମ୍ଭିଲେ
ଧାତାଙ୍କର ହୃଦୟକୁ ମୁଗଧ ଯେ କରିଲେ ।
ଯୁବତେ ଯୁବତୀ ପୁଷ୍ପ ସୁବାସରେ ନାସା
ଶରୀର ବସନେ ତାଙ୍କ ସ୍ପର୍ଶପଦ ଘର ।
ନାନାବିଧ ଅଳଙ୍କାର ହୋଇ ଆଭରଣ
ବ୍ରହ୍ମାଙ୍କ ନିକଟେ ଆସି ମିଳିଲେ ବହନ ।
ଯୁବତେ ଶିଶିରମାସ କୁହେଳିକା ବୃଷ୍ଟି
ସ୍ତନ ଜାନୁ ଯଉବନ ସବୁ ଦିଶେ ପୁଷ୍ଟି ।
ସେ ପିତାମହଙ୍କ ଆଗେ ହେଲେ ପରବେଶ
ତାଙ୍କ ରୂପ ଦେଖି ପିତାମହ ମତି ଧ୍ୱଂସ ।
କ୍ଷଣେ କ୍ଷଣେ ଅବଲୋକି ତାହାଙ୍କର ଜାନୁ
କାମରେ ଅସାଷ୍ଟମ ଯେ ପିତାମହ ତନୁ ।
ଏତେକ ମହାତମା ସେ ପୁଣିହିଁ ସୁଷ୍ମା
ସମସ୍ୟା ନ କରି ଠାରି ଦେଲେ କରି ସେନ ।

ଦକ୍ଷିଣ ଅନନ୍ଦ ହେଲେ ସେ ପ୍ରମଦାଗଣ
ଅମୋଘ ରେତ ଧାତାଙ୍କ ହେଲା ଯେ ସ୍ଖଳନ
ବହୁଗଲା ସେହି ରେତ ହୋଇ ଗୃହଧାର
ତହିଁରୁ ଉପୁଜି ହେଲେ ଶୃଂଗଷ୍ଟି କୁମର ।
କୁମରଙ୍କୁ ଦେଖିକରି ଭଣନ୍ତି ବିଧାତା
ମୋର ତପସ୍ୟା ଭାଙ୍ଗିଲେ ଏ ସର୍ବ ବନିତା ।
ଏଡେବଡ଼ ତପ ଭଙ୍ଗ ଦେଲେ ମୋତେ ଦୁଃଖ
କୋପେ ଅଭିଶାପ ତାଙ୍କୁ ଦିହ ଚତୁର୍ମୁଖ ।
ତ୍ରିଭୁବନେ ତୁମ୍ଭଙ୍କୁ କେ ନୁହନ୍ତୁ ବିବାହ
ନିଷ୍ଫଳ ହେଉ ତୁମ୍ଭର ଯଉବନ ଦେହ ।
ଅଭିଶାପ ଦେଇ ତାଙ୍କୁ ଅତିଶୟ ରାଗେ
ପୁତ୍ରଙ୍କୁ କୋଳରେ ନେଇ ଧଇଲେ ସରାଗେ ।
ଶୁଣିକରି କନ୍ୟାଗଣ ଆଶ୍ଚର୍ଯ୍ୟ ହୋଇଲେ
ସ୍ୱାମି ଅଙ୍ଗ ମୋକ୍ଷ କର ବୋଲିଣ କହିଲେ ।
ସୁପ୍ରସନ୍ନ ହୋଇ ବିହି ବୋଇଲେ ଏସନ
ପ୍ରକୃତଙ୍କୁ ସୁରତି ଯେ କରିବ ପ୍ରଦାନ ।
ଋଷିପୁତ୍ରଙ୍କୁ ଅନାଇ ବୋଇଲେ ସେ ପୁଣି
ଏହିଠାରୁ ଯାଅ ତୁମ୍ଭେ ମୋର କଥା ମାନି ।
ସନକ ସନନ୍ଦ ସନାତନ ମନୁ ଯେହି
ତାଙ୍କ ମଧ୍ୟରୁ ମନୁର ବଦନକୁ ଚାହିଁ ।
ବୋଇଲେ ତୁ ପାତାଳକୁ ଯାଅ ବେଗ ହୋଇ
ଦର୍ଶନ କର ଅନାଦି ପୁରୁଷଙ୍କୁ ଯାଇ ।
ମନୁ ମହର୍ଷି ତହୁଁ ଯେ କରିଲେ ଗମନ
ସୁତଳ ଯେ ଅତଳ ତଳାତଳ ପୁଣ ।
ରସାତଳ ଅତଳ ଜଗତ ପାତାଳ
ଏମନ୍ତ ସପତ ପୁର କ୍ଷେପି ଧାତାବାଳ ।
ସାର ବଇକୁଣ୍ଠେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ଦ୍ୱାରରେ ପୁଣ ଏମନ୍ତ ଭବିଷ୍ୟ ।
ଘୋରାକାର ଦୁଇକୋଟି ପୁରୁଷ ପ୍ରବର
ବସିଛନ୍ତି ହସ୍ତରେ ସେ ଧରି ଧନୁଶର ।
ତାଙ୍କୁ ଚାହିଁ ମହାଋଷି ବୋଇଲେ ଏସନ
ବାଟ ଛାଡ଼ି ଅନାଦିଙ୍କୁ କରିବୁ ଦର୍ଶନ ।
ଜୟ ବିଜୟ ବୋଇଲେ ନାମ ତୋର କିସ
ବିଷ୍ଣୁଙ୍କୁ ଦେଖିବୁ ବୋଲି କରୁ ଅଭିଳାଷ ।
ଯାଅ ଯାଅ ଏଥେ ତୁହି କ୍ଷଣେହେଁ ନ ରହ
ଏତେ ବୋଲି ପେଲି ଦେଲେ ସେ ଜୟ ବିଜୟ

ତର ଲାଗିଣ ଉତ୍ପନ୍ନ ତାହାଙ୍କର ତନୁ
ପାଞ୍ଚଲକ୍ଷ ଯୋଜନରେ ପଡ଼ିଗଲେ ମନୁ ।
ସାଷ୍ଟାଙ୍ଗ ହୋଇଣ ପୁଣି ଭୂମରୁ ଅଇଲେ
ବୈକୁଣ୍ଠ ମଧ୍ୟେ ଆସି ଦ୍ୱାରରେ ମିଳିଲେ ।
ଦେବ ଅଧ୍ୟୟନ କରି ସେହି ବାଳପଣ
ଉଚ୍ଚରକୁ ପଶିବାକୁ କଲେ ପୁଣି ମନ ।
ପେଲିଦେଲେ ତାଙ୍କୁ ପୁଣି କାଣି ଅଙ୍ଗୁଷ୍ଠର
ଅସାଷ୍ଟମେ ମହାତମା ଭୂମିରେ ଲୋଟିଲେ ।
ମୁଖରୁ ମହାଭମାର ବହିଲା ଶୋଣିତ
ଅଭିଶାପ ଦେଲେ ତାଙ୍କୁ ହୋଇ କୋପଚିତ୍ତ
ବିଷ୍ଣୁଙ୍କ ଦ୍ୱାରପାଳ ଯେ ମହନ୍ତ ହୋଇବ
ଦୁରନ୍ତ ଜନେ ଦର୍ଶନ ନେଇ କରାଇବ ।
ନିର୍ଦ୍ଦୟ ଚଣ୍ଡାଳ ତୁମ୍ଭେ ଅଟ ମଦମତ୍ତ
ଏହିକ୍ଷଣି ତୁମ୍ଭେ ଏଥୁ ଚଳିଯାଅ ଧାଇଁ ।
ଜୟ ବିଜୟ ବୋଲାଇ ରାକ୍ଷସ ଯେ ହୁଅ
ମର୍ତ୍ତ୍ୟପୁରେ ଜାତ ଯାଇ ନାନା ଅପଚୟ ।
ମୋର ଏବେ ଧର୍ମକୁ ନାଶିଲ ରେ ଦୁଷ୍ଟ
ଅସୁର ହୋଇଣ ତୁମ୍ଭ କାୟା ହେଉ ନଷ୍ଟ ।
ମୁନିଙ୍କର ଅଭିଶାପେ ସେ ଜୟ ବିଜୟ
ପଚାରିଲେ ଯେତେ ତୁମ୍ଭେ କାହାର ତନୟ ।
ମୁନି ବୋଇଲେ ଅଟେ ମୁଁ କୁବେରକୁ ସୂନୁ
ମୁନି ସାନପୁତ୍ର ମୋର ନାମ ଅଟେ ମନୁ ।
ପିତାଙ୍କର ବାକ୍ୟ ମୁହିଁ ଅଇଲି ଏଥିକି
ସାର ବୈକୁଣ୍ଠେ ଆସିଛି ଅଣାକାର ଦେଖି ।
ତୁମ୍ଭେ ଦୁଇ ପାମରରେ କଲ ମନ୍ଦବୁଦ୍ଧି
ଭକତ ଲୋକଙ୍କୁ ଦେଲ ଦୁଆର ନରୋଧି ।
ଜୟ ବିଜୟ ବୋଲନ୍ତି ପାଇଲୁ ସନ୍ଦେଶ
ଶାପକୁ କାରଣ ଏବେ କୁହ ବ୍ରହ୍ମାଶିଷ୍ୟ ।
ମନୁ ବୋଲନ୍ତି ତୁମ୍ଭେ ରେ ନ ଚହିଁଲ ମୋତେ
ମୁକତ ହୋଇବ ଯାଇ ତିନିଜନ୍ମ ଅନ୍ତେ ।
ଦୈତ୍ୟକୁଳେ ତୁମ୍ଭେ ଜନ୍ମେ ଜନ୍ମେ ଅବତରି
ନାରାୟଣଙ୍କ କରରେ ବାରମ୍ବାର ମରି ।
ପୁଣି ଆସି ଏହି ପୁରେ ଦୁଆରୀ ହୋଇବ
ମିଥ୍ୟା ନୁହେ ଏହି କଥା ଅଟଇ ଯେ ଧ୍ରୁବ ।
ଆହେ ଚଇତନ ସେହି ମନୁ ଅଭିଶାପେ
ଅସୁର ଜନ୍ମ ଲଭିଲେ ପଡ଼ିଦୋଷ ପାପେ ।

ପ୍ରଥମେ ହେଲେ ହିରଣ୍ୟ ଆଉ ହିରଣ୍ୟାକ୍ଷ
ତାହାଙ୍କୁ ବିନାଶ କଲେ ପ୍ରଭୁ ଶିରିବତ୍ସ ।
ସେହି ବଂଶେ ଉପୁଜିଲା ହିରଣ୍ୟକଶିପୁ
ନରସିଂହ ରୂପେ ହରି ହରିଲେ ତା ବପୁ ।
ତ୍ରେତାରେ ହେଲେ ରାବଣ ଆଉ କୁମ୍ଭକର୍ଣ୍ଣ
ରାମାବତାରେ ନାଶିଲେ ତାଙ୍କୁ ରଘୁନାଥ ।
ଦନ୍ତବକ୍ର ନାଶହେଲା ରୁକ୍ମିଣୀ ହରଣେ
ଶିଶୁପାଳ ମଲା ଏହି ରାଜସୂୟ ବିଧାନେ ।
ଦେଖୁ ଦେଖୁ ନାରାୟଣ ଶଙ୍ଖ ଚକ୍ରଧାରୀ
ଶୂନ୍ୟେ ଉଡ଼ି ଶିଶୁପାଳ ନାନାସ୍ତୁତି କରି ।
ଜୟ ତୁ ଜୟ ଗୋବିନ୍ଦ କୃଷ୍ଣ ଅବତାର
ବରାହବତାରେ ପୃଥ୍ୱୀ ଦନ୍ତଅଗ୍ରେ ତୋର ।
ସ୍ୱାମୀ ଆମ୍ଭେ ଯେ ତୋହର ଦ୍ୱାରପାଳ ଥିଲୁ
ମନୁର ଅଭିଶାପରେ ମର୍ତ୍ତ୍ୟେ ଜନମିଲୁ ।
ମେଦମାରେ ଇନ୍ଦ୍ରକର ହୋଇଲୁ ବିବାଦ
ଦାଢ଼େ ଉଦ୍ଧାରଣ କଲୁ ତୁହି ଜଗନ୍ନାଥ ।
ହିରଣ୍ୟକଶିପୁ ରୂପେ ଦେବ ସ୍ୱର୍ଗ ଇଛ
ନୃସିଂହ ରୂପେ ବିଦାର କରିଲୁ ଶ୍ରୀବତ୍ସ ।
ରାବଣ କୁମ୍ଭକର୍ଣ୍ଣ ଯେ ହେଲୁ ତ୍ରେତୟାରେ
ଲଙ୍କାପୁର ନାଶ କଲୁ ପୁଣ କୋଦଣ୍ଡରେ ।
ଯାମଳା ଅର୍ଜ୍ଜୁନ ବିନାଶିଲୁ ବାଳକାଳେ
ପାଦେ ଶକଟା ଭଞ୍ଜନ କଲୁ ଶିଶୁବେଳେ ।
ଜୟ ତୁ ଜୟ କେଶବ ନାରାୟଣ ମୂର୍ତ୍ତି
କାଳେ କାଳେ ଦୁଷ୍ଟଙ୍କୁ ତୁ କରୁ ବିନଶ୍ୟତ ।
ତୁ ଦେବ ବ୍ରହ୍ମାଣ୍ଡନାଥ ତୁ ଅନନ୍ତ ଦେବ
ପ୍ରଥମେ ନାଶ କଲୁ ତୁ ମଧୁକଇଟଭ ।
ମାଳି ସୁମାଳିଙ୍କୁ ତୁହି ମାଇଲୁ ଶ୍ରୀକରେ
ତେ ତୁ ମହାତ୍ମା ଦେବଙ୍କର ପ୍ରାଣ ନେଲୁ ଖରେ
ଆହେ ଦେବ ଅଭଞ୍ଜନ ଭଞ୍ଜନ କୋଣପ
ଖଳଙ୍କ ଦେଶ ନାଥର ହରିଲୁ ତୁ ଦର୍ପ ।
କୁମ୍ଭ ନିକୁମ୍ଭ ବୋଲିଣ ଦୈତ୍ୟ ବେନିମାରି
ମହାପାପୀ ଜନ ନାଥ ତୋହର ବଇରି ।
ବଜ୍ରବକ୍ତ ଯେ ଦୁଇ ଦଇତଙ୍କ ନାମ
କୁଶ ହସ୍ତରେ ଗୁପଲେ ପୁରୁଷ ଉତ୍ତମ ।
ଯାବଚ୍ଚନ୍ଦ୍ର ଦିବାକର ଅଛନ୍ତି ଦେବତା
ତୁ ଯେ ଉଦ୍ଧରୁଛୁ ପୁଣ ପୁଣ ବସୁମାତା ।

ଅନନ୍ତ ଅବତାର ତୁ ହେଲୁ କାର୍ଯ୍ୟଅର୍ଥେ
କାହାକୁ ଦେବ ମାଇଲୁ ପୁଣି ଚନ୍ଦ୍ରାଘାତେ ।
ସାଧୁ ମହିମା ତୋହର କୃଷ୍ଣ ଅବତାର
ଦୁଃସହ କଷଣୁ ଦେବ କରୁ ଯେ ଉଦ୍ଧାର ।
ଭରଯା ହରଣେ ନାଥ ତୋହର କଟାଳ
ତାହା କ ଉପେକ୍ଷା କରୁ ତୁହି ସର୍ବକାଳ ।
ମୁକ୍ତିକୁ କାରଣ ଏବେ କର ହେ ଶ୍ରୀବତ୍ସ
ଆଜ୍ଞା ଦିଅ ଦେବ ମୋତେ ବୈକୁଣ୍ଠ ଯାଉଛୁ
ଅନେକ ସ୍ତୁତି ସେ ଯହୁଁ କଲା ମହାଜ୍ଞାନେ
ଯୋଗାଇଲେ ନାନା ପାଟଛଦ ବସ୍ତ୍ର ଗଣେ ।
ସାଇ ବଇକୁଣ୍ଠେ ଯାଇ ବିଜୟ ତକ୍ଷଣ
ବାଜେ ଜୟଶଙ୍ଖ ଦେବ ଦୁନ୍ଦୁଭିର ସ୍ୱନ ।
ସାରଳା ଦାସ ବୋଲଇ ମୂର୍ତ୍ତି ତ ଅଜ୍ଞାନ
ସେ ପାଦପଦ୍ମକୁ ସଦା କରିଅଛୁ ଧ୍ୟାନ ।

---

## ଦୁର୍ଯ୍ୟୋଧନର ଅପମାନ
## ଅନନ୍ତ ଶିରେ ପୃଥିବୀ ସ୍ଥାପନ
## ସନ୍ଧ୍ୟାବାଳୀର ବିବାହ ଓ
## ସିଂହ ଶୃଗାଳ କଥା

ବୈବସ୍ୱତ ପୁଚ୍ଛା କଲେ ଅଗସ୍ତ୍ୟ ମୁନିଙ୍କୁ
ଶିଶୁପାଳ ଚଳିଗଲା ବୈକୁଣ୍ଠ ପୁରକୁ ।
ବୈକୁଣ୍ଠ ଦୁଆର ସେହୁ ଆବୋରିଲା ଯାଇ
ଜୟ ବିଜୟ ବସିଲେ ଯୋଗାଇବ ହୋଇ ।
ଏଣେ ଆସ୍ଥାନରେ ଆଜ୍ଞା ଦେଲେ ଧର୍ମଗଣ
ଦୁର୍ଯ୍ୟୋଧନକୁ ହକାରି ଆଣ ଭୀମସେନ ।
ସ୍ୱାମୀଙ୍କର ଆଜ୍ଞା ଘେନି ଶିରେ ଭୀମ ସେନ
ଦୁର୍ଯ୍ୟୋଧନକୁ ଡକାଇ ଆଣିଲା ତକ୍ଷଣ ।
ଯୁଧିଷ୍ଠିର ଦେବ ବୋଲିଲେ ଦୁର୍ଯ୍ୟୋଧନେ ଦେଖି
ବାବୁ ଆସ ବସ ତୁ ରେ ଆସ୍ଥାନ କଟକ ।
ମୟଠାରୁ ଆଣିଥିଲେ ଯାକୁ ଭଗବାନ
ତେଜରେ ଗଢ଼ିଲ ସେହୁ ଦେବ ଦିବସ୍ଥାନ ।
ସ୍ଫଟିକ ପାବଚ୍ଛ ବୋଲି ରଜା ଦୁର୍ଯ୍ୟୋଧନ
ଚକ୍ଷୁରେ ଚରଣ ନେଇ କରନ୍ତେ କ୍ଷେପଣ ।
ସ୍ଫୁଟ ସ୍ଫୁର୍ତ୍ତ ଜାନୁପୂର୍ଣେ ଉଦ୍ଧଣ ପଡ଼ିଲା
ଚେତନା ଲଭିଣ ପୁଣ ଉଠିଣ ବସିଲା ।

ଦେଖି କରତାଳି ଦେଇ ହସେ ଭୀମସେନ
ବେଳରେ କର ଦେଇଣ ଆଣିଲା ଯାଇଣ ।
ଧରି ସଭା ଉପରକୁ ନେଲା ଯେ ମାରୁତି
ଆସ୍ଥାନ ଦେଖାଇ ବୋଲେ ବସ ହେ ନୃପତି
ଆସ୍ଥାନରେ ଦୁର୍ଯ୍ୟୋଧନ ଯାଇଣ ବସିଲା
ପଛଆଡ଼େ ସ୍ୱର୍ଣ୍ଣସ୍ତମ୍ଭ ଏକ ସେ ଦେଖିଲା ।
ଖମ୍ବେ ଆଉଜି ଯାଆନ୍ତେ ଯନ୍ତ୍ରେ ସେ ଟଳିଲା
ମୁହଁମାଡ଼ି ଦୁର୍ଯ୍ୟୋଧନ ଭୂମିରେ ପଡ଼ିଲା ।
ଦେଖି ତାଳିଭୁଷା ମାରି ହସେ ଭୀମସେନ
କୁତୂହଳ ଉଡ଼ି ଗୁଡ଼ିଲେ ସର୍ବ ରାଜାଗଣ ।
ନାସିକାରେ ହସ୍ତ ଦେଇ ହସିଲେ ଶ୍ରୀନାଥ
ଭୀମସେନ ଧରି ପୁଣି ଆଣିଲା ତୁରିତ ।
ଯୁଧିଷ୍ଠିରଦେବ ବୋଇଲେ ମୋ କଟକ ଆଣ
ମୋହର ଆସ୍ଥାନ ପରେ ବସାଅ ବହନ ।
ସୁବର୍ଣ୍ଣର ପୀଢ଼ାପରେ ବସନ୍ତେଣ ଯାଇ
ମୁହଁମାଡ଼ି ଭୂମିପରେ ପୁଣ ସେ ପଡ଼ଇ ।
ଦେଖିକରି ବୃକୋଦର ଧାଇଁଲା ସତ୍ୱରେ
ବାହା ଧରି ଉପସ୍ଥିତ କରିଲା ସଭାରେ ।
ପୁନରପି ଯୁଧିଷ୍ଠିର ବୋଇଲେ ରେ ବାବୁ
ଆପଣ ଧନ ରତନ ନିଅ ବେଗେ ସବୁ ।
ଶୁଣିକରି ଦୁର୍ଯ୍ୟୋଧନ ସତ୍ୱରେ ଧାଇଁଲା
ନଇପଡ଼ି ଧନରତ୍ନମାନ ବଣ୍ଟିଲା ।
ମୁଣ୍ଡ ଛନକୁ ମାଡ଼ିଣ ପଡ଼ିଲା ଉପରୁ
ନୟନରେ ଦେଖିକରି ଭୀମ ତାହା ଦୂରୁ ।
ଉଚ୍ଚେ କରତାଳି ଦେଇ ହସିଣ ଉଚଳିଲା
ବାପ ପରସ୍ପେ ଏବେ ତୋ ନୟନ ଦଶିଲା ।
କପାଁ ଏମନ୍ତ ହୋଇଲୁ ରେ ମାନଗୋବିନ୍ଦ
ଚକ୍ଷୁ ଥାଇ ଥାଉଁ ଏବେ ହୋଇଲୁ ତୁ ଅନ୍ଧ ।
ଜଳ ପୁଟୁକା ବୋଲି କି ନ ପାରିଲୁ ବାରି
କାହମ୍ପାଇ ଧାଉଅଛୁ ଧନେ ଲୋଭ କରି ।
ଅପମାନ ପାଇ ରଜା ନ ରହି ବସନ୍ତେହେଁ
ହସ୍ତିନା ରାଜ୍ୟକୁ ଗଲା ସେହି ମୁହୂର୍ତ୍ତେହେଁ ।
ଥିଲେ ଯେ ଶକୁନି ଦୁଃଶାସନର ସଙ୍ଗତେ
ସମସ୍ତେ ଉଠିଣ ଗଲେ ସର୍ବ ଅମାତ୍ୟେ ।
ଚଳିଯାନ୍ତି କଉରବେ ଆପଣା ନଗରୀ
ମୁହଁମାଡ଼ି ଶୁଏ ରଜା କୁଶଶଯ୍ୟା କରି ।

ଆସ୍ଥାନ ଧରମଦେବ ଭଉ ପଣ୍ଡିତେଜ୍ୟା
ବାସୁକି ନାଗରାଜାର ପାଦେ କଲେ ପୂଜା ।
ଅନେକ ଧନରତନ ଅଳଙ୍କାର ଦେଇ
ବୋଇଲେ ତବ ପ୍ରସାଦେ ଅବ୍ୟ ପାଇବଇଁ ।
ଅଷ୍ଟକୁଳ ନାଗଙ୍କୁ ସେ କଲେ ବହୁପୂଜା
ନାଗବଳ ଦେଲେ ରାଜା ପାତାଳକୁ ଯାଯା ।
ଚଳଇ ଅନନ୍ତ ରାଜା ପାତାଳ ଭୁବନେ
ଯୁଧିଷ୍ଠିର ପୂଜିଲେ ଲଙ୍କରାଜା ବିଭୀଷଣେ ।
ବିଭୀଷଣ ବୋଲେ ଦେବ ଏ ଦ୍ୱାପର ଯୁଗେ
ଦେଖିଲି ମୁଁ କୃଷ୍ଣ ରୂପ ତୋର ଅନୁରାଗେ ।
କଳରେ ନାଥ ମୁଁ ତୋତେ ଦେଖିବଇଁ କାହିଁ
କେବଣ ଭୁବନେ ଥିବ ପଥକୁ ମୁଁ ଚାହିଁ ।
ଗୋବିନ୍ଦ ବୋଇଲେ ଭଦ୍ରେ ସଦୟେ ତୋତେ
ବାରୁଣୀଧିର ତଟରେ ଯମନିକ ତୀର୍ଥେ ।
ଯେବଣ କଳପବଟ ଅଟେ ନୀଳଗିରି
ତହିଁ ଭଜସୁ କରିବୁ ବୌଦ୍ଧରୂପ ଧରି ।
ମିଥୁନ ଶୁକ୍ଳପକ୍ଷ ଦ୍ୱିତୀୟାର ତିଥି
ପୁନର୍ବସୁ ନକ୍ଷତ୍ର ସେ ଦିନର ପାଙ୍କାନ୍ତ ।
ସେଦିନ କରିବୁ ଆମ୍ଭେ ରଥଯାତ୍ରା ଖେଳ
ଦକ୍ଷିଣ ମୂର୍ତ୍ତିରେ ବଳେ ଜଣିବୁ ବାଲର ।
ଅର୍ଦ୍ଧସତ୍ତ୍ୱଯାଏ ହେବ ଦକ୍ଷିଣ ମୁହୂର୍ତ୍ତ
ଦକ୍ଷିଣ ଦିଗ ତୋହର ରାଜବ ଜଗଣ୍ଠ ।
ଆମ୍ଭେ ରହିଥିବୁ ନୀଳସୁନ୍ଦର ପର୍ବତେ
ଲଙ୍କାଗଡକୁ ହୋଇବ ଅବକାଶ ତୋତେ ।
ଯାଅ ବିଭୀଷଣ ରାଜା ଆଜ୍ଞା ଦେଲେ ସ୍ୱାମୀ
ବିଭୀଷଣ ଦୃଶ୍ୟ ହେବାଯାଏ ପରଣାମି ।
ଜଗନ୍ନାଥ ବାହୁଡିଲେ ଯମୁନା ତଟରୁ
ବସ୍ତ୍ର ସେନ ଲଙ୍କପତି ଚଳଇ ସେଠାରୁ ।
ଗୋବିନ୍ଦ ଅଦୃଶ୍ୟ ହୋଇଗଲେ ଯେତେବେଳେ
ବିମାନେ ଚଢିଲେ ସର୍ବେ ସେ ଅସୁରବଳେ ।
ଆନନ୍ଦେ ଅନେକ ସେହୁ ଉତ୍ସବ ଯେ ହୋଇ
ସମୁଦ୍ର ଲଙ୍ଘି ଲଙ୍କାରେ ପ୍ରବେଶିଲେ ଯାଇ ।
ନାଗବଳ ପାଇକର ନାଗବଳ ରାଜା
ଆଜ୍ଞା ଦେଲେ ହରି ଭୁବି ପାତାଳକୁ ଯା ଯା ।
ସ୍ୱାମି ମୋହର ନିକଟେ ପାର୍ଥ ବିଜେକଲ
ଧନୁର୍ଦ୍ଧରରେ ମେଦିନୀ ସମଗ୍ର ଧଇଲ ।

ଶ୍ରୀ ବାସୁଦେବ ଯେ ତହୁଁ ଭାଷନ୍ତି ଏସନ
ହେ ପୃଥ୍ୱୀ ନ ଜାଣୁ ଭୁବି ତହିଁର ବିଧାନ ।
ପ୍ରହରବା ତନଲକ୍ଷ ସତାଶୋଇ ବର୍ଷେ
ଧାତା ବିଜେକଲେ ଆସି ଅମର ଆକାଶେ ।
ବ୍ରହ୍ମାର ଡାହାଣେ ଅଛୁ ଯେବଣ ବଦନ
ଋକ ବେଦଟି ତହିଁରୁ ହେଲା ଉତପନ୍ନ ।
ଋଷି ବଦନକୁ ଯହୁଁ ବିକାଶିଲ ବାମେ
ସାମବେଦ ତହୁଁ ଜାତ ହୋଇ ମହାବ୍ରହ୍ମେ ।
ତାର ପଛେ କରତାର ବଦନ ଦରଶି
ସେ ବଦନ ଭରତାର ଅଥରବ ଉଚ ।
ଆଗେ ବ୍ରହ୍ମାଙ୍କର ଯେଉଁ ମୁଖ ବିକାଶଇ
ସେ ମୁଖରେ ବ୍ରହ୍ମା ଯଜୁର୍ବେଦକୁ ଘୋଷଇ ।
ଗୁରୁମୁଖେ ବେଦ ଏହି ରୂପରେ ପଢ଼ଇ
ଊର୍ଦ୍ଧ୍ୱ ମୁଖେ ଅଜପାକୁ ଦୃଢରେ ଜପଇ ।
ଅଦଭୁତେ ଦେବତାଙ୍କ ଟଳିଲା ଆସନ
ଧାତାଙ୍କୁ ଭେଟିଲେ ଯାଇ ସେ ପଞ୍ଚବଦନ ।
ଦେଖିକରି ବିଧାତା ଯେ ପଢେ ବେଦମନ୍ତ୍ର
ଈଶ୍ୱର ବୋଇଲେ ଧାତା ତୋର ଏ କେମନ୍ତ
ମୁହିଁ ସେ ପଞ୍ଚବଦନେ ଅଟେ ପରଂଯୋଗୀ
ସଦା ମନ୍ତ୍ରେ ହୋଇଥିବ ଗାୟତ୍ରୀ ମୁଁ ଲାଗି ।
ଚତୁର୍ବଦନେ ସେ ତୋର ଚାରିବେଦ ଯୁକ୍ତ
ପୁଣି ବେଦ ଭାଷ୍ ଭୁବି କେବଣ ସଙ୍ଗତ ।
ଆବର ମୋହର ଶିବ ଅଟେ ଭୟଙ୍କର
କରରେ ଧରିଥାଏ ମୁଁ ସଦା ଧନୁଶର ।
ବିଧାତା ବୋଇଲେ ମୁହିଁ ପୃଥ୍ୱୀର କରତା
ଧାତୁବାଦ୍ୟ ପ୍ରତ୍ୟକ୍ଷ ମୁଁ ଜଗତର ବିଧାତା ।
ତୋହର ଇଚ୍ଛା ଯଦ୍ୟପି ହୁଏ ତ୍ରିଲୋଚନ
ଦେଖ ସ୍ୱରୂପରେ ମୁହିଁ ପଞ୍ଚର ବଦନ ।
ଏହୁଁ ଏହୁଁ ବ୍ରହ୍ମା ଶିରେ ହେଲା ମୁଣ୍ଡେ ଜାତ
ଈଶ୍ୱର ବୋଇଲେ ଏବେ କଲୁ କୁଟମାଥ ।
ଏ ନଗର ଲୋକଙ୍କର ଏସନ ପ୍ରକୃତି
ମୁଣ୍ଡେ ହରନ୍ତ ମୁଣ୍ଡେକ କରନ୍ତି ଉତ୍ପତ୍ତି ।
କହୁଁ କହୁଁ କ୍ରୋଧାନଳ ହେଲେ ତ୍ରିପୁରାରି
ସେ ପଞ୍ଚବକ୍ତ୍ର ଏହାଙ୍କୁ ଯାଇ ଦୃଢ ଧରି ।
ବ୍ରହ୍ମାର ମୁଣ୍ଡ ମୋଡିଲେ ସେ ପରମ ଯୋଗୀ
ବ୍ରହ୍ମାଙ୍କ ମସ୍ତକ ରୁଦ୍ର କରତଳେ ଲାଗି ।

ଈଶ୍ବର ଦେବତା ତାଙ୍କୁ ପକାନ୍ତେ ତ୍ରିଶୂଳ
ଛଡାଇ ସେ ନ ପାରିଲେ କରୁଁ ନିପୁରାରି ।
ନିବାରଣ କରନ୍ତେ ଯେ ପରଶୁ ଅସ୍ତ୍ରରେ ।
ନ ଛୁଟଇ ସେ ଶିରଟି ଯେ କେତେ କାଳରେ
ବ୍ରହ୍ମାଙ୍କର ମୁଣ୍ଡରୁ ଯେ ବହିଲା ରୁଧିର
ତା ମଧ୍ୟରୁ ପୁରୁଷେକ ହୋଇଲା ବାହାର ।
ମର୍ତ୍ତ୍ୟରେ ଚରଣ ତାର ଆକାଶରେ ଶିର
କ୍ଷୁଧାତାର ମୁଖ ଶୁଣି ମାଗଇ ଆହାର ।
ବ୍ରହ୍ମା ବୋଇଲେ ଦେଖ ତୁ ଏହି ପଞ୍ଚମୁଖ
ଅତିଶୀଘ୍ର ଯାଇଣ ତୁ ଏହାକୁ ଯେ ଭକ୍ଷ ।
କ୍ଷୁଧାତାଙ୍କ ଆଜ୍ଞାରେ ସେ ଚଳେ ତତକ୍ଷଣାନ୍ତ
ଈଶ୍ବର ଦେବତାଙ୍କୁ ସେ ଭେଟିଲେ ଝଟତ ।
ଅନେକ ସମର କଲା ରୁଦ୍ରଙ୍କ ସଙ୍ଗତେ
ଲାଗିଲା ଭୀଷଣ ରଣ ବର୍ଷେ ପରିଯନ୍ତେ ।
କ୍ରୋଧେ ଭୀମ ହୃଦୟରେ ମାଇଲେ ଶକତ
ତଥାପି ନାଶ ନ ହେଲା ସେହି ସେନାପତ ।
ତାସେ ଈଶ୍ବର ସେଠାରୁ ପଳାଇଲେ ଖ୍ୟାତ
ଗୋଡାଇଛି ବ୍ରହ୍ମବେଣ୍ଟ କୋପେ ଗଜତାଜ ।
ସୂର୍ଯ୍ୟଙ୍କୁ ବୋଇଲେ ଶୁଣି ସେ ରୁଦ୍ର ଦେବତା
ଆହେ ସୂର୍ଯ୍ୟ ଗୋଡାଇଛି ମୋତେ ବ୍ରହ୍ମବେଣ୍ଟ
ଆବର୍ତ୍ତ୍ୟ କହିଲେ ତୁମ୍ଭେ ବ୍ରହ୍ମହତ୍ୟା ଦୋଷୀ
ତୁମ୍ଭର ମୁଖ ଦେଖିଲେ ନାନା ଦୋଷ ଅଛି ।
ସୂର୍ଯ୍ୟଙ୍କ ବଚନ ଶୁଣି ଦେବ କାଶୀବାସୀ
ଅମରାବତୀ ନଗ୍ରକୁ ଗଲେ ବିଶ୍ବବାସୀ ।
ତହିଁ ମିଳି ବୋଲନ୍ତି ହେ ଶୁଣ ଆଖଣ୍ଡଳ
ବ୍ରହ୍ମବେଣ୍ଟର ବହୁତ ମୋତେ ଯେ ଜଞ୍ଜାଳ ।
ରୁଦ୍ରଙ୍କ ବଚନ ଶୁଣି ସେ ଇନ୍ଦ୍ରଦେବତା
ଅତି କୋପଭର ହୋଇ କହିଲେ ଏ କଥା ।
ଆଖଣ୍ଡଳ ବୋଇଲେକ କଲ ବ୍ରହ୍ମହତ୍ୟା
ତେଣୁ ତୁମ୍ଭଙ୍କୁ ଗୋଡାଇଛନ୍ତି ବ୍ରହ୍ମବେଣ୍ଟ ।
ମୋହର ମନ୍ତ୍ରରେ ତୁମ୍ଭେ ପଶ ସମୁଦ୍ରରେ
ତତ୍‌କ୍ଷଣେ ଶଙ୍କର ପଶିଗଲେ ସେ ଜଳରେ ।
ଜଳ ହାଦୋଳା ହୋଇଲା ମନ୍ଥନ ପ୍ରକାରେ
ବ୍ରହ୍ମା ଦେବତାଙ୍କୁ ଯାଣି ଚିନ୍ତଇ ଅଶୁଏ ।
ବ୍ରହ୍ମବେଣ୍ଟ ପଛେ ପଛେ ଗୋଡାଇଣ ଗଲା
ଈଶ୍ବର ଦେବତାଙ୍କୁ ଯେ ଯାଇଣ ଭେଟିଲା ।

ମହା ସମର ଲାଗିଲା ଦୁଇ ଜଣଙ୍କର
ଜଳରେ ହରି ଚିନ୍ତିଲେ ତହୁଁ ସେ ଶଙ୍କର ।
ଶ୍ରୀ ନାରାୟଣ ଆସିଣ ଉପସ୍ଥିତ ହେଲେ
ସମର ନ କର ଆଉ ବୋଲିଣ କହିଲେ ।
କେଶବ ଆଜ୍ଞାରେ ତହୁଁ ଗଲା ସେହି ଫେରି
ବ୍ରହ୍ମରୂପୀ ଅର୍ଜ୍ଜୁନର ମହିମା ଏପରି ।
ହେ ବାସୁକି ଏସନ ଯେ ଅର୍ଜ୍ଜୁନ ମହିମା
ଅର୍ଜ୍ଜୁନ ପ୍ରତ୍ୟକ୍ଷରେ ଯେ ଅଟେ ଆଦିବ୍ରହ୍ମା ।
ବିଷ୍ଣୁଙ୍କ ରକତ ସଦାଶିବଙ୍କର ମାଂସ
ବ୍ରହ୍ମାର ମୁଣ୍ଡ ବାସବ ରେତ ଯେ ପ୍ରକାଶ ।
ଯେତେ ଯେତେ ରୂପେ ଜାତ ହେଲେ ଫାଲଗୁନ
ତାହା ନ ଜାଣିବ ମୂର୍ଖ ବୋଲ ଅନ୍ତର୍ଯ୍ୟାମୀ ।
ଶୁଣିଣ ପରମ ତୋଷ ହୋଇଲା ବାସୁକି
କୃଷ୍ଣଙ୍କ ବଚନେ ଗଲା ଅର୍ଜ୍ଜୁନ ଚହିଁକି ।
ଅଷ୍ଟକୁଳ ନାଗ ସେହି ଚଳିଲା ଚଞ୍ଚଳ
ପ୍ରବେଶ ହେଲା ଅନନ୍ତ ଯାଇଣ ପାତାଳ ।
ଦେଖିଲେ ବାସୁକି ତହୁଁ ବିଜୟେ ବାସବ
ଧନୁହିଲେ ଧରିଅଛି ସପତ ପୃଥିବୀ ।
ଦେଖିକରି ବହୁ ହର୍ଷ ହେଲେ ନାଗରାଜା
ବହୁତ ଦ୍ରବ୍ୟ ସେହିଣ କରେ ପାଦପୂଜା ।
ସାଧୁ ପାଣ୍ଡବ ସାଧୁରେ ଧନ୍ୟ ଧନ୍ୟ ତୁହି
ସାଧୁ ସେହି ଜାତକଲେ ଯା ସନ୍ତତି ତୁହି ।
ନାଗରାଜା କୃଷ୍ଣଙ୍କ ସହ ପଣାମି
ଏହି ମହାଭାର ତୋତେ ଦେଲେ ଦେବସ୍ୱାମୀ ।
ବସ୍ତ୍ରାର ସାଗର ନାଥ କରି ମୋତେ ପାର
ଏବେ ପୃଥିବୀକୁ ଥୁଅ ମୋର ମସ୍ତକର ।
ଜସ ଦେଇ ଭକ୍ତି ମୁକ୍ତି କରିବ ତୋହର
ଅର୍ଜ୍ଜୁନ ବୋଇଲା ଏବେ ବସୁନ୍ଧରା ଧର ।
ଏ ମହା ପୃଥିବୀ ଭାର ଦୃଢ଼କରି ଧର
ଯେ ଯାହାଠାରେ ବସାଅ ମହାଫେରୁ ତୋର
ସେ ଅନନ୍ତ ନାଗରାଜା ପାର୍ଥକୁ ଯେ ଭାଷି
ମୋହର ମସ୍ତକେ ପୃଥ୍ୱୀ ଥୁଅ ତୁ ବଅସି ।
ଆହୋ ଅନନ୍ତ ନାଗ ତୁ ଧରିଲୁ ପୃଥିବୀ
ହନାକେତେ ନ ଥିଲା ତୋ ଶିରେ ପୃଥ୍ୱୀଦେବୀ
ଯାହା ତାହା ହେଉ ଏହି କଥା ଦୁରପବ
ଏଥର ଆଜୁ ତୋହର ନଥ ତୁ ସ୍ମୃତ ।

ସମ୍ମାନ ସହିତ ବୋଇଲ ବାସବର ବାଳ
ସ୍ତୁତି କରଣ ଲାଗିଲେ ତହୁଁ ଧନଞ୍ଜୟ ।
ଅନନ୍ତ ଧଇଲ ଯହୁଁ ମେଦିନୀର ଭାର
ସାଧୁ ସାଧୁ ବୋଲନ୍ତି ପାର୍ଥ ଧନୁର୍ଦ୍ଧର ।
ଯାଉଅଛି ପିତାମହ ଏବେ ମୁଁ ହସ୍ତିନା
ନାଗରାଜା ବୋଲେ ବାବୁ ଶୁଣ ଯିବୁ ତଥା
ମୁହିଁ ତୋତେ ଦେଇଗଲି ଏତେ ମହାବୀର
ଜଗତ ଜିଣିବ ତୋତେ ଜୟ ଦେଇ ବୀର ।
ଅର୍ଜ୍ଜୁନ ବୀର ବୋଲଇ ଶୁଣ ଦେବଗଣେ
ମେଦିନୀ ଧଇଲ ମୁହିଁ ଆପଣଙ୍କ କାର୍ଯ୍ୟେ ।
ଆଉର ଅନେକ କାର୍ଯ୍ୟ ତୋର ଅନୁଗ୍ରହ
ସଙ୍ଗତା ଆମ୍ଭରେ ଦେବ ରଖିଥିବ ସ୍ନେହ ।
ଅର୍ଜ୍ଜୁନ ବୋଇଲେ ତୋର ଅନୁଗ୍ରହ ମୋତେ
ନ ଦେଖି କୃଷ୍ଣଙ୍କ ମୁଁ ଜୀବିବ କେମନ୍ତେ ।
ସଖି କହିଲେକ ଆହୋ ଶୁଣ ନାଗରାୟେ
ଯେମନ୍ତେ ପରତେ ଯାଇ କର ତା ଉପାୟେ
ନାଗ ବୋଲେ ମୋର ସନ୍ଧ୍ୟାବାଳୀ ଯେ ଦୁହିତା
ହୋଇଥାଏ ସେହି ତୋତେ ନିତ୍ୟହେଁ ଉଚିତ
ବିଭାର କରିଅଛି ମୁଁ ମନର ହ୍ଲାଦ
ତୋର ଅନୁଗ୍ରହ ହେଲେ ଦେବ ସନ୍ଧ୍ୟାବାଳୀ
ଅର୍ଜ୍ଜୁନ ବୋଇଲେ ଯା ତୋହର ବିଭାର
ଯେପରି ମନକୁ ଆସେ ବଢିବଢି କର ।
ପୁତ୍ରଙ୍କୁ ଚାହିଁ ବୋଇଲେ ସେହି ନାଗଦେବା
ପୁରେ ଉତ୍ସବ କରଅ ସନ୍ଧ୍ୟାବାଳୀ ବିଭା ।
ଶୁଣିଣ ସାନନ୍ଦ ଯେ ହେଲେ ନାଗଲୋକେ
ନାନା ଉତ୍ସବ କଲେ ଅତ୍ୟନ୍ତ ଉତ୍ସୁକେ ।
ବିଭାର ଉତ୍ସବମାନ କରିଲେ ପାତାଳେ
କନ୍ୟାର ବେଶ ମଣ୍ଡିଲେ ସାଧବୀ ସକଳେ ।
ଯେ ବିଧି ଉତ୍ସବ ଚାହିଁ ସାର ପୁରୋହିତେ
ସୀଉକାର ବିଧିକୁ ସେ କର ଯେଉଁ ମତେ ।
ସୋମବଂଶରେ ସଞ୍ଜାତ ପାଣ୍ଡବ ଫାଲ୍‌ଗୁନ
ଅନନ୍ତ ଗୋତ୍ରରେ ନାଗରାଜାର ନନ୍ଦିନୀ ।
ପଦ୍ମନାଗର କୋଳରେ ବିଜୟ କୁମାରୀ
ବର କନ୍ୟାଙ୍କୁ ସେ ଯୋଗେ ହସ୍ତଗଣ୍ଠି କରି
ନାରୀମାନେ ହୁଳହୁଳି ଦିଅନ୍ତି ସଙ୍ଗରେ
ଅନେକ ଉତ୍ସବ ହୁଏ ପାତାଳ ପୁରରେ ।
ଅମୃତ ରସପାନ ଯେ କରି ବର କନ୍ୟା
ଆଚମନ ଶେଷକରି ସେହି ଅନ୍ନପୂର୍ଣ୍ଣା ।
ସୁସଜ୍ଜ ପଲ୍ୟଙ୍କରେ ସେ ଶୋଇଲେ ସୁପାତ୍ର
ଦ୍ୱାରରେ ମଙ୍ଗଳଧ୍ୱନି କରନ୍ତି ଯୁବତୀ ।
ନାନାବିଧ କ୍ରୀଡ଼ାକଲେ ନାଗୁଣୀର କୂଳେ
ପାର୍ଥର ସେ କ୍ରୀଡ଼ାମାନ କେବା କହିପାରେ ।
ନାଗୁଣୀର ସଙ୍ଗେ ପାର୍ଥ ନାନା କ୍ରୀଡ଼ାରସେ
ରହିଲେ ଅନେକକାଳ ପାତାଳର ଦେଶେ ।
ବହୁତ ଦିବସ ତହୁଁ ହୋଇଲା ନାଗୁଣୀ
ପ୍ରକୃଷ ମୋହବିଦ୍ୟାରେ ମୋହିଲ ଫାଲ୍‌ଗୁନ
ଯୁଧିଷ୍ଠିର ଜଗନ୍ନାଥ ଦେବଙ୍କୁ ଅର୍ଜ୍ଜୁନ
ପାସୋରିଲେ ସୁଭଦ୍ରା ଯେ ଦ୍ରୌପଦୀଙ୍କୁ ପୁଣ
ପାଣ୍ଡବ ବୀର ରହିଲେ ନିଶ୍ଚିନ୍ତେ ପାତାଳେ
ସକଳ ତେଜ୍ୟା କରିଣ ନାଗୁଣୀର ମେଳେ ।
ବହୁ ଭକ୍ତରେ ନାଗୁଣୀ ପାଶେ ଥାଏ ଖଟି
ତଞ୍ଚ କଟକକୁ ଦେଲ ପାସୋରି କଣ୍ଠୀ ।
ସନ୍ଧ୍ୟାବାଳୀ ତେଜିବାକୁ ନ ବଳଇ ମନ
ସବୁ ତେଜିଣ ପାତାଳେ ରହିଲ ଅର୍ଜ୍ଜୁନ ।
ବଦସ୍ୱନ୍ତ ଅଗସ୍ତି ଯେ ଶୁଣ ଯୋଗେଶ୍ୱର
ସଭା ସମାପତ ହେଲା ରାଜସ୍ୱି ଯାଗର ।
ଅନେକ ସମ୍ପଦେ ଦେଶେ ଗଲେ ରାଜାମାନେ
ଏକମାତ୍ର ଦୁର୍ଯ୍ୟୋଧନ ଗଲା ଅପମାନେ ।
ତଇବେ ଯେଉଁଣ ସଭା କଲେ ବାସୁଦେବ
ମାୟାସଭା ତାଙ୍କୁ ଦେଇ ଅଛଇ ତଇବ ।
ବାଡ଼ ନ ଥାଇ ଶୂନ୍ୟରେ ଅଛି ସଭାସ୍ଥଳ
ସ୍ଫଟିକର ସଙ୍ଗେ ଭୁଲି ଜଳ ଆଣି ଜଳ ।
ଉଜଳ ଲୋକଙ୍କୁ ଚାହିଁ ଦିଶଇ ଆକାର
ବାରଣ ନ ଯାଇ ସେହୁ ଅଟେ ଅଣାଭର ।
କ୍ଷତ୍ରୁ ଖଳ କଣ୍ଟକ ଯେ ଅଟେ ସହନାମ
ଚମତ୍କୃତ ସୃଜିଲେ ଯେ ଶ୍ରୀପୁରୁଷୋତ୍ତମ ।
ଯୁଧିଷ୍ଠିର ଦେବଙ୍କୁ ଯେତ୍ତୁ ଭକତି କରଇ
ସଭା ତାହାକୁ ଅଦୃଶ୍ୟ କେବେହେଁ ନୁହଇ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନକୁ ରଖିଲେ ସ୍ୱଭାବେ
ମନରେ ହିଂସା କରିଣ ଉଠି କୁରୁଦେବେ ।
କୃଷ୍ଣଙ୍କ ଛଡ଼ି ଯହୁଁ ନ ଗଲ ସଭାକୁ
ନାନା ହିଂସା ହୋଇଲ ତେଣୁ ସେ ତାହାକୁ

ପଙ୍କରେ ପଡ଼ି ନ ଜାଣି ପାଇଲା ସେ ଲଜ୍ଜା
ଅପମାନିତ ହୋଇଲା କୁରୁର ଆତ୍ମଜା ।
ଭୀଷ୍ମ ଦ୍ରୋଣ ଆଦି ଅଶ୍ୱତ୍ଥାମାର ସହିତ
ସଭାରୁ ଉଠିଣ ଗଲେ ସର୍ବ ଅମାତ୍ୟ ।
ଶୋଇଛନ୍ତି ଚନ୍ଦ୍ରଶାଳାପୁରେ ଚନ୍ଦ୍ରବଳୀ
ଦ୍ୱାରେ ଉପସ୍ଥିତ ଯାଇ ସର୍ବ ପାତ୍ର ମନ୍ତ୍ରୀ ।
କର୍ଣ୍ଣ ମହାରଥୀ ଯାଇ ଦ୍ୱାରେ ଦେଲେ ଡାକ
ଶୁଣ ହୋ ମହାତ୍ମା ଚିନ୍ତା କରୁ କିପାଁ ବଡ଼ା ।
ତୁମ୍ଭ ଦେବ ଚିନ୍ତାମଣି ସର୍ବଜନ ତ୍ରାତା
ମହାବଳ ପଣ୍ଡିତ ତୁ କିପାଁ କରୁ ଚିନ୍ତା ।
ଗୁପ୍ତେ କହେ ଦୁର୍ଯ୍ୟୋଧନ ଶୁଣ ଆହେ ମିତ
ସେଠାବରେ ଅପମାନ ପାଇଲି ବହୁତ ।
ଆଦର ସମ୍ପଦ ମୋର ମାତୁଳ ଶକୁନି
ତୁମ୍ଭଙ୍କର ପ୍ରସାଦେ ମୁଁ ସାଧିଲି ମେଦିନୀ ।
ଯେବଣ ସମ୍ପଦମାନ ଅର୍ଜିଲେ ପାଣ୍ଡବ
ଦେବତାଙ୍କୁ ଦୁର୍ଲ୍ଲଭ ତା ଅତି ଅସମ୍ଭବ ।
ଦେବଙ୍କୁ ଦୁର୍ଲ୍ଲଭ ସେ ଯେ ହେଲା ମହାଯାଗ
ଦୁଃଖୀ ଦୀନଜନ କଲେ ଅଇଶ୍ୱର୍ଯ୍ୟ ଭୋଗ ।
ନାନା ଚିନ୍ତାକରୁ ଧନ ସରିବା ନିମନ୍ତେ
ତେବେ ଦେଇ ନ ପାରିଲୁ ଦାନ କଦାଚିତେ
ଶିଶୁପାଳ ନାଶଗଲା ଆମ୍ଭର ସକାଶେ
କେହି କିଛି ନ ପାରିଲେ ଗରିଷ୍ଠ ରାଜା ସେ ।
ଅମର ବୀରସ୍ୱାମୀକୁ ଜିଣି ତାଙ୍କ ପୁର
ଦେବତା ତୁଲ୍ୟ ବସନ୍ତି ପାଞ୍ଚ ସହୋଦର ।
ଅନେକ ଧନ ବିନାଶ କଲଇଁ ମୁଁ ରାଗେ
ନ ମାପ୍ତାରେ ପୁଣି ଧନ ପୁରେ ସେହିଲାଗେ ।
ଦଅଦେଣ ନ ସରଇ ଲକ୍ଷେ ଲକ୍ଷେ ଧନ
ଗୁଣେ ଦେଲେ ଶତଗୁଣେ ପଟଇ ସୁବର୍ଣ୍ଣ ।
ଏଥିରେ ସନ୍ଦେଶ କିଛି ବୁଝି ନ ପାରିଲୁ
ବଳବୀର୍ଯ୍ୟ ଥାଇ ଆମ୍ଭେ ହୀନ ଯେ ହୋଇଲୁ
ସଭାସ୍ଥଳେ ଭୀମ କେତେ କଥା ନ କହିଲା
ଜୀବନେ ଥାଇଣ କିସ ମରଣହିଁ ଭଲା ।
ଆପଣାର ଶତ୍ରୁଙ୍କରେ ବଳବୀର୍ଯ୍ୟ ଥାନ୍ତେ
ସାବତ ଭାଇ ବିଭବ ଦେଖିବା କେମନ୍ତେ ।
ବିଷ ଖାଇ ମରିବି ସେ ଆତ୍ମଘାତୀ ହୋଇ
ଅନଳେ ପଶିଣ ବଦ୍ଧ କାଷ୍ଠା କରିବଇଁ ।

ଦୁର୍ଯ୍ୟୋଧନ ବଚନରେ ବୋଇଲା ଶକୁନି
ଏହି ଛାର କଥାକୁ ତୁ ଏଡ଼େ ଅଭିମାନୀ ।
ତୋହର ସହିତ ମୋର ଅଛି ଏକ ବୁଦ୍ଧି
କ୍ଷଣକେ ହରି ପାରିବି ତାହାଙ୍କ ସମୃଦ୍ଧି ।
ଶକୁନିର ବଚନରେ ତହୁଁ କୁରୁଗଣ
କବାଟ ଫେଡ଼ି ବାହାର ହୋଇଲା ସେକ୍ଷଣ ।
ଶ୍ରୀଭୁଜରେ ଶକୁନିକୁ କଲେ ସ୍ନେହେ କୋଳ
ହୃଦେ ଲମ୍ବାଇଲେ ନେଇ ଚଉସରି ମାନ ।
ବୋଲେ ମାତୁଳ ତୋହର ମନ୍ତ୍ରଣା ପ୍ରସାଦେ
ଭୀମକୁ ବିଷ ଦେଇଣ ଚିନ୍ତିଲୁ ପ୍ରମାଦେ ।
ତୁ ଯେ ଜଉଘର ଚିନ୍ତି କରାଇଲୁ କୂଟେ
ବେଳକେ ମେଲିଲୁ ମାମୁଁ ଯମୁନାର ଘାଟେ
ନାଗୁଣୀ ମାଇଲେ ପୁଣି ବଞ୍ଚେ ପୁଣ୍ୟବଳେ
ଏରୂପେ ଉଆଣ ମାମୁଁ କଲୁ ବେଳେ ବେଳେ
ସବୁଠାରୁ ପାରି ସେହି ହୁଅନ୍ତି ଧର୍ମବଳେ
ଚକୁର ବୁଦ୍ଧିରେ ତରିଯିବେ କାହାବଳେ ।
ଯେସନେ ଉପାୟ ଅଛି କହିବୁ ନା ମୋତେ
ତାଙ୍କୁ ବିନାଶିଲେ ମୋର ସବୁ କାର୍ଯ୍ୟ ମର୍ତ୍ତ୍ୟେ
ମନ୍ତ୍ରୀ ବୋଲେ ଏବେ ସ୍ନାନ ଭୋଜନକୁ କର
ଉପାୟ କରି ଶତ୍ରୁକୁ କରିବା ସଂହାର ।
ତୁ ଯାହାକୁ କରିଥିବୁ ମନେ ଅଭିମାନ
ତେବେ ସେ ସମ୍ପଦ ହରି ନେବା ଦୁର୍ଯ୍ୟୋଧନ
ଶକୁନି ବୋଇଲା ଦୁଃଶାସନ ବୀର ଯାଇ
ରାଜାକୁ ସ୍ନାହାନ ଦେବେ କରାଅ ତୁ ନେଇ
ସ୍ନାହାନ ସାରିଣ ରଙ୍ଗେ ମଣୋହିରେ ବସେ
ବିରସରେ ଅନ୍ନଆଦି ସେହି ଯେ ନ ଭୁଞ୍ଜେ ।
ଆଚମନ ସାରି ରଙ୍ଗେ ତାମ୍ବୁଳକୁ ଭୁଞ୍ଜି
ଶକୁନିର ବଚନକୁ ଭଲ ସେହି ବୁଝି ।
ବିଜୟେ ମାନଗୋବିନ୍ଦ ଚନ୍ଦ୍ରଶାଳା ପୁରେ
ଶକୁନି ହକାରି ରାଜା ବସେ ବିଶ୍ୱାସରେ ।
କହିବୁ ନା ମାତୁଳ ହୋ ତୋର ବୁଦ୍ଧିଗୋଟି
ତା ଶୁଣି ସନ୍ଦେହ ମୋର ଯିବ ଯେହ୍ନେ ତୁଟି
ଶକୁନି କହିଲା ଶୁଣ ହେ ମାନଗୋବିନ୍ଦ
ଏବେ ତୋତେ ଦେଲି ମୁହିଁ ଧର୍ମଙ୍କ ସମ୍ପଦ ।
ଆହ୍ୱାନେ ବିଜୟ କରି ପାଶେ ତାଙ୍କୁ ବସା
ଯୁଧିଷ୍ଠିର ସଙ୍ଗେ ତୋତେ ଖେଳାଇବ ପଶା ।

ମୋ ସଙ୍ଗେ ଖେଳନ୍ତେ ସେହୁ ହାରିବ ଯୁକତେ
ଯୁଧିଷ୍ଠି ସମ୍ପଦ ନଷ୍ଟେ ଦେବଇଁ ମୁଁ ତୋତେ
ଦୁର୍ଯ୍ୟୋଧନ ବୋଲେ ମାମୁଁ ଯେ କଥା କହିଲ
ଏତେକ ପଦାର୍ଥ ତୁହି କେଉଁଠୁ ଥାଇଲୁ ।
ଶକୁନି ବୋଇଲା ତୁହୋ ଶୁଣ କୁରୁନାଥ
ଏ ପଶା ମହିମା ମୋର ଜାଣିଥିଲେ ତାତ ।
ପଶାଦେଲେ ମୋତେ ପିତା ସେ ଗାନ୍ଧାରସେନ
ବଳିର ଜଣିବ କେଉଁରୂପେ ରାଜାମାନ ।
ପଶାଖେଳେ ହାରି ପିତା ରହୁଥାନ୍ତି ନିତ୍ୟ
ସବୁ ରାଜାଙ୍କୁ ପଶାରେ ଜଣିବ କେମନ୍ତେ ।
ଏତେ ବୋଲି ପିତା ଗଲେ ତପୋପଳାଶରେ
ଗଙ୍ଗାଙ୍କୁ ଧ୍ୟାନ କଲେ ସେ ପଶା ନିମିତ୍ତରେ ।
ମୀନମାସ କୃଷ୍ଣପକ୍ଷ ଚନ୍ଦ୍ରବାର ଦିନେ
ପୁଷ୍ୟା ନକ୍ଷତ୍ରରେ ପିତା ବସିଲେକ ଧ୍ୟାନେ ।
ମନ ବଚନ କର୍ମୈକ୍ୟ ଏକାଗ୍ର ଚିତ୍ତେ
ଧ୍ୟାନରେ ବସିଲେ ପାଞ୍ଚବର୍ଷ ପର୍ଯ୍ୟନ୍ତେ ।
ଅନେକ ବିନୟ ଭକ୍ତି ପିତା ମୋର କଲା
ମହାମାୟାଙ୍କ ଆସନ ଅଭୁଟେ କମ୍ପିଲା ।
ଜଳ ଭିତରେ ଥାଇଣ ଜାହ୍ନବୀ ବୋଲଇ
କପାଁ ଭକ୍ତି କରୁ ମୋତେ ଗାନ୍ଧାରଜ ସାଇଁ
ଗାନ୍ଧାରସେନ ବୋଲଇ ମୋର ସ୍ନାନକର୍ମ
ତେଜିଲି ସକଳ ସେବା କଲି ଏହି ଧର୍ମ ।
ଅନାଦି ମାହେଶ୍ୱରୀ ତୁ ଯୋଗେ ଯୋଗେଶ୍ୱର
କ ସେବା କରଇ ମାତ ଚରଣେ ତୋହର ।
ଯହିଁର ନିମନ୍ତେ ମାତଃ କରେ ମୁଁ ଭକତି
ବିଜୟ ପଶାକାଠି ତୋ ମୋତେ ଦେବା ସତି
ମୋହର କୁଳନ୍ତେ କେହି ନୋହିବେ ଯେ ସରି
ଅନୁଗ୍ରହ କର ମୋତେ ଏହା ଦେଇକରି ।
ଗଙ୍ଗାଦେବୀ କହିଲେ ମୁଁ ତୋରବୋଲେ ଦେବ
ସମୟେ ଫେରାଇ ଦେବୁ ଯେବେ ମୁଁ ଲୋଡ଼ିବ
ଅନ୍ତରୀକ୍ଷେ ପଶାକାଠି ଦେଲେକ ପକାଇ
ତିନ ବରଷ ଭିତରେ ଦେବୁ ବାହୁଡ଼ାଇ ।
ଶକୁନି ବୋଇଲା ବାବୁ ଶୁଣ ଦୁର୍ଯ୍ୟୋଧନ
ବିଜୟ ପଶାକାଠିକୁ ଲୋଡ଼ନ୍ତି ସେ ବହନ ।
ଦ୍ୱାଦଶ ବରଷ ଯାଏ ପାଶରେ ରଖିଲେ
ପଶାରେ ଖେଳି ସମସ୍ତ ରାଜାଙ୍କୁ ଜିଣିଲେ ।

ପଶା ନ ପାଇଣ ଶାପ ଦେଲେ ସେ ଜାହ୍ନବୀ
ବୋଇଲେ ପଥର ଘରେ ହୁଅ ପରାଭବୀ ।
ସମୟେ ପଶା ଘେନିଣ ଗଲା ସେ ରାଜନ
ପ୍ରବେଶ ହୋଇଲା ଯାଇ ଉତ୍ତର କୂଳେଣ ।
ଜଳ ଭିତରକୁ ଦେଲା ପଶାକାଠି ଫିଙ୍ଗି
ଶ୍ରୀକରେ ଧରିଣ ତାହା ନେଲେ ଧବଳାଙ୍ଗୀ ।
ଗାନ୍ଧାର ବୋଇଲା ଆଜ୍ଞା ଦିଅ ହେ ହରଷେ
କେମନ୍ତେ ଏ କଥା ରହିଥିବ ମୋର ବଂଶେ ।
ଶୂନ୍ୟରେ କହିଲେ ଦେବୀ ପରମ ଈଶ୍ୱରୀ
ଯେବଣ ଭୁବନେ ତୋର ପଶାକାଠି ମାରି ।
ତୋହର ମୃତ୍ୟୁକାଳରେ କରହାଡ଼ ଗୋଟି
ତା ନେଇ କରିବ ଯେଉଁ ଲୋକ ପଶାକାଠି ।
ତୋହର ପୁତ୍ରେ ତାହାକୁ ଘେନଥିବେ ପାଶ
ଜାଣିଥା ପଶାରେ ସେହୁ ଜିଣିବେ ଅବଶ୍ୟ ।
ଜଣନ୍ତା ନୋହିବେ କେହୁ ଏ ମର୍ତ୍ତ୍ୟଭୁବନ
ଯାହା ବୋଲିଣ ଡାକଦେ ପଡ଼ିବ ସେ ଦାନ ।
ଏମନ୍ତ ଘଟଣା ପୂର୍ବୁଁ ଅଛି କୁରୁମଣି
ମୃତ୍ୟୁବେଳେ କହିଥିଲେ ମୋତେ ପିତା ପୁଣି
ଏ ମୋହର ବଚନକୁ ଶୁଣ ରେ ଶକୁନି,
ଏମନ୍ତ କହିଲା ମୋତେ ମୋର ପିତା ପୁଣି ।
ଏ ରୂପେ କହନ୍ତେ ପିତା ତାଙ୍କ କରଅସ୍ଥି
ମୃତ୍ୟୁକାଳରେ ତାହା ମୁଁ ରଖିଛି ସାଇତି ।
ପଶାକାଠି ହୋଇଅଛି ଦେଖ ଯତ୍ନକରି
ଏଥେ ପାଣ୍ଡବ ସମ୍ପଦ ପାରେ ମୁହିଁ ହରି ।
ଶକୁନି ବଚନ ଶୁଣି ହୋଇଲା ହରଷ
ଏ ସମୟେ ଧୃତରାଷ୍ଟ୍ର ହେଲେ ପରବେଶ ।
ଆସ୍ଥାନେ ବିଜୟ କରି ହସ୍ତିନାର ନାଥ
ପଞ୍ଚପାଣ୍ଡବେ ପ୍ରଶଂସା କରିଲା ବହୁତ ।
ସାଧୁ ଆମ୍ଭ ବଂଶ ସାଧୁ ସାଧୁ ରେ କୁମର
ସାଧୁ ହୋଇଲେ ପାଣ୍ଡବ ଏ ପଞ୍ଚ ରାଜ୍ୟର ।
ଏତେ ଶୁଭକ୍ଷଣେ ଜାତ ହେଲେ ପାଣ୍ଡୁସୁତ
ଧନ୍ୟ ମାହେଶ୍ୱରୀ ତୁମ୍ଭ ଗର୍ଭଧାରୀ ମାତ ।
ବଂଶେ ପୁଣ୍ୟ ଅର୍ଜିଲ ଏ ପୁତ୍ର ପ୍ରସାଦେ
ଖ୍ୟାତି ରହାଇବେ ଏ ଚାରିଯୁଗ ମଧ୍ୟେ ।
ପାପକର୍ମ ସବାକରୁ ତଥୁ ଗଲା ନାଶ
ଦେଖି ନ ପାରିଲା କୁରୁମାନଙ୍କର ଯଶ ।

ପିତାର ବଚନେ ମାନଗୋବିନ୍ଦ ବୋଇଲା
ଏହି ବଚନରୁ ତୁମ୍ଭ ଚକ୍ଷୁ ଅନ୍ଧ ହେଲା ।
ଯେବଣ ପୁରୁଷ ଦେହେ ଥିବ ବଳ ପ୍ରାଣ
ପରର ପ୍ରଶଂସା ମୁଖେ ନ କରେ ଏସନ ।
ତାଙ୍କପାଇଁ ଏକବୁଦ୍ଧି କରିଅଛୁ ମୁହିଁ
ତାଙ୍କ ସମ୍ପତ୍ତି ଉପାୟେ ଏବେ ହରିଲଇଁ ।
ଶୁଣିଣ ବିଷାଦ ହେଲା ଅମ୍ବିକା ନନ୍ଦନ
ଭୂମି ଚୁମ୍ବିଣ ସେ ପୁଣି ଚୁମ୍ବେ ବେଦକଣ୍ଠ ।
କିସ ଉପାୟ କଲୁ ତୁ କହ ବାବୁ ମୋତେ
ଆନର ବେଳେ ଏ କଥା ନ ଧରିବୁ ଚିତ୍ତେ ।
ଗୁପତରେ ବୀରଗଣ ଥାନ୍ତି ସାବଧାନେ
ବାରତା କହିବେ ଯାଇ ଦେବ ଜନାର୍ଦ୍ଦନେ ।
ବାବୁ ତୁମ୍ଭ କି ନ ଜାଣୁ ସେହି ପଣ୍ଡୁସୁତେ
ନାରାୟଣ ତାଙ୍କ ସେବା କରୁଥାନ୍ତି ନିତ୍ୟେ ।
ଯାହାଙ୍କର ବାହୁବଳେ ପୃଥ୍ୱୀ ନରନାଥ
ସେବା କଲେ ଆସି ନାଗ ଅନନ୍ତ ସହିତ ।
ତ୍ରେତୟା ଯୁଗର ପୁଣି ବିଭୀଷଣ ରଜା
ଷୋଳଜନ ଯାଏ କଲା ଭକତିରେ ପୂଜା ।
ବାବୁ ତ୍ରୈଲୋକ୍ୟର ନାଥ ଦେବ ଚକ୍ରଧାରୀ
ଯାହାଙ୍କ ଯାଗଶାଳାରେ ହେଲେ ପଡ଼ିହାରୀ ।
ଯାକୁ ସମ୍ଭାଳ ଥଇଲୁ ଅପମାନ ଏବେ
ଭାବ କରିଅଛୁ ମନେ କହ କେଉଁ ଭାବେ ।
ଦେବତାମନେ ଯେ ହେଲେ ତାର ବଶ ଆସି
ସେ ମହାଯାଗ ସଭାରେ ସର୍ବେ ଥିଲେ ବସି ।
ବାବୁ ଏକଛତ୍ରୀ ହେଲେ ଏ ତିନି ଜଗତେ
ତୁ ତାଙ୍କ ସମ୍ପଦ ହରି ନେବୁ କେମନ୍ତେ ।
ସୁଜନ ଲୋକଙ୍କୁ ହାତେ ବିପଦ ଲେଉଟିଲେ
ଆପଣାକୁ ହାନି ହୁଏ ସଂକ୍ଷେପି ବୁଝିଲେ ।
କେବେ ସେ ତ ନ ଛାଡ଼ନ୍ତି ଲୋହର ଅସ୍ତ୍ର
ଆଉ ବେଳେ ଯୁଧିଷ୍ଠିଙ୍କୁ ପ୍ରମାଦ ନ ଚଳା ।
ପରେ ପ୍ରମାଦ ଚିନ୍ତନ୍ତି ଯେଉଁ ଯେଉଁ ପ୍ରାଣୀ
ଏହି ପାପେ ଦୋଷୀ ସେହି ପୁରାଣେ ମୁ ଶୁଣି
ଆରେ ତୁ ଏହା ବିଚାର କରୁ କିପା ମନେ
ମହାପ୍ରଭୁ ତୁହି ଥିବା ହୋଇବୁ କେସନେ ।
ବାବୁ ଲକ୍ଷେ ନୃପତି ଯା ହେଲେ ବଶୀଭୂତ
ତୁ ତାଙ୍କୁ ଅମଙ୍ଗଳ କାର୍ଯ୍ୟ କରିବୁ କେମନ୍ତ ।

ଏହି ରୂପେ ଉଆରନ୍ତେ ରଜା ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ବୋଲେ ତୁମ୍ଭ ବୁଦ୍ଧି ହେଲା ଭ୍ରଷ୍ଟ
ତୁମ୍ଭେ ବ୍ୟସ୍ତ ନୁହ ଆମ୍ଭେ କରିବୁ ସେ କାର୍ଯ୍ୟ
ଉପାୟରେ ଯୁଧିଷ୍ଠିଙ୍କ ହରିବ ଐଶ୍ୱର୍ଯ୍ୟ ।
ଉପାୟେ ଯାହା କରି ସେ ନୁହେ ପରାକ୍ରମେ
ସିଂହକୁ ଶୃଗାଳ ଜିଣିଥିଲା କୂଟକର୍ମେ ।
ସିଂହ ଶୃଗାଳ ଶାର୍ଦ୍ଦୂଳ ଆବର ନକୁଳ
ଏ ଚାରିହେଁ ମିତ୍ର ହୋଇଥାନ୍ତି ଏକମେଳ ।
ବନସ୍ତେ ବୁଲନ୍ତି ନିତ୍ୟେ ହିଂସନ୍ତି ଭେଟାଭେଟି
ଚାରିହେ ଦିନେ ମାଇଲେ ଏକ ମୃଗଗୋଟି ।
ଶୃଗାଳ ବୋଇଲା ଅନାଚାର ନ କରିବ
ଶଉଚ ହୋଇଣ ମୃଗମାଂସକୁ ଖାଇବ ।
ପୁଣିହି ବୋଇଲା ମୁହିଁ ଏଠା ଜଗିଅଛି
ସ୍ନାହାନ କରିଣ ଆସ ମୋ ପାଶେ କହୁଛି ।
ସିଂହ ଶାର୍ଦ୍ଦୂଳ ନକୁଳ ଏହି ତିନି ଜୀବେ
ସ୍ନାହାନ କରିବାପାଇଁ ଗଲେ ଜଳଠାବେ ।
ସିଂହ ସ୍ନାନ ସାରି ଚକ୍ଷୁ ପଲକେ ଆଇଲା
ଖାଇବାପାଇଁକି ମାଂସ ଉଦବେଗ ହେଲା ।
କରପଦ ଯୋଡ଼ିକରି ବୋଇଲା ଶୃଗାଳ
ଆଗେ ବଳେ ମାଂସ ଭକ୍ଷି ଗଲା ମହାବଳ ।
ସିଂହ ବୋଇଲା ମାଂସ ତ ହୋଇଲା ଉଚ୍ଛିଷ୍ଟ
ମୁହିଁ ଅଟେ ବନପତି ପଶୁରାଜ ଶ୍ରେଷ୍ଠ ।
ଏହା ବୋଲି ସିଂହ ଛାଡ଼ିଗଲା ମୃଗମାଂସ
ଶାର୍ଦ୍ଦୂଳ ହୋଇଲା ଆସି ଜମ୍ବୁକର ପାଶ ।
ସିଂହ ଖାଇଲା କି ମାଂସ ଶାର୍ଦ୍ଦୂଳ ପଚାରି
ଜମ୍ବୁକ ବୋଇଲା କରପଦ ଯୋଡ଼ିକରି ।
ମାଂସଯାକ ସିଂହ ଆଗେ ଖାଇଗଲା ବଳେ
ଆବର ନ ଯୋଗାଇ ଏ ମାଂସ କେତେବେଳେ
ଉପେକ୍ଷା କରିଣ ମାଂସ ହେଲା ବଡ଼ରାଗ
ଝୁଣିକରି ସେହିଠାରୁ ଚଳିଗଲା ବ୍ୟାଘ୍ର ।
ସିଂହଙ୍କ ଭୟରେ ବ୍ୟାଘ୍ର ପଳାଇଲା ଡରି
ଅଧାର ଦୁଃଖକୁ ସେହ୍ନ ଗଲା ଭୟଙ୍କରି ।
ନେଉଳ ପ୍ରବେଶ ଆସି ସମସ୍ତଙ୍କ ପଛେ
ଦେଖି ଶୃଗାଳ ଧଇଲା ତାକୁ କୋପମୁଖେ ।
ଶୃଗାଳକୁ ଦେଖିକରି ନେଉଳ ଚଳିଲା
ଏକା ସେ ଶୃଗାଳ ମୃଗମାଂସକୁ ଭୁଞ୍ଜିଲା ।

ମାନଗୋବିନ୍ଦ ବୋଇଲେ ଶୁଣ ତାତ ସତ୍ୟେ
ପୂର୍ବ କର୍ମରେ ବଡ଼ୁତ ହେବଣି ଉପାୟେ ।
ଉପାୟ ମହିମା ମୁହିଁ ଦେଖେ ଦୁର୍ଯ୍ୟୋଧନ
ଖୁଆଇଲ ବିଷଲଡ଼ୁ କପଟେ ଭୀମସେନ ।
ବିଷର ଲହରୀ ଆସି ଘାରେ ଯେତେବେଳେ
ନାଗୁଣୀ ଖାଉ ବୋଲିଣ ପେଲିଦେଲେ ଜଳେ ।
ପୁଣ୍ୟର ବଳେ ଜୀଇଣ ଭୀମ ମହାବଳୀ
ନାଗମାନଙ୍କ ସଙ୍ଗତେ ରହେ କୁତୂହଳୀ ।
ନାଗୁଣୀ ସଙ୍ଗତେ ଭୀମ କ୍ରୀଡ଼ା କଲେ ଅତି
ବଳବେଳେ ବୋଲିଣ କହିଲେ ସନ୍ତତି ।
ମାନଗୋବିନ୍ଦ ବୋଇଲେ ପୂର୍ବର ଚରିତ
ଶୃଗାଳ ଉଦ୍ୟମେ ସିଂହ ମାରିଲେ ସୁବିତ ।
ସେହୁ ବନସ୍ତର ପତି ଅଟଇ କେଶରୀ
ଭକ୍ଷଣ କରଇ ନାନା ଜୀବ ନାଶକରି ।
ବୋଲନ୍ତି ଜୀବେ ତୁମ୍ଭେ ହୋ ଶୁଣ ବନପତି
ରାଜା ହୋଇ ସ୍ୱାମି କର୍ମ କରୁଛ ଅନୀତି ।
ଏଥିକୁ ସ୍ୱାମି ବଚନ ଆମ୍ଭ ପ୍ରତିପାଳି
ସବୁ ଜୀବେ ଆମ୍ଭେ ଜଣେ ଜଣେ ଦେବୁ ପାଳି
ଏ ବଣସ୍ଥ ପର୍ବତରେ ବାସ କରିଥିବୁ
ଯାହାର ପାଳି ପଡ଼ିବ ତାକୁ ପେଷିଦେବୁ ।
ସିଂହ ବୋଲେ ମୋତେ ଏହା ଉଚିତ ହୋଇଲା
ଆଜଠାରୁ ଜାଣ ମୋର ସବୁ ଦୁଃଖ ଗଲା ।
ନିତ୍ୟେ ଜୀବ ପଠାଆନ୍ତି ଯାର ପଡ଼େ ପାଳି
ସୁଖେଣ ମଣୋହି ସିଂହ କରଇ ହିଆଳି ।
ଏହି ପରକାରେ ତହିଁ କତିଦିନ ଗଲା
ଅବଶେଷେ ପାଳି ବୃଦ୍ଧ ଶଶାର ପଡ଼ିଲା ।
ମନରେ ଭାଳଇ ଶଶା ବଇକୁଳି ହୋଇ
ସିଂହ ପାଶେ ଯିବାପାଇଁ ମନ ହେଉନାହିଁ ।
ପୁଣି ବିଚାରଇ ଶଶା ସେହି ନରପତି
ତାହାର କୋପେ କେ ଥିବ ବନରେ ବସତି
ଆହେ ବାଇବ ପୁରୁଷ ତୁମ୍ଭେ ହୁଅ ସାକ୍ଷୀ
ମୁଁ ତୋର ଶରଣ ଗଲି ବଂଶ ମୋର ରଖ ।
ଏକମନେ ଭ୍ରାନ୍ତକରି ଚଳେ ବୃଦ୍ଧ ଶଶା
କ୍ଷୁଧାଭରେ ବନପତି କରୁଛି ମନାସା ।
ଉତ୍ତର କରିଣ ଶଶା ମିଳିଲା ସନ୍ନିଧେ
ବନପତି ବିଚାରଇ ଦେଖି ମହାକ୍ରୋଧେ ।
ଆରେ ରେ କ୍ଷୁଧାରେ ମୋର ଆରତ ମନାସା
ଏତେ ଉଚ୍ଛୁର କପାଇଁ କଲୁ ବୃଦ୍ଧ ଶଶା ।
ମନେ ପାଞ୍ଚି କୂଟ କଥା ସେ ଶଶା କହଇ
ବାଟରେ ସଙ୍କଟ ମୋତେ ପଡ଼ିଲା ଗୋସାଇଁ ।
ଅଦ୍ଭୁତ ସିଂହେକ ମୋତେ ଦେଖିଲା ଆସନ୍ତେ
ବଳାତ୍କାରେ ଭୁଞ୍ଜୁଥିଲା ଉଦ୍ଧ ସେହି ପଥେ ।
ସ୍ୱାମି ମୁହିଁ ତାହାଠାରେ ହୋଇଲି ବିଶ୍ୱାସୀ
ତୋତେ କହି ଯିବାପାଇଁ ମୁହିଁ ଅଛି ଆସି ।
ସିଂହ ବୋଲେ ମୁଁ ଏ ବନେ ଅଟଇ ଏକାଙ୍ଗ
କୁରେ ବୃଦ୍ଧ ଶଶା ଦେଖିଅଛୁ କେଉଁ ସିଂହ ।
ଏହିକ୍ଷଣି ବଧୋଚିବ ମୁଁ ତାହାର ଶିଖା
କେଉଁଣ ସ୍ଥାନରେ ଅଛି ନେଇ ମୋତେ ଦେଖା
କପଟେ ସିଂହକୁ ଶଶା ନେଲାକ ଜଡ଼ାଇ
ମହା ଗହନ ବନରେ ଗଲା ଶଶା ନେଇ ।
ଏକ କୂପ ନିକଟରେ ପ୍ରବେଶ ହୋଇଲା
ତୋର ଭୟେ ଏଥେ ସିଂହ ପଶିଛି ବୋଇଲା
ବୃଦ୍ଧ ଶଶା ଯେ ସିଂହକୁ ପାଞ୍ଚିଲାକ କୂଟ
କୂଅକୁ ଚାହିଁଣ ସିଂହ ଓହ୍ଲେ କଲା ପୃଷ୍ଠ ।
ଏକା ମୂର୍ଖ ଯାହା ଦେଖେ ତାହା ମାର ଖାଇ
ପଳାଇଲା ଜୀବଙ୍କର କଥାକ ନ ଯାଇ ।
ଲେଉଟି ଆସିଲା ସିଂହ ଗରଜନ କରି
ଜଳରେ ଦେଖିଲା ତାର ସ୍ଥାଇ ଅଛି ପଡ଼ି ।
ତାହାର ତେଜ ପ୍ରକାଶେ ସେହିପରି ମୂର୍ତ୍ତି
ବୋଇଲା ଯଥାର୍ଥ ଏହି ଅଟେ ବନପତି ।
ଶଶାର ବଚନ ମୁହିଁ କରିଥିଲି ମିଥ୍ୟା
ନଷ୍ଟପ୍ରାୟ ଏ ବନପତି କରିଅଛି ଇଚ୍ଛା ।
ଶୁଭଯୋଗ ଉଦ୍ଧରଣ ନ ମାଇଲେ ଏହା
ଏହାର ଥାଆନ୍ତି କେଉଁ ମୁହିଁ ଜୀବନାହା ।
ଏହିକ୍ଷଣି ବଧାଣିଣ ପକାଇବି ମାରି
ମୋହର ସ୍ଥାମୁରେ ଏଡ଼େ ଦପ ଏହୁ କରି ।
ରେ ରେକାର କରି ସିଂହ ଡାକ ହାକ କଲା
କୂପର ଭିତରେ ତାର ଶବଦ ଶୁଣିଲା ।
ଶୁଣ ଆହେ ତାତ ତାର ଅପକ୍ତି ତ ଘଣ
ରେ ରେକାର କରି ତେଉଁ ପଡ଼ିଲା କୂପେଣ ।
ସେ କୂପ ଗମ୍ଭୀର ତାର ଏକାଅଶୀ ତାଳ
ଠାବ ନ ପାଇଣ ସେହୁ ହୋଇଲା ବିକଳ ।

ଆହେ ତାତ କ୍ଷୁଦ୍ର ଶଶା ଉପାୟ କରନ୍ତେ
ବନଜୀବମାନେ ଏଣେ ରହିଲେ ନିଶ୍ଚିନ୍ତେ ।
ଶଶାର ବୁଦ୍ଧିବଳରେ ସିଂହ ନାଶଗଲା
ଉପାୟେ ତାତ ଏସନ ଦୁର୍ବୁଦ୍ଧି ହୋଇଲା ।
ଶୁଣ ହେ ତାତ ସିଂହର ପଣ ଅପଣ୍ଡିତ
ପାଣ୍ଡବେ ହୋଇଲେ ମୋତେ ସିଂହରସଜାତ
ଆମ୍ଭେ ଯେ ହୋଇଲୁ ତାତ ଶଶା ବୁଦ୍ଧିମନ୍ତ
ଉପାୟ କଲେ ପାଣ୍ଡବେ ନଷ୍ଟେ ହେବେ ହତ
ଦୟାକରି ମୋତେ ଆଜ୍ଞା ଦିଅ କୁରୁରାଜ
ଉପାୟରେ ଯୁଧିଷ୍ଠିଙ୍କ ନେବଇଁ ରାଜ୍ୟ ।
କହି ପାଞ୍ଚକର ତୋଷି ରାଜା ଦୁର୍ଯ୍ୟୋଧନ
ଓଆରଣ ଧୃତରାଷ୍ଟ୍ର ହେଲା ହତମାନ୍ୟ ।
ଯେ ଯାହାର ବଲ୍ଲଭକୁ ଯୋଗାଏ ଯୁକତ
ଶକୁନି ଉପାୟେ ବଂଶ ନସାଇବୁ ହତ ।
କୂଟ କପଟ ମନ୍ତ୍ରୀ ସେ ଅଟେ ବଡ଼ ଦୁଷ୍ଟ
ଅପଣ୍ଡିତ ପାମର ଯେ ମୂରୁଖ ପାପିଷ୍ଠ ।
ଶକୁନି ବଂଶ ନାଶିଲୁ ପଥର ଘରରେ
ନ ପୁଣ ତୋ ବଂଶ ନାଶ କରଇ କୂଟରେ ।
ଏହି ଉପାୟ ନିଶ୍ଚୟ ତୋହର ଉପରେ
ପାଣ୍ଡବ କୋପେ ବନସ୍ଥ ହେବେ କୁରୁଶାରେ ।
ଦୁର୍ଯ୍ୟୋଧନ ବୋଲେ ତାତ ମନ୍ଦ ଭ୍ରଷ୍ଟବୁଦ୍ଧି
ଶକୁନି ପ୍ରସାଦେ ମୋର ସକଳ ସମୃଦ୍ଧି ।
ଶେଷକାଳେ ପ୍ରାଣୀଙ୍କର ବଢ଼େ ରୋଗ ଯେବେ
ତହିଁପାଇଁ ମୂର୍ଖଲୋକ ଶୋକ କରେ ତେବେ ।
ଧୃତରାଷ୍ଟ୍ରକୁ ବଯାଇ ଚଳନ୍ତି କୌରବେ
ଇନ୍ଦ୍ରପ୍ରସ୍ଥ ରାଜ୍ୟ ଯାଇ ନଜପ୍ୟେ ସମସ୍ତେ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା କର୍ଣ୍ଣ ଯେ ଶକୁନି
ଅଶ୍ୱତ୍ଥାମା କୃପାଚାର୍ଯ୍ୟ କୃପବ୍ରହ୍ମା ସେନ ।
ସଭାରେ ବସନ୍ତି କଲେ ସକଳ ଅମାତ୍ୟ
ଯେତା ପ୍ରତିଜ୍ଞା କରନ୍ତି ତହିଁ ଅପ୍ରମିତ ।
ଏତକୁ ଆରେକ କହେ ବଚନ ଦର୍ପ କଥା
କୌରବଙ୍କ ଛାମୁରେ କ ପାଣ୍ଡବେ ସମର୍ଥ ।
ଏସନକ ବସ୍ତରନ୍ତେ ଗଲା ମାସ ହେନ
କୁରୁସାରେ ରହିଛନ୍ତି ମନେ ଛିଦ୍ର ସେନ ।
ଜୟ ଜୟ ଜଗନ୍ନାଥ ଅନନ୍ତ ମୂରତି
ଜୟ ଜୟ ଜଗନ୍ନାଥ ବଇକୁଣ୍ଠ ପତି ।
ଜୟ ଜୟ ଜଗନ୍ନାଥ କମଳାରମଣ
ଜୟ ଜୟ ଜଗନ୍ନାଥ ଦୁଃଖ ନିବାରଣ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତା ।
ଆହେ ଦେବ ଜଗନ୍ନାଥ ତୁମ୍ଭ ଶ୍ରୀଚରଣେ
ଶାରଳା ଦାସର ମନ ରହୁ ଅନୁକ୍ଷଣେ ।

---

## ଅର୍ଜ୍ଜୁନ ବୃକ୍ଷର ଉତ୍ପତ୍ତି ଓ ଇନ୍ଦ୍ରପ୍ରସ୍ଥେ ସବ୍ୟସାଚିଙ୍କର ଉପସ୍ଥିତ

ପୃଚ୍ଛା କଲେ ବୈବସ୍ୱତ ମନୁ ଅଗସ୍ତିଙ୍କୁ
ଅର୍ଜ୍ଜୁନ ଯାଇ ଯେ ଗଲା ପାତାଳ ପୁରକୁ ।
ନାଗୁଣୀ ମେଳରେ ସେହୁ ନିଶ୍ଚିନ୍ତେ ରହିଲା
ହସ୍ତିନା ସଭାକୁ ତୁହି କପାଇଁ ନଇଲା ।
ଅଗସ୍ତି ମୁନି ବୋଇଲେ ଶୁଣ ହୋ ରାଜନ
ନାଗୁଣୀ ସଙ୍ଗତେ ତହିଁ ରହିଲା ଅର୍ଜ୍ଜୁନ ।
ଏହିରୂପେ ଛଅମାସ ତହିଁ ବହିଗଲା
ଶୁଣ ତୁହି ଏକମନେ ତଦନ୍ତେ ଯା ହେଲା ।
ଯୁଧିଷ୍ଠିର ପଚାରିଲେ ଶୁଣ ହୋ ଅନନ୍ତ
ଅର୍ଜ୍ଜୁନ ଚରିତ ତୁହି ମଣୁଛୁ କେମନ୍ତ ।
ଧନୁହସ୍ତରେ ଧଇଲା ସେହି ବସୁମତୀ
କ ଅବା ହୁବେ ତାହାର ପଡ଼ିଲାକ କ୍ଷିତି ।
କୁଶଳେ ରହିଅଛି କି କହ ମୋର ପାର୍ଥ
ତାହାକୁ ନ ଦେଖି ମନ ହୁଏ ବ୍ୟାକୁଳିତ ।
ଯୁଧିଷ୍ଠିର ବଚନରେ ଦେବ ଦାମୋଦର
ସହଦେବ ମୁଖ ଚାହିଁ ପୁଚ୍ଛନ୍ତି ଏ ଗିର ।
ଆହେ ସହଦେବ ତୁମ୍ଭେ କହ ତତ୍ତ୍ୱ ଚାରୁ
କେଉଁପୁର ରହିଅଛି ପାର୍ଥ ମହାବୀର ।
ତହୁଁ କହନ୍ତି କରକୁ ଚାହିଁ ସହଦେବ
ପାତାଳରେ ପ୍ରବେଶିଲେ ସେ ଅନନ୍ତ ଦେବ ।
ପୃଥ୍ୱୀ ଛାଡ଼ି ଧନୁହସ୍ତଲେ ଅର୍ଜ୍ଜୁନ ଧଇଲେ
ସନ୍ତୋଷରେ ନାଗରାଜା କନ୍ୟା ସମର୍ପିଲେ ।
ତାର ନାମ ସନ୍ଧ୍ୟାବାଳୀ ତ୍ରିପୁରମୋହିନୀ
ତାହାର ରୂପ ଦେଖିଲେ ଟଳିବେ ଯେ ମୁନି ।
ବଡ଼ଇ ସୁନ୍ଦର ନାଗରାଜାର ଦୁଲଣୀ
ମୋହବଶେ ପଡ଼ିଗଲେ ତହିଁ ଫାଲଗୁନି ।

ଅର୍ଜୁନ ସ୍ୱାମୀ ଅଛନ୍ତି ନାଗୁଣୀଙ୍କ ମେଳେ
ବହୁ ଭକ୍ତି କରୁଛନ୍ତି ତାଙ୍କୁ ନାଗବଳେ ।
ଯୁଧିଷ୍ଠି ବୋଇଲେ ପାର୍ଥ ଉଦ୍ଧର ପାତାଳେ
ମୋହର ବେଶ ଅଟନ୍ତି କଉରବ ବଳେ ।
ଏବେ ଅର୍ଜୁନଙ୍କୁ ଧ୍ୟାନ କର ହେ ଶ୍ରୀହରି
ବଚନ ସେ ଆସୁ ଏଥେ ବିଳମ୍ବ ନ କରି ।
ଯୁଧିଷ୍ଠିରଙ୍କ ବଚନେ ଦେବ ଶ୍ରୀପତି
ଚିନ୍ତିଲେ ଜଗ ପାର୍ଥଙ୍କୁ ସୁମରିଲେ ଧାତି ।
ନାଗୁଣୀଙ୍କୁ କୋଳେ ଧରି ବସିଥିଲେ ପାର୍ଥ
ଶ୍ରୀହରିଙ୍କ କୁହୁକେ ଚଳାଇ ସେ ଚିତ୍ତ ।
ଏସନକ ସମୟରେ ଜଗତେ ଆସ୍ଥାନ
ହୃଦଗତେ ଚିନ୍ତା ତାହା ଜାଣିଲେ ଅର୍ଜୁନ ।
ମନେ ଭାବିଲେ ମୋତେ ସୁମରିଲେ ହରି
ତକ୍ଷଣେ ସେ ନାଗୁଣୀକୁ ପରିତ୍ୟାଗ କରି ।
ତାହା ଦେଖି ବୋଇଲା ଅନନ୍ତ ଦୁହିତା
ଆହେ ନାଥ କି ନିମିତ୍ତ ବିକଳିତ ମତି ।
ଦୃଢଭଣି ବାରମ୍ବାର ପୁଚ୍ଛନ୍ତି ସ୍ତ୍ରୀଶିରୋମଣି
ଏତେ ପ୍ରୀତି କପଟ ନାଥ ଗୁପ୍ତ ଅଛ ପୁଣି ।
ଅର୍ଜୁନ ବୋଇଲେ ତୁ ଗୋ ଶୁଣ ପଦ୍ମାବାଳୀ
ମୋର ଠାକୁର ଅଟନ୍ତି ଦେବ ବନମାଳୀ ।
ମୋତେ ସେ ହାତେ ଚିନ୍ତିଲେ ହୃଦୟ ମଧ୍ୟରେ
ଏବେ ମୁହିଁ ଯିବି ପ୍ରିୟେ ହସ୍ତିନା ନଗରେ ।
ଆଗୋ ସୁନ୍ଦରୀ ତୁ ଶୁଭେ ଏଥିଁ ରହିଥାଅ
ମୁହିଁ ପୁଣି ସମସ୍ତେ ଆସିବି ନିଶ୍ଚୟ ।
ନାଗୁଣୀ ବୋଇଲା ତୁମ୍ଭେ ମୋର ପ୍ରାଣଆତ୍ମା
ଅକସ୍ମାତେ ପ୍ରାପ୍ତ ହୋଇଥିଲ ହେ ମହାତ୍ମା
ମୁହିଁ ତୁମ୍ଭର ସେବନୀ ତୁମ୍ଭେ ମୋର ପତି
ସ୍ୱାମୀ ବଚନେ କି ଉଦ୍ଧାରିବ ଯୁବତୀ ।
ଏତେ ମାୟା ଲଗାଇଣ ଗୁଡ଼ୁଛ କେମନ୍ତେ
ଜାଣିଲଇଁ ଛଳେମାତ୍ର ଦୟା ନାହିଁ ଚିତ୍ତେ ।
ପୁଣି ବୋଇଲା ତୁମ୍ଭେ ଯେ ଅତ୍ୟନ୍ତ ନିର୍ଦ୍ଦୟ
ଯେଣୁ ସ୍ନେହ ଲଗାଇଣ ଛାଡ଼ି କରି ଯାଅ ।
ଜାଣିଲଇଁ ଶୁକପକ୍ଷୀ ପ୍ରାୟେ ତୁମ୍ଭ ମତି
ସ୍ୱର୍ଣ୍ଣ ପଞ୍ଜୁରୀରେ ଅନ୍ନ ଦେଉଥିଲେ ନିତି ।
ଅକସ୍ମାତେ ପିଞ୍ଜରାରୁ ଫଟିଣ ସେ ଗଲେ
ସେ କଥା ପାସୋରିଯାଏ ସ୍ଥଳରେ ବସିଲେ ।

ପୋଡ଼ୁ ପୋଡ଼ୁ ସ୍ୱାମୀ ଏଣୁ ସ୍ତ୍ରୀଙ୍କ ଜନମ
ପଡେ ଦୁଷିତା ହୋଇଣ ରଖନ୍ତି ସେ ପ୍ରାଣ ।
ଅନେକ ବାଗେ ପ୍ରତ୍ୟକ୍ଷ ମନ ରଖିଥାନ୍ତି
କାଳେ ପୁଣି ସେହି ତାଙ୍କୁ ଗୁଡ଼ିଣ ଯାଆନ୍ତି ।
ଏସନ ପ୍ରକୃତି ବୋଲି ଜାଣିଲଇଁ ଏବେ
ଧିକ ଧିକ ଏ ଜୀବନ ତୋହର ଅଭାବେ ।
ସ୍ୱାମି ପିଅର ମୋହର ଅଟନ୍ତି ଅନନ୍ତ
ପ୍ରତ୍ୟକ୍ଷେ ତୁମ୍ଭ ମହିମା ଦେଖିଛନ୍ତି ସେତ ।
ପୋଡ଼ଯାଉ ନାଥ ଏବେ ଏ ହୀନ କରମ
କେଉଁ ପାପଯୋଗେ ଭବେ ଲଭିଲି ଜନମ ।
କୁହ ଅବା କାଳେ ମୁହିଁ କରିଲି କ ଦୋଷ
ଯେଣୁ ଗୁଡ଼ ଯାଉଅଛ ମୋତେ ପ୍ରାଣେଶ ।
ଏତେ ବୋଲି ଅର୍ଜୁନଙ୍କୁ କୋଳାଗ୍ରତ କରି
ମୁଖେ ଚୁମ୍ବନ ଦେଇଣ ବୋଲେ ସେ ନାଗଶ୍ରୀ
ଏବେ ନବଯୌବା ପୁଣି ହେଲି ଅଭାଗିମା
କେମନ୍ତେ ବଞ୍ଚିବି ନାଥ କହ ତାହା ଯେଣ ।
ତୋହର ଅଭାବେ ମୋର ନ ରହିବ ଜୀବ
ନିଶ୍ଚୟ ତୁମ୍ଭଙ୍କୁ ହତ୍ୟାଦୋଷ ଯେ ଲାଗିବ ।
ଏତେ ବୋଲି ଉଚ୍ଚସ୍ୱରେ କରଇ ବିଳାପ
ନୟନରୁ ଅଶ୍ରୁଜଳ ବହେ ଅନର୍ଯ୍ୟାପ ।
ଅର୍ଜୁନ ବୋଇଲେ ତୁ ଗୋ ଶୁଣ ଗୁମାମଣି
ବୃଥାରେ ରୋଦନ କିପାଁ କରୁଅଛୁ ପୁଣି ।
ଲୋହିତ ବରନ ଦିଶୁଅଛଇ ନୟନ
ଲାବଣ୍ୟ ବଦନ ଯୋଟି ତ କର ମଳିନ ।
ଜାଣୁ ତୁ ସୁଭଦ୍ରା ଦେବୀ ଅଟେ ମୋର ଭାର୍ଯ୍ୟା
ତୋ ନିମନ୍ତେ କରିଅଛି ତାକୁ ପରିତ୍ୟାଜ୍ୟା ।
ଏବେ ଦେଖିବଇଁ ମାତ୍ର କୁଟୁମ୍ବ ମୋହର
ପୁଣି ସମ [illegible] ଯେ ଆସିବି ନିକର ।
ଅକାରଣେ ବାଳାମଣି ନ ହସିରେ ପଞ୍ଜି
କର୍ମେ ଯାହା ଅଛନ୍ତି ତାହା ସିନା ଭୁଞ୍ଜି ।
ଅଳପ ସମୟ ମୋତେ ଥାଅ ତୁ ରେ ମୁର୍ଚ୍ଛି
ନିଜ ମନ୍ଦିରକୁ ଏବେ ଯାଅ ମୁଁ କହୁଛି ।
ଅର୍ଜୁନର କଥା ଶୁଣି ନାଗୁଣୀ ଚଳିଲା
ଅନନ୍ତ ଆଗରେ ଯାଇ ସକଳ କହିଲା ।
ହେ ତାତ ନ ଜାଣି ମୋତେ କଲ୍ଲ ତୁ ପ୍ରଦାନ
ଏଡେବଡ ରାଜା ହୋଇ ହେଲୁ ତୁ ଅଜ୍ଞାନ ।

ଯାହା ହସ୍ତରେ ପ୍ରଦାନ କରିଥିଲୁ ମୋତେ
ସେହି ଏବେ ସ୍ୱଇଚ୍ଛାର ଯାଉଅଛି ମର୍ତ୍ତ୍ୟେ ।
ଅନେକ ପ୍ରକାରେ ତାକୁ ବିନୟେ କହିଲି
ନ ମାନଇ ମୋର ବୋଲ ତୋତେ ଜଣାଇଲି
ଶୁଣି ଅନନ୍ତ ମନରେ ହେଲେ ମହାଦୁଃଖ
ଆପଣାର ପୁତ୍ରଙ୍କୁ ସେ ଡକାଇଣ ପାଖ ।
ଶଙ୍ଖ ପଦ୍ମ ମହାପଦ୍ମ କୁଳିକ ତକ୍ଷକ
ସ୍ୱଇଣ ଆଜ୍ଞା ଦେଲେ ପାତାଳ ନାୟକ ।
ଆରେ ବାବୁ ଶୀଘ୍ର ଚଳ ଅର୍ଜୁନ ପାଖକୁ
କି ନିମନ୍ତେ ହୀନମାନ କରେ ମୋ ଝିଅକୁ ।
କିସ ଅସୁବିଧା ଏଥେ ତାହାକୁ ହୋଇଲା
କାହିଁପାଇଁ ମର୍ତ୍ତ୍ୟକୁ ସେ ଯିବାକୁ ଇଚ୍ଛିଲା ।
ପିତାଙ୍କ ଆଦେଶ ପାଇ ସେହି ନାଗବରେ
ଅତିବେଗେ ଧାଇଁଲେ ସେ ପବନହୁଁ ଖରେ
ତାଙ୍କ ସଙ୍ଗେ ସନ୍ଧ୍ୟାବାଳୀ ଗୋଡ଼ାଇଣ ଗଲା
ଅର୍ଜୁନ ନିକଟେ ଯାଇ ପ୍ରବେଶ ହୋଇଲା ।
ଅନୁକୂଳ ଦେଖ ପାର୍ଥ ଅଛି ଉଭାହୋଇ
ଏନ୍ତିକାଳେ ନାଗମାନେ ପହଞ୍ଚିଲେ ଯାଇ ।
ଅନେକ ରତ୍ନ ନେଇଣ ଥିଲେ ସର୍ବ ନାଗ
ଅର୍ଜୁନ ସମ୍ମୁଖରେ ନେଇ ଥୋଇଦେଲେ ବେଗ
ଦେଖିଣ ତାଙ୍କୁ ଅର୍ଜୁନ ଏସନ ବୋଲଇ
ଏବେ ମର୍ତ୍ତ୍ୟ ଭୁବନକୁ ଯାଉଅଛି ମୁହିଁ ।
ଏହା ଶୁଣି ବିନୟରେ କହଇ କୁଳିକ
ସ୍ୱାମି ପାତାଳ ଭୁବନେ ପାଇଲ କି ଦୁଃଖ ।
ତୁମ୍ଭେ କି ତୋହର କରି ନ ପାରିଲୁ ସେବା
ତେଣୁକରି ଯିବାପାଇଁ ଲୋଡ଼ୁଅଛ ବାବା ।
ଅଥବା ଆମ୍ଭର ଭଗ୍ନୀ କରିଲା କି ଦୋଷ
ତେଣୁକରି ଯିବାପାଇଁ ବଳୁଛି ମାନସ ।
ଅର୍ଜୁନ ବୋଇଲେ ସେହି ପରମ ସାଧ୍ୱୀ
ତାହାଠାରେ ଦୋଷ ବୃଥା କପାଇଁ ମୁଁ ଦେବି
ଅନେକ ପ୍ରକାରେ ତୁମ୍ଭେ କରିଅଛ ସେବା
ତୁମ୍ଭର କି ଦୋଷ ମୁହିଁ ବାଛିବଇଁ ଅବା ।
ଆମ୍ଭର ଯେ କାଳେ କାଳେ ବୈରୀ ଦୁର୍ଯ୍ୟୋଧନ
କୌରବ ନୃପତି ସେହି ଅଟେ ତୁମ୍ଭେ ଜାଣ
ନ ଅବା ଆସିଣ ସେହି ଲଗାଇଛି ଦ୍ୱନ୍ଦ୍ୱ
ତେଣୁକରି ସ୍ମରିଲେ ମୋତେ ଆବନ୍ଦ ।

ଯାଉଛି ସକଳ କଥା ବୁଝି ମୁଁ ଆସିବି
ତୁମ୍ଭ ପାଖେ ରହିଥାଉ ମୋହର ବାନ୍ଧବୀ ।
ଏମନ୍ତ ସମୟେ ତହିଁ ଅନନ୍ତ ମିଳିଲା
ବହୁତ ବିନୟେ ସେହି ପାର୍ଥଙ୍କୁ କହିଲା ।
କପାଇଁ ହେ ସବ୍ୟସାଚୀ ଯାଉ ଏ ଭୁବନ
ତାହା ମୋହର ଆଗରେ କହ ହେ ବଚନ ।
ଏହା ଶୁଣି ଧନଞ୍ଜୟ କହନ୍ତି ଏ ବାଣୀ
କି କାରଣେ ଜଗନ୍ନାଥ ସ୍ମରନ୍ତି ପୁଣି ।
କିବା ଦଇତ୍ୟ ଆସିଣ କଲେ ଉତପାତ
ତେଣୁକରି ଘନ ଘନ ସ୍ମରନ୍ତି ଅଚ୍ୟୁତ ।
ଅର୍ଜୁନ ବଚନ ଶୁଣି ଚେତିଲେ ଅନନ୍ତ
ପଞ୍ଚି ଲୋକେ ନିସ୍ତାର ନ ପାରେ ବୀର ପାର୍ଥ
ଅନେକ ଦ୍ୱନ୍ଦ୍ୱରେ ରକ୍ଷାକଲ୍ ମହାବୀର
କୃଷ୍ଣ ଆଉ ତୁମ୍ଭେ ପୁଣ ଏକଆତ୍ମା ସଙ୍ଗ ।
ତୁମ୍ଭ ଯୋଗରୁ ଉଶ୍ୱାସ ହୋଇବ ମେଦିନୀ
ଏହା ମୁହିଁ ପୂର୍ବ୍ବ ଭଲରୂପେ ଅଛି ଜାଣି ।
ଅର୍ଜୁନ ବୋଇଲେ ତାତ ଆଜ୍ଞାଦିଅ ମୋତେ
ବହନ ଯାଇଣ ଫେରି ଆସିବଇଁ ଏଥେ ।
ଏହା କହି ସନ୍ଧ୍ୟାବାଳୀ ମୁଖକୁ ଅନାଇଁ
ବୋଇଲେ ଗୋ ଶୋକ ଏବେ ଛାଡ଼ ପ୍ରାଣସଖି
ହରଷ ହୋଇଣ ଅର୍ଘ୍ୟ ଦିଅ ମୋର ମାଥେ
କଷ୍ଟେ ଏଥେ ରହିଥାଅ ତୁମ୍ଭେ ଦିନାକେତେ
ସନ୍ଧ୍ୟାବାଳୀ ବୋଲେ ନାଥ ନିରାଶ ନ କର
ତୁମ୍ଭ ସଙ୍ଗେ ନେଇଯାଅ ମୋତେ ମର୍ତ୍ତ୍ୟପୁର ।
ଅର୍ଜୁନ ବୋଇଲେ ମୋର ଭାର୍ଯ୍ୟା ପାଞ୍ଚାଳୀ
ତୁମ୍ଭଙ୍କୁ ଦେଖିଲେ ସେହି ଲଗାଇବେ କଳି ।
ସୁଭଦ୍ରା ବୋଲିକରି ଯେ କୃଷ୍ଣଙ୍କ ଭଉଣୀ
ସେହି ଜାଣ ମହାଦୁଷ୍ଟ ଅଟଇଟି ପୁଣି ।
ଛାଡ଼ ଅଭିମାନ ଏବେ ନ କର ଯେ ଶୋକ
ପୁଣି ସାନ୍ତ୍ୱନା କରିଲେ ବହିଁ ନାଗଲୋକ ।
ନାଗୁଣୀ ବୋଇଲା ମୋର ଗର୍ଭ ଦେନମାସ
ତୁମ୍ଭେ ଗଲେ ପାଇବଇଁ ମୁହିଁ ଉପହାସ ।
ଅର୍ଜୁନ ବୋଇଲେ ଯେବେ ପୁତ୍ର ହେବ ଜନ୍ମ
ତୋର ମୋର ଦୁହିଙ୍କର ଦେବୁ ତାର ନାମ
ଶୁଣି କରପତ୍ର ଯୋଡ଼ି ପୁଚ୍ଛଇ ନାଗୁଣୀ
ଏ ଯୁବା ବୟସ ନାଥ ଭୋଗିବ କେ ପୁଣି ।

ତାହାର ସଙ୍ଗତେ ମୂର୍ତ୍ତି କରଇ ବିହାର
କେମନ୍ତେ ମୁଁ ହସ୍ତାଳିବ କାମ ପଞ୍ଚଶର ।
ଏତେଁ ବୋଲି ଶରକୁ ଯୋଡ଼ି ଫାଲଗୁନ
ଦକ୍ଷିଣ ଭୁଜ ଆଘାତ କଲେ ବେନି ତିନ ।
ଝରଝର ହୋଇ ରକ୍ତ ବହିଲା ତକ୍ଷଣ
ତହିଁରୁ ଗୋଟିଏ ବୃକ୍ଷ ହୋଇଲା ଉତ୍ପନ୍ନ ।
ତାକୁ ଚାହିଁ ଅରଜୁନ କହନ୍ତି ଗୋ ଦେଖ
ଏହାର ନାମ ଅଟଇ ଅରଜୁନ ବୃକ୍ଷ ।
ଯେତେବେଳେ ହେବ ତୋର ଶୃଙ୍ଗାରକୁ ଇଚ୍ଛା
ଏହା ସଙ୍ଗେ ପୂରାଇବୁ ତୋର ମନୋବାଞ୍ଛା ।
ମୋ ନାମ ସୁମରି ଏହି ବୃକ୍ଷ କୋଳ କଲେ
ଭାଙ୍ଗିବ କନ୍ଦର୍ପ ପୀଡ଼ା ଯାକୁ ଆକର୍ଷିଲେ ।
ନାଗୁଣୀ ବୋଇଲା ମୋତେ ଦେଲ ଯେ ସନ୍ଦେଶ
ଆବର କଥାଏ ସ୍ୱାମି ମନେ ହୁଏ ତ୍ରାସ ।
ତୁମ୍ଭେ ଯେ କ୍ଷତ୍ରିୟ ଅଟ ସଦା ଦ୍ୱନ୍ଦ୍ୱକାରୀ
ଅନୁବ୍ରତେ ପ୍ରମାଦ ଯେ ଆଗତ ତୁମ୍ଭର ।
ପାପ ପ୍ରମାଦକୁ ମୁହିଁ ଜାଣିବି କେମନ୍ତେ
ଏ ସନ୍ଦେହ ଫେଡ଼ି ସ୍ୱାମି କହିବଅ ମୋତେ ।
ନାଗୁଣୀର ବଚନରେ ହସିଲେକ ପାର୍ଥ
ବାତୁଳ ପରାୟେ କଥା କହୁ ରେ ସଙ୍ଗାତ ।
ଆମ୍ଭେ ପୃଥିବୀ ମଧ୍ୟରେ ଅଟୁ ଜଗଜ୍ଜିତା
ଯମଦଣ୍ଡ ନିବାରଣେ ଆମ୍ଭେ ଯେ ଶକତା ।
ପୁଣି ଆମ୍ଭ ଜ୍ୟେଷ୍ଠଭ୍ରାତା ବୀର ବୃକୋଦର
ଯା ମୂର୍ତ୍ତି ଦେଖି ତ୍ରାସଇ କାଳ ଦଣ୍ଡଧର ।
ଆମ୍ଭେ ତ ପରର ମୃତ୍ୟୁପଥ ରୋଧିପାରୁ
ମରଣ କଥା ଆମ୍ଭଙ୍କୁ ତୁ କହାଁ ପଚାରୁ ।
ଏହା ଶୁଣି ସନ୍ଧ୍ୟାବାଳୀ କହେ କରଯୋଡ଼ି ।
ଏ ପୃଥ୍ୱୀରେ ଜାତ ହୋଇ ଅବଶ୍ୟ ତ ମରି ।
ଯାହାଙ୍କ ପ୍ରତଜ୍ଞାମାନ ତୁମ୍ଭେ ଦେଖାଇଲ
ସେହି ପୁଣି ସମସ୍ତେକ ତେଜବେ ଶରୀର ।
ନାଗୁଣୀର ବଚନରେ ବୋଲେ ସବ୍ୟସାଚୀ
ଅବଶ୍ୟ ତ ସୁଦଶରେ ମନ୍ଦଣଟି ଅଛି ।
ଯଦ୍ୟପି ଜାଣେ ମୋତେ ତ ପ୍ରମାଦ ପଡ଼ିବ
ଅର୍ଜୁନ ବୃକ୍ଷ ଗୋଟିକ ମଳିନ ହୋଇବ ।
ଏସନ ଶକୁନ ତାକୁ କହିଣ ଅର୍ଜୁନ
ପାତାଳ ପୁରରୁ ଚତୁଁ କରିଲେ ଗମନ ।

ଗାଣ୍ଡୀବ ଧନୁ ତୁଣୀର ଶ୍ରୀଭୁଜରେ ଶୋଭେ
ଇନ୍ଦ୍ରପ୍ରସ୍ଥେ ସବ୍ୟସାଚୀ କରିଣ ବିଜୟେ ।
ଯୁଧିଷ୍ଠିରଙ୍କ ନିକଟେ ଛନ୍ତି ବାସୁଦେବ
ଆବର ଅନନ୍ତ ତହିଁ ଭୀମ ସହଦେବ ।
ଏସନ ସମୟେ ଯାଇ ପ୍ରଣମିଲା ପାର୍ଥ
ଦରକ୍ଷେ କଲ୍ୟାଣ କଲେ ତାକୁ ଧର୍ମସୁତ ।
ଅର୍ଜୁନଙ୍କୁ ଦେଖିକରି ପ୍ରଭୁ ଦଇତ୍ୟାରି
ତତକ୍ଷଣେ ଉଠିଯାଇ କୋଳାଗ୍ରତ କରି ।
କୁଶଳ ବାରତା ପୁଣି ପଚାରିଲେ ଅଚ୍ୟୁତ
ଧନୁର୍ଦ୍ଧରେ ମହାବୀର ଉଲ୍ଲାସିଲ ଚିତ ।
କର ଯୋଡ଼ଣ ବୋଲନ୍ତି ବୀର ଧନଞ୍ଜୟ
ଯାହା ଯାହା ହେଲା କହେ ଶୁଣ ଦେବରାୟ ।
ମୋହର ପ୍ରକର୍ମ ଦେଖି ସେ ଅନନ୍ତ ନାଗ
ଦୁହିତା ଗୋଟିଏ ଆଣି ଦେଲା ମୋତେ ବେଗ
ଶୁଣିକରି ହସ ହସ ହୋଇଲେ ଅଚ୍ୟୁତ
ଆପଣଙ୍କ ପାଶୋର ପାର୍ଥ ରହିଲ କେମନ୍ତ ।
ଯୁଧିଷ୍ଠିରେ ବୋଇଲେ ହୋଇ କୃତକୃତ୍ୟ
କୁଶଳରେ ଥିଲୁଟି କି ଆରେ ବାବୁ ପାର୍ଥ ।
ଏହିରୂପେ ପୁଣ ପୁଣ ସମସ୍ତେ ପଚାରିଲେ
ସକଳ କୁଶଳ ବୋଲି ଅର୍ଜୁନ କହିଲେ ।
ଯୁଧିଷ୍ଠି ବୋଇଲେ ଆସ୍ତ ବାପା ଦୁର୍ଯ୍ୟୋଧନ
ସେ ହେତୁରେ କୃଷ୍ଣ ତୋତେ କରିଲେ ସ୍ମରଣ
ଅର୍ଜୁନ ପୂଜା କରନ୍ତି ଆହେ ଜଗନ୍ନାଥ
ତୁମ୍ଭ ଜଗତବାନ୍ଧବ ନାମ ତୋ ଅଚ୍ୟୁତ ।
ଏହି ସଂସାରକୁ ଦେବ ତୁମ୍ଭେ ଉଦ୍ଧାରନ୍ତା
ମଧୁରିପୁ ନାମ ତୋର କହିଲେ ବିଧାତା ।
ଜଳ ସ୍ଥଳ କଲୁ ମଧୁକଇଟଭ ମାରି
ତାର ମାଂସରେ କରିଲୁ ପୁଣି ବସୁନ୍ଧରୀ ।
ଦେବଜନ ହିତେ ନାଥ ସମୁଦ୍ର ମନ୍ଥାଇ
ଅନେକ ରତ୍ନ ତହୁଁ ତୁମ୍ଭେ ଉପୁଜାଇ ।
ପରମାନନ୍ଦ ପୁରୁଷ ଜପ ମନ୍ତ୍ର ମୂଳ
ତୋହର ଉଦରୁ ଜାତ ବ୍ରହ୍ମାଣ୍ଡ ସକଳ ।
ଦୁର୍ଲ୍ଲଭ ଚରିତ ତୋର ଦେବଙ୍କୁ ଦୁର୍ଲ୍ଲଭ
ଜଗତବାନ୍ଧବ ତୁମ୍ଭେ ଅଟ ବାସୁଦେବ ।
ସ୍ଥାବର ଜଙ୍ଗମ କୀଟଆଦି କରିଖାନି
ଏହି ତୋହର ଶରୀରୁ ସର୍ବ ଜନ୍ମମାଣି ।

ଜଗିମନ ନନ୍ଦନଙ୍କ ସୃଷ୍ଟି କେ ନାଃଶଙ୍କା
ଖେଳ କୁତୂହଳେ ଦେବ ଦଗ୍‌ଧ କଲ ଲଙ୍କା।
ଜାତ ଅବସାନ ଭୁଞ୍ଜ କରୁ ନରହରି
ରାଜୀବଲୋଚନ ସ୍ୱାମି ଦେବ ଦଇତ୍ୟାରି ।
ଶରଣ ସୋଦର ନାଥ ଅଗାଧ ପୟୋଧି
ଯାହାର ଅନ୍ତ ନ ପାନ୍ତି ବ୍ରହ୍ମା ଶିବଆଦି ।
ନମସ୍ତେ ହେ ହୃଷୀକେଶ କାଳନ୍ଦୀର ନାଥ
ଶରଣ ସୋଦର ପ୍ରଭୁ ଅଟ ପରମାର୍ଥ ।
ଏହି ଆଜ୍ଞା କର ପ୍ରଭୁ ସଦା ତୁମ୍ଭ ପାଦେ
ଏ ମନ ରହିଥାଉ ନିତ୍ୟ ଅପ୍ରମାଦେ ।
ତୁଳସୀ ବଲ୍ଲଭ ନାଥ ପଦ୍ମନାଭ ତଳେ
ଶାରଳା ଦାସର ମନ ରହୁ ଯେ ନିଶ୍ଚଳେ ।

---

## ପଶାଖେଳ ଓ ସଭାକୁ ପାଣ୍ଡବଙ୍କ ଆଗମନ

ହେ ବ୍ରହ୍ମଋଷି ତପସ୍ୱେ ମୋତେ ଦୟାକର
କୃଷ୍ଣ ପ୍ରସାଦେ ଭାରତ କହିବ ପ୍ରଚୁର ।
ବହୁତ ତପସ୍ୟେ ତାଙ୍କୁ କହିଲେ ଫାଲ୍‌ଗୁନ
କୃଷ୍ଣର ପ୍ରସାଦେ ମୁହିଁ ଧଇଲ ମେଦିନୀ ।
ଅର୍ଜୁନଙ୍କୁ ସମ୍ଭାର୍ଜ୍ଜନା କରି ଦେବରାଜ
ଦ୍ୱାରକାକୁ ଯିବାପାଇଁ ହେଲେ ସଜବାଜ ।
ଯୁଧିଷ୍ଠିରଙ୍କ ଛାମୁରେ କହିଲେ ଶ୍ରୀବତ୍ସ
ସ୍ୱାମି ଆଜ୍ଞା ଦିଅ ମୋତେ ଦ୍ୱାରକା ଯାଉଛୁ ।
ସନ୍ତୋଷରେ ଯୁଧିଷ୍ଠିର କହିଲେ ହୋ ଯାଅ
ଗରୁଡ଼ ପିଠିରେ ବସି ଗଲେ ଦେବରାୟ ।
ତଜସେ ଶ୍ରୀନାରାୟଣ ଆପଣାର ପୁରୀ
ଯୁଧିଷ୍ଠିର ଦେବ ଏଣେ ବେନି ଭାଇ ବୀର ।
ବିଚାର କରନ୍ତି ବସି କଥା ଏହିପରି
ଚାଲ ଯିବା ଧୃତରାଷ୍ଟ୍ରେ ଦରଶନ କରି ।
ମିଥୁନ ଶୁକ୍ଳ ଚତୁର୍ଥୀ ବୁଧବାର ଦିନ
ଅଶ୍ଳେଷା ନକ୍ଷତ୍ର ଯୋଗ ଛେରବଣ୍ଡ ଜାଣ ।
ତେର ଦଣ୍ଡର ଉପ୍ରରେ ମଘା ସିଂହରାଶି
ଯିବାପାଇଁ ଅନୁକୂଳ ବସନ୍ତ ବସି ।
ହସ୍ତିକରଣ କୁଳିଶ ଦଣ୍ଡ ପରଯନ୍ତେ
ବ୍ୟାଘାତ ଯୋଗ ପୁଣି ସମ୍ପୂର୍ଣ୍ଣ ଯୁକତେ ।
ନୈର୍ଋତେ ଯୋଗିନୀ ଜାଣ ଅନନ୍ତ ରାହାଙ୍କୁ
ଏ ସମସ୍ତେ ବାହାରେ ହସ୍ତିନା ପ୍ରବେଶ ।
ନେତ୍ରବତୀ ଗୋହିକରେ ବସି ପାଞ୍ଚଜଣ
ଶ୍ରୀବତ୍ସ ସୁମନ୍ତ କହି ଚଳିଲେ ତକ୍ଷଣ ।
ଧୃତରାଷ୍ଟ୍ରଙ୍କ ସମୀପେ ପାଞ୍ଚଜଣ ମିଳିଲେ
ସଦାଦାନ ପୁଷ୍ପ ଲକ୍ଷଣେ ଚେଷ୍ଟା କଲେ ।
ଅନ୍ଧରାଜାଙ୍କ ଚରଣେ ଉଭିଲେ ଯଧିଷ୍ଠି
ମାଙ୍ଗୁ ହୋଇ ଯୁଧିଷ୍ଠି ତବ ପାଦେ ଲେଟି
ଅମ୍ବିକା ନନ୍ଦନ ହସ୍ତେ ଉଗଣି ଧଇଲେ
ବାବ ସୋମବଂଶେ ଜାତ ହୋଇଲ ବୋଇଲେ
ଏ ମହାଭାରତ ଜନ ଲୋକେ ଅବତରି
ମୋହର ପୁତ୍ର ହୋଇଲେ ସତା ବନ୍ଧୁକାଶ ।
ବାବୁ ତୋହର ଗରବେ ପୁତ୍ର ଜାତ ହେଉ
ଦୁର୍ଯ୍ୟୋଧନ ପାପେ ଦୁଷ୍ଟମତି ଜନ୍ମ ହୋନ୍ତୁ ।
କହଇ ନଧିପିଙ୍ଗଳ ଯା ପ୍ରକୃତି ଦୁଷ୍ଟ
ସେ ପୁତ୍ର ଜନମ ହେଲେ ବଂଶ ହୁଏ ନଷ୍ଟ ।
ଯଦ୍ୟପି ପୁତ୍ର ମୋହର ବନ୍ଧୁକାଶ ଖରି
ତୁ ଧର୍ମ ତାର ଦୋଷକୁ ଥିବୁ ପରିତ୍ୟାଗୀ ।
ବାବୁ ଯେ ପାପପୁଣ୍ୟକୁ ସର୍ବଦା ସମ୍ଭାଳେ
ପାପ ଆପେ ନାଶଯାଇ ତାର ପୁଣ୍ୟବଳେ ।
କଦାଚିତେ ନ ଧରିବୁ ଦୁର୍ଯ୍ୟୋଧନ ଦୋଷ
ଏବେ ହସ୍ତିନା ସଙ୍ଗରେ ଯାଇକରି ବସ ।
ଧର୍ମ ବୋଇଲେ କହିଲ ତୁମ୍ଭେ ନ ଈଶ୍ୱର
ଦୁର୍ଯ୍ୟୋଧନ ଭାଇ ସଙ୍ଗେ ଶ୍ରମ ନୁହେ ସର ।
ଯେ ଭଣ୍ଡାର ଆଣୋଇଲ ମହାଯଜ୍ଞ କାଳେ
ଧନେ ଜନନ୍ତା ହୋଇଲ ଦୁର୍ଯ୍ୟୋଧନ ବଳେ
ମୋ ପିତା ଯେତେକ ଦେଖା ଦରଶନ ଧନ
ଭଣ୍ଡାରୁ ନ ଆସୁ ଦିଏ କେତେକ ସେ ଦାନ
ଚକ୍ଷୁହୀନେ ବୁଦ୍ଧିହୀନେ କଥା କହିଁ କହୁ
ଦୁର୍ଯ୍ୟୋଧନ ସବୁ ଭାଇ କନ୍ଦେ କନ୍ଦେ ଥାଉ
ଧୃତରାଷ୍ଟ୍ର ବୋଲେ ବାବୁ ଜାଣିଲି ମୁହିଁ
ଅଛି ଯେବେ ସେହି ଏବେ କଥା ଉପୁଜାଇ ।
ବହୁତ ପ୍ରଶଂସା ତାକୁ କଲେ ଧର୍ମରାଜେ
ସଭାସ୍ଥାନେ ଯାଇ କଲେ ଯୁଧିଷ୍ଠିର ବିଜେ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା କର୍ଣ୍ଣ ଭୂରିଶ୍ରବା
ନମସ୍କାର କଲେ ବୃଦ୍ଧ ଜ୍ୟେଷ୍ଠ ପାଦସେବା ।

ମଧ୍ୟସ୍ଥାନେ ହୋଇଲେକ ଧର୍ମଦେବ ଲଘ
ମଘବା ସଭସ୍ତେ ଚଢ଼ି ପାରିଲେକ ଶୋଭା ।
ଦ୍ୱିତୀୟ ଖମ୍ବକୁ ମାଡ଼ିବସିଛି ଶକୁନି
ଆପେ ଆପେ ପାରଇ ସେ ପଶାକାଠି ଘେନି
ପଶା ଦେଖିଣ ବସିଲେ ଯୁଧିଷ୍ଠି ସମ୍ମୁଖେ
ବୋଇଲେ ପଶା ଖେଳନ୍ତୁ ମାମୁଁ ଏ ସଭାରେ
ଷଣ୍ଢାରୁ ଖଡ଼ଗୋଷ୍ଠାଳ କାଢ଼ିଲେ ଯୁଧିଷ୍ଠି
ସ୍ୱହସ୍ତେ ଧର୍ମନନ୍ଦନ ପଶାକୋଠି କାଟି ।
ଦ୍ୱାଦଶ କୋଠି ବିକଞ୍ଚ ଚଉଣ ତା ଶିର
କାଟିଲେକ ବୈଜୟନ୍ତ ମାଳ ଯୁଧିଷ୍ଠିର ।
ହରଷରେ ମହାରାଜା କାଟିଲେ ଏକାଳେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସଭାରେ ସକଳେ
ଦୁର୍ଯ୍ୟୋଧନ ବୋଲେ ମାମୁଁ ପଚକୁ ଯେ ଘୂଞ୍ଚ
ଯୁଧିଷ୍ଠିର କହିଲେ ମୋର ପଶାଖେଳ ରତ ।
ପବେଁ ଯୁଧିଷ୍ଠ ପଶ୍ଚିମେ ରାଜା ଦୁର୍ଯ୍ୟୋଧନ
ମଧ୍ୟ ପୀଢ଼ରେ ବସିଲା ଗାନ୍ଧାର ନନ୍ଦନ ।
ମାନଗୋବନ୍ଦର ମୁଖ ଚାହିଁ ମହାରାଜା
ବୋଲନ୍ତି ଜସ ଖେଳକୁ କରିବା ପରଜା ।
ଯୁଧିଷ୍ଠି ବଚନେ ମାନଗୋବନ୍ଦ କହିଲା
ମୋର ଦେହ ଅଳଙ୍କାର ପରଜା ହୋଇଲା ।
ଅଳଙ୍କାରମାନ କାଢ ଥୋଇଲା ସେ ଭୂମି
ଦେଖି ମନେ ବିସ୍ମରନ୍ତି ଧର୍ମରାଜା ସ୍ୱାମି ।
ଆପଣା ଶରୀରେ ଥିଲା ଯେତେ ଅଳଙ୍କାର
ଶରୀରୁ ସବୁ କାଢ଼ିଲେ ଦେବ ଯୁଧିଷ୍ଠିର ।
ସମସ୍ତ ଅଳଙ୍କାର ସେ କଲେ ଭୂମିଗତ
ଯୁଧିଷ୍ଠି ଦେବ ବୋଇଲେ ଏହି ଯେ ଯୁକତ ।
ଦେନି ରାଜାଏ ବସିଲେ ଖେଳି ପୀଢ଼ କରି
ବୋଇଲେ ଯେହୁ ଜିଣିବ ଏ ସବୁ ତାହାର ।
ଦୁର୍ଯ୍ୟୋଧନ ବୋଇଲେକ ଏ କଥା ଯୁକତ
ଯୁଧିଷ୍ଠି ଯାହା ବୋଇଲେ ମୋର ସନମତ ।
ଦୁର୍ଯ୍ୟୋଧନ ବୋଲେ ପୁଣି ଶକୁନିକୁ ଚାହିଁ
ସବୁ ଧର୍ମ ହେ ମାଉଳ ଅଛୁ ତୋର ଠାଇଁ ।
ଦେନି କୁଳ କର ବାବୁ ଗଡ଼ାଇବୁ ପଶା
ଉଭୟ କୁଳର ଏହି କରିବୁଟି ଆଶା ।
ଯେ ମଧ୍ୟପାକ ପ୍ରତ୍ୟକ୍ଷ ଅଟଇ ସେ ଧର୍ମ
ତୋ ଜଣନ୍ତେ ହାର ଜଣା ଯେ ଯାହାର କର୍ମ
ଗଡ଼ାଅ ଶକୁନି ମାମୁଁ ଗୋବିନ୍ଦ ସୁମରି
ଦେନିକୁଳ ଜକୁ ଆମ୍ଭେ ଯେମନ୍ତେ ନ ହାରି
କୂଟ ପଶାକୁ ପାତିଲେ ଦେନି ନରପତି
ସୁମରେ ମନେ ଶକୁନି ଗୋବିନ୍ଦ ଯେ ପତି ।
ଦେବଦଳଷ ସ୍ୱର୍ଣ୍ଣ ଥିଲା ଦୁର୍ଯ୍ୟୋଧନ ଦେହେ
ତାହା ସବୁ ପୀଢ଼ କଲା ରାଜା ଖେଳ ସ୍ନେହେ ।
ସହସ୍ରେକ ରତ୍ନ ଥିଲା ଯୁଧିଷ୍ଠିର ହୃଦେ
ତାହା ପୀଢ଼ କଲେ ପଶା ଖେଳର ବିବାଦେ ।
ଗଡ଼ାଏ ଶକୁନି ମନେ ସୁମରି ଜାହ୍ନବୀ
ମମ ପିତା ପୂର୍ବେ ତୋତେ ଅଛଇ ନା ସେବି
ପଥର ଘରେ ମାଇଲା ଦୁର୍ଯ୍ୟୋଧନ ଭରି
ଅନୁରୂପେ ସାଧିବାକୁ ନୋହିଲି ମୁଁ ସରି ।
ତୋହର ଆଜ୍ଞାରେ ମାତ ପାରଇ ବା ସାଧି
ବଂଶକୁ ମୁଁ ଉଦ୍ଧାରିବ କରାଇ ବିବାଦି ।
ଆଜ ପଶାରେ ଯୁଧିଷ୍ଠି ହାରନ୍ତି ଯେମନ୍ତେ
ରାଜ୍ୟ ଧନ ସିଂହାସନ ଦ୍ରୌପଦୀ ସହିତେ ।
ଏହା ହସ୍ତେ ପାଣ୍ଡବଙ୍କୁ ବିଆଇବ ଶାସ୍ତି
ସଭା କେଶ ଆକର୍ଷଣ କରାଇ ଦଂପତି ।
ସଭାର ଝିଙ୍କାସେ କୋପ କରି ଭୀମସେନ
କରିବ ଏ କୌରବଙ୍କୁ ଯେମନ୍ତେ ନିଧନ ।
ପରମ ପଣ୍ଡିତ ବ୍ରହ୍ମପତି କୁ ଗୋବିନ୍ଦ
ଏତେଦେଲେ ହୋଇବୁ ତା ମୋହର ସପକ୍ଷ
ଗଡ଼ାଇ ମନ୍ତ୍ରୀ ବୋଇଲେ ଜିଣିବେ ନୃପତି
ପ୍ରଥମ ପୀଢ଼ ପାଇଲା ରାଜା କୁରୁପତି ।
ସ୍ୱରରେ ଯୁଧିଷ୍ଠି ଦେବ ପାଞ୍ଚରେ ନପତି
ଗଡ଼ାନ୍ତେ ପଡ଼ିଲା ପାଞ୍ଚକାଠ ପଞ୍ଚ ପ୍ରାପ୍ତି ।
ଦୁର୍ଯ୍ୟୋଧନ ବୋଇଲେକ ସବୁ ଦିଅ ମୋତେ
ମୋହର ଜିଣିବା ତେବେ ହୋଇଲା ଯୁକତେ ।
କଳକାଳ ସୁମରଣ ପାତଇ ସେ ମନ୍ତ୍ରୀ
ପ୍ରଥମବାରେ ପଡ଼ିଲା ଦାନ ପଞ୍ଚ ପ୍ରାପ୍ତି ।
ପ୍ରଥମେ ପଶା ପଡ଼ାନ୍ତେ ହାରିଲେ ଯୁଧିଷ୍ଠି
ଅଳଙ୍କାରମାନ ଘେନଗଲେ ଧାର୍ତ୍ତରାଷ୍ଟ୍ରି ।
ଦୁର୍ଯ୍ୟୋଧନ ବୋଲେ କୁହ କର୍ଣ୍ଣର କୁଣ୍ଡଳ
ତହିଁରେ ଯେ ସମକକ୍ଷ ଏ ରତ୍ନ ସକଳ ।
ଦୁଇ ରାଜାଙ୍କର ଯେତେ ରତନ ଭୂଷଣ
କୁଣ୍ଡଳକୁ ଇଚ୍ଛା କଲା ରାଜା ଦୁର୍ଯ୍ୟୋଧନ ।

ହାରି ମହାକୋପ କଲେ ଦେବ ଧର୍ମରାଜ
କର୍ଣ୍ଣ କାଢ଼ିନେଲେ ଦେବ ଅମୃତକୁଣ୍ଡଳ ।
ସତ୍ୟଯୁଗେ ଯଜ୍ଞ କଲେ ରାଜା ଯେ ଯଯାତି
ଇନ୍ଦ୍ର ଦେବତା କୁଣ୍ଡଳ ଦେଲେ ହୋଇ ପ୍ରୀତ
ସେ କୁଣ୍ଡଳ ଯେତେବେଳଯାଏ ଥାଏ କର୍ଣ୍ଣ
କଷ୍ଟି ବିବଶ ସ୍ୱପ୍ନେ ଥାଏ ଦେବ୍ୟମାନେ ।
ସେ କୁଣ୍ଡଳ ଥିଲେ କର୍ଣ୍ଣେ ନ ପୀଡ଼ଇ ବ୍ୟାଧି
ନାନା କ୍ଳେଶ ସେ ହରଇ ପରମ ଔଷଧି ।
ସେହୁ ସୋମବଂଶର ଯେ ନୃପତି ମରୁତ
ତା କର୍ଣ୍ଣେ ଥାଇ ହୋଇଲା ସ୍ୱର୍ଗ ସମାଗତ ।
ଯୁଧିଷ୍ଠିର ଦେବଙ୍କର ମହାଯାଗ କାଳେ
ମରୁତ କୁଣ୍ଡଳ ଦେଲା ରାଜା ଧର୍ମରାଜେ ।
ସେ କୁଣ୍ଡଳ କର୍ଣ୍ଣେ ଥିଲେ ନ ଘଟଇ ମୃତ୍ୟୁ
ଅଷ୍ଟଧାତୁ ସ୍ରବଇ ସେ ମହୌଷଧି ହେତୁ ।
ପଶାଖେଳ କୁତୂହଳେ ଦେବ ଧର୍ମରାଜ
ଶ୍ରୀକରେ ଯେ ପୀଡ଼ କଲେ ଅମୃତ କୁଣ୍ଡଳ ।
ପୀଡ଼ ବୋଇଲେ ପାତିଲା ପଶାକୁ ଶକୁନି
ପଞ୍ଚ ଅଣ୍ଟ ପଡ଼ନ୍ତେ ସେ ହାରିଲେ ଯେ ବେଳ ।
ହସ୍ତେ ଦୁର୍ଯ୍ୟୋଧନ ତାହା ନେଲେ ତତ୍କ୍ଷଣେ
ଭୂଷଣ କଲା ସେ ନେଇ ନିଜ କର୍ଣ୍ଣେ
ମଲୁଆଳ ନାଟଖଣ୍ଡ ନାଚନ୍ତି ଆନନ୍ଦେ
ଗାଲଲୁର ଦେଇ ପଶା ଭୂଷନ୍ତି ଶବଦେ ।
ରାଜେ ପୀଡ଼ କରୁଛନ୍ତି ଦେବ ଯୁଧିଷ୍ଠିର
ଏ ସାନ୍ତ ହୋଇଲା ମୋର ତଇଦ ଭଣ୍ଡାର ।
ଦୁର୍ଯ୍ୟୋଧନ ବୋଲେ ମୋର ତହିଁକି ଦୁଗୁଣ
ସବୁ ଭଣ୍ଡାର ମୋହର ହେଲା ପୀଡ଼ ଜାଣ ।
ପାତିଲା ଶକୁନି ମନ୍ତ୍ରୀ ତହିଁ ପଶା କାଠ
ପଞ୍ଚ ଅଣ୍ଟ ପଡ଼ିଲାକ ହାରିଲେ ଯୁଧିଷ୍ଠି ।
କାଠିକ ସେନ ବସ୍ତର କଲେ ଯୁଧିଷ୍ଠିର
ପାଲଟ କରିବା ଦାନ ତୋହର ମୋହର ।
ପଞ୍ଚ ଅଣ୍ଟ ଅନ୍ତର ଭୁ ସେନ ଦାନ ଆନ
ଦୁର୍ଯ୍ୟୋଧନ ବୋଲେ ମୋର ହେଲା ସ୍ୱରଦାନ
ମୋର ହେଲା ସ୍ୱର ଦାନ ତୋର ହେଲା ପାଞ୍ଚ
ତହିଁକ ଶୋଚନା ନାହିଁ ମାମୁଁ କାଠ ମୁଞ୍ଚ ।
ପଞ୍ଚ ଅଣ୍ଟ ପଡ଼ିଲେ ଭୁ କର୍ଣ୍ଣରୁ ଯୁବତେ
ତଞ୍ଚଠ ପଡ଼ିଲେ ରସ୍ତେ ହାରୁଛନ୍ତି ମୋତେ ।

କୁ ଯେବେ ଦାନ ପାଲଟ କଲୁ ଧର୍ମସୁତ
ଅଶ୍ୱଦଣ୍ଡଯାକ ପୀଡ଼ କଲି ମୁଁ ଯୁବତ ।
ଦୁର୍ଯ୍ୟୋଧନ ବୋଲେ କର ତୋହର ପଣଜା
ପୀଡ଼କଲେ ଅଶ୍ୱ ଗଜ ଯୁଧିଷ୍ଠିର ରାଜା ।
ପଶା ମନ୍ତ୍ରିଣ ପାରଇ ମନ୍ତ୍ରୀ କୂଟବୁଦ୍ଧି
ପଡ଼ିଲା ନଉଠି ଦାନ ହେଲେ ପୂର୍ବବଧି ।
ଅଶ୍ୱ ଦଣ୍ଡକୁ ହାରିଲେ ଖେଳ କୁତୂହଳେ
ଦେଖି ଉପହାସ କଲେ କୌରବ ସକଳେ ।
ଦୁର୍ଯ୍ୟୋଧନ ବୋଇଲା ଏ ସାନ୍ତ ପୀଡ଼କର
ଗଜଦଣ୍ଡ ପୀଡ଼ ହେଲା ଏ ସାନ୍ତ ମୋହର ।
ଯୁଧିଷ୍ଠି ଦେବ ବୋଇଲେ ମୋର ଗଜବଳ
ସବୁରେ ବୋଇଲେ ପଶା ପାର ହେ ମାତୁଳ
ଗଜଦଣ୍ଡ ନକଖବ ସ୍ୱର ଯେ ଅଯୁତ
ସବୁରେ ଯେ ପୀଡ଼ କଲେ ଦେବ ଧର୍ମସୁତ ।
ଜୟ ଜୟ ବୋଲି ପଶା ଶକୁନି ପାତିଲା
ଯୁଧିଷ୍ଠିର ଦେଖିଲେ ଯେ ତଉଠି ପଡ଼ିଲା ।
ହାରିଲେ ସେ ଗଜବଳ ପଶା କୁତୂହଳେ
କଳକଳା ନାଦ କଲେ କୌରବେ ସକଳେ
ଧର୍ମ ବୋଇଲେ ସେନବା ଦୁହେଁ ଦୁଇଦାନ
ତୁମ୍ଭ ଆନ ଦାନ ଦେନ ମୁହିଁ ସେନେ ଆନ ।
ଶକୁନି କହେ ଯୁଧିଷ୍ଠି ବୋଇଲେକ ଯାହା
ତୁମ୍ଭେ କୁରୁପତି ଆନ ନ କର ହେ ତାହା ।
ଦୁର୍ଯ୍ୟୋଧନ ବୋଲେ ସେନଯେତୋହରଇଚ୍ଛା
ମୋହର ଯେ ସନମତ ନ କରଇ କକ୍ଷା ।
ଯୁଧିଷ୍ଠି ଦେବ ବୋଇଲେ ମୋର ହେଲା ଦଶ
ବେଣ ତଉକ ଯେନଣ ଗାନ୍ଧାରୀର ଶିଷ୍ୟ ।
ଦୁର୍ଯ୍ୟୋଧନ ବୋଲେ ମୋର ପୀଡ଼ ରଥଯାନ
ଧବଳେ ହସ ବୋଇଲେ ଦେବ ଧର୍ମରାଜ ।
ମୋହର ରଥହିଁ ପୀଡ଼ ହୋଇଲା ଯୁବତେ
ପାର ହୋ ମାମୁଁ ଶକୁନି ଧର୍ମର ଆଗ୍ରତେ ।
ପଶାକୁ ଘେନି ମନ୍ତ୍ରଇ ମନ୍ତ୍ରୀ ବେନିକରେ
ପାରିଲ ସେ ମହାମନ୍ତ୍ର ପଢ଼ିଣ ମନରେ ।
ଜୟ ଜୟ ବୋଲି ମନ୍ତ୍ରୀ ପାରିଲାକ ଦାନ
ପଡ଼ିଲା ବେଣ ତଉକ ଜିତେ ଦୁର୍ଯ୍ୟୋଧନ ।
ହାରିଲେକ ଅଶୀକୋଟି ରଥ ଦେବ ଧର୍ମେ
ପଶା ପ୍ରଶଂସା କରନ୍ତି କଉରବେ ପ୍ରେମେ ।

ଶାସ୍ତ୍ରୁ ବୋଇଲେ ଆଉ ତୁ ନ ଖେଳ ଯୁଧିଷ୍ଠି
ଆଜକୁ କପଟ ତୋର ଜନ୍ମ ନଷ୍ଟହିଁ ।
କରନ୍ତି ସେ କଉରବେ କୁଟେ ଉପହାସ
ହାର ଯୁଧିଷ୍ଠି ରଙ୍କର ବେଳେ ବଢେ ରୋଷ ।
ଦୁର୍ଯ୍ୟୋଧନ ବୋଇଲେକ ପାଉ ହୋ ଶକୁନି
ଏ ଗାନ୍ତ ପୀଢ଼ ମୋ ଏକାଦଶ ଅକ୍ଷୌହିଣୀ ।
ଶୁଣି ସାନନ୍ଦ ହୋଇଲେ ଦେବ ଧର୍ମରାଜ
ମୋର ପୀଢ଼ କଲି ସାତ ଅକ୍ଷୌହିଣୀ ବଳ ।
ମନ୍ତ୍ରୀ ଚୂଡ଼ାମଣି କୁଟେ ପାଞ୍ଚିଲେକ କାଠି
ପଡ଼ିଲା ବେନ ତଉନ ହାରିଲେ ଯୁଧିଷ୍ଠି ।
ରଥ ଗଜ ଅଶ୍ୱସହ ସମସ୍ତ ପଦାତି
ହାରିଲେ ଯୁଧିଷ୍ଠି ଦେବ ଜାଣ କୁରୁପତି ।
ହସନ୍ତି କୌରବ ତାଳମାରି ଗୀତ ଗାଇ
ନାଚନ୍ତି ସେ ଆନନ୍ଦରେ ଗାଲବୁଲା ଦେଇ ।
ପ୍ରେମର ମିଷ୍ଟ ଅଟଇ ପାଇଲେଟି ତୃଷା
ରଜାର ମିଷ୍ଟ ଅଟଇ ପାଇଲେ ସୁଭାଷା ।
ଘ୍ରାଣର ମିଷ୍ଟ ସୁଗନ୍ଧ ଅଙ୍ଗ ଯେବେ ସିଞ୍ଚି
ଜିହ୍ୱା ମିଷ୍ଟ ଶୁଣିବା ଜନ ଯେବେ ବୁଝି ।
ଶାସ୍ତ୍ରର ମିଷ୍ଟ ବଡଗାଜନ ଯେବେ ଧେନ
ସ୍ୱରର ମିଷ୍ଟ କୋକିଳ ସ୍ରାପ୍ତ ଯେବେ ଧ୍ୱନି ।
ଚଉର ମିଷ୍ଟ ହସ୍ତକ ଚଳେ ଯେବେ ଭଲେ
ଆହାର ମିଷ୍ଟ ଭୁଞ୍ଜିବା ବେଳେ ଭୋକ ଥିଲେ ।
ବାଣିଜ୍ୟର ମିଷ୍ଟ ଯେବେ ଶୁଭେ ଯାଇ ବକା
ରୂପର ମିଷ୍ଟ ଯଦ୍ୟପି ସୁନ୍ଦର ନାସିକା ।
ସମର ମିଷ୍ଟ ଯଦ୍ୟପି ବହଇ ରୁଧିର
ଗୃହର ମିଷ୍ଟ ଯେବେଟି କୁଟୁମ୍ବ ବିସ୍ତାର ।
ତପର ମିଷ୍ଟ ଯେବେଟି ନୋହେ ବହ୍ନିବାସ
ଜୂଆର ମିଷ୍ଟ ମଙ୍ଗଳ କର ଯେବେ ହାଣ ।
ଖେଳରେ ହାରିବା ମିଷ୍ଟପାଇ ଧର୍ମରାୟେ
ବେଳକୁ ବେଳ ସରସ ଖେଳେ ବଢ଼ିଯାଏ ।
ବଦନ୍ତି ଗାଙ୍ଗେୟ ଆଉ ନ ଖେଳସି ବାବୁ
ସବୁ ସମ୍ପଦ ସରିଲା ଆଉ କିସ ଦେବୁ ।
ବିଷକ କାଳଟି ତୋତେ ପଡ଼ିଅଛୁ ଆସ
ବେଳେବେଳେ ହାରୁଅଛୁ ଖେଳସୁଖେ ବସି ।
ଏତେହିଁ ହାରିଲେ ଆଉ ଆସଇ କ ଖେଳ
ବୁଦ୍ଧିଭ୍ରଂଶ ହୋଏ ରୋଷ ହେବାରୁ ପ୍ରବଳ ।

ଗୁଡ଼ ଗୁଡ଼ ବାବୁ ସଭା ବୁଡ଼ଇ ଗୃପତି
ଏବେ ତୁମ୍ଭେ ଯା ଯା ଆନନ୍ଦରେ ଖେଳ ଜୂଆ
ଶାସ୍ତ୍ରଙ୍କ ବଚନେ କର୍ଣ୍ଣବୀର ଯେ ବୋଇଲା
ତୁମ୍ଭେ ଯେ ବୋଲୁଛ କିସ ଯୁଧିଷ୍ଠି ହାରିଲା ।
ମରୁତ ଦେଲା କୁଣ୍ଡଳ ଆବର ମୁକୁଟ
ଜରାସନ୍ଧ ମାରି ଆଣିଥିଲେ ଗଜ ଆଠ ।
ଦ୍ରୁପଦ ଯୌତୁକ ଦେଲା ସାତ ଅକ୍ଷୌହିଣୀ
ରଜାମାନେ ଆଣିଦେଲେ ଦେଖା ଦରଶନୀ ।
ମୟ ଆଣିଦେଲା ପୁଣି ବହୁତ ରତନ
ବାହୁବଳେ କରିଛନ୍ତି ଏ ସବୁ ଅର୍ଜ୍ଜନ ।
ସଞ୍ଚିଲା ଧନ ଏଥିରେ ପଦାର୍ଥ ତ ନାହିଁ
ପୂର୍ବ ସଞ୍ଚିଲା ପଦାର୍ଥ ରଖିଅଛୁ କାହିଁ ।
ରାଜ୍ୟକୁ ହାରନ୍ତେ ଯେବେ ଆଜ ଏ ପଶାରେ
ତେବେ ସେ ସାନ୍ତ୍ୱକ ଖେଳ ହୁଅନ୍ତା ବିସ୍ୱରେ
ଦୁର୍ଯ୍ୟୋଧନ ବୋଇଲା ଯା କହିଲା ମୋ ମିତ
ଅଡ଼ାଇ କଟକ ମୋର ଅଟଇ ଯଥାର୍ଥ ।
ହସ୍ତିନା ଯେ ଯମପ୍ରସ୍ଥ ଏ ଦୁହିଁ ମୋହର
ଜୟନ୍ତା ବାରୁଣାବନ୍ତ ଏହୁ ଏହାଙ୍କର ।
ଇନ୍ଦ୍ରପ୍ରସ୍ଥକୁ କରିବା ଆମ୍ଭେ ଅଧ ଅଧ
ଏହି ରାଜ୍ୟ ପୀଢ଼ ପଶାଖେଳ ହୋଇ ସାଧ ।
ମୋହର ଅଡ଼ାଇରାଜ୍ୟ କଲି ମୁହିଁ ପୀଢ଼
ଦୁଲରାଜା ଏ ବଚନ କଲେ ତହିଁ ଦୃଢ଼ ।
ଶକୁନି ପାଚନ୍ତେ ତାହା ରଙ୍ଗିଲେ ଯୁଧିଷ୍ଠି
ଆଚଣ୍ଡା ହସ୍ତେ ଗ୍ରହନ୍ତି ଧରି ପଶାକାଠି ।
ଫିଙ୍ଗ ବୋଲି ନେଇ ଦେଲେ ଶକୁନିର ହାତେ
ଶକୁନି ବୋଇଲେ ଧର୍ମ ପ୍ରାପ୍ତ ହେଉ ତୋତେ
ଜିତ ଜିତ ବୋଲି ରଷେ ପଶାକାଠି ଗୁଡ଼
ଦେଖିଲେ ଯୁଧିଷ୍ଠି ବେନ ତୌକ ଅଛି ପଡ଼ି ।
ଦାନ ପଡ଼ିଲା ହାରିଲେ ରାଜା ଧର୍ମନାନ
ତଥାପି କିଛି ବିକାର ନାହିଁ ତାଙ୍କ ମନ ।
ବିସ୍ତରନ୍ତି ପଶାକାଠି ବେନି ହସ୍ତଗତେ
କିସ ପୀଢ଼ ଆମ୍ଭେ ଏବେ କରିବା ଯୁକତେ ।
ଦୁର୍ଯ୍ୟୋଧନବୋଲେ ଯେବେ ଲୋଡ଼ ଖେଳିବାକୁ
ଏଥର ତୁ ପୀଡକର ତୋହର ଭାଇଙ୍କୁ ।
କହ କହ ଆଉ କିସ ବସିଲୁ ଯୁଧିଷ୍ଠି
ଶ୍ରମଇ ପୀଢ଼ ଏବାନ୍ତ ପାତ ପଶାକାଠି ।

ଏ ଶାନ୍ତ ତୁ ପାତ ଯେତେ ପଡ଼ଇ ଚୋହର
ପଞ୍ଚାଶ ଭାଇ ସେନ ମୁଁ ହୋଇବ କୋପୁର ।
ଅନେକ ସଙ୍ଗରେ ପୁଣ୍ୟ କହିଲେ ଯୁଧିଷ୍ଠି
ପବନ ନନ୍ଦନ ଭୀମା ମୋର କଷାକେଠି ।
ଶତଶୃଙ୍ଗ ଚୂର ହେଲା ବାଜ ଯା ଅଙ୍ଗୁଷ୍ଠ
ମହାବଳୀ ବଳସ୍ୱାର ଭୀମ କୋପଦୃଷ୍ଟ ।
ପାରଦଣ୍ଡ ମାର ପାରଜିଲା ବଷଲଡ଼ୁ
ସାର ଦର୍ପ ଚୂର୍ଣ୍ଣ କଲା ଖେଳ ଖେଳୁ ଖେଳୁ ।
ହାରିଲେ ମାଗଧଙ୍କ ଜଣ ବେଲବଳୀ
କାମ୍ୟକ ବକାଦେ ଧ୍ୱଂସ କଲା ସାଇକାଳ ।
କ୍ଷଣକରେ ଜଳଧର ହେଲା ଭସ୍ମକର
ନଳ ବାହୁବଳେ ଚୂର୍ଣ୍ଣକଲା ମଧୁ ଗିର ।
ଗୋପନରେ ଧ୍ୱଂସକର ପଶି ଶିବପୁରେ
ଚଣ୍ଡାଳ ବଳକୁ ଧ୍ୱଂସି ଆଣି ବସ୍ତ୍ରକରେ ।
ବକରାକ୍ଷସ ଧ୍ୱଂସିଲା ଏକଚକ୍ରା ପୁରେ
ରାଜାଙ୍କ ଦର୍ପ ଚୂରିଲା କୃଷ୍ଣ ସ୍ୱୟମ୍ବରେ ।
ପଶ୍ଚିମଦିଗ ରାଜାଙ୍କୁ ଆଣିଲା ସାଧି
ପୁଣ୍ଡରୀକକୁ ଆଣିଲା ରଥ ଚକେ ବାନ୍ଧି ।
ଯମର ଉପରେ କାଳଦଣ୍ଡ ଯା ବିରଧୁ
ରାଜାଙ୍କ ମଉଡ଼ମଣି ଯା ମହିମା ସାଧୁ ।
ବସ୍ତୁରେ ସେ ସୀଇବର କଥା ଜଗତକଣ୍ଠେ
ଆକାଶେ ଖୁଟେ ମାତୁଳ ଯା ର ନାମ ଗୋଟି
ବଗପାଳ ଜଣବାକୁ ସମର୍ଥ ମୋ ଭାଇ
ଏବେ ସୀତ୍ର ପରଜା ମୁଁ କଲି ତାହାପାଇଁ ।
ଯୁଧିଷ୍ଠିର ମୁଖ ସ୍ତୁତି ବସ୍ତୁରେ ଶକୁନ
ପାଣ୍ଡୁଅଛୁ ଦୃଢ଼ବ୍ରତ କଲ କେହୋ କେନ ।
ଯୁଧିଷ୍ଠି ବୋଇଲେ ମୋର ହେଲ ସନମତ
ଦୁର୍ଯ୍ୟୋଧନ ବୋଇଲ ହୋ ମୋହରହିଁ ସତ
ହିତପୁଙ୍କୁ ବୃଦ୍ଧଙ୍କର ପାତଇ ଶକୁନ
ସାକ୍ଷୀ କରଇ ସେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଜନ ।
ଦୁଇକୁଳ ସନମତ ପାଙ୍କୁଛି ମୁଁ ପଶା
ଧର୍ମ ସନା ଏଥିକୁହିଁ ଧଟଇ ଭରସା ।
ଜିତ ଜିତ ବୋଲି ପଶା ପାତେ ମହାମନ୍ତ୍ରୀ
ପଡ଼ିଲା ଦେନ ତାଙ୍କ ଜଣେ କୁରୁପତି ।
ସଭାରେ ଯେ ବାହାସ୍ଫୋଟ ମାର ଦୁଃଶାସନ
ଏ ଶାନ୍ତୁ ଜାଣିମା ସିନା ଭୀମ ଦର୍ପମାନ ।

ଭୂମିରେ ପ୍ରହାର କର ପଶା ବେନକାଠ
ଉପହାସ ପ୍ରାପ୍ତ କର ହସେ ଧାର୍ତ୍ତରାଷ୍ଟ୍ର ।
ଭୀମର ପ୍ରାପ୍ତ ସୋଦର ହରିଲେ ରାଷ୍ଟ୍ର
ଏ ଶାନ୍ତ ପୀଡ଼ କରବୁ ଭାଇ ଧନଞ୍ଜୟ ।
ତୁ ଯେବେ ଏ ଶାନ୍ତ କରୁ ପାର୍ଥକୁ ପରଜା
ମୋହର ଏ ଶତଭ୍ରାତା କହେ କୁରୁରାଜା ।
ହାରନ୍ତେ ରାଗ ତାଙ୍କର ବଢ଼ଇ ଦ୍ୱିଗୁଣ
ଖେଳରେ ବିଶେଷ ଶ୍ରଦ୍ଧା ବଢ଼େ କ୍ଷଣ କ୍ଷଣ ।
ତ୍ରୈଲୋକ୍ୟ ସାଧୁ ଯେବଣ ଅର୍ଜୁନ ମହିମା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ସାର୍ଥକ ଗାରିମା ।
ଇନ୍ଦ୍ର ବିବାଦେ ଖାଣ୍ଡବବନ ଯେତୁ ଧ୍ୱଂସି
ମହୌଷଧି ଦେଇ ଅଗ୍ନି ଦେବ ମନ ତୋଷି ।
ସୁଗନ୍ଧିକା ହରଣେ ଯେ ଜିଣି ହନୁମନ୍ତ
ଶରେ ସାଗର ବାନ୍ଧିଲା ଯୋଜନେକ ଶତ ।
ଅଙ୍ଗାର ପର୍ଣ୍ଣକୁ ଯେ ଜିଣିଲେକ ରଣେ
ସଦାଶିବଙ୍କୁ ଜିଣିଲା ହେଲେ ହରବନେ ।
ପଞ୍ଚାଳ ଦେଶରେ ଯେତୁ ରାଧାଚକ୍ର ଭିନ୍ନ
ସଭାରେ ଲକ୍ଷେ ନୃପତି ମାନ ଦର୍ପ ମର୍ଦ୍ଦି ।
ତ୍ରିଲକ୍ଷ ସହସ୍ର ରାଜା ଜିଣିଲା ଉତ୍ତରେ
ଜମାଗୋଷ୍ଠକୁ ବାନ୍ଧିଲା ରଥଖମ୍ବ ଡୋରେ ।
ଯାଦବଂଶ ସକ୍ଷତରେ ରାମକୃଷ୍ଣ ମେଳେ
ସୁଭଦ୍ରା ହର ଆଣିଲା ସେତୁ ଭୁଜବଳେ ।
ଯାହା ଶରଘାତ ତ୍ରୈଲୋକ୍ୟ ନ ସହଇ
ସର୍ବଙ୍କୁ ଜିଣିଲା ସବ୍ୟସାଚୀ ନାମ ପାଇ ।
ଧନୁଷ୍ଟଙ୍କାରେ ଥରିଲା ସପତ ବ୍ରହ୍ମାଣ୍ଡ
କାଶ୍ମୀରମାଝେ ବହିଲା ପୃଥ୍ୱୀ ନବଖଣ୍ଡ ।
ଖରତେଜ ଖଂସଲମଣି ଶରଣ ପଞ୍ଜର
ସାଧୁ ସାଧୁ ଶାର୍ଙ୍ଗଧର ପ୍ରତିଜ୍ଞା ଯାହାର ।
କିରାତରୂପେ ଜିଣିଲା ବନେ ପଶୁପତି
ଦେଲେ ବନ୍ଧୁତର ବିଦ୍ୟା ଦେଲେ ଉମାପତି
କହନ୍ତେ ପ୍ରତିଜ୍ଞା ଯାର ନ ସରଇ ଗାଢ଼ ।
ତାହାର ପୁଣ୍ୟେ ଅବା ମୁଁ ଜଣବ ଏ ପୀଢ଼ ।
ଶକୁନ ସାନନ୍ଦ ତୋଷ ଦୁର୍ଯ୍ୟୋଧନ ଚଉ
ପଶା ଗଣେ ଶକୁନ ପାତେ ଜିତ ଜିତ ।
ସବିଲାଙ୍ଗାଳ ସୁମେର ପଶାକାଠ ପାର
ଦେଖିଲେ କେନତାଙ୍କ ଜ୍ଞାନ ଭଣ୍ଡାର ।

ହସନ୍ତି ଯେ କଉରବେ ମାରି କରତାଳି
ନାଚନ୍ତି ମତ୍ତ ହୁଅନ୍ତି ଦେଇ ହୁଳହୁଳି ।
ବେନି ସୋଦର ସଙ୍ଗରେ ହାରି ଧର୍ମସୁତ
ତଥାପି ତାହାଙ୍କ ମନେ ନ ଆସେ ଉଚିତ ।
ଯୁଧିଷ୍ଠିର ମୁଖ ଚାହିଁ ବୋଲେ ଦୁର୍ଯ୍ୟୋଧନ
ପଶାରେ ହାରିଲେ ଏବେ ଭୀମ ଅରିନ୍ଦମ ।
ନକୁଳ ଯେ ସହଦେବ ବାଳକ ଅଟନ୍ତି
ତାହାଙ୍କୁ କି ପୀଡ ତୁମ୍ଭେ କରିବ ଏକାନ୍ତି ।
ଯାଙ୍କ ପ୍ରଣୟେ ଜାଣୁ ଅବା କହେ କୁରସାଇଁ
ମୋହର ଉଲଟ ପୀଡ଼ ଭୀମ ଅର୍ଜୁନହିଁ ।
ଆବର ପ୍ରତିଜ୍ଞା କରି କହୁଅଛୁ ତୋତେ
ପୀଡ କଲ ଦୁଃଶାସନ ଦୁର୍ଜ୍ଜସ ସଭାତେ ।
ସଗର ବଢ଼ିଲା ରାଜା କଲା ସନ୍ମତ
ଶକୁନିର ମୁଖ ଚାହିଁ ବୋଲେ ଧର୍ମସୁତ ।
ଶୁଣ ହେ ଶକୁନି ମୋର ନକୁଳ ଚରିତ
ସୁକୁମାରପଣେ ସମ ନାହିଁ ତ୍ରିଜଗତ ।
ନବଘନ ଧଇଲା ସେ ପୃଥ୍ୱୀ କୁନ୍ତମନେ
କୁମାର ମଧ୍ୟେ ଶ୍ରେଷ୍ଠ ପାଇ ସେ ଗଗନେ ।
ଦକ୍ଷିଣ ଦିଗ ଜିଣିଲା ଯେହୁ ବାହୁବଳେ
ସେ ମାଦ୍ରୀନନ୍ଦନ ପୀଡ କଲି ଏତେବେଳେ ।
ଏ ଦାନ ରହୁ ଯେବେ ମୁହିଁ ଆନ ଦାନ
ସପତ ଦାନ ମୋହର ବୋଲେ ଧର୍ମଜାନ ।
ଦୁର୍ଯ୍ୟୋଧନ ବୋଲେ ପୁଣ ପୁଣ ଯେନୁ ଦାନ
ମୋହର ଦାନ ହୋଇଲା ନବମ ରଜନ ।
ପାଡିଲା ଶକୁନି ପଶା ଜିତ ଜିତ ବୋଲି
ଅସ୍ତୁ ଅସ୍ତୁ କରି ମାଗେ ଯାହା ବାଞ୍ଛା କଲି ।
ନବମ ଦାନ ପଡ଼ିଲା ଦେଖିଲେ ସାକ୍ଷାତେ
ନକୁଳ କୁମାରଙ୍କୁ ଯେ ହାରିଲେ ଯୁକତେ ।
ଯୁଧିଷ୍ଠିଙ୍କ ମୁଖ ଚାହିଁ ବୋଲେ କୁରୁଦେବ
ତିନିଙ୍କୁ ହାରିଲୁ ଏବେ ଅଛୁ ସହଦେବ ।
ତାହାକୁ କିସ କରିବୁ ସେ ପୁଣି କନିଷ୍ଠ
ଭୀମ ଅର୍ଜୁନ ହାରିଲୁ ହେଲୁ ରାଜ୍ୟଭ୍ରଷ୍ଟ ।
ଯୁଧିଷ୍ଠି ବୋଇଲେ ମୋର ଭାଇ ଗୁଣବନ୍ତ
କରତଳକୁ ଚାହିଁଲେ ଜାଣେ ଭବିଷ୍ୟତ ।
ଅତ୍ୟନ୍ତ ଧାର୍ମିକ ସେହୁ ଗୁଣେ ଗୁଣନିଧି
ଜଗତଭୂତ ଯାହାକୁ ମାଗନ୍ତି ସୁବୁଦ୍ଧି ।

ଯୁଗାନ୍ତର କଥା ମୋର ଭାଇ ସହଦେବ
ଗୋଳକ ବିଦ୍ୟା ପାଇଲା ତୋଷି ବାସୁଦେବ
କପିଳାର ସୁପ୍ରସନ୍ନେ ଜାଣେ ସର୍ବବୁଦ୍ଧି
ଗୋକୁଳେ ହରିଲା ଶଏ ଅଷ୍ଟୋତ୍ତର ବ୍ୟାଧି ।
ଆନନ୍ଦ ମତ୍ତ ସର୍ବଦା ଅଟେ ମୋର ଭାଇ
ଚଉଦ ଭୁବନ ମଧ୍ୟେ ସେହୁ ଗୁଣଗ୍ରାହୀ ।
ଦୁର୍ବାଦଗ ରାଜାଙ୍କୁ ସେ ଜମନ୍ତି ଆଣିଲା
ଦୁଷ୍ଟ ରାଜାଙ୍କୁ ସମର କରଣ ଜିଣିଲା ।
ତାର ଗୁଣ କହିବାକୁ ମୋତେ ବେଳ ନାହିଁ
ଏଥର ହେହୁ ବାଳକ ପୀଡ଼ କଲି ମୁହିଁ ।
ପଶାକାଠି କରେ ଯେନ ଛାଡି ତିନଥର
ପକା ମାମୁଁ ବୋଲି ଦେଲେ ଶକୁନିର କର ।
ଯୁଧିଷ୍ଠିଙ୍କ ମୁଖ ଚାହିଁ ଶକୁନି ପାଡିଲା
ଯୁଧିଷ୍ଠି ଦେବ ଦେଖିଲେ ଦଶମ ପଡ଼ିଲା ।
ସହଦେବଙ୍କୁ ପଶାରେ ହାରିଲେ ଯୁଧିଷ୍ଠି
ସୁମରନ୍ତି ବାସୁଦେବ ମନରେ କଷାଟି ।
ପଶାରେ ସବୁ ସୋଦର ହାରି ଧର୍ମରାଜେ
କୃଷ୍ଣଭାଇ ବଜେ କଲେ ଆସି ଏ ସମସ୍ତେ ।
କାରୁଣାବନ୍ତେ ଦେଖିଲେ ନାହାନ୍ତି ଯୁଧିଷ୍ଠି
ଭାଳ ସହଦେବ ଭୀମ ନକୁଳ କଷଟି ।
ଅର୍ଜୁନର ଅଗ୍ରତରେ ଦ୍ରୌପଦୀ କହିଲେ
ଯୁଧିଷ୍ଠିଦେବ ହସ୍ତିନା ରାଜ୍ୟକୁ ତ ଗଲେ ।
ମନେ ବିରସ ହୋଇଲେ ଶୁଣି ରାଇ ସ୍ୱର
ସଙ୍କଟ ପଡ଼ିଲା ବୋଲି ଅର୍ଜୁନ ବୀର ।
ଚାଲ ହୋ ଏଠାରୁ ଯିବା ଆମ୍ଭେ ହୋଇ ଶୀଘ୍ର
କାଳେ ଦେଖି ନ ପାରିବା ବୋଲି ହେଲେ ବ୍ୟଗ୍ର
ଧାଆନ୍ତି ପାଣ୍ଡବ ବେଗେ ପବନହୁଁ ପତି
ହସ୍ତିନା ରାଜ୍ୟେ ପ୍ରବେଶ ହୋଇଲେ ତତ୍ପର ।
ଝାଳେ ନିପଣ୍ଡ ହୋଇଛି ସବୁଙ୍କର କାୟ
ଶ୍ରମେ ଦଶନ୍ତି ବୁଝହେଁ କାଳଯୁଥ ପ୍ରାୟ ।
ହସ୍ତିନା ସଭା ଆସ୍ଥାନେ ସନ୍ନିଧିକ ଯୋଟି
ବେନି କୋଶ ଥାଉଁ ଶୁଭେ ଡାକ ପଶାକାଠି ।
ଆସ୍ଥାନ ତଳେ ପ୍ରବେଶ ହେଲେ ବୀରଧାଡି
ଆରେ ସଭାକୁ ନ ଉଠ ବୋଲେ କୁରୁପତି ।
କରେ ଗଦାବର ଯେନି ଧାଏଁ ଦୁଃଶାସନ
ଉଠନ୍ତେ ସେ ପେଲିଦେଲା ବଳେ ଭୀମସେନ ।

ଦୁର୍ଜ୍ଜୟ ଦୁର୍ମ୍ମନ ଆଉ ଦୁର୍ବାର ଦୁଃଶୀଳ
ଦୁର୍ଗନ୍ଧକ ଦୁରଦେଷ୍ଟ ଆବର ଦୁର୍ବଳ ।
ଏ ଆଦ ଦୁର୍ଯ୍ୟୋଧନର ସହୋଦର ଭାଇ
ଆରେ ରହ ରହ ବୋଲି ବଳେ ପେଲି ଦେଇ
ସଙ୍ଗେ ମାରୁତ ସୁଧର ବେନି ଜଙ୍ଘ ପୃଷ୍ଠ
କାଳନୟନ ବୁଲଇ କମ୍ପାଇ ମୁକୁଟ ।
ବାହନ ବାଉନ ଘୋର ଗଦା କରେ ଘେନ
ହୁଂକାର ଶବଦ କରି ବୁଲଇ ପାବନ ।
ଗୋଳ ଶୁଣିଣ ଲେଉଟି ଦୃଷ୍ଟିରେ ଯୁଧିଷ୍ଠି
ବାବୁ ରହ ରହ ଭୀମ ସହିବୁ ନ ଉଠି ।
ପଶା କୁତୂହଳେ ବାବୁ ପଶିଲି ବିବାଦେ
ସ୍ୱୟଂ ଅଗଜ ପଡ଼ିଲି ମୁଁ ଏତେ ପ୍ରମାଦେ ।
ରାଜଦଣ୍ଡ ସିଂହାସନ ସମସ୍ତ ହାରିଲି
କୃଷ୍ଣ ସ୍ୱରଙ୍କୁ ବନ୍ଧସ୍ୱ ପଶାରେ ମୁଁ ଜଲି ।
ଥାଅ କନା ବାବୁ ଦଣ୍ଡେ ସଭାତଳେ ରହ
ଏ ଘାନ୍ତ ପୀଡେ ଅବଶ୍ୟ ଜଣିବଇଁ ମୁହିଁ
ଯୁଧିଷ୍ଠିରଙ୍କ ଆଜ୍ଞାରେ ଗଲେ ଅପସର
ନବ ପାବଚ୍ଛର ତଳେ ବସିଲେ ସେ ବୀର ।
ଝାଳେ ଚିପଣ୍ଡ ଲୋତକ ଗଳେ ବେନି ନେତ୍ର
ଅଶ୍ରୁଜଳ ବୃଷ୍ଟି ହୁଏ ଶଧାରେ ବଦ୍ଧତ ।
ଭୀମ ବୋଲେ ପାର୍ଥ ଆମ୍ଭେ ମହତ୍କୃତ୍ୟ କଲୁ
ଯୁଧିଷ୍ଠିଙ୍କି ଗୁରୁ କପାଁ କୃଷ୍ଣ ଭୁଲେ ଗଲୁ ।
ଅର୍ଜ୍ଜୁନ ବୋଇଲେ ଏବେ ହେବ ବଡ଼ ଲଜ
ପ୍ରାଣେ ନାଶ ନ ଟଳେ ତ ଯୁଧିଷ୍ଠିର ରାଜ ।
ସ୍ୱାମୀ ଖାଇଥିଲେ କରପାର ନାନା ବୁଦ୍ଧି
କୂଟେ ଯେ ଘେନଗଲନ୍ତି ଆମ୍ଭ ସମୃଦ୍ଧି ।
ଭୀମ ବୋଇଲେ ଏହା ମୁଁ ନ ପାରଇ ସହି
କ୍ରୋଧ ଅନଳେ ମୋହର ତନୁ ହୋଏ ଦହି
ଆଜ କଉରବଙ୍କୁ ମୁଁ ପଳାଇବ ମାରି
ଶଲ୍ୟ ଶକୁନ ସହିତେ କର୍ଣ୍ଣ ଦୁରାଚାରୀ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ବାହ୍ଲୀକ ଆବର
ସୋମଦତ୍ତ କୃପାଶ୍ୱତ୍ଥାମା କୃତବର୍ମ୍ମା ସାର ।
ଏତେ ମାନଙ୍କେ ବାବୁ ପାର କରି ବର୍ଗି
ଯୋଦ୍ଧା ଆବକର ସବୁ ଲେଖାଇବ ଖିତ ।
ଅର୍ଜ୍ଜୁନ ବୋଇଲେ ନାହିଁ ଠାକୁରଙ୍କ ଆଜ୍ଞା
ସ୍ୱାମୀର ବଚନ କାହୁଁ କରିବା ଅବଜ୍ଞା ।

ବଦ୍ଧତ ବଚନେ ପାର୍ଥ ଭୀମଙ୍କୁ ଭିଆଣି
ପୁଣ ପୁଣ ଭୀମ ଉଠେ ବାହାସ୍ଫୋଟ ମାରି ।
ପଣ୍ଡିତପଣେ କୋପକୁ ସମ୍ଭାଳିଣ ସେହି
ନବ ପାବଚ୍ଛର ତଳେ ବସି ହେଲେ ଯାଇ ।
ଦୁର୍ଯ୍ୟୋଧନ ବୋଇଲେକ ଆହେ ଯୁଧିଷ୍ଠିର
ଭାଇଙ୍କି ହାରି କି ବନ୍ଧପଣ ହୋ ଭୂସ୍ୱର ।
ସେତ ହୋଇଲେଣି ନିଜ ଭୃତ୍ୟମ୍ଭି ଆମ୍ଭର
କୁ ଥାଇ କସ କରିବୁ କହ ହୋ ଆବର ।
ଭାଇଙ୍କି ଗଡ଼ଣ ଭୃତ୍ୟ ହାବିଁସିବୁ ଏକା
ତୋ ଚହୁଁ ମୋହର ଆନଜନ ନାହିଁ ସଖା ।
ଏ ଘାନ୍ତ ପୀଡ଼ କି କୃଷ୍ଣ ହୋଇବୁ ଯୁଧିଷ୍ଠି
ଧର୍ମ୍ମବଳ ଥିଲେ ଅବା ପାରଇ ଲେଉଟି ।
ଏ ପୀଡ ହୋଇଲେ କହ ଆମ୍ଭେ ଶତଭାଇ
ଜିଣିଲେ ପାଇବୁ ତୋର ଭାଇ ଆମ୍ଭକୁହିଁ ।
ଦୁର୍ଯ୍ୟୋଧନର ବଚନେ ସଙ୍ଗତେ ନପଣ୍ଡ
ଚିନ୍ତିଲେ ଧର୍ମ୍ମ ଥିଲେ ଜଡ଼ାକରେ ଜଣ୍ଡ ।
ହମଦ ତପଦ ଏହି କ୍ଷଣ କ୍ଷଣ ମାୟା
ସର୍ବଦା ପ୍ରାଣୀକି କୃଷ୍ଣ କରବେ କି ଦୟା ।
ଶକୁନ ମୁଖକୁ ସ୍ୱହିଁ ବାସ୍ୱେ ଜଳ ଦୃଢ଼
ବୋଇଲେ ମୋହର ଆତ୍ମା କଲି ଏବେ ପୀଡ଼
କର୍ଣ୍ଣ ଦୁଃଶାସନ ଦେଲେ ନାସିକାରେ ହସ୍ତ
ଏ ତୋହର କଥା ଗୋଟି ଅଟଇ ଯୁକତ ।
ଯାବତ କାଳକୁ ଏହି କଥାହିଁ ରହିଲା
ଭାଇଙ୍କି ହାରିଣ ଆତ୍ମା ବନ୍ଧସ୍ୱ ହୋଇଲା ।
ଦୁର୍ଯ୍ୟୋଧନ ବୋଇଲା ହୋ ଶୁଣ ତୁ ମାତୁଳ
ପାଚ ବେଳେ ପଶାକାଠି ବିଳମ୍ବ ନ କର ।
ଏ ବେଳେକ ଜଣ ବୋଲି ପାଣ୍ଡିଲା ଶକୁନ
ନବମ ଦାନ ପଡ଼ିଲା ହାରିଲା ନୃମଣି
ଦେଖି ତାହା ଦୁଃଶାସନ ଉଠି କୋପଚିତ୍ତେ
ଯୁଧିଷ୍ଠିର ବେନିଭୁଜ ଧରିଲା ଈଶତେ ।
ସଭାର ତଳକୁ ଯା ଯା ଧର୍ମ୍ମର ତନୟ
କସ ବସି ବସୁରୁଛୁ ବଧିବମ୍ଭା ପ୍ରାୟ ।
ଭୁଜ ଧରି ଉଚ୍ଚୁଡ଼ଇ ବଳେ ଦୁଃଶାସନ
ଘେନଯା ଘେନଯା ବୋଲି ବୋଲେ ଦୁର୍ଯ୍ୟୋଧନ
ଦୁର୍ଯ୍ୟୋଧନର ବଚନେ ଯୁଧିଷ୍ଠିର ଉଠି
ଅରୁଣ ବେନି ନୟନ ଅଶ୍ରୁଜଳ ଫୁଟି ।

ଅସ୍ଥାକୁ ଉନପାବନ୍ତ ଯନ୍ତ୍ରଯନ୍ତେ ଖେଳେ
ହାତ୍ରୁଭାଇ ଆଣ ବୋଲି ଦୁର୍ଯ୍ୟୋଧନ ବୋଲେ
ଶୁଣି ଶମ୍ଭୁକୁ ଆଣିଲେ ଧରି ଅକ୍ଷପକ୍ଷେ
ଦୁର୍ଯ୍ୟୋଧନ ଅଗ୍ରେ ଭଙ୍ଗ ହେଲେ ଧର୍ମବଂଶେ
ଦୁର୍ଯ୍ୟୋଧନ ବୋଲେ ସବୁ ହାରିଲୁ ରାଜ୍ୟ
ଆନ ବୁଦ୍ଧି ତୋର କିସ ଅଛି କି ଉପାୟ ।
ମଉନବ୍ରତରେ ରହି ହେଲେ ଧର୍ମଶିଷ୍ୟ
କ୍ରୋଧଭରେ ଉତ୍ତର କହି ନ ପାରନ୍ତି ଶାସ୍ତ୍ର ।
ଶକୁନି ବୋଇଲା ଅପରପୁ କାଳେ ପ୍ରାଣୀ
ହରଇ ସହସ୍ରବଳ ବୁଦ୍ଧି ହୀନ ଜାଣି ।
ଦୁର୍ଯ୍ୟୋଧନ ବୋଲେ ସବୁ ହାରିଲ ନୃପତି
ରଖାଏ କହିବା ତହିଁ ନ କରିବୁ ଖ୍ୟାତି ।
ଦ୍ରୌପଦୀକି ପୀଡ଼କରି ପାଶକୁ କି କୁ ତ
କଣ୍ଠେ ହୋଇଲା ମୋର ଗଜଅଶ୍ୱ ରଥ ।
ଧନ ଭଣ୍ଡାର ଆବର ଭୂଷଣ ସନ୍ତତେ
ରାଜ୍ୟଭାର ସିଂହାସନ ତୁମ୍ଭେ ପଞ୍ଚଭ୍ରାତେ ।
ମୋର ଶତଭାଇ ରାଜ୍ୟସେନା ଆଦିକରି
ଏକା ଦ୍ରୌପଦୀ ପୀଡ଼କୁ କରିବା ନା ସରି ।
ଯେବେ ତୋହର ପଡଇ ରାଜ୍ୟେ ରାଣୀଦାନ
ସବୁ ତୋହର ହୋଇବ ହାରିଥିବା ଧନ ।
ମୋହର ରାଜ୍ୟ ଭଣ୍ଡାର ସଇନ୍ୟ ସନ୍ତତେ
ଆମ୍ଭେମାନେ ଭୃତ୍ୟପଣେ ଖଟିଥିବୁ ତୋତେ
ଦୁର୍ଯ୍ୟୋଧନର ବଚନେ ଯୁଧିଷ୍ଠିର ହସି
ପଶାକାଠିକି ଆଦେଶ କଣ୍ଠରେ ଯେ ବସି ।
ଆହର ଦୁରପଦ ଯେ ଆନ ଆନକଲ
ଅଶାଲୁବ୍ଧେ ସଂସାରରେ ଥାଉଁ ଥାଉଁ ମଲ ।
ଯେବଣ ପ୍ରାଣୀ ହାରଣ କରୁଥାନ୍ତି ଆଶ
ଆତ୍ମା କ୍ଷୟ ଯାଇ ପୁଣି ହୁଏ ସର୍ବ ନାଶ ।
ଆତ୍ମାର ପରମ ସୁଖ ସମସ୍ତେ ହସୁରି
ନ ଜାଣ ଏତେ ଅଜ୍ଞାନ ପଡ଼ିଅଛୁ ହରି ।
ଯୁଧିଷ୍ଠିର ହସୁରନ୍ତି ଆପଣା ହୃଦୟେ
ପଞ୍ଚାଳ ଦୁହିତା ମହାଯଜ୍ଞରୁ ଉଦୟେ ।
କୋଟିଏକ ଋଷି ବେଳେ ମହାଋଷି ବ୍ୟାସ
ମହାଅନନ୍ତ ଶରୀର ଯାହାର ପ୍ରକାଶ ।
ପରମ ମାହେଶ୍ୱରୀ ସେ ଅନାଦ୍ୟ ଅପର୍ଣ୍ଣା
ସ୍ୱାତ୍ମିକ ରୂପିଣୀ ସେ ଅଜସ୍ରା ଅପର୍ଣ୍ଣା ।

ତାହାକୁ ଆମ୍ଭେ କି ଖେଳି ହାରିବୁ ସମସ୍ତେ
ସେ କୃଷ୍ଣା ପ୍ରସାଦେ ଅବା ହରେ ଅପତ୍ୟେ ।
ବେଦମନ୍ତ୍ରେ ସାଧଣା ସେ ପରମ ଯୋଗିଣୀ
ସ୍ୱର ଅବତାରେ ସେହି ହୋଇଲେ ଅଯୋନି
ମୁହିଁ ଅବା ଜିଣିବଇଁ ତାର ପୁଣ୍ୟବଳେ
ବୁଡ଼ିଲା ଭେଳା ଲାଗଇ ଅବା ମୋର କୂଳେ ।
ଜାତକ ଅନ୍ତକ ସେହି ପାଳଇ ସେନେହେ
ମନୁଷ୍ୟ ମୂରତି ଧରି ଜଗତକୁ ମୋହେ ।
ଅନଳେ ଯେ ପଖାଳଇ ଶରୀରକୁ ନିତି
ସେ ପାଞ୍ଚାଳୀ ପରସାଦେ ଫିଟଇ ବା ଦୁର୍ଗତି ।
ମୃଦୁରସ ବପୁଷୀ ସେ ଖରଧ୍ୱଂସକାରୀ
ତାର ପ୍ରସାଦେ ଆପଦୁଁ ହୁଏ ଅବା ପାରି ।
ଯୁଧିଷ୍ଠିରଦେବ କହିଲେ ହେ ଶକୁନି ମାମୁଁ
ଦ୍ରୌପଦୀକୁ ପୀଡ଼ କଲି ମୋର ପାପକର୍ମ ।
କ୍ରୋଧେ ଗଦଗଦ ଧର୍ମରାଜ ଯେ ଯୁଧିଷ୍ଠି
ହେ ଦଇବ ପୁରୁଷ ମୋ ଖଣ୍ଡିବା ଅରିଷ୍ଟି ।
ଧର୍ମ ଧର୍ମ ସୁମରନ୍ତି ଦେବ ପଞ୍ଚଭୂତେ
ପ ଅଙ୍ଗଇ ପୀଡ଼ ହେଲେ ଦ୍ରୌପଦୀ ନିମନ୍ତେ ।
ଯୁଧିଷ୍ଠିର କୋପ ଦେଖି ଛହନ୍ତା ପୁରୁଷେ
ଭୟରେ ମିଳିଲେ ଯାଇ ପିତାମହ ପାଶେ ।
ହେ ଦେବ ପଞ୍ଚଭୁବନ ରାଜନ ଯୁଧିଷ୍ଠି
ସର୍ବ ସମ୍ପଦ ହାରିଲା ହୁଏ ଧାର୍ତ୍ତିରଷ୍ଟ୍ରି ।
ଖାଇ ସନ୍ତତେ ହନ୍ଦୟ ହେଲା ଆପେ ପୁଣି
ପୀଡ କରୁଅଛି ଏବେ ଦ୍ରୁପଦ ଦୁଲଣୀ ।
ସେ ପଞ୍ଚ ପାଣ୍ଡବ ଜାଣି କୃଷ୍ଣଙ୍କ ସ୍ୱରୂପ
ନ ପୁଣ ଅନ୍ତେ ଆମ୍ଭଙ୍କୁ କରନ୍ତି ସେ କୋପ ।
ତୁ ଧାତା ପୁରୁଷ ନବସୃଷ୍ଟି ର କରତା
ଧାତୁବାଦ୍ୟ ପୁରୁଷ ତୋ ନାମ ଅଟେ ଧାତା
ଧାତା ଆଜ୍ଞା ଦେଲେ ଅସୁରାର ପୁରୁଷଙ୍କୁ
କଳକାଳ ହରାଉଛି ଯୁଧିଷ୍ଠି ଦେବଙ୍କୁ ।
ପୃଥ୍ୱୀର ହର ଉଶ୍ୱାସ ହୋଇବା ନିମନ୍ତେ
ଜିଣୁ ଦୁର୍ଯ୍ୟୋଧନ ଯାଜ୍ଞସେନୀର ସନ୍ତତେ ।
ସଖି ଛିଙ୍ଗାସେ ତୁଟିବ ସବୁରି ଆୟୁଷ
ଭାରଯା ପାଇଁ ସୋଦର କରିବେ ନା ସେଷ ।
ଯାଅ ତୁମ୍ଭେ ପୁରୁଷ ହୋ ବେଗେ ଅସୁରକର
କଉରବଙ୍କୁ ଜିଣାଇ ଯୁଧିଷ୍ଠିଙ୍କୁ ହରି ।

ଯେମନ୍ତେ ସେ ଦୁର୍ଯ୍ୟୋଧନେ ଯୁଧିଷ୍ଠି ଜିଙ୍ଗାସୁ
ସଙ୍ଗେ ଭୀମସେନ କହୁଥିବ ବଳ ନାଶୁ ।
ବ୍ରହ୍ମା ନିର୍ମାଣ ପୂର୍ବରୁ ଯାହା ଅଛୁ ଜଣ
କେ ତାହାର କଥାକୁ ଯେ ଆନ କରିପାର ।
ଅସ୍ତୁକାର ପୁରୁଷେ ଯେ ତକ୍ଷଣେ ଅଇଲେ
ଶକୁନିର ଅସ୍ତୁବାକ୍ୟ ସମସ୍ତେ ଜାଣିଲେ ।
ଜିତ ଜିତ ବୋଲି ପଶା ପାଡ଼ଇଲା ମନ୍ତ୍ରୀ
ପଡ଼ିଲା ଦାନ ହାରିଲେ ଯୁଧିଷ୍ଠି ନୃପତି ।
ହସନ୍ତି ସେ କଉରବେ କରତାଳି ଦେଇ
ଅଦାତା ଚରିତ ପ୍ରାପ୍ତ ହୋଇଲା ନା ଏହି ।
ଗୁଡ଼ାଇକ ଶିଖା ଚୋଟେ ଅଣ ଧର୍ମପଣେ
ଦୁଃଶାସନ ନେଇ ବସା ତଳେ ଏହିକ୍ଷଣେ ।
ରାଜାର ବଚନେ ଦୁଃଶାସନ ଯେ କୁମାର
ଉଠ ହୋ ଯୁଧିଷ୍ଠି ବୋଲି ଆକର୍ଷଇ କର ।
ଯୁଧିଷ୍ଠି ଦେବଙ୍କ କ୍ରୋଧ ଅବସ୍ଥାକୁ ଦେଖି
କାଳଚନ୍ଦ ପ୍ରାପ୍ତ ଯେହ୍ନ ବୁଲାଇଣ ଆଖି ।
ଭୀଷ୍ମ ବୋଇଲେ ତୁ ଏବେ ଶୁଣ କୁରୁପତି
ସ୍ବଭ ଭାଇଙ୍କୁ ତୁ ଦେଲୁ ଦୁଃସହ ଦୁର୍ଗତି ।
ଯୁଧିଷ୍ଠିର ଥାଉ କନା ସଭାର ଉପର
ଅଛନ୍ତି ଜିଙ୍ଗାସ ତୁ ନ କର କୁରୁବୀର ।
ଲକ୍ଷେ ନୃପତି ଚରଣ ତଳେ ଯାର ବନ୍ଦେ
ଜଗନ୍ନାଥ ପ୍ରଣିପାତ କରେ ଯାର ପାଦେ ।
ତ୍ରେତାଯୁଗର ସେ ରାଜା ଲଙ୍କା ବିଭୀଷଣ
ଯାହାର ପଦ୍ମଚରଣ କଲା ପ୍ରଦକ୍ଷିଣ ।
କୋଟି କଳପ ଅନନ୍ତ ନାମେ ନାଗରାଜା
ଯେବଣ ଯୁଧିଷ୍ଠି ଦେବ ପାଦେ କଲା ପୂଜା ।
ପ୍ରତ୍ୟକ୍ଷେ ଧର୍ମଦେବତା ତାହାକୁ ଜିଙ୍ଗାସୁ
ଆସ୍ତୁ ଥାଉଁ ଥାଉଁ କିପାଁ ମରଣେ ଭରସୁ ।
ଆସ୍ଥାନର ତଳେ ବସିଥିଲେ ସ୍ବରରାଇ
ଏକା ଯୁଧିଷ୍ଠିର କିପାଁ ଆସ୍ଥାନୁ ନ ଯାଇ ।
କର୍ଣ୍ଣ ବୋଇଲା ସଭାରେ ହାରିଲେ ସମସ୍ତ
ସଭାର ତଳେ ବସିଲେ ଯାଇ ସ୍ବଷ୍ଟଭ୍ରାତ ।
ସୋଦରଙ୍କ ଜିଙ୍ଗାସରେ ଆପେ ଜାସ ସୁଖୀ
ଏଥୁ ଯେ ବୋଲି ଏ କଷ୍ଟ ପାଉଇ ନା ଦେଖି
ଦୁଃଶାସନ ନାସିକାରେ ହସ୍ତ ଦେଇ ହସେ
ଏତେ ନାହିଁ ଜ ସଭାରେ ପୁଣି ଆସି ବସେ ।

ବନ୍ଧୁଗ ଜିଙ୍ଗାସ ଖାଇ ବୀର ଭୀମସେନ
ହସ୍ତର ତଳକୁ ଉଠିଗଲେ ଧର୍ମମାନ ।
ଭାଇଙ୍କି ଯୋଡ଼ ବସିଲେ ତାହିଁ ମଣ୍ଡଳରେ
ଆନନ୍ଦେ ବସି ବସନ୍ତ କୌରବ ସକଳେ ।
ଭୀମସେନର ଶରୀର କମ୍ପେ ମହାତମ
ଗଦାବରକୁ ବୁଲାଇ ଗର୍ଜ୍ଜେ ବୀର ଭୀମ ।
ଯୁଧିଷ୍ଠି ବଚନ ଭୀମ ଶୁଣିଲେ ଲେଉଟି
ଏତେବେଳେ କିପାଁ ଆଜ୍ଞା ନ ଦିଅ ଯୁଧିଷ୍ଠି ।
ଶକୁନିର ଜିଙ୍ଗାସ ଦାଣୀ ସବୁ ଟିକ ପାରି
ବଳ ଧାର୍ଯ୍ୟ ଥାଉଁ କିପାଁ ହେବୁ ଅପସର ।
ଅନ୍ତଧର୍ମେ ବୁଡ଼ାଇଲ ଆପଣାର ରାଜ୍ୟ
ଜିତ ଖେଳ ହରାଇଲ ଏତେକ ଐଶ୍ୱର୍ଯ୍ୟ ।
ଆବର ଏହି ଜୀବନେ ପ୍ରୟୋଜନ କିସ
ଅବଶ୍ୟ ଖାଇ ମରିବୁଁ କାଳକୂଟ ବିଷ ।
ଦଗପ ସମସ୍ୟା ଦିଏ ବୀର ଫାଲଗୁଣ
ଖଣ୍ଡି ଉଠନ୍ତି ନକୁଳ ସହଦେବ ବେଗ ।
ସମସ୍ତଙ୍କ ରୋଷ ଦେଖି ବୋଲନ୍ତି ଯୁଧିଷ୍ଠି
କୋପ ନ କର ଭାବୁରେ ନ କର ଅରିଷ୍ଟି ।
ମୁହିଁ ଯାହା ଅର୍ଜିଲି ଭୁଞ୍ଜିବ ନା କର୍ମେ
ବଳିବ କଷଣ ମୋତେ ଦେଇଅଛୁ ଧର୍ମେ ।
ଯୁଧିଷ୍ଠି ବଚନେ ସର୍ବେ ଗୁଡ଼ାକେଶ ଦର୍ପ
ଗରୁଡ଼ ଦେଖିଲେ ଯେହ୍ନେ ଯୁଟେ କାଳସର୍ପ ।
କର୍ମ ଆବରଣ ଭଲେ ବସି ସୁରରାଇ
ସାଧୁ ମହିମା ତୋହର ସାଧୁ ନୃପସାଇଁ ।
ଆସ୍ଥାନେ ଥାଇ ବୋଲଇ କୁରୁକୁଳଗଣ
ହାରିଲ ରାଜ୍ୟଭଣ୍ଡାର କଲ ଭୃତ୍ୟପଣ ।
ତୁମ୍ଭେମାନେ ହେଲ ଏବେ ଆମ୍ଭ ଦୋଷଭାଷ
ତୁମ୍ଭର ଏହି ଜୀବନ ହେଲା ଭୃତ୍ୟସର ।
ବିଦୁର ବୋଇଲେ କେତେ ପାଣ୍ଡବ ଜିଙ୍ଗାସୁ
ବଂଶନାଶ କରିବାକୁ ଆପେ ଆପେ ଇଚ୍ଛୁ ।
ଦୁର୍ଯ୍ୟୋଧନ ବୋଇଲା କି ନ ଦେଖିଲ ତୁମ୍ଭେ
ମାୟା ସଭାରେ ଜିଙ୍ଗାସ ପାଇଲୁଟି ଆମ୍ଭେ ।
ଜଳ ଆଉ ସ୍ଫଟିକର ଏକଇ ମୂରତି
ବାରି ନ ପାରିଲି ମୁହିଁ ଯେ କୂଟ ପ୍ରକୃତି ।
ଆଉକି ବସିଲି ମୁହିଁ ଖମ୍ବ ମନେ କରି
ଜଳର ମଧ୍ୟେ ପଡ଼ିଲି ଯାଇ ମୁହଁ ମାଡ଼ି ।

କରତାଳ ମାରି ତହିଁ ହସିଲେ ପାଣ୍ଡବେ
କେତେବେଳ କଥା ମନେ ପଡ଼ିଲା ପ୍ରସ୍ତାବେ ।
ସମ୍ପଦ ବିପଦ ସୁଖ ଦିବସ ପର୍ଯ୍ୟାୟେ
ଏବେ ବିପଦ ପଡ଼ିଲା ସନ୍ଦହା ନା ଯାଏ ।
ମାୟାଧର ପୁରୁଷର ମାୟା ଅଗୋଚର
ଜନ୍ମେ ଜନ୍ମେ ଏ ଶାରଳା ଦାସ ତୋ କିଙ୍କର ।

---

## ଦୁଃଶାସନ କର୍ତ୍ତୃକ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଆନୟନ

ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
କହୁଁ କହୁଁ ମହାକୋପ କଲେ କୁରୁପତି ।
ଦୁଃଶାଳୁ ସ୍ୱହିଁ ବୋଇଲା ଯାଅରେ ବହନ
ପାଣ୍ଡବଙ୍କ ନିକଟକୁ ଦ୍ରୌପଦୀଙ୍କୁ ଆଣ ।
ଏହାଙ୍କର ଭୁଲେ ବସା ତାହାଙ୍କୁହିଁ ଆଣି
ସଭକୁ ଯେ ଦୁଃଶାସନ ଧାଇଁଗଲା ଶୁଣି ।
ଚଉଷଠି ଚଉଷଠି ଭାର ଗଦା କରେ
ଧାମଇଁ ସେ ଦୁଃଶାସନ ପବନନ୍ତୁ ଖରେ ।
ଖାଙ୍କର କେଶ ବିକଟ ଊର୍ଦ୍ଧ୍ୱକ କପାଳ
ଭୁଲେ ତମ୍ବା ପଦ୍ମ ପ୍ରାୟେ ନୟନ ଯୁଗଳ ।
ଧାମଇଁ କୁମରମଣି ଦୁଃଶାସନ ଜେନା
ତାଙ୍କୁ ଡୋଡ଼ର ବାହୁଟି ମୁକୁଟ ଯେ ସେନା ।
ଅନେକ ରତ୍ନ ଭୂଷଣ ମଣ୍ଡି ଅଛି କାୟେ
ଦିଶଇ କୁମରମଣି କାର୍ତ୍ତିକ ପରାୟେ ।
ରଡ଼ିର ନାଦେ କମ୍ପଇ ସକଳ ବ୍ରହ୍ମାଣ୍ଡ
ପ୍ରତିଜ୍ଞା କରଇ ବାରେ ବାରେ ସେ ପ୍ରଚଣ୍ଡ
ପ୍ରତିଜ୍ଞା କରଣ ସାଇବର ଦୁଃଶାସନ
ପ୍ରବେଶ ହୋଇଲା ଯାଇ ବାହୁଣା ଭୁବନ ।
ଦୁଃଶାଳୁ ଦେଖି ପଳାଇ ଗଲେକ ପୋଇଲୀ
କହିଲେ ଦ୍ରୌପଦୀ ଆଗେ ଯାଇ ମୃଦୁସ୍ୱଳୀ ।
ମାଗୋ ଦୁଃଶାସନ କାହିଁ ଧାଏଁ ଅତି ରାଗେ
ସିଂହଦ୍ୱାରେ ଅଛି ଘରେ ପଶିବ ସେ ବେଗେ
ହାର ରକ୍ଷା କରିଗଲେ ଦ୍ୱାରେ ଦ୍ୱାରପାଳେ
ବାଟ ଓଗାଳିଲେ ବଳେ ପଶିବାର ବେଳେ ।
ଆଡ଼େଇ ଯାଅ ବୋଲଣ ଖଡ଼ଗକୁ କଷି
ପଟେ ସାଉକର ହାର ରକ୍ଷକର ପେଷି ।

ତାହା ଦେଖି ଲକ୍ଷ ଯୋଦ୍ଧା ଓଗାଳିଲେ ଯାଇ
ଆରେ ଆରେ କଉରବା ପଶୁ ଆଜ କାହିଁ ।
ଗଦା ମୁଦ୍‌ଗର ପରଶୁ କୁନ୍ତ ତୀକ୍ଷ୍ଣ ମୁନା
ଧନୁ ତୋମର ଶକତି ଅସି ବଜ୍ରସେନା ।
ଅନେକ ନାରାଚ ଧରି ଧନୁରେ ପୂରାଇ
ଦୁଃଶାସନ ଉପରକୁ ସାରେ ଗଲେ ଧାଇଁ ।
ପଡ଼ନ୍ତି ବାଣେ ଗଗନୁ ଘନଧାରା ଜାଣି
ଯେସନେ କଉଡ଼ାମାସ ବରଷାର ପାଣି
ଏରୂପେ ବାଣ ପଡ଼ିବା ଦେଖି ଦୁଃଶାସନ
ମତ୍ତଗଜ ପ୍ରାୟେ ସାର କରିଣ ଗମନ ।
ସାର ଡାକରେ କମ୍ପାଇ ସାର ଜନପୁର
ଧାଇଁ ପ୍ରହାର କରଇ ହୋଇ କେ ପଉର ।
ମତ୍ତଗଜ ଦେଖି ଯେହ୍ନେ ଧାଏଁ ମତ୍ତସିଂହ
ତେସନେ ବିକ୍ରମି ଦୁଃଶା କରେ ରଣରଙ୍ଗ ।
ଦୁଃସହ ସେ ଦୁଃଶାସନ ପ୍ରତିଜ୍ଞା ସାରଧି
ଅରିବଳ ଗଞ୍ଜନ ସେ ଗର୍ଜ୍ଜନ ତା ସିନ୍ଧୁ ।
ରେରେକାର ଶବଦରେ ଗର୍ଜ୍ଜି ସାର ଉଠି
ସୈନ୍ୟଙ୍କ ଉପରେ କୋପେ ଧାଇଁଯାଇ ପିଟି ।
ଗଜଦଳ ଆରୋହଣ ଥିଲେ ଯେ ମାହୁନ୍ତେ
ଚଳିଲେ ସେ ମହାନାଗେ ଦୁଃଶା ଗଦାଘାତେ ।
ପୁଣ ପୁଣ ପ୍ରହାର ଯେ କରଇ କୁମର
ହସ୍ତୀଙ୍କର କୁମ୍ଭସ୍ଥଳ ଭାଙ୍ଗି ହୁଏ ଚୂର ।
ଅଶ୍ୱ ପଦାତି ବହୁତ ପଡ଼ୁଛନ୍ତି ତଳ
ରୁଧିରରେ ଦୁଃଶାସନ କରେ ରଙ୍ଗକେଳ ।
ଗରୁଡ଼ ଦେଖି ପଳାନ୍ତି ଯେହ୍ନେ ମହାନାଗେ
ହାମେ କେହ୍ନ ନ ରହିଲେ ଦୁଃଶାସନ ଆଗେ ।
ଦୁଆର ଜଗନ୍ତି ସାର ପକାଇଲା ଭାଞ୍ଜି
ଭିତରେ ସେ ଦୁଃଶାସନ ପଶିଲା ଗରଜି ।
ହିଶମ୍ପ ଦୁଆରେ ଥିଲେ ମୁକୁଟ ବନ୍ଧାଏ
ବସୁସେନ ସାରସେନ ଶୂରସେନ ଧାଏଁ ।
ଶୂରଧ୍ୱଂସନ ଗୋପାଳସିଂହ ମହାରଣା
ଅନୁକେଶରୀ କେଶରୀ ବଦନ ସୁମନା ।
ଏହାଙ୍କ ମୂଳେ ଅନେକ ଥିଲେ ସେନାପତି
ଅଶ୍ୱ ଆରୋହି ମିଳିଲେ ଆଗରେ ଝଟତି ।
ଦୁଇ ଲକ୍ଷ ଗଜ ମୁକୁଟବନ୍ଧା ଯୋଦ୍ଧା ସାଥେ
ଝଳକାଉ ଲଉଡ଼ିଆର ଭଲ୍ଲ ଯେ ହାତେ ।

ଆରେ ଆରେ ଦୁଃଶାସନ ଯିବୁ ଆଜ କାହିଁ
ଗୃହେ ପଶିଛୁ ଠାକୁର ଜଣେ କେହି ନାହିଁ ।
ଦୁଃଶ ସନ ବୋଇଲା ରେ ତୁମ୍ଭେ ତ ଆମ୍ଭର
ସମସ୍ତ ନାଶ କରନ୍ତୁ ଅଛ ଆପଣାର ।
ଯୁଧିଷ୍ଠି ପଶିଲା ପଶାଖେଳର ବିନୋଦେ
ରାଜ୍ୟ ସମ୍ପଦ ହାରିଣ ପଡ଼ିଲା ବିପଦେ ।
ଭାଇ ସହିତରେ କଲା ଆମ୍ଭକୁ ବନସ୍ଥ
ଦ୍ରୌପଦୀକି ହାରିଲାକ ପଣରେ ସେ ସ୍ୱସ୍ଥ ।
ରଥ ଗଜ ଅଶ୍ୱ ସୈନ୍ୟ ଧନ ଆଦିକରି
ସମସ୍ତ ଅ.ମ୍ଭର ହେଲା ନୁହ ହନ୍ତକାରୀ ।
ଆଶ୍ୱାସନା ବାକ୍ୟ କହି ଦୁଃଶାସନ ଯୋଧୀ
ସ୍ୱରୂପ ବାରତା କହି ସବୁଙ୍କୁ ନିରୋଧି ।
ଯଦ୍ୟପି ହନ୍ତ୍ର କରିବ ତୁମ୍ଭେ ଆମ୍ଭ ତୁଲେ
କେହି ନ ବର୍ତ୍ତିବ ଦୁର୍ଯ୍ୟୋଧନ କୋପକଲେ ।
ଦୁଃଶାସନବୋଲେ ସୈନ୍ୟ ଯାଇଲେ ପ୍ରବୋଧ
ଭଲେ.ବାଟ ଛାଡ଼ିଦେଲେ ନ କଲେ ନିରୋଧ ।
ସତ୍ତ୍ୱର ପରସ୍ପେ ଯୋଟେ ଦୁଃଶାସନ ବୀର
ଗର୍ଜ୍ଜନ କରି ପଶିଲା ଯାଇ ଅନ୍ତଃପୁର ।
ଦୁଃଶାସନର ବଚନ ଶୁଣିଣ ପାଞ୍ଚାଳୀ
ଅନ୍ତଃପୁରେ ଲୁଚଇ ସେ ଦ୍ରୁପଦ ଦୁଲାଳୀ
ଅଲେ ଆଲୋ ବୋଲି ଉଚ୍ଚେ ଡାକେ ବୀରମଣି
କାହିଁ ଲୁଚିଛୁ ପାଣ୍ଡବକୁଳ ଠାକୁରାଣୀ ।
ଦୁଃଶାସନ ମୁଖୁ ଶୁଣି ବଚନ ଅମିତ
ପୁରଦ୍ୱାରେ ଆସି ଉଭାହେଲେ ଦେବୀ କୁନ୍ତୀ ।
ବୋଇଲେ ରେ ବାବୁ ଏଥି ଅଇଲୁ କପାଇଁ
ସିଂହର ଗହ୍ୱରେ କରେ ଶୃଗାଳ ପଶଇ ।
ବସ ବଡ଼େ ବୁଦ୍ଧି ହୀନା କି କି ସମାଚାର
ଶୁଣି ଦୁଃଶାସନ ବୋଲେ ଯୋଡ଼ି ବେନିକର ।
ମୋହର ନାହିଁଟି ମାତ କାହିଁତରେ ଦୋଷ
ତବ ପୋଏ ମନ୍ଦପଣେ ହାରିଲେ ସର୍ବସ୍ୱ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ସଙ୍ଗେ ପଶାଖେଳେ
ରାଜ୍ୟଧନ ସିଂହାସନ ହାରିଲେ ସେ ହେଳେ ।
ବୁଦ୍ଧିହତ ଆଜ୍ଞା ଯେନ ମୁହିଁ ବିନା ପଣି
ଦ୍ରୌପଦୀକୁ ନେବ ତାର କେଶକୁ ଆକର୍ଷି ।
ତୁ ଗୋ ମାତ ହାର ଛାଡ଼ ଯିବଇଁ ଭିତର
କଷ୍ଟ ପାଇବ ମୁଁ ଯେଣେ ହୋଇଲେ ଉଚ୍ଚୁର ।
କୁନ୍ତୀ ବୋଲନ୍ତି ରେ ବାବୁ ଶୁଣ ଦୁଃଶାସନ
କେଉଁ ପୀଢ଼େ କି କି ଦ୍ରବ୍ୟ ହାରିଲେ ନନ୍ଦନ ।
ଦୁଃଶା ବୋଲେ ପ୍ରଥମରେ ହାରିଲେ ଭୂଷଣ
ଦ୍ୱିତୀୟରେ ରାଜ୍ୟଧନ ଦଣ୍ଡ ସିଂହାସନ ।
ତୃତୀୟରେ ବୃକୋଦର ଆପଣାକୁ ହାରି
ଚତୁର୍ଥରେ ପୀଢ଼ିକଲେ ଦ୍ରୁପଦ କୁମାରୀ ।
କୁନ୍ତୀ ବୋଇଲେ ରେ ବାବୁ ଶୁଣ ମୋ ବଚନ
ଅବସ୍ଥାରେ ଦ୍ରୌପଦୀକି ନେବୁ ତୁ କେସନ ।
ପ୍ରଥମ ବଚାହି ନାରୀ ଦ୍ରୁପଦ ଦୁଲଣୀ
ଆପଣାକୁ ହାରି ପଛେ ପୀଢ଼ିକଲେ ପୁଣି ।
ତାହାଠାରେ ନ ରହିଲା ତାଙ୍କ ଅଧିକାର
ପ୍ରଥମରେ ହାରି ଥିଲେ ନିଅନ୍ତୁ କୁମର ।
ଏ ଛାର କଥାକୁ ପୁତ୍ର କରୁଛୁ କଠାଳ
ଭାଇ ଭାଇ ମିଛେ ଖେଳ କରିଅଛ ଗୋଳ ।
ଦ୍ରୌପଦୀର ଦୋଷ କିଛି ନାହିଁ ତ ଏଥିରେ
ଦୁଃଶାସନ ବୋଲେ ହାର ଛାଡ଼ିଯାଅ ଦୂରେ ।
ଅନେକ ତିଆରେ ଦେବୀ ବିନୟ ବଚନେ
ଦୁଃଶାସନ ପେଲିଦେଲା ତାଙ୍କୁ କୋପମନେ ।
ଭୂତଳଶାୟିନୀ କୁନ୍ତିଭୋଜର ଦୁଲାଳୀ
ତେଣିଁ ଦୁଃଶାସନ ଗଲା ଭିତରକୁ ପେଲି ।
କବାଟ କଣରେ ଦେବୀ ପଡ଼ି ଉଚ୍ଚସ୍ୱରେ
ବୋଇଲେ କି ହରି ନାହଁ ଦ୍ୱାରକା ନଗରେ ।
କେତେ କେତେ ବିପଦରୁ ଉଦ୍ଧରିଲୁ ହରି
ଏବେ ମୋ ପୁତ୍ରଙ୍କୁ ବସ୍ଥା ଛାଡ଼ିଲୁ କିପରି ।
ଜାଣିଲି ମଲେଟି ହରି ମଲେ ପୁତ୍ର ମୋର
ବଞ୍ଚିଥିଲେ ପଶନ୍ତା କି ଛାର ଦୁରାଚାର ।
ଦ୍ରୁପଦ ଦୁଲଣୀ ବେଗେ ହୁଅ ସାବଧାନ
ସୁଭଦ୍ରାକୁ ଘେନି ପଶ ଭିତର ଭୁବନ ।
ବଳାତ୍କାରେ ଦୁଃଶାସନ ପଶେ ତୁମ୍ଭ ପୁରେ
ଗୋପନରେ ରହ ତୁ ଗୋ ଅଦୃଶ୍ୟ.ଭାବରେ
ଶୁଣିଣ ଦ୍ରୌପଦୀ ଭୟେ ବିହ୍ୱଳିତ ହୋଇ
ପଳାଇ ପାକଶାଳରେ ଲୁଚିଲେ ସେ ଯାଇ ।
ତରତରେ କେଶବାସ ଫିଟିପଡ଼େ ଲୋଟି
ବ୍ୟାଧ ଭୟେ ଏଣୀ ଯେହ୍ନେ କରୁଥାଇ ଦୃଷ୍ଟି ।
ବ୍ୟାକୁଳେ ଦେବୀ ନୟନ ନ ପାରେ ପଛୁଡ଼ି
କାତରେ ବସିଲେ ଖର ନିଃଶ୍ୱାସକୁ ଛାଡ଼ି ।

ଏକାଳେ ଭିତରେ ପଶି ଦୁଃଶାସନ ବୀର
ଖୋଜଇ ଡାଳିମ୍ବାପୁର ନେତ୍ରାବାସ ପୁର ।
ହୀନପୁର ରତ୍ନପୁର ମଣିପୁର ଖୋଜେ
ଅବକାଶପୁରେ ଚନ୍ଦ୍ରଶାଳାପୁରେ ବଜେ ।
ଯେଉଁପୁର ଯୁଧିଷ୍ଠିଙ୍କ ଶୟନ ମନ୍ଦିର
ସର ନୋହିବ ତାହାକୁ ବାରସ୍ୱର୍ଗ ପୁର ।
ସ୍ୱର୍ଣ୍ଣକୋଷ ଦୀର୍ଘ ସ୍ତମ୍ଭ ଅଠ ସେ ଭୁବନ
ହୀର ମାଳା ଗଜମୋତି ମାଣିକ୍ୟ ଭୂଷଣ ।
ସ୍ଥାନେ ସ୍ଥାନେ ଲଗିଅଛି ମୁକୁତାର ଝରା
ପ୍ରବାଳ ସ୍ତମ୍ଭରେ ରତ୍ନଦୀପ ଦଶେ ଦିଗ ।
ନେତର ଚାନ୍ଦୁଆ କାହିଁ ପାଟର ଚାନ୍ଦୁଆ
ନାନାପ୍ରକାର ଚାମର ବଂଶ ନଆ ନୂଆ ।
ଖୋଜ ଖୋଜ ଦୁଃଶାସନ କାହିଁ ନ ପାଇଲା
ଶେଷାଇ ଶାଳରେ ଯାଇ ପ୍ରବେଶ ହୋଇଲା ।
ଚାରିଦିଗ ଚାହେଁ ବୀର ଉଗ୍ର ତେଜ ମନ
ଉଦର କରଣ ପ୍ରାପ୍ତ ପାଞ୍ଚାଳୀର ତନୁ ।
ଦେଖି ଦୁଃଶାସନ ମନେ କରଇ ବିଚାର
ଆକାଶ ଛାଡ଼ି କି ଏଥେ ଉଦେ ଦିନକର ।
ଗ୍ରହଭୟେ କଳାକର ଲୁଚିଛି କି ଏଥେ
ନଇଁପଡ଼ି ଦୁଃଶାସନ ନିରୂପଇ ତାଉ ।
ଦ୍ରୁପଦ ଦୁଲଣୀ ଏହି ଚିହ୍ନିଲାକ ବୀର
ଦେଖିଣ ଦ୍ରୌପଦୀ ଦେହ ଭୟରେ କାତର ।
ଆକୁଳେ ବୋଲନ୍ତି ବୀରମଣି ଛୁ ନ ଛୁଅଁ
ଘାକାପ୍ତରଣ ହୋଇଛି ଏ ମୋହର କାୟ ।
ଦୁଃଶାସନ ବୋଲେ ତୁହି ହୋଇସି ଅସତୀ
ଭଣ୍ଡାଉଛୁ ମୋତେ କହି ମୁହିଁ ରଜୋବତୀ ।
ଛୁଇଁଲେ ତୋ ଅଙ୍ଗ ମୋତେ ଘଟିବ କି ଦୋଷ
ପ୍ରଥମଦିନ ଛୁଇଁଲେ ନାଶକୁ ପୁରୁଷ ।
ଲିଙ୍ଗଭଗ୍ନ ଦୋଷ ଲାଗେ କହିଲ ହେ ବୀର
ଦ୍ୱିତୀୟ ଦିନେ ଗୋହତ୍ୟା ଦୋଷ ପାଏ ନର ।
ତୃତୀୟ ଦିନରେ ଲାଗେ ବ୍ରହ୍ମହତ୍ୟା ଦୋଷ
ଚତୁର୍ଥେ ବାଳକହତ୍ୟା ପାଏଟି ପୁରୁଷ ।
ପଞ୍ଚମ ଷଷ୍ଠ ଦିନରେ ଛୁଟଇ ଯେ ଶିଷା
ସପତମ ଦିବସରେ ଶୁଦ୍ଧ ହୁଏ ନାରୀ ।
ସେ ଦିନ ହଳଦୀ ଘେନ ଆଉଁ ଧଳବସ୍ତ୍ର
ଓଦା ବସନରେ ଗୃହେ ଆସେ ସ୍ନାନକରି ।

ଗୁରୁଜନଙ୍କୁ ପ୍ରଣମି କାନ୍ତେ କରି ସଙ୍ଗ
ଅପୂର୍ବ ନନ୍ଦନ ହୁଏ ସାକ୍ଷାତେ ଅନଙ୍ଗ ।
ଲକ୍ଷେ ପ୍ରାଣୀର ପୋଷଣେ ହୁଅଇ ଭାଜନ
ସ୍ତ୍ରୀଙ୍କୁ ବିଶ୍ୱାସ ନାହିଁ ବୋଲେ ଦୁଃଶାସନ ।
କଣେ କଣେ ଦେଖ ଲୁଚି କାନ୍ଦୁ ଉଚ୍ଚସ୍ୱରେ
ଶବଦ ଶୁଣି ମିଳିଲା ତାହାଙ୍କ କତରେ ।
ଚନ୍ଦ୍ର ଦେବତାଙ୍କୁ ଦେଖି ଘୋଟେ ଯେହ୍ନେ ରାହୁ
ସେହି ସ୍ୱରୂପ ଦିଶଇ ଦୁଃଶା ଊର୍ଦ୍ଧ୍ୱବାହୁ ।
ଆକର୍ଷଇ ଦୁଃଶାସନ ମୂରୁଖ ଚଣ୍ଡାଳ
ବେନି କରେ ଧଇଲା ସେ ଦ୍ରୌପଦୀର ବାଳ ।
ହେ ଦେବତା ପୁରୁଷ କି ବୋଲିବା ତୁମ୍ଭଙ୍କୁ
ଏ ଗତି କହିଲ ତୁମ୍ଭେ ଆଦ୍ୟ ଅପର୍ଣ୍ଣାଙ୍କୁ ।
ଗୁରୁଜନ୍ମ ଅଯୋନିଜା ଯେଉଁ ଯାଜ୍ଞସେନୀ
କୋଟି ଋଷି ଘେନ ଯାଗ କଲେ ବ୍ୟାସମୁନି ।
ବିକାଶିଲା କାଳାନଳ ପିଙ୍ଗଳ ଯେ ଜ୍ୱାଳା
ସେ ଅଗ୍ନି ବଦାର ଜାତ ଯେବଣ ଅବଳା ।
ମହାଅଭଙ୍ଗ ବ୍ରାହ୍ମଣ ଦ୍ରୁପଦ ଯା ପିତା
ଅନଳରୁ ଅବତାର ଯୁଧିଷ୍ଠି ବନିତା ।
ଭୀମ ଅର୍ଜୁନ ନକୁଳ ମନ୍ତ୍ରୀ ସହଦେବ
ପବନ ଇନ୍ଦ୍ର ଅଶ୍ୱିନୀକୁମାର ସମ୍ଭବ ।
ଦିଗପାଳଙ୍କର ବଧୂ ପଞ୍ଚଇନ୍ଦ୍ର ଭାର୍ଯ୍ୟା
କୋଟି କଳାସିନୀ ଯାର ଖଟଣୀ ପରଜା ।
ଏସନକ ସୁଲକ୍ଷଣୀ ଦେବଙ୍କ ବନିତା
ତାହାଙ୍କୁ ଏମନ୍ତ କଷ୍ଟ ବହିଲୁ ବିଧାତା ।
ବହନ୍ତା ପୁରୁଷ ତୁହି ଅପାପ ତୋ କାୟା
ଦେବଙ୍କୁ ଦୁର୍ଲ୍ଲଭ ଯାହା ଦେଖିଲ ତୋ ମାୟା
ଆପଦ ବିପଦ ଦେବ ତୁହି ସିନା ବନ୍ଧୁ
ଏ ଘୋର କଷଣ ଦେବ ମାନବ କେ ସହୁ ।
ଅଦୃଷ୍ଟ ଅଶ୍ରୁତ ସ୍ୱାମି ଯାର ବିଦ୍ୟାଶକ୍ତି
ଶୂନ୍ୟସ୍ଥଳ ପୁରୁଷ କୁ ଅନଳ ଅଜେୟାତ ।
ସ୍ତମ୍ଭନ ମୋହନ ବିଦ୍ୟା ବଶ ଉଚାଟନ
ଗୁଟିକା ଅଞ୍ଜନ ଧାତୁ ବାଦ ଯେ ଧାରଣ ।
ସତ୍ତ୍ୱ ରଜ ତମ ତିନିଗୁଣ ଦେବ ତୁହି
ସମ୍ପଦ ବିପଦ ବିନ୍ଧୁ ଧାତା ନାମ ବହି ।
ଅକାରଣକୁ କାରଣ ଅଗୁଣକୁ ଗୁଣ
ଦୁଃସହ ଦୁଷ୍କୃତ ହେଉ ଦୁର୍ଗତିକ ପୁଣ ।

ମହାକର୍ମ ପୁରୁଷର ଦେବ ତୁ କହନ୍ତା
ସବୁ ଅଛଯାଉ କରୁ ତୁମ୍ଭ ଯେ ବିଧାତା ।
ଅନ୍ତର ନୋହୁ ହେ ମନ ବଚନ ଉଭୟେ
ଭଜୁ ପଞ୍ଚଭୂତ ମୋର ଧାତା ନଷ୍ଟ ସାଦେ ।
ନମୋ ବଇବ ବିଧାତା ସର୍ବଗୁଣ ନିଧି
ଅପରିମିତ ସୋଦର ଭଣ ବାରିଧି ।
ମନ୍ତ୍ର ଧାରଣ ନାଥ ତୁ ପରମ ଯୋଗୀ
ତୋହର କି ଦୋଷ ଲୋକ କର୍ମଫଳ ଭୋଗୀ
ନ ବୁଝି ବୋଲନ୍ତି ଦେଉଅଛନ୍ତି ସ୍ୱାଭବ
ଯେ ଜାଣଇ ତୋତେ ସେହୁ ଏ ଭୂଧରେ ଥିବ ।
ଶୂନ୍ୟ ଅଣାକାର ତୁମ୍ଭ ଅକାଳ ସଞ୍ଚିତ
ଯମଦଣ୍ଡ ସ୍ୱାମୀ ଯେହ୍ନେ ହୋଇବା ଦଣ୍ଡିତ ।
ବିଧାତା ସୁମର ନରେ ଅପଦହିଁ ଖଣ୍ଡ
ବିଧାତା ସୁମରୁ ନରେ ତର ଯମଦଣ୍ଡ ।
ଅଭାବ ଅପ୍ରୀତି କରୁ ନ କର ସୁଜନେ
ଲଭିବ ମୁଁ ପାପପୁଣ୍ୟ ବିଧାତା ପ୍ରସନ୍ନେ ।
ଉଦ୍ଧାରଣ ପୁରୁଷର ଚରଣେ ମୋ ମତି
ବ୍ୟାକୁଳେ ଶାରଳାଦାସ କରଇ ବିନତି ।

---

## କୁରୁସଭାରେ ଦ୍ରୌପଦୀର ଅପମାନ

ଶୁଣ ମନୁ ଦୁଃଶାସନ ଅଟେ ମହାବଳୀ
କେଶ ଧରଣ ଆକର୍ଷି ଆଣଇ ପାଞ୍ଚାଳୀ ।
ନ ସହିଁ ପାରଲେ ଦେବୀ କାହାର ମୁଖହିଁ
ମୋହର କର୍ମେ ଭବିଷ୍ୟ ଏସନ ଅଛଇ ।
ନାରାୟଣ ନାରାୟଣ କହେ ଯାଜ୍ଞସେନୀ
ରଖ ରଖ ଆଦ୍ୟମୂଳ ମୂର୍ତ୍ତି ଅନାଥିନୀ ।
ରକ୍ଷାକର ଦୀନବନ୍ଧୁ ଭକତ ବତ୍ସଳ
ଚନ୍ଦ୍ର କି ହସ୍ତରେ ନାହିଁ ବସୁଦେବ ବାଳ ।
ତୁମ୍ଭେ ପର ଦୀନବନ୍ଧୁ କରୁଣା ନିଧାନ
ଏ ଆରତୁ ରକ୍ଷାକର ହେ ଆରତତ୍ରାଣ ।
ଏମନ୍ତେ କାତର କହନ୍ତେ ଭଗେ ଯାଜ୍ଞସେନୀ
ଆକର୍ଷି ସେ କଇରବ ଆସୁଅଛି ଘେନି ।
ଲୋକେ କହନ୍ତି ପାଣ୍ଡବେ ନାହାନ୍ତି ଜୀବନ୍ତେ
ହରଯା ହିଂସାସ ସେହୁ ସହନ୍ତେ କେମନ୍ତେ ।
କେବଣ କୂଟ କପଟ ମନ୍ତ୍ରୀ ଉଆଇଲା
ହସ୍ତିନା ରାଜ୍ୟରୁ କଷ୍ଟେ ଲକ୍ଷ୍ମୀ ଛାଡ଼ିଗଲା ।
ରାଜ୍ୟ ରକ୍ଷା କରୁଥିଲେ ଯେତେକ ସଇନ
ହାସେ ଆଡ଼ ହୋଇଗଲେ ଦୁଃଖ ଆସୁ ଘେନି
ପାଞ୍ଚଯୋଜନ ହସ୍ତିନା ବାରୁଣାବନ୍ତକୁ
ଅଣେ ଦୁଃଶାସନ ଧରି ଦ୍ରୌପଦୀ କେଶକୁ ।
କେଶ ଧରିଅଛି ତଳେ ନ ଲାଗେ ଚରଣ
ରୋଦନ ଶବଦେ ପୂର୍ଣ୍ଣ ବାରୁଣା ଭୁବନ ।
ବାମକରେ ଧରିଅଛି ଦ୍ରୌପଦୀର ବାଳ
ଡାହାଣ କରେ ତୁଳାଏ ଗଦା ମହାବଳ ।
ଆକୁଳେ ପାଞ୍ଚାଳୀ ଧର୍ମ ଧର୍ମ ସୁମରଇ
ପୁରଜନେ ହାହାକାରେ ଅଛନ୍ତି ଗୋଡ଼ାଇ ।
ହସ୍ତିନାର ସଭାତଳେ ବସେ ପଞ୍ଚଭ୍ରାତ
ମିଳିଲା ସେ ଦ୍ରୌପଦୀଙ୍କୁ ଘେନିଣ ତ୍ୱରିତ ।
ବାମକରେ ସେ ଚଣ୍ଡାଳ କେଶ ଅଛି ଧରି
ଯାଉଅଛି ପବନହୁଁ ବେଗ ଉତ୍ତ କରି ।
ପ୍ରବେଶ ହୋଇଲା ଯାଇ ହସ୍ତିନା ନଗରେ
ଦ୍ରୌପଦୀ ବୋଲନ୍ତି ଗାଢ଼ ବ୍ୟାକୁଳ ମନରେ ।
ସଭାକୁ କି ନିଅ ତୋତେ ମୋହରଟି ରାଣ
ସଭାରେ ବସିଅଛନ୍ତି ମୋର ମାନ୍ୟଜନ ।
ଲଜ୍ଜା ମୋତେ ହେବ ଏହା ନ ଜାଣୁ କି ପାର
ଏଥିଠାବରେ ଅଛନ୍ତି ପାଞ୍ଚ ସହୋଦର ।
ସଭାତଳେ ରଖି ଚାହିଁ ଗଲା ଦୁଃଶାସନ
ଦ୍ରୌପଦୀକୁ ଆଣିଲଇଁ ହେ କୁରୁରାଜନ ।
କି କରିବ କୁହ ପାକାସ୍ଥିତ ଯେ ନାରୀ
ଶୁଣି ଟହ ଟହ ହୋଇ ହସେ ଦଣ୍ଡଧାରୀ ।
ଶକୁନିକୁ କୁରୁପତି ବୋଲେ ମାମୁଁ ଶୁଣ
ଦ୍ରୌପଦୀକୁ ଆଣିବାର ହେଲା ଅକାରଣ ।
ଆଜ ରଜୋବତୀ ହୋଇ ଅଛଇ ସେ ନାରୀ
ମୁଖ ନ ସହିଁ ଛୁଟଇ ଛୁଇଁଲେ ତା ଶିରୀ ।
ଶକୁନି ବୋଲେ ଚତୁରୀ ନିର୍ଲଜ ଯୁବତୀ
ଦେଖୁଛ ତ କରୁଅଛି ପାଞ୍ଚଗୋଟା ପତି ।
ମହାସତୀ ବୋଲାଉଛି ଆଜ ଏହି ଲାଗି
ତାର ପିନ୍ଧିବା ବସନ ଫକାଇବା ଫେଡ଼ି ।
ସତୀ କି ସେହୁ ଅସତୀ ଜାଣିବା ସାକ୍ଷାତେ
ହସି ଦୁର୍ଯ୍ୟୋଧନ ବୋଲେ ଆଣ ଯା ତୁରିତେ
ଶୁଣି ଦୁଃଶାସନ ତହୁଁ ବେଗେ ଚଳିଗଲା
କେଶ ଧରି ସଭା ଭିତରକୁ ଟେକି ନେଲା ।

ଦୁର୍ଯ୍ୟୋଧନ ବୋଲେ ତୋର ପାଣ୍ଡୁସୁତ ଥାଇ
ଜଣେ ଦେଲେ କେହ୍ନ ତୋତେ ରଖିଲେ ତ ନାହିଁ
ଗାଣ୍ଡିମା ଭଜନ୍ତୁ ଏବେ ରଖନ୍ତୁ ତୋ ବର
ରକ୍ଷକ ପଣ ଶ୍ରୀକୃଷ୍ଣ ଅଛନ୍ତି ତୋହର ।
ପାଣ୍ଡବଙ୍କୁ କାଳେ କାଳେ ରଖଇ କଂସାର
ଆରତ ହେଲେ ସେ ତୋତେ ନ ରଖେ କପାଇଁ
ଦ୍ରୌପଦୀ ଦେବୀ ହୋଇଲେ ଏ କୁରୁସଭାରେ
ଧାର୍ମିକ ବିବେକ ଜନ ଅଛନ୍ତି ଏଠାରେ ।
କେହ୍ନ ମତେ ନ ଭଜନ୍ତ ଭରନ୍ତି ଅମାନ୍ତ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆବର ଅନନ୍ତ ।
ଆମ୍ଭାକ ବାଇକେ ଖେଳେ ଧର୍ମ ନରବର
ମୋ ଉର୍ଦ୍ଧ୍ୱେ ରହଇ ନାହିଁ ତାଙ୍କ ଅଧିକାର ।
କେଣୁ ନ ରଖିଲେ ରକ୍ଷୁ ରଖିଲେ ନଭଲେ
ଦୁର୍ଯ୍ୟୋଧନ ନପଡିଲ ଭୟ ରଖି ମନେ ।
କୁରୁପତି ବୋଲେ କସ ଯଜ୍ଞର ସ୍ୱନ୍ଦରି
ଡାକ ତୋତେ ରଖୁ ଆସି ବୋଲ ଚକ୍ରଧାରୀ ।
ଦ୍ରୌପଦୀ ଜଡ଼ନ୍ତ କୁରୁପତିଙ୍କ ଅନାଇ
ଆରତତ୍ରାଣଙ୍କ ନାମ ଭଜନ୍ତି କପାଇଁ ।
ସତ୍ୟଯୁଗର ଚରିତ ତୋ ଆଗେ କହିବା
ମନୁ ସଂଶୟ ତୋହର ଏବେ ଘୁଞ୍ଚାଇବା ।
ଘୋରବନେ ଏକ ଶଶା କରିଥିଲା ବାସ
ଜଳପାନ ଅର୍ଥେ ଗଲା ସରୋବର ପାଶ ।
ଦୂରରୁ ଆସଇ ଏକ ସିଂହକୁ ଦେଖିଲା
ପ୍ରାଣଭୟେ ଶଶାଗୋଟି ତହୁଁ ପଳାଇଲା ।
ଆଗେ ଧାଏ ଶଶା ସିଂହ ଗୋଡ଼ାଏ ପଛରେ
ବିବର ଏକ ଦେଖିଲା ଶଶା ସେ ବନରେ ।
ଭୟରେ ବିହ୍ୱଳ ହୋଇ ତହିଁରେ ପଶିଲା
ସିଂହ ଯାଇ ସେ ବିବର ମୁହଁରେ ବସିଲା ।
ଶୃଗାଳର ଗର୍ତ୍ତ ସେହି ଅଛଇ ଶୃଗାଳ
ତାକୁ ଦେଖି ଶଶା ଭୟେ ହୋଇଲା ବ୍ୟାକୁଳ
ଚଳଇ ସିଂହ ମୁଖରୁ ବର୍ତ୍ତି ଏବେ ମୁହିଁ
ଶୃଗାଳ ମୁଖେ ପଡ଼ିଲେ ରକ୍ଷା ମୋର ନାହିଁ
ପଳାଇ ଯିବାକୁ ଆଉ ନାହିଁ ବାଟ ମୋତେ
ବିବର ମୁଖ ଜଗିଛି ସିଂହ ମୋ ନିମନ୍ତେ ।
ନିଶ୍ଚୟ ବିନାଶ ହେଲି ଗର୍ତ୍ତମଧ୍ୟେ ପଡ଼ି
ଏଥୁ ଉଦ୍ଧରିବ କେହ୍ନ କଏ ଦେବ ଛାଡ଼ି ।
ଶୁଣିଛି ଆରତତ୍ରାଣ ଅଛନ୍ତି ଶ୍ରୀହରି
ସେହି ଅବା ଏ ବିପଦୁଁ ପାରନ୍ତି ଉଦ୍ଧାରି ।
ଏମନ୍ତ ଚିନ୍ତି ଡାକିଲା ରଖ ଜଗନ୍ନାଥ
ଦୀନବନ୍ଧୁ କୃପାସିନ୍ଧୁ ହେଲି ମୁଁ ଅନାଥ ।
ଆରତଜନ ନିମନ୍ତେ ତୁମ୍ଭେ ଚକ୍ରଧାରୀ
ତୁମ୍ଭେ ନ ତାରିଲେ କଏ ତାରିବ ହେ ହରି
ତୁମ୍ଭେ ନ ରଖିଲେ ନଷ୍ଟେ ହୋଇବି ନିଧନ
ତୁମ୍ଭବିନା ଭରସା କେ ନାହିଁ ଭଗବାନ ।
ଶଶା ଆରତ ରୋଦନ କର୍ଣ୍ଣରେ ଶୁଣିଲେ
ରଖିଲୁଁ ରଖିଲୁଁ ବୋଲି ଉଚ୍ଚରେ ବୋଇଲେ
ଶଶାକୁ ସାହା ହୁଅନ୍ତେ ଜଗତ ଜୀବନ
ଦିଶିଲା ତାହାକୁ ନାନା ଜନ୍ତୁ ସନମାନ ।
ଶଶାକୁ ଦେଖି ଶୃଗାଳ ଭାବଇ ବିସ୍ତର
ଦଇବେ ଆସି ମୋ ପାଶେ ମିଳିଲା ଆହାର ।
ଆନନ୍ଦ ହୋଇ ବୋଲଇ କପାଇଁ ଆଇଲୁ
ଜାଣୁ ଜାଣୁ ଆସି ମୋର ଗର୍ତ୍ତରେ ପଶିଲୁ ।
ଶଶା ବୋଲଇ ଶୁଣ ହେ ଶୃଗାଳ ମୋ ଭାଷ
ସର୍ବ ଜନ୍ତୁଏ ପେଷିଲେ ମୋତେ ତୁମ୍ଭ ପାଶ ।
ବୋଇଲେ ଶଶା ତୁ ଯାଇ ଶୃଗାଳକୁ ଆଣ
ଏହି ବନରେ କରିବୁ ତାଙ୍କୁ ଜନ୍ତୁଗଣ ।
ଆମ୍ଭେ ସମସ୍ତେ କରିବୁଁ ତାଙ୍କ ପାଦପୂଜା
ପ୍ରଜା ହେବୁ ଆମ୍ଭେମାନେ ସେ ହୋଇବେ ରଜା
ଶଶା ମୁଖରୁ ଶୁଣିଣ ଶୃଗାଳ ଏ ଭାଷ
ଆନନ୍ଦ ମନେ କହଇ ହୋଇ ହସ ହସ ।
ହେବେ ରେ ଶଶା ଏ ବନେ ମୁଁ ରଜାହୋଇବି
ମନ୍ତ୍ରି ପଣେ ତୋର ଶିରେ ଶାଢ଼ୀ ମୁଁ ବାନ୍ଧିବି
ଚାଲ ଏବେ ଅରଣ୍ୟକୁ ଯିବାରେ ତୁରିତେ
ଶଶା ବୋଲେ ଦେବ ଏବେ ଚାଲନ୍ତୁ ଅଗ୍ରତେ
ପ୍ରଭୁ ଆଗରେ ଭୃତ୍ୟର ଚାଲି ନ ଯୋଗାଇ
ଆଗରେ ବଜେ କଇଲୁ ବନଜନ୍ତୁ ପାଇଁ ।
ତୁମ୍ଭ ପଛେ ଯିବା ମୋର ହୋଇଲା ଉଚିତ
ତୁମ୍ଭେ ମୋର ରଜା ମୁହିଁ ଅଟେ ତୁମ୍ଭ ଭୃତ୍ୟ
ଶଶା କପଟ ଶୃଗାଳ ନ ପାରିଲା ଜାଣି
କାହୁଁ ସେ ଜାଣିବ ସିଂହ ଜଗିଅଛି ପୁଣି
ଗର୍ତ୍ତ ମଧ୍ୟରୁ ଶୃଗାଳ ହୁଅନ୍ତେ ବାହାର
ବସିଥିଲା ସିଂହ ମାଡ଼ିବସିଲା ସତ୍ୱର ।

ଆହେ କୁରୁପତି ସାହା ଯୋଜନ ହେବାକୁ
ବହିଲ ଶତା ଉଭୟ ଶନ୍ଦର ମୁଖରୁ ।
ତୁମ୍ଭେ ହରିଙ୍କି କପାଇଁ ନିନ୍ଦୁଛ ନୃପତି
ଯୋଜନେ ଚିନ୍ତିଲେ କେବେଁ ନ ଥାଇ ଦୁର୍ଗତି
ଶୁଣି ରୋଷେ ବୋଲେ ରାଜା ଆରେ ଦୁଃଶାସନ
କୁରିତ ଫେଡ଼ ଦ୍ରୌପଦୀ ଅଙ୍ଗରୁ ବସନ ।
କେମନ୍ତେ ରଖିବେ ହରି ଦେଖିବା ଏହାକୁ
ଶୁଣି ଦୁଃଶାସନ ଧାଇଁଗଲା ତା ପାଶକୁ ।
ଦ୍ରୌପଦୀ ବୋଲନ୍ତି ରହ ରହ ଦୁଃଶାସନ
ମୋର ପାଣ୍ଡପତି ବସିଛନ୍ତି ସନ୍ନିଧାନ ।
ଏତେବେଳେ ତାହାଙ୍କୁ ମୁଁ କହେ ପଦେ ପଦେ
ରଖିବେ କି ନ ରଖିବେ ପଡ଼ିଛି ବିପଦେ ।
ଯୁଧିଷ୍ଠିରଙ୍କି ଚାହିଁ ଦେବୀ ଲୋତକ ଲୋଚନେ
କହନ୍ତି ହେ ପ୍ରଭୁ ଥାଇଁ ତବ ସନ୍ନିଧାନେ ।
ବାରନାରୀ ପ୍ରାୟ ଆଣି କରନ୍ତି ଏ ବଳେ
ଧର୍ମରାଜ ବୋଲାଉଛ ଏ ମହୀ ମଣ୍ଡଳେ ।
ଏ ମହାସଭାରେ ଦେବ ତୁମ୍ଭ ରମଣୀକି
ଉଲଗ୍ନ କଲେ ତୁମ୍ଭଙ୍କୁ ଲଜ୍ଜା ନ ହେବ କି ।
ଶୁଣି ଯୁଧିଷ୍ଠିର ତଳକୁ ପୋତିଲେ ବଦନ
ପ୍ରତି ଉତ୍ତର ନ ଦେଲେ ହୋଇଲେ ମଉନ
ପାର୍ଥ ମୁଖ ଚାହିଁ ପୁଣି ଗଦ ଗଦ ସ୍ୱରେ
ବୋଲନ୍ତି ଦ୍ରୌପଦୀଦେବୀ ଅତ୍ୟନ୍ତ କାତରେ
ବାସବ ନନ୍ଦନ ତୁମ୍ଭେ ପୃଥ୍ୱୀର ଭୂଷଣ
ହଣସ୍ତୁ କୃଷ୍ଣ ବୋଲାଇ ଦେଖ ମୋ କଷଣ ।
ଧିକ ବୀରପଣ ଧିକ ତୁମ୍ଭ ଜୀଇଁବାର
ସବୁ କେଶ ଧରି ମୋତେ ଆଣି ଏ ପାମର ।
ବିବସନ କରୁଅଛି ଏ ମହା ସଭାରେ
ନିର୍ଲ୍ଲଜ ଜୀବନ କପାଁ ଧରିଛ ସଂସାରେ ।
ଦ୍ରୌପଦୀ ମୁଖରୁ ଶୁଣି ଏ ବାଣୀ ଅର୍ଜ୍ଜୁନ
ବୋଲନ୍ତି କପାଁ ଧିକାର କରୁ ଅକାରଣ ।
ମୋହର ପ୍ରତିଜ୍ଞା ଜାଣି ନାହୁଁ କି ସୁନ୍ଦରି
ସତ୍ୟଭାମାକୁ ଗୋସିଂହ ନେଇଥିଲା ହରି ।
ଅର୍ଜ୍ଜୁନ ରଖ ବୋଲି ସେ ଡାକିଲା ରାବରେ
ସେ ଶବ୍ଦ ପଶିଲା ଆସି ମୋ ବେନି କର୍ଣ୍ଣରେ
ପୁଣି ଶରଧନୁ ମୋତେ ସେ କଥା କହିଲା
କ୍ଷଣେ ପଥ ରୁନ୍ଧିଲି ସେ ଯାଇ ନ ପାରିଲା ।

ଯୁଦ୍ଧକରି ଗୋସିଂହକୁ ପକାଇଲି ମାରି
ସତ୍ୟଭାମାକୁ ଆଣିଲି ବିପଦୁଁ ଉଦ୍ଧରି ।
ରୈବତ ପର୍ବତେ ଯାଇଁ କୃଷ୍ଣଙ୍କୁ ଭେଟିଲି
ଶତ୍ରାଜିତ ଦୁହିତାକୁ ନେଇ ସମର୍ପିଲି
ମୋତେ ନ ଧିକ୍କାର କୁରୁସୈନ୍ୟକେତେଗୁର
ବାଣକେ ଏ ସମସ୍ତଙ୍କୁ କରନ୍ତି ସଂହାର ।
କହୁଛି ଆଜ୍ଞା ଦିଅନ୍ତେ ଯେବେ ଧର୍ମସୁତ
ଦେଖନ୍ତ ସଖି ଉପରି ମୋହର ସାମର୍ଥ୍ୟ ।
ପାର୍ଥ ମୁଖଁ ଏହା ଶୁଣି ଦ୍ରୁପଦ ଦୁଲଣୀ'
ନକୁଳ ମୁଖକୁ ଚାହିଁ କହୁଛନ୍ତି ପୁଣି ।
ହେ ନକୁଳ ତୁମ୍ଭେ ସବୁ ମହା ବଳୀୟାର
କୁମାର ଗଣରେ ଘାଣ୍ଟ ସ୍ୱର୍ଗରେ ତୁମ୍ଭର ।
ନବକଷିତ କୁନ୍ତକୁ ବହ ବୀରପଣେ
ମୋର ଏ କଷଣ ଦେଖି ଉଡୁଛି ଯା ପ୍ରାଣେ ।
ସଭାମଧ୍ୟେ ଦୁଃଶାସନ କରୁଛି ଉଲଙ୍ଗ
ଉପରି ସହୁଛି ତୁଟି ନ ପଡ଼ଇ ଅଙ୍ଗ ।
ନକୁଳ ବୋଇଲା ସଖି ବିଧାତା ଲିଖନ
ଏ ମହୀରେ ତାହା କରି ପାରଇ କେ ଆନ ।
କାହିଁପାଇଁ ସଖି ମୋତେ କରୁଛ ଡିଙ୍କାସ
କହୁଛି ଆଜ୍ଞା ଦିଅନ୍ତେ ଯେବେ ଧର୍ମଶିଷ୍ୟ
କୁନ୍ତମୁନରେ ଉପାଡ଼ି ହସ୍ତିନା ପୁରକୁ
ସମୁଦ୍ରେ ପକାନ୍ତି ନେଇ ଉଭୟ ମୋ କାହାକୁ ।
ଗ୍ଲାରି କୁରୁ ସୈନ୍ୟ ଅବା କେତେକ ମାତର
ପେଷନ୍ତି ମୁଁ କୁନ୍ତମୁନେ ଗୃନ୍ଥି ଯମପୁର ।
ନକୁଳ ବିମୁଖ ଦେଖି ଦ୍ରୁପଦ କୁମାରୀ
ସହଦେବ ମୁଖ ଚାହିଁ ବୋଲନ୍ତି ଏପରି ।
ଆଗହୁଁ କପାଇଁ ମୋତେ ନ କଲ ଗୋଚର
ଏବେ ହରି ପାରିବ କି ଦୁର୍ଗତି ମୋହର ।
ତୁମ୍ଭେ ମନ୍ତ୍ରୀବର ସବୁ ତିନକାଳଜ୍ଞତା ।
ଶାସ୍ତ୍ରରେ ଜାଣିଅ ଭୂତ ଭବିଷ୍ୟତ କଥା ।
ତୁମ୍ଭଠାରେ ଥାଉଁ ଥାଉଁ ଏମନ୍ତ ଶଙ୍କଟ
ଜାଣି ନ ଥିଲ କି ଆଗୁଁ ପଡ଼ିବ ବିପତ୍ତି ।
ସହଦେବ ବୋଲେ ସଖି ଏତ ଦେବକୃତ
ତୁମ୍ଭେ କଷଣ ପାଇଲେ ମରିବେ ଏ ଦୁଷ୍ଟ ।
ଦୁର୍ଯ୍ୟୋଧନ ନୃପତିର ଏକଶତ ଭାଇ
ଆବର ଅଛନ୍ତି ମହାବୀରେ ଏଥେ ରହି ।

ଏଣୁ ଦୁଷ୍ଟଙ୍କ ବିନାଶ ପାଇଁ ଦେବଗଣ
କୃଷ୍ଣଙ୍କର ତେଜରୁ ତୁମ୍ଭଙ୍କ କାରଣ ।
ବରଷ ନ ହୋଇ ବର୍ଣ୍ଣମାତ୍ର ଦୁଃଖ ସହ
ଜଗଜ୍ଜନ ମାତା ତୁମ୍ଭେ କପଟରେ ନୋହ ।
ଦ୍ରୌପଦୀ ଶୁଣି ମନ୍ତ୍ରୀର ଏ ନିଷ୍ଠୁର ବାଣୀ
ଅନାଥା ରମଣୀ ପ୍ରାୟେ ନେତ୍ରୁ ବହେ ପାଣି ।
ବୁଡ଼ିଲେ ଚିନ୍ତା ସମୁଦ୍ରେ ଜ୍ଞାନ ହଜିଗଲା
ଚନ୍ଦ୍ରମା ବଦନ ଗୋଟି ମଳିନ ଦିଶିଲା ।
ମନ୍ଦ ଭରନ୍ତେ ବଢ଼ ମନୁ ଶୁଣ ବର୍ଜ୍ୟ ରସ
ହେଠମୁଖେ ବସିଅଛୁ ଭୀମ ଭ୍ରାତା ପାଶ ।
ମନର ରୋଷେ ଭରସ ନ ଲେଖ ଛାତେ ମଣି
ବେନି ନୟନୁ ଲୋତକ ଝରି ଝରି ବହି ।
ଛିଟେ କର ଦେଇ ବୀର କରେ ଗୁହ୍ୟ ଚାତ୍ରା
ସନ୍ତାପଜନକେ କହିଛୁ ଦେଖି ଦେବୀ ବ୍ୟଥା ।
ଦ୍ରୌପଦୀ ବଚନ୍ତି ବୋଇଲେ ଭୀମଙ୍କୁ ହୋ ଦେଖ
ତୁମ୍ଭପରି ବୀର ଥାଉଁ ମୋର ଏତେ ଦୁଃଖ ।
ଏ ପାମର ଦୁଃଶାସନ ଧରିଲା ମୋ କେଶ
ଦେଖି କେମନ୍ତେ ମନରେ ନ ଧରୁଛୁ ରୋଷ ।
ବାଳକ ଛଳ ଗଡ଼ା କି କରେ ନାହିଁ ସେନ
ସିଂହ ନାରୀକୁ ଶୃଗାଳ ହରୁ ଚଳେ ଆସି ।
ସଭାମଧ୍ୟେ ବିବସନ କରେ ତୁମ୍ଭ ଆଗେ
ଧିକ ତୁମ୍ଭ ବଳବୀର୍ଯ୍ୟ ଧର କେଉଁ ଲାଗେ ।
ଭୀମସେନ ବୋଲେ ସଖି ନାହିଁ ମୋର ଦୋଷ
ସେ ପ୍ରତିଜ୍ଞା ଟାଣ କଲେ ଯୁଧିଷ୍ଠିର ନାଶ ।
ବାରେ ସ୍ୱନ୍ତି ସେତେ ଠାର ଦିଅନ୍ତେ ସେ ଚକ୍ଷୁ
ହସ୍ତିନା ଚୂର କରନ୍ତି ତୋର ଦେଖୁ ଦେଖୁ ।
କଦଳୀବନ ପବନେ ପଡ଼ନ୍ତି ଯେହ୍ନେ ଲେଟି
କ୍ଷଣକେ ରଥୀ ପଦାତି ପକାନ୍ତି ମୁଁ ପିଟି ।
ବୁଲାଇଲେ ସଖି କାଳେ ଏକ ଗଦାବର
ଉଡ଼ାଇ ଦିଅନ୍ତି ଯାଇ ପଡ଼ନ୍ତା ସାଗର ।
ଦ୍ରୌପଦୀ ବୋଇଲେ ବୀର ଧିକ ତୁମ୍ଭ ପ୍ରାଣ
ନିର୍ଲଜ ହୋଇ ଜୀଇଲ କିପାଁ ପାଞ୍ଚଜଣ ।
ଏ ନିର୍ଲଜ ମୁଖ ତୁମ୍ଭେ ଦେଖାଅ କିପାଇଁ
ପାଞ୍ଚଜଣ ହସ୍ତ ଧରି ଅନାଥ ହେଲିଇଁ ।
ତୁମ୍ଭେ ମହତ ବୋଲି ମୁଁ ଆଶା କରିଥିଲି
ଅନାଥା ନାରୀ ପରାୟେ ବ୍ୟର୍ଥେ ଜନ ହେଲି ।

କିପାଇଁ ଆସିଲ ଲକ୍ଷେ ରାଜା ମଧ୍ୟେ ଜିଣି
ପଞ୍ଚପତି ଆଗେ ଦୁଃଶା କେଶ ଧରି ଟାଣି ।
ଧିକ ତୁମ୍ଭ ଗଦାବଳ ଧିକ ତୁମ୍ଭ ବାହା
ଜଳଗ୍ନ ବେଳେ ହୋଇଲ ଜଣେ କେହ୍ନ ସାହା ।
ଦେବୀର ଏ କଷ୍ଟବାଣୀ ଶୁଣି ବୃକୋଦର
ସହି ନ ପାରି ଉଠିଲା ଦେଇ ଆସ୍ଫାଳର ।
ଲେ ରେଖାର କଣ୍ଠ ବୀର ଗୁଣ୍ଠ ସୋର ରଡ଼ି
ଅଭୁତେ ମନ୍ଦରଗିରି ପଡ଼ିଲା କି ଝଡ଼ି ।
ଲକ୍ଷେ ଯୋଜନରେ ଯମ ଆସ୍ଥାନ ଟଳିଲା
ଭୂମି ସହିତେ ସପତ ପାତାଳ କମ୍ପିଲା ।
ସେ ଦଣ୍ଡେ ଭୀଷ୍ମ ଦ୍ରୋଣ ଆସି ବସିଥିଲେ
ଭୀମର ଗର୍ଜ୍ଜନ ଶୁଣି ଆସ୍ଥାନ ଟଳଲେ ।
ଭୀଷ୍ମ କହନ୍ତି ହେ ଦେବ ଗୁରୁ ଦ୍ରୋଣ ଦେଖ
ଏ ଭୀମ କୋପିଲା ଦେଖି ଦ୍ରୌପଦୀର ଦୁଃଖ ।
ଏକା ଯୁଧିଷ୍ଠି ଏହାକୁ ଆଜ୍ଞା ଯେବେ ଦେବ
ଦୁର୍ଯ୍ୟୋଧନ ସହିତରେ କ୍ଷଣକେ ନାଶିବ ।
ରକ୍ଷ ଶରଣ ବୋଇଲେ ଦ୍ୱିଗୁଣ ମାରଇ
ବୀର ପରେ ଏ ଦ୍ୱିତୀୟ ଯମ ସେ ଅଟଇ ।
ଦୁର୍ଯ୍ୟୋଧନ ସଭାପାଖେ ଥିଲା ଦୁଃଶାସନ
ଭୀମର ଗର୍ଜ୍ଜନ ଶୁଣି ଆସି ସନ୍ନିଧାନ ।
ବୋଇଲା ଭୀମ ପାମର ହେଲୁ ତୁ କି ବାଇ
ଗତ ଆଗତ କଥା କି ନ ଜାଣୁ ରେ ତୁହି ।
ସେବକ ପ୍ରାୟେ ହୋଇଲ ଯେବେ ପାଞ୍ଚଜଣ
ନିର୍ଲଜ ଆମ୍ଭକୁ ରଖି କିପାଁ କର ଟାଣ ।
ଯେ ଯେଉଁ ସେବା କରିବ ଶୁଣ ତାହା କହି
ପ୍ରମାଣ କଥାକୁ କିପାଁ ହେଳା କରୁ ତୁହି
ଯୁଧିଷ୍ଠି ଉଠି ନ ପାରି ଦ୍ୱାରେ ବସିଥିବ
ରଥ ବଉଡ଼ କନକ ଯେତେ ଲୋଡ଼ା ହେବ ।
ଅର୍ଜ୍ଜୁନ ବେଶଧରିର ହେବ ସୂପକାର
ତୁ ହେ ଭୀମ ଅନ୍ତଃପୁରେ ମଣ୍ଡ ହେବୁ ମାର ।
ନକୁଳ ସିଂହ ଦୁଆରେ ଜଗି ବସିଥିବ
ଏସନ ସେବାରେ ତୁମ୍ଭ ଦିନକାଳ ଯିବ ।
ଏ ମନ୍ତ୍ରୀ ଷଣ୍ଡ କୁମର ଆମ ସାନଭାଇ
ଏହାକୁ କରିବୁ ରାଜା ଅର୍ଦ୍ଧେ ରାଜ୍ୟ ଦେଇ ।
ଭୀମ ବୋଇଲେ ଯୁଧିଷ୍ଠି ଦେବ ଆଜ୍ଞା ନାହିଁ
ଦ୍ରୁପଦୋଡ଼ କୋର ମୁଣ୍ଡ ପକାନ୍ତି ଛିଣ୍ଡାଇ ।

ଶୁଣି ଦୁଃଶାସନ ମହା କୋପରେ ପ୍ରଚଣ୍ଡ
ବୋଲେ ଗଦାରେ ଭଞ୍ଜିବ ତୋର ଶିର ଗୁଣ୍ଡ
ଭୀମସେନ କୋପଭରେ ବୋଲେ ରେ ପାମର
ଏହିକ୍ଷଣି ଗଦାରେ ଭାଙ୍ଗନ୍ତି ତୋର ଶିର ।
ଏହା କହି କ୍ରୋଧେ ଟି ଧଇଲା ସେ ଗଦା
ଲେ ଲେକାର ଶବଦରେ ମାଇଲାକ କଦା ।
ଦୁର୍ଯ୍ୟୋଧନ ଦ୍ୱନ୍ଦ୍ୱ ଦେଖି ସଭାକୁ ଅନାଇଁ
ବୋଲେ ପଣ ସତ୍ୟବାଦୀ ଯୁଧିଷ୍ଠି ଅଟଇ ।
ଭାଇକି ସେ କହି ଦେଇ ଆପେ ହୋଇ ତୁନି
ବସିଅଛି ମନ୍ତ୍ରମନେ ଦେଖ ସାଧୁ ମୁନି ।
ଭୀମର ହୋଇ ଜଗାଇଁ ହୁଏ ନଟପଟ
ଭୀମର ମୁଖରେ କଥା ନେଇ ତାର ଗଷ୍ଟ ।
ଭାଇ ସାନଭାଇ କରି କରଅଛି ଦ୍ୱନ୍ଦ୍ୱ
ସମସ୍ତେ ତ ବୋଲୁଥାଅ ଉତ୍ତରଟେ ମନ୍ଦ ।
ଯୁଧିଷ୍ଠି ଉଠି ବୋଇଲେ ତତ ରହ ଭୀମ
ଜଥା ନ ଜାଣି କପାଇଁ କରୁଅଛୁ ଭ୍ରମ ।
ତୋର ମୂର୍ଖବୁଦ୍ଧି ତାବ୍ର ଏବେ ମନ୍ଦ ହେଲା
ନୋହିଲେ ହୋଇବୁ ଆଗେ ନଷ୍ଟେ ଘରବୁଡ଼ା ।
ଦ୍ରୌପଦୀ ପଣ ଯୁବତୀ ମିଳିବ ରେ ଭାଇ
ଭାଇକି ମାରିଲେ ଆଉ ପାଇବା କି ନାହିଁ ।
ସୋଦରେ ଦ୍ୱନ୍ଦ୍ୱ ଆରମ୍ଭ କରୁଛ କାହିଁକି
ଶୁଣିଣ କୁପିତ ଭୀମ କହିଁ ଯୁଧିଷ୍ଠିଙ୍କି ।
ଅଛି ଶତସ୍ୱନ ମାରି ଜଟଦ ମୁଁ ପଦା
କ କରି ପାରିବେ ମୋର ହସ୍ତେ ଥିଲେ ଗଦା ।
ପାର୍ଥ କହେ କୋପ ତ୍ୟଜ ଆହ୍ଲ ଜ୍ୟେଷ୍ଠଭାଇ
ତାଙ୍କ ଆଜ୍ଞା ଅବଜ୍ଞାରେ ପଡ଼େ ଦୁଃଖପାଇ ।
ନୁହ ଅସ୍ଥିର ଜାତର ନୁହ କୋପମୂର୍ତ୍ତି
ଅର୍ଜୁନ ବୋଲେ ବସିଲା ଭୀମ ଲଭି ଶାନ୍ତି ।
ନକ୍ଷତ୍ର ମଧ୍ୟେ ଯେସନେ ଚନ୍ଦ୍ର ବିରାଜଇ
ଭାଇଙ୍କ ମଧ୍ୟରେ ଭୀମ ତେସନ ଶୋଭଇ ।
ଭୀମ ବୋଲେ ଦ୍ରୌପଦୀ ନ କର ମୋତେ ମାନ
ଯେ କରେ କେଶ ଧରିଛି ତୋର ଦୁଃଶାସନ ।
କହୁଅଛି ତୁମ୍ଭଙ୍କୁ ମୁଁ ଛୁରିତପଥେ ଶୁଣ
ସେ ଭୁଜ ମୁଁ ଉପାଡ଼ିବ ଏ ସତ୍ୟ ବଚନ ।
ଯୁଧିଷ୍ଠିଙ୍କ ବଣ ମୋତେ ନଷ୍ଟେ ଉପାଡ଼ିବ
ଏହା ମୁଁ ନ କଲେ ପିତୃ ବୋଲେହା ହୋଇବ

ଭୀମର ବଚନ ସତ୍ୟ ନୋହିବଟି ଆନ
ହୃଦରେ ଜାଣିଲା ଶୁଣ ଭାର ଭୀମସେନ ।
ପାଣ୍ଡବଙ୍କ କଷ୍ଟ ରଚା ଦେଖି ମହାସତୀ
ମନେ ମନେ ସ୍ମରିଲେ ପ୍ରଭୁ ଯଦୁପତି ।
ଗୋବିନ୍ଦଙ୍କ ପାଦେ ମନ ଚୈତନ୍ୟକୁ ଦେଇ
ମନ ହରଷେ ବସିଲେ ଏକଲୟେ ଧ୍ୟାୟି ।
ବୋଇଲେ ହେ ରକ୍ଷାକର ଶ୍ରୀମଧୁସୂଦନ
ଭକତବତ୍ସଳ ହରି ଆରତ ନାଶନ ।
ତୁମ୍ଭେ ନ ରଖିବେ ମୁହିଁ ହୋଇଲି ଅନାଥ
ରକ୍ଷ ରକ୍ଷ ଜଗନ୍ନାଥ ଦୁଃଖୀର ସଙ୍ଗାତ ।
କର ସହାୟତେ ମୋର ଯାଉଅଛି ମାନ
ଏତେବେଳେ ରକ୍ଷାକର ଦ୍ୱାରିକା ନାଥନ ।
ଜଣାଇଲେ ପଦମାତ ଚଳେ ଦେଖି ଧ୍ୟାନ
ଦାନ୍ତବାକେ ଜାଣିଲେ ତା ଶ୍ରୀମଧୁସୂଦନ ।
ସତ୍ୟଭାମା ସଙ୍ଗେ ପଶା ଖେଳନ୍ତି ଶ୍ରୀହରି
ଶୁଣିଲେ ଦ୍ରୌପଦୀ ଡାକ ସଭ୍ୟ ଉର୍ଦ୍ଧ୍ୱରେ ।
ରଖିଲୁ ରଖିଲୁ ଆମ୍ଭେ ବୋଲିଣ ବୋଇଲେ
ଆକାଶକୁ ଚାହିଁ ତ ଦେଖ ବେଗେ ଟେକିଦେଲେ ।
ସତ୍ୟଭାମା ବୋଲନ୍ତି ଶ୍ରୀହରିଙ୍କ ସ୍ତୁତି
କେଉଁମାନଙ୍କୁ ରଖିଲ କାହିଁ ହେ ଗୋସାଇଁ ।
ମଞ୍ଚ ଆନ୍ତ ତାର ଗୋଟି ଗଲନ୍ତି ମୋହର
କାହାକୁ ରଖିଲ ଲକ୍ଷ ପାଣର ଈଶ୍ୱର ।
ଗୋବିନ୍ଦ ବୋଇଲେ ପଶା ଖେଳ ଏ ନୁହଇ
ଦ୍ରୌପଦୀ ଡାକିଲେ କୁରୁ ସଭାମଧ୍ୟେ ଥାଇ ।
ଦୁର୍ଯ୍ୟୋଧନ ସଙ୍ଗେ ପଶା ଯୁଧିଷ୍ଠି ଖେଳିଲେ
ଦ୍ରୌପଦୀଙ୍କ ଅବିବେକ ପଣେ ସେ ହାରିଲେ ।
ଦେଖିବ କହିବି ତାଙ୍କ ଦୁଃଖ ଯେ ପାମର
ଦ୍ରୌପଦୀ ଡାକିଲେ ମୋତେ ରକ୍ଷ ଚକ୍ରଧର ।
ସତ୍ୟଭାମା ବୋଇଲେ ଏ କପଟ ବଚନ
ହସ୍ତିନାର ଦ୍ୱାରକା ଯେ ସହସ୍ର ଯୋଜନ ।
କେମନ୍ତେ ଶୁଭିଲା ଏତେ ଦୂର ତାଙ୍କ ଡାକ
ମିଛେ ମୋତେ ଭଣ୍ଡାଉଛ ଜଗତ ନାୟକ ।
ଯେବେ ତୁମ୍ଭେ ଦ୍ରୌପଦୀଙ୍କ ହୋଇଲହେ ସାହା
ମୋ ମନେ ପ୍ରତେ ନୁହଇ ଦେଖା ଦେଇ ତାହା
ଗରୁଡ଼ଙ୍କୁ ସୁମରିଲେ ରୁକ୍ମିଣୀର ସାଇଁ
ରମ୍ୟକ ଦ୍ୱୀପରେ ପକ୍ଷୀ ଭୁଞ୍ଜି ଥିଲ ତହିଁ ।

ବାଇଲ ତାହାର ପତ୍ନୀ ମୁଖକୁ ଅନାଇଁ
ଅମୃତ ଭୋଜନ ପିତା ମୋତେ ତ ଲାଗଇ ।
ମଦନା ବୋଲଇ ଶୁଣ ପ୍ରାଣର ଈଶ୍ୱର
ପ୍ରମାଦ ପଡ଼ିଲା କଥା ଦ୍ୱାରକା ନଗର ।
ଶୁଣି ଖଗବର ଚଳିଁ ବେଗରେ ଅଇଲା
ଲକ୍ଷେ ଯୋଜନକୁ ଡେଣା ବିସ୍ତାରଣ କଲା ।
ଗୋବିନ୍ଦଙ୍କୁ ସୁମରଣ ବେଗେ ଗଲା ଚଳି
କ୍ଷଣକେ ଭିତରେ ଯାଇ ଦ୍ୱାରକାରେ ମିଳି ।
ଆସ୍ଥାନ ଉପରେ ବସି ଜଗତ ଗୋସାଇଁ
ପାଦତଳେ ଖଗବର ପଡ଼ିଲାକ ଯାଇଁ ।
ଉଠ ଉଠ ବୋଲି ପ୍ରଭୁ ଧଇଲେକ ତୋଳି
ଦେଖିଣ ହରଷ ଖଗାଜତର ଦୂଲ୍ଲଳୀ ।
ଗରୁଡ଼ ବୋଲେ କପାଇଁ କଲ ସୁମରଣ
କି କାର୍ଯ୍ୟ କରିବ କହ ରୁକ୍ମିଣୀ ରମଣ ।
ଗୋବିନ୍ଦ ବୋଇଲେ ବାବୁ ପିଠେକ ବସାଇ
ଆମ୍ଭଙ୍କୁ ଘେନିଣ ଯିବୁ ହସ୍ତିନା ନଗର ।
ଶୁଣି ଖଗବର ବେଗେ ପିଠି ବିସ୍ତାରିଲେ
ସତ୍ୟଭାମାକୁ ଘେନିଣ ପ୍ରଭୁ ବିଜେକଲେ ।
ପ୍ରବେଶ ହୋଇଲେ ଯାଇ ହସ୍ତିନା ନଗରେ
ଅଦୃଶ୍ୟ ହୋଇ ରହିଲେ ଆକାଶ ମାର୍ଗରେ ।
ମୁଖ ଟେକି ଦେଲେ ଦେଖି ଦ୍ରୌପଦୀ ଅନାଇଁ
ଗରୁଡ଼ ପିଠିରେ ବସି ତ୍ରୈଲୋକ୍ୟ ଗୋସାଇଁ
ଚର୍ମନେତ୍ରେ ଦେଖି ତାଙ୍କୁ କଲେ ଦରଶନ
ନିସ୍ତରିଲି ନିସ୍ତରିଲି ବୋଇଲେ ଏସନ ।
ଏ ସଭରେ ମୋର ଯେତେ ମନ ଦୁଃଖ ଥିଲା
ଶ୍ୱେତପଦ୍ମ ତୋଳା ଦେଖି ଦୂର ହୋଇଗଲା ।
ବୋଇଲେ ହେ ପ୍ରଭୁ ଶ୍ୱେତ କମଳଲୋଚନ
ତୁମ୍ଭ ଯେବେ ବଡ଼ଲୋକ ପଣ୍ଡୁର ନନ୍ଦନ ।
ରାଜସୂୟ ଯଜ୍ଞକାଳେ ତୁ ଦେବ ଅନନ୍ତ
ଅଗ୍ରହାସ୍ଥାପଣ ନେଇ ଧରିଥିଲୁ ଦେତ ।
ମହିମା ମହିମା ବୋଲି ପର ଡାକୁଥିଲୁ
ଏବେ ପାଣ୍ଡବଙ୍କଠାରୁ ଦୟା କି ଛାଡ଼ିଲୁ ।
କପଟ ପଶାରେ ଜିଣି ସକଳ ସମ୍ପଦ
ସଭତଳେ ବସାଇଛୁ ଏ ମାନଗୋବିନ୍ଦ ।
ମୋହର ଯେ ଦୁଃଖ ପ୍ରଭୁ କହିବଇଁ କେତେ
କେଶ ଧରି ଦୁଃଶାସନ ଆଣିଲାକ ମୋତେ ।

ସଭରେ ବିବସ୍ତ୍ର ପୁଣି କରିବ ପାମର
ତୁମ୍ଭେ ନ ରଖିଲେ ପ୍ରଭୁ ହେବ ମୁଁ ବାହାର ।
ଗୋବିନ୍ଦ ବୋଇଲେ ଛାଡ଼ ମନର ବେଦନା
ଏ ଘୁର କଥାକୁ କପାଁ କରୁଛ ଭାବନା ।
ଯେତେ ବସ୍ତ୍ର ଅଭ୍ୟାଗତେ କରିଅଛ ଦାନ
ରଖାଇଛୁ ଆଦିତ୍ୟଙ୍କଠାରେ ସେ ବସନ ।
ସମ୍ପଦକାଳେ ଯେ ଯାହା ଦାନ ଦେଇଥାଇ
ବିପଦ କାଳରେ କୋଟିଗୁଣେ ତ ମିଳଇ ।
ଆଦିତ୍ୟଙ୍କୁ ସୁମରଣା କର ଗୋ ସବେଗେ
ଶତଗୁଣ ହୋଇ ତାହା ମିଳିବ ଯେ ବେଗେ
ଆସ୍ଥାନ ତେଜିଣ ଭୀଷ୍ମ ଦ୍ରୋଣ ବେଗେ ଉଠି
ବିସ୍ମରନ୍ତି ଆଜ୍ଞା ନକ ଉଅନ୍ତି ଯୁଧିଷ୍ଠି ।
କଥିତ ଆଜ୍ଞା ପାଇଲେ ଏବେ ଭୀମସେନ
ଆଜ କି ବର୍ତ୍ତନ୍ତେ ଏଥେ କୌରବ ସଇନ ।
ବଦନ୍ତି ଗାଙ୍ଗେୟ ଶୁଣ ହେ ମାନଗୋବିନ୍ଦ
ଏତେ ଝିଙ୍ଗାସ୍ତୁ ନ ପୁଣ ହୁଅଇଟି ଦ୍ୱନ୍ଦ୍ୱ ।
ନ ପୁଣ ଯୁଧିଷ୍ଠିରେକ କହେ ମନ୍ଦବାଣୀ
କଠୋର ପ୍ରଳୟ ଜାଣ ହେବ ଏହିକ୍ଷଣି ।
ଛାଡ଼ିଦିଅ ପାଞ୍ଚାଳୀକି ନିଜପୁରେ ଯାଉ
ସବୁରି ଆପଦମାନ ବେଗେ ଶାନ୍ତ ହେଉ ।
ଦ୍ରୋଣ ବୋଇଲେ ନ ଧର ତୁ ମଉନବ୍ରତ
ପାଣ୍ଡବଙ୍କ କୋପେ ନାଶ ଯିବଟି ସମସ୍ତ ।
ପ୍ରତ୍ୟକ୍ଷ ଦେଖିଲୁ ଭୀମ କେଡ଼େ ମହାବୀର
କୁତୂହଳେ ମାଲବନେ ବଧକଲା ଜରା ।
ବକ ହିଡ଼ିମ୍ବକ ବଧି ବନବାସ କାଳେ
କୁମ୍ଭୀର ଦୈତ୍ୟ ମାଇଲା ଅଗାଧ ସଲିଳେ ।
ଧନାବର ବୁଲନ୍ତେ ସେ କର୍ମଇ ବୃତ୍ତାନ୍ତ
କୁମ୍ଭକ ଦୈତ୍ୟ ମାଇଲା ତ୍ରୈଲୋକ୍ୟ ବିଦିତ ।
ଅର୍ଜ୍ଜୁନର ମହିମା କୁ ଜାଣୁ ନା ପ୍ରତ୍ୟକ୍ଷେ
ଖାଣ୍ଡବବନ ଦହନ ଜିଣି ସହସ୍ରାକ୍ଷେ ।
ପାଣ୍ଡବାସୁରକୁ ହେଳେ ଯୁଦ୍ଧେ ପୁଣି ମାରି
ତୁମ୍ଭ ଆମ୍ଭ ସମସ୍ତଙ୍କୁ ଅଛି ସେହି ତାରି ।
ସମସ୍ତେ କହିଲେ ଯହୁଁ ପାଣ୍ଡବ ମହିମା
ଶୁଣିଣ ଦୁଷ୍ଟ କୌରବେ ଦେଖାନ୍ତି ଗାରିମା ।
ମହା ପ୍ରତାପୀ ରାଜା ନ ଶୁଣେ କାହା ବାଣୀ
ଆସ୍ଥାନ ତେଜି ଉଠିଣ ବୋଲେ କୁରୁମଣି ।

ରେ ଦୁର୍ଜ୍ଜନ ଦୁଷ୍ଟମନ୍ତ୍ରକ କପଟ ଅନ୍ତ ବୁଦ୍ଧି
କେତେ ତଞ୍ଜ ହୋଇନାହିଁ ଏ ପାଞ୍ଚାଳୀ ପାଇଁ
ପାଞ୍ଚାଳୀ ହୋଇଲେ ମୁହିଁ ଅଟେ ଯେ ଧର୍ମିଣୀ
ମୋତେ ଭିଗାଁସ ନ କର ବାବୁ କୃଷ୍ଣମଣି ।
ସଭାରେ ଥାଇ କହଇ ଦଜା କୁରୁପତି
ମିଥ୍ୟା କହଇ ଦ୍ରୌପଦୀ ଅଟଇ ଅସତୀ ।
ଫେଡ଼ି ପକାଅ ଏହାର ପିନ୍ଧିଲା ବସନ
ନିର୍ମଳ କରି ଦେଖିବା ଜାନୁ ଯଉବନ ।
ରାଜା ଆଜ୍ଞା ପାଇ ଉଠି ଗଲେ ସର୍ବ ଦୁଷ୍ଟେ
କେଶଭୁଜେ ଦ୍ରୌପଦୀକ ଧଇଲେ ପାପିଷ୍ଟେ
ପକାଇଛନ୍ତି ପିନ୍ଧିଲା ବସନକୁ ଫେଡ଼ି
ଦ୍ରୌପଦୀ ଦେଖିଲେ ଉଦେ ଗଗନକୁ ଚାହିଁ ।
ଈଶ୍ୱରନ୍ତ ଦେବା ମୋର ସ୍ୱାମୀ ଅପରାଧୀ
ଏ କଷଣୁ ନ ରଖିଲେ ନୋହିଲେ ବିରୋଧୀ ।
ଜୟ କମଳଲୋଚନ ଦେବ ଦିନକର
ଆଦି ଅନାଦି ନାଥ ତୁ ଗ୍ରହାଦେବା ବର ।
ଜୟ ନାରାୟଣ ତୁହି ଆଦି ସିଦ୍ଧିଦାତା
ତୁ ଯେ ଜାଣୁ ନାଥ ତୁ ତ ଅଟୁ ବିଧାତା
ଜଳ ସ୍ଥଳ ପାତାଳ ତୁ ଅନନ୍ତ ଆଦି
ପୃଥ୍ୱୀ ଆପ ତେଜ ବାୟୁ ମଧ୍ୟରେ ପ୍ରସିଦ୍ଧି ।
ଯୋଗେଶ୍ୱର ତୁ ଜଗତଜନଙ୍କର ବନ୍ଧୁ
ଅବିକାର ପୁରୁଷ ତୁ ଜ୍ୟୋତିରୂପ ଇନ୍ଦୁ ।
ଅକ୍ଷୟ ଅବ୍ୟୟ ନିରଞ୍ଜନ ନିରାକାର
ଭୟ ନିବାରଣ ନାଥ ଜୟ ଦିନକର ।
ତୁହି ଦେବ ଏ ସଂସାରେ ସର୍ବ ଜନ ସାକ୍ଷୀ
ଏ ଦ୍ୱାପର ଯୁଗରେ ମୁଁ ଅଟଇ ନମସ୍କି ।
ଦୁଃଖିଜନ ଉଦ୍ଧାରଣ ତିମିର ବାରଣ
ଜୟ ପ୍ରଭାକର ତୁହି ସଂସାର କାରଣ ।
ପରମାନନ୍ଦ ସ୍ୱାମି ତୁ ପର ହିତକାରୀ
ଭକତ ଜନ ପ୍ରଣମେ ଚରଣେ ତୋହର ।
ଷୀରସିନ୍ଧୁକୂଳେ ଯେ ଚନ୍ଦ୍ରଭାଗା ଅର୍କକ୍ଷେତ୍ରେ
ଅର୍କଦେବ୍ୟ ବଡ଼ ହେଲୁ ନାଥ ଜଗତେ ।
ବାରନାଥ ଭୁବନରେ ତୋ ଅଟେ ଉତ୍ପତ୍ତି
ସର୍ବଜ୍ଞ ପୁରୁଷ ତୁହି ସଦାନନ୍ଦ ମତି ।
ନମୋ ନମୋ ହେ ଦରିଦ୍ରନାରାୟଣ ଦେବ
ନମୋ ବ୍ରହ୍ମାଣ୍ଡଧାରଣ ନମୋ ସଦାଶିବ ।

ନମୋ ତରଣି ଈଶ୍ୱର ବିଶ୍ୱାଧିଦେବତା
ସଂସାର ବଳିଭ ନାଥ ସର୍ବଜ୍ଞ ତୁ ଜ୍ଞାତା ।
ତୁ ଦେବ ଶମ୍ଭୁଙ୍କ ଜନ ଭୁବନ ଉଦ୍ଧାର
ମନ ମୋହନ ତୁ ସର୍ବଜନ ଅଧିବାସ ।
ମମ କଷ୍ଟ ଉଦ୍ଧାରଣ କର ହେ ଈଶ୍ୱର
ପରମାନନ୍ଦ ତୁ ପର ଦୁଃଖରେ କାତର ।
ସକଳ ଦେବଙ୍କର ତୁ ଅଟୁ ଦିବ୍ୟ ଚକ୍ଷୁ
ପାପ ପୁଣ୍ୟ ଆଚରଣ ତୁ ସମସ୍ତ ଦେଖୁ ।
ଅନୁଭବରେ ବତିଶକୋଟି ତୋ ସକଳ
ନଦୀମ ଅଗ୍ନିରୁ ତୋର ତେଜ ଅନର୍ଗଳ ।
ଚଉଷଠି ଅକ୍ଷର ତୋ ମନ୍ତ୍ର ଭଗବାନ
ସଂସାର ତରାଇବେ ତୁହି ଜଗତ ମୋହନ ।
ନ ଜାଣି ବକ୍ଷ ନନ୍ଦନ ତୋତେ କି ପ୍ରସବ
ତୋହର ଚଇତଲେ ଏ ସଂସାର ସେବ ।
ସଞ୍ଜ୍ଞା ହୋଇଲେ ତୋ ତେଜ ଅଟେ ଅସହନ
ତୋ ଭୟରେ ସ୍ୱାମୀ ତେଣୁ ହୋଇଲେ ତୋପନ
ବସ୍ତ୍ରର ମଞ୍ଜୁରେ ସଞ୍ଜ୍ଞା ନ ଚାହିଁଲା
ତୋତେ ଗ୍ରହିଯାଇ ସେହି ରୂପତେ ରହିଲା ।
ଆପେ ତୁ ପୁଣ ବହିର କଲୁ ଅବମୂଳ
ତେଣୁ ସଞ୍ଜ୍ଞାକୁ ରଖିଲୁ କଶ୍ୟପର ବାଳ ।
ଆମ୍ଭଙ୍କୁ ନନ୍ଦିଲା ଏହି ସ୍ତ୍ରିୟା ଯେ ଦୁର୍ବୁଦ୍ଧି
ଆମ୍ଭର ରୂପ ଦେଖିଲେ ଘୋଟେ କାମବ୍ୟାଧି
ଆମ୍ଭେ ସେହି ବଳେ ଯେବେ ହେଉଁ ଉନମତ୍ତ
ସେ ବଳେ ଯେ ନ ଗଣନ୍ତି ସ୍ୱାମୀଙ୍କୁ ବନିତା
ଏତେ ବୋଲି ଦେଖାଇଲ ଦେବ ନିଜରୂପ
ବ୍ରହ୍ମାଣ୍ଡେ ଲାଗିଲା ଦେବ ଯାଇ ହେ ସ୍ୱରୂପ ।
ଅନନ୍ତ ମୂରତି ଦେଖି ନ ପାରିଲା ସହି
ଉଡ଼ିଗଲେ ଯେ ଅଧାସ୍ଥାନେ ହେଉଥିଲେ ବହି ।
ତେଜ ସହି ନ ପାରି ସେ ପଳାଇଲେ ଡରେ
ଅଶ୍ୱରୂପ ଘୋଟି ହେଲେ ଚୁ ହୋଇଲେ ଚଉରରେ
ଶଶିବନ୍ଧୁ ଦେଖା ଗ୍ରହା ଜାତ କରି ଗଲ
ଅନେକ ମହୌଷଧିରେ ପ୍ରକୃତି ମୋହିଲ ।
ତୁ ନାରାୟଣ ବୋଲି ତା ଭୁଲେ ଅଭିଳାଷ
ନବକଳ୍ପ ପରିଯନ୍ତେ କୁଳ ଗୃହବାସ ।
ନାଶକାର ଭୁଲେ ଯେହୁ କଲ ସେହୁ କଳ
ଘରେ ଶାପ ଦେଲ ବାମପାଦୁଁ ପୂଯ ଗଲ ।

ଯମର ଚରଣେ ଯନ୍ତ୍ର ହେଲ କୁଷ୍ଠବ୍ୟାଧି
ଧ୍ୟାନରେ ଜାଣିଲୁ ଦେବ ତାର ମହୌଷଧି ।
ଛାୟାଙ୍କୁ ତୁ ତେଜ୍ୟାକର ଗଲୁ ହୋ ବରଷ
ଅଶ୍ୱରୂପ ହୋଇ ସଞ୍ଜ୍ଞା ଗର୍ଭେ ତେଜ ସଞ୍ଚ ।
ଅଶ୍ୱରୂପେ ତୁ ଶୃଙ୍ଗାର କଲୁ ଯେତେ ଇଚ୍ଛା
ଅଶ୍ୱିନୀକୁମାର ଜାତ ହେଲେ ଦେବବୈଦ୍ୟା ।
ନଜ କାୟା ଚଢ଼ାଇଲୁ କଳକୁନେ ବସି
ସହସ୍ର କରଣ ସହ୍ୟ କଲ ଶୁଭ୍ରକେଶୀ ।
ମେଷ ମାସରେ ତୋହର ଷାଠିଏ କିରଣ
ବୃଷମାସରେ ସତୁରି କିରଣ ହୋ ପୁଣ ।
ମିଥୁନେ ଅଶୀ କିରଣ ପ୍ରକାଶ ହୁଅଇ
କକଡ଼ା ମାସେ ତରଣ କିରଣ ଖସଇ ।
ସିଂହରେ ପ୍ରକାଶ ହୁଏ କିରଣ ହୋ ଶତ
କନ୍ୟାମାସେ ଅର୍ଦ୍ଧଶତ ରଶ୍ମି ହୁଏ ଜାତ ।
ଷାଠିଏ ଅଂଶ କିରଣ ବହି ଦେବ ତୁଳେ
ବୃଶ୍ଚିରେ ଷୋଡ଼ଶ ଅଂଶ ଗଗନମଣ୍ଡଳେ ।
ଧନୁରେ ଶତସ୍ପଳଶ ଅଂଶେ ଭ୍ରମ ନାଶୁ
ଶତ କିରଣ ଅଂଶ ହୋ ମକରେ ପ୍ରକାଶୁ ।
କୁମ୍ଭେ ଷାଠିଏ କିରଣ ମୀନରେ ସ୍ପଳଶ
ଏମନ୍ତେ କିରଣେ ଅଂଶ ହୋ ଅଙ୍ଗେ ପ୍ରକାଶ
ଯାଗଯଜ୍ଞ ଦେବପୂଜା ଅର୍ଚ୍ଚଣ ହୋ ଯୋଗୀ
ସାଧୁଜନ ଉଦ୍ଧାରଣ ତୁ ପରମ ଯୋଗୀ ।
ମୋହର ଚରିତ ନାଥ ଜାଣୁ ନା କି ପୂର୍ବେ
ଏ ବେଳକୁ ଏ ସଙ୍କଟୁ ଉଦ୍ଧାର ତୁ ଏବେ ।
ଶରୀର ବିକାଶି ନାଥ ଅନୁବ୍ରତେ ଭ୍ରମୁ
ମୋତେ ଦୂଷିତା କରିବେ ପାମରେ ହୋ ସ୍ତମ୍ଭ
ଯଦ୍ୟପି ନାଥ ତୁ ଅଟୁ ପରମ ଦେବତା
ଅନାଦି ଜନର ତୁହି ଯେତେ ଉଦ୍ଧାରନ୍ତା ।
ଅନାଦି ଯୁଗାଦି ନାଥ ତୁ ପରମବନ୍ଧୁ
ଏକ କନ୍ୟା ଏକ ଯୁଗ ତୁ ଅଜପା ସାଧୁ ।
ସ୍ୱାମି ଭଲେ ଥାଉ ବେନ ଧନୁ ସୁଷୁମ୍ନା
ମୋର ଶରୀରେ ମେଖଳା ହୋଇ ସେହି ସିନା
ସବଦ, ଜଗତନାଥ ମୁଁ ତୋର ଶରଣ
ସେବାଜାଣି ଦୟାକର ସୂର୍ଯ୍ୟ ନାରାୟଣ ।
ଆଦି ସମ୍ଭବ ଅନନ୍ତ କୋଟି ହୋ କିରଣ
କାଳେ ରଖିଲୁ ହୋ ପ୍ରିୟା ହେଲ ତା କାରଣ
ମୂର୍ତ୍ତି ଲଭିଲ ହେ ସ୍ୱାମି ମନୁଷ୍ୟର ଯୋଗ
ତୁହି ସିନା ସାକ୍ଷୀ ପ୍ରାତଃ ସନ୍ଧ୍ୟାକାଳ ଦିନ ।
ଚେତନା ପୁରୁଷ ତୋର ଜାତ ଅନ୍ତ ନାହିଁ
ମୋ ବଚନ ଘେନ ଦେବ କଲ୍ପ କର ଥାଇ ।
ଯୋଗେଶ୍ୱର ତୁ ସଂସାରଜନ ପ୍ରାଣନାଥ
ଏ ଆପଦକାଳେ ଦେବେ ସାହା ହୁଅ ନାଥ
ତବ ଲକ୍ଷ୍ୟେ ଥାଇ ନାଥ ନିତ୍ୟ ତୋତେ ସେବ
କହନ୍ତି ଶାରଳା ଦାସ ଶୂଦ୍ରମୁନି କବି ।

---

## ଦ୍ରୌପଦୀଙ୍କ ବସ୍ତ୍ରହରଣ ଓ ଧୃତରାଷ୍ଟ୍ରଙ୍କଠାରୁ ବରପ୍ରାପ୍ତ

ଶ୍ଳୋକ

ହେ ନାଥ ନାଥ ଯଦୁନାଥ କୃପାକଟାକ୍ଷ
ଲକ୍ଷ୍ମୀପତେ ଯଦୁପତେ କମଳାୟତାକ୍ଷ ।
ଶୀଘ୍ରଂ କଦେହି କରୁଣା ନୃପତେଃ ସଭାୟାଂ
ଦୁଃଶାସନୋ ବସନଂ କୁରୁତେ ହି ମାଂତ

ଗୀତ

ବୈବସ୍ୱତ ମନୁଙ୍କୁ ଯେ କହନ୍ତି ଅଗସ୍ତି
ଦ୍ରୌପଦୀ କଲେ ଅନେକ ହରିଙ୍କୁ ସ୍ତୁତି ।
ପାଞ୍ଚାଳୀର ସ୍ତୁତି ଶୁଣି କମଳ ଲୋଚନ
ଗଗନ ସ୍ଥୁଳଙ୍ଗ ସ୍ୱାମୀ ହୋଇଲେ ପ୍ରସନ୍ନ ।
ଶୂନ୍ୟ ଶବଦ କରନ୍ତି ଦେବ ଅଂଶୁମାଳୀ
ବୋଇଲେ ଅଭୟବର ମାଗିଲେ ପାଞ୍ଚାଳୀ ।
କରପତ୍ର ଯୋଡ଼ି ତାଙ୍କୁ କହେ ଯାଜ୍ଞସେନୀ
ଦୁଃଶାସନ ପାମର ତ ଅଇଲାକ ଘେନି ।
ମୋ କେଶ ଧରି ଆଣିଲା କୋପାନଳେ ଜଳେ
ପାଞ୍ଚ ଯୋଜନ ମୋ ପାଦ ନ ପଡ଼ିଲା ତଳେ ।
ଆବର ପ୍ରପଞ୍ଚ ମୋତେ କରେ ବିବସନା
ଜାନୁ ଦେଖନ୍ତେ ନିରାଶ ହୋଇବି ମୁଁ ସିନା
ପ୍ରସନ୍ନ ହୋଇବା ଦେବ ଗଗନ ବିହାରି
ଯେମନ୍ତେ ପାମର ଅଙ୍ଗ ଦେଖି ତ ନ ପାରି ।
ଏଥିକୁ ହେଳା କରିବୁ ଯେବେ ଦେବ ରବି
ଉଦୟ କଲେ ଜୀବନ କେବେ ନ ରଖିବି ।
ଦ୍ରୌପଦୀ କଷ୍ଟ ବଚନ ବାଣୀ ଶୁଣି ସୁର
ରଖିବି ରଖିବି ଦେଖି ନ ହୁଅ କାତର ।
ଛାୟା ମାୟା ଯୁବତୀଙ୍କୁ ଡାକ ଦିନମଣି
ବୋଇଲେ କୁରୁସଭାକୁ ଯିବ ଏହିକ୍ଷଣି ।

ବେଦକୋଟି ଯେ ପଟନ ବସ୍ତ୍ର ଭୁଲେ ସେନ
ଦ୍ରୁପଦନନ୍ଦନୀ ଅଙ୍ଗ ବେଢ଼ାଇବ ଘେନ ।
ଏସନକ ଆଜ୍ଞା ଯହୁଁ ଦେଲେ ମାରକଣ୍ଡ
ବୋଢ଼ାନ୍ତ ଦ୍ରୌପଦୀ ଅଙ୍ଗେ ନେଇ ବସ୍ତ୍ର ଖଣ୍ଡ
ଦୁଃଶାସନ ଦୁର୍ଜ୍ଜୟ ଏ ଦୁହେଁ ବସ୍ତ୍ର କାଢ଼ି
ଘୁମୁରେ ପକାନ୍ତ କୂଡ଼ ହେଉଅଛି ଗଡ଼ ।
କୋଟିଏ ବସ୍ତ୍ର ଏମନ୍ତେ ସମ୍ପୂର୍ଣ୍ଣ ହୋଇଲା
ମୂର୍ଖ ପାମରଙ୍କ ମନ ଶାନ୍ତି ନୋହିଲା ।
କଠୋର ଦେଖି ଈଶ୍ୱର ଦେବ ନାରାୟଣ
କୋଟିଏକ ବସ୍ତ୍ର ପୃଷ୍ଠି ଦେଲେ ତତକ୍ଷଣ ।
ଘୃଷ୍ଟା ମାୟାରୂପେ ଯାଇ ସେ ଦେବ ଯୁବତୀ
ପାଞ୍ଚାଳୀ ଶରୀରେ ବସ୍ତ୍ର ଗୁଡ଼ାଇ ଦିଅନ୍ତି ।
ପୁଣ ପୁଣ ପକାନ୍ତ ସେ ବସ୍ତ୍ର ଟାଣିଟାଣି
ବେଦକୋଟି ବସ୍ତ୍ର କାଢ଼ି ଶାନ୍ତ ସେ ନ ହୋଇ
ଅନାଦିପୁରୁଷ ଯହୁଁ ପ୍ରସନ୍ନ ହୋଇଲା
ପୃଷ୍ଠି କୋଟିଏକ ବସ୍ତ୍ର ଶରୀରେ ଲଗିଲା ।
ପୁଣ ସେ କୋଟିଏ ବସ୍ତ୍ର ପକାଇଲେ କାଢ଼ି
ସ୍ତବଳୁ ହୋଇ ବସ୍ତ୍ର ଯାଉଛନ୍ତି ପଡ଼ି ।
କଉରବେ ନ ଜାଣନ୍ତି ତ ମୂର୍ଖ ସ୍ୱଭାବ
ପୃଷ୍ଠି କୋଟି ୧କ ବସ୍ତ୍ର ଦେଲେ ସୂର୍ଯ୍ୟଦେବ ।
ଶୂନ୍ୟରୁ ଲାଗଇ ଆସି ଦ୍ରୌପଦୀର କାୟେ
କାଢ଼ି ପକାନ୍ତି ତାହାକୁ ଗାନ୍ଧାରୀ ୧ ପୋଏ ।
ଅଶେଷ ବସ୍ତ୍ର ଦିଅନ୍ତି କମଳ ଲୋଚନ
ତାହାକୁହିଁ ଦୃଶ୍ୟ ନୁହେଁ ମୂଢ଼ ମୂର୍ଖ ଜନ ।
ଘୃଷ୍ଟା ମାୟା ଦେବ କନ୍ୟା ଦ୍ରୌପଦୀଙ୍କୁ ପୋଟି
ବସ୍ତ୍ର ପିନ୍ଧାନ୍ତେ କରନ୍ତେ ପଞ୍ଚାବନ କୋଟି ।
ତଥାପି ଗୋଚର ନାହିଁ ନ ବୁଝି କୌରବେ
ଦେଖିବାକୁ ଜାନୁସ୍ଥଳ ଧରିଲେ କେଉଁଭାବେ ।
ଲକ୍ଷ ଲକ୍ଷ ବସ୍ତ୍ର ଅଙ୍ଗୁ ପକାନ୍ତି ସେ କାଢ଼ି
ପୁଣ ପୁଣ ପାଞ୍ଚାଳୀର ଶରୀର ଉଘାଡ଼ି ।
ଅସମ୍ଭବ ଦେଖି ଧୃଷ୍ଟ ବୋଲନ୍ତି କୌରବେ
ବାବୁ ଅଲକ୍ଷ ହେଲ କି ନ ବୁଝୁ ଏ ସବେ ।
ପକାଇଲଣି ତ ବସ୍ତ୍ର କୋଟି କୋଟି କାଢ଼ି
ପୁଣ ପୁଣ ପାଞ୍ଚାଳୀର ଶରୀର ଉଘାଡ଼ି ।
ବାବୁ ଅନ୍ତଃପୁରେ ଥାନ୍ତି ସୁନ୍ଦର ଭାରିଯା
କେତେ ବସ୍ତ୍ର ପିନ୍ଧିଥାନ୍ତି କହ ତୁ ତ ରଜା ।

ଅନାଦି ମାହେଶ୍ୱରୀଙ୍କ କେତେହେଁ ଚିନ୍ତାରୁ
ଲୋପାନନେ କହିଲେ ତୁ ହେବୁ ଧୂଳିପାଂଶୁ
କି ଲକ୍ଷଣେ ଜାତ ହେଲୁ ତୁ ମାନଗୋବିନ୍ଦ
ପିତାର ପ୍ରାପ୍ତ ହୋଇଲୁ କି ଜାତି ଅନ୍ଧ ।
ପରମ ମାହେଶ୍ୱରୀ ସେ ସ୍ତ୍ରୀ ଶିବଲୋକୋତ୍ତମ
ତାର ଜାନୁ ଦେଖିବାକୁ କୁହ କରେ କ୍ଷମ ।
ପଚାରିଲେ ବୈବସ୍ୱତ ମନୁ ଅଗସ୍ତ୍ୟଙ୍କ
ବଡ଼ ଆଚମ୍ବିତ କଥା କହିଲ ତାହାଙ୍କ ।
ଜନକର ନାଥଙ୍କୁ କି ସେବିଥିଲେପୂର୍ବେ
କେମନ୍ତେ ଛପନକୋଟି ବସ୍ତ୍ର ଦେଲେ ଏବେ
ଏଥିର ଚରିତ ମୋତେ କହିବା ବିଶେଷି
ମନୁ ଭ୍ରାନ୍ତି ଫିଟୁ ମୋର ଅଗସ୍ତି ମହର୍ଷି ।
କୁମ୍ଭଋଷି ନନ୍ଦନ ଯେ କହନ୍ତି ଘୃଷ୍ଟାବେ
ଈଶ୍ୱରର ଦ୍ରୌପଦୀର ପ୍ରୀତି ଅଛି ପୂର୍ବେ ।
ସତ୍ୟଯୁଗର ଚରିତ ଶୁଣ ମହାତ୍ମା
ସୁପ୍ରସିଦ୍ଧ ନାମେ ସତ୍ୟଯୁଗର ବାରତା ।
ସ୍ୱର ଅବତାରେ ଏହି ଦ୍ରୁପଦ ଦୁହିତା
ଭାର ନିବାରଣ ଅର୍ଥେ ଜାତ ଏହି ପୃଥ୍ୱୀ ।
ଆଦି ଅବତାରେ ଏହୁ ଅଟଇ କେତୁକା
ଏକବଳା ପାର୍ବତୀ ଏ ଅଟେ ଜାଣ ଏକା ।
ନାରାୟଣ ଜାତକଲେ ପଞ୍ଚଦଶ ବ୍ରହ୍ମା
ବାହୁଡ଼ି ଯୋଗନିଦ୍ରାକୁ ଗଲେ ମହାତ୍ମା ।
ଏହି କେତୁକା ଚଉଦ ବ୍ରହ୍ମାଙ୍କୁ ଖାଇଲା
ଶୂଦ୍ରକ ନାମରେ ବ୍ରହ୍ମା ଏକାକେ ରହିଲା ।
ହସ୍ତିନାପୁରେ ଏ ଜନ୍ମିତ ଘରେ ଉତପତ୍ତି
ନାମ ବହିଲା ଏ ଏକବଳା ପାର୍ବତୀ ।
ପାଟଳବର୍ଣ୍ଣ ଯେ ପଞ୍ଚାବନ କୋଟି ଶାଢ଼ୀ
ଜଳପେ ବସିଲା ଦେବୀ ଗୃହବାସ ଛାଡ଼ି ।
ବଶିଷ୍ଠର ନନ୍ଦନୀ ସଂଜ୍ଞା ଆଦିତ୍ୟ ଭାରିଯା
ତାର ଗର୍ଭ ଉପୁଜିଲେ ଶନି ଯମରଜା ।
କଶ୍ୟପ ଦୁହିତା ଦେବ କାଳୀ ଯେ ଜନନୀ
ଯମକୁ ପ୍ରଦାନ କରାଇଲେ ଅଂଶୁମାଳୀ ।
ସୋମଦାସ ବୋଲି ଏକ ଗନ୍ଧର୍ବ ନୃପତି
ଲୋହିତା ନାମେ ଦୁହିତା ତାର ଉତପତ୍ତି ।
ଆଦିତ୍ୟ ବୋଇଲେ ସୋମଦାସ ଗନ୍ଧର୍ବଙ୍କୁ
ତୋ ଦୁହିତା ଗୋଟି ଦେବୁ ଆମ୍ଭର ଶନିକୁ ।

ଉଦ୍ଧାରକର ବଚନ ସେ ନ ପାଶଲେ ଶୁଣି
ବୋଇଲା ଦେବଇଁ ସତ୍ୟ କନ୍ୟା କୃଷ୍ଣ ଲଗି
ସ୍ୱାମୀ ଶ୍ରବଣର ଦୃଷ୍ଟରେ ନ ଗ୍ରଥ ହନ୍ତ ଦେହି
ଚକ୍ଷୁରେ କ ବୁଦ୍ଧି ଦେଇ କରବୁ ବା କୃଷ୍ଣ ।
ରଙ୍ଗବସ୍ତ୍ର ଶଙ୍କଷ୍ଟର ଦୃଷ୍ଟିକୁ ଯେ ବସ୍ତି
ରଙ୍ଗବସ୍ତ୍ର ଦେବୁ ମୋତେ ପଞ୍ଚାବନ କୋଟି ।
ସୂର୍ଯ୍ୟ କହିଲେକ ଏକବଳା ପାର୍ବତୀକ
ପଞ୍ଚାବନ କୋଟି ରଙ୍ଗବସ୍ତ୍ର ଅଛୁ ଯାକ ।
ପୁତ୍ରକୁ ଭକ୍ଷ କରବ ଭଅ ମହାମାୟୀ
ତୋହର ବସ୍ତ୍ର ମୁଁ ତୋତେ ଦେବ ବାହୁଡ଼ାଇ
ଏକବଳା ବୋଇଲେ କୁ ଏବେ ନେଇଥିବୁ
ଦ୍ୱାପର ଯୁଗେ ମାଗିଲେ ମୋତେଦେବେଗଦେବୁ
କୋଟିଏ ବସ୍ତ୍ର ମୋହର କଳନର ହୋଇ
ନପନ କୋଟି ବସ୍ତ୍ର ତୁ ଦେବୁ ତୋ ବଢ଼ାଇ
ମୋର ବଷନେ ନ ଦେବୁ ଯେବେ ଅଂଶୁମାଳ
ମୋହର କୋପେ ତୋହର ଦେହ ଯିବ ଜଳ
ଶୁଣ ଆହେ ମନୁ ପୂର୍ବେ ଏସନକ କଥା
ସତ୍ୟକର ବସ୍ତ୍ର ନେଲେ ଆଦିତ୍ୟ ଦେବତା ।
ମ୍ଳେଚ୍ଛତାକୁ ଘୋଡାଇଲେ ନେଇ ତତକାଳେ
ରଙ୍ଗବସ୍ତ୍ର ଦେଖି ଶାନ୍ତ ହେଲେ ଦେବନତ୍ତୋଳେ
ଭକ୍ଷ ଶେଷକର ସୋମଦାସ ସମ୍ପ୍ରତି
ସେ ପାଟଳ ବସ୍ତ୍ର ଦେବସ୍ତ୍ରୀଙ୍କି ଭଅନ୍ତି ।
ଯଜ୍ଞ ମାଗିଲେ ସେଭାଳେ ଦେବସ୍ତ୍ରୀମାନଙ୍କୁ
ଏ ପାଟଳ ବସ୍ତ୍ର ଭଅ ସମସ୍ତେ ଆମ୍ଭଙ୍କୁ ।
ଶନକୁ ଜିଜ୍ଞାସ ମୋର ପଡ଼ିକ ଯେ କାଳେ
ତାହା ଦେବ ଦୁଃଶାସନ କଟାଳର ବେଳେ ।
ସେହୁ ଦ୍ରୌପଦୀର କୋପେ ନ ବର୍ତ୍ତିବ ମୁଣ୍ଡି
ଜାଣି ଦେବସ୍ତ୍ରୀମାନେ ଦେଲେ ବାହୁଡ଼ାଇ ।
ପାଟଳ ବର୍ଣ୍ଣର ପଞ୍ଚାବନ କୋଟି ବସ୍ତ୍ର
ଯତନେ ସାଇତ ଥିଲେ ଜନକର ନାଥ ।
ପ୍ରଥମ ଅବତାର ଏ କେଳୁକା ମୂରତି
ଦ୍ୱିତୀୟ ଅବତାର ଏ ହୋଇଲେ ପାର୍ବତୀ ।
ଯାହା ଆଜ୍ଞା ଦେଇଥିଲେ ସେହୁ ଜନନାଥ
ସେ ଶୂଦ୍ରକ ବ୍ରହ୍ମା ଦୁଃଶାସନ ରୂପେ ଜାତ ।
ନାରାୟଣ ଆଜ୍ଞା ଯାହା ଦେଇଛନ୍ତି ପୂର୍ବେ
ଦ୍ରୌପଦୀକ ଜିଜ୍ଞାସ ସେ କଲ୍ପ ପୁଣି ଏବେ ।

ଦୁଃଶାର ରକ୍ତ ଛନ୍ଦିବ ଦ୍ରୁପଦ ଦୁହିତା
ସତ୍ୟଯୁଗେ ସଞ୍ଚିଅଛୁ ମଦା ମହାସତ୍ତା ।
ଦ୍ରୌପଦୀଙ୍କୁ ଦେଲେ ଆଣି ସେ ବସ୍ତ୍ର ଭରଣି
ପୂର୍ବରୁ ସେ ପଞ୍ଚାବନ କୋଟି ଥିଲେ ସଞ୍ଚି ।
ଶୁଣିଣ ସନ୍ତୋଷ ହେଲେ ବୈବସ୍ୱତ ମନୁ
ଅନେକ ସ୍ତୁତି ଦେଲେ ସେ ଭେଦା ତାହା ଗଣୁ
ବଦନ୍ତ ଅଗସ୍ତି ଶୁଣ ମନୁ ବ୍ରହ୍ମବେତ୍ତା
କୃଷ୍ଣ ଯାହା ପୁଛାକଲୁ ସପ୍ତସର କଥା ।
ଅନେକ ଜିଜ୍ଞାସ ଯହୁଁ କଲେ ଦୁଷ୍ଟମତି
କାଳାନଳ ଜାଣି ତ୍ରଶ ପାଣ୍ଡବ ମୂରତି ।
ମହାବାତେ ଯେହ୍ନେ କମ୍ପେ ପୃଥ୍ୱୀ ନବଖଣ୍ଡ
ଭୀମସେନର ଡାକରେ କମ୍ପେ ମେରୁଦଣ୍ଡ ।
ଅର୍ଜ୍ଜୁନ ନକୁଳ ସହଦେବ ମହାକୋପେ
ଜନ ଗହଳେ ଗର୍ଜ୍ଜନ୍ତି ଯେହ୍ନେ କାଳସର୍ପେ ।
ଅଧର ସ୍ପୃଷ୍ଟ ଭୀମର ମହାକୋପ ଦୃଷ୍ଟି
କାକୁ ଶାନ୍ତ ହୁଅ ବୋଲି ବୋଲନ୍ତି ଯୁଧିଷ୍ଠି ।
ସହଦେବ ବୋଲେ ଦେବ ନୁହଇ ଏ ବେଳ
ଛପଦ କର୍ମ ଆମ୍ଭଙ୍କୁ କରୁଛି କଟାଳ ।
ଭୀମସେନ ପାଦତଳେ ସହଦେବ ନମି
ସହିଲେ ପରମ ପଦ କୋପ ଛାଡ଼ି ସ୍ୱାମି ।
ସହଦେବର ବଚନେ ଭୀମ କୋପ ଶାନ୍ତ
ଅଶେଷ ବସ୍ତ୍ରକୁ ଦେଖି କୋପିଲେ ଦ୍ରୌପଦୀ ।
ପଞ୍ଚାବନକୋଟି ବସ୍ତ୍ର ସହିଲ ଯୁକତେ
ନବଲକ୍ଷ ବସ୍ତ୍ର କାଢ଼ିଦେଲେ ଦେବଭ୍ରାତେ ।
ନବସହସ୍ର ବସନ ଶୂନ୍ୟେ ଯାନ୍ତି ଉଡ଼ି
ବାହୁଡ଼ି ଆସି ଦ୍ରୌପଦୀ ଦେହରେ ଜଡ଼ି ।
ବୋଇଲେ ସେ ଭୀଷ୍ମ ଦ୍ରୋଣ ବହୁତ ଜିଜ୍ଞାସି
ତଥାପି ଚେତନା ଦେହେ ନ ଦଶଇ ଆସି ।
ମହାକଠୋର ଭେକ୍ଷଣ ସେ ଦେଖା ପାଞ୍ଚାଳୀ
ହସ୍ତିନାପୁରକୁ ଚାହିଁଦେଲେ ଚକ୍ଷୁ ମେଲି ।
ଦ୍ରୌପଦୀ ଦେଖା ଚାହିଁଲେ ଯହୁଁ କୋପାନଳେ
କୋପଅଗ୍ନି ଜାତହେଲା ପୁରନାରୀମେଳେ ।
ଅକ୍ରୂତେ ଦୁଃଶାସନ ପଡ଼ିଲା ଭଜ
ତୋହର ଘରୁ ଅନଳ ଉଠିଲା ଗରଜି ।
ମ୍ଳେଚ୍ଛତ ବର୍ଣ୍ଣ ପିଙ୍ଗଳ ମହାତେଜ ଜ୍ୱାଳା
ଅନ୍ତଃପୁରୁ କାଢ଼ ଉଦ୍ୟେ ପଳାନ୍ତ ଅବଳା ।

ରଜାର ନଗର ଦ୍ୱାରେ ଲାଗିଲାକ ଅଗ୍ନି
କାରୁଣ୍ୟ ବାଣୀ ଶୁଭଇ ସ୍ୱରେ ଘୋରଧ୍ୱନି ।
ଭୀଷ୍ମ ବୋଇଲେ ରଜା ନ କଲୁ ମୋର ବୋଲ
ମହତ ଜନ ହିଂସାରେ ନାହିଁ ତୋର ଭଲ ।
ସେ ମହାସତୀ ଯଦ୍ୟପି କ୍ଷମାନ୍ତା ସଭ୍ୟକୁ
ସମସ୍ତେ ମରନ୍ତ ନାହିଁ ଦେଖନ୍ତି ଆମ୍ଭଙ୍କୁ ।
ଛୁଡ ଘଡ ଦୁଃଶାସନ ଦ୍ରୌପଦୀର ବାଳ
ତଥାପି ଆକର୍ଷି ନାଇ ଧଇଛି ଚଣ୍ଡାଳ ।
କ୍ରୋଧ ଅନଳେ ଗୁଣ୍ଠିଲେ ଯହୁଁ ଯାଜ୍ଞସେନୀ
ପଡ଼ିଲେ ଦୁର୍ଜ୍ଜୟ ଦୁଃଶା ବଜ୍ରପାତ ଜାଣି ।
ପାଷାଣ ପାବଚ୍ଛେ ପଡ଼ି ମୁଣ୍ଡ ଗଲା ଫାଟି
ଅଚେତନରେ ରୁଧିର ବହେ ଫାଟିଫୁଟି ।
ଆସ୍ଥାନ ଉପରୁ ତଳପଡେ କୁରୁପତି
ଶଲ୍ୟ କର୍ଣ୍ଣ ଶକୁନି ଯେ ମୋହରୁ ନିବର୍ତ୍ତି ।
ଦୁର୍ଯ୍ୟୋଧନଙ୍କୁ ବୋଇଲେ ଭୀଷ୍ମ ଦ୍ରୋଣ ଧରି
ଗଲ ଆମ୍ଭ ପ୍ରାପ୍ତ ହେଲା ନାହିଁ ଯେ କାହାରି
ନଗର ଭିତରେ ତାର ଯେତେ ପ୍ରଜ ବାଳୀ
ଅଭିତେ ଶୁଭିଲା ରୋଳ ପଡ଼ିଲା ବୋବାଳ ।
ଅଗ୍ନି ଦେଖି ମହାଭୟେ ଭାନୁମତୀ ରାଣୀ
ସତ୍ତ୍ୱ ନାହାର ଚଳାଇ ଆସଇ ତରୁଣୀ ।
ସଙ୍ଗରେ ଅନନ୍ତ ତାର ଅନେକତ ଯାଆ
ଦାସୀ ପରିବାରୀ କେତେ କହିବ ମୁଁ ତାହା ।
ଅନଳ ଆସଇ ତାଙ୍କ ପଛରେ ଗୋଡ଼ାଇ
ଲୁଗାରେ ଲାଗନ୍ତେ ତନେ ପକାଇଲେ ଫେଇ
ଉଲଗ୍ନ ହୋଇ ସଭାରେ ମିଳିଲେକ ଆସି
ନାସାରେ ହାତ ଦେଇଣ ଭୀଷ୍ମ ଦ୍ରୋଣ ହସି ।
ଲଜ୍ଜାରେ ବଦନ ଯେତ ଢାଙ୍କିଲେ ନୃପତି
ବସ୍ତ୍ର ଖଣ୍ଡେ ଖଣ୍ଡି ଦେଲେ ପିନ୍ଧିଲେ ଯୁବତୀ ।
ବସ୍ତ୍ର କରନ୍ତି ତହିଁ ସଭଜନେ ବସି
ଉଲଗ୍ନ ଯେ କରୁଥିଲା ସତୀଙ୍କୁ ହିଂସି ।
ଆପଣା ଭରଯା ହେଲା ସଭାରେ ଉଲଗ୍ନ
ପରକୁ ଯେ ମନ୍ଦ ଚିନ୍ତେ ଆପେ କରେ ଭୋଗ
ସର୍ବଦା ହିଁ ସାହାପର ଯାହାକୁ ଶ୍ରୀହରି
ଏ ଦୁଷ୍ଟମାନେ ତାହାର ପାରିବେ କି କରି ।
କଉରବ ଷଣ୍ଢ ଏହି ସାର ଦୁଃଶାସନ
ଦୁର୍ଜ୍ଜୟଙ୍କୁ ସଙ୍ଗେ ସେନ କାଢ଼ିଲା ବସନ ।

ଦୁଇ ପ୍ରହର ହୋଇଲା ନ ପାରିଲେ କାଢି
ଦୃହେଁ ପଡ଼ିଲେକି ଶ୍ରମ ପାଇ ମୁହଁ ମାଡି ।
କୋଟି କୋଟି ବସ୍ତ୍ର କାଢ଼ି କରିଛନ୍ତି ଗୁଡ଼
ଶ୍ରୀହରିର ମାୟା କାହିଁ ଜାଣିବେ ଏ ମୂଢ଼ ।
ସଞ୍ଜୟ ବୋଇଲେ ଆହେ ଶୁଣ ଧୃତରାଷ୍ଟ୍ର
ନପାଁ ନ ଛଆରୁ ତୋର ପୁତ୍ରେ ଏଡ଼େ ଦୁଷ୍ଟ
କୁଟ କପଟ ଶକୁନି ମନ୍ତ୍ରୀ ମହାବୁଦ୍ଧି
ନଷ୍ଟେଁ ବୁଡ଼ାଇଲା ରଜା ଏଡ଼େକ ସମୃଦ୍ଧି ।
ଧାଇଁକରେ ସେ ସଭାକୁ ଆସି ଭାନୁମତୀ
ଦ୍ରୌପଦୀ ଚରଣେ କରି ବିନୟେ ଭକତି ।
କେ ମାତା ଅନାଦ୍ୟ ମାହେଶ୍ୱରୀ ତୁ ଅପର୍ଣ୍ଣା
ମୂର୍ଖ କୌରବ ଏମାନେ ଦୁଷ୍ଟଜନ ସିନା ।
ଅନାଦ୍ୟ ଶକତି ଜାତ ଅନନ୍ତ ବଦାର
ଅନନ୍ତ ମୂର୍ତ୍ତି ଅଟଇ ନିତ୍ୟ ଗୋ ତୋହର ।
ସୃଷ୍ଟିକଲୁ ବ୍ରହ୍ମାଣ୍ଡ ତୁ ମାଗୋ ମାହେଶ୍ୱରୀ
ସଜ୍ଜନଙ୍କ ହୃଦୟେ ବିଶ୍ରାମ ତୋହର ।
ଧାର୍ମିକ ଦେବକ ଶାନ୍ତ କୁଳଶୀଳପଣେ
ବଢ଼ିଲ ମାତ ଦ୍ରୁପଦ ରଜାର ଭବନେ ।
ଲକ୍ଷେ ନୃପତି ଯାହାର ପାଦତଳେ ବନ୍ଦେ
ଏ ଘୋର ପାମରେ ତୋତେ ପକାନ୍ତି ପ୍ରମାଦେ
ତିନି ଭୁବନେ ଯାହାର ଅସଂଖ୍ୟ ମହିମା
ଆମ୍ଭର ଯେ ଅପରାଧ କରିବା ମା କ୍ଷମା ।
ପ୍ରଣିପାତ ଭାନୁମତୀ ପାଞ୍ଚାଳୀର ପାଦେ
ପ୍ରବେଶିଲେ ଧୃତରାଷ୍ଟ୍ର ଆସି ସଭାମଧ୍ୟେ ।
ସଙ୍ଗେ ଅଛନ୍ତି ସଞ୍ଜୟ ବିଦୁର ଗାନ୍ଧାରୀ
କହନ୍ତି ଯେ ଦ୍ରୌପଦୀକୁ ରହିଁ ବସ୍ତ୍ରଧାରୀ ।
ବିନୟ ଭାବରେ ଧୃତରାଷ୍ଟ୍ର କୃତାଞ୍ଜଳି
ମୋର କୁଳ ମଣ୍ଡଣି ଗୋ ଦ୍ରୁପଦର ବାଳୀ ।
ପ୍ରସନ୍ନ ହୁଅ ସାଧ୍ୱୀ ଆଦ୍ୟ ସିଦ୍ଧେଶ୍ୱରୀ
ଶୂନ୍ୟ ଭୁବନକୁ ଭେଦ ଯା ତେଜ ପ୍ରଭାବ ।
ମୋ ପୁତ୍ରଙ୍କ ଅପରାଧ କ୍ଷମାକର ମାଏ
ମନ୍ଦପଣେ ଉପୁଜିଲେ ଏ ମୋହର ପୋଏ ।
ନ ଜାଣି ପାମର ଜନେ ଏଡ଼େ ମନ୍ଦକୃତ୍ୟ
ଦୁଷ୍ଟଙ୍କର ଦୋଷ ମାଗୋ ନ ଧରେ ମହତ ।
ଯାବତ ଚନ୍ଦ୍ରମା ଯହିଁ ଦିବାକର ଏକା
ଅକ୍ଷୟ ବର ବାସୁମ ସର୍ବଜନ ଶିକ୍ଷା ।

ବିନୟ ହୋଇ ବୋଲନ୍ତି ରାଜା ଧୃତରାଷ୍ଟ୍ର
ଅନେକହିଁ ଅପରାଧ କଲେ ମନ୍ଦ ଦୁଷ୍ଟ ।
ମୋର ଦୁଃଖ ଦେଖି କର ସେହି ଦୋଷ କ୍ଷମା
ତୋହର କୋପ କଲେ କି ବଂଶର ଗାରିମା ।
କୁଳକୁ କଳଙ୍କ କଲେ ଲୁହାଇବ କଥା
କୁଳ ଯିନା ଲକ୍ଷଣରୁ ଉଦ୍ଧରିବୁ ମାତା ।
ମହା ବଇଷ୍ଣବୀ ତୁ ଯେ ପରମା ସାଧବୀ
ଧୃତରାଷ୍ଟ୍ରର ବଚନେ କୋପ ଶାନ୍ତ ଦେବୀ ।
ଚାହିଁଲେ ସେ ପୁନରପି ଅମୃତ ନୟନେ
ଲଭିଲ କହ୍ନି ଦେଖିଲେ ସର୍ବ ଜନମାନେ ।
ଦ୍ରୌପଦୀକୁ ଘେନିଗଲା ରାଣୀ ଭାନୁମତୀ
ଆପଣା ପୁରେ ବିଜୟ ଯାଇ ସେ ତଡ଼ିତ ।
ଅନ୍ତଃପୁର ମଧ୍ୟେ ଥିଲେ ଯେତେ ବଧୂକାଳୀ
ଦ୍ରୌପଦୀଙ୍କୁ ବନ୍ଦାଇଲେ ଘେନି ଉହ୍ଥାଳ ।
ଯୁଧିଷ୍ଠି ହସ୍ତ ଧଇଲେ ରାଜା ଧୃତରାଷ୍ଟ୍ର
ଅଶ୍ରୁତ ଅଦ୍ଭୁସ୍ତ କଥା କଲେ ମହାଦୁଷ୍ଟ ।
ପରମ ପଣ୍ଡିତ ବାପ୍ର ସବୁକୁ ନା ତାହା
ଉଠି ବୋଲି କୋଳ କଲେ ଗାନ୍ଧାରୀର ନାହା
ବାବୁ ଯଦ୍ୟପି ଲଙ୍ଘନ୍ତ ଦୁଷ୍ଟେ ପଣ୍ଡିତଙ୍କୁ
ପଣ୍ଡିତ ଜନେ କଟାଳ ଭଣିବେ କି ତାଙ୍କୁ ।
ଅଜାତଶତ୍ରୁ ଅଟଇ ଯେବଣ ଯୁଧିଷ୍ଠି
ପାସୋରିଲେ କଷ୍ଟ ରାଜା ବାକ୍ୟେ ଗଲେ ଉଠି
ଭୀମକୁ କୋଳ କରିଣ ଧଇଲେ ସଞ୍ଜୟ
ଛାଡ଼ି ଅଭିମାନ ଘେନ ରାଜାର ବିନୟ ।
ଅନେକ ଦୁର୍ଗତି ତୋତେ ଚିନ୍ତିଲେଁ ଭୀମ
ବିଷଲଡ଼ୁ ଖାଇ ପାରି କଲୁ ପୁଣ୍ୟଧର୍ମ ।
ଜତୁଗୃହ ଭିଆଇଲେ ବାବୁ ଯେବେ କୁଟେ
ପୁରୋଚନ ପଣ୍ଡାଙ୍କୁ ସେ ପେଷିଲେ କପଟେ ।
ତୁମ୍ଭେ ତହୁଁ ପାରହୋଇ ଗଲ ଧର୍ମବଳେ
ପୁରୋଚନ ନାଶଗଲା କର୍ମର ଅବଳେ ।
ବାବୁ ବୃହସ୍ପତେ ଜାଣ ଧର୍ମଯିନା ବଳ
ପ୍ରତ୍ୟକ୍ଷେ ଦେଖିଲେ ଧର୍ମବଳହିଁ ସକଳ ।
ଉଠ ଉଠ ଭୀମସେନ ଉଠିଲେ ବସାଣି
ବିଦୁର ସଞ୍ଜୟ ବୋଲେ ଶାନ୍ତ ହୋଇ ଉଠି ।
ଆପଣା ମନ୍ଦିରେ ବିଜେ ହେଲେ ଧୃତରାଷ୍ଟ୍ର
ପାଣ୍ଡବେ ଘେନ ସାନନ୍ଦ ମନ ଅତିହୃଷ୍ଟ ।

ବହୁତର ପୁରୁଷାର୍ଥ କରି ଅନ୍ନ ରସ
ଅଳଙ୍କାର ଦେଇ କହେ ବହୁତ ବିନୟ ।
ସ୍ନାନ ଭୋଜନ କରାଇ ଆପଣାର ପୁରେ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ଅତି ଭକତରେ ।
ଦିବ୍ୟ ପଲ୍ୟଙ୍କ ଉପରେ କୃଷ୍ଣାଙ୍କୁ ବସାଇ
ଗାନ୍ଧାରୀ ଭାନୁମତୀ ଏ ଆଗେ ଉଭା ହୋଇ ।
ବୋଇଲେ ଦ୍ରୌପଦୀ ମାଗୋ ଯାଅ ନିଜପୁରେ
ମୋ ଦୁଷ୍ଟ ପୁତ୍ରଙ୍କ ଦୋଷ ନ ଧରି ମନରେ ।
ଧୃତରାଷ୍ଟ୍ର ବୋଇଲା ମା କର ଅନୁଗ୍ରହ
ମୋର ଯୋଏ ହେ ଇଛନ୍ତି ଅଜ୍ଞାନରେ ମୋହ
ଦ୍ରୌପଦୀ ବୋଇଲେ ଆମ୍ଭ ଉପଦର କାଳ
କୃଷ୍ଣଙ୍କୁ କସ ବୋଲିବୁ କର୍ମର ଅବଳ ।
ଧୃତରାଷ୍ଟ୍ର ବୋଇଲେ ତୁ ଅଟୁ ମାହେଶ୍ୱରୀ
ସର୍ବଥା ମହାପଣ୍ଡିତା ପଞ୍ଚାଳ କୁମାରୀ ।
ଅନୁଗ୍ରହ କଲୁ ଯେବେ ମୋତେ ବର ମାଗ
ପୂର୍ବ କଥାକୁ ପାସୋରି ଛାଡ଼ ମନୁ ରାଗ ।
ଏ ମୋହର କଥା ସତ୍ୟ ଅଟେ ତିନବାର
ତୁ ଯାହା ମାଗିବୁ ତାହା ଦେବି ନିରଧାର ।
ଦ୍ରୌପଦୀବୋଇଲେଯେବେ ବରଦେବ ମୋତେ
ସ୍ୱାମୀ ଯେ ହାରିଲେ ଧନ ଭଣ୍ଡାର ସହିତେ ।
ତାହା ମୁଁ ମାଗଇ ଘେଇ ସହିତ ସମସ୍ତ
ଧୃତରାଷ୍ଟ୍ର ବୋଇଲେ ଗୋ ଦେଲି ମୋର ସତ
ଆଉର ବରେକ ମାଗ ଦେବି ଗୋ ପାଞ୍ଚାଳି
ଯେ ତୋହର ଇଚ୍ଛା ତାହା ମନ ମଧ୍ୟେ ଭାଳି ।
ଦେବୀ ବୋଇଲେ ଦିଅ ଗୋ ରଥ ଗଜ ସୈନ୍ୟ
ଦେଲି ସମସ୍ତ ଆଉରି ମାଗ ଯାହା ମନ ।
ଦ୍ରୌପଦୀ ବୋଇଲେ ଦିଅ ମୋର ପାଞ୍ଚପତି
ମୋତେ ପୁଣ ହାରିଥିଲେ ଖେଳରେ ନୃପତି ।
ସନ୍ତୋଷରେ ବର ଦେଲେ ଅମ୍ବିକାର ସୁତ
ଆଉରି ଦେବଇଁ ବର ଯେ ତୋର ସମ୍ମତ ।
ଦ୍ରୌପଦୀ ବୋଇଲେ ସ୍ତ୍ରୀଏ ପାଏ ତିନବର
ପୁରୁଷକୁ ଦଶବର ଅଟଇ ବେଭାର ।
ତିନରୁ ଅଧିକ ବର କରେ ଯେତୁ ଆଶା
ଅବଶ୍ୟ ଛେଦନ ହୁଏ ସେ ସ୍ତିରୀର ନାସା ।
ଦଶବରହୁଁ ଅଧିକ ମାଗେ ଯେ ପୁରୁଷ
ଅବଶ୍ୟ ସେ ପୁରୁଷର କଳଯାଏ ନାଶ ।

ଧୃତରାଷ୍ଟ୍ର ବୋଇଲେ ତୁ ସର୍ବଜ୍ଞ ପଣ୍ଡିତ
ସ୍ୱାମୀଙ୍କୁ ଘେନ ତୁମ୍ଭର ବଜେ କର ମାତା ।
ଦୁର୍ଯ୍ୟୋଧନଠାରେ ଯେତେ ଥିଲା ଅଳଙ୍କାର
ତାହାକୁ ଘେନ ଅଇଲେ ସଞ୍ଜୟ ବିଦୁର ।
ବର ପାଇ ଦ୍ରୌପଦୀ ଯେ ପାଣ୍ଡବଙ୍କୁ ଘେନ
ବାରୁଣାବନ୍ତେ ବିଜୟ ଯାଇ ଯାଜ୍ଞସେନୀ ।
ସମଦଣ୍ଡ ସଙ୍ଗେ ଘେନ ଧୃତରାଷ୍ଟ୍ର ଭୁଲେ
ଭୀଷ୍ମ ଦ୍ରୋଣ ସହିତରେ ପାଗ୍ଲେଟିଣ ଗଲେ ।
ବାହୁଡ଼ିଲେ ଆଶ୍ୱାସନା ପାଇ ଧର୍ମସୁତ
ପୁଣିହିଁ ସେ ଏକଆତ୍ମା ହେଲେ ବେନିଭ୍ରାତ ।
ଦୁହିଁଙ୍କର ହେଲା ପୁଣି ଅଭେଦ ପୀରତି
ଧୃତରାଷ୍ଟ୍ରଙ୍କର ସେବା କରୁଥାନ୍ତି ନିତି ।
ଜୟ ତୁ ଜୟ ତୁ ମାଗୋ ତୁ ଦେବୀ ତ୍ରିଗୁଣା
କ୍ଷଣକେ ସଂସାର ଜାଳଦେଉ ହୋଇ ଘୋରା ।
ଜଗତଜନନୀ ବେଦ ତୋହର ଶ୍ରୀପଦେ
ଶୂଦ୍ର ମୁନ ଶାରଳା ଦାସ ନତ୍ୟେ ବଦେ ।

---

## ଶିବଙ୍କଠାରୁ ନାଗାର୍ଜ୍ଜୁନର ବରପ୍ରାପ୍ତି

ମନୁ ପୁଚ୍ଛାକଲେ ତୁମ୍ଭେ ଶୁଣ ଅଗସ୍ତି ହେ
କହିବା ହେଉ ପଡ଼ୁଛୁ କଥାରେ ସନ୍ଦେହେ ।
ଯାତାଳେ ହେଲା ନାଗୁଣୀ ଅର୍ଜୁନର ପ୍ରୀତି
ବେନି ମାସ ହୋଇଥିଲା ସେହି ଗର୍ଭବତୀ ।
ସମ୍ପୂର୍ଣ୍ଣେ ପୁଷି କି ଜାତ ହୋଇଲା ମୁନି ହେ
ସଂକ୍ଷେପି କହ ପଡ଼ୁଛୁ ମୁଁ ଏହି ସନ୍ଦେହେ ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ସାବଧାନେ
ପୁଅ ଏକ ଜାତ ହେଲା ଦଶମାସ ପୂର୍ଣ୍ଣେ ।
ନାଗୁଣୀକି କହୁଛନ୍ତି ଏମନ୍ତ ବିବସ୍ଥ
ହାଟେ ଉଠୁଛି ଅର୍ଜୁନ ନାମେ ମହାବୃକ୍ଷ ।
ଯେତେବେଳେ ନାଗୁଣୀର ହୋଏ ଋତୁକାଳ
ବେଶ ହୋଇ ସେ ବୃକ୍ଷକୁ କରେ ଯାଇ କୋଳ
ସୁସଞ୍ଚ କୋମଳ ଏହି ଅର୍ଜୁନର ଅଙ୍ଗ
ତାହାକୁ ସୁମରି ଯାଇ କରେ ତାର ସଙ୍ଗ ।
ଫାଲ୍‌ଗୁନ ଶୁକ୍ଳ ଦଶମୀ ହେଲା ଗର୍ଭବତୀ
ଷଡୁଷ ମାସେ ତାହାର ପୂର୍ଣ୍ଣ ମାସ ସ୍ଥିତି ।
ଧନୁ କୃଷ୍ଣ ଏକାଦଶୀ ଅର୍କବାର ଜାଣ
ସ୍ୱାତି ନକ୍ଷତ୍ରର ଯୋଗ ସେ ଦିନ ସମ୍ପୂର୍ଣ୍ଣ ।
ହେଲା ପାଞ୍ଚଦଣ୍ଡଠାରେ କୁମାର ଉତ୍ପତ୍ତି
ମନୁଷ୍ୟ ବଦନ ସେହି ନାଗର ମୂରତି ।
ଅକଳଙ୍କ ଚନ୍ଦ୍ରପ୍ରାପ୍ତ କୁମାର ବଖାଣି
ମକର ଲଗନେ ବୁଧ ଭୃଗୁ ଶୁଦ୍ଧ ମିଶି ।
ଗୁରୁ କେନ୍ଦ୍ରେ କୋଣେ ଶନି ଏକାଦଶେ ରାହୁ
ପ୍ରତାପ କୁମାର ବର ଆଜାନୁ ତା ବାହୁ ।
ବବ ନାମରେ କରଣ ଧୃତି ନାମେ ଯୋଗ
ଧନୁ ସଙ୍କ୍ରାନ୍ତ ଯେ ଷୋହଳ ଦିନ ଭୋଗ ।
ଏସନକ ଯୋଗଲଗ୍ନେ କୁମାର ଉତ୍ପନ୍ନ
ସନ୍ଧ୍ୟାବାଳୀ ନାମ ତାର ଦେଲା ନାଗାର୍ଜୁନ
ଅନେକ ଯତ୍ନେ ପୁତ୍ରକୁ ପାଳେ ସନ୍ଧ୍ୟାବାଳୀ
ନାଗକୁମାରେ ଖଟନ୍ତି ଜାଣି ମହାବଳୀ ।
କୁମାରକୁ ଦେଖି ନାଗରାଜା ଯେ ଆନନ୍ଦ
ଅତ୍ୟନ୍ତ ଯତ୍ନେ ପାଳଇ ବଢ଼ଇ ସେ ସୁତ ।
ଦିନେ ଦିନେ ବଢ଼େ ଯେହ୍ନେ ଚନ୍ଦ୍ରମାର କଳା
ପଞ୍ଚଦଶ ବରଷର ହେଲା ସେହି ବଳା ।
ତକ୍ଷକ ନନ୍ଦନ ନାମ ବାତାପି ସେ ବଳୀ
ନାଗାର୍ଜୁନ ସଙ୍ଗେ ସେହି ଲଗାଇଲା କଳି ।
ନାଗାର୍ଜୁନ ମାଇଲକ ବାତାପି ନାଗକୁ
ଅନେକ ହିଂସା କରି କହିଲା ତାହାକୁ ।
ବୋଇଲେ ତୁମ୍ଭେ ପାମର ଘୋର ଜାତି ସର୍ପ
ପ୍ରଭାତୁ ଉଠି ଦେଖିଲେ ହୁଏ ମହାପାପ ।
ଯାହାକାଳେ ତୁମ୍ଭର ଯେ ମୁଖ ଦେଖି ଆଗ
କାର୍ଯ୍ୟ ନାଶଯାଇ ଅନୁକୂଳରେ ବିଯୋଗ ।
ତୁମ୍ଭର ମନ ପଡ଼ିଲେ ମନୁଷ୍ୟ ଉପରେ
ପିତୃ ଲୋକ ପାଣି ତାର ନ ପାନ୍ତି ତା କରେ ।
ଛୁଇଁଲେ ପାପ ଖାଇଲେ ଲୋକେ ଯିବେ ମରି
ବିନତା ସୁତ ତୁମ୍ଭର ଏକାନ୍ତିଁ ବଇରି ।
ଜାଣି ଗରୁଡ଼ ତୁମ୍ଭଙ୍କୁ ମାରି ଖାଏ ଖେଦି
ତା ଭୟେ ତୁମ୍ଭେ ପାତାଳପୁରେ ଅଛ ଭେଦି
ମୋତେ ଏକା ଦେଖି ତୁମ୍ଭ ଗର୍ଜ୍ଜନ ହେଉଛି
ନୋହିଲେ ଗରୁଡ଼ କେହ୍ନେ ଯାଏ ପୁଣି ଉଷି
ନାଗାର୍ଜୁନ ଏସନକ ବଚନ ହିଂସି
ତକ୍ଷକ ନନ୍ଦନ ତାକୁ ବୋଇଲା ନରସି ।
କ୍ରୋଧଭରେ କହେ ନାଗଅର୍ଜୁନକୁ ସ୍ୱହିଁ
ଏତେ ଦର୍ପ କହୁ ତୋର କୁଳମୂଳ ନାହିଁ ।

ବାପ ପାମର ତୋର ରେ ଗୋଳକୁଣ୍ଡା ପୁଣି
କେଉଁ ପାପ ଥିଲା ଆମ୍ଭ ବାପର ଭଉଣୀ ।
ଆମ୍ଭ ଘରେ ଥାଇ ପୁଣି ଆମ୍ଭଙ୍କୁ ଝିଙ୍ଗାସୁ
କାହାର ବଢ଼ାଇ ପର କଥାମାନ ଭାଷୁ ।
ଯୋଗୀ ତପସ୍ୱୀ ସନ୍ନ୍ୟାସୀ ଆଦରି ଭିକାରି
ମାତା ଯୋଗେ ଥିଲେ ଆମ୍ଭ ସଙ୍ଗେ ନୁହେ ସରି
ଦେଶ ଗ୍ରାମ ବାଡ଼ି ବୃତ୍ତି କୁମ୍ଭର ତ ନାହିଁ
ଆମ୍ଭଙ୍କୁ ମାରୁ ଅକୁଳ ଅମୂଳ କୁ ହୋଇ ।
କେ ତୋହର ପିତାମାତା ନାମକୁ ଧରନ୍ତି
ସମସ୍ତେ ବୋଲନ୍ତି ତୋତେ ବାସୁକିର ନାତି
ମାତୁଳ ଘରେ ଯେ ବଢ଼େ ହୁଅଇ କୁଜନ
ମନୁଷ୍ୟପଣେ ତାହାକୁ ନ କରି ଗଣନ ।
ନାଗାର୍ଜ୍ଜୁନକୁ ଝିଙ୍ଗାସି ବୋଇଲା ବାତାପି
କାନ୍ଦ ସେ କୁମରମଣି ଚଳଇ ପ୍ରତାପୀ ।
ମାତାର ଅଗ୍ରେ କୁମର ପଡ଼େ ଯାଇ ମୂର୍ଚ୍ଛା
କୋଳେ ଧରି ସନ୍ଧ୍ୟାବାଳୀ କରେ ତାକୁ ପୁଚ୍ଛା
ଆରେ ରେ ବାପ କୁ ମୋର ଅନାଥର ବନ୍ଧୁ
ଦୁଃଖୀର ସଙ୍ଗାତ କପାଁ ଅନମିତ୍ତେ କାନ୍ଦୁ ।
ଅନାଥ ବାନ୍ଧବ ମୋର ଅନ୍ଧର ଲଉଡ଼ି
କାହିଁକି କାନ୍ଦନ୍ତୁ ବାବୁ ଧରିତଳେ ଗଡ଼ି ।
ଶୋକେ କହଇ କୁମର ମାତା ମୁଖ ଚୁମ୍ବି
କୁ ମୋତେ ଜନ୍ମ ଦେଲୁ ଗୋ ପିତା ମୋର କାହିଁ
ମୁହିଁ ଏ ପୁରେ ଜନମ ହୋଇଲଇଁ ମାତା
କେବଣ ଦେଶେ ଅଛନ୍ତି ମୋହର ଗୋ ପିତା ।
ସନ୍ଧ୍ୟାବାଳୀ ବୋଲଇ ସେ ବହୁଦୂର ସୀମା
ଜଗତେ ଉଦିତ ପଞ୍ଚଜୟନ୍ତୀ ହସ୍ତିନା ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଏ ପଞ୍ଚ
ଯେ ଯାହାର ଠାକୁର ସେ ଅଛି ଜାଣି ମଞ୍ଚ ।
ବାବୁ ସପତ ବ୍ରହ୍ମାଣ୍ଡ ବହିଲା ଯେ ବଳେ
ଷୋଳବନ ପରଯନ୍ତେ ଧରି ଧନୁହଳେ ।
ବାବୁ ଏ ପୃଥ୍ୱୀର ଭାର ନିବାରଣ ଅର୍ଥେ
ଅନନ୍ତ ଶରଣ ପାଞ୍ଚ ଦାନ କଲା ମୋତେ ।
ବାବୁ ଏହାଙ୍କ ପୁରକୁ କସ ତୋର ଭୟ
ମାରିପକା ଅଷ୍ଟକୁଳ ନାଗଙ୍କର ପୁଅ ।
କୁମର ବୋଲେ ନ ଜାଣେ ମୁହିଁ ଶସ୍ତ୍ରବିଦ୍ୟା
ପୁଣି ପାଠ ନାହିଁ ମୋର ନୁହଇ ମୁଁ ଯୋଦ୍ଧା ।

ମୁହିଁ ଯାଉଅଛି ମାଗୋ ମଧ୍ୟ ଭୁବନକୁ
ଲୋଡ଼ି ଠାବ କରିବଇଁ ମୋହର ପିତାକୁ ।
ପାଠ ଶାସ୍ତ୍ର ଶସ୍ତ୍ରବିଦ୍ୟା ମୁହିଁ ଗୋ ଶିଖିବି
ତେବେ ମୁଁ ଏଠାକୁ ପୁଣି ବାହୁଡ଼ି ଆସିବି ।
ନାଗ ମାରିବାକୁ ହେବ ଯେବେ ସାମରଥ
ତେତେବେଳେ ଏ ପୁରକୁ ବାହୁଡ଼ିବି ମାତ ।
ଅମୃତ ଲଡ଼ୁ ନାଗୁଣୀ ଦେଲା ତାର ହସ୍ତେ
ଧର୍ମ ଦେବତା ପ୍ରସନ୍ନ ହେଉ ବାବୁ ତୋତେ
ନାଗୁଣୀ ଯେ ପ୍ରବୋଧଇ ନାଗଅର୍ଜ୍ଜୁନକୁ
ପାତାଳୁ ବାହାରି ଗଲା ମଧ୍ୟ ଭୁବନକୁ ।
ପ୍ରବେଶ କୁମାର ଯାଇ ହେଲା ମଧ୍ୟସ୍ୱର୍ଗେ
ଚଳଇ କୁମରମଣି କାଶୀନଦୀ ମାର୍ଗେ ।
ଅପାର ଓସାର ବୋଲି ନ ପଶଇ ଜଳେ
ଉଭର ମୂରତି ହୋଇ ଯାଏ କୂଳେ କୂଳେ ।
ନାବ ଲଗାଇ ଚଳଇ କୂଳେ ବାଳଶିଷ
ହରି ଉଦ୍ୟାନ ବନରେ ହୋଇଲା ପ୍ରବେଶ ।
ଅନନ୍ତଗିରି ଯେ ଗନ୍ଧମାର୍ଦ୍ଦନ ପର୍ବତେ
କଉଶିକ ପରିବତେ ମାଳ ମରକତେ ।
ବିନ୍ଧ୍ୟମାର ସନ୍ନିଧରେ ଗିରି ଆଠଶତ
ଅପାର ଡଙ୍ଗର ତହିଁ ନଦୀହିଁ ବହୁତ ।
ଗନ୍ଧନଦୀ ନାମେ ବହେ ତାର ଗନ୍ଧମାର
ନଦୀକ ଦେଖି ସାନନ୍ଦ ବାଳୁତ କୁମର ।
ସେ ନଦୀର ଗନ୍ଧବାସେ ଶରୀର ଆମୋଦ
ସେହି ନଦୀ ବହୁଅଛି କପିଳାସ ଭେଦ ।
ପାର୍ବତୀ ଯେ ସ୍ନାନ କରୁଛନ୍ତି କପିଳାସେ
ତାଙ୍କ ଦେହଗନ୍ଧ ବହି ନଦୀ ଜଳ ବାସେ ।
ରୁଦ୍ରହିଁ ସ୍ନାନ କରନ୍ତି ସେ ଜଳ ଉଦ୍ୟାନେ
ତହୁଁ ନଦୀ ଏକ ବହି ଆସେ ବିନ୍ଧ୍ୟମାନେ ।
ରୁଦ୍ରନଦୀ ନାମ ବୋଲି ଅଟଇ ତାହାର
ଦେଖି ସାନନ୍ଦ ହୋଇଲା ବାଳୁତ କୁମର ।
ଦେଖଇ ରୁଦ୍ର ଭୁବନ ଗିରି କପିଳାସ
ବାରସ୍ୱର୍ଗ ପୁର ଜିଣି ସେ ପୁର ପ୍ରକାଶ ।
ଝଟକଇ ରତ୍ନଜ୍ୟୋତି ଜଗତ ଉପରେ
ଉଡନ୍ତି ପତାକାମାନେ ଗଗନ ଶିଖରେ ।
ପୁଷ୍ପବନେ ଝଲକଇ ବାନାର୍କ ଆଦିତ୍ୟ
ଅହର୍ନିଶି ଷଡ଼ସହିଁ ବହଇ ବସନ୍ତ ।

ନଉଶତ ଯୋଜନଙ୍କ ତାର ଆୟତନ
ତହିଁ ଖଟିଥାନ୍ତି ନବକୋଟି ଶିବଗଣ ।
ବହଇ ରୁଦ୍ରାଙ୍ଗୀ ବଇତରଣୀ ଯେ ନଦୀ
ଧବଳାଙ୍ଗୀ ସରସ୍ୱତୀ ଯେ ଗଙ୍ଗା ପ୍ରସିଦ୍ଧି ।
ଦେଖଇ ନନ୍ଦିକେଶ୍ୱର ପୁଣି ମହାକାଳ
ବଳେ କର୍ଣ୍ଣକଟାରକୁ ଯେଣ ଦ୍ୱାରପାଳ ।
ଯୁଗକରେ ଦିବସେକ ହୁଅଇ ତାହାକୁ
କଳ୍ପତ ପ୍ରାପ୍ତ ମଣନ୍ତି ଦେବତାମାନଙ୍କୁ ।
ସେ ଦ୍ୱାର ଦେଖିଲେ ଯାଇ ନାଗଅରଜୁନ
ଦକ୍ଷିଣଦ୍ୱାରେ ଖଟନ୍ତି ସର୍ବ ଦେବଗଣ ।
ଅଶୀସହସ୍ର ଯୋଜନ ତାର ଆୟତନ
ଦ୍ୱାରପାଳ ବିନାୟକ ଦେବ ଗଜାନନ ।
ଚଉଷଠି ଲକ୍ଷ ଜାଣ ତହିଁ ଶିବଗଣ
ଅନେକ ରତ୍ନ ଭୂଷଣ କୁବେର ସମାନ ।
ସପ୍ତସିନ୍ଧୁ ଫଣିରତ୍ନ ଆଦିର ଜଳଧି
ଖଟଇ ବରୁଣ ଯେତେକ ଶଙ୍ଖ ପଦ୍ମନିଧି ।
ବ୍ରହ୍ମ ରୁଦ୍ର ବୃହସ୍ପତି କୁବେର ସହିତେ
ଯମ ପବନ ଯେ ଗ୍ରହଗଣ ଛନ୍ତି ଯେତେ ।
ଅନନ୍ତଙ୍କ ନାରାୟଣ ଦଶଦିଗପାଳ
ସମସ୍ତେ ଖଟନ୍ତି ରୁଦ୍ରେ ବନ ବୃଷ ଦଳ ।
ରୁଦ୍ରଙ୍କୁ ଧ୍ୟାନେ ଭଜନ୍ତି ରଜନୀ ଦିବସ
ଅନେକ ଭକତି କରି ପାଉଛନ୍ତି ଯଶ ।
ଉତ୍ତରଦ୍ୱାରେ ଦେଖଇ ଯାଇ ବାଳଶିବ
ଚଣ୍ଡ ପ୍ରଚଣ୍ଡ ଆବୋରିଛନ୍ତି ଦ୍ୱାରଦେଶ ।
ତା ଆୟତନ ସତୁରି ସହସ୍ର ଯୋଜନ
ଖଚିତ ମାଣିକ୍ୟ ହୀର ନବକୋଟି ରତ୍ନ ।
ତିରିଶ ଲକ୍ଷ ବସନ୍ତି ତହିଁ ଭୃଙ୍ଗୀଗଣେ
ମେଘମାନେ ଖଟିଥାନ୍ତି ଯେ ଯାହାର ସ୍ଥାନେ ।
ଆବର୍ତ୍ତକ ମେଘ ପୁଣି ମେଘ ସମ୍ବର୍ତ୍ତକ
ଦ୍ରୋଣ ପୁଷ୍କର ନର୍ଦ୍ଦାଭ ଅନଳ କାମ୍ୟକ ।
କାଳାନଳ ମେଘ ପୁଣି ମେଘ ଘଟଘଟ
ସଙ୍କୁଚିତ ଧାତୁ ମେଘ ମେଘ ଧାତୁପୁଷ୍ଟ ।
କାମଳ କାମତରଳ ମେଘ ଯେ ଚଞ୍ଚଳ
ଅରୁଣ ମେଘ ବରୁଣ ମେଘ ଯୁଗପାଳ ।
ପ୍ରଳୟ ଅନନ୍ତ ମେଘ ତପତ ଅନ୍ତକ
ସାଗର ମନ୍ଥନ ମେଘ ଖଣ୍ଡକ ଉର୍ଦ୍ଧ୍ୱକ ।

ଘମଘଣ୍ଟ ମେଘ ଜଳ ଗମ୍ଭୀର ଆବର
ବରୁଣ ମେଘ ଚାପିତ ମେଘହିଁ ମୁଦ୍ଗର ।
ଜଳତରଙ୍ଗ ଆବର ମେଘ ନାଗାନ୍ତକ
ଜଳ ଶାମ୍ଭୁତକୁ ଯେଣ ପଞ୍ଚହିଁ ପବକ ।
ଖଟନ୍ତି ଉତ୍ତରଦ୍ୱାରେ କପିଳାସ ସ୍ୱର୍ଗ
ଛାଞ୍ଚପଦ୍ମ ସୈନ୍ୟ ସଙ୍ଗେ ଯେଣ ଗୁରୁମେଘ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ବସ୍ତୁ ରୁଦ୍ରର ମେଖଳ
ଏ ପାଞ୍ଚମେଖଳା ନଦୀ ଅଟଇ ଧବଳ ।
ଏହି ପାଞ୍ଚନଦୀ ଚଳେ ଉତ୍ତର ଭାଗରେ
ସେ ଦ୍ୱାର ମହିମା ଅନ୍ତ କେହି କରିପାରେ ।
ମନୁ ଏକ ଦିବସକେ ହୁଅଇ ଅନ୍ଧାର
ଦେବ ନାଶନ ଅଛଇ ଆବୋରି ସେ ଦ୍ୱାର ।
ଦେବତା ଅସ୍ଥି ପଡ଼ିଛି କୁଢ଼ କୁଢ଼ ହୋଇ
ନାଗାର୍ଜ୍ଜୁନ ଯାଇ ସେହି ବୃକ୍ଷକୁ ଦେଖଇ ।
ପାର୍ବତୀ ସହିତେ ବଳେ କରିଛନ୍ତି ହର
କଲ୍ପେ ପର୍ଯ୍ୟନ୍ତେ ହର ନୁହଇ ବାହାର ।
ଦର୍ଶନ ନ ପାଇ ନାଶଯାନ୍ତି ଦିଗପାଳେ
ଏହାଙ୍କ ଅସ୍ଥି ପଡ଼ିଛି ସେହି ବୃକ୍ଷମୂଳେ ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସେ ନାଗଅର୍ଜ୍ଜୁନ
ପଶି ନ ପାରିଲେ ଆଉ ବଡ଼ହିଁ ଗହନ୍ତି ।
ଚଳଇ କୁମରମଣି ତା ପଶ୍ଚିମ ଦ୍ୱାରେ
ସେହି ତ୍ରିଶ ସହସ୍ର ଯୋଜନ ବିସ୍ତାରେ ।
ଜୟନ୍ତ ଯେ ଅଜୟନ୍ତ ଦ୍ୱାରପାଳ ବେନି
ମେରୁ ପର୍ବତ ଉପାଡ଼ି ପାରନ୍ତି ସେ ପୁଣି ।
ଖଟନ୍ତି ଅର୍ବୁଦ ଚଣ୍ଡମୁଣ୍ଡ ଶିବଗଣେ
ଦ୍ୱାର ନିସେଧନ୍ତି ସେହି ବଳବନ୍ତ ପଣେ ।
ଗଙ୍ଗା ଯେ ଯମୁନା ସରସ୍ୱତୀ ଯେ ତ୍ରିବେଣୀ
ପଞ୍ଚନଦୀ ବହଇ ଯେ ମନ୍ଦାକିନୀ ଯେଣ ।
ପଶ୍ଚିମ ମୁଖେ ଚଳନ୍ତି ଏ ମେରୁ ମେଖଳା
ଦକ୍ଷିଣଭାଗେ ସଙ୍ଗମ ସିନ୍ଧୁ ସଙ୍ଗେ ମେଳା ।
ବରୁଣର ନାରବନୀ ବ୍ରହ୍ମାର ସାବିତ୍ରୀ
ଅଗ୍ନିର ଭାରିଯା ସ୍ୱାହା ସ୍ୱଧା ଯେ ଅଟନ୍ତି ।
କୁବେର ଭାରିଯା ବୃହସ୍ପତିଙ୍କର ତାରା
ଶୁକ୍ଳା ନଇର୍ଋତ ଭାର୍ଯ୍ୟା ଭୃଗୁ ଭାର୍ଯ୍ୟା ହାରା ।
ଆଦିତ୍ୟ ସଞ୍ଜ୍ଞା ଆବର ପବନ ଅଞ୍ଜନା
ବଶିଷ୍ଠ ଅରୁନ୍ଧତୀ ଯେ ବିଶ୍ୱଦେବା ପୂର୍ଣ୍ଣା ।

କଶ୍ୟପ ବିନତା କଦ୍ରୁ ଏ ତେଜ ଭଉଣୀ
ସନକ ମଳୟ୍ୱାବସ୍ତୁ ତନ୍ତ୍ର ଯେ ରୋହିଣୀ ।
ଗୌତମ ଅହଲ୍ୟା ଯୋଗେଶ୍ୱର ମଉକ୍ଷେୟୀ
ଯମ କଉଶୀ ଆବର ମେଘ ବିଦ୍ୟୁତହିଁ ।
ସଞ୍ଚିତ ଯେ ମହେଶ୍ୱର ଅନାଦି ଅଫଣ୍ଡୀ
ଖଟିଆନ୍ତି ପାର୍ବତୀଙ୍କ ଲସ୍ତକର ସିନା ।
ଦେଖି ବିସ୍ମରଇ ମନମଧ୍ୟେ ନାଗାର୍ଜୁନ
ଅନବରତ ରହନ୍ତି ଉଦୟୁଛି ଜନ୍ମ ।
ଲକ୍ଷେ ବରଷ ହେଲଣି ଦ୍ୱାରେ ରହିଛନ୍ତି
ମାଜଣା ନ ସରଇ ସେ ଦର୍ଶନ ନ ପାନ୍ତି ।
ସେ ଭୁବନ ଦେଖି ନାଗଅର୍ଜୁନ ପ୍ରଶଂସି
ଗଣନାୟକଙ୍କ ସଙ୍ଗେ ପ୍ରୀତିକଲ ବସି ।
ପଚ୍ଛରେ କୁମରମଣି ବୁଦ୍ଧି କହ ମୋତେ
ଏ ପ୍ରଭୁଙ୍କ ଦରଶନ ପାଇବି କେମନ୍ତେ ।
ସେ ବୋଇଲେ ଏକଧ୍ୟାନେ କଲେ ରୁଦ୍ରପୂଜା
ପ୍ରସନ୍ନେ ଅଭୟବର ଦେବେ ଦେବରାଜା ।
ସମସ୍ତ ସେବକ ଆମ୍ଭେ ବ୍ରହ୍ମମନ୍ତ୍ର ସାଧି
ଜଳପଞ୍ଜୀରୀ ହୋଇଛୁ ଲସ୍ତକୁ ସମାଧି ।
ଗନ୍ଧବହ ନାମେ ବହ ଯେଉଁ ନଦୀଗୋଟି
ଶତଯୋଜନ ପର୍ଯ୍ୟନ୍ତେ ସ୍ୱର୍ଣ୍ଣ ପଦ୍ମ ଫୁଟି ।
ପାର୍ବତୀଙ୍କ ସ୍ନାନ ପାଳ ପଡ଼ଇ ଯେ ବନ
ସୁବର୍ଣ୍ଣ ପଦ୍ମ ଫୁଟଇ ନାହିଁ ସହ ବନ ।
ବରୁଣ ଦେବତା ତାହା ଫଦ୍ଦାରେ ସାଗରେ
ତେଣୁ ଜଳସଇ ବାରିନିଧି ରତ୍ନାକରେ ।
ପଶ୍ଚିମ ଦୁଆରେ ହର ଉଦ୍ୟାନ ଯେ ବନ
ଅହର୍ନିଶି ବହେ ତହିଁ ଦକ୍ଷିଣା ପବନ ।
ଯେତେ ବୃକ୍ଷ ଅଛନ୍ତି ସେ ସବୁ ଗନ୍ଧମୟ
ଅଗୁରୁ ଅମୋଦ ଦିଏ ବହି ଗନ୍ଧବହ ।
ଦକ୍ଷିଣ ଦ୍ୱାରେ କାବେରୀ ଶିପ୍ରା କୃଷ୍ଣଭଦ୍ରା
ଗଉରୀ ଯେ ପଦ୍ମବେଣୀ ଶିବା ଲକ୍ଷ୍ମୀମୁଦ୍ରା ।
ଦକ୍ଷିଣଦ୍ୱାରେ ବସନ୍ତ ଏହି ସପ୍ତନଦୀ
ପଞ୍ଚକୋଟି ତୀର୍ଥ ସେନ ମହୋଦଧି ଭେଦି ।
କୋଟିତୀର୍ଥ ସେନ କ୍ଷେତ୍ରାଧିପତି ପୁଷ୍କର
ଏମାନେ ଖଟନ୍ତି ଦେବେ ତେଜ ସ୍ୱର୍ଗପୁର ।
ରହି କୁଡ଼ କୁଡ଼ ହୋଇଅଛି ତଉକତ
ବୃକ୍ଷ ବୋଲି ନ ବହନ୍ତି ତା ଘ୍ରାଣ କରନ୍ତି ।

ବରଷକେ ଭନନ୍ତନ ହୁଏ ସ୍ୱର୍ଣ୍ଣବୃଷ୍ଟି
ଲକ୍ଷେ ଯୋଜନ ଆଯୁଷ କେହି ନ ପାଉଁଟି ।
ଗଙ୍ଗା ଯମୁନା ଗୋଦାବରୀ ରୁଦ୍ରା ସରସ୍ୱତୀ
ନର୍ମଦା ପାପନାଶିନୀ ନଦୀ ପୁଣ୍ୟବତୀ ।
ରୁଦ୍ରବେଣୀ କୃଷ୍ଣବେଣୀ କାଶୀ କଉଶିକୀ
ରାମବେଣୀ ଗଉତମୀ ଗୋମତୀ ପୁଲକୀ ।
ହରିଭଦ୍ରା ତୁଙ୍ଗଭଦ୍ରା ତିନି ଉତପଳା
ଅନନ୍ତା ଶବରୀ ଚନ୍ଦ୍ରଭାଗା ବ୍ରହ୍ମକଳା ।
ସାଗର ସଙ୍ଗମା ଲକ୍ଷ୍ମୀବେଣୀ କ୍ଷେତ୍ରବେଣୀ
ମାରକଣ୍ଡ କଲ୍ୟାଣୁ ଯେ ଅଭୟା ଭଦ୍ରାଣୀ ।
କାଞ୍ଚିକା କୁଞ୍ଚିକା ବୃଦ୍ଧମାତା ଯେ ବିମଳା
ମାହେଶ୍ୱରୀ ମାଧବୀ ଯେ ଗଜେନ୍ଦ୍ରୀ କମଳା ।
ଏ ନଦୀଙ୍କ ମୂଳେ କୋଟି ନଦୀଙ୍କ ସଙ୍ଗମେ
ପ୍ରଦକ୍ଷିଣ କରୁଛନ୍ତି ପୁରେ ନିତ୍ୟକର୍ମେ ।
ରୁଦ୍ର ପାଦୋଦକ ବହି ସର୍ବେ ଧବଳାଙ୍ଗୀ
ସଂସାର ପାପହାରିଣୀ ପୁଣି ଯଉଭାଗୀ
କହନ୍ତେ ଅସଂଖ୍ୟ କପିଳାସ ସ୍ୱର୍ଗକଥା
ଦେଖି ନ ପାରନ୍ତି ଯାର ମହିମା ଦେବତା ।
ଅସଂଖ୍ୟ ସାଗରେ କେହି ପାରିବନି ଲକ୍ଷ
କଞ୍ଚିତ କର ତୋଷିବ ପୁର ସଙ୍ଗେ ଲେଖି ।
ତହିଁ ଦ୍ୱାରପାଳ ଏହି କୈଳାସ ଭୁବନେ
ନନ୍ଦିକେଶ୍ୱରଇ ଶାପେ ରହିଲି ଅଜ୍ଞାନେ ।
ଯେସନେକ ଆଜ୍ଞା ମୋତେ ଦେଲେକ ପାର୍ବତୀ
ଅନେକ ସଂସାରେ ଲୋକେ ପାରି ହୋଇଯାନ୍ତି
କୁଟୁମ୍ବ ଦେଖାନ୍ତେ ତେଜ ଭବ ମୋହ ହିଂସା
ସଦାନନ୍ଦ ଚରଣରେ କେବଳ ଭରସା ।
ମୋ ଦୋଷ ହରଣ ନାଥ ରୁଦ୍ର କାଶୀବାସୀ
ଏ ମୋହ ସଂସାରେ ପାରିକର ମୋତେ ଆସି
କୃପାଜଳ ନନ୍ଦନ ଗୋ ଦେବୀ ସରସ୍ୱତୀ
ପିତାମହ ଶାପେ ଦେବୀ ଧରୁ ଚଣ୍ଡୀମୂର୍ତ୍ତି ।
ତବ ଲସ୍ତେ ମୋ ପ୍ରକୃତି ଭାବେ ପଞ୍ଚଭୂତେ
ମାଗୋ ମୁକତି ଗୋ ଦିଅ ତୋହର ପ୍ରସାଦେ
ଯେ ଶାସ୍ତ୍ର ବାହାର ହେଲା ସୁଷମୁନା ବେଦ
ଶୁଦ୍ରମୁନି ପଦ ମୋର ଶାରଳାଙ୍କ ତହିଁ ।
ଏସନ ଦୁର୍ଲ୍ଲଭ କପିଳାସ ସ୍ୱର୍ଗ କଥା
ନାଗାର୍ଜୁନ ଦେଖି ଶୁଣି ସମସ୍ତ ବ୍ୟବସ୍ଥା ।

କାଶୀନଗ୍ରୀ ପ୍ରାନ୍ତରେ ହର ଉଦ୍ୟାନ ଯେ ବନ
ନାଗାର୍ଜ୍ଜୁନ ବସି ତହିଁ କଲା ତପ ଧ୍ୟାନ ।
ସଲିଳ ତୁଳସୀପତ୍ର ବରଷେକ ଭକ୍ଷି
ରୁଦ୍ର ବ୍ରହ୍ମମନ୍ତ୍ର ଜପେ ଅଜପାକୁ ବାଛି ।
ବାଲୁକାରେ ଲିଙ୍ଗ ସ୍ଥାପି ତାଡ଼ ବେଣଡୋଳା
ସେ ଲିଙ୍ଗ ଉପରେ ଦେଇ ଖଟେ କରି ଲୀଳା ।
ଚର୍ମପୃଷ୍ଠ ବୃକ୍ଷପୃଷ୍ଠ ତାଣ୍ଡବର ନାଟେ
ଧିମିକ ଧିମିକ ବାଦ୍ୟ ବଜାଇ ସେ ଖଟେ ।
କୁମାରର କର୍ଣ୍ଣ ଲଇ ପୁଣି ବେନି ଆଖି
ଦିବ୍ୟ ଚକ୍ଷୁ ଯେଣେ ସର୍ବ ଭୁବନ ଉପେକ୍ଷି ।
ସ୍ତବନ ସେ କୁମର ତାଡ଼ିଲେ ଲୋଚନ
କାଶୀ ଜଟେ ବିଶ୍ୱନାଥ ହୋଇବା ପ୍ରସନ୍ନ ।
ପାଞ୍ଚ ବରଷ ସେ ତପକଲା ଏହିମତେ
ଲେଟିଲା ଶରୀର ସେହି ଉଦ୍ଧ ଅଣକତେ ।
ପୃଥିବୀ ପାଡ଼ିଲା ତହିଁ ତମ୍ବାର ଆଦ୍ରୁତ
ବେନି ପ୍ରତ୍ନହିଁ ଉତ୍ସର୍ଗ ପାତାଳେ ସାଇତ ।
ତହିଁ ଉପରେ ଧାରଣ କାଠ ଖଣ୍ଡେ ଲିଦ
ଊର୍ଦ୍ଧ୍ୱ ରେଖା ହୋଇ ଦୁଇପାଦ ଊର୍ଦ୍ଧ୍ୱେ ଛନ୍ଦ
ଆକାଶକୁ ଦୁଇପାଦ ତଳକୁ ତା ଶିର
ନାସିକାବାଟେ ବାହାର ହୋଇଲା ରୁଧିର ।
ପ୍ରଚଣ୍ଡ ହୋଇ ବାହାର ପବନ ଧନ୍ୱନ୍ତରୀ
ଶରୀର କ୍ଷେପି ଅନାଦି ଅନଳର ଜ୍ୟୋତି ।
ଯେତେକ ମାଂସ ତାହାର ପଡ଼ଇ ମିଳାଇ
ପୁଣି କର୍ଣ୍ଣ ଲଇ ସେହି ରୁଦ୍ର ଆଜ୍ଞାପାଇ ।
ଊର୍ଦ୍ଧ୍ୱରେଖା ହେଲା ପଞ୍ଚବରଷ ପର୍ଯ୍ୟନ୍ତେ
କଠୋର ତପେ ଭର୍ମିଲେ କାଶୀ ବିଶ୍ୱନାଥେ
ହୃଦୟ ହାର ଲୋହିତବର୍ଣ୍ଣ ପିଙ୍ଗ ନାଗ
ବାହୁର କଙ୍କଣ କାଳୀ ବଳୟ ଉରଗ ।
କଟିମେଖଳା ଅନନ୍ତ ନାଗ ହୋଇଅଛି
ଶିରରେ ବାସୁକି ନାଗ ଫଣା ଅଛି ଦଣ୍ଡି ।
ସିନ୍ଧୁ ଘୋଷ ଜାଣି ଫୁଫୁକାର ନାଦେ ଗର୍ଜି
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜି ।
ଲୋହିତ ଧବଳ ମଳ ନେତ୍ର ଜଳବର୍ଣ୍ଣ
ଜଟାଭେଦ ମଣ୍ଡଳରେ ଖେଳେ ଧବଳାଙ୍ଗୀ ।
ବକ୍ଷର ନନ୍ଦିନୀ ବାମ ଅଙ୍ଗେ ଯାଇ ଭ୍ରମେ
ନାରି କମଣ୍ଡଳ ସ୍ଥିରିଥାଏ ଅତ ପ୍ରେମେ ।

ଶବଦ ସନ ଗର୍ଜ୍ଜଇ ହୁଂକାର ଯାହାର
ନରକାର ପୁରୁଷ ଯେ ମହା ସିଦ୍ଧେଶ୍ୱର ।
ମହାଯୋଗେଶ୍ୱର ସ୍ୱାମୀ ବୃଷଭ ବାହନେ
ନଜରୂପେ ଦୃଶ୍ୟହେଲେ ସେ ପ୍ରଭୁ ଈଶାନେ
ବହିଲେ ଯଜ୍ଞପୁରୁଷ ରୂପେ କାମଦେବ
ପ୍ରଣାକାର ସାକାର ଯେ ଦେବ ସଦାଶିବ ।
ଧବଳ ଅଙ୍ଗପୁରୁଷ ଅବ୍ୟୟ ଅଚିନ୍ତ୍ୟ
ଅନନ୍ତ ସଂସାରେ ନାଥ ବିବସ୍ୱାନ କାନ୍ତ ।
ମଧ୍ୟ ଭୁବନ ଚରଣ ସ୍ୱର୍ଗଙ୍ଗା ମଣ୍ଡଳ
ନେତ୍ର ବିଜୟର ନାଥ ଅଭୟ କପାଳ ।
ଦର ଦୁଃଖରେ କାତର ତ୍ରିଶୂଳ ପିନାକୀ
ଅଶେଷ ମହିମା ଯାର କେ ପାରଇ ଲେଖି ।
ଶ୍ରୀବିଶ୍ୱନାଥ ସ୍ୱରୂପ ଦିବ୍ୟନେତ୍ର ଦେଖି
ଶତ ସହସ୍ର ପ୍ରଣାମ ସକଳ ଉପେକ୍ଷି ।
ଲୟ କରି ସୁପ୍ରସନ୍ନ ନାଥ ପଦ୍ମପାଦେ
ଶାରଳାଦାସ ବୋଇଲେ ସେ ଶିବ ପ୍ରସାଦେ
ଧ୍ୟାନେ ଜାଣିଲା ପ୍ରସନ୍ନ ହେଲେ ଦେବଶୂଳୀ
ଯୋଗେଶ୍ୱର ପୁରୁଷ ଯେ ଅଜୟ କପାଳୀ ।
କାଟିଲେ ରକ୍ତ କୁମର ପଡ଼ିଲା ଅଙ୍କନେ
ଅମୃତ ସିଞ୍ଚିଲେ ଉଠି ବସିଲା ତକ୍ଷଣେ ।
ନାଗାର୍ଜ୍ଜୁନ ଦେଖିଲାକ ଏସନକ ଯୋଗୀ
ସମାଧି ଆସନ ତପ ଜପ ଲୟ ତ୍ୟାଗୀ ।
ବୋଇଲା ମହାତ୍ମା ଦୁଃଖେ ଅର୍ଜିତ ମୋ ତପ
କପାଇଁ ଭଙ୍ଗିଲୁ ତୋର ଏ କେଉଁ ସ୍ୱରୂପ ।
ଈଶ୍ୱର ବୋଇଲେ ତୁହି କାହାକୁ ସୁମରୁ
ସୁତ ବୋଲେ ବିଶ୍ୱନାଥ ମୋର ଇଷ୍ଟ ଗୁରୁ
ଈଶ୍ୱର ବୋଇଲେ ତୋର ତପ ହେଲା ସାର୍ଥ
ମୁହିଁ ଧୂର୍ଜ୍ଜଟି ଅଭୟ କାଶୀ ବିଶ୍ୱନାଥ ।
ନାଗାର୍ଜ୍ଜୁନ ବୋଲେ ତୁହେ ଏମନ୍ତ ତୋ ରୂପ
ପ୍ରସନ୍ନ ହୋଇଲ ଯେବେ ଦେଖାଅ ସ୍ୱରୂପ ।
ଶୁଣିଣ ନାଗାର୍ଜ୍ଜୁନର ସେ ଦୃଢ଼ ବଚନ
ଧଇଲେକ ନିଜରୂପ ଦେବ ତ୍ରିଲୋଚନ ।
ଶୁକଳବର୍ଣ୍ଣ ସୁସଞ୍ଚ ପାଞ୍ଚଗୋଟି ମୁଖ
ଲଲାଟରେ ବିରାଜଇ ଶଶିକଳା ରେଖ ।
କଟିରେ ମହାମେଖଳ ପିଙ୍ଗବର୍ଣ୍ଣ ଜଟ
ସୋମ ସୂର୍ଯ୍ୟ ଅଗ୍ନି ତିନି ନୟନ ପ୍ରକଟ ।

ବଦନକେ ତ୍ରିଲୋଚନ ପଞ୍ଚଦଶ ନେତ୍ର
କେନ କେନ ଶ୍ରବଣହିଁ କୁଣ୍ଡଳେ ମଣ୍ଡିତ ।
ବହନ୍ତି ଗଙ୍ଗା ଯମୁନା ସରସ୍ୱତୀ ଜଟେ
ମହା କାଳକୂଟ ଶୋଭାପାଏ କଣ୍ଠତଟେ ।
ପିନାକ ଶାରଙ୍ଗ ଅଜଗବ ଦଶଭୁଜେ
ଶୂଳ ପାଶୁପତ ଲୁନ ଶିବଧନୁ ସଜେ ।
ବୈଷ୍ଣବ ଧନୁ ଖଟ୍ୱାଙ୍ଗ ଡମ୍ବରୁ ଶୋଭନ
ସର୍ବାଙ୍ଗ ସୁଭଳ ନାଥ ବିଭୂତି ଲେପନ ।
ନିଜ ରୂପ ଦେଖାଇଲେ ସେ ଦେବ ଈଶାନ
କୀଟ ପ୍ରାୟ ଦୃଶ୍ୟହେଲେ ସ୍ଥାବର ଜଙ୍ଗମ ।
ନାଗାର୍ଜୁନ ଦେଖି ପାଦେ ସହସ୍ର ପ୍ରଣମି
ଦୁଷ୍କୃତ ଦୋଷ ମୋହର କ୍ଷମାକର ସ୍ୱାମୀ ।
ବର ମାଗ ବୋଇଲେ ସେ ପ୍ରଭୁ ବିଶ୍ୱନାଥ
ଯାହା ଇଚ୍ଛା କରିବୁ ତୁ ହେବ ପଗପତ ।
ନାଗାର୍ଜୁନ ବୋଲେ ଶୁଣ ସ୍ୱାମି ବିଶ୍ୱେଶ୍ୱର
ବର ମାଗିବାପାଇଁ ମୋ ଇଚ୍ଛା ଯେ ପ୍ରକାର
ପୁରୁଷର ଦଶ ବର ସ୍ତ୍ରୀର ତିନି ବର
ଏଣୁ ଦଶ ବର ତୋତେ ମାଗିବି ଈଶ୍ୱର ।
ମାଗୁଅଛି ଯାହା ଏବେ ମୋର ମନଇଚ୍ଛା
ଇବେ ଅସ୍ତ୍ର ପରିଯନ୍ତେ ସିଦ୍ଧ ହେବ ବାଞ୍ଛା ।
ଈଶ୍ୱର ବୋଇଲେ ତୁମ୍ଭ ମାଗ କି ନା ବର
ନାଗାର୍ଜୁନ ବୋଇଲେ ମୁଁ ହୋଇବି ଅମର
ଜିଣିବଇଁ ଅଷ୍ଟକୁଳନାଗ ତ୍ରିପୁରାରି
ନାଗବଳ ମୋତେ ରଣେ ନୋହିବେଟି ସରି
ପୃଥିବୀକି ଧରିବାକୁ ମୁଁ ହେବି ସମର୍ଥ
ଅନନ୍ତ ପ୍ରାକ୍ରମ ମୋତେ ଦିଅ ବିଶ୍ୱନାଥ ।
ଶରୀର ମୋହର ବଜ୍ର ହୋଇବ କପାଳ
ଦେବ ଶସ୍ତ୍ରମାନ ଅଙ୍ଗେ ପଡ଼ି ହେବ ଧୂଳ ।
ଯମ କାଳଦଣ୍ଡେ ଦେବ ନୋହିବ ମୁଁ ବଧ
ବ୍ରହ୍ମା ବିଷ୍ଣୁ ରୁଦ୍ର ହାରିଯିବେ କଲେ ଯୁଦ୍ଧ ।
ଚନ୍ଦ୍ର ସୂର୍ଯ୍ୟ ଆଦିଙ୍କି ମୁଁ ଜିଣିବଇଁ ଧରି
ଅଗାଧ ସମୁଦ୍ରେ ବଧ ନ ହେବ ଯେପରି ।
ଦିବ୍ୟଚକ୍ଷୁ ଦେଇ ମୋତେ କର ମହାଯୋଗୀ
ତବ ଦ୍ୱାରପାଳ ହୋଇ ହେବି କଳ୍ପଭୋଗୀ ।
ସଦାଶିବ ବୋଇଲେ ଯେ ହେଉ ସର୍ବସିଦ୍ଧି
ତ୍ରୈଲୋକ୍ୟ ମଧ୍ୟରେ ତୁଷ୍ଟ ତୁମ୍ଭ ଏକଯୋଦ୍ଧା ।

ବିଭୂତି ଲେପିଲେ ଦେବ ନାଗାର୍ଜୁନ ଅଙ୍ଗେ
ଶରୀର ବଜ୍ର ହୋଇଲା ରୁଦ୍ର ଆଜ୍ଞା ସଙ୍ଗେ ।
ପୁନରପି ବୋଇଲା ସେ ଅର୍ଜୁନର ସୂନୁ
ଦେବାଦେବ ସ୍ୱାମି ମୋତେ ତୋ ପିନାକ ଧନୁ
ଅକ୍ଷୟ ତୁଣୀର ଦେନ ପାଶୁପତ ଶର
ତ୍ରିଶୂଳ ଖଟ୍ୱାଙ୍ଗ ଶକ୍ତି ଅମୋଘ ମୁଦ୍ଗର ।
ଏବେକେ ସୁପ୍ରସନ୍ନେ ଦେଲେ ସ୍ୱାମୀ ବିଶ୍ୱନାଥ
ମାଗିଲା କୁମର ନାଗପାଶହିଁ ସହିତ ।
ଅନଳେ ପଶିଲେ ମୋର ନ ପୋଡ଼ିବ କାୟ
ନ ବୁଡ଼ିବ ଜଳେ ମୋତେ ହୋଇବା ସହାୟ
ଏ ସମସ୍ତ ବିଦ୍ୟାରେ ଯେ ମୋର ଥାଇ ଆଶ
ପୃଥିବୀ ସଲିଳ ତେଜ ବାୟୁ ଯେ ଆକାଶ ।
ଏହି ପଞ୍ଚ ମହାଭୂତ ହେବ ମୋତେ ବଶ୍ୟ
ତୁ ମୋହର ପିଅର ସେ ଅଟୁ ବିଶ୍ୱବାସ ।
ପାର୍ବତୀ ଦେବୀ ମୋହର ଅଟନ୍ତି ଜନନୀ
ଜ୍ୟେଷ୍ଠଭ୍ରାତା କାର୍ତ୍ତିକେୟ ଗଜାନନ ଦେନ
ନାଗାର୍ଜୁନକୁ କୋଳରେ ଧରି ଯୋଗେଶ୍ୱର
ପାର୍ବତୀଙ୍କ କୋଳେ ଦେଇ ବୋଇଲେ ତପୁର
ଏ ମୋହର ପୁତ୍ର କ୍ଷୀର ଦିଅ ଗୋ ଗିରିଜା
ପ୍ରସନ୍ନେ ଅଭୟବର ଦେଲେ ଦେବରାଜା ।
ଈଶ୍ୱର ବଚନେ କୋଳେ ନାଗାର୍ଜୁନେ ଧରି
ମୁଖେ କ୍ଷୀରଦେଲେ ତାକୁ ଦେବୀ ଶାକମ୍ଭରୀ
ତେଣୁ ସେହି ନାଗାର୍ଜୁନ ହୋଇଲେ ଚିରଜୀବୀ
ଶରୀର ତାର ଆରୋଗ୍ୟ କଲେ ଶିବ ଦେବୀ
ପାର୍ବତୀ ଦେଲେ ତାହାକୁ ଅମୋଘ ଶକତି
ପରଶୁ ଅମୃତ ଅସ୍ତ୍ର ଦେଲେ ଗଣପତି ।
ସ୍କନ୍ଦ ଦେଲେ ସୂର୍ଯ୍ୟାବର୍ତ୍ତ ଚନ୍ଦ୍ର ଗଦା ଦେନ
କେଶରୀ ଯେ କୁନ୍ତ ଦେଲା ଅତିସ୍ନେହ ଘେନ ।
ଅଗ୍ନି ନାରଚ ଆବର ମହାକାଳ ବାଣ
ବାରାହୀ ଯେ ମାହେଶ୍ୱରୀ ଦେଲେ ତତକ୍ଷଣ ।
କୁଣ୍ଡଳ ଚନ୍ଦ୍ରକୁ ଦେଲେ ପୁଣି ସେ ପାର୍ବତୀ
ପଦ୍ମରାଗ ପୁଣି ଆଣିଦେଲେ ଗଣପତି ।
କାଳପାଶ ଜଳପାଶ ନାଗପାଶ ତିନ
ଦେଇ ପୂଜିଲେ ଜୟନ୍ତ ଅଜୟନ୍ତ ଦେନ ।
ଏମନ୍ତେ ସମସ୍ତ ଅସ୍ତ୍ର ଦେଲେ ଶିବଗଣ
କୋଟିକଳ୍ପ ଚିରଜୀବୀ ଯେ ହୋଇଲା ନନ୍ଦନ ।

ଈଶ୍ୱର ବୋଇଲେ ତୁହି ହେଲୁ ଆମ୍ଭ ବସ୍ତା
ଆମ୍ଭ ଉଦ୍ୟାନକୁ ତୁହି କର ଯାଇ ରକ୍ଷା ।
ଘଣ୍ଟ ବୋଇଲେ ବାବୁ ମୋର ଗଣ୍ଡାଗୋଷ୍ଠି
ଯତନରେ ତାହାକୁ ଥିବୁ ତୁ ଆକଟି ।
ଅନେକ ରହି ମୁଁ ଖଞ୍ଜି ଅଛି ତାର କାସ୍ତେ
ଉଚ୍ଛିଷ୍ଟବୁ ନ ପଡ଼ିବ ଯେତେକ ଅପଚସ୍ୱେ ।
ବର ମାଗନ୍ତେ ଏମନ୍ତେ ଉକ୍ତ ହେଲ ଅସ୍ତ
କପିଳାସ ସ୍ୱର୍ଗେ ବଳେଇଲେ ଶୂଳହସ୍ତ ।
ବର ପାଇଣ ସାନନ୍ଦ ସେ ନାଗଅର୍ଜ୍ଜୁନ
ରତ୍ନକୁମର ହରଷ ଉଦ୍ୟାନ ଯେ ବନ ।
ବର ପାଇ ନାଗାର୍ଜ୍ଜୁନ ପାତାଳକୁ ଗଲା
ଅମରାବତୀନାଥ ଆସ୍ୱ କୁମର ବଡ଼ିଲା ।
ପୁତ୍ରକୁ ଦେଖି ସାନନ୍ଦ ହୋଇଲା ନାଗୁଣୀ
ସମସ୍ତ ବୃତ୍ତାନ୍ତ କହି ସେ କୁମରମଣି ।
ମାତା ସନ୍ନିଧିରେ ଘର ସୁପ୍ରସନ୍ନେ କହି
ଯାଉଛି ଗୋ ମାତ କ୍ଷଣେ ନ ପାରିବ ରହି ।
ଜାନବେ ଉଦ୍ରେକ ନ କରନ୍ତୁ ନା ଅବା
କପିଳାସ ରକ୍ଷକ ମୁଁ ଅଟେ ବଡ଼ବଡ଼ା ।
ଆଉ ମୋତେ ଚିନ୍ତା ତୁ ଗୋ ନ କରିବୁ ମାଏ
ଈଶ୍ୱର ପ୍ରସାଦେ ମୁହିଁ ତ୍ରୈଲୋକ୍ୟ ବିଜୟେ ।
ପାର୍ବତୀଙ୍କ ଘଣ୍ଟା ମାଗୋ ଲକ୍ଷେ ମୁଁ ଯତନେ
ଭୂଷଣ ହୋଇଛି ସେହି ଅନେକ ରତନେ ।
ପାତାଳୁ କୁମର କହି ବାହାର ହୋଇଲା
ହର ଉଦ୍ୟାନ ବନରେ ଯାଇ ପ୍ରବେଶିଲା ।
ସୁଖେ ବିହରଇ ସେହି ଭୁବନ କୈଳାସେ
ଖାରଜା ବାସକୁ ହର ରଖ ନେଇ ପାଶେ ।

## ଅର୍ଜ୍ଜୁନ କର୍ତ୍ତୃକ ଗଣ୍ଡାବଧ

ଅଗସ୍ତି କହନ୍ତି ମନୁ ଶୁଣ ଦଣ୍ଡଧର
ବସ୍ତ ମାସ ତଥି ପୂର୍ଣ୍ଣମୀ ଯେ ଅର୍କବାର ।
ରୋହିଣୀ ନକ୍ଷତ୍ର ଭୋଗ କରେ ଦିନଯାକ
ବୃଷଭ ରାଶିକି ଭୋଗ କରଇ ଶଶାଙ୍କ ।
ବବ ନାମେ କରଣ ଯେ ସାଧ୍ୟ ନାମେ ଯୋଗ
ନାରଦ ବଜେ ବାରୁଣୀଦନ୍ତ ନାମେ ସ୍ୱର୍ଗ ।
ବସ୍ତ୍ର କମଣ୍ଡଳୁ ଆଶା ଜଷା କଉପୀନ
ଦ୍ୱାଦଶତିଳା ସର୍ବାଙ୍ଗେ ବିଭୂତି ଲେପନ ।
ଦୂରୁ ଦେଖି ଆସନରୁ ଉଠି ଧର୍ମବାଳ
ବ୍ରହ୍ମାଙ୍କ ନନ୍ଦନ ପାଦେ ତାଳ ଶୁଦ୍ଧଜାଳ ।
ପାଦ ପଖାଳି ନୂତନ ବସ୍ତ୍ରେ ପୋଛିଦେଇ
ଅଷ୍ଟାଙ୍ଗ ଶରୀରେ ଗନ୍ଧ ଚକ୍ଷୁଃସମ ନାଇ ।
ଚନ୍ଦନ ଅକ୍ଷତ ପୁଷ୍ପ ତାମ୍ବୁଳ ସହିତେ
ଷଡ଼ ଅର୍ଘ୍ୟ ଦେଇ ପୂଜାକଲେ ବିଧିମତେ ।
ବସ୍ତ୍ର କୁଣ୍ଡଳ ରତନମାଳା ଗଳେ ଦେଇ
ଧୂପ ଦୀପ ନଇବେଦ୍ୟ ଦେଇଣ ତପସ୍ୱୀ ।
କନକର ପୀଢ଼ା ଦେଲେ ମୁନିଙ୍କୁ ଆସନ
ପୂଜା ପାଇଣ ବସିଲେ ବିଧାତା ନନ୍ଦନ ।
କରପଦ୍ମ ଯୋଡ଼ି ଉଭା ଯୁଧିଷ୍ଠିର ସ୍ୱାମୀ
ବ୍ରହ୍ମମୁନି ପାଦେ ଶତସହସ୍ର ପ୍ରଣମି ।
ବଡ଼ ସୁଫଳ ଦେଖିଲୁ ଆଜ ମହାତମା
ବ୍ରହ୍ମଦେବ ପ୍ରତ୍ୟକ୍ଷରେ ତୁ ଦିଶୁ ବ୍ରହ୍ମା ।
ଏହା କହି ପଚାରିଲେ କୁଶଳ ବାରତା
କେବଣ ପୁରେ ଦେଖିଲେ କେଉଁଣସି କଥା
ନାରଦ ବୋଇଲେ ଶୁଣ ଧର୍ମ ନୃପବରେ
ଆମ୍ଭେ ଯେ ଥିଲୁ ପ୍ରଥମେ ବ୍ରହ୍ମାଙ୍କ ସଭାରେ ।
ଯୁଧିଷ୍ଠିର ପଚାରିଲେ ଶୁଣ ବ୍ରହ୍ମସୁତ
ତୁମ୍ଭ ବ୍ରହ୍ମାଙ୍କ ସଭାରେ କେ କେ ବସିଛନ୍ତି ।
ବ୍ରହ୍ମା ସମୀପେ ବସନ୍ତେ ମୁନି ଯେ ବଶିଷ୍ଠ
ପୌଲସ୍ତ୍ୟ ବସନ୍ତି ସେହୁ ମୁନିଙ୍କର ଶ୍ରେଷ୍ଠ ।
ଅଛନ୍ତି ଯେ ମାର୍କଣ୍ଡେୟ ଋଷି ସନ୍ନିଧାନେ
ଅଗସ୍ତି ବାଲ୍ମୀକି ପୁଣ ସୁମନ୍ତ ଏମାନେ ।
ବାମଦେବ ଉଦ୍ଦାଳକ ଆଉର ଦୁର୍ବାସା
ତପୋବନ୍ତ ବିଶ୍ୱାମିତ୍ର ମୁନି ମହାଯଶା ।
ଅଷ୍ଟାବକ୍ର ଭରଦ୍ୱାଜ ଜନକ ମହର୍ଷି
ଭୃଗୁଙ୍କ ଯେ ପଉତମ ଉତ୍ତଙ୍କ ଋଷି ।
ଋଷ୍ୟଶୃଙ୍ଗ ଯମଦଗ୍ନି ମରୀଚି କଶ୍ୟପେ
ମେରୁଶୃଙ୍ଗ ମାଲ୍ୟବନ୍ତ ବସନ୍ତି ସମୀପେ ।
ଆସ୍ଥାନର ତଳେ ଅଛି କଳ୍ପ ମହାବୃକ୍ଷ
ଆସ୍ଥାନେ ନସେବଧ ଚନ୍ଦ୍ରକେତୁର ଆତ୍ମଜ ।
ହାହା ହୂହୂ ସେନ ତନକୋଟି ଯେ ଗନ୍ଧର୍ବେ
ନସେବନ୍ତି ଆସ୍ଥାନକୁ ବଢ଼ାଇ ସନ୍ତର୍ବେ ।
ବେଦ ତତ୍ତ୍ୱର କହନ୍ତି ସେଠାରେ ବାରତା
ସପ୍ତସ୍ୱର ବୀଣା ମୋର ଶୁଣନ୍ତି ବିଧାତା ।

ନରତା ପୁରୁଷ ଉଆଇଲା ସ୍ବରଖାନ
ସତ୍ୟବନ୍ତ ପୁରୁଷକୁ ସମସ୍ତେ ପ୍ରଣମି ।
ତେତିଶ କୋଟି ଅମରଗଣ ଘେନ ସଙ୍ଗେ
ବଜେ ଅମରାଧିନାଥ ଗନ୍ଧର୍ବଙ୍କ ଆଗେ ।
ଚୌଷଠି କୋଟି ଅମରପୁର ବଳାସିନୀ
ମୃଦଙ୍ଗ ତାଳ କଂସାଳ ବଂଶୀ ଲୁଦ୍ରବେଣୀ ।
ଘେନ ଚଉଷଠିକୋଟି ଗନ୍ଧର୍ବ ଗାୟିକା
ଚିତ୍ରରେଖା କାମସେଣା ଉର୍ବଶୀ ମେନକା ।
ଏହାଙ୍କ ମୂଳେ ସମସ୍ତେ ସ୍ୱର୍ଗ ବିଦ୍ୟାଧରୀ
ରହସ୍ୟ ରସେ ନାୟିକା ନୃତ୍ୟରଙ୍ଗ କରି ।
ହରିଲା ଯେଣୁ ସେ ଜମ୍ଭଦୈତ୍ୟର ସମୃଦ୍ଧି
ତଦର୍ଥେ ତାହାର ନାମ ଅଟେ ଜମ୍ଭଭେଦୀ ।
ବାଷଠିକୋଟି ଅନନ୍ତ ବାସବ ଉଦନ
ସମସ୍ତେ ଦିଶନ୍ତି ଦେବ ଇନ୍ଦ୍ରର ସମାନ ।
ଏସନକ ସମାବେଶ ଦେଖିଲ୍ ଅମ୍ବରେ
ବିଜୟ ବେଦ ମଘବା ଅମର ନଗରେ ।
ସ୍ୱର୍ଗ ଭୁବନେ ଦେଖିଲ୍ ପୂର୍ବ ଭାଗସ୍ୱଗ
ଦେବ ଭଣ୍ଡାରେ ଦେଖିଲ୍ ପୌଲସ୍ତିର ନାତି
ସପ୍ତ ଭଣ୍ଡାର ନାୟକ ଦେବ ଅଧିକାରୀ
ଅଷ୍ଟୋତ୍ତରଶତ ପଦ୍ମ ଅଟଇ ତାହାର ।
ବସୁତର ବିଦ୍ୟାଧର ଖଟନ୍ତି ତା ପୁରେ
ଦେବ ଭୁବନହିଁ ରକ୍ଷା ହୁଏ ଏହାଙ୍କରେ ।
ଶ୍ରୀଈଶ୍ୱର ଦେବତାର ଈଶଙ୍କ କୈଳାସ
ମହାକଳ୍ପ ଆୟୁ ଘେନ ବଜେ ବିଶ୍ୱବାସ ।
ଚନ୍ଦ୍ରଭୁବନ ହିରଣ୍ୟ ଗର୍ଭେ ଅଛି ପୃଷ୍ଠ
ସେ ଭୁବନ ପୁରୁଷ ସେ ନିଶା ଅଧିକାରୀ ।
ଆଦିତ୍ୟ ଦେବ ବିଜୟ ରଥରେ ଆକାଶେ
ଅରୁଣ ସାରଥି ଅଛି ତାହାଙ୍କର ପାଶେ ।
ଅସଂଖ୍ୟ ମହିମା ତାର ନ ସରେ କହନ୍ତେ
ସଂଯମନୀ ପୁର ମଧ୍ୟ ଦେଖିଲ ଆସନ୍ତେ ।
ବସନ୍ତ ସେ ନବଗ୍ରହ ଏହାଙ୍କର ଦେହେ
ନାଗକର ଦେବତା ଯେ ବଡ ସମାବେଶେ ।
ନାରଦଙ୍କ ବଚନରେ ଦେଖନ୍ତି ଯୁଧିଷ୍ଠି
ଅମର ସଭାରେ ତୁମ୍ଭେ ଥିଲ ଚଟପାଣ୍ଡିଷ୍ଟି ।
ସବୁ ସ୍ଥାନରେ ଦେଖିଲ ସବୁ ଦେବତାଙ୍କୁ
ଯମପୁରେ ଦେଖିଲ କି ମୋ ପିତା ପାଣ୍ଡୁଙ୍କୁ ।

ନାରଦ ବୋଇଲେ ବୁଦ୍ଧୋ ପୃଚ୍ଛାକଲ୍ ଯାହା
ପାଣ୍ଡୁର ଚରିତ କହୁଁ ଶୁଣ ନରନାଥା ।
ପିତାପାଣ୍ଡୁ ତୋହର ଯେ ବ୍ରହ୍ମହତ୍ୟା କଲା
ତହେଁତେ ବୃତ୍ତାନ୍ତ ତାକୁ ଅବସ୍ଥା ଲଭିଲା ।
ତିନ ପାବଚ୍ଛର ତଳେ ଉଦ୍ଧ୍ୱ ଗୃହାପାଣ୍ଡୁ
ପାଶହୋଇ ନାହିଁ ତାକୁ ଯମରାଜ ଦଣ୍ଡୁ ।
ବିଜଗର୍ଭ ପାଣ୍ଡୁ ରାଜା ଅଛି ଉର୍ଦ୍ଧ୍ୱ ହୋଇ
ଭସ ବୋଲି ନ ବୋଲଇ ଯମ ତାହାକୁହିଁ ।
ମୁଁ ବୋଲଇ ଧର୍ମ ରାଜସୂୟ ଯଜ୍ଞ କଲ
ଏତେ ବଡଧର୍ମେ ତାର ପାପ ତ ନ ଗଲା ।
ଯମ ଦେବତା ବୋଇଲା ତେବେ ଅନୁକ୍ରମ
ପାଇଲେ ସେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସମସ୍ତ ।
ପାଣ୍ଡୁ ମାଣ୍ଡ ଯେବେ କାମ୍ୟ କର୍ମ ସେ କରନ୍ତି
ଦେବ ପିତୃଲୋକ ମିଳି ତାହା ପାଏ ଯାଇ ।
ଯେ ଶ୍ରାଦ୍ଧେ ଦେବତା ପିତୃ ସନ୍ତୋଷହୋଇବେ
ତେବେ ପାଣ୍ଡୁ ସ୍ୱର୍ଗେ ମହା ପାତକ ଖଣ୍ଡିବେ ।
ଏହା ଶୁଣି ପାଣ୍ଡୁ ମୋତେ ବୋଇଲେ ବଚନେ
ଯୁଧିଷ୍ଠି ସ୍ଥାନରେ ଯାଇ କହିବ ମୁନି ହେ ।
ଗଣ୍ଡା ଗୋଟିଏକ ମାରି କରୁ କାମ୍ୟଶ୍ରାଦ୍ଧ
ଅବଶେ ଖଣ୍ଡିବ ପାପ ନୁହଇ ଅସାଧ ।
ଶୁଣିଣ ଯୁଧିଷ୍ଠିଙ୍କର ନ ସ୍ଫୁରଇ କଥା
ସୁମରନ୍ତି ଭଗବାନ ଦେବ ହେ ଶ୍ରୀହରି ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ବୃକୋଦର
ବନସ୍ତେ ଚାଲି ଗୋଟିଏ ଗଣ୍ଡ ଜୀବ ମାର ।
ଭୀମ ବୋଇଲେ ମୁଁ ଯିବ ଏହିକ୍ଷଣି ଦେବ
ନ ଜାଣଇ କେମନ୍ତେ ସେ ଦିଶେ ଗଣ୍ଡାଜୀବ ।
ଖେଦ ମାଣିବ ବନସ୍ତେ ସମସ୍ତ ଜୀବଙ୍କୁ
ସଙ୍ଗେ ଜଣେ ଚିହ୍ନିଥାଅ ଗଣ୍ଡା ଚିହ୍ନିବାକୁ ।
ଯୁଧିଷ୍ଠିଦେବ ବୋଇଲେ ନ ଯା ବୃକୋଦର
ବନେ ପଶି ଗଣ୍ଡା ମାରୁ ପାର୍ଥ ଧନୁର୍ଦ୍ଧର ।
ଶୁଣିଣ କପିଧ୍ୱଜପେ ଗଲା ସବ୍ୟସାଚି
ବନଚରରୂପେ ଖୋଜେ ଗଣ୍ଡାଜୀବ ଲୁଚି ।
ହିରଣ୍ୟ ବନୁ ସେ ମନୋହର ବନ ଯାଏ
ବୁଲି ବୁଲି ସେ ପାର୍ଥିବ ପରିଶ୍ରାନ୍ତ କାୟେ ।
ଅନେକ ବନ କନ୍ଦର ନଦୀ ଭ୍ରମି ଭ୍ରମି
ନଦୀଘାଟଯାକ ଖୋଜି ଖୋଜି ପଥଶ୍ରମି ।

ନନ୍ଦନ ପର୍ଯ୍ୟନ୍ତେ ଖୋଜି ନ ପାଇଲେ
କର୍ଣ୍ଣର ବନେ ପଶିଣ ବହୁତ ଖୋଜିଲେ ।
କନ୍ଦମୂଳ ଫଳ ତହିଁ କରଇ ଭକ୍ଷଣ
ଦେଖଇ ମୃଗାସ୍ୟା ସେହି ସ୍ୱାମୀର ବଚନ ।
ବାରୁଣା ନାମରେ ଅଛି ଏକଇ ପର୍ବତ
ପାପନାଶିନୀ ସେ ଭୃଙ୍ଗଭଦ୍ରା ତହୁଁ ଜାତ ।
ସେ ନଦୀ ପର୍ବତ ଘାଟେ ଅସ୍ତ ପର୍ବତ
ସେ ଗିରି ଉପରେ ଯାଇ ଉଠେ ବୀରପାର୍ଥ ।
ଏମନ୍ତ ସମୟେ ଚଳେ ନାରଦ ସୁଜ୍ଞମା
ଦେଖି ତାଙ୍କ ପ୍ରଣିପାତ କଲା ଫାଲ୍ଗୁନ ।
ବୋଇଲେ ଘଣ୍ଟାଜୀବ ନ ପାଇଲି ହେ ମୁନି
ନନ୍ଦନ ଦେଖିଲି ଭ୍ରମି ଭ୍ରମି ଏ ମେଦିନୀ ।
ନାରଦ ମୁନି ହସିଲେ ପାର୍ଥମୁଖ ଚାହିଁ
ଏରୂପଗୋଷ୍ଠି ବାବୁରେ ତୋତେହେଁ ଶୋଭଇ
ଅର୍ଜୁନ ବୋଲଇ ଆହେ ଶୁଣ ମୁନିବର
ବନେ ନ ପାଇଲି ଘଣ୍ଟାଜୀବହିଁ ଆବର ।
ଅର୍ଜୁନର ବଚନେ ସେ ବୋଲନ୍ତି ନାରଦେ
ତୋ ମୃଗସ୍ତା ଜାଣି ଘଣ୍ଟା ପଳାଇଲେ ହ୍ରଦେ
ହର ଉଦ୍ୟାନ ନାମେ ସେ ଅଛି ଏକ ବନ
ତହିଁ ଘଣ୍ଟାଜୀବମାନେ ହୋଇଲେ ଗୋପନ ।
ଖଞ୍ଜନଗିରି ଉତ୍ତରେ କୂଳେ କୂଳେ ଯିବୁ
ଏବେ ସେଥି ଘଣ୍ଟାଜୀବ ଗୋଟିଏ ଆଣିବୁ ।
ତେଣେ କାର୍ଯ୍ୟକରି ବାବୁ ପିତାର ନିମନ୍ତେ
ମୁକ୍ତ ହେଉ ପିତା ତୋର ଯାଉ ସ୍ୱର୍ଗ ପଥେ ।
ଏହା ସେ ନାରଦ ମୁନି ଗଲେ ଅନ୍ତର୍ଦ୍ଧାନେ
ଚଳଇ ବାସବି ତହୁଁ ସେ ହର ଉଦ୍ୟାନେ ।
ଷାଣ୍ଡିସାଟେ ରହି ଗାର ନିତ୍ୟକର୍ମ ସାର
ହରସ୍ଥ ଯାଇ ଅର୍ଜୁନ ଛତ୍ରନାମେ ଗିରି ।
ଦେଖଇ ସେ ଛତ୍ରବନ ଅତିପରିମଳ
ଆସନ୍ତେ ସେ ବନଜୀବେ ଶୁଣେ କୋଳାହଳ ।
ତୌଦଂଶ ଯୋଜନ ଅଟେ କୋଠା ଆୟତନ
ସୁବର୍ଣ୍ଣ ପାଚେରୀ ସାତତାଳ ପରିମାଣ ।
ପୂର୍ବଦ୍ୱାରେ କଟକ ଯେ ସୁବର୍ଣ୍ଣର କତି
ଆକାଶେ ଝଲକେ ହୀରା ମାଣିକ୍ୟ ଖଞ୍ଜଣି ।
ସ୍ୱରୂପ ଖାଣ୍ଡବ ବନ ତୋଠାପ୍ରାୟ ଦିଶେ
ଦେଖିଣ ସାନନ୍ଦ ହୋଇ ବହୁତ ପ୍ରଶଂସେ ।

ନାଗାର୍ଜୁନ ସ୍ୱନକ୍ଷତ୍ର ତନ ବନ୍ଦାପନା
ମାତା ପାଶକୁ ଯାଇଛି ନାଗକୁଳ ଯେନା ।
ଚନ୍ଦ୍ର ପର୍ବତ ଶିଖରେ ବସିଛି ବଶିଷ୍ଟି
ଏକଲସ୍ତ ତନ ବାତ ଜଗେ ପାଣିଘାଟି ।
ବନଭରି ନାଥ ମଧ୍ୟ ଗଗନ ଚନ୍ଦ୍ରାଶ୍ରୀ
ଗଜ ଅଶ୍ୱ ମୃଗପଲ ଶାର୍ଦ୍ଦୂଳ ସଞ୍ଚାର ।
ନାରଦ ବଚନ ମିଥ୍ୟା କପାଇଁ ହୋଇବ
ହରିଣ ସେ ବାଦୁଡ଼ିଆ ସିଂହ ଆଦି ଜୀବ ।
ପାଣି ଖାଇ ବନଜୀବେ ପାଆନ୍ତି ଲେଉଟି
ସର୍ବପଥେ ଆସୁଅଛି ଘଣ୍ଟାଜୀବ ଗୋଟି ।
ସେ ଘଣ୍ଟା ଶରୀରେ ଅଛି ପାଣିଦ୍ରବ୍ୟ ଲକ୍ଷ
ଦେଖିଣ ଆନନ୍ଦମନ ହୋଇଣ ତଦସ୍ର ।
ଚିନ୍ତଇ ପାର୍ଥ ଏହି ଅଟେ ଘଣ୍ଟାଜୀବ
ନାରଦ ବଚନ ମିଥ୍ୟା କପାଇଁ ହୋଇବ ।
ଏମନ୍ତ ସଙ୍କଟା ସେ ଘଣ୍ଟାର ମରନ୍ତ
ତହିଁ ନ ପାଇବେ ପିତୃଲୋକ ସ୍ୱର୍ଗ ଗତ ।
ଭକତଜନ ଦେଖିଣ ହେଉଛନ୍ତି ବଶ
ଇଚ୍ଛା ତ ବନେ ଭେଟିଲି ଭରତ ମୁଁ ନାଶ ।
ଆସଇ ଏତ ତୃଷାର ଅର୍ଥେ ପାଣି ପିଇ
ତୃଷାର୍ତ୍ତ ପ୍ରାଣୀଙ୍କୁ ପୁଣି ମାରି ନ ଯୋଗାଇ ।
ଲେଉଟି ଆସୁ ମାଣଡ ବଣରେ ବସାଟି
ପାଣିଘାଟେ ପାଣି ପିଇ ଘଣ୍ଟାଜୀବ ଗୋଟି ।
ଧୀରେ ଧୀରେ ସେ ବାହୁଡ଼ି ଆସିବାରବେଳେ
ଆକର୍ଷି ନାରାଚ ପାର୍ଥ ଭେଦେ ଅବହେଳେ ।
ବାମେ ବାଜ ସେ ନାରାଚ ଡାହାଣେ ବାହାର
ଭୂମିରେ ପଡ଼ିଲା ଘଣ୍ଟାଜୀବ ଗୋଟି ଢଳ ।
ଧାଇଁଯାଇଁ ତା ନିକଟ ଦେଖେ ଧନଞ୍ଜୟ
ପଡ଼ିଛି ସେ ରସାଣିଲା ସୁବର୍ଣ୍ଣର ପ୍ରାୟ ।
ସର୍ବାଙ୍ଗ ଜଡ଼ିତ ରତ୍ନ ଦିଶେ ରତ୍ନମୟ
ଝଟକଇ ଅଷ୍ଟରତ୍ନ ଘଣ୍ଟିରବ ପ୍ରାୟ ।
ଅର୍ଜୁନ ଚିତ୍ତରେ ମୋର ଘଣ୍ଟାରେ ତ କାର୍ଯ୍ୟ
ପରଦ୍ରବ୍ୟ କେମନ୍ତେ ମୁଁ କରିବଇଁ ଗ୍ରାହ୍ୟ ।
ଏଥିଅବା ଧନରତ୍ନ ଯିବଇଁ ଲୁଚାଇ
ଆନ ଜନ ସିନା ନେବେ ସେ ପାଇବ ନାହିଁ
ବନ୍ଦେଶ ଏଠାରେ ରଖିଥିବଇଁ ମୁଁ ଜଗି
ଘଣ୍ଟା ଯେ ଖୋଜିବ ରତ୍ନ ନେବ ସିନା ମାଗି

ପିତୃକାର୍ଯ୍ୟ ନିମନ୍ତେ ମୁଁ ମାଇଲି ଏ ଜୀବ
ପରଧନ ହରଣରେ ବହୁତ ପ୍ରାଭବ ।
ସେ ଗଣ୍ଡା ଉପରେ ଲତା ଲୁଚଏ ଘୋଡ଼ାଇ
ମାଧବୀ ଲତାର ତଳେ ବସି ସେ ଅଛଇ ।
ଜମ୍ବୁ କୁ ଦେଖି ଖାଇଲା ଦୁର୍ଗାରୂପେ ଜାତ
ମହିଷାସୁରଙ୍କୁ ମାଡ଼ ବସିଲୁ ଗୋ ମାତ ।
ଜମ୍ବୁ କୁ ଖାଇଲା ମାଗୋ ପରମ ବୈଷ୍ଣବୀ
ଜନ୍ମେ ଜନ୍ମେ ଶାରଳାଦାସ ତୋତେ ସେବି

---

## ନାଗାର୍ଜ୍ଜୁନ କର୍ତ୍ତୃକ ଅର୍ଜ୍ଜୁନର ମୃତ୍ୟୁ

ବଦନ୍ତି ଅଗସ୍ତି ଶୁଣ ମନୁ ମହାତ୍ମା
ବସିଅଛୁ ଲତାତଳେ ବୀର ଫାଲଗୁନ ।
ପାତାଳରେ ବନ୍ଦାପନା ହୁଏ ନାଗାର୍ଜ୍ଜୁନ
ସନ୍ଧ୍ୟାବାଳୀ ଅର୍ଘ୍ୟ ଜଳେ ମଙ୍ଗଳ ବିଧାନ ।
ଅର୍ଘ୍ୟ ଦେଉବାର କାଳେ ନାଗୁଣୀ ତନୟୀ
ବାମ ନୟନ ସ୍ଫୁରଇ କମ୍ପିତ ତା କାୟ ।
ଆସନ ତେଜିଣ ବୀର ଧାଉଁକାରେ ଉଠି
ମାଗୋ କମ୍ପିଲାସେ ହେଲା ନଷ୍ଟୟ ଅରିଷ୍ଟି ।
କେ ଅବା ହର ଉଦ୍ୟାନ ବନ ନାଶ କଲା
ପାବଶଙ୍କ ଗଣ୍ଡାଗୋଟି କେ ଅବା ମାଇଲା ।
ନାଗୁଣୀ ବୋଇଲା ବାବୁ ଗଣ୍ଡାଜୀବ ଅର୍ଥେ
ପାଣ୍ଡବେ ବୁଲୁଥାନ୍ତି ବେଶ୍ୱର ନିମନ୍ତେ ।
ମାତ ଅଗ୍ରତେ କହଇ ସେ ନାଗଅର୍ଜ୍ଜୁନ
କାହିଁ ହସ୍ତ ନା ଯୋ କାହିଁ ହରଙ୍କ ଉଦ୍ୟାନ ।
ଚୌଷଠି ଯୋଜନ ଅନ୍ତେ ଅଟେ ଗୋ କୈଳାସ
ଏଥୁ କାହିଁ ଲେଉଡ଼ୁ ଗୋ ପାଣ୍ଡବ ଆବାସ ।
ପାଣ୍ଡବେ ଅଟନ୍ତି ବାବୁ ଜମ୍ବୁଦ୍ୱୀପେ ସ୍ୱାମୀ
ଶିବଙ୍କୁ ଜିଣିଲେ ତୋର ପିତା ବନଭ୍ରମି ।
ବାବୁ ଯେ ତୋହର ପିତା ଅଟଇ ଅର୍ଜ୍ଜୁନ
ନୀଳ ଇନ୍ଦୀବର ବର୍ଣ୍ଣ ଯୁଗଳ ନୟନ ।
ଅଳୁଞ୍ଚିତ କେଶ ଜୁଡ଼ା କପାଳହିଁ ଝୁଲ
ବରହସିତ ବଦନ ବଚନ ଅମୂଲ୍ୟ ।
ଅମୃତ କୁଣ୍ଡଳ ଦେନି ଶ୍ରବଣକୁ ଶୋଭେ
ଗରୁଡ଼ ନାସିକା ନୀଳ ଜୀମୂତର ପ୍ରଭେ ।

ଦ୍ୱିଷୀପ୍ତ ନାମ ବହଇ ବୀର ଫାଲଗୁନ
ମୀନକେତନ ଧନୁ କି ଭ୍ରୂଲତା ଦେନି ।
ରକତ ତାମ୍ରନୟନେ ବିରାଜଇ ତୋଳା
ନୀଳ ଭ୍ରମରକୁ ଜିଣି ଦିଶଇ ସେ କଳା ।
ତାଳମ୍ବପୁଷ୍ପ ପରାଚୟେ ଦଶେ ଦନ୍ତପନ୍ତି
ଅଣ୍ଡିର କୋକନଦ ପ୍ରାୟ କହିବାର ସତ ।
ନ କହଇ ସେ ଅମୃତ ବାକ୍ୟ କଦାଚିତେ
ଗୁଣସାଗର ନାଥ ସେ ସଦୟ ନରତେ ।
ଦୁଃଖୀଜନ ଉଦ୍ଧାରଣ କଥା ଜଗତ୍ରେଠେ
ଆରେକ ନାମ ତାଙ୍କର ଅଟଇ ଜସାଟି ।
ଉଜ୍ଜ୍ୱଳ ଗଣ୍ଡ ମଣ୍ଡଳ ସୁନ୍ଦର ସୁରେଖ
କଣ୍ଠତଟେ ଶୋଭାକର ସ୍ୱର୍ଣ୍ଣ ପଦକ ।
ଯେବଣ ସ୍ଥାନେ ତୋ ପିତା କରଥାଇ ବିଜେ
ବିରାଜୁଥାଇ ସେ ସ୍ଥାନ ଆଦିତ୍ୟର ତେଜେ ।
ଆଜାନୁ ଲମ୍ବିତ ଦୀର୍ଘବାହୁ ଭୁଜ ଦେନି
ଲକ୍ଷେକ ବଳ ଗାଣ୍ଡୀବ କରେ ଥାଇ ଘେନି ।
ଅକ୍ଷୟ ତୂଣୀର ଦେନ ମନରେଖା ଭୁଜେ
ବାବଲ ଯେ ପାଶୁପତ ତା ପାର୍ଶ୍ୱପଙ୍କଜେ ।
ମୋ ପିତା ଅନନ୍ତ ଦେଲେ ଯେ ଅଭୟ ମଣି
ଅବଇତେ ସେ ହୃଦରେ ଲୁଚିଥାଇ ପୁଣି ।
ବିଶାଳ ତା ବକ୍ଷସ୍ଥଳ ସଙ୍କୀର୍ଣ୍ଣ ତା କଟୀ
ଚର୍ମ୍ମ କଡ଼ୀକ ସୁସଞ୍ଚ ଦିଶଇ ଅଙ୍ଗୁଷ୍ଠ ।
ଯା ବେନି ଜାନୁ ଦିଶଇ ଉଲଟ କଦଳୀ
ବେନି ପାଦ ଆକ୍ରମଣେ ମଳା ଉହ୍ନଇଁ ।
କେଶରୀର ପଟାନ୍ତର ଗ୍ଳଲବା ପ୍ରକୃତ
ଗଜ ଆକର୍ଷଣେ ଯେହ୍ନେ ସିଂହର ମୂରତ ।
ରକତ କୁମୁଦ ଜିଣି ପାଦ ତେଜକାନ୍ତ
ସେ ପାଦତଳରେ ପଦ୍ମଚକ୍ରହିଁ ଦିଶନ୍ତ ।
ମନ୍ମଥ ସମାନ ତାର ଅଟଇ ବକ୍ରମା
ପରଶୁରାମ ସଦୃଶେ ତେଜର ଗାରିମା ।
କୋପ ପ୍ରକାଶଇ ପୁଣି ନରସିଂହ ତେଜ
ହସ୍ତୀ ହସ୍ତ ଜିଣି ଶୋହେ ତାର ବେନିଭୁଜ ।
ପିଠି ଦିଶଇ ରସାଣ ପଥ ପ୍ରାୟ ବାବୁ
ଇନ୍ଦ୍ର ଦେବତା ସୁତକୁ କି ଉପମା ଦେବୁ ।
ପଞ୍ଚକଟକ ଠାକୁର କୁନ୍ତୀଦେବୀ ସୁତ
ବେଦ ମନ୍ତ୍ର ଶାସ୍ତ୍ର ଶସ୍ତ୍ରେ ଅଟଇ ନିର୍ଜିତ ।

ଧନୁର ବଡ଼ାବେ ଶରେ ସାଗର ଯେ ବାନ୍ଧି
ପାର୍ଥ ନାମକୁ ବହନ୍ତି କରି କାର୍ଯ୍ୟ ସିଦ୍ଧି ।
ବଦସ୍ତ ଉସ୍ତାଡ଼ୁକୁ ସେ ନ ମାରନ୍ତି ରଣେ
ବଦଭ୍ର ନାମ ଗୋଟିଏ ବହନ୍ତି ସେ ଏଣେ ।
ଜ୍ୟେଷ୍ଠ ଯୁଧିଷ୍ଠିର ରାଜାଙ୍କ ଚରଣ ବନ୍ଦନ
ଜ୍ୟେଷ୍ଠ ସୋଦର ଅଟଇ ପବନ ନନ୍ଦନ ।
ନକୁଳ ସହଦେବ ଯେ ଅଟନ୍ତି ଅନୁଜ
ଅଭେଦ ଆତ୍ମା ଅଟନ୍ତି ପ୍ରଭୁ ଦେବରାଜ ।
ଅପାର ଗୁଣ ତାଙ୍କର କି କହେ ତୋ ଆଗେ
ବଧିର ପ୍ରାୟେ ନ ଶୁଣୁ ସ୍ୱର୍ଗ ଚଉଦରେ ।
ନାଗାର୍ଜୁନ ବୋଲେ ମାତା ଶୁଣିଲି ମୁହିଁ
ବଧନ ଯଦି ତୋ ଅର ନ ପାରିଲ ରହି ।
ଏ ମୋର ମନେ ଉପୁଜେ ବଡ଼ଇ ବିଷାଦ
କପିଳାଶ୍ୱ ସ୍ୱର୍ଗେ ନଗଲେ ପଡ଼ିଲା ପ୍ରମାଦ ।
ମାତାର ବଚନେ କରି ଧାଇଁଲେ କୁମର
ପାତାଳ ସ୍ୱର୍ଗ ସେ ବେଗେ ହୋଇଲେ ବାହାର
କୋପଭରେ ଧାଇଁଲେ ସେ ନାଗୁଣୀର ସୂନୁ
ଶ୍ରାବ୍ଧକେ ତୋହେ ପିନାକ ଧନ ମହା ଧନୁ ।
ଅଧସ୍ତ ଭୂମିର କେଶ ତା ନାମ ତାହାଣେ
ତାହାଣ ଥାଣ ତୋଳଇ ପାଶୁପତ ବାଣେ ।
ବୁଲିଲ ସେ କାଳତନ୍ତ ପ୍ରାପ୍ତ ବେଳ ତୋଳା
ହର ଉଦ୍ୟାନେ ପ୍ରବେଶ ସନ୍ଧ୍ୟାକାଳୀ ବଳା ।
ଦେବେଶ ବାନ୍ଧୁ ଧମନ୍ତ ଉଛଳ ତ ଭଲେ
ପାଣ୍ଡବଙ୍କ ଘଣ୍ଟା ନାହିଁ ଜାବଙ୍କର କୂଳେ ।
ସ୍ୱରେ ବନକୁ ଅବା ବନେ ଗୋଷ୍ଠର
ଘଣ୍ଟାଘୋଡ଼ାଇ ରଖି କା ଘରେ ତାଙ୍କର ।
ବାସ୍ତବେ ସ୍ୱୁଂ ବନ୍ଧା ସେ ହର ଉଦ୍ୟାନୁ
କପିଳାସେ ପ୍ରବେଶିଲେ ନାଗୁଣୀର ସୂନୁ ।
ନନ୍ଦିତ ଭୁବନେ ଗାର ଲେଉଟି ନଗାସ୍ତ
ଘଣ୍ଟାଗାର ନ ପାଇଲେ ପୁରସ୍ଥାନ ଦେଖି ।
ଆନ କଛୁ ଅବଗୁଣ ନାହିଁ କପିଳାସେ
ଘଣ୍ଟା ଲେଉଟି ଲେଉଟି ଗାର ଭ୍ରମଇ ହରଷେ ।
କବା ଘଣ୍ଟା ଯାଇଅଛି କରି ଜଳପାନ
ନଗକୂଳରେ ଖୋଜଇ ବୀର ନାଗାର୍ଜୁନ ।
ଲତା ଲେଉଟ ଉପରେ ଅଛି ଗୋଡ଼ିହୋଇ
ଦେଖିଲେ ସେ ଘଣ୍ଟା ଲତାତଳେ ଅଛି ଶୋଇ ।

କାଢ଼ଇ କୁମର ଧାଇଁଯାଇ ଲତା ଲେଉଟ
ଦେଖିଲେ ଘଣ୍ଟାର ଗଣ୍ଡେ ବାଣ ଫୁଟିଅଛି ।
ଶରୀର ଯନ୍ତ୍ର ତାହାର ଯାଇଅଛି ଫୁଟି
ଢାଳେଇ ଶରୀର ଯାଏ ଭୂମିକ ସେ କାଟି ।
ଆକର୍ଷି ଉଠନ୍ତେ ତାର ଦେହୁ ଗାର ଶର
ତତ୍କାଳେ ଜୀବନ ନାହିଁ ବହୁଛି ରୁଧିର ।
ଦେଖିଣ ନାଗାର୍ଜୁନର ଉଡ଼ିଲା ସାହସ
କଟାକ୍ଷ ନୟନେ ଗାର ଚାହିଁ ଚଉପାଶ ।
ବୋଇଲେ କେ ମୋର ଘଣ୍ଟା ମାଇଲାହେଲୋକ୍ୟ
ମାନବ ଗୁର ହୋଇ କେ କଲା ଏଡ଼େ ଶକ୍ୟ
ଯଦ୍ୟପି ବ୍ରହ୍ମା ବାସବ ହୋଇବ କୁବେର
କ୍ଷଣେ ପ୍ରମାଣେ ମାଂସ କାଟିବ ତାହାର ।
ଯେବେ ଅଗ୍ନି ରବି ଶଶୀ ପବନ କୃତାନ୍ତ
ଏମନ୍ତବେଳେ ଶେଷ କି ଯିବେ ସେ ଜୀବନ୍ତ ।
ଯଦ୍ୟପି ଯକ୍ଷ ରାକ୍ଷସ ଜନ ବନମାଳୀ
କାଟିବି ତାହାଙ୍କ ମାଂସ ଦେବି ଦଶାବଳି ।
ଦୃଷ୍ଟଙ୍କରେ ସ୍ଥିର ହୋଇଥିଲେ ଫାଲଗୁନ
କୃଷ୍ଣ ନିନ୍ଦା ଶୁଣି ଧୈର୍ଯ୍ୟ ନ ଧରିଣ ପୁଣି ।
ଲତା ଭିତରୁ ବାହାର ହେଲେ ସବ୍ୟସାଚୀ
ଦେଖିଣ ନାଗାର୍ଜୁନର ନ ସ୍ଫୁରିଲା କଛି ।
ନାଗଅର୍ଜୁନ ବୋଇଲେ ହେ ଜଗତ ଭାଇ
ମୋ ଘଣ୍ଟାକୁ କେ ମାଇଲା ଦେଖିଲୁ କି ତୁହି
ଅର୍ଜୁନ ବୋଇଲେ ଶୁଣ ଆହେ ତପୋଧନ
ଯେଣେଯାଅ ତୁ ଘଣ୍ଟାର ଦେହୁ ଉହମାନ ।
ମୋହର କାର୍ଯ୍ୟ ନିମନ୍ତେ ଘଣ୍ଟା ମୁଁ ମାଇଲି
ଉହମାନଙ୍କ ନିମନ୍ତେ ଜଗ ବସିଥିଲି ।
ଶୁଣି ନାଗାର୍ଜୁନ କୋପକଲା ମହାବୀର
କାଳସର୍ପ ଗୁଳବାକୁ ଜୁ କରେ ଶବର ।
ପାଣ୍ଡବଙ୍କ ଘଣ୍ଟା ଦେହୁଁ କରନ୍ତି ଈଶାନ
ଆନନ୍ଦେ ଭଜେ କରନ୍ତି ଦେବ ତ୍ରିଲୋଚନ ।
ଆରେ ରେ ତସ୍କର ବିଷ ଖାଇଲୁ ସ୍ୱହସ୍ତେ
ପର୍ବତ ଫିଙ୍ଗ ପାତିଲୁ ମଥା ତୁ କେମନ୍ତେ ।
ଶୁମର ଖବର ଏବେ ତୋର ପିତାମାତା
ଶୁମର ଖବର ତୋର ଯେ ଇଷ୍ଟ ଦେବତା ।
ଅର୍ଜୁନ ବୋଇଲେ ତପା ହୋଇ କି ଅଜ୍ଞାନ
ଘଣ୍ଟା ମୁଁ ନିଅଇ ଯେଣେଯାଅ ଉହମାନ ।

ଶୁଣି ମହାକୋପାନଳେ ନାଗୁଣୀର କଥା
ଯୋଚୁଛୁ ନାଗର ତୋତେ କେ କରବ ରକ୍ଷା
ଦୁହେଁ କ୍ଷତ୍ରୀ ପିତା ପୁତ୍ର ଅଟନ୍ତି ସେ ବେଳ
ଜଗତ ରୂପକୁ ନାଗଅର୍ଜୁନ ନ ଚାହିଁ ।
ଲୁହାର ଯେ ଟଙ୍କଣର ଅତି ତୀକ୍ଷ୍ଣମୁନା
ଆକର୍ଷି ନାଗଅର୍ଜୁନ ଛନ୍ଦେ କୋପମନା ।
ଅର୍ଜୁନର ପାଦତଳେ ପଡ଼ିଲା ସେ ଶର
ପୃଷ୍ଠ ପରମାଣେ ସେହି ପଶିଲା ଭୂମିର ।
ପୁଣିହିଁ ଦଶ ନାଗର ଛନ୍ଦିଲା ସେ ବଳେ
ପଡ଼ିଲେ ନାଗରମାନେ ପାର୍ଥ ପାଦତଳେ ।
ପୁଣିହିଁ ଦଶ ନାଗର ବନ୍ଧିଲେକ ଟାଣି
ନାଗରମାନେ ପଡ଼ିଲେ ପାଦେ ଯାଇ ପୁଣି ।
ପରସହାଣେ ବନ୍ଧିଲେ ଅର୍ଜୁନ ଉପରେ
ରୁଧିର କଣ୍ଠେଲା ରୂମେ ରୂମେ ତା ଶରୀରେ ।
ଘାଏ ଧନଞ୍ଜୟ ଘାଉ କଲା ମହାକୋପ
ଯଷ୍ଟି ପ୍ରହାରେ ଯେସନେ ଗର୍ଜେ କାଳସର୍ପ ।
ରୁଦ୍ର ଦେବତାର ମୂର୍ତ୍ତି ଅଟେ ଉପକାଶ
ତୁ ଗୁରୁ ତପସ୍ୱୀ କରେ ଦେବୁ ମୋତେ ସର
ମୋହର କାର୍ଯ୍ୟେ ତୋହର ଗଣ୍ଡାକୁ ମାଇଲି
ତୋତେ ଜାଣେ ନ ଲଙ୍ଘଇ ବାଳପୁଅ ବୋଲି
ଅର୍ଜୁନର ଏ ବଚନେ ନାଗାର୍ଜୁନ ହସି
ଘଟଙ୍କ ପ୍ରାୟ ଜନ୍ମିତ ପ୍ରତିଜ୍ଞା ତ ସପ ।
ଯଦ୍ୟପି ପ୍ରତିଜ୍ଞାବନ୍ତ ହୁଅନ୍ତି ମହାନାଗେ
ସେହି କି ରହି ପାରନ୍ତି ଖଗବର ଆଗେ ।
ଯେତେକ ମହାବଳବନ୍ତ ହୋଇବେ ଦଇବେ
ନାରୟଣ ଜ୍ୟୋତିନାରେ ରହିବେ କେମନ୍ତେ
ପ୍ରତିଜ୍ଞା କରି ଆସନ୍ତେ ଯେବେ ଗଜଯୂଥେ
କେତେବେଳେ ବର୍ତ୍ତିବେ କି କେଶରୀ ଅଗତେ
ଯଦ୍ୟପି ପ୍ରତିଜ୍ଞାବନ୍ତ ହୋନ୍ତି ବୃକ୍ଷମାନେ
ପବନ ଉପାତେ ସେ କି ସମ୍ଭାଳନ୍ତି ବନେ ।
ବଳବନ୍ତ ହୁଅନ୍ତି ଯେତେ ଉତଖର
କହିତ ହୁତାଶନେ ସେ ଜଳ ଅସ୍ତ୍ରଶ ।
ଯେତେ ଖାଣ୍ଟୁଲୁଖୀ ମୂଷା ହୁଅନ୍ତି ନଗାରେ
ସେହି କି ରହି ପାରନ୍ତି ମାର୍ଜାର ଆଗରେ ।
ଅର୍ଜୁନ ବୋଇଲା ଅଟୁ ତୁ ଯୋଗୀ ତପସ୍ୱୀ
ମାଇଲେ ତ ଯଶ ନାହିଁ ଆଜନ୍ମ ଉପାସୀ ।

ଅର୍ଜୁନର ଏ ବଚନ ନାଗାର୍ଜୁନ ଶୁଣି
ଗର୍ଜିଲା କୁମରମଣି କାଳସର୍ପ ଜାଣି ।
ନାଗାର୍ଜୁନ ଧଇଲେକ କୋପେ ଶୂଳଶକ୍ତି
କୋଟିଏ ସୂର୍ଯ୍ୟ କିରଣ ପ୍ରାୟ ତାର ଜ୍ୟୋତି
କାଳଚକ୍ର ପ୍ରାୟ ନେତ୍ର ବଳେ ଉଗ୍ର ରୂପୀ,
ଅନ୍ତରୀକ୍ଷେ ବୁଲାଇଲା ଶିବ କାମରୂପୀ ।
ମଲ୍ଲୁ ରେ ଶବଦ ଏବେ ତୁ କହିତ ଦୋଷେ
ଉଲଟେଇ ହୋଇ ଗଣ୍ଡା ମାର ମଲ୍ଲୁ ଶେଷେ
ଖଣ୍ଡତ ବୁଲାଇ କାଳଶବ୍ଦ ଦେଲା ପେଷି
ଅମୋଘ ଅସ୍ତ୍ରେ ଅର୍ଜୁନ ପକାଇଲା ନାଶି ।
ଫଣିକି ନାଗର ଏକ ବନ୍ଧିଲା ଅର୍ଜୁନ
ନାଗାର୍ଜୁନ ମୁଖେ ଯାଇ ଦେଲା ସେ ଚୁମ୍ବନ ।
ପୁଣ ପୁଣ ନାଗାର୍ଜୁନ ପ୍ରହାରଇ ଶର
ସମସ୍ତ ନାଗର ପଡ଼େ ପାର୍ଥ ପାଦତଳ
ଅର୍ଜୁନ ନାଗରମାନ ବାନ୍ଧି ଅନୁକ୍ଷଣ
ନାଗାର୍ଜୁନ ମୁଖେ ଯାଇ ଦିଅନ୍ତି ଚୁମ୍ବନ ।
ଯଦ୍ୟପ ମୋ ପିତାପୁତ୍ରେ ଯୁଝିଲେ ନ ଜାଣି
ବାଣେ ଧର୍ମ ନ ଛାଡ଼ନ୍ତି ଅଟନ୍ତି ତ ଜ୍ଞାନୀ ।
ସେ ନାଗରେ ନାଗାର୍ଜୁନ ଜଣ ନ ପାରିଲା
କୋପେ କୁମର ଆବର ଅସ୍ତ୍ର ପ୍ରହାରିଲା ।
ଉଗ୍ରାବଳ ଧାରି ସନ୍ଧ୍ୟାକାଳୀର ତନୟ
ଦିଶନ୍ତି ନାଗରେ ଜହ୍ନୁଜୁଳା ଦେପାଳ ପ୍ରାୟ ।
ଫାଲ୍ଗୁଣୀ ଅସ୍ତ୍ର ପେଷିଲା ଧୀର ଯେ ପ୍ରତାପ
ନାଗାର୍ଜୁନ ଶସ୍ତ୍ରମାନ ପକାଇଲା କାଟି ।
ଧର୍ବଟକର ବନ୍ଧିଲା ପୁଣ ନାଗାର୍ଜୁନ
ବଜ୍ର ଅସ୍ତ୍ର ମାରି ତାହା ଛେଦିଲା ଅର୍ଜୁନ
ପନ୍ନଗ ଅସ୍ତ୍ରକୁ ପୁଣ ନାଗାର୍ଜୁନ ପେଷି
ଗରୁଡ଼ ଅସ୍ତ୍ର ତାହାକୁ ଅର୍ଜୁନ ବିନାଶି ।
କୁମ୍ଭକ ନାରଚ ଏକ ବନ୍ଧିଲା କୁମର
ଧୂମ୍ରପାପାକ ଦିଶିଲା ସମସ୍ତ ପକାର ।
ମାଇଲେକ ସୂର୍ଯ୍ୟାବର୍ତ୍ତ ଅସ୍ତ୍ର ସବ୍ୟସାଚି
ଛୁଟିଲା କୁମ୍ଭଡ଼ ଆଉ ନ ରହିଲା କାଛୁ ।
ଅଗ୍ନି ଶର ନାଗାର୍ଜୁନ କରିଲା ସନ୍ଧାନ
ମହାଅଗ୍ନି ଝଗାଝଗ ଜଳିଲା ଗଗନ ।
ଅଗ୍ନି ତାପେ ପଳାଇଲେ ଦେବତାମାନେ
ଏଣେ ଅର୍ଜୁନ ରକ୍ଷ ବୋଲି ଖୁଣ୍ଟଇ ଗଗନ ।

ଆକର୍ଷି ଅର୍ଜୁନ ମେଘଅସ୍ତ୍ର ତେଜିଲେ ପେଷି
ଅଗ୍ନି ତେଜ ଲିଭାଇଲା ସେ ଜଳ ବରଷି ।
ଅର୍ଜୁନଙ୍କୁ ଅନେକ ସେ ନାଗ୍ରତ ବନ୍ଧିଲା
ସାଧୁ ସାଧୁ କଷତ ତୋ ଶୀବନ କୋଇଲା ।
ମୃତ୍ୟୁଜୟଙ୍କି ତା ରୁଦ୍ରଦେବର ପ୍ରସଙ୍ଗେ
ହାସନ୍ତ ଯାର ନାବ୍ରତ ଦେଖି ଦେବଗଣେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଜଣକ୍ତା କେ ନାହିଁ
ଏ ଶସ୍ତ୍ରମାନ ଶବର ପାଇଲୁ ତୁ କାହିଁ ।
ବହୁତ ପ୍ରଶଂସା କଲେ ନାଗୁଣୀର ବାଳ
ମୂର୍ଦ୍ଧି ସଦା ଗାଇବର ଷଣ୍ଡ ଅନର୍ଗଳ ।
ଅର୍ଜ୍ଜିନ କୋଇଲେ ତୁ ତ ଅଜ୍ଞାନ ତପସ୍ୱୀ
ବଢ଼ିଜଣ ପୃଷ୍ଟହୋଇ କପାଁ ଇଣେ ଷଷ୍ଠି ।
ଏ ମୋର ବଚନ ତୋର କର୍ଣ୍ଣେ ନ ପଶିଲା
କି ଅବା ରୁଦ୍ରଦେବତା ତୋତେ ନ କହିଲା
ଖାଣ୍ଡବବନ ଦହିଲି ମୁଁ ଯେ ଅବହେଳେ
ଅଗ୍ନିଦେବତା ଆରୋଗ୍ୟ କଲ ଭୁଜବଳେ ।
ପଞ୍ଚାଳ ଦେଶେ ହକାରେ ରାଧାଚକ୍ର ବନ୍ଧ
କୃଷ୍ଣାଙ୍କୁ ଆଣିଲି ଲକ୍ଷେ ରାଜାଙ୍କୁ ମୁଁ ସାଧି ।
ଦ୍ୱାରକା ନଗରେ ରାମକୃଷ୍ଣଙ୍କୁ ଜିଣିଲି
ବଳେ ରୋହିଣୀନନ୍ଦନ ଭଗ୍ନୀକୁ ହରିଲି ।
କଉଶିକ ନଗରେ ମୁଁ ରଖିଲି କୈଳାସ
ଏ ମୋର ଚରିତ ଜାଣେ ଦେବ ବିଶ୍ୱବାସ ।
କିରାତରୂପେ ଜିଣିଲୁ ଆପେ ଈଶ୍ୱରଙ୍କୁ
ଭୟେ ପାଶୁପତ ଶର ଦେଲେ ସେ ଆମ୍ଭଙ୍କୁ ।
ଉତ୍ତରଦେଶ ରାଜାଙ୍କୁ ଆଣିଲି ମୁଁ ସାଧି
ଗମାଗୋଷ୍ଠକୁ ଆଣିଲି ରଥଚକ୍ରେ ବାନ୍ଧି ।
ପାତାଳକୁ ଦଗବଳେ କଲି ଯାଗକାଳେ
ଧଇଲି ମୁଁ ନବଦ୍ୱୀପ ପୃଥ୍ୱୀ ଅବହେଳେ ।
ଶରେ ସାଗର ବାନ୍ଧିଲି ହନୁର ବଚନେ
ନାଗବଳଙ୍କୁ ରଖିଲି ମୁହିଁ ଅପ୍ରମାଦେ ।
ନାଗାର୍ଜୁନ ମାଇଲା ଯେ ବଜ୍ର ମୁଦ୍ଗର
ଅର୍ଜୁନ ପେଷିଲା ନବନଶିତ କୁଠାର ।
ମେଘାସ୍ତ୍ର ମାଇଲା କୋପେ ସେ ନାଗଅର୍ଜୁନ
ପୃଥ୍ୱୀ ଅନ୍ଧାର କରିଲା ଆବୋରିଲା ଘନ ।
ନଷାଚବାଣ ଅନଳବାଣ ବଜ୍ରସୂଚି
ଏକା ଏକା ନାଗତ ସେ ତ୍ରୈଲୋକ୍ୟ ସୋଟିଛି

ଦେଖି ଅର୍ଜୁନ ବହୁତ ପ୍ରଶଂସାନ୍ତି କଲା
ଧନ୍ୟରେ ବାଳକ ତୋରେ କେତେ ଜନ୍ମ ଦେଲା
ସାଧୁ ସାଧୁ ତପସ୍ୱୀ ରେ ଯେ ତୋହର ମାତା
ସାଧୁ ସାଧୁ ତପସ୍ୱୀରେ ଯେ ତୋହର ପିତା
ତୋତେ ଜାତ କଲା ଧନ୍ୟ ଯେବଣ ରମଣୀ
ଏକା କମିଷକେ ପାରୁ ତୁ ଜଗତ ଜିଣି ।
ଯେ ତୋହର ପିତା ସେହୁ ନୁହଇ ସାମାନ୍ୟ
ତେଣୁ ବଳବନ୍ତ ପଣେ ମୋହୁ ଜଗଜ୍ଜନ ।
ବହୁତ ପ୍ରଶଂସା କରେ ପାଣ୍ଡବ ଫାଲ୍‌ଗୁନ
ଆକର୍ଷି ବନ୍ଧିଲା ଏକ ପବନାସ୍ତ୍ର ଶେନ ।
ମହା କୋପଭରେ ସେହି ପବନବହ୍ନାସ୍ତ୍ର
ଦଶଦିଗ ମେଘ ଫାଟିଗଲେ ଶୂନ୍ୟେ ଉଡ଼ି
ନାଗାର୍ଜୁନ କୋଲେ ସାଧୁ ସାଧୁ ରେ ଶବର
ତୋତେ ଜାଣି ନ ଅର୍ଜିବ ସଜ୍ୟେ ହେବ ଘର
କହୁଛ ହୋଇ ତୁ ପୁଣି ଏତେ ବଳବନ୍ତା
ଜାଣିଥିଲେ ତୋର ମୋର ପୀରତି ବଢ଼ନ୍ତା
ତୋହର ପ୍ରତ୍ୟେକ ଗୁଣବନ୍ତ ପ୍ରୁନ୍ତଷଣ୍ଟି
କହୁଛ ଦୋଷେ ମୁଁ ତୋତେ ପକାଇବ କାଟି
ପୁଣ ପୁଣ ସେ ପ୍ରଶଂସା କରି ବାଳଶିଷ୍ୟ
କୋପେ କୁମର ଶେଳିଲା ଜାଳ ନାଗପାଶ ।
ଗରୁଡ଼ଧ୍ୱଜ ନାଗତ ମାରୁ କୁଡ଼ହେଲେ
କାଟିଲା ପାର୍ଥ ପଳାଇ ଗଲେ ସର୍ପେ ଡରେ ।
ଅବଶ୍ରାମ ଯୁଝିକଲେ ମିଳ ପିତା ପୁତ୍ର
ତିନଦିନ ଯାଏ ଯୁଦ୍ଧ ହେଲା ବଡ଼ା ରୁଦ୍ର ।
ଜଳିଲା ସେ କୁମରର କ୍ଷୁଧା କାଳାନଳ
ଧ୍ୟାନେ ଚିନ୍ତିଲା ନାଗତ ନାମେ ମହାକାଳ ।
କରେ ଖପର କଟାରି ମହା ଭୟଙ୍କର
ହୃଦୟରେ ମୁଣ୍ଡମାଳ କେଶ ତା ଖାଙ୍କର ।
ଅନାରଘର ଖଣ୍ଡର ଲହ ଲହ ଜିଭ
ମନ୍ଦାରମାଳ ତା ଗଳେ ମୂରତି ଦୁର୍ଲ୍ଲଭ ।
ବିକଟ ଦଶନ ରକ୍ତବସ୍ତ୍ର ତାର କାୟେ
ଦିଗମ୍ବର ନେତ୍ର ଦେଖି ପଳାଇଲେ ଭୟେ ।
ନାଗାର୍ଜୁନ ସମ୍ମୁଖେ ସେ ହୋଇଲା ପ୍ରବେଶ
କେ ତୋତେ ଅସାଧ୍ୟ ମୋତେ କହନ ତୁ ପେଷ
ବନ୍ଧିଲା ପିନାକ ସମ ଧରି ଏକ ଧନୁ
ଶରଘାତେ ଛେଦ କୋଲେ ସନ୍ଧ୍ୟାକାଳୀ ସ୍ତନୁ ।

କୁମର ବଚନେ ମହାକାଳ ବାଣ କ୍ଷେପି
ଏକା ନିମିଷକେ ଭବ୍ୟଭୁବନକୁ ବ୍ୟାପି ।
ମହାତେଜ ମୂରତି ସେ ଅତି ଭୟଙ୍କର
କଟାର ବୁଲାଇ ମିଳେ ଅର୍ଜୁନ ସମ୍ଭର ।
ଦେଖଇ ସେ ମହାକାଳ ଏ ତ ସୋମବଂଶୀ
ଅର୍ଜୁନକୁ ଦେଖି ମନେ ମହାକାଳ ହାସି ।
ବୋଲଇ ଏ ପିତା ପୁତ୍ର ହେଲେ ଅନ୍ୟେ ଅନ୍ୟ
ବୋଲଇ ମହାକାଳ ତୁ ପାଣ୍ଡବ ଅର୍ଜୁନ ।
ବାବୁ ଅର୍ଜୁନ ପାତାଳେ କଲୁ ଉଗାଢ଼କେ
ସନ୍ଧ୍ୟାବାଳୀକି ପ୍ରଦାନ କଲେ ନାଗସଭେ ।
ତୋହର ଆସନ୍ତେ ହୋଇଥିଲା ଗର୍ଭବତୀ
ତାର ଜନ୍ମ ହୋଇଲା ଏ କୁମର ଉତ୍ପତ୍ତି ।
ଏ ତୋହର ପୁତ୍ର ଏହା ନାମ ନାଗାର୍ଜୁନ
ଈଶ୍ୱର ସେବାକରି ଏ ପାଇଲା ବିମାନ ।
ହର ଉଦ୍ୟାନ ବନେ ଏ ଗଣ୍ଡା କରେ ରକ୍ଷା
କୁ ତାହା ଛେଦିଲୁ ବୋଲି କଲା ସେହି ଦୀକ୍ଷା ।
ଅନେକ ଶସ୍ତ୍ରେ ତୋତେ ସେ ନ ପାରିଲା ଜିଣି
ଅନ୍ଧକାର ଶର ମୋତେ ସନ୍ଧାନିଲା ଆଣି ।
ଅପାଲଟ ଶର ମୁହିଁ ନ ଜାଣୁ କି ବୁଦ୍ଧି
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ହେଲେ ନାଶ କରିଯାଇ ।
ମନ୍ତ୍ର ପତି ସୁମରିଲେ ଭରେ ଆସି ନାଶ
କାର୍ଯ୍ୟ ନ କରି ବାହୁଡ଼ି ନ ଯାଏ କୈଳାସ ।
ପୁତ୍ରହୋଇ ନ ଜାଣି ସେ ପେଷିଲାକ ତୋତେ
ମୁଁ ଏବେ ବାହୁଡ଼ି ପାର୍ଥ ଯିବଇଁ କେମନ୍ତେ ।
ମୋତେ ପଡ଼େ ଲାଗୁ ବାକ୍ ବ୍ରହ୍ମହତ୍ୟା ଦୋଷ
ମୋହର ସମାନ କରି ବାଣ ଏକ ପେଷ ।
ଅର୍ଜୁନ ବୋଇଲା ଆମ୍ଭ ଦୁହିଙ୍କର ଯୁଦ୍ଧେ
ବନ୍ଧିଲି ସକଳ ଦେବଅସ୍ତ୍ର ରଣ ମଧ୍ୟେ ।
ତୋହର ସମାନେ ଆଉ ଦେବଶସ୍ତ୍ର ନାହିଁ
ଯେସନେ କର୍ମେ ଅଛଇ ଭୁଞ୍ଜି ବନା ମୁହିଁ ।
ମହାକାଳ ବୋଇଲା ମୁଁ ହେଲଇଁ ଦୁଷିତ
ଆନ ନାସ୍ତ ଗୋଟିଏ ଧନୁ କି ନା ତୁ ତ ।
ଅର୍ଜୁନ ବୋଇଲା ଶର ତୋ ତୁଲରେ ନାହିଁ
କି ନାସ୍ତ ଯେନ ତୋତେ ନିବାରିବ ମୁହିଁ ।
ବାଣ ବୋଇଲା ପେଷିଛୁ ଫାଲ୍ଗୁଣୀ ନନ୍ଦନ
କହୁ ତୁ ଗୋଟାଏ ମୋତେ ପେଷ ହେ ଅର୍ଜୁନ

ଅର୍ଜୁନ ବୋଇଲା କ୍ଷତ୍ରୀଧର୍ମ ଏ ନୁହଇ
ବନ୍ଧିବା ଶରମାନ ମୁଁ ଉପେକ୍ଷା କରଇ ।
ବାଣ ବୋଲେ ଭୂମିରେ ଯେ ପଡ଼ିଛୁ ଅର୍ଜୁନ
ତହୁଁ ଗୋଟାଏ ପେଷିଲେ କହିବ ଗମନ ।
ଅର୍ଜୁନ ବୋଲଇ ତୁ ହୋ ଶୁଣ ମହାକାଳ
ପରର ଶର ନ ଛନ୍ଦେ ନ କରେ କଟାଳ ।
ପରଦ୍ରବ୍ୟ ନ ହରଇ ଏ ମୋହର ପଣ
ପର ନାରୀଏ ନ ମାଗଇ ଶାନ୍ତ ଏକଜଣ ।
ନ ହରେ ନ ଲଙ୍ଘେ ପରସ୍ତ୍ରୀ ପରସୀମା
ପର ବଳକୁ ମୁଁ ଶୁଦ୍ଧି ନ କରେ ଗାରିମା ।
ଅର୍ଜୁନର ଏ ନିଷ୍ଠୁର ବାଣୀ ବାଣ ଶୁଣି
କୋପେ ଗର୍ଜିଲା ନାଗର କାଳସର୍ପ ଜାଣି ।
କିପାଇଁ ସେ ନାଗାର୍ଜୁନ ପେଷିଲାକ ମୋତେ
ନାକେହେଁ ପ୍ରମାଦ ବାବୁ ପଡ଼ୁଅଛୁ ତୋତେ
ଆହେ ଦିଗପାଳମାନେ ସାକ୍ଷୀ ହୋଇଥିବ
ପାର୍ଥକୁ ମାରୁଛୁ ମୋତେ ଅଖ୍ୟାତି ନ ଦେବ ।
ସୁରପୁର ସୁରମେଧ କୁହେ ସାକ୍ଷୀଥାଅ
ନାଗାର୍ଜୁନ ପେଷିଅଛି ମାରିବ ନିଷ୍ଠୁ ।
ତା ପୁତ୍ର ପେଷିଲା ଦୋଷ ନାହିଁଟି ମୋହର
କହିଲ ଯେତେ ଏ ପାର୍ଥ ନ ବନ୍ଧିଲା ଶର ।
ଏହା କହି କଟାରକୁ କୋପେ ଦେଲା ବାଣ
କଣ୍ଠୀଠାରୁ ଛିଡ଼ିଗଲା ପଡ଼େ ସବ୍ୟସାଚୀ ।
କଙ୍କାଳଠାରୁ ତାହାର ହେଲା ବେନିଖଣ୍ଡ
ମାରି କଇଳାସ ଗଲା ସେ ବାଣ ପ୍ରଚଣ୍ଡ ।
ଧାଇଁଯାଇଁ ମିଳିଲେକ ପାଶେ ନାଗାର୍ଜୁନ
ପ୍ରଶଂସଇ ଶବଗରେ ଧନ୍ୟ ତୋ ଜୀବନ ।
ଶବସ୍ତ ହୋଇ ତୋହର ଏଡେ଼ ପୁଣି ସତ
ଏସନ ସଂଗ୍ରାମ ବଧି ଥିଲା ତୋତେ ଜ୍ଞାତ ।
କଥିତ ହୋଇ ତୁ ପୁଣି ଏଡେ଼ ବଳବନ୍ତା
ଆପଣା ଲଲାଟେ ଯାଇ ଯେନ ରକ୍ତ ଚତା ।
ହସ୍ତରେ ଘେନିଲା ଯାଇ ସେ ଗାଣ୍ଡିବ ଧନୁ
ପାତାଳ ପୁରକୁ ଗଲା ସନ୍ଧ୍ୟାବାଳୀ ସୂନୁ ।
ବଳଯିବ ବଦନ ଯେ ହୋଇଛୁ କୁମର
ମାତା ଅଗ୍ରତେ ପ୍ରବେଶ ଯାଇଁ ଧାଡିକାର ।
ପସ୍ତରଇ ରକ୍ତଚତା ଦେଖି ସନ୍ଧ୍ୟାବାଳୀ
ଲଲାଟେ ଶୋଣିତ କର୍ପା ମୃଖ ଭରେ କାଳ ।

କାହାର କୁଳେ ପୁତ୍ରରେ ହୋଇଲୁ ଅବାଧି
ବାଳୁତ କୁମର ହୋଇ ଦ୍ୱନ୍ଦ୍ୱେ ଦେଉ ଦନ୍ଦ୍ୱୀ ।
ନିଃଶ୍ୱାସକୁ ଘନ ଘନ ଛାଡ଼ଇ କୁମର
କଥା କହି ନ ପାରଇ ଅତି କୋପଭର ।
ପିତା ପୁତ୍ରଙ୍କର ଯୁଦ୍ଧ ମହା ଭୟଙ୍କର
ଶାରଳା ଦାସ ଚିନ୍ତଇ ଗୋବିନ୍ଦ ପୟର

---

## ଅର୍ଜ୍ଜୁନ ନିଧନରେ ଶ୍ରୀକୃଷ୍ଣ ଓ ବଳରାମଙ୍କର ଶିବଙ୍କ ପ୍ରତି କୋପ

ଅଗସ୍ତି କହନ୍ତି ଶୁଣ ମନୁ କର୍ଣ୍ଣଧର
ଏଥିଅନ୍ତେ ଯାହା ହେଲା ଶୁଣ ସମାଚାର ।
ଅର୍ଜ୍ଜୁନଙ୍କୁ ମାରି ଯେବେ ମହାକାଳ ଗଲା
ଆକାଶରେ ଥାଇଁ ଚନ୍ଦ୍ରସେନ ତା ଦେଖିଲା ।
ଭୂମି ପଡ଼ିଗଲ ବୋଲି ପୁଷ୍ପ କଲା ବୃଷ୍ଟି
ସେଠାରୁ ସେ ବେଗେ ଯାଇଁ ବାସବଙ୍କୁ ଭେଟି
କହିଲା ସେ ଚନ୍ଦ୍ରସେନ ସ୍ୱର୍ଗେ ବାସବଙ୍କୁ
ଈଶ୍ୱରଗଣ ମାରିଲା ପୁତ୍ର ଅର୍ଜ୍ଜୁନଙ୍କୁ ।
ସ୍ୱାମି ବେଢ଼ାଖଣ୍ଡ ହୋଇ ପଡ଼ିଛି ଅର୍ଜ୍ଜୁନ
ଶୁଣି ମୂର୍ଚ୍ଛାଗତ ହେଲେ ଦେବ ମଘବାନ ।
ଚେତନ କରନ୍ତି ଉଚ୍ଚସ୍ୱରେ ସତ୍ୟ ଡୋଳା
ଅଗାଧ ସମୁଦ୍ରେ କଏ ବୁଡ଼ାଇଲା ଭେଳା ।
ଈଶ୍ୱର ସୁତ ହୋଇ ମୋ ଅର୍ଜ୍ଜୁନଙ୍କୁ ମାରି
ଆଜ ଜାଣ ଜାଣଗଲା କପିଳାସ ପୁରୀ ।
କୋପେ ବ୍ରହ୍ମ ପୁଣି ଆଜ୍ଞା ଦେଲେ ଦେବରାଜ
ଅଙ୍ଗାରପର୍ଣ୍ଣଗ ବେଗେ ଚଣ୍ଡି ମୋର ସାଜ ।
ଏଣେ ଯେ ନାରଦ ମୁନି ଗଲେ ଅନ୍ତରୀକ୍ଷେ
ଦ୍ୱାରକା ଭୁବନେ ଯାଇ ମିଳିଲେ ପ୍ରତ୍ୟକ୍ଷେ ।
ସଭାରେ ଯେ ଥିଲେ ରାମକୃଷ୍ଣ ଦେନ ଭାଇ
ଶୁଣିଲେ ବ୍ରହ୍ମନନ୍ଦନ ମିଳିଲେକ ଯାଇ ।
ନାରଦ ବୋଇଲେ ବେଗେ ଉଠ ହେ ଗୋବିନ୍ଦ
ଅର୍ଜ୍ଜୁନ ତୋହର ଆଜ ହେଲା ଶିରଚ୍ଛେଦ ।
ଚଣ୍ଡୀର ନିମନ୍ତେ ଗଲା ସେ ମୃଗୟା ବେଢେ
ହର ଚଣ୍ଡୀଙ୍କୁ ମାରିଲା ଜାଣୀ ନଦୀ ଘାଟେ ।
ନାଗାର୍ଜ୍ଜୁନ ବୋଲି ତାର ଏକଜଣ ପୁତ୍ର
ଅର୍ଜ୍ଜୁନଙ୍କୁ ଛେଦିଲା ସେ କରି ଶରଘାତ ।

ଏଣସ୍ତ ବାକ୍ୟ ନାରଦ କଲେ ଯହୁଁ ପୃଚ୍ଛା
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ପଡ଼ିଲେ ଯେ ମୂର୍ଚ୍ଛା ।
ଆହାରେ ଅର୍ଜ୍ଜୁନ ବୋଲି ସ୍ୱାମୀ ବଳରାମ
ମୋହେ ଚଳ ପଡ଼ିଲେକ ହୋଇ ଅସମ୍ଭ୍ରମ ।
ଜନ୍ମିଥୁ ସୋମବଂଶରେ ତୁ ଜଗତଜିତା
ତୋତେ ଜିଣିବାକୁ କେହି ହେଲା ସାମରଥା ।
ବାଳ୍ୟ ତୁ ତିନି ଭୁବନେ ଅଟୁ ଏକା ଯୋଧୀ
ଜିଣିଲୁ ଅଗ୍ନି ଦେବତା ଲୁଦୁବୁଦୁ ବ୍ୟାଧି ।
ପ୍ରସନ୍ନେ ଅଗ୍ନି ଦେବତା ଦେଲା ତୋତେ ରଥ
ପୃଥିବୀକି ଧରିବାକୁ କୃଷ୍ଣ ସାମରଥ ।
ଗୋସିଂହକୁ ବଧ କରି ରଖିଲୁ ଦ୍ୱାରକା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ବଳବନ୍ତ ଏକା ।
ତ୍ରିଭୁବନ ମୋହନ ତୁ ବାମା ମନସିଜ
ଏମନ୍ତ ବିଳାପ କେତେ କଲେ ଦେବରାଜ ।
ତାହିଁ ଅନ୍ତ୍ର ମୁଣ୍ଡ ମୋତେ ନିଅ ତୁ କଟାଇ
ହୁତର ବାନ୍ଧବ ମୋର ଦେଖେ କମା ଯାଇ
ବଳରାମ ବୋଇଲେକ ଅର୍ଜ୍ଜୁନର କ୍ରୋଧେ
କପିଳାସ ଉପାଡ଼ିବୁ ଆଜ ଆମ୍ଭେ ଯୁଦ୍ଧେ ।
ସାଜରେ ଦାରୁକ ମୋର ତାଳଧ୍ୱଜ ରଥ
ଭାଙ୍ଗି କପିଳାସ ପୁର କରିବା ବିଧ୍ୱସ୍ତ ।
କୋପେଣ ଗର୍ଜ୍ଜନ୍ତି ପ୍ରଭୁ ଦେବ ବାମଗାଳ
ବେଢ଼ିକରେ ଧଇଲେ ସେ ଲଙ୍ଗଳ ମୂଷଳ ।
ସଂବର୍ତ୍ତକ ସଉନନ୍ଦ ବେଢ଼ିକରେ ଧରି
ଦ୍ୱାରକା ପୁରୁ ବାହାର ହେଲେ ହଳଧାରୀ ।
ନନ୍ଦଘୋଷ ରଥପରେ ଚଢ଼େ ଜଗନ୍ନାଥେ
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧନୁ ଶୋଭେ ହସ୍ତେ ।
ଭୋଜବଂଶର ଯେ ରାଜା ଅଟେ ଉଗ୍ରସେନ
ଛପନ କୋଟି ଯାଦବ ବଳ ମେଳେ ସୈନ୍ୟ ।
ପାଞ୍ଚଲକ୍ଷ ଯୋଦ୍ଧା ସେନ ଯଦୁବଂଶ ପତି
ନ ଲକ୍ଷ ସେଣ୍ଢ ଅନ୍ଧକ ବଂଶ ନରପତି ।
ଶୀରସେନ ବୋଲି ସେ ଯେ ବୃଷ୍ଣି ବଂଶ ରାଜା
ବାହାର ହେଲେ ବାଜଇ ଲକ୍ଷେ ଖରବାଜା
ବହୁତ ବଳ ଗହଳ କଳନା ନ ଯାଇ
ଦ୍ୱାରକାରୁ ବାହାରିଲେ ଯଦୁକୁଳ-ସାଇଁ ।
ବାମେ ବଳ୍ରାଙ୍ଗ ଡାହାଣେ ମୂଷଳ ସୌନନ୍ଦ
ତୋଟିସିଂହ ପରାକ୍ରମୀ ଯେଉଁ ରାମଚନ୍ଦ୍ର ।

ଅମ୍ବା ଜଦମ୍ବା ପ୍ରଳମ୍ବା ନାମେ ତିନ୍ସାର
ଯାହାର ହସ୍ତରେ ମଲେ ଏ ତିନ ଅସୁର ।
ରଥେ ନ ରହନ୍ତ ରାମ ଧାମନ୍ତ ଗରଜ
ପାଦଭରେ ମେଦିନୀକୁ ବୁଷ ପଡ଼େ ହାଜ ।
ସମଦଣ୍ଡ ଯେଣୁ ଦେବ ସଙ୍କର୍ଷଣ ନାନ୍ତ
ପ୍ରବେଶ ହସ୍ତିନା ଯାଇ ଦ୍ୱାରକାକୁ ବନ୍ଧୁ ।
ଶୁଣ ହେ କୌରବ କେ ଲୁଚନ୍ତ ନାମପାଉ
ଅର୍ଜୁନ ଯେ ମଲ ଆହା ଯାନାଶିର ବାଳ ।
ସଦାଶିବ ଗଣବୃନ୍ଦ ମାଇଲା ଫାଲ୍‌ଗୁନ
ସମରେ ମାରି ତାହାଙ୍କୁ କଲା ଖଣ୍ଡବେଣ ।
ଶୁଣି ମୂର୍ଚ୍ଛାଗତ କୁରୁକୁଳ ଅଧିକାରୀ
ବଜ୍ରାଘାତ ପ୍ରାପ୍ତ ଦୁର୍ଯ୍ୟୋଧନ ଗଲା ପଡ଼ି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆଦିର ଶକୁନ
ସମସ୍ତେ ଲୋଟି ପଡ଼ିଲେ ସ୍ମରି ଫାଲ୍‌ଗୁନ ।
ଗୁଣସାଗର ଜାନନ୍ଦ ପାର୍ଥ ନାମଗୋଷ୍ଠୀ
ଗତପ୍ରାଣ ପ୍ରାୟ ପଡ଼ିଗଲେ ସର୍ବ ଗୋଷ୍ଠୀ ।
ବାବୁ ଅହିଂସା ଅପାପ ଅନାଥର ବନ୍ଧୁ
ସୋମବଂଶତମ ପିଣ୍ଡେ ତୁ ତ ଜାଣ ଇନ୍ଦୁ ।
ପାଣ୍ଡବା ଅସୁର ଗିଳୁଥିଲା ଯେତେବେଳେ
ନଦସାଗର ସୈନ୍ୟ ତୁ ମାଇଲୁ ରେ ହେଳେ
ଉଦର ବିଦାରି ତାକୁ ଚିରିଲୁ ତୁ ବୁଲୁ
ତହୁଁ ଉଦ୍ଧାରି ଆଣିଲୁ ତୁ ଶତଭ୍ରାତାଙ୍କୁ ।
ପାଣ୍ଡବାସୁରକୁ ମାରି ପାଣ୍ଡବ ତୋ ନାମ
ନଷ୍ଟ ଜଙ୍କ ନର୍ଦ୍ଦୋଷୀ ତୁ ଅନୁଗତ ଧର୍ମ ।
ମୁଁ ତୋର ଗୁଣ ବର୍ଣ୍ଣିବ କେସ ଆରେ ବୀର
ଅର୍ଜୁନ ତୋହୀନେ ଆଉ ମୋର ଜୀବ ନାହିଁ ।
ଅନାଥନାଥ ଶରଣ ରକ୍ଷଣ ଟେ ବନ୍ଧୁ
ହସ୍ତିନାରେ ଲକ୍ଷ୍ମୀ ଆଜ ଗୁଡ଼ିଗଲା ବନ୍ଧୁ ।
ବାବୁ ସହୋଦର ମୋର ପ୍ରାଣର ସଙ୍ଗାତ
ବକ୍ଷବଗ ଅନ୍ଧକାର କଲୁ ବୀରପାର୍ଥ ।
ଅମର ସ୍ୱର୍ଗଭୁବନ ଜିଣିଲୁ ତୁ ହେଳେ
ଏତେକ ସମ୍ପଦ ନାଶକଲୁ ଏକାବେଳେ ।
ବାରତା ପାଇ କାନ୍ଦଇ ରାଜା ଧୃତରାଷ୍ଟ୍ର
ଏତେକାଳେ ବାବୁ ହେଲା ତୋତେ ସୂକ୍ଷ୍ମକଷ୍ଟ
ସମ ବୋଇଲେ ହେ ବୋଧ ସ୍ତୁଡ କୁରୁରାଜ
ଦେବଙ୍କୋଇଯିବା ଦେଂଗ କୁରୁବଳ ସାଜ ।

ସାଜ ସାଜ ହୋଇ ତହିଁ ପଡ଼େ ଗୁରୁ ଡାକ
ବାଜଇ ଯେ ଶାଳରର ନଶାଣ ଅନେକ ।
ଏକାଦଶ ଅକ୍ଷୌହିଣୀ ସଇନ୍ୟ ପରିଶ୍ରି ।
ଆକାଶ ଯେ ଭୃଷ୍ଟଲଗ ପଖରାବ ଶ୍ରେଣୀ ।
ଅଶ୍ୱପାଇ ଅ ଟ ସୈନ୍ୟ ସାଜେ କୌରବେ
ସମକଷ୍ଟ ଯେଣୁ ତହନ ହୋଇ କୁରୁବେଦେ ।
ନନ୍ଦଘୋଷ ରଥ ଚଢ଼ିଗଲେ ଯେ ଅଚ୍ୟୁତ
ଗଳଗ୍ରୁ ବାନ୍ଧଣାକରେ ପ୍ରଭୁ ଜଗନ୍ନାଥ ।
ଆସ୍ୱାନ ଉପରେ ବଟେ ଧର୍ମଦେବ ଗସ୍ତେ
ସନ୍ନିଧ ଶ୍ରୀ ନାରାୟଣ ଉଠନ୍ତି ଜନସ୍ତେ ।
ସମସ୍ତେ ତ ଅନ ଦୋର ଅର୍ଜୁନ ଯେ ଭାଷ୍ଟି
ନାରଦ ବୋଲନ୍ତେ ପାର୍ଥ ଜୀବନରେ ନାହିଁ ।
ଘଣ୍ଟା ମାଳ ଉଠାଇଲୁ ଗଲା ସେ ଅର୍ଜୁନ
ଯାଇଣ ପଶିଲା ଦ୍ୱର ଉଦ୍ୟାନ ଭାବନ ।
ହର ଘଣ୍ଟା ଗୋଟିନ ଯେ ମାଇଲା ଫାଲ୍‌ଗୁନ
ମାଇଲେ ଯେ ଶିବଗଣ ମହାକାଳ ସେନ ।
ଶୁଣିଣ ତଳପଡ଼ିଲେ ଧର୍ମଙ୍କ ନନ୍ଦନ
ବଜ୍ରାଘାତ ପ୍ରାପ୍ତ ପଡ଼ିଗଲା ଭୀମସେନ ।
ଅର୍ଜୁନର ନାମ ଧରି କାନ୍ଦନ୍ତି ଯୁଧିଷ୍ଠି
ସର୍ବଗୁଣ ସୁଲକ୍ଷଣ ମୋର ରାଇଂଗାଷ୍ଟି ।
ଉତ୍ତର ଦିଗକୁ ବ ବୁ ଜିଣିଲୁ ତୁ ହେଳେ
ଧଇଲୁ ତୁ ନବଦ୍ୱୀପ ପୃଥ୍ୱୀ ଧନୁର୍ଦ୍ଧରେ ।
ଶଙ୍କଡା ତୁ ବଳବନ୍ତା ଅତୁଳ ପ୍ରାକର୍ମ
ଧାନୁଷ୍କ ଚୂଡ଼ାମଣି ତୁ ଷଣ୍ଢୀ ନାହିଁ ସମ ।
ଅପାର ଶୋକ କରନ୍ତି ନୃପତ ଯୁଧିଷ୍ଠି
ଏମନ୍ତ ସମସ୍ତେ ଦଣ୍ଡସେନ ଧାର୍ତ୍ତରାଷ୍ଟ୍ରି ।
ତାହାଁକ ନେଇ ଭାକରନ୍ତୁ କୁହୋ ଧର୍ମରାଜ
ଜେ ନାଶକଲା ଆମ୍ଭର ବୀର ଧନଞ୍ଜୟ ।
ଶୁଙ୍ଗି କପିଳ ସ ଆଜ କରବା ଉଧିସ୍ତ
ଜଣେ ନ ଥୋଇ ମାରିବା ରଣହିଁ ସମସ୍ତ ।
କୁନ୍ତୀ ଦ୍ରୌପଦୀ ଅବର ସୁଭଦ୍ରା ସହିତେ
ଉଚ୍ଚସ୍ୱରେ ରୋଦନ ଯେ କରନ୍ତି ସମସ୍ତେ ।
କାନ୍ଦନ୍ତି ଗାନ୍ଧାରୀ ଭାନୁମତୀ ଆଦି ନାରୀ
ଉଚ୍ଚସ୍ୱରେ କାନ୍ଦନ୍ତି ଯେ ଶୁଭଇ ବୋବାଳ ।
ଆହେ ପ୍ରାଣନାଥ ବୋଲି କାନ୍ଦନ୍ତି ସୁଭଦ୍ରା
କୁ ଯେ ଭାଙ୍ଗିଲୁ ମୋହର ଯୋଗ ପଞ୍ଚମୁଦ୍ରା ।

ରାମ କୃଷ୍ଣଙ୍କ ସମ୍ମୁଖରେ ପଡ଼ି କାଳୀ ଲୋଟି
ଜାଣିଥିଲି ମୋର ପଞ୍ଚଭୂତ ଆତ୍ମା ଗୋଟି ।
ଗୋବିନ୍ଦ ବୋଇଲେ ତୁମ୍ଭ ନ କାନ୍ଦ ଗୋ ସତୀ
ଏହିକ୍ଷଣି ଜୀଆଇ ମୁଁ ଆଣିବି ତୋ ପତି ।
ସତ୍ୱର ହୋଇଥିଲି ଦେବ ଶାନ୍ତ ଯେ କରାଇ
ସମକଣ୍ଠ ସେନ ବଳେ ଯଦୁକୁଳ ସାଇଁ ।
ଯଦୁବଳ କୁରୁବଳ ପାଣ୍ଡବ ସହିତ
ପାଞ୍ଚଯୋଜନ ପର୍ଯ୍ୟନ୍ତେ ପୂରିଲା ମେଦିନୀ ।
ଦୁଃସହ ପ୍ରତିଜ୍ଞା କରେ ବୀର ବୃକୋଦର
ଆଜ ନଷ୍ଟେ ଘଟିବ ମୁଁ କପିଳାସ ପୁର ।
ଏକ ପଦକର ଏକ ହସ୍ତ ଅନ୍ତ ଯେ ଅଗ
ଗଦା ଟେକିଲା ଭୀମ ଧାଏଁ ହୋଇ ବେଗ ।
ନାଗାର୍ଜୁନ ଯେ ପାତାଳ ସ୍ୱର୍ଗପୁରେ ଗଲା
ମାତାର ଆଗରେ ଯାଇ ସମସ୍ତ କହିଲା ।
ମାଗୋ ପାର୍ବତୀଙ୍କ ଘଣ୍ଟା ରକ୍ଷା କରିଥିଲି
ସ୍ୱନକ୍ଷନ୍ତ ବନ୍ଦାପଣା ନିମନ୍ତେ ଅଇଲି ।
ମାଗୋ ବଡ଼ଇ ସୁନ୍ଦର ଏତଇ କଗାଡ଼
ସେହି ପାର୍ବତୀଙ୍କ ଘଣ୍ଟା ଜଗିଣ ନହୁଡ଼ ।
ମାଇ ଯେବେ ଘଣ୍ଟାଗୋଟି ସେନ ଯାଇଥାନ୍ତା
ତାହାର ମୋହର କାହିଁ ଭେଟ ବା ହୁଅନ୍ତା ।
ମୁହିଁ ଯାଇ ପ୍ରବେଶିଲି ତହିଁ ଯେତେବେଳେ
ଅନେକ ସମର କଲା ସେ ମୋହର ତୁଲେ ।
ବେଦବଳେ ନ ପାରିଲି ଜିଣି ମୁଁ ତାହାକୁ
ଅନେକ ପ୍ରତିଜ୍ଞା କରି କହିଲା ମାତାକୁ ।
ପ୍ରଥମେ ବୋଇଲା ମୁହିଁ ଖାଣ୍ଡବ ଦହିଲି
ଅଗ୍ନିର ନିମନ୍ତେ ଇନ୍ଦ୍ର ଦେବତା ଜିଣିଲି ।
ପାଞ୍ଚାଳଦେଶେ ବନ୍ଧିଲି ମୁହିଁ ରାଧାଚକ୍ର
ମତେ ଜଗାଇଲି ଲକ୍ଷେ ରାଜାମୁଖ ବକ୍ର ।
ହନୁମନ୍ତ ତୁଲେ ମୁଁ ଯେ ହୋଇଲି ବିବାଦି
ଶରେ ଶର ବାନ୍ଧିଲି ମୁଁ ସପ୍ତବାରିନିଧି ।
ଉତ୍ତର ବଳେ କୁଳଶପସ୍ତ ରଜା ସାଧି
ନିମାଗୋଷ୍ଠକୁ ଆଣିଲି ରଥେ ମୁହିଁ ବାନ୍ଧି ।
ଏକାକେ ମୁଁ ଦଗବଳେ ଜଲଇଁ ପାତାଳେ
ମେଦିନୀକୁ ଧଇଲି ମୁଁ ଏହି ଧନୁହସ୍ତେ ।
ନାଗାର୍ଜୁନ ମୁଖରୁ ଯେ ଏସନକ ଶୁଣି
ପ୍ରାସାସ୍ତମ ହୋଇ ତଳେ ପଡ଼ିଲା ନାଗୁଣୀ ।

ଆହା ସ୍ୱାମୀ ବୋଲି ତଳପଡ଼େ ମହୀଲୋଟି
ଅନାଥ କଲ ଜଗତ ସୋଦର କଣ୍ଟି ।
ତୋ ଚନ୍ଦ୍ରବଦନ ଗୋଟି ଦେଖି ନ ପାରିଲି
ତୋହର ମୁଁ ବଡାସିମା ନଗ୍ରଣ ହୋଇଲି ।
କେଉଣ ପାପକ୍ଷଣେ ମୁଁ ଭଜି ତୋତେ ଜାତ
ସ୍ୱାମୀଟି ମୋହର ନାଶଗଲେ ତୋର ହସ୍ତ ।
ତୋହର ତହନେ ସ୍ୱାମି ହୋଇଲି ମୁଁ ଦୁଃଖୀ
କେଉଣେ ଗଲେ ପ୍ରାଣନାଥ କହଣ ଜମ୍ମାକ୍ଷୀ ।
ନାଗାର୍ଜୁନ ବୋଲେ ମାତ ଇଁ ଶୋକ କଲୁ
ମୋହର ପିତା ବୋଲି ତୁ କେମନ୍ତେ ଜାଣିଲୁ
ପରର ନାହାର ହୋଇ ଦେଖିଲ ପ୍ରତ୍ୟକ୍ଷ
ଶ୍ରୀଖିଲ ତରୁ ଥିପସ୍ତେ ମଣିଲୁ ସେ ବୃକ୍ଷ ।
ତେଣିଣ ନାଗୁଣୀ ଡାକ ପଡ଼ଲାକ ଭୂମି
ଅନାଥ କରି କେଣିକି ଗଲ ମୋତେ ସ୍ୱାମୀ ।
ଅବାଙ୍କ ହୋଇ ତସାଇଁ ନ ଚିହ୍ନିଲ୍ ପୁତ୍ର
ଅନାଦରେଣ ନାଶଗଲ କରଣ ଅନାଥ ।
ଜାହିଁଥିଲି ସ୍ୱାମୀ ମୋର ଦେଖା ମୋତେ ନେଇ
ଛଡ଼ ପ୍ରାଣ ଗ୍ରହିବ ମୁଁ ସ୍ୱାମୀ ମୁଖ ଚାହିଁ ।
ଆଗରେ କୁମର ଯହିଁ ଗଲେ ସନ୍ଧ୍ୟାବାଳୀ
ପାତାଳ ତାହାର ହୋଇ ତଳଇ ତାଭୂଲୀ ।
ରାମକୃଷ୍ଣ ଦୁର୍ଯ୍ୟୋଧନ ଯୁଧିଷ୍ଠିର ସହିତେ
ସପତଣ୍ଡ ଘେନ ଅଛି ତନୟ ସମସ୍ତେ ।
ଅନେକ ପ୍ରତିଜ୍ଞା କରି ଆସନ୍ତି ଗରଜି
ଝବକେ ଡଙ୍କର ଝଡ଼ ପଡ଼ ଅଛି ଭୂଜ ।
ଅନେକ ସୈନ୍ୟ ଗହନ ଦେଖି ସନ୍ଧ୍ୟାବାଳୀ
ନାଗାର୍ଜୁନ ବଦନକୁ ଚାହିଁଣ ସେ ବୋଲି ।
ସ୍ୱାମି ଉନାଶ ମୋହର କଲ ଦୃଷ୍ଟବନ୍ତା ।
ବଡ଼ ମରିବୁ ରେ ପୁତ୍ର ବେଗେ ଏଥୁ ପଳା ।
କୁମର ବହୁତ ସୈନ୍ୟ ଦେଖି କଲା ଭୟ
ପଳାଇଲା କପିଳାସ ପୁରକୁ ତନୟ ।
ସଦାଶିବ ସମ୍ମୁଖରେ ସେ ହୋଇଲା ପ୍ରବେଶ
ସଦାନନ୍ଦ ଚରଣରେ କଣାଇଁ ବରସ ।
କରପଦ ଯୋଡ଼ି ବୋଲେ ସେ ନାଗଅର୍ଜୁନ
କଗଡ଼ ଗୋଟିଏ କଲା ଘଣ୍ଟାକୁ ନିଧନ ।
ମୁହିଁ ସେହି ଶବରକୁ କଲଇଁ ନିପାତ ।
ତା ପାଇଁ ଆସିଲେ ରାମ କୃଷ୍ଣ ବେଳଭାଳ ।

କୌରବ ପାଣ୍ଡବ ସେନ ଅନେକ ସଇନ
ଆକାଶରୁ ଦେଖେ କଲେ ଦେବ ସଦ୍ୟୋଜାନ ।
ଅନେକ କଥା କହିଲା ନାଗୁଣୀର ବାଳ
ବସନ୍ତ ଯେ ବିଶ୍ୱନାଥ ପାଇ କୁତୁହଳ ।
କାଶୀନଦୀ ତୀରେ ଯାଇ ଦେଖେ ଦେବବାଳ
ଅର୍ଜୁନ ସନ୍ନିଧେ ଦେଖେ କଲେ ବନମାଳୀ ।
ଦେଖିଲେ ଶରଦଚନ୍ଦ୍ର ବଦନ ପ୍ରକାଶ
ମୋହେଣ ଭଳ ପଡ଼ିଲେ ପ୍ରଭୁ ହୃଷୀକେଶ ।
ଷଢ଼ ଯୁବର ସୁନ୍ଦର କଥା ଜଗଜ୍ଜେଠ
କଣ୍ଠରେ ବୁଡ଼ାଇଲୁ ତୋର ନାମଗୋଟି ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ପଢ଼ିଲେକ ତଳ
ଅନେକ କାରୁଣ୍ୟବାଣୀ ପଡ଼ଇ ବୋବାଳ ।
ପ୍ରବେଶ ହୋଇଲା ସନ୍ଧ୍ୟାବାଳୀ ସନ୍ନିଧାନେ
ଦେଖିଲା ଅର୍ଜୁନ ପଡ଼ିଅଛି ଯୁଦ୍ଧସ୍ଥାନେ ।
ଅଧରକୁ ପୃଷ୍ଠକରି ଓଷ୍ଠେ ଦନ୍ତ ଚାପି
ନୟନ କଟାକ୍ଷେ ସେହି ଦେଖେ କାମରୂପୀ ।
ବିସ୍ତାରିତ ବକ୍ଷସ୍ଥଳେ ଲମ୍ବ ବେଣ ବାହା
ବକ୍ଷରେ କୁମର କେତେ ମାରିଥିଲା ଏହା ।
ଦିବ୍ୟ ଅବତାର ପ୍ରାପ୍ତ ଦିଶଇ ମୂରତି
ବିସ୍ମୟେ ନାଗୁଣୀ ଯାଇ ଭେଟିଲା ତା କତି ।
ଚକ୍ଷୁ ବାଟରେ ବାହାରେ ପ୍ରାଣ ଛାଡ଼ିଗଲା
ସନ୍ଧ୍ୟାବାଳୀ ସେ କଥାକୁ ଜାଣି ନ ପାରିଲା ।
ବୋଇଲା ହେ ନାଥ ଅଟୁ କି ଷଢ଼ିଯୁବର
ବାହୁଡ଼ପୁଅ ଘରକୁ ଏଡ଼େ ରୋଷ ତୋର ।
କୋପ କହର ବୋଲି ସେ ସନ୍ନିଧେ ପ୍ରଣମି
ପୁତ୍ରକୁ ମୋହର ପଶ ନ ମାଇଲୁ ସ୍ୱାମି ।
ଆସ ଆସ ସ୍ୱାମି ଏବେ ନଜପୁରେ ଯିବା
ବାହୁଡ଼ି ପୁତ୍ରର ଦୋଷ ମନେ ନ ଧରିବା ।
ଅନେକ ବଚନେ ଯାଇ ଧରେ ଭୁଜଦଣ୍ଡ
ଛିଣ୍ଡିଗଲେ ସର୍ଙ୍ଗ ପଡ଼ି ହୋଇଲା ବେନଖଣ୍ଡ ।
ଆହେମୋର ସ୍ୱାମିବୋଲିବୋଲେସନ୍ଧ୍ୟାବାଳୀ
ଖଣ୍ଡେକ ତୋଳି ଧରିଲେ ପ୍ରଭୁ ବନମାଳୀ ।
ଅନେକ ଶୋକ କରନ୍ତି ଦେଖିଣ ସଇନ
ନାଗୁଣୀ କାନ୍ଦଇ ଏକଖଣ୍ଡ ହୃଦେ ଦେନ ।
ପତିଆମ୍ଭା ପ୍ରାପ୍ତେକ ଯେ ପଡ଼ିଲା ଯୁବତୀ
ମୂର୍ଚ୍ଛାଯାଇ ପଡ଼ିଲେ ସେ ଦେବ ଶ୍ରୀପତି ।

ଯୁଧିଷ୍ଠି ଦେବଙ୍କ ଶୋକ କହିବ କେ ପାର
ହରାଇ ବସିଲୁ ପଣ୍ଡାସାଗି ଏବେ କିସ ।
ଜଗତଜନ ବନ୍ଦନ ବାବୁ ଧନଞ୍ଜୟ
ଯାହାର ସଖା ଅଟନ୍ତି ପ୍ରଭୁ ଦେବରାୟ ।
କେମନ୍ତେ ବଞ୍ଚିବୁ ବାବୁ ତୋହର ଅଭାବେ
ଦଶଦିଶ ଅନ୍ଧାର ତ କଲୁ ବାବୁ ଏବେ ।
ଏପରି ଅନେକ ଶୋକ କଲେକ ନୃପତି
ତୋର ଅଭାବେ ବାବୁ ରେ ଲୁଟିଲା ବିଭୂତି
ମେରୁଗିରି ପୁଁଟାଇ କୁ ପାରୁ ଆରେ ବାବୁ
ଏଡ଼େ ବଳବନ୍ତ ହୋଇ ହରାଇଲୁ ସବୁ ।
ବାବୁ ମୋର ସୋଦରରେ ଅଟୁ କୁଳଦୀପ
ଏ ପଞ୍ଚରାଜ୍ୟ ଠାକୁର ବୁଦ୍ଧି ତୋ ଅମାପ ।
ତୋର ଅଭାବେ ବଞ୍ଚିବୁ ଆମ୍ଭେ ଅବା କାହିଁ
ତୋ ତୁଲ୍ୟ ସଂସାରେ ଆଉ ଜଗଜ୍ଜିତା ନାହିଁ
ଅର୍ଜୁନ ଅଭାବେ ମହାକୋପ ହଳସାଇଁ
ଆଜ କଟ୍ଟି ଉପାଡ଼ିବ କଇଳାସ ମୁହିଁ ।
ଅନେକ ପ୍ରତିଜ୍ଞା କଲେ ଦେବ କାମପାଳ
କଇଳାସ ପର୍ବତରେ ଚଢ଼ିଲେ ସକଳ ।
ବଳରାମଙ୍କ ସଙ୍ଗତେ କୌରବ ସମସ୍ତେ
ନକୁଳ ସହଦେବ ଯେ ସଇନ୍ୟ ସହିତେ ।
ଆଚାର୍ଯ୍ୟ ଅମରଗଣ ସେନ ମଘବାନ
ଐରାବତ ସହିତରେ ଦେଖେ ସୁରଗଣ ।
ବାସବର ପ୍ରତିଜ୍ଞା ତ କହିଲେ ନ ସରି
ବଡ଼ ସମାରୋହେ ବେଢ଼ି କଇଳାସ ପୁରୀ ।
ଅନେକ ସଇନ ତାର ନ ଯାଇ କଳନା
ବାଜଇ ଯେ ଶାରଭୂରି ଝମକ ବାଜଣା ।
ନାରଦ କହିଲେ ଯାଇ ଆହେ ଦେବହର
କଇଳାସ ପୁର ଏବେ ସମ୍ଭାଳ ତୋହର ।
ନାରଦଙ୍କ ମୁଖୁ ଶିବ ଏ ବଚନ ଶୁଣି
କୋପାନଳ ହେଲେ ଦେବ ଦେବ ଶୂଳପାଣି
ଚଉଦକୋଟି ଯେ ଶିବଗଣ ବେଗେ ସାଜି
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜି ।
ବୃଷଭ ଆରୋହି ଦେଖେ କଲେ ଦିଗମ୍ବର
ତ୍ରିଶୂଳ ପିନାକ ଆଦି ଧଇଲେ ହସ୍ତର ।
ଝଂନାୟକ ବିନାୟକ ମହାକାଳ ନନ୍ଦ
ଜୟନ୍ତ ଅଜୟ ଚଣ୍ଡ ପ୍ରଚଣ୍ଡ ଏ ଆଦି ।

ଅନେକ ଆୟୁଧ ଧରି ଅନନ୍ତ ସେ ଜବେ
ବଳ୍ପତ ନାଗତ ବେଷ୍ଟନ୍ତି କୋପଭରେ ।
ଈଶ୍ୱର ଦେବତା ଦେଖି ଦେବ ଚକ୍ରଆଶ
ସେଠାବରୁ ଅର୍ଜୁନଙ୍କୁ ଗଲେ ତ୍ୟାଗକରି ।
ଯୁଧିଷ୍ଠିରେତ ଅର୍ଜୁନ କୃଷ୍ଣଙ୍କୁ ସମ୍ଭ ଳ
ଅ ନକ ବଳକ ହୋଇ ଜ ଦେ ସତ୍ୟବାଦୀ
ବେଳଡେୟୁ ବାହନରେ ବଳସ୍ତୁ ଅଚ୍ୟୁତ
ବଳଦେବଙ୍କ ଅଗ୍ରତେ ଉଡେ ବକ୍ଷ୍ୟକାଅ ।
ସମର୍ଥେ କୋପିତ ସଦାନନ୍ଦଙ୍କୁହିଁ ଦେଖି
ବଜ୍ର ଲଙ୍ଗଳ ଧରିଲେ ଉଙ୍ଗଳର ଆଖି ।
ଛୁହ ଛୁହ ବୋଲି ବଳଭଦ୍ରେ କରି ଶାନ୍ତ
ନନ୍ଦଘୋଷରୁ ଙ୍କୁର ପ୍ରଭୁ ଶିଖିପୁତ୍ତ ।
ଶ୍ରୀହସ୍ତରେ ଅଧ୍ୟ ଘେନ ଦେବ ଦେ ଗୋବିନ୍ଦ
ହୁଣିପାତ କଲେ ଧରି ବୃନ୍ଦାରର ପାଦ ।
ନାଗପୃଣଙ୍କୁ ଦେଖିଣ ଦେବ ସଦାଶିବ
କୋପ ଉଦ୍ଧତ କରନ୍ତି ଆରେ ବାସୁଦେବ ।
ଆରେ ହେ ପାମର କୃଷ୍ଣ ଅଟୁ ବହୁଦୋଷୀ
ସ୍ୱର୍ଗସଭାକୁ ତୁ ତେଣୁ ନ ପାରିଲୁ ଆସି ।
ବଧିଲୁ ତୁ ବସ୍ତ୍ରାର ଜନନ ଗଣେ
ବ୍ରହ୍ମହତ୍ୟାଦୋଷ ତୋତେ ବୋଲେ ଦେବଗଣ
ପୃଣି ତୁ ଜନ୍ମିଲୁ ଆସି ବାସୁଦେବ ଘରେ
ପୂତନାକୁ ବଧିଲୁ ତୁ କ୍ଷୀର ସଙ୍ଗତରେ ।
ଘୋରେ ସ୍ତୁରେ ପଶି ତୁହି ଷଣ୍ଢ କଲୁ ବଧ
ତୋ ମୁଖ ନ ଚାହିଁ ନାହିଁ ତୋଠାରେ ଉ ସ୍ୱାଦ
ହରିଲୁ ତୁ ଗୋପସ୍ତ୍ରୀମାନ ବାଗପଥେ
ଗୋପାଳ ପ୍ରକୃତ ତୋର ଅଟଇ ଯୁକତେ ।
ଗଉଡ ବାଉଡ଼ ପୁଣି ହାଉଡ଼ ବୋଲଉ
ଗଉଡ଼ ପୁଅଙ୍କ ସଙ୍ଗେ ଅଇଣ୍ଠା ତୁ ଖାଉ ।
ଅପାର ପାତକ ପୁଣି ଅଛି ତୋର ଅଙ୍ଗେ
ତୋହର ମୁଖକୁ ଏଣୁ ନ ଚାହାନ୍ତି ସ୍ୱର୍ଗେ ।
ଶୁଣ ନ ବଚନ ହନୁମାନ ହେଲେ ଛନ୍ଦ
ବହୁତ ଉପହାସ କଲେ ସଦାଶିବ ନନ୍ଦ ।
ଈଶ୍ୱର ବଚନେ ଦେବ କୋପେଣ ପ୍ରଜ୍ୱଳ
ଛତ୍ରଧର ଦପନ୍ତି ବଚେ ବନମାଳୀ ।
ଆହେ ଈଶ୍ୱର ତୋହର ଏହି କଥାମାନ
ମୁହିଁ ବୁଝିଲି ତୁ ଏବେ ବୁଝ ତ୍ରିଲୋଚନ ।

ବାବଣେ ମାଇଲି ମୁଁ ସେ ବ୍ରହ୍ମରାକ୍ଷସ
ତହିଁକି ଯେ ଦେଲ ମୋତେ ବ୍ରହ୍ମହତ୍ୟା ଦୋଷ
ବ୍ରହ୍ମା ତୋର ସତ୍ୟଯୁଗେ କଲା କେଉଁ ଦୋଷ
ତାର ଶିର ମୋଡ଼ିଲୁ ତୁ କାହିଁ ବିଶ୍ୱାସ ।
ତୁହି ସ୍ୱୟଂ ବ୍ରହ୍ମହତ୍ୟା କଲୁ ଯେଉଁ ଯୋଗୀ
ସେ ବ୍ରହ୍ମକପାଳ ତୋର କରେ ଅଛି ଲଗି ।
ଯେ ରାବଣେ ତୁ ବର ଦେଲୁ ପଶୁପତି
ମନ୍ଦୋଦରୀ ସେବା କରେ ତୋହର ପାର୍ବତୀ
ଆପେ ପୁଣି ନୃତ୍ୟ କରୁ ରାବଣ ଅଗ୍ରତେ
ଦେବତାଏ ଖଟିଥାନ୍ତି ଭୃତ୍ୟ ପ୍ରାୟେ ନିତ୍ୟ ।
ସେ ରାବଣ ଅଟଇ ଯେ ମୋହର ବଇରୀ
ଦେବକଣ୍ଟ ତାହାକୁ ପକାଇଲି ମାରି ।
କି ଦୋଷ କଲା ତୋହର ପ୍ରଜାପତି ଦକ୍ଷ
ତାହାର ମୁଣ୍ଡକୁ ହସ୍ତେ ମୋଡ଼ିଲୁ ପ୍ରତ୍ୟକ୍ଷ ।
ତୋହର ଯେତେକ ଦୋଷ ନୁହଇ କପାଳ
ଆହ୍ମଙ୍କୁ ବୋଲୁ ଅଛ ଯେ ପାଷାଣ୍ଡ ହୃଦ
ତୁ ପୁଣି ବୋଇଲୁ ମୁହିଁ ସ୍ତ୍ରୀହତ୍ୟା କଲି
କଂସର ସେ ଦୂତ ମୁହିଁ ତାହାକୁ ମାଇଲି ।
ବେଶ ସ୍ତନରେ ସେ ବିଷ ପୂରାଇ ଅଇଲା
ବିଶ୍ୱାସଘାତକ କରି ମାରି ମନ କଲା ।
ମୁଖେ କ୍ଷୀର ଦେଇ ଅନ୍ତେ ସେ ମୋହର ବଦନେ
ଖାଡ଼େ ଚୁମ୍ବିଲ ଯେ ନାଗଗଳ କ୍ଷୀରପାନେ
ମୋର ପ୍ରାଣ ନାଶିବାକୁ ଯେବେ ସେ ଅଇଲା
ମୁହିଁ ତାହାକୁ ମାଇଲି କି ଦୋଷ ହୋଇଲା ।
ଯେବେ ସତ୍ୟଯୁଗେ ତୁହି ଉମାଙ୍କୁ ଭଣ୍ଡିଲୁ
ତପୋବନେ ଆହବ ମୁଁ ତାଙ୍କୁ କହୁଥିଲୁ ।
ଦେବ ବରଷେ ରହିଲୁ ନବ ସମ୍ଭାର
ଅଙ୍ଗମାନେ ଯେ ପାର୍ବତୀ ଘୁଡ଼ିଲେ ଶରୀର ।
ତୋହର ଜନ୍ମନ୍ତେ ମଲା ବଉଡ଼ି ଲଗାଇ
ଉଲାଟେ ଯେ ମୁଣ୍ଡମାଳ କରିପକୁ ନାଇ ।
ସେ ସ୍ତ୍ରୀଗୋଷ୍ଠିକୁ ହତ୍ୟା କଲୁ ତୁ ଯୁକତେ
ଅକାରଣେ ଦୋଷ ମୋର ଦେଉ କି ନିମନ୍ତେ
ତୁହି ବେଳୁ ମୋତେ ଗୋରୁ ହତ୍ୟାଦୋଷକଲୁ
ଘୋଘୋସ୍ତୁରେ ପଶି ଷଣ୍ଢାସୁରକୁ ମାଇଲୁ ।
କଂସର ସେ ସେନାପତି ଷଣ୍ଢରୂପ ଧରି
ମୋତେ ମାରିବାକୁ ଥିଲା ଗୋଷ୍ଠେ ଲୁଚକରି

ମୂର୍ଖ ତାହାକୁ ସଂଗ୍ରାମେ ଭଲଇଁ ଯେ ବଧ
ସଂଗ୍ରାମରେ ଗୋ ବ୍ରାହ୍ମଣ ହୁଏ ଶିରଚ୍ଛେଦ ।
ତୁ ଯେ ତପ କରୁଥିଲୁ ପାତାଳ ଗଙ୍ଗାରେ
ଶୁଖାଇଥିଲୁ ତୁ ଭୁଷଣ୍ଡା ତା କୂଳରେ ।
ଦେବମାତା କପିଳା ଯେ ଆସିଥିଲା ତହିଁ
ନ ଜାଣି ଗୋମାତା ଖାଇଦେଲା ଭୁଷଣ୍ଡି ।
ସ୍ୱଗ ସମ୍ଭାଳ ନ ପାରି ଗଲୁ କେ ଧ୍ୟାନରେ
ଗୋମାତା କପିଳାକୁ ତୁ ମାଇଲୁ ତ୍ରିଶୂଳେ ।
ଗୋମାତା ଶରୀରେ ଯାଇ ତୋର ଶୂଳ ଗଡ଼
ଶୂଳ ଦ୍ୱାରାତେ ପଡ଼ିଲା ତାର ମୁଣ୍ଡ ଛିଡ଼ି ।
ଆନକୁ ଯେ ନାନା କଥା କହୁ ଯେ ଧୂର୍ଜଟି
ଭୈରବ ଖପରେ ତୋର ତାର ମୁଣ୍ଡ ଲେଟି
ଅନାଇରଣେ ତୁ ଗୋହତ୍ୟା କଲୁ ହେ କପାଳି
ମୋତେ ଟିଙ୍ଗାସ୍ନୁହୁ ନାହିଁ ମୁଁ ତୋହର ଭଳି
ତୁ ଯେ ବୋଲଲୁ ହରଲୁ ଯୋଗସ୍ତ୍ରିଶନ୍ତ
ଅନ୍ୟ ଜାତି ସେ ମୋହର ମାନ୍ୟ ତ ନୁହନ୍ତି
ଆମ୍ଭର ଯେ ନିଜ ମାତା ଅନାଦି ଶକ୍ତି
ତାଠାରୁ ହୋଇଲୁ ତିନି ପୁରୁଷ ଉତପତ୍ତି ।
ବ୍ରହ୍ମା ବିଷ୍ଣୁ, ମହେଶ୍ୱର ତିନି ସହୋଦର
ସେ ସତୀକ ଦେହ ଭୁଞ୍ଜ କରିଅଛୁ ଘର ।
ଏ ମହା କଟୁବଚନ ଶୁଣି ଶୂଳପାଣି
କୋପେ ଗର୍ଜ୍ଜନ୍ତି ସେ ଦେବ କାଳସର୍ପଜିଣି ।
ଗଳଇ ସ୍ୱେପଣ୍ଡ ଝାଳ ବିଦ୍ୟୁଗନ୍ଧ ମୂର୍ତ୍ତି
ତାମ୍ର ଚନ୍ଦ୍ର ପ୍ରାୟ ନେତ୍ର ମିହିର ରୂପ ଜ୍ୟୋତି ।
ଶରୀରକୁ ଉଲ୍ଲସାଇ ଓଷ୍ଠ ଦନ୍ତ ଚିପି
ଖଣ୍ଡ ପରଶୁଏ ମାରି ସେ ପୁରୁଷ କୋପୀ ।
ଦେଖିଣ ପଞ୍ଚ ପାଣ୍ଡବ ନନ୍ଦନ କୁମର
ସଙ୍ଗି ସେ ଖଣ୍ଡ ପରଶୁ ହେଲା ଖଣ୍ଡେ ଚୂର
କଦଳୀପତ୍ର ପର୍ଯ୍ୟେ କମ୍ପେ ତାଙ୍କ ଅଙ୍ଗ
ପୁଣିହିଁ ପ୍ରହାର କଲେ ସେ ଦେବ ଖଟ୍ୱାଙ୍ଗ ।
ଗରୁଡ଼ ପିଠିରେ ପଡ଼ି ସେହି ଚୂର ହେଲା
କୋପେ ବିଶ୍ୱନାଥ ପୁଣି ପିନାକ ଧଇଲା ।
ସହସ୍ରେକ ନାରାଚ ସେ ବିନ୍ଧିଲେ ଯୁଗଳ
ଗୋବିନ୍ଦକୁ ପଛକରି ହଳୀ ଗଲେ ଧାଇଁ ।
ସବାଙ୍ଗେ କାଦମ୍ବରୀ ପାନେ ମଉଳେଳ
ଅନ୍ତରୀକ୍ଷେ ବୁଲାଇଲେ ସୌନନ୍ଦ ମୁଷଳ ।

ଦକେ ଉଚ୍ଚଣ୍ଡ ଘେନିଲେ ତାହା ପଶୁପତି
ବଳରାମଙ୍କ ହସ୍ତରୁ ନେଇ ତା ଝଟତି ।
ପିଟିଲେ ସେହି ହଳକୁ ତାଙ୍କୁ ଲେଉଟାଇ
ପୁଣିହିଁ ଉଚ୍ଚଣ୍ଡ ତାହା ନେଲେ ହଳସାଇଁ ।
କାର୍ତ୍ତିକେୟ ସଙ୍ଗେ ଇନ୍ଦ୍ର ଦେବତାର ଯୁଦ୍ଧ
ଅନେକ ସମର କଲେ ଦୁହେଁ ରଣମଧ୍ୟ ।
ଦୁର୍ଯ୍ୟୋଧନ ସଇନ୍ୟକ ନନ୍ଦ ଯାଇ ବେଢ଼ି
ଭୀମସେନ ମହାକାଳ ମହାଘୋର ରଡ଼ି ।
ଧନାଯୁକ ଦୁଃଶାସନ ଦୁହିଙ୍କ ସମର
ଜୟନ୍ତ ସଙ୍ଗେ ଗାଙ୍ଗେୟ ରଣ ମହାଘୋର ।
ଚଣ୍ଡ ସେନାପତି ସଙ୍ଗେ ଚନ୍ଦ୍ରସେନ ଯୁଦ୍ଧ
ମହାକାଳି ପ୍ରଳୟାନ୍ତ ଶସ୍ତ୍ର କଲେ ବନ୍ଧ ।
କୁଭୂଷଳ ସମର ଯେ ହରି ହର ଘେନ
ଦଳବ ଭପଭିଲୁ ଏ ହେଲେ ଅନ୍ୟୋଧନ ।
ଷଣ୍ଢ ସେନାପତି ଭୁଲେ ଯୁଦ୍ଧ କଲେ ଦ୍ରୋଣ
ପ୍ରଚଣ୍ଡା ଭୁଲେ ସମର ଗଲା ମହାରଣ ।
ପାଶ ଗଦା ମୁଦ୍ଗର ଅର୍ଦ୍ଧଚନ୍ଦ୍ର ମୁନା
ଝଣ୍ଟନ୍ତେ ନାଦ କର ବଜ୍ର ଅଂଭିଦ ଯେ ସେହା
ଶସ୍ତ୍ର ଅସ୍ତ୍ର ନିଘାତରେ କମ୍ପଇ ବ୍ରହ୍ମାଣ୍ଡ
ଧ୍ୱାସଣ ଭୂଲୋକ ପୃଥ୍ୱୀ ମହୀ ନବଖଣ୍ଡ ।
ଗର୍ଜ୍ଜନ୍ତି ଗର୍ଜ୍ଜନ୍ତି ଯୋଦ୍ଧା ଧାମନ୍ତି ଯେ ବେଗେ
ଘଣ୍ଟା ଖଦ୍ଦେ କମ୍ପାନ୍ତି ମତ୍ତ ମହାନାଗେ ।
ଦୁଃସହ ସଂଗ୍ରାମ ତହିଁ ହେଲା ଅପ୍ରମିତ
ସ୍ୱର୍ଗୀଙ୍କର ପାଦଭରେ ପୃଥିବୀ କମ୍ପିତ ।
କରେ ଘେନି ଗଦା କୋପେ ବୀର ବୃକୋଦର
ଶଙ୍କରଗଣଙ୍କର ଭୁଲେ ବିଷମ ସମର ।
ବାଉନ ବାଉନ ଘିଏ ଗଦା ଧରି ହସ୍ତେ
କୃତାନ୍ତକ ପ୍ରାଏ ବୀର ଧାଇଁଲେ ଯେମନ୍ତେ ।
ଚଉ ରେକାର କରି ବୀର ପାଣ୍ଡବ ଯେ ଉଠି
ଶଙ୍କରଗଣମାନଙ୍କୁ ସେ ଯୋଡ଼ାଇଣ ପିଟି ।
ମହା ପ୍ରଳୟେ ଗର୍ଜ୍ଜଇ ଯେହ୍ନେ ମେଘମାଳ
କରେ କୁଠାର ବୁଲାଇ ଆସେ ମହାକାଳ ।
ନେଇ ତା ପ୍ରହାର କଲା ଭୀମର ଉପରେ
ବାମ ଅଙ୍ଗକୁ ଯାଉଲା ବୃକୋଦର ଧୀରେ ।
କୁଠାର ପଡ଼ନ୍ତେ ଦେଖି ଧାଇଁଲେ ଯାଦବ
ମହାକାଳ ହସ୍ତରୁ ତା ଉଚ୍ଛୁଳଣ ଘେନି ।

ସେ କୁଠାର କୁମ୍ଭଇଲା ଭୀମ ତାକୁ ପିଟି
ଖସାରେ ପଡ଼ ତାହାର ଅଗ୍ନ ଜଳେ ଉଠି ।
ବଜ୍ରକୁଠାରେ ଅଚେଷ୍ଟା ହେଲା ମହାକାଳ
ରଡ଼ଘାତରେ କମ୍ପିଲେ ଆକାଶେ ଦିକ୍‌ପାଳ
ମହାକାଳକୁ ନଚେଷ୍ଟ ଦେଖି ନାଗାର୍ଜୁନ
ଭୀମ ସନ୍ନିଧେ ପ୍ରବେଶ କାର୍ତ୍ତିକ ସମାନ ।
ଦିଗାସ୍ତ୍ର ପିନାକ ସମ କରେ ଧରି ଧନୁ
ବକ୍ଷେ ନାଗାସ୍ତ ବନ୍ଧିଲା ନାଗୁଣୀର ସୁନୁ ।
ଦେଖି ବୃକୋଦର ପାଡଦେଲ ବାମଅଙ୍ଗ
ସମସ୍ତ ନାଗାସ୍ତ ପଡ଼ ହେଲା ଛନ୍ନି ଭଙ୍ଗ ।
କୋଟିଏ ନାଗାସ୍ତ ପୁଣି କୁମର ବନ୍ଧିଲା
ଆକାଶ ଅନ୍ଧାର ହେଲା କିଛି ନ ଦିଶିଲା ।
ଦେଖି ପ୍ରଶଂସେ ପାଣ୍ଡବ ବୀରବର ଭୀମ
ଧନ୍ୟ ଧନ୍ୟ ତେଜସ୍ୱୀ ରେ ତୋହର ମହିମା
ପୁଣ ପୁଣ ନାଗାସ୍ତ ଯେ ପେଷେ ସୁନ୍ଦମଣି
ସମସ୍ତ ନାଗାସ୍ତ ଚୂର କଲେ ଅଙ୍ଗେ ପୁଣି ।
ଦେଖି ପ୍ରଶଂସଇ ତାକୁ ନାଗୁଣୀର ବାଳ
ମତ୍ତମାତଙ୍ଗ ଜାଣି ତା ତେଜ ଅନର୍ଗଳ ।
କୋପେ ବିକାଶିଲା ବୀର ରୁଦ୍ରର ମୂରତି
କରେ ଧଇଲା କୁମର ତ୍ରିଶୂଳ ଶକତି ।
କୋଟିଏ ସୂର୍ଯ୍ୟଙ୍କୁ ଜିଣି ଯେଉଁ ଶୂଳତେଜ
ଯେବଣ ଶସ୍ତ୍ର ପଡ଼ିଲେ ତ୍ରୈଲୋକ୍ୟ ବହୁଯ୍ୟ ।
ଅନ୍ତରୀକ୍ଷେ ବୁଲାଇଲା କୁମର ତା ହସ୍ତେ
ଶାପେ ଧାତାଙ୍କେ ଲୁଚିଲେ ସମସ୍ତ ପର୍ବତେ ।
ନାଗାର୍ଜୁନ ବୋଇଲାକ ଶୁଣସି ରେ ବୀର
ଶକତି ପେଷିଅଛୁଟି ମୋର ଦୋଷନାହିଁ ।
ସୁରବୀର ସୁନ୍ଦର କୁ କନ୍ଦର୍ପ ସଦୃଶ
ଏ ଶକତି ତେଜେ ଦଗ୍ଧ ହେବ ତୋର କାୟ
ସମ୍ଭାଳ ସମ୍ଭାଳ ବୋଲି ଶୂଳହସ୍ତ ପେଷି
ଭୀମ ଗୁଣ୍ଡରେ ପଡ଼ିଲା ସେହୁ ଶସ୍ତ୍ର ଆସି ।
ଶକ୍ତି ଜ୍ୟୋତ୍ସ୍ନାରେ ହୋଇଲା ବୀର ଅସାଷ୍ଟମ
ମୂର୍ଚ୍ଛାଗତ ହୋଇ ତଳେ ପଡ଼ିଲା ସେ ଭୀମ ।
ଶଙ୍କରର ତେଜେ ନଉସହସ୍ର ଯେ ଯୋଦ୍ଧା
ମୂର୍ଚ୍ଛାଯାଇ ପଡ଼ିଲେ ସେ ନ ହୋଇ ବିରୋଧୀ
ଭୀମ ଅଯାଷ୍ଟମେ ମାନଗୋବିନ୍ଦ ଯେ ଗସ୍ତ
ଅନେଷ୍ଟତ ଭଇ ଯେନ ଆପଣେ ବଜାସ୍ତ ।

ଅନେକ ଶସ୍ତ୍ର ପୂରଇ ବୀରବର କୋପେ
ବେଢ଼ିଲେକ ଲକ୍ଷେପୁର କରି ଗୁରୁତାପେ ।
ଯେସନେକ ଜଳବୃଷ୍ଟି ହୁଅଇ ଶ୍ରାବଣେ
ଆଦିତ୍ୟ ଦେବତା ଦେଖି ଲୁଚିଲେ ଗଗନେ ।
ଦେଖି କୁପିତ ହୋଇଲା ନାଗୁଣୀର ବାଳ
ଯେହ୍ନେ ମତ୍ତଗଜ ଧାଏଁ ହୋଇ କୋପାନଳ
କଦଳୀ ବନେ ପବନ ଗର୍ଜିବଣେ ଯେହ୍ନେ
ଖଣ୍ଡି ଚୂରି କଲେ ଥାଟ ଯେତେ ମହାରଣେ
ଏକା କୁମର ସବୁର ଶିର ଦିଏ ଛେଦ
ପବନ ବେଗେ ନାରାଚ ବୀର ସ୍ୱପେ ସନ୍ଧ ।
ପବନ ଘାତେ ଯେସନେ ପଡ଼େ ପକ୍ୱଫଳ
କନ୍ଧ ମୁଣ୍ଡ ଛୁଡ଼ି ଯେହ୍ନେ ପଡ଼େ ଭୂମିତଳ ।
ଯେତେକ ନାରାଚମାନ ବିନ୍ଧନ୍ତି କୌରବେ
ନାଗାର୍ଜୁନ ଦେହେ ପଡ଼ି ଚୂର୍ଣ୍ଣ ହୁଅନ୍ତି ସର୍ବେ ।
ଘାନ୍ତିଏକ ନାଗାର୍ଜୁନ କଲା ଶରବୃଷ୍ଟି
ଶତଭାଇଙ୍କ ବନ୍ଧିଲା ଶର ଶତକୋଟି ।
ଛୁମେକ ନାରାଚ ବନ୍ଧେ ସବୁର ଉପରେ
ମୂର୍ଚ୍ଛାଗତ ହୋଇ ଘଡ଼ିଗଲେ ସର୍ବ ବୀରେ ।
ଏକ ସାନ୍ତକେ ପଡ଼ିଲେ ସେନ ଶତଭ୍ରାତ
ଖଙ୍ଗ ନାଦ କଲା ଦେଖି ନାଗୁଣୀର ସୁତ ।
ରାଜାର ପଡ଼ନ୍ତେ ଦେଖି ଭାଙ୍ଗିଲେ ସଇନ୍ୟ
ଧାମଇଁ କୁମର କରେ ଗଦାବର ସେନ ।
ସତ୍ତ୍ୱ ଯେହ୍ନେ ଉଠେ କୋପେ ଶଶଧର ଦେଖି
ପଳାଇଲେ କଉରବେ ସଂଗ୍ରାମ ଉପେକ୍ଷି ।
ବାସଭଗ୍ନ ପକ୍ଷୀ ଯେହ୍ନେ ପଳାନ୍ତି ଆରତେ
କଉରବେ ନ ରହନ୍ତି ପଳାନ୍ତି ସମସ୍ତେ ।
ବନ୍ତରେ ତରଣ ଧରି ହୁଅନ୍ତି ନସତ
କୋପେ ଧାମଇଁ ନାଗୁଣୀ ଦେଖାର ଯେ ସୁତ ।
କୌରବ ସୈନ୍ୟ ଧ୍ୱଂସିଲା ଯେ ଅନେକ ରଣେ
ମାଇଲାକ ପାଞ୍ଚଲକ୍ଷ ଯୋଦ୍ଧା ଏକଜଣେ ।
ରାଜାର ନିଧନ ଦେଖି ଭୀଷ୍ମ ମହାରଥୀ
ଗଙ୍ଗାର ନନ୍ଦନ ଆସି ଓଗାଳିଲେ ଧାତ ।
ନବ ମହାପଦ୍ମ ସେନା ଅଛନ୍ତି ତା କୁଳେ
ନାଗାର୍ଜୁନ ସନ୍ନିଧିରେ ଭୀଷ୍ମ ବିଜେ କଲେ ।
ମହାତେଜ ଅନଳ କି ଆସେ ନାଗାର୍ଜୁନ
ପ୍ରଭାତ ସନ୍ଧ୍ୟା ଆକାଶ ପ୍ରାୟ ଦିଶେ ବର୍ଣ୍ଣ ।

ଶାଳ୍ମକେ ଶୋଭା ପିନାକ ସମ ଏକ ଧନୁ
ସମରେ ଅନକାରଣ ନାଗୁଣୀର ସୂନୁ ।
ଲକ୍ଷେ ନାରାଚ ବନ୍ଧିଲା ଶାଲ୍ବଙ୍କୁ ପ୍ରବଳ
ଆରେ ଆରେ ମାନବାରେ ଯିବୁ ଆଜ କାଟି
ପୁଣ ପୁଣ କୁମର ଯେ ବାଣ କରେ ବୃଷ୍ଟି
ଶାଲ୍ବଙ୍କର ରଥ କେନଖଣ୍ଡ କଲା କାଟି ।
ହୁଂକାର ଶବଦ କରି ଶରକୁ ଚଳାଇ
ଲକ୍ଷେ ନାରାଚ ଛନ୍ଦିଲା ଅଧିର କମ୍ପାଇ ।
ଶାଲ୍ବଙ୍କ ଉପରେ ଯାଇ ମହଣ ବାନମେ
ରୁଧିର ଧାର ବହଇ କଣ୍ଡି ରୋମେ ରୋମେ ।
କୋପେ ଧନୁକୁ ଧଇଲେ ସାନ୍ଦନୁର ଶିଖି
ଅନୁକ୍ଷଣେ ଶାଲ୍ବଦେବ ନାରାଚ ବରଷି ।
ଅସଂଖ୍ୟ ନାରାଚ ପୁଣି ଛନ୍ଦିଲେ ସାଙ୍ଗେୟ
ଏକା ନାରାଚେ କେଉଁଲ ତା କାଳ ଉନସ୍ତ ।
ଅବଶ୍ରାନ୍ତ ଚନ୍ଦ ସେନ ମାଇଲେ କୁମର
ଶାଲ୍ବଙ୍କ ଉପରେ ପଡ଼ ବାହାରେ ରୁଧିର ।
ସମରେ ଝଟେଷ୍ଟ ନେଟେ ଶାଲ୍ବବର ବାଳ
ପୁଣି ସାଷ୍ଟାଙ୍ଗ ହୋଇଲେ ତେଜ ଅନର୍ଗଳ ।
ବେଗେ ଶାଲ୍ବ ଧାଇଁଗଲେ କୋଇ କୋପମତି
ନାଗାର୍ଜ୍ଜୁନକୁ ପିନ୍ଧିଲେ ଅମୋଘ ଶକତି ।
ଦେଖି ନାଗାର୍ଜ୍ଜୁନ ବେଗେ ପାଣ୍ଡବେଳ ମଣ୍ଡ
ଶକତ ମୁଣ୍ଡରେ ପଡ଼ ହେଲା କେନ ଖଣ୍ଡ ।
ଅମୋଘ ଶକତ ଯହୁଁ କେତେ ହେଲା ଭଗ୍ନ
ସମରେ ଘାଣ୍ଟିଲେ ଚହୁଁ ଗଙ୍ଗାର ନନ୍ଦନ ।
ଶାଲ୍ବ ବାଣ୍ଟନ୍ତେ ଘାଣ୍ଟିଲେ ସକଳ ସଇନ
ଯୋଡ଼ାଇ ଛନ୍ଦଇ ଶୀଳ ବାଣ କରେ ଘେନ ।
ରଥ ଗଜ ସବୁ ଭାଙ୍ଗିପଡ଼ି ଭଗ୍ନହୋଇ
ନର୍ଦ୍ଦସ୍ତ ଛାବକୁ ଦନ୍ତ କଟାରେ ନେଉଇ ।
ବାହନ୍ତ ଶର ଅନେକ ସଇନ୍ୟ ସମରେ
ପଡ଼ ଚୂର ହେଉଛନ୍ତ କୁମର ଉପରେ ।
ଯୋଜନ ପର୍ଯ୍ୟନ୍ତେ ଥାଟ ନେଲକ ଭଙ୍ଗାଇ
ଦେଖ ଦ୍ରୋଣଙ୍କ ଓସାର ଜାଣ ରଣଭୂଇଁ ।
ଭାଙ୍ଗ ଝୁମ୍ପା ସକଳ ଯେ ମୁକୁଟ ବାହୁଟି
ରକତେ କର୍ଦ୍ଦମ ଗାର ପଡ଼ ମହୀଲୋଟି ।
ଥାଟ ଭଗ୍ନ ଦେଖିଣ ଯେ ପୁତ୍ର ଅଶ୍ବତ୍ଥାମା
ନାଗାର୍ଜ୍ଜୁନର ସମ୍ମୁଖେ ମିଳ କୃତବର୍ମ୍ମା ।

ବେଢ଼ିଲେ ସେ କୁମରଙ୍କୁ ଆସି ବେନ ରଥୀ
ମୁକୁଟବନ୍ଧା ଯୋଦ୍ଧାଏ ପାଞ୍ଚଲକ୍ଷ ହସ୍ତୀ ।
ଲକ୍ଷେପୁର କଣ ବେଢ଼ିଗଲେ ସର୍ବଥାଟ
ଆକାଶ ଅନ୍ଧାର କଲେ ବାଣ ଛନ୍ଦ ଆଣ୍ଟି
କମ୍ପର ମନର ଗିର ଶସ୍ତ୍ରଙ୍କ ଉଘାଡେ ।
ନର୍ଦ୍ଦପେ କୃପକ ଅସ୍ତ୍ର ଶଙ୍କା ନାହିଁ ଚିତ୍ତେ ।
ଅପାର ନାରାଚ ପଡ଼ ଚୂର ହେଲା ଅଙ୍ଗେ
ନେଉ କେତୋର ଶକଳତ ନାଚେ ରଣରଙ୍ଗେ ।
କୋଟି ନାରାଚ ପ୍ରବଳ ଛନ୍ଦିଲା ଧନୁରେ
ତିନିଲକ୍ଷ ଯୋଦ୍ଧା ପଡ଼ ମଲେ ଏକଠାରେ ।
ରଥ ଗଜ ଅଶ୍ବ ପଡ଼ ଗଲେ ଭୂମି ଲୋଟି
ଦେଖି କର୍ଣ୍ଣ ଅଶ୍ବତ୍ଥାମା କୋପରେ ଉଠି ।
ନାଗଅର୍ଜ୍ଜୁନ ବାଯୁବ୍ୟ ଶକଳ ମାଇଲା
ସନ୍ତମେକ ଯୋଦ୍ଧା ସେନ କର୍ଣ୍ଣ ଉଡ଼ିଗଲା ।
ମାଇଲେ ପାଶୁପତ ସେ ଅଶ୍ବତ୍ଥାମାକୁ
ସେହ୍ଣାକେଉ ଫୁଟିଗଲା ତାର ଝଳ ବକ୍ଷୁ ।
ଉଗ୍ରଭଟାସୁରୀ ହୋଇଲା ଦ୍ରୋଣଙ୍କ ନନ୍ଦନ
ଶସ୍ତ୍ର ବସାଲେ ମହୀରେ ପଡ଼ଗଲେ ସୈନ୍ୟ ।
ଅସଂଖ୍ୟ ଯୁଦ୍ଧ କଲାକ ସେ ନାଗାର୍ଜ୍ଜୁନ
ଏଭାବେ ଧ୍ୱଂସଇ ରଣେ କଉରବ ସୈନ୍ୟ ।
ନବକୋଟି ରଥ ନବଲକ୍ଷ ମତ୍ତହସ୍ତୀ
ସାତବୃନ୍ଦ ଅଶ୍ବ ନବଷଉଣୀ ପଦାତ ।
ପାଞ୍ଚଯୋଜନ ପଡ଼ିଲେ ମାଡ଼ ସୈନ୍ୟ ମରି
ମିଶାଇ କାର୍ତ୍ତିକ ସଙ୍ଗେ ଗୁଣ ନାଦ କରି ।
ଦେବଙ୍କର କାର୍ତ୍ତିକର ଅପ୍ରମିତ ଯୁଦ୍ଧ
କହୁଛ ଗନ୍ଧର୍ବ କଲା କାର୍ତ୍ତିକେୟ ବଧ ।
ନାଗାର୍ଜ୍ଜୁନ ସଙ୍ଗେ ଯୁଦ୍ଧେ ଅଙ୍ଗ ଉପଭଗ
ନାଗୁଣୀ ନନ୍ଦନ କରେ କ୍ଷତ ତାର ଅଙ୍ଗ ।
ଦ୍ୱାଦଶ ମୁଖ ନାରାଚ କଲାକ ସେ ବୃଷ୍ଟି
ଖାଏ ଅଙ୍ଗାରପର୍ଣ୍ଣ ପଡ଼େ ମହୀଲୋଟି ।
ସୋଦର ନଧନେ ଜୟସେନ ଚିତ୍ରରଥ
କୋପେ ଛନ୍ଦିଲେ ନାରାଚ କୋଟି ଶତ ଶତ ।
ନାଗୁଣୀ ନନ୍ଦନ ପାତେ ନେଇ ବକ୍ଷସ୍ଥଳ
ପଡ଼ିଣ ଧୂଳ ହୋଇଲେ ନାରାଚ ସକଳ ।
ଚିତ୍ରରଥ ମାଇଲାକ ତମିର ଶକତ
ବସ୍ତ୍ରଣି ତା ନାଗାର୍ଜ୍ଜୁନ ଧଇଲା ଝଟକେ ।

ମାଇଲା ସେ ଶଙ୍କରଙ୍କ ଧରି ମହାବଳୀ
ବାସବନନ୍ଦନ ପଡ଼େ ମହୀତଳେ ଢଳି ।
କାର୍ତ୍ତିକେୟ କରେ ଅଛି ତ୍ରିଶୂଳ ଶକତି
ବଜ୍ର ଶକତି ଧରିଛି ଦେବ ସୁରପତି ।
ବୃଷଭ ବାହନେ ଭଜେ କାଶୀ ବିଶ୍ୱବାସୀ
ପିନାକ ଧନୁ ନାରାଚ ଧରଣ ଉଲାଶି ।
ବ୍ରହ୍ମଶର ଏକ ଯୋଗେ ଧନୁରେ ପୂରଇ
ଜଗନ୍ନାଥ ସମୀପକୁ ଆସୁଛନ୍ତି ଧାଇଁ ।
ସଦାଶିବଙ୍କର କୋପ ଦେଖିଣ ଅଚ୍ୟୁତ
ଧଇଲେକ ନାରାୟଣ ଶର ଜଗଦ୍‌ଭୂତ ।
ବ୍ରହ୍ମଶରେକ ଛାଡ଼ିଲେ ପୁଣି ମହାଦେବ
ଛାଡ଼ିଲେକ ନାରାୟଣ ଶର ବାସୁଦେବ ।
ଅନିବାରଣ ଶର ଯେ ଅଟନ୍ତି ସେ ବେନି
ବେନି ଶର ପଡ଼ି ରଣେ ଉଠିଲା ବହ୍ନି ।
ବେନି ଭୁବନ ପୂରିଲା ସେ ତେଜ ଅନଳ
ଊର୍ଦ୍ଧେ ଗୋଚର୍ଯ୍ୟ ହୋଇଲେ ଭୁବନ ପାତାଳ
ତିନି ଭୁବନ କମ୍ପିଲା ସାଗର ସହିତେ
ବୃନ୍ଦାରକମାନେ ହେଲେ ଭୟରେ କମ୍ପିତ ।
ପବନ ଦେବତା ସହି ନ ପାରିଲେ ଚଳି
ପୁଣ୍ୟପୁରୁଷମାନେ ଯେ ଶାନ୍ତି ଶାନ୍ତି ବୋଲି ।
ଈଶ୍ୱର ଯେଣିକେ କରେ ତ୍ରିଶୂଳ ଶକତି
ଧଇଲେକ ସୁଦର୍ଶନ କରେ ଯଦୁପତି ।
ସଂଗ୍ରାମ ଦେଖିଣ ଭୟେ ଦିଗପାଳମାନେ
ଗୁହାରି କଲେ ପିତାଙ୍କ ଅଗ୍ରତେ ବହନେ ।
ନାରଦ ବୋଇଲେ ଆଜ ଲଗାଇବା ଭଲ
ବେଗେ ତୁ ପ୍ରହାର କରୁଜନା ଦେବଶୂଳ ।
ଯୁଦ୍ଧେ ପୁଣି ପିତା ପୁତ୍ରେ ହେଲେ ହଣାହଣି
ତୋର କୈଳାସ ଉପାଡ଼ି ନେଲେ ମଲଗାଣି
ଅମାତ କଥା ହର ତୁ କେମନ୍ତେ ସହିବୁ
ଗରୁଡ଼ ବଳକୁ ବେଗେ ମାରି ପଳାଇବୁ ।
ପୁଣି ଯାଇଁ ମିଳିଲେ ସେ ଜଗନ୍ନାଥ କତ
କେମନ୍ତେ ରୁଦ୍ରର ଦୋଷ ସହିବୁ ଶ୍ରୀପତି ।
ଏମନ୍ତେ ସେ ସମସ୍ତଙ୍କୁ ଦେଉଥାଇ ବର
ତାର ବର ସେନ ଧ୍ୱଂସ ହୁଏ ତେଜପୁର ।
କାଳଦମନ ନାରଦା ଜଗ ବନ୍ଦୁକାର
ଏ ଆଦି ସବୁକୁ ବର ଦେଇ ମହାଦେବ ।

ଏହାର ବରେ ବର୍ତ୍ତିତ ଚରାଚର ପ୍ରାଣୀ
ଏଠାରେ ବିନାଶ ପାଇ ସକଳ ମେଦିନୀ ।
ମାଝ ଶିବଗଣ କପିଳାସ ଭୃଙ୍ଗି ପଡ଼ା
ନ ଥାଉ ରୁଦ୍ରଦେବତା ରୁଦ୍ର ଥାଅ ଏକା ।
ବୋଲଇ ତୋତେ ଗରୁଡ଼ ବାହନ ବାଉଡ଼
ଧାରଣା ପୁରୁଷ ତୁମ୍ଭ କେବେହେଁ ନ ଛୁଡ଼ ।
ଏତେ ବୋଲି ଭୃତ୍ୟମାନେ କରନ୍ତି ସେ ନାଟ
ଲଗୁ ଲଗୁ ଧାଆଁ ଧାଆଁ ବେଗେ ବେଳଥାଟ ।
କଳ ଧୋଇତରୁ ଧୂଳି ମାଇଲେ ମୁଠାଏ
ପୃଥ୍ୱୀ ଲଗିଲା ରଜନୀ ପରଭାତ ଯାଏ ।
ନାରାୟଣ ହସ୍ତେ ଚକ୍ର ସୁଦର୍ଶନ ଦେଖି
ଭଜେଇଲେ ଦେବବର ବ୍ରହ୍ମାଣ୍ଡ ଉପେକ୍ଷି ।
ମରାଳ ବାହନେ ଭଜେ ସେ ଦେବ ବରିଷ୍ଠ
ରୁଦ୍ରଦେବତା ଗ୍ରମରେ ଭଜେଇଲେ ପାଷ୍ଠ ।
ତୁମ୍ଭେ ଦେବ ଯୋଗେଶ୍ୱର ପ୍ରସନ୍ନ କପାଳୀ
ତୁ ସେ ସକଳ ଭୁବନ ଦେବଙ୍କ ମଉଳି ।
ତୁ ସେ ନିରାକାର ଦେବ ବରଦ ଅଭୟ
ପରମାନନ୍ଦ ପୁରୁଷ ସର୍ବଦା ସଦୟ ।
ତାକ ଅନ୍ତ ପୁରୁଷ ତୁ ସଂସାର କରତା
ସଦାନନ୍ଦ ପୁରୁଷ ତୁ ସର୍ବ ବରଦାତା ।
ଶରଣପଞ୍ଜର ତୁମ୍ଭ ଜଗଜ୍ଜନ ବନ୍ଧୁ
ଜୀବଜନ୍ତୁ ଆଦି ଆମ୍ଭେ ତୋର ପାଦ ବନ୍ଦୁ ।
ତୁ ଦେବ ତ୍ରିପୁର ବଧ କଲୁଟି କପଟେ
ଅନ୍ଧକ ବଡାଇଲୁ ତୁ ପଡ଼ିଣ ସଙ୍କଟେ ।
ଯାବଚନ୍ଦ୍ର ଦିବାକର ବ୍ରହ୍ମା ଆଦିକରି
ବେଳେ ବେଳେ ନାଥ ତୁମ୍ଭ ଏହାଙ୍କୁ ଉଦ୍ଧରି ।
ସୋମ ସୂର୍ଯ୍ୟ ଅନଳ ଏ ତିନି ତୋର ଚକ୍ଷୁ
ଅଲକ୍ଷିତ ପୁରୁଷ ତୁ କୋପ କରୁଅଛୁ ।
ତୁ ଯେବେ ଅନାଦି ସିଦ୍ଧ କରୁ କାର୍ଯ୍ୟସିଦ୍ଧି
ଧାରଣା ପୁରୁଷ କେହ୍ନେ ଛାଡୁଛୁ ଅବଧି ।
ଯୋଗେଶ୍ୱର ପୁରୁଷ ତୋ ଚରଣେ ନମାମି
ଶତସହସ୍ର ତୋହର ଚରଣେ ପ୍ରଣମି ।
ବ୍ରହ୍ମାଙ୍କର ବଚନେ ସେ ସ୍ୱାମି ଭଗବାସ
ବ୍ରହ୍ମାଙ୍କୁ ସ୍ତବିଣ କଲେ ବଚନ ପ୍ରକାଶ ।
ଜଗନ୍ନାଥର ଚରିତ ଶୁଣ ଦେବବର
ବେଢ଼ି ବିଧ୍ୱସ୍ତ କରନ୍ତି କପିଳାସ ମୋର ।

ବିନୟେ ବ୍ରହ୍ମା କହନ୍ତି ଆହେ ବଳରାମ
ନୀଳାମ୍ବର ପୁରୁଷ ତୁ ଦେବଙ୍କ ଉତ୍ତମ ।
ସର୍ବଦା ତୁ କାଦମ୍ବରୀ ରସପାନେ ଭୋଳ
ଦେବାଧିଦେବଙ୍କ ଶିରୋମଣି କାମପାଳ ।
ଭକ୍ତବତ ଭବାବେ ତୁ ଧରି ଗୋବର୍ଦ୍ଧନ
ତାଳବନେ ଧେନୁକାକୁ କଲୁ ଯେ ନିଧନ ।
ସନ୍ଦନଧି ଗୁରୁକୁଣ୍ଡେ ଥାଉ ଯୋଗଲୟେ
ଦର୍ଶନ କରନ୍ତି ତୋତେ ଯାହିଁ ଦେବତାଏ ।
ଠାକୁର ତୁ ପୃଥ୍ୱୀଧର ନାରାୟଣ ଅର୍ଥେ
ବିଷ୍ଣୁଙ୍କର ଜ୍ୟେଷ୍ଠ ତୁହି ଥାଉ ସାଥେ ସାଥେ ।
ତୁହି ଦେବ ଯୋଗେଶ୍ୱର ସର୍ବଜ୍ଞ ପୁରୁଷ
ତୁହି ପୃଥ୍ୱୀ ଆପ ତେଜ ବାୟୁବ୍ୟ ଆକାଶ ।
ଦକ୍ଷିଣେ ସୌନନ୍ଦ ବାମେ ତୋର ବଜ୍ରହଳ
କୋଟି କୋଟି କେଶରିର ତୋର ଅଟେ ବଳ
ଅମ୍ବା କଦମ୍ବା ପ୍ରଳମ୍ବା ଏହି ତିନସାର
କଣ୍ଠରେ ନାଶକଲୁ ଏ ତିନି ଅସୁର ।
ତୁ ଦେବ ଅନନ୍ତ କୋଟି ବ୍ରହ୍ମାଣ୍ଡ ଧାରଣ
ଅଣାକାର ପୁରୁଷ ତୋ ନାମ ସଙ୍କର୍ଷଣ ।
କାଳାନଳ ଧ୍ୱଂସନ ତୋ ଶିରେ ସପ୍ତଫଣୀ
ଅନନ୍ତ କୋଟି ପ୍ରଳୟ ମଧ୍ୟେ ତୁହି ମଣି ।
ଯୋଗଆସନ ତୋ ମାଳକଲ୍ପବଟ ତଟେ
ବଗନ୍ତ ଅସୁର ତୁହି ମାରିଲୁ ଯେ କୃଟେ ।
ବିଶ୍ୱଦେବ ପୁରୁଷ ଯେ ତୋର ଦରଶନେ
ବର୍ଣ୍ଣିଲେ ସେ ଜଗନ୍ନାଥ ଶାସ୍ତ୍ରେ ପଞ୍ଚଜନେ ।
ଅନନ୍ତ ରୂପ ଧରିଲୁ ଦ୍ୱନ୍ଦ୍ୱ ବିବାଦେ
ଅଷ୍ଟକୁଳ ନାଗେ ଛତ୍ରପଲେ ତୋ ପ୍ରସାଦେ
ବଜ୍ରାକୋଷେ ଧ୍ୱଂସିଲୁ ତୁ ଦେବ ତୃଣକେଶୀ
ଯୋଗୀ ଯୋଗେଶ୍ୱର ତୁହି ଯୋଗୀରୂପ ଧ୍ୱଂସି
ତୁ ଦେବ ପରମାନନ୍ଦ ନୈବେଦ୍ୟର ବନ୍ଧୁ
ସର୍ପଙ୍କ ନାସାରୁ ବହେ ଜଳ ସପ୍ତସିନ୍ଧୁ ।
ସୁର କ୍ଷୀର ଲବଣ ଯେ ଘୃତ ମହୋଦଧି
ତୋର ହୃଦୟ ମଧ୍ୟରେ ସପ୍ତଜଳ ଭେଦ ।
ଶୁକ୍ଲାମ୍ବର ପୁରୁଷ ତୋ ଚରଣେ ବିନୟ
କ୍ଷୀରର ପ୍ରକାଶେ ଶୁଦ୍ଧସ୍ଫଟିକ ଚମୟ ।
ଧବଳ ସରଳ ମଳ ନେତ୍ରହୀନ ପିଙ୍ଗଳ
ବିସ୍ତରଇ ଫଣିମଣି ସପତ ମଣ୍ଡଳ ।
ଅଣଭୂଷଣବର୍ଣ୍ଣି ତେହୁ ବହଇ ତୋ ସନ୍ଧ୍ୟା
ଜପ ତପ ଧ୍ୟାନ ଲୟ ଯୋଗ ପଞ୍ଚମୁଦ୍ରା ।
ଅଭାଳ ଅକାମ ତୁହି ଅଭୟ ଅଦଣ୍ଡ
ଏବ ଭୁବ ମଧ୍ୟେ ଦେବ ତୁ ଏକା ସର୍ବଜ୍ଞ ।
ନମୋ ବଳରାମ ଶୂନ୍ୟ ଭୁବନ ତୋ ହୃଦେ
ଷଡରତ୍ନ ପ୍ରକାଶଇ ତୋହର ପ୍ରସାଦେ ।
ନମୋ ନମୋ ବଳରାମ ଅନନ୍ତା ଧବଳ
ନମୋ ନମୋ ବଳରାମ ସିଦ୍ଧ ସାଧ୍ୟ ମୂଳ ।
ରେବତୀ ଜନନ ଦେବ ନାହିଁ ତୋର ମାୟା
କେହି ବାରି ନ ପାରନ୍ତି ଶୂନ୍ୟ ତୋର କାୟା
ମୁକ୍ତିର କାରଣ ନାଥ ଶରଣ ରକ୍ଷଣ
ସଂସାର ମଣ୍ଡଳ ଦେବ ଜୟ ସଙ୍କର୍ଷଣ ।
ଯେ ପ୍ରଭୁ ଶ୍ରୀରାମଚନ୍ଦ୍ର ଚରଣେ ପ୍ରଣମି
ଶାରଳାଦାସକୁ ଦେବେ ଉଦ୍ଧାର ତୁ ସ୍ୱାମି ।

---

## ଅର୍ଜ୍ଜୁନର ପୁନର୍ଜୀବନ ଲାଭ ଓ ସମସ୍ତଙ୍କ ମହାନନ୍ଦ

ଶୁଣି ସନୁ କହନ୍ତି ଯେ ଅଗସ୍ତି ମହାତ୍ମା
ବଳରାମଙ୍କୁ ଅନେକ ସ୍ତୁତି କଲେ ବ୍ରହ୍ମା ।
ବୋଲନ୍ତି ସେ ବଳରାମ ଶୁଣ ଦେବବର
ସଂସାର ନାଶ କରୁଛୁ ଏହି ଦେବ ହର ।
ଦୁଷ୍ଟଙ୍କୁ ବର ଦେଇ ଏ ସବୁ କରେ ନାଶ
ଏହାକୁ ନାଶିଲେ ଏଥେ ଆମ୍ଭର କି ଦୋଷ ।
ପ୍ରଦ୍ୟୁମ୍ନ ରାମଙ୍କୁ ଯେ କରଇ ବଇମା
ରୁଦ୍ର ଦେବତାଙ୍କୁ କୋପ ଛାଡ଼ ଦେବସ୍ୱାମି ।
ବ୍ରହ୍ମାଙ୍କ ବଚନେ ତୋଷ ହେଲେ ନୀଳାମ୍ବର
ଅର୍ଜ୍ଜୁନକୁ ଜୀଆଁଇ ତୁ ଦିଅ ଦେବବର ।
ବଦନ୍ତି ବ୍ରହ୍ମା ତୁ ଶାନ୍ତ ହୁଅ ସଙ୍କର୍ଷଣ
ଅର୍ଜ୍ଜୁନକୁ ଜୀଆଇବା ଆମ୍ଭେ ଏହିକ୍ଷଣ ।
ଶିବ ରାମ ଏ ଦୁହିଙ୍କ କୋପ କରି ଶାନ୍ତ
ରାମକୁ ଯେ ସୁମରନ୍ତି ଧ୍ୟାନେ ବେଦପତି ।
ସଂସାରମାୟାର ତେଜ ହେଲେ ନାଶକର
ପାଦ୍ୟ ଅର୍ଘ୍ୟ ଦେଇ ବନ୍ଦ ଦେବ ହରିହର ।
ବ୍ରହ୍ମାର ଚରଣ ତଳେ କୃତାର୍ଥ ପ୍ରଣମି
ବୋଲେ କିମର୍ଥେ ସ୍ମରଣ କଲୁ ମୋତେ ସ୍ୱାମି

ତୁ ବେଦ ଅନାଦି ସିଦ୍ଧ ନିତ୍ୟ ସୃଷ୍ଟିକର୍ତ୍ତା
ଅସ୍ପୃକାର ପୁରୁଷ ତୁ ଜଗତ୍ର ବିଧାତା ।
ଆଗେ ବ୍ରହ୍ମା ପଞ୍ଚ ତୁଣ୍ଡ ବିରଞ୍ଚି ଜଗତା
ବାମ ଭାଗାଗ୍ରେ ବଦନ ଶୋଭେ ତୋର ଧାତା ।
ପୂର୍ବ ବଦନ ତୁ ବେଦ କଲୁ ବେଦ ସାଧି
ଉତ୍ତର ବଦନୁ ଜାତ କଲୁ ସାମବେଦ ।
ଅଥର୍ବ ବେଦ ପଶ୍ଚିମ ବଦନୁ ହେଲା ଜାତ
ଋକବେଦ ତୋ ଦକ୍ଷିଣ ବଦନୁ ସମ୍ଭୂତ ।
ସଂସାର ଜନେ ଜାଣନ୍ତି ତୋ ବଦନେ ପୂଜା
କାଷ୍ଠ ପାଷାଣ ମୃତ୍ତିକା ରୂପ ଅଛି ଦିଜା ।
ତୋତେ ପୂଜିବାକୁ ବେଦ ମନ୍ତ୍ର ନାହିଁ କିଛି
ତେଣୁ ତୁ ଆନ ଦେବାନ୍ତିଁ ଭୋଗନ୍ତି ନ ପଛି ।
ନ ଜାଣି ପଣ୍ଡିତମାନେ କହନ୍ତି ନ୍ତ ବଣା
ରୁଦ୍ରର ଶାପେ ଅପୂଜା କେବଳ ଭଣା ।
ବିଧାତା ପୁରୁଷ ତିନ୍ ଅଭେଦ୍ୟ ତୋ କାଯ୍ୟ
ଆନର ଶାପକୁ ତେବେ ତୋର କିସ ଭୟ ।
ତୋହର ଶାପ ସଂସାର ପ୍ରକାର ଅଭେଦୀ
ସର୍ବାଧାରଣ ପୁରୁଷ ତୁ ପରମ ଯୋଗୀ ।
ବଦନ୍ତି ଯେ ପିତାମହ ଯମ ମୁଖ ଶୁଣିଁ
ନାଗାର୍ଜୁନ ଶସ୍ତ୍ରଘାତେ ପାର୍ଥ ଛିଡ଼ିଯାଇ ।
ଜଣହର ସମର ଯେ ଲକ୍ଷ୍ମୀର ଜମନ୍ତେ
ପୃଥ୍ୱୀନାଶ ଯାଉଅଛି ତାଙ୍କ ଶସ୍ତ୍ରଘାତେ ।
କୃଷ୍ଣ ଏବେ ଝଷ ଜନା ବାସବର ପ୍ରାଣ
ତୋ ଆଜ୍ଞାରେ ଧନଞ୍ଜୟ କରି ଏକ୍ଷଣ ।
କୁନ୍ତୀଙ୍କ ନନ୍ଦନ ସେହି ପଡ଼ନ୍ତି ଭକ୍ଷାଶ
ମନ୍ଦାଗ୍ନି ବ୍ୟାଧିରୁ ଅଗ୍ନି ଦେବଙ୍କୁ ଉଦ୍ଧାର ।
ଶୋଣିଂହକୁ ବଧକରି ରଖିଲ ବାଉଳା
କୁମ୍ଭକୁ ନାଶି କୈଳାସ ରଖିଲ ସେ ଏକା ।
ଧରାଧର ଉତ୍ପାଟିବ ଏ ଭାରତ ଯୁଦ୍ଧେ
ଅନେକ ଦୁଷ୍ଟ ନାଶିବ ପୃଥ୍ୱୀ ରଣମଧ୍ୟେ ।
ଧନୁର ଗୁଣେ ଧଇଲ ସପତ ବ୍ରହ୍ମାଣ୍ଡ
କଥିତ ସଂଗ୍ରାମେ ହୋଇଅଛି ବେନଖଣ୍ଡ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଏ ଅଟେ ଏକ ଜଣେ
ଦ୍ୱାପର ଶେଷେଇ ମଲ୍ଲ ରହୁ ଏହି ସ୍ଥାଣେ ।
କେବେ ତାର ଜାତଗୋଟି ଗୁଡ଼ିଅଛି ଯମ
ସ୍ୱାର୍ଥର ତୁତ ହେଇ ରକ୍ଷାକର ଧର୍ମ ।

ପିତାମହ ବଚନରେ ବୋଲେ ନାଶକର
ଏ ମୋହର କଥାଗୋଟି ଅଟେ ଅଗୋଚର ।
ମାତାର ଶାପେ ଗଳିତ କୁଷ୍ଠବ୍ୟାଧି ଛଧି
ତିନଯୁଗ ଗଲା କରୁ ନ କହିଲ ବୁଦ୍ଧି ।
ଈଶ୍ୱର ବୋଇଲେ ତୁ କି ମାତୃଦ୍ରୋହ କଲୁ
କପାଇଁ ଅସ୍ମାଙ୍କେ ଏତେ ଶାପ ତୁ ପାଇଲୁ ।
ଭରପକ ଯୋଡ଼ି ତାଙ୍କୁ କହେ କୃତାନ୍ତକ
ଦକ୍ଷ ପ୍ରଜାପତିର ଯେ କନ୍ୟା ଷାଠିଏକ ।
ଧର୍ମଙ୍କୁ ପ୍ରଦାନ କଲେ ସେ ଦଶ ଦୁହିତା
ତେର କନ୍ୟା ହେଲେ ଋଷି କଶ୍ୟପ ବନିତା
ସତାଇଶ କନ୍ୟା ବସି ବଧୂ ହେଲେ ଶଶୀ
ଉମାକନ୍ୟା ବଧୂ ହେଲେ ଦେବ କାଶୀବାସୀ
ସ୍ୱାହା ସ୍ୱଧା ଦେନ ହେଲେ ଅଗ୍ନିର ସୁବଶ
ଏକ ଦୁହିତାକୁ ବଧୂ ହେଲେ ପ୍ରଜାପତି ।
ବ୍ରହ୍ମା ସାବିତ୍ରୀ ବରୁଣ ନେଲେ ଗୀରବନ୍ତି
ଇନ୍ଦ୍ରର ଦେବତା ବଧୂ କଲେ ସ୍ୱାଗବନ୍ତି ।
ଆଦିତ୍ୟ ଦେବତା ସଙ୍ଗ କନ୍ୟା ତନ୍ତ୍ର କଲ
ଏକାଦଶ ଜଣାଁ ଭଳ ଷାଠିଏ ସେ ଦେଲ ।
ଦେମା ନାମେ କନ୍ୟା ହେଲ ପରମା ଯୋଗିନୀ
ଉଗ୍ରେନାଥ ତପକଲ ବସି ସେ କାମିନୀ ।
ଆହରେଁ ଦେବତାଙ୍କର ସଙ୍ଗ ଯେ ବଲ୍ଲଭୀ
ନଡ଼ାଗ ସନ୍ତ ନ ପାଇ ସେହି ମହାଦେବୀ ।
ମନ୍ତ ନ ପାଇଲ ସର୍ପ୍ୟ ତେଜ ମହାମାୟୀ
ଆପଣା ଶଷ୍ଟିରୁ ଜାତ କଲେ ତେଷୀ ଗସ୍ତା ।
ଆଦିତ୍ୟ ପ୍ରକୃତ ମାନ ସବୁ ତାକୁ କହି
ଆଦିତ୍ୟର ବଲ୍ଲଭୀ ଗୋ ହୋଇଥାଅ ତୁହି ।
ଗ୍ରସ୍ତାକୁ ସମର୍ପି ସେହି ରହିଲେ ଗୋପନେ
ମେରୁ ମେଖଳେ ଲୁଚିଲେ ଆନ ଆନ ବର୍ଣ୍ଣେ
ଗ୍ରସ୍ତାକ ସ୍ୱାହିଁ ରହିଲେ ବନକର ନାଥ
ବହିଗଲା ନବସସ୍ ବରଷ ପର୍ଯ୍ୟନ୍ତ ।
ଯମ ଶନିଶ୍ଚର ଆସେ ସଙ୍ଗ ଦେନପୁତ୍ର
ଦସ୍ତାକର ପାଳିଥାନ୍ତି ସେ ପୃଷ୍ଠି ଆମୂନ୍ତ ।
ଶ୍ରାବଣ କୃଷ୍ଣ ସପ୍ତମୀ ଶଉଷୀବାସର
ଉତ୍ତରଭଦ୍ର ନକ୍ଷତ୍ର ଅଟେ ସେ ଦିନର ।
ବଶ୍ଚିନାମେ କରଣ ସୁକର୍ମା ନାମେ ଯୋଗ
ଜନ୍ମଡ଼ା ସଙ୍କ୍ରାନ୍ତିର ନବଦିନ ଭୋଗ ।

ସୁପ୍ରାଦେବୀ ଭୁଲେ ଯାଇ କଳି କଲି ମୁହିଁ
ଭର୍ତ୍ସନା କରି ସୁପ୍ରାକୁ ଗାଳି ମୁଁ ଦେଲଇଁ ।
ସେହୁ ସେ ଅନେକ ରାଗେ ଝିଙ୍ଗାସିଲେ ମୋତେ
ସହି ନ ପାରି ମାଇଲି ମୁହିଁ ପଦାଘାତେ ।
ରାଗେ ସୁପ୍ରା ଆଜ୍ଞା ଦେଲେ କରି ଅଶ୍ରୁପାତ
ଯାଅ ନାଶକର ହେଉ ତୋ ପାଦେ ଗଳତ ।
ସ୍ୱାମି ମାତା ଶାପ ମୁହିଁ ନ ପାରିଲି ମେଣ୍ଟି
ସେହୁ ଦୋଷେ ହୋଇଲଇଁ ମୁହିଁ ଗଳିକୁଷ୍ଠୀ
ଉରନ୍ତି ନାରାୟଣ ମୋ ଦେଖିଣ ଏ ଶାସ୍ତି
ଭସ୍ମରିଲେ ହୋଇଲା ତ ଏ ବଡ଼ ଅମାନ୍ତ ।
ପୁତ୍ରମାନେ ମାତାକୁ ତ କରନ୍ତି ବିମୁଖ
ମାତା ଶାପେ ପୁତ୍ର କେବେ ନ ଲଭଇ ଦୁଃଖ
ମାତାର ଶାପ ଯଦ୍ୟପି ପୁତ୍ରକୁ ପଡ଼ିବ
କେମନ୍ତେ ସଚରାଚର ପୃଥିବୀ ରହିବ ।
ଏ ଅବା ମୋ ପୁତ୍ରଙ୍କର ନୁହେଁ ଗର୍ଭବାସୀ
ଧ୍ୟାନେ ଜାଣିଲେ ସେ ଦେବ ଗଗନ ବିହାରୀ
ନିଶ୍ଚୟ ଶାପ ଏହି ତ ନୁହଇ ଯୁକତ
ସୁପ୍ରା ପରବଶ ହୋଇ ଖଟିଅଛି ମୋତେ ।
ସାଧୁ ସାଧବୀ ତୋହର ମହିମା ଦୁର୍ଲଭ
ଚିରକାଳ କଥା ରହୁ ସୁପ୍ରାର ବଳିବ ।
କୃତାନ୍ତକ ବୋଇଲେ ଯା ପଣ୍ଡିରିଲୁ ମୋତେ
ଶାପ ଚଉଦ୍ଦନ ଉନଯୁଗ ପର୍ଯ୍ୟନ୍ତେ ।
ମୁହିଁ ଯେବେ ମୁକ୍ତ ହେବି ଜାଣ ଏ ପ୍ରସ୍ତାବେ
ଏ କଷଣୁ ପାର କର ମୋତେ ମହାଦେବେ
ଶୁଣି ପରମ ସାନନ୍ଦ ହେଲେ ବିଶ୍ୱନାଥ
ଶ୍ରୀଚରଣେ ପୋଛି ଦେଲେ ଯମ ପାଦରକ୍ତ ।
ଚୌରାଶି ଲକ୍ଷ ବର୍ଷ ଯମର ଯେ ବ୍ୟାଧି
ବିଶ୍ୱନାଥଙ୍କ ପ୍ରସାଦେ ଆରୋଗ୍ୟ ଅବଧି ।
ଜୟ ଜୟ ବିଶ୍ୱନାଥ ବ୍ୟାଧି ଉଦ୍ଧାରଣ
ଶଇଳଜାର ବଲ୍ଲଭ ସଂସାର ଧାରଣ ।
ଅନିତ୍ୟ ସଂସାର ମାୟା କୂଟରେ ରଚନା
ଏ ଭବଜଳକୁ ତୁମ୍ଭ ଏକା ନାବ ସିନା ।
ଏ ସଂସାରଜଳ ହୁଏ ତୋହରେ ଯେ ଧ୍ୱଂସ
ଅନ୍ଧକଧ୍ୱଂସନ ନାଥ ପୂରଅ ମାନସ ।
ପଞ୍ଚବକ୍ତ୍ର ନୟନ ତୋ ପଞ୍ଚବିଂଶ ମଣ୍ଡଳେ
ମହାକୂଟ ବ୍ୟାଧିକ ବୁ ଖଣ୍ଡ କୁଟହେଳେ ।

ସର୍ବଦା ତୁ ସୁପ୍ରସନ୍ନ ହେ ଚନ୍ଦ୍ରଶେଖର
କାଳକୂଟ ଭକ୍ଷଣ ତୁ ନାଥ ବିଶ୍ୱେଶ୍ୱର ।
ପ୍ରଳୟ ନିବାରଣ ତୁ ପରମ ସାଧକ
ଏ ତୁମ୍ଭ ଚରଣେ ରହୁ ମୋ ବିନୟ ଭାବ ।
ସେହୁ ମହାଦେବ ଦେବ ଚରଣ ପ୍ରସାଦେ
ଶୂଦ୍ରମୁନି ଶ୍ରୀଶାରଳା ଦାସ ରଚୁ ଛନ୍ଦେ ।
କାଷ୍ଠକଙ୍କ ହେଲା ଯହୁଁ ସେ ଯମ ଦେବତା
ଅର୍ଜୁନର ସନ୍ନିଧିରେ ବିଜେ ସେନ ଧାତା ।
ଯୁଧିଷ୍ଠିର ଧରିଥିଲେ କଟିଭାଗ ଖଣ୍ଡ
ନାଗୁଣୀର ତହିଁ ଥିଲା ଅର୍ଜୁନର ମୁଣ୍ଡ ।
ପିତାମହ ଦେଇ ଦେଲେ ଜଡ଼ ମହୌଷଧି
ଜଡ଼ିତ ଶରୀର ହେଲା ଧାତାବାକ୍ୟ ସାଧି ।
ନାଶକର ଦେବତା ଯେ ଦେଲେ ନିଜ ପ୍ରାଣ
କମଣ୍ଡଳୁ ପାଣି ସିଞ୍ଚି ଦେଲେ ବ୍ରହ୍ମା ପୁଣ ।
ଉଠ ହୋ ଅର୍ଜୁନ ବୋଲି ଶରୀର ଆଉଁଷି
ସାଷ୍ଟାମ ହୋଇ ଅର୍ଜୁନ ଉଠେ ବେଗେ ବସି ।
ନୟନ ମେଳି ଚାହିଁଲା ବୀର ଫାଲଗୁନ
ଦେଖିଲା ସେ ଅପ୍ରମିତ ମାନବ ସଇନ ।
ହର ଗଣ୍ଡାଗୀବ ଗୁଡ଼ିଦେଲେକ କୃତାନ୍ତ
ନିଜ କାୟା ଘେନି ସେହୁ ଉଠିଲା ତୁରିତ ।
ପଳାଇ ପଶିଲା ହର ଉଦ୍ୟାନ କାନନେ
ଯୁଧିଷ୍ଠିବେବ ବୋଇଲେ ଶୁଣ ଫାଲଗୁନେ ।
ବସାଇ ଅଚ୍ଛନ୍ତି ଦେବ କୋଳେ ଅର୍ଜୁନକୁ
ସମସ୍ତ ଚରିତମାନ କହିଲେ ତାହାକୁ ।
ପାତାଳେ ବିଭା ହୋଇଲୁ ତୁ ଯେବଣ ବାଳୀ
ତାହାର ନନ୍ଦନ ନାଗାର୍ଜୁନ ମହାବଳୀ ।
ସେ ତୋତେ ନିରୋଧ କଲା ଯୁଦ୍ଧେ ସବ୍ୟସାଚୀ
ତହିଁପାଇଁ କୋପ କଲେ ଦେବ ଶିରବଚ୍ଛି ।
ହରିହରଙ୍କ ସମର ହେଲା ତୋରପାଇଁ
ବଣ୍ଡ୍ରବେଦ ପଶିଲେକ ଯୁଦ୍ଧେ କୁରୁସାଇଁ ।
କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥାମା ଶକୁନି ଆଦର
ଶତଭ୍ରାତା ଘେନି ପଡ଼ିଅଛି କୁରୁବୀର ।
ଶମ ହରି ହର ପାଦ ବନ୍ଦ ଫାଲଗୁନ
ବିରାପାଳଙ୍କ ଚରଣେ କରଇ ବିନତି ।
ଗୋବିନ୍ଦ କହିଲେ କୋଳକରି ଅର୍ଜୁନକୁ
ଈଶ୍ୱର ଅନେକ କଲେ ପୌରୁଷ ପାର୍ଥକୁ ।

ସ୍ତୁତି ଅନୁକୂଳେ ଶିରେ ଢେଳେ ଦେଇ ଅର୍ଘ୍ୟ
ଅର୍ଜୁନ ବଦନେ ଚାହେଁ ପିତାମହ ଆଦି ।
ଜୀବନ ପାଇଲ ଦେଖ ମୁଁ ତୋର ପ୍ରସାଦେ
ମୋହପାଇଁ ପଞ୍ଚଛନ୍ତି କୁରୁସୈନ୍ୟ ଯୁଦ୍ଧେ ।
ଏମନ୍ତ ଜାଣିଣ ସ୍ୱାମୀ ଦେବ ଦେବବର
କମଣ୍ଡଳୁ ଜଳ ସିଞ୍ଚିଦେଲେ ଧାତକର ।
ନବସୃଷ୍ଟି କର୍ତ୍ତା ଦେଲେ ସେ ଅମୃତ ବୃଷ୍ଟି
ସାଷ୍ଟାଙ୍ଗ ହୋଇ ସମସ୍ତେ ଗଲେ ତହୁଁ ଉଠି ।
ଧାତା ବୋଇଲେ ହେ ପାର୍ଥ ଜୀବନ ତୋଷଣ୍ୟ
ହରଷେ ବୋଇଲେ ବର ମାଗ ହେ ଅର୍ଜୁନ
ଅର୍ଜୁନ ବୋଇଲେ ଯେବେ ହୋଇଲ ସଦୟ
ପଣ୍ଡୁ ବ୍ରହ୍ମହତ୍ୟା ଦୋଷ କରିଦେବ କ୍ଷୟ ।
ସ୍ୱର୍ଗ ପଥଗତ ହେଉ ସେ ମୋର ପିତାଙ୍କୁ
ଅସ୍ତୁ ହେଉ ବୋଲି ବ୍ରହ୍ମା କହିଲେକ ତାଙ୍କୁ
ଯମକୁ ବୋଇଲେ ହେଲା ସର୍ବ ପାପ ଧ୍ୱଂସ
ଆଜହୁଁ ପଣ୍ଡୁଙ୍କୁ ସ୍ୱର୍ଗେ ଦେଲ ଭୁଞ୍ଜ ବସ ।
ଯମ ବୋଇଲା ପଣ୍ଡୁଙ୍କ କିଛି ଦୋଷ ନାହିଁ
ମୋ ପାପ ଖଣ୍ଡନ ପାଇଁ ଏହା କହି ମୁହିଁ ।
ପଣ୍ଡୁ ନୃପତି ପ୍ରସାଦେ ଖଣ୍ଡିଲା ଏ ବ୍ୟାଧି
ପରମ ମହାତ୍ମା ମୋର ପରମ ଔଷଧି ।
ପଣ୍ଡୁଙ୍କୁ ସେ ବସାଇଲେ ସ୍ୱର୍ଗେ ନାଗକର
ନାଗଅର୍ଜୁନଙ୍କୁ କୋଳେ ଘେନି ବେଦଧର ।
ଅର୍ଜୁନ କୋଳରେ ନେଇ ଦେଲେ ବିଶ୍ୱନାଥ
ନାଗାର୍ଜୁନଙ୍କୁ ସମ୍ଭାଳ କୋଳ ବୀର ପାର୍ଥ ।
ନାଗାର୍ଜୁନଙ୍କୁ ଆପଣା କୋଳେ ପାର୍ଥ ଘେନ
ମୁଖରେ ଚୁମ୍ବନ ଦେଇ ବୀର ଫାଲ୍‌ଗୁନ ।
ବହୁ ଛନ୍ଦ ସେବାକଲୁ ମୋର କୁଳ ସାଧୁ
ଲଭିଲୁ ଅକ୍ଷୟ ସ୍ୱର୍ଗ ହରଙ୍କ ପ୍ରସାଦୁଁ ।
ଏ କପିଳାସ ସ୍ୱର୍ଗରେ ଥାଅସି ରେ ବାଳ
ଈଶ୍ୱର ପ୍ରସଙ୍ଗେ ତୋର ତେଜ ଅନର୍ଗଳ ।
ଆମ୍ଭ ସଙ୍ଗେ ଥିଲେ ଭୂମି ହେବୁ ବନବାସୀ
ହସ୍ତେ ପଶିଲେ ଅବଶ୍ୟ ହେବୁ ପ୍ରାଣନାଶୀ ।
ଈଶ୍ୱରଙ୍କୁ ସମର୍ପିଲେ ନାଗଅର୍ଜୁନଙ୍କୁ
ହର ହାରପାଳ କରି ରଖିଲେ ତାହାଙ୍କୁ ।
ରାମ କୃଷ୍ଣ ଯୁଧିଷ୍ଠିର ଅର୍ଜୁନ ସହିତେ
ଘେନି କପିଳାସ ବନ୍ଦିଲେକ ବିଶ୍ୱନାଥେ ।

ବଉଳଙ୍କ ସହିତରେ ବଳେ କପିଳାସେ
ଅନେକ ଉତ୍ସବ କଲେ ବିଶ୍ୱବାସ ବାସେ ।
ବସିଲେ ଯମଦଣ୍ଡ ସହିତେ କୋଳନ
ସମସ୍ତ ଚରିତ୍ର କଲେ ଦେବ ତ୍ରିଲୋଚନ ।
ଅର୍ଜୁନଙ୍କୁ କହି ଦେବ ଦେବ ଯେ ମୁରାରି
ଚଳନ୍ତେ ଆନନ୍ଦେ ତହୁଁ ହାସବଶି ପୁରୀ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଗଲେ ହସ୍ତିନାକୁ
ସନ୍ଧ୍ୟାବାଳୀ ପ୍ରଣିପାତ କଲା ଅର୍ଜୁନଙ୍କୁ ।
ଅନେକ ଭକତି କରି ଖଟିଲା ବଦନେ
ଅଜ୍ଞାନରେ ଦ୍ରୋହକଲି ତୋତେ ତୋତନରେ
ଅର୍ଜୁନ ବୋଇଲା ମୋର ଅଟେ ସେ ଆତ୍ମଜ
ମୋ ପୁତ୍ର ମୋତେ ଜିଣିଲା ଏଥିରେ କି ଲାଜ
ଆନ ହସ୍ତେ ଯେବେ ହୋଇଥାନ୍ତ ମୁଁ ବିନାଶ
ତେବେ ସିନା ଅପମାନେ ହୋଇଥାନ୍ତା ଧ୍ୱଂସ
କୁ ଏବେ ଯାଅ ଯା ସଖି ପାତାଳ ପୁରକୁ
ପୁଣହିଁ କାଳେ ଦର୍ଶନ କରିବୁ ଆମ୍ଭଙ୍କୁ ।
ଅନେକ ଯେ ଧନରତ୍ନ ଦେଲେ ସବ୍ୟସାଚୀ
ନାଗୁଣୀଙ୍କୁ ପ୍ରତୁଷାର୍ଥ କଲେକ ଶ୍ରୀବତ୍ସ ।
ସାଧୁ ସାଧୁ ତୋ ଜୀବନ ତୋ ଚରିତ ଉଚା
ଏସମକ ସୁଲକ୍ଷଣେ ଜାତକଲୁ ବତ୍ସା ।
ତ୍ରୈଲୋକ୍ୟ ଜନନୀ ଅଟେ ସେ ତୋହର ପତି
ଜିଣେ ଇନ୍ଦ୍ର ଗୋବିନ୍ଦ ହର ପ୍ରଜାପତି ।
ତାଙ୍କୁ ଜିଣିବାକୁ ତୋର ପୁତ୍ର ସାମରଥ
ଯୁଗେ ଯୁଗେ ରହିଲାକ ଏ ତୋହର କଥା ।
ଆପେ ପାର୍ଥ ବାହୁଡ଼ାଇ ଦେଲା ସନ୍ଧ୍ୟାବାଳୀ
ପାତାଳ ପୁରକୁ ଗଲା ସେ ନାଗୁଣୀ ଚଳି ।
ବଳେ ପାଣ୍ଡବ କାରୁଣାବନ୍ତ ପୁଣ୍ୟସ୍ଥାନେ
ଅର୍ଜୁନ ଘେନି ହସ୍ତିନା ଗଲେ ଦୁର୍ଯ୍ୟୋଧନେ ।
ଧୃତରାଷ୍ଟ୍ର ବିଦୁର ଯେ ସଞ୍ଜୟ ସହିତେ
ଅର୍ଘ୍ୟଦେଲେ ଭାନୁମତୀ ଗାନ୍ଧାରୀ ସମେତେ ।
ଅର୍ଘ୍ୟ ଦଅନ୍ତି ଅର୍ଜୁନ ଶିରେ ସର୍ବ ନାରୀ
ଦିଅନ୍ତି ହରଷ ହୋଇ ପୁଣ ହୁଳହୁଳି ।
ବାହୁରେ ବହୁତ ବ୍ୟଥା ପାଇ ଆମ୍ଭେ ଥିଲୁ
ଏ ଅଶ୍ୱରାଜ୍ୟ ଭୁଜିଲା ପ୍ରାପ୍ତ ଯେ ମଣିଲୁ ।
ଏବେ ଯେ ଧର୍ମ ଉଦିତ ହେଲା ବୀର ପାର୍ଥ
ଉଦ୍ଧରିଲୁ ସୋମବଂଶ କଲୁ ସବୁ ସାର୍ଥ ।

ହସ୍ତିନା ରାଜ୍ୟେ ଅନେକ ଉତ୍ସବ ହବଇ
ବହୁତ ଆନନ୍ଦେ ପୁରେ ଗଲେ କୁରୁସାଇଁ ।
ବହୁତ ଉତ୍ସବ ହେଲା ସେହି ପଞ୍ଚରାଜ୍ୟେ
ଅନ୍ନଛତ୍ର ଜଳଛତ୍ର ଲୋକେ କଲେ ଯଜେ ।
ଅର୍ଜୁନଙ୍କୁ ଦେଖି ତହୁଁ ଦେଖି ଜନାର୍ଦ୍ଦନ
ବିଜୟେ ଶ୍ରୀରାମକୃଷ୍ଣ ଦ୍ୱାରକା ଭୁବନ ।
ସୁଧର୍ମା ସଭାରେ ବିଜେ କଲେ ବନମାଳୀ
ଅଇଲେକ କରେ ଅର୍ଘ୍ୟ ଘେନ ସର୍ବବାଳୀ ।
ଆନନ୍ଦରେ ଅଶ୍ରୁଜଳ ବହିପଡ଼େ ଷତ
ଦେଖିବାକୁ ଧାଇଁଲେକ ହୋଇ ତୋଷମତ ।
ସାଧୁ ଅର୍ଜୁନ ବୋଲି ସେ ବହୁତ ପ୍ରଶଂସି
କେଉଁ ପାତକେ ହୋଇଲୁ ଏଡ଼େ ବଡ଼ ଦୋଷୀ
ଜଗତ ହିତ ପୁରୁଷ ଯାର ହିତକାରୀ
ସାରବର ହେଲେକେରେ ନାହିଁ ତାତେ ସରି
ମେରୁ ତୋଳିବାକୁ କେହୁ ହୋଇଲେ ଶକତା
ତୋ ପ୍ରତିଜ୍ଞା ଦେଖିବାକୁ ଭୁଜ ... ବନ୍ତା ।
ଦ୍ୱାରକାପୁରେ ଉତ୍ସବ କରନ୍ତି ଶ୍ରୀପତି
ଅନେକ ଅନ୍ନ ଭୋଜନ ଲୋକଙ୍କୁ ଦିଅନ୍ତି ।
ଆପଦ ଶାନ୍ତି ନିମନ୍ତେ କରନ୍ତି ଆହୁତି
ବ୍ୟାସ ଧୌମ୍ୟ ପୁରୋହିତ ସମସ୍ତେ ମିଳନ୍ତି ।
ଅର୍ଜୁନର ଶିରେ ଅର୍ଘ୍ୟ ଦେଲେ ସର୍ବେ ମିଳି
ଆୟୁ ନିମନ୍ତେ ବହୁତ ପୁଣ୍ୟଧ୍ୱନି ତୋଳି ।
ଦ୍ୱାରକାରେ ରହି ବଶ ଦିବସ ପର୍ଯ୍ୟନ୍ତେ
ଅର୍ଜୁନଙ୍କୁ ଘେନ କୃଷ୍ଣ ବିଜେ ଯମପ୍ରସ୍ଥ ।
ଅନେକ ଉତ୍ସବ କଲେ ସେହି ପଞ୍ଚପ୍ରସ୍ଥେ
ହସ୍ତିନାରେ କୁରୁବଳ ପାଣ୍ଡବ ସହିତେ ।

କଚ୍ଛଦନ ରହି ତହିଁ ଗଲେ ଜନାର୍ଦ୍ଦନ
କୌରବେ ପାଣ୍ଡବେ ତାଙ୍କୁ କଲେ ବହୁମାନ୍ୟ
ଏଥୁଅନ୍ତେ ଶୁଣିମା ହେ ମନୁ ମହାରାଜ
ନିଜ ସ୍ଥାନକୁ ଯେ ଗଲା ଆଦିତ୍ୟ ତନୁଜ ।
ସଂଯମନୀପୁରେ ବିଜେକଲେ ନାଶକର
କୋଟି ଅର୍ଘ୍ୟ ଦେଲା ନେଇ ପଣ୍ଡୁରାଜା ଶିର
ଅନେକ ରତ୍ନ କନକ ଅଙ୍ଗେ ଆଭରଣ
ସେବକ ସ୍ଥାପେ ଖଟିଲା ତାହାଙ୍କ ଚରଣ ।
ଅନେକ ପ୍ରଶଂସା ତାଙ୍କୁ କଲା ନାଶକର
ସାଧୁ ସାଧୁ ପଣ୍ଡୁରାଜା ଶ୍ରୀବନ ତୋହର ।
ସୁପୁତ୍ରକୁ ଉପୁଜାଇ ହେଲୁ ବ୍ରହ୍ମା ସମ
କନକ ଆସନେ ନେଇ ବସାଇଲେ ଯମ ।
ପଣ୍ଡୁଙ୍କୁ ଅନେକ ମତେ କରାଇ ସେ ପୂଜା
ଅପସରାକୂଳ ଘେନ ଖଟେ ଯମରାଜା ।
ଶୁଣ ହେ ପଣ୍ଡିତଜନେ ସୁପୁତ୍ରର କଥା
ଆପେ ତରଇ ତାରଇ ତା ପିତୃ ଦେବତା ।
ବଂଶ ନିସ୍ତାରଙ୍କ ତାର ହୁଅନ୍ତି ଭଲେ
ପିତୃଲୋକ ତରଇ ସେ ଶମନ ବୋଇଲେ ।
ଅତ୍ରକାଳେ ବର୍ତ୍ତନ୍ତି ଯେ ତାର ପିତୃମାନେ
ସମସ୍ତ କାରଣ ହୁଏ ଧର୍ମ ପରସନ୍ନେ ।
ଜୟ ହୁ ଜୟ ହୁ ଦେବ ଦେବ ନିରଞ୍ଜନ
ତୋହରେ ବର୍ତ୍ତନ୍ତି ସିନା ଏ ସକଳଜନ ।
ତୋହର କୃପାରେ ମୋକ୍ଷ ହୁଅଇ ପଣ୍ଡିତ
ନିମିଷକେ ଦୂର ପୁଣି ହୁଏ ମେରୁବତ ।
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତୋ ପଦ୍ମରେ
ଚିତ୍ତ ରଖି ସ୍ୱର୍ଗପର୍ବ ସାରିଲା ଏଠାରେ ।

ଇତି ଶ୍ରୀ ମହାଭାରତ ସ୍ୱର୍ଗପର୍ବ ସମ୍ପୂର୍ଣ୍ଣ



ମୁଦ୍ରାକର—ଶ୍ରୀକମଳଲୋଚନ ଗରବୁ, ଶ୍ରୀରାଧାରମଣ ପ୍ରେସ, କଟକ—୧୯୮୧

# ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛପା ହୋଇ ବିକ୍ରୟ ନିମିତ୍ତ ରକ୍ଷିତ ଅଛି । ଅଗ୍ରିମ ସହ ଅର୍ଡ଼ର ପାଇଲେ ଉଚିତ କମିଶନ ସହ ଯୋଗାଇ ଦିଆଯାଏ ।

| | | | |
|---|---|---|---|
| ମହାଭାରତ | ସେଟ୍ | ଟ | ୯୦-୦୦ |
| ବାଲ୍ମୀକି ରାମାୟଣ | ,, | ଟ | ୫୦-୦୦ |
| ହରିବଂଶ | ,, | ଟ | ୪୯-୦୦ |
| ନୃସିଂହ ପୁରାଣ | ,, | ଟ | ୪୯-୦୦ |
| ଭାଗବତ | ,, | ଟ | ୪୦-୦୦ |
| ବ୍ରହ୍ମବୈବର୍ତ୍ତ ପୁରାଣ | ,, | ଟ | ୩୭-୦୦ |
| ଶିବ ପୁରାଣ | ,, | ଟ | ୨୦-୦୦ |
| ବାୟୁ ପୁରାଣ | ,, | ଟ | ୨୫-୦୦ |
| ବ୍ରହ୍ମ ପୁରାଣ | ,, | ଟ | ୨୨-୦୦ |
| ସ୍କନ୍ଦ ପୁରାଣ (ମାହେଶ୍ୱର ଖଣ୍ଡ) | | ଟ | ୧୮-୦୦ |
| ,, (ବସ୍ତୁଖଣ୍ଡ ପ୍ରଥମାର୍ଦ୍ଧ) | | ଟ | ୧୪-୫୦ |
| ,, ,, ଦ୍ୱିତୀୟାର୍ଦ୍ଧ) | | ଟ | ୧୫-୫୦ |
| ବୈଦେହୀଶ ବିଳାସ | ,, | ଟ | ୨୦-୦୦ |
| ଦାର୍ଢ୍ୟତାଭକ୍ତି | ,, | ଟ | ୯-୦୦ |
| ,, ବଢେଇ | ,, | ଟ | ୧୦-୦୦ |
| ତତ୍ତ୍ୱବିନୋଦ | ,, | ଟ | ୨୨-୦୦ |
| ଅବୋଲକରା କାହାଣୀ | ,, | ଟ | ୧୨-୦୦ |

| | | | | | |
|---|---|---|---|---|---|
| ପଦ୍ମପୁରାଣ | ଟ ୭-୦୦ | ବିଲଙ୍କା ରାମାୟଣ ୧ ସେଟ୍ | ଟ ୯-୫୦ |
| ନାମରତ୍ନ ଗୀତା | ଟ ୭-୦୦ | ଭବିଷ୍ୟତ ପୁରାଣ | ଟ ୪-୫୦ |
| ଗରୁଡ଼ ପୁରାଣ | ଟ ୭-୦୦ | ସୂର୍ଯ୍ୟ ପୁରାଣ | ଟ ୪-୨୫ |
| ଜଗନ୍ନାଥ ପୁରାଣ | ଟ ୭-୦୦ | କୃଷ୍ଣଲୀଳା | ଟ ୭-୫୦ |
| ଲକ୍ଷ୍ମୀ ପୁରାଣ | ଟ ୭-୫୦ | ଗୀତା ବଢେଇ | ଟ ୫-୫୦ |
| ଲିଙ୍ଗ ପୁରାଣ | ଟ ୧୨-୦୦ | ଜାତକ ଦର୍ପଣ | ଟ ୩୦-୦୦ |
| ନାରଦୀୟ ପୁରାଣ | ଟ ୭-୫୦ | ମାଧବକର ନିଦାନ | ଟ ୮-୦୦ |
| ବାମନ ପୁରାଣ | ଟ ୧୦-୦୦ | ଗଦାଧର ପଦ୍ଧତି | ଟ ୧୫-୦୦ |
| ଟୀକା ମହାଭାରତ | ଟ ୧୦-୦୦ | ଅଧ୍ୟାତ୍ମ ରାମାୟଣ | ଟ ୧୨-୦୦ |
| ମାର୍କଣ୍ଡେୟ ପୁରାଣ | ଟ ୧୦-୦୦ | ଅମରକୋଷ (ବଢେଇ) | ଟ ୧୦-୦୦ |

ପ୍ରାପ୍ତିସ୍ଥାନ :—

**ଶ୍ରୀ ରାଧାରମଣ ପୁସ୍ତକାଳୟ**

ନିମଚୌଡ଼ି, କଟକ—୭୫୩୦୦୨